ପ୍ରକାଶକ
**ସ୍ୱାମୀ ଆତ୍ମପ୍ରଭାନନ୍ଦ**
ଅଧ୍ୟକ୍ଷ, ରାମକୃଷ୍ଣ ମଠ
ବିବେକାନନ୍ଦ ମାର୍ଗ
ଭୁବନେଶ୍ୱର—୭୫୧ ୦୦୨
ଓଡ଼ିଶା

ସର୍ବସ୍ୱତ୍ୱ ସଂରକ୍ଷିତ

ଦ୍ୱିତୀୟ ସଂସ୍କରଣ : ଜାନୁୟାରୀ ୧୯୮୩
**ଦ୍ୱିତୀୟ ପୁନର୍ମୁଦ୍ରଣ : ୨୮ ଅଗଷ୍ଟ ୨୦୧୩**
ଶ୍ରୀକୃଷ୍ଣ ଜନ୍ମାଷ୍ଟମୀ
୫୦୦

ମୂଲ୍ୟ– ଟ. ୧୩୦.୦୦

ମୁଦ୍ରାକର :
ହିନ୍ଦୁସ୍ଥାନ ପ୍ରିଣ୍ଟିଙ୍ଗ୍ ଏଣ୍ଡ୍ ବାଇଣ୍ଡିଂ ୱାର୍କ୍ସ୍
ଏ/୪୮, ରାମେଶ୍ୱର ପାଟଣା
ଭୁବନେଶ୍ୱର—୭୫୧ ୦୦୨

***SWAMI VIVEKANANDANKA VANI O RACHANA Vol. - III :*** by Swami Vivekananda; Published by Ramakrishna Math, Vivekananda Marg, Bhubaneswar - 751 002; 2nd Reprint on 28th August 2013; **Price : ₹ One Hundred Thirty only.**

# ପ୍ରଥମ ସଂସ୍କରଣର ନିବେଦନ

ସ୍ୱାମୀ ବିବେକାନନ୍ଦଙ୍କ ଜନ୍ମଶତବାର୍ଷିକୀ ସ୍ମରଣରେ ଏହି 'ସ୍ୱାମୀ ବିବେକାନନ୍ଦଙ୍କ ବାଣୀ ଓ ରଚନା' ପ୍ରକାଶ କରିବାର ଆୟୋଜନ ପ୍ରାୟ ବର୍ଷେ ଧରି ଚାଲି ଆସୁଅଛି । ତୃତୀୟ ଖଣ୍ଡ ଆଜି ସମ୍ପୂର୍ଣ୍ଣରୂପେ ସର୍ବସାଧାରଣଙ୍କ ନିକଟରେ ପରିବେଷିତ ହେଲା ।

ଶ୍ରୀଭଗବାନଙ୍କ କୃପା ଓ ଆଶୀର୍ବାଦ ମସ୍ତକରେ ଧାରଣ କରି ଆମେ ନାନା ପ୍ରତିକୂଳ ଅବସ୍ଥା ମଧ୍ୟ ଦେଇ କାର୍ଯ୍ୟକ୍ଷେତ୍ରରେ ଅଗ୍ରସର ହୋଇଅଛୁଁ । ସ୍ୱାମୀଜୀଙ୍କ ବକ୍ତୃତା ଓ କାହାଣୀ—ଭକ୍ତ, ସାଧକ ଓ ସମସ୍ତ ଶ୍ରେଣୀର ପାଠକମାନଙ୍କ ହୃଦୟରେ ଯେ ଏକ ନବୀନ ଓ ଉଜ୍ଜ୍ୱଳ ଆଲୋକପାତ କରିବ, ସେ ବିଷୟରେ ସନ୍ଦେହ ନାହିଁ । ଆମେମାନେ ତାହାଙ୍କର ନିତାନ୍ତ ଅକିଞ୍ଚନ ସନ୍ତାନ, ଆମମାନଙ୍କର କେତେ ଟିକେ ବା ସାମର୍ଥ୍ୟ ଓ କ୍ଷମତା, ଯଦ୍ଦ୍ୱାରା ତାଙ୍କର ପବିତ୍ର ଓ ଅଗ୍ନିମୟୀ ବାଣୀ ଯଥାଯଥ-ଭାବରେ ଓଡ଼ିଆ ଭାଷାରେ ତର୍ଜମା ସହକାରେ ପରିବେଷଣ କରିବୁଁ ।

ଶ୍ରୀରାମକୃଷ୍ଣ କହୁଥିଲେ, "ନରଲୀଳାରେ ଅବତାରଙ୍କୁ ଠିକ୍ ମଣିଷ ଭଳି ଆଚରଣ କରିବାକୁ ହୁଏ ।" ଆଚାର୍ଯ୍ୟ ମଧ୍ୟ ଅବତାରଙ୍କ ଲୀଳାପାର୍ଷଦ । ଯେତେ-ବେଳେ ଭଗବାନ ମାନବ-ଦେହ ପରିଗ୍ରହ କରି ଏହି ଧରିତ୍ରୀରେ ଅବତୀର୍ଣ୍ଣ ହୁଅନ୍ତି, ସେତେବେଳେ ଆଚାର୍ଯ୍ୟ ମଧ୍ୟ ତାଙ୍କର ଲୀଳାର ସହାୟକରୂପେ ଅବତୀର୍ଣ୍ଣ ହୋଇ-ଥାଆନ୍ତି । ସେହି ନରରୂପୀ ନାରାୟଣ ଆମମାନଙ୍କର ଶତ ଅପରାଧ କ୍ଷମା କରି ଆମମାନଙ୍କୁ ସତ୍ସାହସ ଓ ଶୁଭ ପ୍ରେରଣା ଦେବେ ନିଶ୍ଚିତ ।

ବିନୀତ

୧୫ ଜାନୁଆରି ୧୯୬୩

ପ୍ରକାଶକ

# ପ୍ରକାଶକଙ୍କ ନିବେଦନ

ଶ୍ରୀରାମକୃଷ୍ଣ ପରମହଂସଦେବଙ୍କର ୧୫୦ତମ ଜନ୍ମ-ବର୍ଷରେ 'ସ୍ୱାମୀ ବିବେକାନନ୍ଦଙ୍କ ବାଣୀ ଓ ରଚନା'ର ଦଶଖଣ୍ଡରେ ପୁନଃପ୍ରକାଶନର ପରିକଳ୍ପନା କରାଯାଇ ୧୯୮୭ରେ ପ୍ରଥମ ଖଣ୍ଡ ପ୍ରକାଶିତ ହେଲା । ଇତି ମଧ୍ୟରେ ବହୁ ପ୍ରକାର ବାଧାବିଘ୍ନବଶତଃ ଅନ୍ୟାନ୍ୟ ଖଣ୍ଡର ପ୍ରକାଶନ ବିଳମ୍ବିତ ହୋଇଛି । ତଥାପି ସ୍ୱାମୀଜୀଙ୍କର ୧୨୫ତମ ଜନ୍ମବର୍ଷରେ ଏହାର ତୃତୀୟଖଣ୍ଡ ପ୍ରକାଶିତ ହୋଇପାରିଥିବାରୁ ଆମେମାନେ ଅତ୍ୟନ୍ତ ଆନନ୍ଦିତ ।

ଏହି ଗ୍ରନ୍ଥ ଅନ୍ତର୍ଗତ 'ଧର୍ମ-ବିଜ୍ଞାନ', 'ଧର୍ମ-ସମୀକ୍ଷା' ଓ 'ବେଦାନ୍ତର ଆଲୋକରେ' ଯଥାକ୍ରମେ 'Science & Philosophy of Religion', 'Study of Religion' ଓ 'Thoughts on Vedanta' ପୁସ୍ତକର ଅନୁବାଦ । ତୃତୀୟ ପୁସ୍ତକରେ ରହିଥିବା 'ହାର୍ଭାର୍ଡ-ବକ୍ତୃତା' ଦ୍ୱିତୀୟ ଖଣ୍ଡରେ ଦିଆଯାଇଥିବାରୁ ଏଠାରେ ସଂଯୋଜିତ ହୋଇନାହିଁ ଏବଂ ପ୍ରଥମ ଓ ଶେଷ ତିନୋଟି ବକ୍ତୃତା ମୂଳ ପୁସ୍ତକରେ ନ ଥିଲେ ମଧ୍ୟ ପ୍ରାସଙ୍ଗିକ ହୋଇଥିବାରୁ ଏଠାରେ ସଂଯୋଜନ କରାଗଲା ।

'ଧର୍ମ, ଦର୍ଶନ ଓ ସାଧନା' ଅନ୍ତର୍ଗତ ବିଭିନ୍ନ ବିଷୟଗୁଡ଼ିକ ଇଂରାଜୀ ଗ୍ରନ୍ଥାବଳୀର ବିଭିନ୍ନ ସ୍ଥାନରୁ ସଂଗୃହୀତ ହୋଇଛି । 'ଯୋଗ ଓ ମନୋବିଜ୍ଞାନ' ବିଷୟକ ବକ୍ତୃତା ଓ ଲେଖାଗୁଡ଼ିକୁ ମଧ୍ୟ ସେହିପରି ଇଂରାଜୀ ଗ୍ରନ୍ଥାବଳୀରୁ ଚୟନ କରି ଶେଷରେ ସଂଯୁକ୍ତ କରାଗଲା । ଅନ୍ୟାନ୍ୟ ଖଣ୍ଡ ଭଳି ଏଥିରେ ମଧ୍ୟ ତଥ୍ୟପଞ୍ଜୀ ଓ ନିର୍ଦ୍ଦେଶିକା ସଂଯୋଜିତ ହୋଇଛି ।

ଏହି ଗ୍ରନ୍ଥଟିର ସମ୍ପାଦନାରେ ଅଧ୍ୟାପକ ଡକ୍ଟର ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ) ଓ ଶ୍ରୀମତୀ ପଦ୍ମିନୀ ଦେବୀଙ୍କର ବିଶେଷ ଅବଦାନ ଉଲ୍ଲେଖଯୋଗ୍ୟ । ଅଧ୍ୟାପକ ଶ୍ରୀ ତତ୍ତ୍ୱକନ୍ଦର ମିଶ୍ର ଅନ୍ୟାନ୍ୟ ଖଣ୍ଡ ଭଳି ଏହି ଖଣ୍ଡର ମୁଦ୍ରଣର ସମସ୍ତ ଦାୟିତ୍ୱ ଅକୁଣ୍ଠଚିତ୍ତରେ ବହନ କରି ଅକ୍ଳାନ୍ତ ପରିଶ୍ରମ କରିଛନ୍ତି । ଏମାନଙ୍କୁ ଆମେ ଆମର ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛୁ । ଏହି ରଚନାବଳୀର ପୁନଃ-ପ୍ରକାଶନରେ ସ୍ୱାମୀ ବୈରାଗ୍ୟାନନ୍ଦଙ୍କର ଭୂମିକା ଉଲ୍ଲେଖଯୋଗ୍ୟ ।

ରାଜ୍ୟ ସରକାର ଓ ଲୋକସେବକମଣ୍ଡଳ ଆଂଶିକ ଅର୍ଥ-ସାହାଯ୍ୟ କରି ଆମମାନଙ୍କୁ ପ୍ରାଥମିକ ପ୍ରେରଣା ଦେଇଛନ୍ତି । ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀବଲ୍ଲଭ ପଟ୍ଟନାୟକ, ବାଚସ୍ପତି ଶ୍ରୀଯୁକ୍ତ ପ୍ରସନ୍ନକୁମାର ଦାଶ, ଭାରତ ମହିଳା କଂଗ୍ରେସର ସଭାନେତ୍ରୀ ଶ୍ରୀମତୀ ଜୟନ୍ତୀ ପଟ୍ଟନାୟକ ଓ ସମାଜର ସମ୍ପାଦକ ଡକ୍ଟର ରାଧାନାଥ ରଥଙ୍କର ଅନୁପ୍ରେରଣା ଆମମାନଙ୍କୁ ବହୁ ପରିମାଣରେ ଉତ୍ସାହିତ କରିଛି । ସେଥିପାଇଁ ସେମାନଙ୍କୁ ଆମେ ଧନ୍ୟବାଦ ଅର୍ପଣ କରୁଛୁ ।

ସ୍ୱାମୀ ରାମକୃଷ୍ଣାନନ୍ଦଙ୍କର ଆବିର୍ଭାବ ତିଥି,
୧୦ ଅଗଷ୍ଟ ୧୯୮୮

**ସ୍ୱାମୀ ସୁତପାନନ୍ଦ**
ଅଧ୍ୟକ୍ଷ, ରାମକୃଷ୍ଣ ମଠ, ଭୁବନେଶ୍ୱର

# ସୂଚୀପତ୍ର

# ଆଦ୍ୟାନୁବାଦକଙ୍କର ନିବେଦନ

ଏହି ଗ୍ରନ୍ଥଟି 'ଉଦ୍‌ବୋଧନ' ଦ୍ୱାରା ପ୍ରକାଶିତ 'The Science and Philosophy of Religion' ନାମକ ସମଗ୍ର ପୁସ୍ତକର ଅନୁବାଦ । ଏହାର ଅନ୍ତର୍ଗତ ବକ୍ତୃତାଗୁଡ଼ିକ ୧୮୯୬ ଖ୍ରୀଷ୍ଟାବ୍ଦର ପ୍ରାରମ୍ଭରେ ନ୍ୟୁୟର୍କରେ ଗୋଟିଏ କ୍ଷୁଦ୍ର କ୍ଲାସ୍‌ରେ ପ୍ରଦତ୍ତ ହୋଇଥିଲା । ଏଗୁଡ଼ିକ ସେତେବେଳେ ସାଙ୍କେତିକ ଲିପି ଦ୍ୱାରା ଗୃହୀତ ହୋଇ ରକ୍ଷିତ ହୋଇଥିଲା ସତ, କିନ୍ତୁ ଅତି ଅଳ୍ପଦିନ ତଳେ ମାତ୍ର 'ଜ୍ଞାନଯୋଗ—୨ୟ ଭାଗ' ନାମରେ ଆମେରିକାରୁ ପ୍ରକାଶିତ ହୋଇଛି । ତାହାର କିଛି ଦିନ ପରେ ଏହା ସ୍ୱାମୀ ସାରଦାନନ୍ଦଙ୍କ ଦ୍ୱାରା ସଂଶୋଧିତ ହୋଇ ଉଦ୍‌ବୋଧନ ଅଫିସରୁ ପ୍ରକାଶିତ ହେଲା । ଏହି ସମସ୍ତ ମଧ୍ୟରେ 'ଉଦ୍‌ବୋଧନ' ପତ୍ରିକାରେ ଏହାର ବଙ୍ଗାନୁବାଦ ଧାରାବାହିକ ରୂପେ ପ୍ରକାଶିତ ହେଉଥିଲା ।···

ଏହି ପୁସ୍ତକରେ ସାଙ୍ଖ୍ୟ ଓ ବେଦାନ୍ତ-ମତ ବିଶେଷଭାବରେ ଆଲୋଚିତ ହୋଇଛି; ଉଭୟ ମଧ୍ୟରେ କେଉଁ କେଉଁ ସ୍ଥାନରେ ଐକ୍ୟ ଓ କେଉଁ କେଉଁ ବିଷୟରେ ବା ଅନୈକ୍ୟ, ତାହା ଉତ୍ତମରୂପେ ପ୍ରଦର୍ଶନ କରାଯାଇଛି ଏବଂ ବେଦାନ୍ତ ଯେ ସାଙ୍ଖ୍ୟର ଚରମ ପରିଣତି, ଏହା ପ୍ରତିପାଦିତ କରାଯାଇଛି । ଧର୍ମର ମୂଳ ତତ୍ତ୍ୱସମୂହ, ଯେଉଁଗୁଡ଼ିକୁ ନ ବୁଝିଲେ ଧର୍ମ ଜିନିଷଟିକୁ ହୃଦୟଙ୍ଗମ କରାଯାଏ ନାହିଁ—ସେସମସ୍ତକୁ ଆଧୁନିକ ବିଜ୍ଞାନ ସହିତ ମିଳାଇ ଏହି ପୁସ୍ତକ ଖଣ୍ଡିକରେ ଆଲୋଚନା କରାଯାଇଥିବାରୁ ଏହାର 'ଧର୍ମ-ବିଜ୍ଞାନ' ନାମକରଣ ବୋଧହୁଏ ଅନୁଚିତ ହୋଇନାହିଁ । ଅନୁବାଦ ମୂଳାନୁଯାୟୀ ଅଥଚ ସୁବୋଧ କରିବା ପାଇଁ ଚେଷ୍ଟା କରାଯାଇଛି । ଯେଉଁସବୁ ସ୍ଥାନରେ ସଂସ୍କୃତ ଗ୍ରନ୍ଥରୁ କିଛି ଉଦ୍ଧୃତ ହୋଇଛି, ତାହାର ମୂଳ ପାଦଟୀକାରେ ଦିଆଯାଇଛି । ତେବେ ସ୍ଥାନେ ସ୍ଥାନେ ସେହି ସମସ୍ତ ଉଦ୍ଧୃତାଂଶର ଅନୁବାଦ ଯଥାଯଥ ନୁହେଁ—ସେପରି ସ୍ଥଳରେ କେଉଁ ଗ୍ରନ୍ଥର କେଉଁ ସ୍ଥାନ ଅବଲମ୍ବନରେ ଏହି ଅଂଶ ଲିଖିତ ହୋଇଛି, ପାଦଟୀକାରେ ତାହା ଉଲ୍ଲେଖ କରାଯାଇଛି । କେତୋଟି ସ୍ଥଳରେ ସ୍ୱାମୀଜୀଙ୍କ ଲେଖାରେ ଆପାତତଃ ଅସଙ୍ଗତି ବୋଧହୁଏ—ଅନୁବାଦରେ ସେହି ସ୍ଥଳଗୁଡ଼ିକରେ କିଛିମାତ୍ର ପରିବର୍ତ୍ତନ ନ କରି ଅନୁବାଦକର ବୁଦ୍ଧି ଅନୁଯାୟୀ ପାଦଟୀକାରେ ସେଗୁଡ଼ିକର ସାମଞ୍ଜସ୍ୟର ଚେଷ୍ଟା କରାଯାଇଛି । ଅନ୍ୟାନ୍ୟ କେତୋଟି ଆବଶ୍ୟକୀୟ ପାଦଟୀକା ମଧ୍ୟ ପ୍ରଦତ୍ତ ହୋଇଛି ।

ବିନୀତ

ମାଘ, ୧୩୧୬ — ଅନୁବାଦକ

# ସୂଚନା

ଆମମାନଙ୍କର ଏହି ଜଗତ୍—ଏହି ପଞ୍ଚେନ୍ଦ୍ରିୟ ଗ୍ରାହ୍ୟ ଜଗତ୍, ଯାହାର ତତ୍ତ୍ୱ ଆମେମାନେ ଯୁକ୍ତି ଓ ବୁଦ୍ଧି ବଳରେ ବୁଝିପାରୁଛେ—ଏହାର ଉଭୟ ଦିଗ ଅନନ୍ତ, ଉଭୟ ଦିଗ ଅଜ୍ଞେୟ—'ଚିର-ଅଜ୍ଞାତ' ବିରାଜମାନ । ଯେଉଁ ଜ୍ଞାନାଲୋକ ଜଗତରେ 'ଧର୍ମ' ନାମରେ ପରିଚିତ, ତାହାର ତତ୍ତ୍ୱ ଏହି ଜଗତରେ ହିଁ ଅନୁସନ୍ଧାନ କରିବାକୁ ହୁଏ । ଯେଉଁ ସକଳ ବିଷୟର ଆଲୋଚନାରେ ଧର୍ମଲାଭ ହୁଏ, ସେସବୁ ଏହି ଜଗତର ଘଟଣା । ସ୍ୱରୂପତଃ କିନ୍ତୁ ଧର୍ମ ହେଉଛି ଅତୀନ୍ଦ୍ରିୟ ଭୂମିର ଅଧିକାରଭୁକ୍ତ; ଇନ୍ଦ୍ରିୟ-ରାଜ୍ୟର ନୁହେଁ । ଏହା ସର୍ବପ୍ରକାର ଯୁକ୍ତିର ଅତୀତ; ସୁତରାଂ ଏହା ବୁଦ୍ଧି-ରାଜ୍ୟର ମଧ୍ୟ ଅନ୍ତର୍ଭୁକ୍ତ ନୁହେଁ । ଏହା ଯେପରିକି ଏକ ଦିବ୍ୟ ଦର୍ଶନ, ଏକ ଦୈବୀ ଅନୁପ୍ରେରଣା, ଅଜ୍ଞାତ ଓ ଅଜ୍ଞେୟ ସମୁଦ୍ରରେ ଲମ୍ଫପ୍ରଦାନ ଭଳି ଯାହା ଅଜ୍ଞେୟକୁ ଜ୍ଞାତ ଅପେକ୍ଷା ଆମ ନିକଟରେ ଅଧିକ ପରିଚିତ କରିଦିଏ, କାରଣ ଏହା କେତେବେଳେ ସମ୍ପୂର୍ଣ୍ଣ 'ଜ୍ଞାତ' ହୋଇପାରେ ନାହିଁ । ମୋର ବିଶ୍ୱାସ, ମାନବସମାଜର ପ୍ରାରମ୍ଭରୁ ମାନବ-ମନରେ ଧର୍ମତତ୍ତ୍ୱର ଅନୁସନ୍ଧାନ ଚାଲିଛି । ଜଗତର ଇତିହାସରେ ଏପରି ସମୟ କେତେବେଳେ ଆସି ନାହିଁ, ଯେତେବେଳେ କି ମାନବ-ଯୁକ୍ତି ଓ ମାନବ-ବୁଦ୍ଧି ଏହି ଜଗତର ଅତୀତ ଏକ ବସ୍ତୁ ପାଇଁ ଅନୁସନ୍ଧାନ ଓ ସେଥିଲାଗି ପ୍ରାଣପଣେ ଚେଷ୍ଟା ନ କରିଛି ।

ଆମମାନଙ୍କର ଏହି କ୍ଷୁଦ୍ର-ବ୍ରହ୍ମାଣ୍ଡରେ—ଏହି ମାନବ-ମନରେ—ଆମେ ଦେଖି ପାରୁଛେ, ଏକ ଚିନ୍ତାର ଉଦୟ ହେଲା । କେଉଁଠାରୁ ଏହାର ଉଦୟ ହେଲା, ତାହା ଆମେ ଜାଣୁନାହିଁ ଏବଂ ଯେତେବେଳେ ଏହା ତିରୋହିତ ହେଲା, ସେତେବେଳେ ତାହା କୁଆଡ଼େ ଗଲା, ତାହା ମଧ୍ୟ ଆମେ ଜାଣୁନାହିଁ । ବହିର୍ଜଗତ୍ ଓ ଅନ୍ତର୍ଜଗତ୍ ଯେପରିକି ଏକ ରାସ୍ତାରେ ଚାଲିଛି; ଏକପ୍ରକାର ଅବସ୍ଥା ଭିତର ଦେଇ ଉଭୟଙ୍କୁ ହିଁ ଗତି କରିବାକୁ ହେଉଛି, ଉଭୟେ ଯେପରିକି ଏକସ୍ୱରରେ ବାଜି ଉଠୁଛନ୍ତି ।

ମୋର ଏହି ବକ୍ତୃତା ଭିତରେ ମୁଁ ଆପଣମାନଙ୍କ ନିକଟରେ ହିନ୍ଦୁମାନଙ୍କର ଏହି ମତ ବ୍ୟାଖ୍ୟା କରିବାକୁ ଚେଷ୍ଟା କରିବି ଯେ, ଧର୍ମ ମନୁଷ୍ୟର ଅନ୍ତରରୁ ହିଁ ଉତ୍ପନ୍ନ, ଏହା ବାହାରର କିଛି ହୋଇ ନ ପାରେ । ମୋର ବିଶ୍ୱାସ, ଧର୍ମଚିନ୍ତା ମାନବର ପ୍ରକୃତିଗତ । ଏହା ମନୁଷ୍ୟ-ସ୍ୱଭାବ ସହିତ ଏପରି ଅଚ୍ଛେଦ୍ୟ ଭାବରେ ଜଡ଼ିତ ଯେ, ଯେତେଦିନ ଧରି ସେ ନିଜ ଦେହ ଓ ମନକୁ ଅସ୍ୱୀକାର କରି ନ ପାରିଛି, ଯେତେଦିନ ପର୍ଯ୍ୟନ୍ତ ସେ ଚିନ୍ତା ଓ ଜୀବନ ତ୍ୟାଗ କରି ନ ପାରିଛି, ସେତେଦିନ ପର୍ଯ୍ୟନ୍ତ ତାହା ପକ୍ଷରେ ଧର୍ମକୁ ତ୍ୟାଗ କରିବା ଅସମ୍ଭବ । ଯେତେଦିନ ପର୍ଯ୍ୟନ୍ତ ମାନବର ଚିନ୍ତାଶକ୍ତି ଥିବ, ସେତେଦିନ ପର୍ଯ୍ୟନ୍ତ ଏହି ଚେଷ୍ଟା ତା'ର ଚାଲିଥିବ ଏବଂ ସେତେଦିନ ଧରି କୌଣସି ନା

କୌଣସି ଆକାରରେ ତା'ର ଏହି ଧର୍ମ ଥିବ ହିଁ ଥିବ । ଏହି କାରଣରୁ ହିଁ ଆମେ ଜଗତରେ ନାନା ପ୍ରକାର ଧର୍ମ ଦେଖିବାକୁ ପାଉ । ଅବଶ୍ୟ, ଏହି ଧର୍ମଚର୍ଚ୍ଚା ଓ ଆଲୋଚନାରେ ମୁଣ୍ଡ ଘୂରିଯାଇପାରେ; କିନ୍ତୁ ଆମମାନଙ୍କ ଭିତରୁ ଅନେକେ ଯେପରି ଏହାକୁ ବୃଥା କଳ୍ପନା ମାତ୍ର ବୋଲି ମନେ କରନ୍ତି, ଏହା ସେପରି ନୁହେଁ । ନାନା ଆପାତ-ବିରୋଧୀ ବିଭିନ୍ନ ଧର୍ମରୂପକ ବିଶୃଙ୍ଖଳତା ଭିତରେ ଗୋଟାଏ ସାମଞ୍ଜସ୍ୟ ଅଛି, ଏହିସବୁ ବେସୁରା ବେତାଳ ରାଗିଣୀ ଭିତରେ ମଧ୍ୟ ଐକ୍ୟତାନ ଅଛି । ଯେ ଶୁଣିବାକୁ ପ୍ରସ୍ତୁତ, ସେ ସେହି ସ୍ୱର ଶୁଣିବାକୁ ପାଇପାରିବ ।

ବର୍ତ୍ତମାନ କାଳରେ ସକଳ ପ୍ରଶ୍ନ ଭିତରେ ପ୍ରଧାନ ପ୍ରଶ୍ନ ହେଉଛି—ଜ୍ଞାତ ଓ ଜ୍ଞେୟ, ଉଭୟ ଦିଗରେ ଅଜ୍ଞେୟ ଓ ଅନନ୍ତ ଅଜ୍ଞାତ ରହିଛି; କିନ୍ତୁ ଏହି ଅନନ୍ତ ଅଜ୍ଞାତକୁ ଜାଣିବା ପାଇଁ ଏତେ ଚେଷ୍ଟା କାହିଁକି ? କାହିଁକି ଆମେ ଏହି ଜ୍ଞାତକୁ ନେଇ ସନ୍ତୁଷ୍ଟ ହୋଇପାରୁ ନାହିଁ ? କାହିଁକି ଆମେ ପାନ-ଭୋଜନ ଓ ସମାଜର କେତେକ କଲ୍ୟାଣ କରି ସନ୍ତୁଷ୍ଟ ରହିପାରୁ ନାହୁଁ ? ଏହି ଭାବ ହିଁ ଆଜିକାଲି ଚାରିଆଡ଼େ ଶୁଣିବାକୁ ମିଳେ । ଖୁବ୍ ବଡ଼ ବଡ଼ ବିଦ୍ୱାନ୍ ଅଧ୍ୟାପକଙ୍କଠାରୁ ଆରମ୍ଭ କରି ଅନର୍ଗଳ କଥା କହୁଥିବା ପ୍ରଗଲ୍‌ଭ ଶିଶୁ ପର୍ଯ୍ୟନ୍ତ ଅନେକଙ୍କ ମୁହଁରୁ ଆମେ ଆଜିକାଲି ଏହି କଥା ଶୁଣିଥାଉଁ—ଜଗତର ଉପକାର କର, ଏହା ହିଁ ଏକମାତ୍ର ଧର୍ମ, ଜଗତର ପିତାଙ୍କ ସମସ୍ୟାକୁ ନେଇ ମୁଣ୍ଡ ଖେଳାଇବାରେ କୌଣସି ଫଳ ନାହିଁ । ଏହି ଭାବଟି ଏବେ ଏତେଦୂର ପ୍ରବଳ ହୋଇଛି ଯେ, ଏହା ଗୋଟିଏ ସ୍ୱତଃସିଦ୍ଧ ସତ୍ୟରୂପେ ଦେଖା ଦେଇଛି; କିନ୍ତୁ ସୌଭାଗ୍ୟକ୍ରମେ ସେହି ଜଗଦତୀତ ସତ୍ତାର ତତ୍ତ୍ୱାନୁସନ୍ଧାନ ନ କରି ରହିବାକୁ ଆମର ଉପାୟ ନାହିଁ । ଏହି ବର୍ତ୍ତମାନର ବ୍ୟକ୍ତ ଜଗତ୍ ସେହି ଅବ୍ୟକ୍ତର ଏକ ଅଂଶମାତ୍ର । ଏହି ପଞ୍ଚେନ୍ଦ୍ରିୟାନୁଭୂତ ଜଗତ୍ ଯେପରିକି ସେହି ଅନନ୍ତ ଆଧ୍ୟାତ୍ମିକ ଜଗତ୍‌ର ଏକ କ୍ଷୁଦ୍ର ଅଂଶସ୍ୱରୂପ, ଯାହା ଆମମାନଙ୍କର ଇନ୍ଦ୍ରିୟାନୁଭୂତି-ଭୂମିରେ ଆସି ଦେଖା ଦେଇଛି । ସୁତରାଂ ଏହି ଜଗତ୍-ଅତୀତଙ୍କୁ ନ ଜାଣିଲେ କିପରି ବା ଏହାର ଏହି କ୍ଷୁଦ୍ର ପ୍ରକାଶର ବ୍ୟାଖ୍ୟା ହୋଇପାରେ ? କିପରି ବା ଏହାକୁ ବୁଝାଯାଇପାରେ ? କଥିତ ଅଛି, ଦିନେ ସକ୍ରେଟିସ୍ ଏଥେନସ୍ ସହରରେ ବକ୍ତୃତା ଦେଉଥିଲେ, ଏପରି ସମୟରେ ତାଙ୍କ ସହିତ ଜଣେ ବ୍ରାହ୍ମଣଙ୍କର ସାକ୍ଷାତ୍ ହେଲା—ସିଏ ଭାରତରୁ ଗ୍ରୀସ୍ ଦେଶକୁ ଯାଇଥିଲେ । ସକ୍ରେଟିସ୍ ସେହି ବ୍ରାହ୍ମଣଙ୍କୁ କହିଲେ—'ମନୁଷ୍ୟକୁ ଜାଣିବା ମାନବଜାତିର ସର୍ବୋଚ୍ଚ କର୍ତ୍ତବ୍ୟ—ମାନବ ହିଁ ମାନବର ସର୍ବୋଚ୍ଚ ଆଲୋଚନାର ବସ୍ତୁ ।' ବ୍ରାହ୍ମଣ ତତ୍‌କ୍ଷଣାତ୍ ପ୍ରତ୍ୟୁତ୍ତର ଦେଲେ—

'ଈଶ୍ୱରଙ୍କୁ ଯେପର୍ଯ୍ୟନ୍ତ ଜଣା ନ ଯାଉଛି ସେପର୍ଯ୍ୟନ୍ତ ମନୁଷ୍ୟକୁ କିପରି ଜାଣିବେ ?' ଏହି ଈଶ୍ୱର, ଏହି ଚିର ଅଜ୍ଞାତ ବା ନିରପେକ୍ଷ ସତ୍ତା ବା ଅନନ୍ତ ବା ନାମାତୀତ ବସ୍ତୁ—ତାଙ୍କୁ ଯେକୌଣସି ନାମରେ ଅଭିହିତ କରାଯାଇପାରେ—ଏହି ବର୍ତ୍ତମାନ ଜୀବନର ଯାହା କିଛି ଜ୍ଞାତ ଓ ଜ୍ଞେୟ, ସକଳର ହିଁ ସେ ଏକମାତ୍ର ଯୁକ୍ତିଯୁକ୍ତ ବ୍ୟାଖ୍ୟା

ସ୍ୱରୂପ । ଯେକୌଣସି ବସ୍ତୁର କଥା—ସମ୍ପୂର୍ଣ୍ଣ ଜଡ଼ ବସ୍ତୁର କଥା ଧରନ୍ତୁ । କେବଳ ଜଡ଼ ତତ୍ତ୍ୱ ସମ୍ବନ୍ଧୀୟ ବିଜ୍ଞାନରେ ଯେକୌଣସି ଗୋଟିକୁ ଯଥା—ରସାୟନ, ପଦାର୍ଥବିଦ୍ୟା, ଗଣିତ, ଜ୍ୟୋତିଷ ବା ପ୍ରାଣୀତତ୍ତ୍ୱ କଥା ଧରନ୍ତୁ—ତାକୁ ବିଶେଷ ଭାବରେ ଆଲୋଚନା କରନ୍ତୁ, କ୍ରମଶଃ ଏହି ତତ୍ତ୍ୱାନୁସନ୍ଧାନ ଅଗ୍ରସର ହେଉ, ଦେଖିବେ—'ସ୍ଥୂଳ' କ୍ରମଶଃ ସୂକ୍ଷ୍ମରୁ ସୂକ୍ଷ୍ମତର ପଦାର୍ଥରେ ଲୟ ହେଉଛି—ଶେଷକୁ ଆପଣ ଏପରି ଏକ ସ୍ଥାନରେ ପହଞ୍ଚିବେ, ଯେଉଁଠିକି ଏହି ସମୁଦାୟ ଜଡ଼ ବସ୍ତୁକୁ ଛାଡ଼ି, ଲମ୍ଫ ଦେଇ ଅଜଡ଼ ଆଡ଼କୁ ଯିବାକୁ ପଡ଼ିବ । ସକଳ ବିଦ୍ୟାର 'ସ୍ଥୂଳ' କ୍ରମଶଃ ସୂକ୍ଷ୍ମରେ ମିଳେଇ ଯିବ, ପଦାର୍ଥବିଦ୍ୟା ଦର୍ଶନରେ ପର୍ଯ୍ୟବସିତ ହେବ ।

ଏହିପରି ଭାବରେ ମନୁଷ୍ୟକୁ ବାଧ୍ୟ ହୋଇ ଜଗଦତୀତ ସତ୍ତାର ଆଲୋଚନାରେ ପ୍ରବୃତ୍ତ ହେବାକୁ ପଡ଼େ । ଯଦି ଆମେ ଏହାକୁ ଜାଣି ନ ପାରିବା, ତେବେ ଜୀବନ ମରୁଭୂମିରେ ପରିଣତ ହେବ, ମାନବ-ଜୀବନ ବୃଥା ହୋଇଯିବ । ଏକଥା କହିବା ଭଲ ଯେ, ବର୍ତ୍ତମାନ ଯାହା ଦେଖୁଛେ ସେସବୁକୁ ନେଇ ତୁଷ୍ଟ ରହିବା ଉଚିତ । ଗୋରୁ, କୁକୁର ଓ ଅନ୍ୟାନ୍ୟ ପଶୁଗଣ ଏହିପରି ଭାବରେ ବର୍ତ୍ତମାନକୁ ନେଇ ସନ୍ତୁଷ୍ଟ ଏବଂ ତାହା ହିଁ ସେମାନଙ୍କୁ ପଶୁ କରିଅଛି । ଅତଏବ ମାନବ ଯେବେ ବର୍ତ୍ତମାନକୁ ନେଇ ସନ୍ତୁଷ୍ଟ ରହେ ଏବଂ ଜଗଦତୀତ ସତ୍ତାର ସକଳ ଅନୁସନ୍ଧାନ ପରିତ୍ୟାଗ କରେ, ତେବେ ମାନବ-ଜାତିକୁ ପଶୁଭୂମିକୁ ଫେରି ଆସିବାକୁ ପଡ଼ିବ । ଧର୍ମ ହେଉଛି ଜଗଦତୀତ ସତ୍ତାର ଅନୁସନ୍ଧାନ—ଏହା ହିଁ ମନୁଷ୍ୟ ଓ ପଶୁ ଭିତରେ ପ୍ରଭେଦ ଦେଖାଇ ଦିଏ । ଏହା ଅତି ସୁନ୍ଦର କଥା ଯେ ସକଳ ପ୍ରାଣୀ ଭିତରେ ମନୁଷ୍ୟ ହିଁ ସ୍ୱଭାବତଃ ଉପରକୁ ଚାହିଁ ଦେଖେ, ଆଉ ସକଳ ପ୍ରାଣୀ ସ୍ୱଭାବତଃ ନିମ୍ନ ଆଡ଼କୁ ଝୁଙ୍କିଥାଆନ୍ତି । ଏହି ଊର୍ଦ୍ଧ୍ୱ ଦୃଷ୍ଟି, ଊର୍ଦ୍ଧ୍ୱଗମନ ଓ ପୂର୍ଣ୍ଣତ୍ୱର ଅନୁସନ୍ଧାନକୁ ହିଁ 'ପରିତ୍ରାଣ' ବା 'ଉଦ୍ଧାର' ବୋଲି କୁହାଯାଏ । ମନୁଷ୍ୟ ଯେତେବେଳେ ଉଚ୍ଚକୁ ଯିବାକୁ ଆରମ୍ଭ କରେ, ସେତେବେଳେ ସେ ଏହି ପରିତ୍ରାଣସ୍ୱରୂପ ସତ୍ୟ ଆଡ଼କୁ ନିଜକୁ ଅଗ୍ରସର କରାଏ । ଏହାର ଅର୍ଥ ବେଶଭୂଷା ବା ଗୃହ ଉପରେ ନିର୍ଭର କରେ ନାହିଁ । ଏହା ମନୁଷ୍ୟର ମସ୍ତିଷ୍କସ୍ଥିତ ଆଧ୍ୟାତ୍ମିକ ଭାବର ତାରତମ୍ୟ ଉପରେ ନିର୍ଭର କରେ । ଏଥିରେ ହିଁ ମାନବଜାତିର ଉନ୍ନତି; ଏହା ହିଁ ଭୌତିକ ଓ ମାନସିକ ସର୍ବବିଧ ଉନ୍ନତିର ମୂଳ; ଏହି ପ୍ରବର୍ତ୍ତକ ଶକ୍ତି ବଳରେ, ଏହି ଉତ୍ସାହ ବଳରେ ହିଁ ମାନବଜାତି ଆଗକୁ ଆଗକୁ ଅଗ୍ରସର ହୋଇଥାଏ ।

ପ୍ରଚୁର ଖାଦ୍ୟ-ପାନରେ ଧର୍ମ ନାହିଁ; କିମ୍ବା ସୁରମ୍ୟ ହର୍ମ୍ୟରେ ବି ତାହା ନାହିଁ । ଆପଣମାନେ ଧର୍ମ ବିରୋଧରେ ବାରମ୍ବାର ଆପତ୍ତି ଶୁଣିବାକୁ ପାଉଥିବେ, ଧର୍ମଦ୍ୱାରା କି ଉପକାର ହୋଇପାରେ ? ଏହା କଅଣ ଦରିଦ୍ରର ଦାରିଦ୍ର୍ୟ ଦୂର କରିପାରେ ? ମନେ କରନ୍ତୁ ଯେ ଧର୍ମ ଏହା କରିପାରିବ ନାହିଁ । ତାହା ବୋଲି କଅଣ ଧର୍ମ ଅସତ୍ୟ ବୋଲି ପ୍ରମାଣିତ ହେଲ ? ମନେ କରନ୍ତୁ, ଆପଣ କୌଣସି ଏକ ଜ୍ୟୋତିଷୀଙ୍କ ସିଦ୍ଧାନ୍ତ ପ୍ରମାଣ କରିବାକୁ ଚେଷ୍ଟା କରୁଛନ୍ତି—ଏପରି ସମୟରେ ଗୋଟିଏ ଶିଶୁ ଉଠି ପଚାରିବ,

"ଏଥିରେ କଅଣ ମିଠେଇ ମିଳିବ ?" ଆପଣ ହୁଏତ ଉତ୍ତର ଦେଲେ—"ନା, ଏଥିରୁ ମିଠେଇ ମିଳିବ ନାହିଁ ।" ସେତେବେଳେ ଶିଶୁଟି ହୁଏତ ପୁଣି କହିବ, "ତାହାହେଲେ ଏଥିରେ କିଛି ଲାଭ ନାହିଁ ।" ଶିଶୁମାନେ ସେମାନଙ୍କ ଦୃଷ୍ଟିକୋଣରୁ ସମଗ୍ର ଜଗତର କଥା ବିଚାର କରିଥାଆନ୍ତି । ଯେଉଁମାନେ ଅଜ୍ଞାନାଚ୍ଛନ୍ନ ହେତୁ ଶିଶୁସଦୃଶ, ଜଗତରେ ସେହିମାନଙ୍କର ବିଚାର ମଧ୍ୟ ତଦ୍ରୂପ । କେତେବେଳେ ହେଲେ ନିମ୍ନ ଜିନିଷର ଦୃଷ୍ଟିରେ ଉଚ୍ଚତର ଜିନିଷର ବିଚାର କରିବା କର୍ତ୍ତବ୍ୟ ନୁହେଁ । ପ୍ରତ୍ୟେକ ବିଷୟକୁ ତା'ର ନିଜ ମାନ ଓ ଓଜନରେ ବିଚାର କରିବାକୁ ହେବ । ଅନନ୍ତକୁ 'ଅନନ୍ତ'ର ଓଜନରେ ବିଚାର କରିବାର କଥା । ଧର୍ମ ମାନବଜୀବନର ସର୍ବାଂଶ; ଖାଲି ବର୍ତ୍ତମାନ ନୁହେଁ, ଭୂତ, ଭବିଷ୍ୟତ୍, ବର୍ତ୍ତମାନ—ସର୍ବାଂଶବ୍ୟାପୀ । ଅତଏବ ଏହା ଅନନ୍ତ ଆତ୍ମା ଓ ଅନନ୍ତ ଈଶ୍ୱରଙ୍କ ଭିତରେ ଅନନ୍ତ-ସମ୍ବନ୍ଧ-ସ୍ୱରୂପ । ଏଣୁ କ୍ଷଣିକ ମାନବ-ଜୀବନ ଉପରେ ଏହାର କାର୍ଯ୍ୟ ଦେଖି ଏହାର ମୂଲ୍ୟ ବିଚାର କରିବା କ'ଣ ନ୍ୟାୟସଙ୍ଗତ ? କଦାପି ନୁହେଁ । ଏହିସବୁ ଯୁକ୍ତି ନେତିମୂଳକ ।

ବର୍ତ୍ତମାନ ପ୍ରଶ୍ନ ହେଉଛି ଧର୍ମଠାରୁ ପ୍ରକୃତ ପକ୍ଷରେ କୌଣସି ଫଳ ମିଳେ କି ? ହିଁ ମିଳେ, ଏହାଦ୍ୱାରା ମାନବ ଅନନ୍ତ ଜୀବନ ଲାଭ କରେ । ମନୁଷ୍ୟ ବର୍ତ୍ତମାନ ଯାହା ହୋଇଛି ତାହା ଏହି ଧର୍ମଶକ୍ତିରେ ହିଁ ହୋଇଛି । ଆଉ ଧର୍ମ ହିଁ ଏହି ମନୁଷ୍ୟ ନାମକ ପ୍ରାଣୀକୁ ଦେବତା କରେ । ଧର୍ମ କେବଳ ଏହା କରିବାକୁ ସମର୍ଥ । ମାନବ-ସମାଜରୁ ଧର୍ମକୁ ବାଦ ଦିଅ—ଅବଶିଷ୍ଟ କଅଣ ରହିବ ? ଧର୍ମକୁ ବାଦ ଦେଲେ ଏହି ସଂସାର ଶ୍ୱାପଦସମାକୀର୍ଣ୍ଣ ଅରଣ୍ୟରେ ପରିଣତ ହେବ । ଇନ୍ଦ୍ରିୟସୁଖ ମାନବ ଜୀବନର ଲକ୍ଷ୍ୟ ନୁହେଁ, ଜ୍ଞାନ ହିଁ ସମସ୍ତ ପ୍ରାଣୀଙ୍କର ଲକ୍ଷ୍ୟ । ଆମେ ଦେଖୁଛେ ପଶୁଜାତି ଇନ୍ଦ୍ରିୟ-ସୁଖରେ ଯେତେଦୂର ପ୍ରୀତି ଅନୁଭବ କରନ୍ତି, ମାନବ ବୁଦ୍ଧିଶକ୍ତି ପରିଚାଳନା କରି ତଦପେକ୍ଷା ଅଧିକ ସୁଖ ଅନୁଭବ କରିଥାଏ । ଏହା ମଧ୍ୟ ଆମେ ଦେଖିବାକୁ ପାଉଛେ ଯେ, ବୁଦ୍ଧି ଓ ବିଚାର-ଶକ୍ତି ପରିଚାଳନା ଅପେକ୍ଷା ମାନବ ଆଧ୍ୟାତ୍ମିକ ସୁଖରେ ଅଧିକତର ସୁଖ ବୋଧ କରିଥାଏ । ତେଣୁ ଅଧ୍ୟାତ୍ମ-ଜ୍ଞାନକୁ ନିଶ୍ଚୟ ସର୍ବଶ୍ରେଷ୍ଠ ଜ୍ଞାନ ବୋଲି ବୁଝିବାକୁ ହେବ । ଏହି ଜ୍ଞାନଲାଭ ହେବା ସଙ୍ଗେ ସଙ୍ଗେ ଆନନ୍ଦଲାଭ ହେବ । ଜଗତର ଏହି ସକଳ ବସ୍ତୁ ସେହି ପ୍ରକୃତ ଜ୍ଞାନ ଓ ଆନନ୍ଦର ଛାୟାମାତ୍ର—ତାହାର ତିନି ଚାରି ତଳସ୍ତରର ପ୍ରକାଶ ମାତ୍ର ।

ଆଉ ଗୋଟିଏ ପ୍ରଶ୍ନ ହେଉଛି, ଆମମାନଙ୍କର ଚରମ ଲକ୍ଷ୍ୟ କଅଣ ? ଆଜିକାଲି କୁହାଯାଉଛି ଯେ—ମାନବ ଅନନ୍ତ ଉନ୍ନତିର ପଥରେ ଚାଲିଛି । ସେ କ୍ରମାଗତ ଅଗ୍ରସର ହେଉଛି; କିନ୍ତୁ ତାହାର କୌଣସି ଚରମ ଲକ୍ଷ୍ୟ ନାହିଁ । କ୍ରମାଗତ ସମୀପବର୍ତ୍ତୀ ହେବା ଅଥଚ କୌଣସି ଲକ୍ଷ୍ୟସ୍ଥଳରେ ନ ପହଞ୍ଚିବା—ଏହାର ଅର୍ଥ ଯାହା ହେଉ ପଛେ, ଏ ତତ୍ତ୍ୱ ଯେତେ ଅଦ୍ଭୁତ ହେଉ ପଛେ, ଏହା ଅସମ୍ଭବ—ଏ କଥା ଅତି ସହଜରେ ବୋଧଗମ୍ୟ ହୋଇପାରେ । ସରଳ ରେଖାରେ କେବେହେଲେ କୌଣସି ପ୍ରକାର ଗତି ହୋଇପାରେ

କି ? ଗୋଟିଏ ସରଳରେଖାକୁ ଅନନ୍ତଭାବରେ ପ୍ରସାରିତ କଲେ ତାହା ଏକ ବୃତ୍ତରେ ପରିଣତ ହେବ । ତାହା ଯେଉଁଠି ଆରମ୍ଭ ହୋଇଛି, ସେହିଠାକୁ ଫେରିଆସିବ । ଆମେ ଯେଉଁଠାରେ ଆରମ୍ଭ କରିଛେ, ସେହିଠାରେ ହିଁ ଶେଷ କରିବାକୁ ହେବ । ଈଶ୍ୱରଙ୍କଠାରୁ ଯେତେବେଳେ ଆମର ଗତି ଆରମ୍ଭ ହୋଇଛି, ସେହି ଈଶ୍ୱରଙ୍କ ପାଖକୁ ନିଶ୍ଚୟ ପ୍ରତ୍ୟାବର୍ତ୍ତନ କରିବାକୁ ହେବ । ତେବେ, ବର୍ତ୍ତମାନ ଅବସ୍ଥାରେ କଅଣ କରିବାକୁ ହେବ ? ସେଠାରେ ପହଞ୍ଚିବା ପାଇଁ ତଦୁପଯୋଗୀ ବିଶେଷ ବିଶେଷ କେତେଗୁଡ଼ିଏ ଝିକିନିଖି କାର୍ଯ୍ୟ କରିବାକୁ ପଡ଼ିବ—ତାହା ଅନନ୍ତ କାଳ ଧରି କରିବାକୁ ହେବ ।

ଏଠାରେ ଆଉ ଏକ ପ୍ରଶ୍ନ ହେଉଛି—ଆମେ ଉନ୍ନତି ପଥରେ ଅଗ୍ରସର ହେଉ ହେଉ ଧର୍ମର ନୂତନ ନୂତନ ସତ୍ୟ କଅଣ ଆବିଷ୍କାର କରିବା ନାହିଁ ? ଏହା 'ହଁ' ହୋଇପାରେ, 'ନା' ମଧ୍ୟ ହୋଇପାରେ । ପ୍ରଥମତଃ ଏ କଥା ବୁଝିବାକୁ ହେବ ଯେ ଧର୍ମ ସମ୍ବନ୍ଧରେ ଆଉ ଅଧିକ କିଛି ଜାଣିବାର ନାହିଁ । ଆପଣମାନେ ଜଗତର ସକଳ ଧର୍ମରେ ଦେଖିବେ, ଭିନ୍ନଧର୍ମାବଲମ୍ବୀମାନେ କହୁଥାଆନ୍ତି, ଆମମାନଙ୍କ ଭିତରେ ଗୋଟାଏ ଏକତ୍ୱ ରହିଛି । ସୁତରାଂ ଈଶ୍ୱରଙ୍କ ସହିତ ଯେତେବେଳେ ସମସ୍ତଙ୍କର ଏକତ୍ୱ ପୂର୍ବରୁ ହିଁ ରହିଛି, ସେତେବେଳେ ଏହି ଦୃଷ୍ଟିକୋଣରୁ ଆଉରି ଅଧିକ ଉନ୍ନତି ଆଉ କଅଣ ହୋଇପାରେ ? ଜ୍ଞାନ କହିଲେ ଏହି ଏକତ୍ୱର ଆବିଷ୍କାର । ମୁଁ ଆପଣମାନଙ୍କୁ ଆଜି ନରନାରୀରୂପେ ପୃଥକ୍ ପୃଥକ୍ ଦେଖୁଛି—ଏହା ହେଉଛି ବହୁତ୍ୱ । ଯେତେବେଳେ ମୁଁ ଏ ଦୁଇଭାବକୁ ଏକତ୍ର କରି ଦେଖିବି, ଆପଣମାନଙ୍କୁ କେବଳ 'ମାନବଜାତି' ବୋଲି ଅଭିହିତ କରିବି, ସେତେବେଳେ ତାହା ବୈଜ୍ଞାନିକ ଜ୍ଞାନ ବୋଲି ବୁଝିବାକୁ ହେବ । ଉଦାହରଣ ସ୍ୱରୂପ ରସାୟନ-ଶାସ୍ତ୍ରର କଥା ଧରିଯାଉ । ରସାୟନିକମାନେ ସର୍ବପ୍ରକାର ଜ୍ଞାତ ବସ୍ତୁକୁ ସେହି ସବୁର ମୂଳ ଉପାଦାନରେ ପରିଣତ କରିବାର ଚେଷ୍ଟା କରୁଛନ୍ତି, ଆଉ ଯଦି ସମ୍ଭବ ହୁଏ, ତେବେ ଏକ ପଦାର୍ଥରୁ ଯେ ଏ ସକଳ ଉତ୍ପନ୍ନ ହୋଇଛି, ତାହା ମଧ୍ୟ ପ୍ରତିପନ୍ନ କରିବାକୁ ଚେଷ୍ଟା କରୁଛନ୍ତି । ଏପରି ସମୟ ଆସିପାରେ, ଯେତେବେଳେ ସେମାନେ ସକଳ ଧାତୁର ମୂଳୀଭୂତ ଏକ ମୌଳିକ ପଦାର୍ଥ ଆବିଷ୍କାର କରିବେ । ଏହି ଅବସ୍ଥାରେ ଯଦି କେବେବେଳେ ସେମାନେ ପହଞ୍ଚନ୍ତି, ତାହାହେଲେ ସେମାନେ ଅଧିକ ଅଗ୍ରସର ହୋଇପାରିବେ ନାହିଁ । ସେହିଠାରେ ରସାୟନ ବିଦ୍ୟା ସମ୍ପୂର୍ଣ୍ଣ ହେବ । ଧର୍ମ-ବିଜ୍ଞାନ ସମ୍ବନ୍ଧରେ ମଧ୍ୟ ଏହି କଥା । ଯଦି ଆମେ ପୂର୍ଣ୍ଣ ଏକତ୍ୱକୁ ଆବିଷ୍କାର କରିପାରିବା, ତେବେ ତାହା ପରେ ଅଧିକ ଉନ୍ନତି ସମ୍ଭବ ନୁହେଁ ।

ଏହା ପରେ ପ୍ରଶ୍ନ ଉଠୁଛି—ଏହିପରି ଏକତ୍ୱ ଲାଭ କଅଣ ସମ୍ଭବ ? ଭାରତରେ ଅତି ପ୍ରାଚୀନ କାଳରୁ ଧର୍ମ ଓ ଦର୍ଶନ-ବିଜ୍ଞାନର ଆବିଷ୍କାରର ଚେଷ୍ଟା ଚାଲିଛି; କାରଣ, ପାଶ୍ଚାତ୍ୟ ଦେଶରେ ଏହିଗୁଡ଼ିକୁ ଯେପରି ପୃଥକ୍ ଭାବରେ ଦେଖିଆଆନ୍ତି, ହିନ୍ଦୁମାନେ ସେପରି ଦେଖନ୍ତି ନାହିଁ । ଆମେମାନେ ଧର୍ମ ଓ ଦର୍ଶନକୁ ଏକ ବସ୍ତୁର ଦୁଇଟି ବିଭିନ୍ନ ଦିଗ ବୋଲି ବିବେଚନା କରୁ । ଆମର ଧାରଣା ଉଭୟେ ହିଁ ତୁଲ୍ୟ ଭାବରେ ଯୁକ୍ତି ଓ

ବୈଜ୍ଞାନିକ ସତ୍ୟ ଉପରେ ପ୍ରତିଷ୍ଠିତ ହେବା ଉଚିତ । ମୋର୍ ପରବର୍ତ୍ତୀ ବକ୍ତୃତାରେ ମୁଁ ପ୍ରଥମେ ଭାରତର—କେବଳ ଭାରତର କାହିଁକି, ସମଗ୍ର ଜଗତର—ଅନ୍ୟତମ ପ୍ରାଚୀନ ଦର୍ଶନ—ସାଙ୍ଖ୍ୟଦର୍ଶନକୁ ବୁଝାଇବାକୁ ଚେଷ୍ଟା କରିବି । ଏହି ସାଙ୍ଖ୍ୟ ଦର୍ଶନର ଶ୍ରେଷ୍ଠ ବ୍ୟାଖ୍ୟାକାର କପିଳ, ସମୁଦାୟ ହିନ୍ଦୁ ମନୋ-ବିଜ୍ଞାନର ଜନକ । ସେ ଯେଉଁ ପ୍ରାଚୀନ ଦର୍ଶନପ୍ରଣାଳୀର ଉପଦେଶ ଦେଇ ଯାଇଛନ୍ତି, ତାହା ଏବେ ମଧ୍ୟ ପ୍ରଚଳିତ ଭାରତୀୟ ଦର୍ଶନପ୍ରଣାଳୀସମୂହର ଭିତ୍ତିସ୍ୱରୂପ । ଏହି ସକଳ ଦର୍ଶନର ଅନ୍ୟାନ୍ୟ ବିଷୟରେ ଯେତେ ମତଭେଦ ଥାଉନା କାହିଁକି, ସମସ୍ତେ କିନ୍ତୁ ସାଙ୍ଖ୍ୟ ମନୋବିଜ୍ଞାନକୁ ଗ୍ରହଣ କରିଛନ୍ତି ।

ତାହା ପରେ ମୁଁ ଦେଖାଇବାକୁ ଚେଷ୍ଟା କରିବି ଯେ, ସାଙ୍ଖ୍ୟଦର୍ଶନର ସ୍ୱାଭାବିକ ପରିଣତି ବେଦାନ୍ତ କିପରି ଏହି ସିଦ୍ଧାନ୍ତକୁ ଗ୍ରହଣ କରି ଆହୁରି ଅଧିକ ଅଗ୍ରସର ହୋଇଛି । କପିଳକର୍ତ୍ତୃକ ଉପଦିଷ୍ଟ ସୃଷ୍ଟି ବା ବ୍ରହ୍ମାଣ୍ଡତତ୍ତ୍ୱ ସହିତ ଏକମତ ହେଲେ ମଧ୍ୟ, ବେଦାନ୍ତ ଦ୍ୱୈତବାଦକୁ ଚରମ ସିଦ୍ଧାନ୍ତ ବୋଲି ଗ୍ରହଣ କରିବାକୁ ପ୍ରସ୍ତୁତ ନୁହେଁ । ଏହା ବିଜ୍ଞାନ ଓ ଧର୍ମ ଉଭୟର ଚରମ ଲକ୍ଷ୍ୟସ୍ୱରୂପ, ଚରମ ଏକତ୍ୱର ଅନୁସନ୍ଧାନ କରିଛି । ଏହି ବିଷୟ କି ଉପାୟରେ ସେମାନେ ସାଧିତ କରିଛନ୍ତି, ତାହା ଏହି ବକ୍ତୃତା-ମାଳାର ସର୍ବଶେଷ ବକ୍ତୃତାରେ ବୁଝାଇବାକୁ ଚେଷ୍ଟା କରିବି ।

## ସାଙ୍ଖ୍ୟରେ ବ୍ରହ୍ମାଣ୍ଡତତ୍ତ୍ୱ

ଦୁଇଟି ଶବ୍ଦ ଅଛି—କ୍ଷୁଦ୍ର ବ୍ରହ୍ମାଣ୍ଡ ଓ ବୃହତ୍ ବ୍ରହ୍ମାଣ୍ଡ, ଅନ୍ତର ଓ ବହିଃ । ଆମେମାନେ ଅନୁଭୂତିଦ୍ୱାରା ହିଁ ଏହି ଉଭୟରୁ ସତ୍ୟଲାଭ କରିଥାଉ; ଆଭ୍ୟନ୍ତର ଅନୁଭୂତି ଦ୍ୱାରା ସଂଗୃହୀତ ସତ୍ୟସମୂହ ମନୋବିଜ୍ଞାନ, ଦର୍ଶନ ଓ ଧର୍ମ ନାମରେ ପରିଚିତ; ଆଉ ବାହ୍ୟ ଅନୁଭୂତିରୁ ଭୌତିକ ବିଜ୍ଞାନର ଉତ୍ପତ୍ତି । ବର୍ତ୍ତମାନ କଥା ହେଉଛି, ଯାହା ସମ୍ପୂର୍ଣ୍ଣ ସତ୍ୟ, ଏହି ଉଭୟ ଜଗତର ଅନୁଭୂତି ସହିତ ତାହାର ସମନ୍ୱୟ ରହିବ । କ୍ଷୁଦ୍ର ବ୍ରହ୍ମାଣ୍ଡ, ବୃହତ୍ ବ୍ରହ୍ମାଣ୍ଡର ସତ୍ୟକୁ ସାକ୍ଷ୍ୟ ପ୍ରଦାନ କରିବ, ସେହିପରି ବୃହତ୍ ବ୍ରହ୍ମାଣ୍ଡ ମଧ୍ୟ କ୍ଷୁଦ୍ର ବ୍ରହ୍ମାଣ୍ଡର ସତ୍ୟକୁ ସମର୍ଥନ ଦେବ । ଭୌତିକ ସତ୍ୟର ଅବିକଳ ପ୍ରତିକୃତି ଅନ୍ତର୍ଜଗତରେ ଥିବା ଦରକାର । ପୁଣି ଅନ୍ତର୍ଜଗତର ସତ୍ୟର ପ୍ରମାଣ ମଧ୍ୟ ବହିର୍ଜଗତରେ ମିଳିବା ଆବଶ୍ୟକ । ତଥାପି, ଆମେମାନେ କାର୍ଯ୍ୟତଃ ଦେଖିବାକୁ ପାଉ ଯେ, ଏହି ସକଳ ସତ୍ୟ ଅଧିକାଂଶ ସ୍ଥଳରେ ପରସ୍ପରର ବିରୋଧୀ । ଜଗତର ଇତିହାସରେ ଦେଖାଯାଏ, 'ଅନ୍ତର୍ବାଦୀ'ମାନଙ୍କର ପ୍ରାଧାନ୍ୟ ହେବା ସଙ୍ଗେ ସଙ୍ଗେ ସେମାନେ 'ବହିର୍ବାଦୀ' ସହିତ ବିବାଦ ଆରମ୍ଭ କରନ୍ତି । ବର୍ତ୍ତମାନ ସମୟରେ 'ବହିର୍ବାଦୀ' ଅର୍ଥାତ୍ ବୈଜ୍ଞାନିକମାନେ ପ୍ରାଧାନ୍ୟ ଲାଭ କରିଛନ୍ତି, ଆଉ ସେମାନେ ମନସ୍ତତ୍ତ୍ୱବିତ୍ ଓ ଦାର୍ଶନିକମାନଙ୍କର ଅନେକ ସିଦ୍ଧାନ୍ତକୁ

ଉଡ଼ାଇ ଦେଲେଣି । ମୋର କ୍ଷୁଦ୍ର ଜ୍ଞାନରେ ମୁଁ ଯେତେଦୂର ବୁଝିଛି, ମନୋବିଜ୍ଞାନ ସହିତ ଆଧୁନିକ ଜଡ଼ ବିଜ୍ଞାନର ସମ୍ପୂର୍ଣ୍ଣ ସାମଞ୍ଜସ୍ୟ ରହିଛି ।

ପ୍ରକୃତି ସକଳ ବ୍ୟକ୍ତିଙ୍କୁ ସକଳ ବିଷୟରେ ବଡ଼ ହେବାର ଶକ୍ତି ଦେଇ ନାହିଁ । ସେହିପରି ସକଳ ଜାତିକୁ ମଧ୍ୟ ସକଳ ପ୍ରକାର ବିଦ୍ୟାନୁସନ୍ଧାନରେ ସମାନ ଶକ୍ତି-ସମ୍ପନ୍ନ କରି ପ୍ରକୃତି ଗଢ଼ି ନାହିଁ । ଆଧୁନିକ ଇଉରୋପୀୟ ଜାତିର ଲୋକେ ବାହ୍ୟ, ଭୌତିକତତ୍ତ୍ୱ ଅନୁସନ୍ଧାନରେ ସୁଦକ୍ଷ । ପ୍ରାଚୀନ ଇଉରୋପୀୟମାନେ ମଧ୍ୟ ମାନବର ଅଭ୍ୟନ୍ତର ଭାଗ ଅନୁସନ୍ଧାନରେ ସେତେ ପଟୁ ନ ଥିଲେ । ଅନ୍ୟ ପକ୍ଷରେ ପ୍ରାଚ୍ୟ ଜଗତର ଲୋକେ ବାହ୍ୟ ଭୌତିକ-ଜଗତର ତତ୍ତ୍ୱାନୁସନ୍ଧାନରେ ସେତେ ଦକ୍ଷ ନ ଥିଲେ; କିନ୍ତୁ ଅନ୍ତସ୍ତତ୍ତ୍ୱ-ଗବେଷଣାରେ ଖୁବ୍ ଦକ୍ଷତା ଦେଖାଇ ଯାଇଛନ୍ତି । ଏଥିପାଇଁ ଆମେମାନେ ଦେଖିବାକୁ ପାଉ, ପ୍ରାଚ୍ୟ ଜାତିର ଭୌତିକ ଜଗତର ମତ ସହିତ ପାଶ୍ଚାତ୍ୟ ବୈଜ୍ଞାନିକମାନଙ୍କର ମତ ମିଳେ ନାହିଁ, ପୁଣି ପାଶ୍ଚାତ୍ୟ ମନୋବିଜ୍ଞାନ ପ୍ରାଚ୍ୟଜାତିର ଏହି ତତ୍ତ୍ୱବିଜ୍ଞାନ ସହିତ ଖାପ ଖାଏ ନାହିଁ । ପାଶ୍ଚାତ୍ୟ ବୈଜ୍ଞାନିକଗଣ ପ୍ରାଚ୍ୟ ଭୂତ-ବିଜ୍ଞାନବାଦୀମାନଙ୍କର ସମାଲୋଚନା କରିଛନ୍ତି । ତାହାହେଲେ ମଧ୍ୟ ଏ ଉଭୟେ ସତ୍ୟ ଉପରେ ପ୍ରତିଷ୍ଠିତ । ଆଗରୁ ମୁଁ ଯେପରି କହିଛି, ତାହା ଯେକୌଣସି ବିଦ୍ୟା ହେଉନା କାହିଁକି, ସତ୍ୟ ମଧ୍ୟରେ ପରସ୍ପର ବିରୋଧ ରହିପାରେ ନାହିଁ, ଅଭ୍ୟନ୍ତର ସତ୍ୟ ସହିତ ବାହ୍ୟ ସତ୍ୟର ସମନ୍ୱୟ ରହିଛି ।

ଆମେମାନେ ଆଧୁନିକ ଜ୍ୟୋତିର୍ବିଦ୍ ଓ ବୈଜ୍ଞାନିକମାନଙ୍କର ମତାନୁଯାୟୀ ବ୍ରହ୍ମାଣ୍ଡର ସୃଷ୍ଟି ସମ୍ବନ୍ଧୀୟ ମତ ଯେ କଅଣ ତାହା ଜାଣିଛେ । ଆହୁରି ମଧ୍ୟ ଏ କଥା ଜାଣିଛେ ଯେ, ଏହା ସେ କାଳର ଧର୍ମବାଦୀମାନଙ୍କର କିପରି ଭୟଙ୍କର କ୍ଷତି କରିଛି । ଗୋଟିଏ ଗୋଟିଏ ନୂତନ ନୂତନ ବୈଜ୍ଞାନିକ ସତ୍ୟ ଆବିଷ୍କୃତ ହେବା ସଙ୍ଗେ ସଙ୍ଗେ ସେମାନଙ୍କ ଘରେ ସତେ ଯେପରି ଗୋଟିଏ ଗୋଟିଏ ବୋମା ପଡ଼ିଛି, ଏବଂ ସେଥିପାଇଁ ସେମାନେ ସବୁ ଯୁଗରେ ଏହି ସକଳ ବୈଜ୍ଞାନିକ ଅନୁସନ୍ଧାନ ବନ୍ଦ କରିବାକୁ ଚେଷ୍ଟା କରିଛନ୍ତି । ବ୍ରହ୍ମାଣ୍ଡତତ୍ତ୍ୱ ଓ ତାହାର ଆନୁଷଙ୍ଗିକ ବିଷୟ ସମ୍ବନ୍ଧରେ ପ୍ରାଚ୍ୟଜାତିର ମନସ୍ତତ୍ତ୍ୱ ଓ ବିଜ୍ଞାନ ଦୃଷ୍ଟିରୁ କି ଧାରଣା ଥିଲା, ଅମେ ପ୍ରଥମେ ଏଠାରେ ତାହାର ଆଲୋଚନା କରିବା । ତାହାହେଲେ ଆପଣମାନେ ଦେଖିବେ ଯେ, କିପରି ଆଶ୍ଚର୍ଯ୍ୟଜନକ ଭାବରେ ଆଧୁନିକ ବିଜ୍ଞାନର ସମୁଦାୟ ଆଧୁନିକତମ ଆବିଷ୍କାର ସହିତ ସେମାନଙ୍କର ସାମଞ୍ଜସ୍ୟ ରହିଛି, ପୁଣି ଯଦି କେଉଁଠାରେ କିଛି ଅସମ୍ପୂର୍ଣ୍ଣତା ରହିଥାଏ, ତାହା ଆଧୁନିକ ବିଜ୍ଞାନର ଅସମ୍ପୂର୍ଣ୍ଣତା । ଇଂରାଜୀରେ ଆମେ ସମସ୍ତେ Nature ଶବ୍ଦ ବ୍ୟବହାର କରୁଛେ । ପ୍ରାଚୀନ ହିନ୍ଦୁ ଦାର୍ଶନିକଗଣ ଏହାକୁ ଦୁଇଟି ବିଭିନ୍ନ ନାମରେ ଅଭିହିତ କରିଛନ୍ତି; ପ୍ରଥମ 'ପ୍ରକୃତି' ଇଂରାଜୀ Nature ଶବ୍ଦ ସହିତ ପ୍ରାୟ ସମାନାର୍ଥକ, ଦ୍ୱିତୀୟଟି ଅପେକ୍ଷାକୃତ ବୈଜ୍ଞାନିକ ନାମ 'ଅବ୍ୟକ୍ତ'—ଯାହା ବ୍ୟକ୍ତ ବା ପ୍ରକାଶିତ ବା ଭେଦାତ୍ମକ ନୁହେଁ—ତହିଁରୁ ସକଳ ପଦାର୍ଥ ଉତ୍ପନ୍ନ ହୋଇଛି; ତହିଁରୁ ଅଣୁ ପରମାଣୁ ସମୁଦାୟ ଆସିଛି, ତହିଁରୁ ଭୂତ,

ଜଡ଼ବସ୍ତୁ, ଶକ୍ତି, ମନ, ବୁଦ୍ଧି ସମୁଦାୟ ଆସିଛ । ଏହା ଅତି ବିସ୍ମୟକର ଯେ, ଭାରତୀୟ ଦାର୍ଶନିକମାନେ ବହୁଯୁଗ ପୂର୍ବରୁ ହିଁ କହି ଯାଇଛନ୍ତି—ମନ ସୂକ୍ଷ୍ମ ଜଡ଼ ମାତ୍ର । ଆମ-ମାନଙ୍କର ଆଧୁନିକ ଜଡ଼ବାଦୀମାନେ 'ଦେହ ଯେପରି ପ୍ରକୃତିରୁ ପ୍ରସୂତ, ମନ ମଧ୍ୟ ତଦ୍ରୂପ' ଏହା ବ୍ୟତୀତ ଆଉ ଅଧିକା କଅଣ ବୁଝାଇବାକୁ ଚେଷ୍ଟା କରୁଛନ୍ତି କି ? ଚିନ୍ତା ସମ୍ବନ୍ଧରେ ମଧ୍ୟ ସେହି କଥା କ୍ରମଶଃ ଆମେ ବୁଝିପାରିବା ଯେ ବୁଦ୍ଧି ମଧ୍ୟ ସେହି ଏକ ଅବ୍ୟକ୍ତ ନାମଧେୟ ପ୍ରକୃତିରୁ ଜାତ ହୋଇଛି ।

ପ୍ରାଚୀନ ଆଚାର୍ଯ୍ୟଗଣ ଏହି ଅବ୍ୟକ୍ତର ଲକ୍ଷଣ କହିଛନ୍ତି—ତିନୋଟି ଶକ୍ତିର ସାମ୍ୟାବସ୍ଥା । ସେଥିରୁ ଗୋଟିକର ନାମ ସତ୍ତ୍ୱ, ଦ୍ୱିତୀୟଟି ରଜଃ ଓ ତୃତୀୟଟିର ନାମ ତମଃ । ତମଃ—ସର୍ବନିମ୍ନତମ ଶକ୍ତି, ଆକର୍ଷଣସ୍ୱରୂପ; ରଜଃ—ତାହା ଅପେକ୍ଷା କିଞ୍ଚିତ୍ ଉଚ୍ଚତର, ଏହା ବିକର୍ଷଣସ୍ୱରୂପ ଏବଂ ସର୍ବୋଚ୍ଚ ଶକ୍ତି ଏହି ଉଭୟର ସଂଯମସ୍ୱରୂପ, ତାହା ହେଉଛି—ସତ୍ତ୍ୱ । ଅତଏବ, ଯେତେବେଳେ ଏହି ଆକର୍ଷଣ ଓ ବିକର୍ଷଣରୂପକ ଦୁଇଶକ୍ତି ସତ୍ତ୍ୱଦ୍ୱାରା ସମ୍ପୂର୍ଣ୍ଣ ସଂଯତ ହୁଅନ୍ତି ବା ସମ୍ପୂର୍ଣ୍ଣ ସାମ୍ୟାବସ୍ଥାରେ ଥାଆନ୍ତି, ସେତେବେଳେ ସୃଷ୍ଟି ବା ବିକାର ରହେ ନାହିଁ, କିନ୍ତୁ ଯେତେବେଳେ ଏହି ସାମ୍ୟାବସ୍ଥା ନଷ୍ଟ ହୁଏ, ସେତେବେଳେ ଏମାନଙ୍କର ସାମଞ୍ଜସ୍ୟ ନଷ୍ଟ ହୋଇଯାଏ ଏବଂ ଏମାନଙ୍କ ଭିତରେ ଗୋଟିଏ ଶକ୍ତି ଅନ୍ୟ ଦୁଇଟିଠାରୁ ପ୍ରବଳତର ହୋଇ ଉଠେ; ସେତେବେଳେ ପରିବର୍ତ୍ତନ ଓ ଗତି ଆରମ୍ଭ ହୁଏ ଏବଂ ଏହି ସମୁଦାୟର ପରିଣାମ ଘଟେ । ଏହିପରି ବ୍ୟାପାର ଚକ୍ରଗତିରେ ଚାଲୁଛି; ଅର୍ଥାତ୍ ଏକ ସମୟ ଆସେ—ଯେତେବେଳେ କି ସାମ୍ୟାବସ୍ଥା ଭାଙ୍ଗିଯାଏ; ସେତେ-ବେଳେ ଏହି ବିଭିନ୍ନ ଶକ୍ତି-ସମୁଦୟ ବିଭିନ୍ନ ରୂପରେ ସମ୍ମିଳିତ ହୁଅନ୍ତି; ଆଉ ସେତିକିବେଳେ ଏହି ବ୍ରହ୍ମାଣ୍ଡ ପ୍ରକାଶିତ ହୁଏ । ପୁଣି ଅନ୍ୟ ଏକ ସମୟ ଆସେ, ଯେତେବେଳେ କି ସକଳ ବସ୍ତୁର ସେହି ଆଦିମ ସାମ୍ୟାବସ୍ଥାକୁ ପ୍ରତ୍ୟାବର୍ତ୍ତନ ହେବାର ଉପକ୍ରମ ହୁଏ; ଆହୁରି ମଧ୍ୟ ଏପରି ସମୟ ଆସେ, ଯେତେବେଳେ ଯାହା କିଛି ବ୍ୟକ୍ତଭାବାପନ୍ନ, ସେହି ସମସ୍ତର ସମ୍ପୂର୍ଣ୍ଣ ଅଭାବ ଘଟେ । ପୁଣି କିଛିକାଳ ପରେ ଏହି ଅବସ୍ଥା ନଷ୍ଟ ହୋଇ ଏହି ଶକ୍ତିସମୂହ ବହିର୍ଦ୍ଦେଶରେ ପ୍ରକାଶିତ ହେବାର ଉପକ୍ରମ ହୁଏ, ଏବଂ ବ୍ରହ୍ମାଣ୍ଡ ଧୀରେ ଧୀରେ ତରଙ୍ଗାକାରରେ ବହିର୍ଗତ ହୁଏ । ଜଗତର ସକଳ ଗତି ହିଁ ତରଙ୍ଗାକାରରେ ହୁଏ—ଥରେ ଉତ୍ଥାନ ଓ ଥରେ ପତନ ।

ପ୍ରାଚୀନ ଦାର୍ଶନିକମାନଙ୍କ ମଧ୍ୟରୁ କାହାର କାହାର ମତ ଯେ, ସମଗ୍ର ବ୍ରହ୍ମାଣ୍ଡ କିଛି ଦିନ ପାଇଁ ଏକାବେଳକେ ଲୟପ୍ରାପ୍ତ ହୋଇଯାଏ; ପୁଣି ଆଉ କାହାର କାହାର ମତ ଯେ, ଏ ବ୍ରହ୍ମାଣ୍ଡର ଅଂଶବିଶେଷରେ ଏହି ପ୍ରଳୟ-ବ୍ୟାପାର ସଂଘଟିତ ହୋଇଥାଏ । ଅର୍ଥାତ୍ ମନେକରନ୍ତୁ ଆମର ଏହି ସୌରଜଗତ ଲୟପ୍ରାପ୍ତ ହୋଇ ଅବ୍ୟକ୍ତ ଅବସ୍ଥାକୁ ଗତି କଲା, କିନ୍ତୁ ସେହି ସମୟରେ ଅନ୍ୟାନ୍ୟ ସହସ୍ର ଜଗତରେ ତାହାର ଠିକ୍ ବିପରୀତ କାଣ୍ଡ ଘଟୁଛି । ମୁଁ ଏହି ଦ୍ୱିତୀୟ ମତଟିର ଅର୍ଥାତ୍ 'ପ୍ରଳୟ

ଯୁଗପତ୍ ସକଳ ଜଗତରେ ସଂଘଟିତ ହୁଏ ନାହିଁ, ବିଭିନ୍ନ ଜଗତରେ ବିଭିନ୍ନ ବ୍ୟାପାର ଚାଲିଥାଏ'—ଏହି ମତର ଅଧିକ ପକ୍ଷପାତୀ। ଯାହା ହେଉ ମୂଳ କଥାଟାରେ ଉଭୟେ ଏକମତ, ଅର୍ଥାତ୍ ଆମେ ଯାହା କିଛି ଦେଖୁଛେ ତାହା ହେଉଛି ଏହି ସମଗ୍ର ପ୍ରକୃତି କ୍ରମାନ୍ୱୟରେ ଉତ୍ଥାନ-ପତନ ନିୟମରେ ଅଗ୍ରସର ହେଉଛି। ଏହି ସଂପୂର୍ଣ୍ଣ ସାମ୍ୟାବସ୍ଥାପ୍ରାପ୍ତିକୁ 'କଳ୍ପାନ୍ତ' କହନ୍ତି। ସମଗ୍ର କଳ୍ପଟି ଏହି କ୍ରମବିକାଶ ଓ କ୍ରମସଂକୋଚ—ଭାରତର ଈଶ୍ୱରବାଦୀମାନେ ଈଶ୍ୱରଙ୍କ ନିଃଶ୍ୱାସ-ପ୍ରଶ୍ୱାସ ସହିତ ଏହାକୁ ତୁଳନା କରିଛନ୍ତି। ଈଶ୍ୱର ଯେପରି ନିଃଶ୍ୱାସ ତ୍ୟାଗ କଲେ, ତହିଁରୁ ଜଗତ ସୃଷ୍ଟି ହୁଏ; ପୁଣି ତାହା ତାଙ୍କର ପାଖରେ ପ୍ରତ୍ୟାବର୍ତ୍ତନ କରେ । ପ୍ରଳୟବେଳେ ଜଗତ କି ଅବସ୍ଥାରେ ରହେ ? ତାହା ଯେତେବେଳେ ବର୍ତ୍ତମାନ ଥାଏ, ତେବେ ସୂକ୍ଷ୍ମତର ରୂପରେ ବା କାରଣାବସ୍ଥାରେ ଥାଏ। ଦେଶକାଳନିମିତ୍ତ ସେଠାରେ ମଧ୍ୟ ବିଦ୍ୟମାନ ଥାଏ, ତେବେ ସେଗୁଡ଼ିକ ଅବ୍ୟକ୍ତଭାବ ପ୍ରାପ୍ତ ହୋଇ ରହିଥାଏ। ମାତ୍ର ଏହି ଅବ୍ୟକ୍ତ ଅବସ୍ଥାରେ ପ୍ରତ୍ୟାବର୍ତ୍ତନକୁ କ୍ରମସଂକୋଚ ବା ପ୍ରଳୟ କୁହାଯାଏ। ପ୍ରଳୟ ଓ ସୃଷ୍ଟି ବା କ୍ରମସଂକୋଚ ଓ କ୍ରମାଭିବ୍ୟକ୍ତି ଅନନ୍ତ କାଳ ଧରି ଚାଲିଛି; ଅତଏବ ଆମେ ଯେତେବେଳେ ଆଦି ବା ଆରମ୍ଭର କଥା କହୁ, ସେତେବେଳେ ଆମେ କୌଣସି ଏକ କଳ୍ପର ଆରମ୍ଭକୁ ହିଁ ଲକ୍ଷ୍ୟ କରି ଏହା କହିଥାଉ।

ଆଜିକାଲି ଆମେ ଯାହାକୁ ସ୍ଥୂଳ ବା ଜଡ଼ କହୁ, ବ୍ରହ୍ମାଣ୍ଡର ଏହି ସଂପୂର୍ଣ୍ଣ ବାହ୍ୟ ଭାଗକୁ ପ୍ରାଚୀନ ହିନ୍ଦୁ ମନସ୍ତତ୍ତ୍ୱବିଦ୍‌ମାନେ ପଞ୍ଚଭୂତ ବୋଲି କହିଛନ୍ତି। ସେମାନଙ୍କ ମତରେ ଏଥିରୁ ଗୋଟିଏ ଅବଶିଷ୍ଟମାନଙ୍କର କାରଣ, ଯେହେତୁ ଅନ୍ୟାନ୍ୟ ସକଳ ଭୂତ ଏହି ଏକ ଭୂତରୁ ଉତ୍ପନ୍ନ ହୋଇଛି । ଏହି ଭୂତ 'ଆକାଶ' ନାମରେ ଅଭିହିତ । ଆଜିକାଲି 'ଇଥର' କହିଲେ ଯାହା ବୁଝାଯାଏ, ଏହା କେତେକ ପରିମାଣରେ ତତ୍‌ସଦୃଶ, ଯଦିବା ସମ୍ପୂର୍ଣ୍ଣ ଏକ ନୁହେଁ। ଆକାଶ ହେଉଛି ଆଦିଭୂତ—ଏଥିରୁ ହିଁ ସମୁଦାୟ ସ୍ଥୂଳ ବସ୍ତୁ ଉତ୍ପନ୍ନ ହୋଇଛି, ଆଉ ଏହା ସହିତ 'ପ୍ରାଣ' ନାମକ ଆଉ ଏକ ଜିନିଷ ଅଛି—ଆମେ କ୍ରମଶଃ ଦେଖିବା ତାହା କ'ଣ। ଯେତେଦିନ ଧରି ସୃଷ୍ଟି ଥାଏ, ସେତେଦିନ ଯାଏ ଏହି ପ୍ରାଣ ଓ ଆକାଶ ଥାଏ, ସେମାନେ ନାନାରୂପରେ ମିଳିତ ହୋଇ ଏହି ସମଗ୍ର ସ୍ଥୂଳ ପ୍ରପଞ୍ଚ ଗଠନ କରିଛନ୍ତି। ଅବଶେଷରେ କଳ୍ପାନ୍ତରେ ଏମାନେ ସମୁଦାୟ ଲୟପ୍ରାପ୍ତ ହୋଇ ଆକାଶ ଓ ପ୍ରାଣର ଅବ୍ୟକ୍ତ ରୂପକୁ ପ୍ରତ୍ୟାବର୍ତ୍ତନ କରନ୍ତି । ଜଗତର ପ୍ରାଚୀନତମ ଶାସ୍ତ୍ର ଋଗ୍‌ବେଦରେ ସୃଷ୍ଟି-ବର୍ଣ୍ଣନାତ୍ମକ ଏକ ଅପୂର୍ବ କବିତ୍ୱମୟ ଶ୍ଳୋକ ଅଛି।

ନାସଦାସୀନ୍ନୋ ସଦାସୀତ୍ତଦାନୀଂ···କମାବରୀବଃ···

ତମ ଆସୀତ୍ତମସା ଗୂଢ଼ମଗ୍ରେଽପ୍ରକେତଂ ସଲିଲଂ ସର୍ବମା ଇଦମ୍।

ଅର୍ଥାତ୍, ଯେତେବେଳେ ସତ୍ ନ ଥିଲା, ଅସତ୍ ମଧ୍ୟ ନ ଥିଲା, ତମଦ୍ୱାରା ତମ ଆବୃତ ଥିଲା, ସେତେବେଳେ କଅଣ ଥିଲା ?

ଏହାର ଉତ୍ତର ଦିଆଯାଇଛି—

ଆନୀଦବାତଂ ଇତ୍ୟାଦି—ନାସଦୀୟ ସୂକ୍ତ (ଋଗ୍‌ବେଦ, ୧୦ମ ମଣ୍ଡଳ, ୧୨୯)

ସେହି (ଅନାଦି ଅନନ୍ତ ପୁରୁଷ) ଗତିଶୂନ୍ୟ ବା ନିଶ୍ଚେଷ୍ଟଭାବରେ ଥିଲେ ।

ପ୍ରାଣ ଓ ଆକାଶ ସେତେବେଳେ ସେହି ଅନନ୍ତ ପୁରୁଷ ଭିତରେ ସୁପ୍ତଭାବରେ ଥିଲେ; କିନ୍ତୁ କୌଣସି ପ୍ରକାର ବ୍ୟକ୍ତ ପ୍ରପଞ୍ଚ ନ ଥିଲା । ଏହି ଅବସ୍ଥାକୁ ଅବ୍ୟକ୍ତ ବୋଲି କହନ୍ତି—ଏହାର ଠିକ୍ ଶବ୍ଦାର୍ଥ ହେଲା ସ୍ପନ୍ଦନରହିତ ବା ଅପ୍ରକାଶିତ । ଏକ ନୂତନ କଳ୍ପର ଆରମ୍ଭରେ ଏହି ଅବ୍ୟକ୍ତ ସ୍ପନ୍ଦିତ ହୁଏ, ଆଉ ପ୍ରାଣ ଆକାଶ ଉପରେ କ୍ରମାଗତ ଆଘାତ ଦିଏ । ଆକାଶ କ୍ରମଶଃ ସ୍ଥୂଳ ହୁଏ, ପୁଣି କ୍ରମେ ଆକର୍ଷଣବିକର୍ଷଣ ଶକ୍ତିଦ୍ୱୟର ବଳରେ ପରମାଣୁ ଗଠିତ ହୁଏ । ଏହା ପୁଣି ପରେ ଆହୁରି ସ୍ଥୂଳତର ହୋଇ ଦ୍ୱିଣୁକ ଆଦିରେ ପରିଣତ ହୁଏ ଏବଂ ସର୍ବଶେଷରେ ପ୍ରାକୃତିକ ପ୍ରତ୍ୟେକ ପଦାର୍ଥ ଯାହାଦ୍ୱାରା ନିର୍ମିତ ସେହି ସକଳ ବିଭିନ୍ନ ସ୍ଥୂଳଭୂତରେ ପରିଣତ ହୁଏ ।

ଆମେ ସାଧାରଣତଃ ଦେଖିବାକୁ ପାଉ, ଲୋକେ ଏହିସବୁ ବିଷୟର ଅତି ଅଦ୍ଭୁତ ଇଂରେଜୀ ଅନୁବାଦ କରିଥାଆନ୍ତି । ଅନୁବାଦକମାନେ ଅନୁବାଦ କଲାବେଳେ ପ୍ରାଚୀନ ଦାର୍ଶନିକମାନଙ୍କର ଓ ତହିଁର ଟୀକାକାରମାନଙ୍କର ସାହାଯ୍ୟ ଗ୍ରହଣ କରନ୍ତି ନାହିଁ । ପୁଣି ସେମାନଙ୍କର ଏତେଦୂର ବିଦ୍ୟାବୁଦ୍ଧି ନାହିଁ ଯେ ନିଜେ ଏସବୁ କଥା ବୁଝିପାରିବେ । ସେମାନେ ପଞ୍ଚଭୂତ ପ୍ରଭୃତିକୁ ବାୟୁ ଅଗ୍ନି ବୋଲି ଅନୁବାଦ କରିଥାଆନ୍ତି । ଯଦି ସେମାନେ ଭାଷ୍ୟକାରମାନଙ୍କର ଭାଷ୍ୟ ଆଲୋଚନା କରୁଥାଆନ୍ତେ, ତେବେ ଦେଖିବାକୁ ପାଆନ୍ତେ ଯେ ଭାଷ୍ୟକାରମାନେ ଏହିସବୁ ପ୍ରତି ଲକ୍ଷ୍ୟ କରନ୍ତି ନାହିଁ । ପ୍ରାଣର ବାରମ୍ବାର ଆଘାତ ଫଳରେ ଆକାଶରୁ ବାୟୁ ବା ଆକାଶର ସ୍ପନ୍ଦନଶୀଳ ଅବସ୍ଥା ଉପସ୍ଥିତ ହୁଏ, ତହିଁରୁ ପରେ ବାଷ୍ପୀୟ ପଦାର୍ଥର ଉତ୍ପତ୍ତି ହୁଏ । ସ୍ପନ୍ଦନ କ୍ରମଶଃ ଦ୍ରୁତରୁ ଦ୍ରୁତତର ହେଲେ ଉତ୍ତାପ ବା ତେଜ ଜାତ ହୁଏ । କ୍ରମଶଃ ଉତ୍ତାପ କମି କମି ଶୀତଳ ହୁଏ । ସେତେବେଳେ ଏହି ବାଷ୍ପୀୟପଦାର୍ଥ ତରଳ ଭାବ ଧାରଣ କରେ ଓ ତାକୁ 'ଅପ୍' ବୋଲି କହନ୍ତି । ଅବଶେଷରେ ତାହା କଠିନ ଆକାର ପ୍ରାପ୍ତ ହୁଏ, ତାହାର ନାମ 'ପୃଥିବୀ' । ସର୍ବପ୍ରଥମେ ଆକାଶର ସ୍ପନ୍ଦନଶୀଳ ଅବସ୍ଥା, ତା'ପରେ ଉତ୍ତାପ, ଉତ୍ତାପ ପରେ ତରଳାବସ୍ଥା । ତାହା ପୁଣି ଅଧିକ ଘନୀଭୂତ ହେଲେ କଠିନ ଜଡ଼ପଦାର୍ଥର ଆକାର ଧାରଣ କରେ । ଠିକ୍ ଏହାର ବିପରୀତ କ୍ରମରେ ସମୁଦାୟ ଅବ୍ୟକ୍ତାବସ୍ଥା ପ୍ରାପ୍ତ ହୁଏ । ସମସ୍ତ କଠିନ ବସ୍ତୁ ତରଳ ଆକାରରେ ପରିଣତ ହେବ, ତରଳାବସ୍ଥା ଯାଇ କେବଳ ଉତ୍ତାପ-ରାଶିରେ ପରିଣତ ହେବ, ତାହା ପୁଣି ଧୀରେ ଧୀରେ ବାଷ୍ପୀୟ ଭାବ ଧାରଣ କରିବ; ପରେ ପରମାଣୁସମୂହ ବିଶ୍ଳିଷ୍ଟ ହେବାକୁ ଆରମ୍ଭ କରିବ ଓ ସର୍ବଶେଷରେ ସମୁଦାୟ ଶକ୍ତିର ସାମଞ୍ଜସ୍ୟ ଅବସ୍ଥା ଉପସ୍ଥିତ ହୁଏ । ସେତେବେଳେ ସ୍ପନ୍ଦନ ବନ୍ଦ ହୁଏ—ଏହି ଭାବରେ କଳ୍ପାନ୍ତ ହୋଇଥାଏ । ଆଧୁନିକ ଜ୍ୟୋତିଷ ଶାସ୍ତ୍ରରୁ ଆମେମାନେ ଜାଣିପାରୁଛେ ଯେ, ଆମମାନଙ୍କର ଏହି ପୃଥିବୀ ଓ ସୂର୍ଯ୍ୟର ସେହି ଅବସ୍ଥା ପରିବର୍ତ୍ତନ ଚାଲିଛି, ଶେଷରେ ଏହି କଠିନ ଆକାର ପୃଥିବୀ ମିଳେଇଯାଇ ତରଳାକାର ଏବଂ ଅବଶେଷରେ ବାଷ୍ପୀୟ ଆକାର ଧାରଣ କରିବ ।

ଆକାଶର ସାହାଯ୍ୟ ବ୍ୟତୀତ ପ୍ରାଣ ସ୍ୱୟଂ କୌଣସି କାର୍ଯ୍ୟ କରିପାରେ ନାହିଁ । ଏହା ସମ୍ବନ୍ଧରେ ଆମେ ଏତିକ ମାତ୍ର ଜାଣୁ ଯେ, ଏହା ହେଉଛି ଗତି ବା ସ୍ପନ୍ଦନ । ଆମେ ଯେଉଁ ଗତି ଦେଖିବାକୁ ପାଉ, ତାହା ଏହି ପ୍ରାଣର ବିକାର ମାତ୍ର । ଆଉ ଯାହା କିଛି ଜଡ଼ ବା ଭୂତ ପଦାର୍ଥ ବୋଲି ଆମେ ଜାଣୁ, ଯାହା କିଛି ଆକୃତିମାନ ବା ବାଧାତ୍ମକ, ତାହା ହିଁ ଏହି ଆକାଶର ବିକାର । ଏହି ପ୍ରାଣ ସ୍ୱୟଂ ଏକାକୀ ରହିପାରେ ନାହିଁ ବା କୌଣସି ମଧ୍ୟବର୍ତ୍ତୀ ପଦାର୍ଥ ବ୍ୟତୀତ କାର୍ଯ୍ୟ କରିପାରେ ନାହିଁ ଏବଂ କୌଣସି ଅବସ୍ଥାରେ—ଏହା କେବଳ ପ୍ରାଣରୂପରେ ହିଁ ବର୍ତ୍ତମାନ ଥାଉ ଅଥବା ମହାକର୍ଷ ବା କେନ୍ଦ୍ରାତିଗା ଶକ୍ତିରୂପେ ପ୍ରାକୃତିକ ଅନ୍ୟାନ୍ୟ ଶକ୍ତିରେ ପରିଣତ ହେଉ—ଏହା ଆକାଶରୁ କେବେହେଲେ ପୃଥକ୍ ହୋଇପାରେ ନାହିଁ । ଆପଣମାନେ କେବେ ଭୂତ ବ୍ୟତୀତ ଶକ୍ତି ବା ଶକ୍ତି ବ୍ୟତୀତ ଭୂତ ଦେଖିନାହାନ୍ତି । ଆମେ ଯେଉଁଗୁଡ଼ିକୁ ଭୂତ ଓ ଶକ୍ତି କହୁ ସେଗୁଡ଼ିକ କେବଳ ଏହି ଦୁଇଟିର ସ୍ଥୂଳ ପ୍ରକାଶମାତ୍ର, ଆଉ ଏଗୁଡ଼ିକର ଅତି ସୂକ୍ଷ୍ମାବସ୍ଥାକୁ ହିଁ ପ୍ରାଚୀନ ଦାର୍ଶନିକଗଣ ପ୍ରାଣ ଓ ଆକାଶ ନାମରେ ଅଭିହିତ କରିଛନ୍ତି । ପ୍ରାଣକୁ ଆପଣମାନେ ଜୀବନୀଶକ୍ତି କହିପାରନ୍ତି; କିନ୍ତୁ ଏହାକୁ କେବଳ ମାନବଜୀବନ ଭିତରେ ସୀମାବଦ୍ଧ କଲେ, ଅଥବା ଆତ୍ମାଠାରୁ ଅଭିନ୍ନ ବୋଲି ବୁଝିଲେ ଚଳିବ ନାହିଁ । ଅତଏବ ସୃଷ୍ଟି ପ୍ରାଣ ଓ ଆକାଶର ସଂଯୋଗୋତ୍ପନ୍ନ ଏବଂ ତାହାର ଆଦି ନାହିଁ କି ଅନ୍ତ ନାହିଁ । ତାହାର ଆଦି ଅନ୍ତ ବୋଲି କିଛି ରହି ନ ପାରେ, କାରଣ ଅନନ୍ତ କାଳ ଧରି ଏହା ଚାଲିଛି ।

ଏହାପରେ ଆଉ ଗୋଟିଏ ଅତି ଦୁରୂହ ଓ ଜଟିଳ ପ୍ରଶ୍ନ ଉଠେ । କେତେକ ଇଉରୋପୀୟ ଦାର୍ଶନିକ କହିଛନ୍ତି 'ମୁଁ' ଅଛି ବୋଲି ଏହି ଜଗତ୍ ଅଛି, ଏବଂ 'ମୁଁ' ଯଦି ନ ଥାଏ, ତେବେ ଏହି ଜଗତ୍ ମଧ୍ୟ ରହିବ ନାହିଁ । ବେଳେ ବେଳେ ଏହି କଥାଟି ଏହି ଭାବରେ ପ୍ରକାଶ କରା ହୋଇଥାଏ, ଯଥା—ଯଦି ଜଗତର ସକଳଲୋକ ମରିଯାଆନ୍ତି, ମନୁଷ୍ୟ ଜାତି ଯଦି ଆଉ ନ ରହେ, ଅନୁଭୂତି ଓ ବୁଦ୍ଧିଶକ୍ତିସମ୍ପନ୍ନ କୌଣସି ପ୍ରାଣୀ ଯଦି ନ ଥାଏ, ତେବେ ଏହି ଜଗତ୍-ପ୍ରପଞ୍ଚ ମଧ୍ୟ ଆଉ ରହିବ ନାହିଁ । ଏକଥା ଅସମ୍ଭବ ବୋଲି ବୋଧ ହୋଇପାରେ, କିନ୍ତୁ କ୍ରମେ ଅମେ ସ୍ପଷ୍ଟଭାବରେ ଦେଖିବା ଯେ, ଏହା ପ୍ରମାଣ କରାଯାଇପାରେ; କିନ୍ତୁ ଏହି ଇଉରୋପୀୟ ଦାର୍ଶନିକଗଣ ଏହି ତତ୍ତ୍ୱଟି ଜାଣିଲେ ମଧ୍ୟ ମନୋବିଜ୍ଞାନ ଅନୁସାରେ ଏହାର ବ୍ୟାଖ୍ୟା କରିପାରନ୍ତି ନାହିଁ । ସେମାନେ ଏହି ତତ୍ତ୍ୱର ଆଭାସ ମାତ୍ର ପାଇଛନ୍ତି ।

ପ୍ରଥମେ ଆମେମାନେ ଏହି ପ୍ରାଚୀନ ମନୋବୈଜ୍ଞାନିକମାନଙ୍କର ଆଉଗୋଟିଏ ସିଦ୍ଧାନ୍ତ ଘେନି ଆଲୋଚନା କରିବା—ତାହା ମଧ୍ୟ ଟିକିଏ ଅଦ୍ଭୁତ ପ୍ରକାରର—ତାହା ହେଉଛି, ସ୍ଥୂଳଭୂତଗୁଡ଼ିକ ସୂକ୍ଷ୍ମଭୂତରୁ ଉତ୍ପନ୍ନ । ଯାହା କିଛି ସ୍ଥୂଳ, ତାହା କେତେକ ସୂକ୍ଷ୍ମବସ୍ତୁର ସମବାୟସ୍ୱରୂପ । ଅତଏବ ସ୍ଥୂଳଭୂତଗୁଡ଼ିକ ମଧ୍ୟ କେତେଗୁଡ଼ିଏ ସୂକ୍ଷ୍ମବସ୍ତୁଦ୍ୱାରା ଗଠିତ, ଯାହାକୁ ସଂସ୍କୃତ ଭାଷାରେ ତନ୍ମାତ୍ର କହନ୍ତି ।

ମୁଁ ଗୋଟିଏ ପୁଷ୍ପ ଆଘ୍ରାଣ କରୁଛି, ତାହାର ସୁଗନ୍ଧ ପାଇବାକୁ ହେଲେ, କିଛି ମୋର ନାସିକାର ସଂସ୍ପର୍ଶରେ ଅବଶ୍ୟ ଆସୁଅଛି । ସେହି ପୁଷ୍ପ ରହିଛି—ତାହା ମୋ ଆଡ଼କୁ ଚାଲି ଆସୁଛି, ଯାହାକି ମୁଁ ଦେଖିପାରୁ ନାହିଁ; କିନ୍ତୁ ଯଦି କିଛି ମୋର ନାସିକା ସଂସ୍ପର୍ଶରେ ନ ଆସିଥାଏ, ତେବେ ମୁଁ ସୁଗନ୍ଧ ପାଉଛି କିପରି ? ସେହି ପୁଷ୍ପରୁ ଯାହା ଆସି ମୋ ନାସିକା ସଂସ୍ପର୍ଶରେ ଆସୁଛି, ତାହା ହିଁ 'ତନ୍ମାତ୍ର', ସେହି ପୁଷ୍ପର ହିଁ ଅତି ସୂକ୍ଷ୍ମ ପରମାଣୁ । ତାହା ଏତେ ସୂକ୍ଷ୍ମ ଯେ, ଯଦି ଆମେମାନେ ଦିନସାରା ସମସ୍ତେ ମିଳି ତାହାର ଗନ୍ଧ ଆଘ୍ରାଣ କରୁଁ ତଥାପି ସେହି ପୁଷ୍ପର ପରମାଣୁରୁ କିଛି ମାତ୍ର ହ୍ରାସ ବୋଧ ହେବ ନାହିଁ । ତାପ, ଆଲୋକ ଏବଂ ଅନ୍ୟାନ୍ୟ ସକଳ ବସ୍ତୁ ସମ୍ବନ୍ଧରେ ମଧ୍ୟ ଏକା କଥା । ଏହି ତନ୍ମାତ୍ରଗୁଡ଼ିକ ପୁଣି ପରମାଣୁରୂପେ ପୁନର୍ବିଭକ୍ତ ହୋଇପାରେ । ଏହି ପରମାଣୁର ପରିମାଣ ଯେନି ବିଭିନ୍ନ ଦାର୍ଶନିକଙ୍କର ବିଭିନ୍ନ ମତ ଅଛି; କିନ୍ତୁ ଆମେ ଜାଣୁ ସେଗୁଡ଼ିକ ମତବାଦ ମାତ୍ର, ସୁତରାଂ ଆମେ ବିଚାରସ୍ଥଳରେ ସେଗୁଡ଼ିକୁ ପରିତ୍ୟାଗ କଲୁ । ଏତିକି ଜାଣିଲେ ହିଁ ଆମର ଯଥେଷ୍ଟ ଯେ, ଯାହା କିଛି ସ୍ଥୂଳ, ତାହା ଅତି ସୂକ୍ଷ୍ମ ପଦାର୍ଥଦ୍ୱାରା ନିର୍ମିତ । ପ୍ରଥମେ ଆମେ ପାଇଛେ ସ୍ଥୂଳଭୂତ—ଆମେ ତାହା ବାହାରେ ଅନୁଭବ କରୁଛେ । ତା'ପରେ ସୂକ୍ଷ୍ମଭୂତ, ଏହି ସୂକ୍ଷ୍ମଭୂତଦ୍ୱାରା ହିଁ ସ୍ଥୂଳଭୂତ ଗଠିତ; ତାହା ସହିତ ଆମ ଇନ୍ଦ୍ରିୟ-ଗୁଡ଼ିକର ଅର୍ଥାତ୍ ନାସିକା, ଚକ୍ଷୁ ଓ କର୍ଣ୍ଣାଦିର ସ୍ନାୟୁ ସହିତ ସଂଯୋଗ ହୋଇଛି । ଯେଉଁ ଇଥର-ତରଙ୍ଗ ଆମ ଚକ୍ଷୁକୁ ସ୍ପର୍ଶ କରୁଛି, ତାହା ମୁଁ ଦେଖିପାରୁ ନାହିଁ, ତଥାପି ମୁଁ ଜାଣେ, ଆଲୋକ ଦେଖିବା ପୂର୍ବରୁ ଚକ୍ଷୁସ୍ନାୟୁ ସହିତ ତାହାର ସଂଯୋଗ ପ୍ରୟୋଜନ । ଶ୍ରବଣ ସମ୍ବନ୍ଧରେ ମଧ୍ୟ ତଦ୍ରୂପ । ଆମର କର୍ଣ୍ଣ ସଂସ୍ପର୍ଶରେ ଯେଉଁ ତନ୍ମାତ୍ରଗୁଡ଼ିକ ଆସୁଛି, ତାହା ଆମେ ଦେଖିବାକୁ ପାଉନାହୁଁ; କିନ୍ତୁ ଆମେ ଜାଣୁ, ସେଗୁଡ଼ିକ ଅବଶ୍ୟ ଅଛି । ଏହି ତନ୍ମାତ୍ରଗୁଡ଼ିକର ପୁଣି କାରଣ କ'ଣ—ଆମର ମନସ୍ତତ୍ତ୍ୱବିଦ୍‌ଗଣ ଏହାର ଗୋଟିଏ ଅତି ଅଦ୍ଭୁତ ଓ ବିସ୍ମୟଜନକ ଉତ୍ତର ଦେଇଛନ୍ତି । ସେମାନେ କହନ୍ତି, ତନ୍ମାତ୍ରଗୁଡ଼ିକର କାରଣ 'ଅହଂକାର' ବା 'ଅହଂତତ୍ତ୍ୱ' ବା 'ଅହଂଜ୍ଞାନ' । ଏହା ହିଁ ଏହି ସମୁଦାୟ ସୂକ୍ଷ୍ମ ଭୂତଗୁଡ଼ିକର ଏବଂ ଇନ୍ଦ୍ରିୟଗୁଡ଼ିକର ମଧ୍ୟ କାରଣ । ଇନ୍ଦ୍ରିୟ କେଉଁଗୁଡ଼ିକ ? ଏହି ଚକ୍ଷୁ ରହିଛି, କିନ୍ତୁ ଚକ୍ଷୁ ଦେଖେ ନାହିଁ । ଯଦି ଚକ୍ଷୁ ଦେଖୁଥାଆନ୍ତା, ତେବେ ମନୁଷ୍ୟର ଯେତେବେଳେ ମୃତ୍ୟୁ ଘଟେ ଏବଂ ଚକ୍ଷୁ ଅବିକୃତ ଥାଏ, ସେତେବେଳେ ମଧ୍ୟ ତାହା ଦେଖିପାରୁଥାଆନ୍ତା । କୌଣସି ସ୍ଥାନରେ କିଛି ପରିବର୍ତ୍ତନ ନିଶ୍ଚୟ ହୋଇଛି । କିଛି ଗୋଟାଏ ମନୁଷ୍ୟ ଭିତରୁ ଚାଲିଯାଇଛି । ପ୍ରକୃତପକ୍ଷରେ ଚକ୍ଷୁ ଯାହାର ଯନ୍ତ୍ରସ୍ୱରୂପମାତ୍ର, ତାହା ହିଁ ଯଥାର୍ଥ ଇନ୍ଦ୍ରିୟ । ଏହିପରି ଏହି ନାସିକା ମଧ୍ୟ ଗୋଟିଏ ଯନ୍ତ୍ରମାତ୍ର, ତାହା ସହିତ ସମ୍ବନ୍ଧଯୁକ୍ତ ଗୋଟିଏ ଇନ୍ଦ୍ରିୟ ଅଛି । ଆଧୁନିକ ଶରୀର-ବିଜ୍ଞାନ ଆପଣମାନଙ୍କୁ କହିଦେବ, ତାହା କିଅଣ । ତାହା ମସ୍ତିଷ୍କସ୍ଥ ଗୋଟିଏ ସ୍ନାୟୁକେନ୍ଦ୍ର ମାତ୍ର । ଚକ୍ଷୁ କର୍ଣ୍ଣାଦି କେବଳ ବାହ୍ୟ ଯନ୍ତ୍ର ମାତ୍ର । ଅତଏବ ଏହି ସ୍ନାୟୁକେନ୍ଦ୍ର ବା ଇନ୍ଦ୍ରିୟଗଣ ହିଁ ଅନୁଭୂତିର ଯଥାର୍ଥ ସ୍ଥାନ ।

ନାସିକା ପାଇଁ ଗୋଟିଏ, ଚକ୍ଷୁ ପାଇଁ ଗୋଟିଏ, ଏହିପରି ପ୍ରତ୍ୟେକଟି ପାଇଁ ଗୋଟିଏ ଗୋଟିଏ ପୃଥକ୍ ସ୍ନାୟୁକେନ୍ଦ୍ର ବା ଇନ୍ଦ୍ରିୟ ଥିବାର ପ୍ରୟୋଜନ କ'ଣ ? ଗୋଟିଏ ଦ୍ୱାରା କାର୍ଯ୍ୟ ସିଦ୍ଧ ହୁଏ ନାହିଁ କାହିଁକି ? ଏ କଥାଟି ସ୍ପଷ୍ଟକରି ବୁଝାଇ ଦେଉଛି । ମୁଁ କଥା କହୁଛି, ଆପଣମାନେ ମୋ କଥା ଶୁଣୁଛନ୍ତି; ଆପଣମାନେ ଆପଣମାନଙ୍କର ପୃଷ୍ଠ ଭାଗରେ କ'ଣ ହେଉଛି ତାହା ଦେଖିପାରୁ ନାହାନ୍ତି; କାରଣ ମନ କେବଳ ଶ୍ରବଣେନ୍ଦ୍ରିୟ ସହିତ ସଂଯୁକ୍ତ ହୋଇଛି, ଚକ୍ଷୁରିନ୍ଦ୍ରିୟରୁ ଆପଣାକୁ ପୃଥକ୍ କରିଛି । ଯଦି ଗୋଟିଏ ମାତ୍ର ସ୍ନାୟୁକେନ୍ଦ୍ର ବା ଇନ୍ଦ୍ରିୟ ଥାଆନ୍ତା, ତେବେ ମନକୁ ଏକ ସମୟରେ ଦେଖିବା, ଶୁଣିବା ଓ ଆଘ୍ରାଣ କରିବାକୁ ହୁଅନ୍ତା, କିନ୍ତୁ ତାହା ପକ୍ଷରେ ଏକ ସମୟରେ ହିଁ ଏହି ତିନୋଟି କାର୍ଯ୍ୟ କରିବା ଅସମ୍ଭବ ହୁଅନ୍ତା, ଅତଏବ ପ୍ରତ୍ୟେକଟି ପାଇଁ ପୃଥକ୍ ପୃଥକ୍ ସ୍ନାୟୁକେନ୍ଦ୍ରର ପ୍ରୟୋଜନ । ଆଧୁନିକ ଶରୀର-ବିଜ୍ଞାନ ମଧ୍ୟ ଏ ବିଷୟରେ ସାକ୍ଷ୍ୟ ଦେଇଥାଏ । ଅବଶ୍ୟ ଆମ ପକ୍ଷରେ ଏକ ସମୟରେ ଦେଖିବା ଓ ଶୁଣିବା ସମ୍ଭବ; କିନ୍ତୁ ତାହାର କାରଣ— ମନ ଉଭୟ କେନ୍ଦ୍ରରେ ଆଂଶିକ ଭାବରେ ସଂଯୁକ୍ତ ହୋଇପାରେ । ତେବେ କେଉଁଗୁଡ଼ିକ ଯନ୍ତ୍ର ହେଲା ? ଆମେ ଦେଖୁଛେ, ସେଗୁଡ଼ିକ ବାହାରର ବସ୍ତୁ ଏବଂ ସ୍ଥୂଳଭୂତରେ ନିର୍ମିତ— ଏହି ଆମର ଚକ୍ଷୁ, କର୍ଣ୍ଣ ଓ ନାସା ପ୍ରଭୃତି । ଆଉ ଏହି ସ୍ନାୟୁକେନ୍ଦ୍ରଗୁଡ଼ିକ କେଉଁଥିରେ ନିର୍ମିତ ? ସେଗୁଡ଼ିକ ସୂକ୍ଷ୍ମତର ଭୂତରେ ନିର୍ମିତ ଏବଂ ଯେହେତୁ ସେଗୁଡ଼ିକ ଅନୁଭୂତିର କେନ୍ଦ୍ରସ୍ୱରୂପ, ସେହି ହେତୁ ସେସବୁ ଭିତରର ଜିନିଷ । ଯେପରି ପ୍ରାଣକୁ ବିଭିନ୍ନ ସ୍ଥୂଳ ଶକ୍ତିରେ ପରିଣତ କରିବା ପାଇଁ ଏହି ଦେହ ସ୍ଥୂଳଭୂତରେ ଗଠିତ ହୋଇଛି, ସେହିପରି ଏହି ଶରୀରର ପଶ୍ଚାତ୍‌ରେ ଯେଉଁ ସ୍ନାୟୁକେନ୍ଦ୍ରସମୂହ ରହିଛି, ସେଗୁଡ଼ିକ ମଧ୍ୟ ପ୍ରାଣକୁ ସୂକ୍ଷ୍ମ ଅନୁଭୂତିଶକ୍ତିରେ ପରିଣତ କରିବା ପାଇଁ ସୂକ୍ଷ୍ମତର ଉପାଦାନରେ ନିର୍ମିତ । ଏହି ସମୁଦାୟ ଇନ୍ଦ୍ରିୟ ଏବଂ ଅନ୍ତଃକରଣର ସମଷ୍ଟିକୁ ଏକତ୍ର ଲିଙ୍ଗଶରୀର ବା ସୂକ୍ଷ୍ମଶରୀର କୁହାଯାଏ ।

ଏହି ସୂକ୍ଷ୍ମ ଶରୀରର ପ୍ରକୃତ ପକ୍ଷରେ ଗୋଟିଏ ଆକାର ଅଛି, କାରଣ ଯାହା କିଛି ଭୌତିକ ତାହାର ହିଁ ଗୋଟିଏ ଆକାର ଅବଶ୍ୟ ରହିବ । ଇନ୍ଦ୍ରିୟଗଣର ପଶ୍ଚାତ୍‌ରେ ମନ ଅର୍ଥାତ୍ ବୃତ୍ତିଯୁକ୍ତ ଚିତ୍ତ ଅଛି, ତାହାକୁ ଚିତ୍ତର ସ୍ପନ୍ଦନଶୀଳ ବା ଅସ୍ଥିର ଅବସ୍ଥା କୁହାଯାଇପାରେ । ଯଦି ଗୋଟିଏ ସ୍ଥିର ହ୍ରଦରେ ଖଣ୍ଡିଏ ପ୍ରସ୍ତର ନିକ୍ଷେପ କରାଯାଏ, ତାହାହେଲେ ପ୍ରଥମେ ସେଥିରେ ସ୍ପନ୍ଦନ ବା କମ୍ପନ ଉପସ୍ଥିତ ହେବ, ତା'ପରେ ସେଥିରୁ ବାଧା ବା ପ୍ରତିକ୍ରିୟା ଉପସ୍ଥିତ ହେବ । ମୁହୂର୍ତ୍ତିକ ନିମିତ୍ତ ଏହି ଜଳ ସ୍ପନ୍ଦିତ ହେବ, ତା'ପରେ ତାହା ସେହି ପ୍ରସ୍ତର ଉପରେ ପ୍ରତିକ୍ରିୟା କରିବ । ଏହିପରି ଚିତ୍ତ ଉପରେ କୌଣସି ବାହ୍ୟ ବିଷୟର ଯେତେବେଳେ ଆଘାତ ଲାଗେ ସେତେବେଳେ ତାହା ଟିକିଏ ସ୍ପନ୍ଦିତ ହୁଏ । ଚିତ୍ତର ଏହି ଅବସ୍ଥାକୁ ମନ କୁହାଯାଏ । ତା'ପରେ ଏଥିରୁ ଯେଉଁ ପ୍ରତିକ୍ରିୟା ହୁଏ, ତାହାର ନାମ ବୁଦ୍ଧି । ଏହି ବୁଦ୍ଧିର ପଶ୍ଚାତ୍‌ରେ ଆଉ ଗୋଟିଏ ଜିନିଷ ଅଛି, ତାହା ମନର ସକଳ କ୍ରିୟା ସହିତ

ବର୍ତ୍ତମାନ ଥାଏ—ତାହାକୁ ଅହଂକାର କହନ୍ତି । ଏହି ଅହଂକାର ଅର୍ଥ ଅହଂଜ୍ଞାନ, ଯାହାଦ୍ୱାରା 'ମୁଁ ଅଛି' ଏହି ଜ୍ଞାନ ହୁଏ । ତାହାର ପଶ୍ଚାତ୍‌ରେ ମହତ୍ ବା ବୁଦ୍ଧିତତ୍ତ୍ୱ—ତାହା ପ୍ରାକୃତିକ ସକଳ ବସ୍ତୁ ମଧ୍ୟରେ ଶ୍ରେଷ୍ଠ । ଏହାର ପଛରେ ପୁରୁଷ, ଏହା ହିଁ ମାନବର ଯଥାର୍ଥ ସ୍ୱରୂପ—ଶୁଦ୍ଧ, ପୂର୍ଣ୍ଣ; ଏହା ହେଉଛି ଏକମାତ୍ର ଦ୍ରଷ୍ଟା ଏବଂ ଏହା ହେତୁରୁ ଏହି ସମୁଦାୟ ପରିଣାମ । ପୁରୁଷ ଏହି ସକଳ ପରିଣାମ-ପରଂପରା ଦେଖୁଛନ୍ତି । ସେ ସ୍ୱୟଂ ଅଶୁଦ୍ଧ ନୁହନ୍ତି, କିନ୍ତୁ ଅଧ୍ୟାସ ବା ପ୍ରତିବିମ୍ବଦ୍ୱାରା ଏହାଙ୍କୁ ତଦ୍ରୂପ ଦେଖାଯାଉଛି, ଯେପରି ଖଣ୍ଡିଏ ସ୍ଫଟିକ ସମକ୍ଷରେ ଗୋଟିଏ ଲାଲ୍ ଫୁଲ ରଖିଲେ ସ୍ଫଟିକଟି ଲାଲ୍ ଦେଖାଯାଏ, ପୁଣି ନୀଳ ଫୁଲ ରଖିଲେ ନୀଳ ଦେଖାଯାଏ । ପ୍ରକୃତ ପକ୍ଷେ କିନ୍ତୁ ସ୍ଫଟିକଟିର କୌଣସି ବର୍ଣ୍ଣ ନାହିଁ । ପୁରୁଷ ବା ଆତ୍ମା ଅନେକ; ପ୍ରତ୍ୟେକଟି ଶୁଦ୍ଧ ଓ ପୂର୍ଣ୍ଣ । ଆଉ ଏହି ସ୍ଥୂଳ, ସୂକ୍ଷ୍ମ ନାନା ପ୍ରକାରରେ ବିଭକ୍ତ ହୋଇଥିବା ପଞ୍ଚଭୂତ ତାଙ୍କର ଉପରେ ପ୍ରତିବିମ୍ବିତ ହୋଇ ସେଗୁଡ଼ିକୁ ନାନା ବର୍ଣ୍ଣରୂପେ ଦେଖାଉଛି । ପ୍ରକୃତି କାହିଁକି ଏସବୁ କରୁଛି ? ପ୍ରକୃତିର ଏହିସବୁ ପରିଣାମ ପୁରୁଷ ଓ ଆତ୍ମାର ଭୋଗ ଓ ଅପବର୍ଗ ନିମିତ୍ତ—ଯାହାଦ୍ୱାରା ପୁରୁଷ ଆପଣାର ମୁକ୍ତ-ସ୍ୱଭାବ ଜାଣିପାରେ ।

ମାନବସମକ୍ଷରେ ଏହି ଜଗତ୍-ପ୍ରପଞ୍ଚରୂପକ ସୁବୃହତ୍ ଗ୍ରନ୍ଥ ବିସ୍ତୃତ ହୋଇ ରହିଅଛି, ଯାହାଦ୍ୱାରା ମାନବ ସେହି ଗ୍ରନ୍ଥ ପାଠକରି ପରିଣାମରେ ସର୍ବଜ୍ଞ ଓ ସର୍ବଶକ୍ତିମାନ ପୁରୁଷ ରୂପେ ଜଗତରୁ ବାହାରି ଆସିପାରେ । ମୋତେ ଏଠାରେ ନିଶ୍ଚୟ କହିବାକୁ ହେବ ଯେ, ଆମର ଅନେକ ଭଲ ଭଲ ମନସ୍ତତ୍ତ୍ୱବିଦ୍‌ମାନେ—ଆପଣମାନେ ଯେପରି ସଗୁଣ ବା ବ୍ୟକ୍ତିଭାବାପନ୍ନ ଈଶ୍ୱରଙ୍କୁ ବିଶ୍ୱାସ କରନ୍ତି—ସେପରି ବିଶ୍ୱାସ କରନ୍ତି ନାହିଁ । ସକଳ ମନସ୍ତତ୍ତ୍ୱବିଦ୍‌ଙ୍କର ପିତାସ୍ୱରୂପ କପିଳ ସୃଷ୍ଟିକର୍ତ୍ତା ଈଶ୍ୱରଙ୍କର ଅସ୍ତିତ୍ୱ ଅସ୍ୱୀକାର କରନ୍ତି । ତାଙ୍କର ଧାରଣା ଏହି ଯେ—ସଗୁଣ ଈଶ୍ୱରଙ୍କୁ ସ୍ୱୀକାର କରିବାର କୌଣସି ପ୍ରୟୋଜନ ନାହିଁ । ଯାହା କିଛି ଭଲ, ପ୍ରକୃତି ତାହା କରିବାକୁ ସମର୍ଥ । ସେ ତଥାକଥିତ 'କୌଶଳବାଦ' (Design Theory) ଖଣ୍ଡନ କରିଅଛନ୍ତି । ଏହି ମତବାଦ ପରି ଅନ୍ୟ କୌଣସି ପିଲାଳିଆ ମତ ଜଗତରେ ପ୍ରଚାରିତ ହୋଇ ନାହିଁ । ତେବେ ସେ ଏକ ବିଶେଷ ପ୍ରକାର ଈଶ୍ୱର ସ୍ୱୀକାର କରନ୍ତି । ସେ କହନ୍ତି—ଆମେ ସମସ୍ତେ ମୁକ୍ତ ହେବା ନିମିତ୍ତ ଚେଷ୍ଟା କରୁଛେ । ଆଉ ଏହିପରି ଚେଷ୍ଟା କରୁ କରୁ ଯେତେବେଳେ ମାନବାତ୍ମା ମୁକ୍ତ ହୁଅନ୍ତି, ସେତେବେଳେ ସେ ଯେପରି କିଛିଦିନ ନିମିତ୍ତ ପ୍ରକୃତି ଭିତରେ ଲୀନ ହୋଇ ରହିଯାଆନ୍ତି । ଆଗାମୀ କଳ୍ପର ପ୍ରାରମ୍ଭରେ ସେ ହିଁ ଜଣେ ସର୍ବଜ୍ଞ ଓ ସର୍ବଶକ୍ତିମାନ ପୁରୁଷରୂପେ ଆବିର୍ଭୂତ ହୋଇ ସେହି କଳ୍ପର ଶାସନକର୍ତ୍ତା ହୋଇପାରନ୍ତି । ଏହି ଅର୍ଥରେ ତାହାଙ୍କୁ ଈଶ୍ୱର କୁହାଯାଇପାରେ । ଏହିପରି ଆପଣ ମୁଁ ଏବଂ ଅତି ସାମାନ୍ୟ ବ୍ୟକ୍ତି ପର୍ଯ୍ୟନ୍ତ ବିଭିନ୍ନ କଳ୍ପରେ ଈଶ୍ୱର ହୋଇପାରିବୁ । କପିଳ କହନ୍ତି, ଏପରି 'ଜନ୍ୟ-ଈଶ୍ୱର' ଆପଣ ହୋଇପାରନ୍ତି; କିନ୍ତୁ 'ନିତ୍ୟ-ଈଶ୍ୱର' ଅର୍ଥାତ୍ ନିତ୍ୟ ସର୍ବଶକ୍ତିମାନ, ଜଗତର ଶାସନକର୍ତ୍ତା

କେବେହେଲେ ହୋଇପାରବେ ନାହିଁ । ଏହିପରି ଜଣେ ଈଶ୍ୱରଙ୍କୁ ସ୍ୱୀକାର କରିବା ବିଷୟରେ ଏହି ଆପତ୍ତି ଉଠିଥାଏ—ଈଶ୍ୱରଙ୍କୁ ହୁଏତ ବଦ୍ଧ କିମ୍ବା ମୁକ୍ତ ବୋଲି କହିବାକୁ ହେବ । ଯଦି ଈଶ୍ୱର ମୁକ୍ତ ହୁଅନ୍ତି, ତେବେ ସେ ସୃଷ୍ଟି କରିବେ ନାହିଁ, କାରଣ ତାଙ୍କର ସୃଷ୍ଟି କରିବାର କୌଣସି ପ୍ରୟୋଜନ ନାହିଁ । ଆଉ ଯଦି ସେ ବଦ୍ଧ ହୁଅନ୍ତି, ତାହାହେଲେ ମଧ୍ୟ ତାଙ୍କର ସୃଷ୍ଟି-କର୍ତ୍ତୃତ୍ୱ ଅସମ୍ଭବ । କାରଣ ବଦ୍ଧ ବୋଲି ତାଙ୍କର ଶକ୍ତିର ଅଭାବ । ସୁତରାଂ ତାଙ୍କର ସୃଷ୍ଟି କରିବାର କ୍ଷମତା ରହିବ ନାହିଁ । ସୁତରାଂ ଉଭୟ ପକ୍ଷରେ ଦେଖାଗଲା, ନିତ୍ୟ, ସର୍ବଶକ୍ତିମାନ ଓ ସର୍ବଜ୍ଞ ଈଶ୍ୱର ରହିପାରନ୍ତି ନାହିଁ । ଏହି ହେତୁରୁ କପିଳ କହନ୍ତି ଆମ ଶାସ୍ତ୍ରରେ—ବେଦରେ—ଯେଉଁଥିରେ 'ଈଶ୍ୱର' ଶବ୍ଦର ପ୍ରୟୋଗ ଅଛି, ତାହାଦ୍ୱାରା ଯେଉଁସବୁ ଆତ୍ମା ପୂର୍ଣ୍ଣତା ଓ ମୁକ୍ତିପ୍ରାପ୍ତ ହୋଇଛନ୍ତି, ସେମାନଙ୍କୁ ବୁଝାଯାଇଥାଏ । ସାଙ୍ଖ୍ୟଦର୍ଶନ ସକଳ ଆତ୍ମାର ଏକତ୍ୱରେ ବିଶ୍ୱାସୀ ନୁହନ୍ତି । ବେଦାନ୍ତ ମତରେ ସମୁଦାୟ ଜୀବାତ୍ମା ବ୍ରହ୍ମନାମଧେୟ ଏକ ବିଶ୍ୱାତ୍ମାଠାରୁ ଅଭିନ୍ନ; କିନ୍ତୁ ସାଙ୍ଖ୍ୟଦର୍ଶନର ପ୍ରତିଷ୍ଠାତା କପିଳ ଦ୍ୱୈତବାଦୀ ଥିଲେ । ସେ ଅବଶ୍ୟ ଜଗତର ବିଶ୍ଳେଷଣ ଯେତେଦୂର କରିଛନ୍ତି, ତାହା ଅତି ଅଦ୍ଭୁତ । ସେ ହିନ୍ଦୁ ପରିଣାମବାଦୀମାନଙ୍କର ଜନକସ୍ୱରୂପ ଏବଂ ପରବର୍ତ୍ତୀ ଦର୍ଶନଶାସ୍ତ୍ରଗୁଡ଼ିକ ତାଙ୍କର ହିଁ ଚିନ୍ତାପ୍ରଣାଳୀର ପରିଣାମ ମାତ୍ର ।

ସାଙ୍ଖ୍ୟଦର୍ଶନ ମତରେ ସକଳ ଆତ୍ମା ସେମାନଙ୍କର ସ୍ୱାଧୀନତା ବା ମୁକ୍ତି ଏବଂ ସର୍ବଶକ୍ତିମତ୍ତା ଓ ସର୍ବଜ୍ଞତାରୂପକ ସ୍ୱାଭାବିକ ଅଧିକାର ପୁନଃ ପ୍ରାପ୍ତ ହେବେ । ଏଠାରେ ପ୍ରଶ୍ନ ଉଠିପାରେ—ଆତ୍ମାର ଏହି ବନ୍ଧନ କେଉଁଠାରୁ ଆସିଲା ? ସାଙ୍ଖ୍ୟ କହନ୍ତି ଏହା ଅନାଦି, କିନ୍ତୁ ସେଥିରେ ଏତିକି ଆପତ୍ତି ଉଠେ ଯେ, ଯଦି ଏହି ବନ୍ଧନ ଅନାଦି, ତେବେ ତାହା ଅନନ୍ତ ମଧ୍ୟ ହେବ ଏବଂ ତାହାହେଲେ ଆମେ କେବେ ମୁକ୍ତିଲାଭ କରିପାରିବା ନାହିଁ । କପିଳ ଏହାର ଉତ୍ତରରେ କହନ୍ତି, ଏଠାରେ 'ଅନାଦି' କହିଲେ—'ନିତ୍ୟ ଅନାଦି' ବୁଝିବାକୁ ହେବ ନାହିଁ । ପ୍ରକୃତି ଅନାଦି ଓ ଅନନ୍ତ ସତ, ମାତ୍ର ଆତ୍ମା ବା ପୁରୁଷ ଯେଉଁ ଅର୍ଥରେ ଅନାଦି ଓ ଅନନ୍ତ, ସେ ଅର୍ଥରେ ନୁହେଁ; କାରଣ ପ୍ରକୃତି ଭିତରେ ବ୍ୟକ୍ତିତ୍ୱ ନାହିଁ । ଧରନ୍ତୁ ଆମ ସମ୍ମୁଖରେ ଗୋଟିଏ ନଦୀ ପ୍ରବାହିତ ହେଉଛି । ପ୍ରତି ମୁହୂର୍ତ୍ତରେ ଏଥିରେ ନୂତନ ନୂତନ ଜଳରାଶି ଆସୁଛି । ଆଉ ଏହି ସମୁଦାୟ ଜଳରାଶିର ନାମ ନଦୀ; କିନ୍ତୁ ନଦୀ କୌଣସି ଏକ ସ୍ଥିର ବସ୍ତୁ ନୁହେଁ । ଏହିପରି ପ୍ରକୃତି ଅନ୍ତର୍ଗତ ସମସ୍ତ ବସ୍ତୁର ସର୍ବଦା ପରିବର୍ତ୍ତନ ଘଟୁଛି, କିନ୍ତୁ ଆତ୍ମାର କେବେହେଲେ ପରିବର୍ତ୍ତନ ଘଟେ ନାହିଁ । ଅତଏବ ପ୍ରକୃତି ଯେତେବେଳେ ସର୍ବଦା ପରିଣାମପ୍ରାପ୍ତ ହେଉଛି, ସେତେବେଳେ ଆତ୍ମା ପକ୍ଷରେ ପ୍ରକୃତିର ବନ୍ଧନରୁ ମୁକ୍ତ ହେବା ସମ୍ଭବ ।

ସାଙ୍ଖ୍ୟବାଦୀମାନଙ୍କର ଗୋଟିଏ ମତ ଅନନ୍ୟସାଧାରଣ । ସେମାନଙ୍କ ମତରେ ଗୋଟିଏ ମନୁଷ୍ୟ ବା ଯେକୌଣସି ପ୍ରାଣୀ ଯେଉଁ ନିୟମରେ ଗଠିତ, ସମଗ୍ର ଜଗତ୍-ବ୍ରହ୍ମାଣ୍ଡ

ମଧ୍ୟ ଠିକ୍ ସେହି ନିୟମରେ ବିରଚିତ । ସୁତରାଂ, ଆମର ଯେପରି ଗୋଟିଏ ମନ ଅଛି, ତଦ୍ରୂପ ଗୋଟିଏ ବିଶ୍ୱ-ମନ ମଧ୍ୟ ଅଛି । ଯେତେବେଳେ ଏହି ବୃହତ୍ ବ୍ରହ୍ମାଣ୍ଡର କ୍ରମବିକାଶ ଘଟେ, ସେତେବେଳେ ପ୍ରଥମେ ମହତ୍ ବା ବୁଦ୍ଧିତତ୍ତ୍ୱ, ପରେ ଅହଂକାର, ତନ୍ମାତ୍ର, ଇନ୍ଦ୍ରିୟ—ସର୍ବଶେଷରେ ସ୍ଥୂଳ ଭୂତର ଉତ୍ପତ୍ତି ହୁଏ । କପିଳଙ୍କ ମତରେ ସମଗ୍ର ବ୍ରହ୍ମାଣ୍ଡ ହିଁ ଏକ ଶରୀରସ୍ୱରୂପ । ଯାହା କିଛି ଦେଖୁଛେ, ସେଗୁଡ଼ିକ ସମୁଦାୟ ସ୍ଥୂଳଶରୀର, ତାହାର ପଶ୍ଚାତ୍ତରେ ସୂକ୍ଷ୍ମଶରୀରସମୂହ ଏବଂ ତା'ର ପଶ୍ଚାତ୍ତରେ ସମଷ୍ଟି-ଅହଂତତ୍ତ୍ୱ, ତା'ର ପଶ୍ଚାତ୍ତରେ ସମଷ୍ଟି-ବୁଦ୍ଧି; କିନ୍ତୁ ଏସବୁ ପ୍ରକୃତିର ଅନ୍ତର୍ଗତ, ସମସ୍ତ ହିଁ ପ୍ରକୃତିର ବିକାଶ, ଏଗୁଡ଼ିକରୁ କିଛି ତାହାର ବାହାରେ ନ ଥାଏ । ଆମ ଭିତରେ ସମସ୍ତେ ସେହି ମହତ୍ତତ୍ତ୍ୱର ଅଂଶସ୍ୱରୂପ । ସମଷ୍ଟି-ବୁଦ୍ଧିତତ୍ତ୍ୱ ରହିଛି, ସେଥିରୁ ଯାହା ଆମର ପ୍ରୟୋଜନ, ତାହା ଆମେ ଗ୍ରହଣ କରୁଛେ; ସେହିଭଳି ଜଗତ୍ ଭିତରେ ସମଷ୍ଟି-ମନସ୍ତତ୍ତ୍ୱ ରହିଛି, ସେଥିରୁ ଚିରକାଳ ଧରି ଆମର ପ୍ରୟୋଜନ ଅନୁସାରେ ଆମେ ନେଉଛେ;କିନ୍ତୁ ଦେହର ବୀଜ ପିତାମାତାଙ୍କ ନିକଟରୁ ପ୍ରାପ୍ତ ହେବା ଆବଶ୍ୟକ । ଏଥିରୁ ବଂଶାନୁକ୍ରମିକତା (Heredity) ଓ ପୁନର୍ଜନ୍ମବାଦ ଉଭୟ ତତ୍ତ୍ୱ ହିଁ ସ୍ୱୀକୃତ ହୋଇଥାଏ । ଆତ୍ମାକୁ ଦେହନିର୍ମାଣ କରିବା ନିମିତ୍ତ ଉପାଦାନ ଗ୍ରହଣ କରିବାକୁ ହୁଏ, କିନ୍ତୁ ସେହି ଉପାଦାନ ବଂଶାନୁକ୍ରମିକ ସଞ୍ଚାରଦ୍ୱାରା ପିତାମାତାଙ୍କଠାରୁ ପ୍ରାପ୍ତ ହୋଇଥାଏ ।

ବର୍ତ୍ତମାନ ଆମେ ପ୍ରସ୍ତାବ କରୁଛେ ଯେ, ସାଙ୍ଖ୍ୟମତାନୁଯାୟୀ ସୃଷ୍ଟିବାଦ ବିଷୟରେ ସୃଷ୍ଟି ବା କ୍ରମବିକାଶ ଏବଂ ପ୍ରଳୟ ବା କ୍ରମସଂକୋଚ—ଏହି ଉଭୟ ସ୍ୱୀକୃତ ହୋଇଛି । ସମୁଦାୟ ହିଁ ସେହି ଅବ୍ୟକ୍ତ ପ୍ରକୃତିର କ୍ରମବିକାଶରୁ ଉତ୍ପନ୍ନ, ପୁଣି ଏହି ସମୁଦାୟ କ୍ରମସଙ୍କୁଚିତ ହୋଇ ଅବ୍ୟକ୍ତଭାବ ଧାରଣ କରେ । ସାଙ୍ଖ୍ୟମତରେ ଏପରି କୌଣସି ଜଡ଼ ବା ଭୌତିକ ବସ୍ତୁ ରହିପାରେ ନାହିଁ, ମହତ୍ତତ୍ତ୍ୱର କୌଣସି ଅଂଶବିଶେଷ ଯାହାର ଉପାଦାନ ନୁହେଁ । ଏହା ସେହି ଉପାଦାନ, ଯେଉଁଥିରୁ ସମୁଦାୟ ପ୍ରପଞ୍ଚ ନିର୍ମିତ ହୋଇଛି । ଆଗାମୀ ବକ୍ତୃତାରେ ଏହାର ବିଶଦ ବ୍ୟାଖ୍ୟା କରାଯିବ । ତେବେ ବର୍ତ୍ତମାନ ମୁଁ ଏତିକି ଦେଖାଇବି ଯେ, କିପରି ଏହା ପ୍ରମାଣ କରାଯାଇପାରେ । ଏହି ଟେବୁଲଟିର ସ୍ୱରୂପ କ'ଣ ମୁଁ ତାହା ଜାଣେ ନାହିଁ; ମୋ ଉପରେ ତାହା ଏକପ୍ରକାର ସଂସ୍କାର ଜନ୍ମାଇ ଦେଇଛି ମାତ୍ର । ପ୍ରଥମେ ଏହା ଚକ୍ଷୁକୁ ଦେଖାଯାଏ, ତା'ପରେ ଦର୍ଶନେନ୍ଦ୍ରିୟକୁ ଗମନ କରେ, ତା'ପରେ ମନ ନିକଟକୁ ଯାଏ । ସେତେବେଳେ ମନ ଏହା ଉପରେ ପ୍ରତିକ୍ରିୟା ସୃଷ୍ଟି କରେ, ସେହି ପ୍ରତିକ୍ରିୟାକୁ ହିଁ ଆମେ 'ଟେବୁଲ' ଆଖ୍ୟା ଦେଇଥାଉ । ଏହା ଠିକ୍ ଗୋଟିଏ ହ୍ରଦରେ ଖଣ୍ଡିଏ ପ୍ରସ୍ତର ନିକ୍ଷେପ ପରି । ସେହି ହ୍ରଦ ପ୍ରସ୍ତରଖଣ୍ଡର ଅଭିମୁଖରେ ଗୋଟିଏ ତରଙ୍ଗ ନିକ୍ଷେପ କରେ ଏବଂ ସେହି ତରଙ୍ଗଟିକୁ ହିଁ ଆମେମାନେ ଜାଣିଥାଉ । ମନର ତରଙ୍ଗସବୁ, ଯେଉଁଗୁଡ଼ିକ ବାହାରକୁ ଆସେ, ସେଗୁଡ଼ିକୁ ଆମେମାନେ ଜାଣିଥାଉ । ଏହିପରି ଏହି କାନ୍ଥଟିର ଆକୃତି ମୋର ମନରେ ଅଛି । ବାହାରେ ପ୍ରକୃତରେ କ'ଣ ଅଛି, ତାହା କେହି ଜାଣନ୍ତି ନାହିଁ । ଯେତେବେଳେ ମୁଁ ତାହାକୁ ଜାଣିବାକୁ

ଚେଷ୍ଟା କରେ, ସେତେବେଳେ ତାହାକୁ ମୁଁ ଯେଉଁ ଉପାଦାନ ପ୍ରଦାନ କରେ, ତାହାକୁ ସେପରି ହେବାକୁ ହୁଏ । ମୁଁ ମୋ ନିଜ ମନଦ୍ୱାରା ଚକ୍ଷୁର ଉପାଦାନଭୂତ ବସ୍ତୁ ଦେଉଛି ଏବଂ ବାହାରେ ଯାହା ଅଛି, ତାହା କେବଳ ଉଦ୍ଦୀପକ ବା ଉତ୍ତେଜକ କାରଣ । ସେହି ଉତ୍ତେଜକ କାରଣ ଉପସ୍ଥିତ ହେଲେ ମୁଁ ମନକୁ ସେ ଦିଗକୁ ପ୍ରକ୍ଷେପ କରେ ଏବଂ ଏହା ମୋର ଦ୍ରଷ୍ଟବ୍ୟ ବସ୍ତୁର ଆକାର ଧାରଣ କରିଥାଏ । ବର୍ତ୍ତମାନ ପ୍ରଶ୍ନ ହେଉଛି—ଆମେମାନେ ସମସ୍ତେ ଗୋଟିଏ ବସ୍ତୁ କିପରି ଦେଖିଥାଉଁ ? ଏହାର କାରଣ ଏହି ଯେ, ଆମମାନଙ୍କ ସମସ୍ତଙ୍କ ଭିତରେ ଏହି ବିଶ୍ୱମନର ଗୋଟିଏ ଗୋଟିଏ ଅଂଶ ଅଛି । ଯେଉଁମାନଙ୍କର ମନ ଅଛି ସେହିମାନେ ହିଁ ବସ୍ତୁ ଦେଖିବେ; ଯେଉଁମାନଙ୍କର ନାହିଁ, ସେମାନେ ତାହା ଦେଖିପାରିବେ ନାହିଁ । ଏହାଦ୍ୱାରା ପ୍ରମାଣ ହୁଏ ଯେ, ଯେତେଦିନ ଧରି ଜଗତ୍ ଅଛି, ସେତେଦିନ ପର୍ଯ୍ୟନ୍ତ ମନର ଅଭାବ, ସେହି ଗୋଟିଏ ବିଶ୍ୱ-ମନର ଅଭାବ—କେତେବେଳେ ହେଲେ ହୋଇ ନାହିଁ । ପ୍ରତ୍ୟେକ ମାନବ ପ୍ରତ୍ୟେକ ପ୍ରାଣୀ ସେହି ବିଶ୍ୱ-ମନରୁ ନିର୍ମିତ ହୋଇଛି । କାରଣ, ତାହା ସର୍ବଦା ବିଦ୍ୟମାନ ଏବଂ ସେମାନଙ୍କ ନିର୍ମାଣ ନିମିତ୍ତ ଉପାଦାନ ଯୋଗାଉଛି ।

## ପ୍ରକୃତି ଓ ପୁରୁଷ

ଆମେମାନେ ଯେଉଁ ତତ୍ତ୍ୱଗୁଡ଼ିକ ବିଷୟରେ ବିଚାର କରୁଥିଲେ, ବର୍ତ୍ତମାନ ସେଗୁଡ଼ିକ ଭିତରୁ ପ୍ରତ୍ୟେକଟିକୁ ନେଇ ବିଶେଷ ଆଲୋଚନାରେ ପ୍ରବୃତ୍ତ ହେବା । ଆମମାନଙ୍କର ସ୍ମରଣ ଥାଇପାରେ, ଆମେମାନେ ପ୍ରକୃତିଠାରୁ ଆରମ୍ଭ କରିଥିଲୁ । ସାଙ୍ଖ୍ୟମତାବଲମ୍ବୀଗଣ ତାହାକୁ ଅବ୍ୟକ୍ତ ବା ଅବିଭକ୍ତ ବୋଲି କହିଛନ୍ତି ଏବଂ ଏହାର ଅନ୍ତର୍ଗତ ଉପାଦାନଗୁଡ଼ିକର ସାମ୍ୟାବସ୍ଥାକୁ ହିଁ ତାହାର ଲକ୍ଷଣ ବୋଲି ଠିକ୍ କରିଛନ୍ତି । ତହିଁରୁ ସ୍ୱଭାବତଃ ଏହା ଉପଲବ୍ଧି କରି ହୁଏ ଯେ, ସମ୍ପୂର୍ଣ୍ଣ ସାମ୍ୟାବସ୍ଥା ବା ସାମଞ୍ଜସ୍ୟରେ କୌଣସି ଗତି ରହି ନ ପାରେ । ଆମେ ଯାହା କିଛି ଦେଖୁ, ଶୁଣୁ ବା ଅନୁଭବ କରୁ ସେ ସମୁଦାୟ ହିଁ ଜଡ଼ଭୂତ ଓ ଗତିର ସମବାୟମାତ୍ର । ଏହି ପ୍ରପଞ୍ଚବିକାଶର ପୂର୍ବେ ଆଦିମ ଅବସ୍ଥାରେ ଯେତେବେଳେ କୌଣସି ପ୍ରକାର ଗତି ନ ଥିଲା, ଯେତେବେଳେ ସମ୍ପୂର୍ଣ୍ଣ ସାମ୍ୟାବସ୍ଥା ଥିଲା, ସେତେବେଳେ ଏହି ପ୍ରକୃତି ଅବିନାଶୀ ଥିଲା, କାରଣ ସୀମାବଦ୍ଧ ହେଲେ ତାହାର ବିଶ୍ଳେଷଣ ବା ବିୟୋଜନ ହୋଇପାରେ । ପୁଣି ସାଙ୍ଖ୍ୟମତରେ ପରମାଣୁ ଜଗତର ଆଦିମ ଅବସ୍ଥା ନୁହେଁ । ଏହି ଜଗତ ପରମାଣୁପୁଞ୍ଜରୁ ଉତ୍ପନ୍ନ ହୋଇ ନାହିଁ, ସେଗୁଡ଼ିକ ଦ୍ୱିତୀୟ ବା ତୃତୀୟ ଅବସ୍ଥା ହୋଇପାରେ । ଆଦିଭୂତ ହିଁ ପରମାଣୁ-ରୂପରେ ପରିଣତ ହୁଏ, ତାହା ପୁଣି ତଦପେକ୍ଷା ସ୍ଥୂଳତର ପଦାର୍ଥରେ ପରିଣତ ହୁଏ; ଆଉ ଆଜିକାଲିର ବୈଜ୍ଞାନିକ ଅନୁସନ୍ଧାନ ଯେପରି ଭାବରେ ଚାଲିଛି, ତାହା ସେହି

ମତର ପୋଷକତା କରୁଛି ବୋଲି ବୋଧହୁଏ । ଉଦାହରଣସ୍ୱରୂପ—ଇଥର ସମ୍ବନ୍ଧୀୟ ଆଧୁନିକ ମତ କଥା ଧରନ୍ତୁ । ଯଦି କୁହାଯାଏ, ଇଥର ମଧ୍ୟ ପରମାଣୁପୁଞ୍ଜର ସମବାୟରୁ ଉତ୍ପନ୍ନ, ତାହାହେଲେ ତାହାଦ୍ୱାରା ସମସ୍ୟାର କୌଣସିମତେ ମୀମାଂସା ହେବ ନାହିଁ । ଆହୁରି ସ୍ପଷ୍ଟଭାବରେ ଏ ବିଷୟ ବୁଝାଉଅଛି । ବାୟୁ ଅବଶ୍ୟ ପରମାଣୁପୁଞ୍ଜଦ୍ୱାରା ଗଠିତ । ଆମେ ଜାଣୁ ଇଥର ସର୍ବତ୍ର ବିଦ୍ୟମାନ, ତାହା ସକଳ ବସ୍ତୁ ମଧ୍ୟରେ ଓତଃପ୍ରୋତ ଭାବରେ ବିଦ୍ୟମାନ ଓ ସର୍ବବ୍ୟାପୀ । ବାୟୁ ଏବଂ ଅନ୍ୟାନ୍ୟ ସକଳବସ୍ତୁର ପରମାଣୁ ସେହି ଇଥର ଦେହରେ ଯେପରି ଭାସୁଛି । ଯଦି ପରମାଣୁସମୂହର ସଂଯୋଗରେ ଇଥର ଗଠିତ ହୁଏ, ତାହାହେଲେ ଦୁଇଟି ଇଥର ପରମାଣୁ ମଧ୍ୟରେ କିଞ୍ଚିତ୍ ବ୍ୟବଧାନ ରହିବ । ସେହି ବ୍ୟବଧାନ କାହାଦ୍ୱାରା ପୂର୍ଣ୍ଣ ? ଆଉ ଯାହା କିଛି ସେହି ବ୍ୟବଧାନରେ ବ୍ୟାପ୍ତ ହୋଇ ରହିବ, ତାହା ପରମାଣୁପୁଞ୍ଜ ମଧ୍ୟରେ ମଧ୍ୟ ସେହିପରି ବ୍ୟବଧାନ ରହିବ । ଯଦି କୁହାଯାଏ, ସେହି ବ୍ୟବଧାନ ମଧ୍ୟରେ ଆହୁରି ସୂକ୍ଷ୍ମତର ଇଥର ବିଦ୍ୟମାନ, ତାହାହେଲେ ସେହି ଇଥର ପରମାଣୁ ମଧ୍ୟରେ ପୁଣି ବ୍ୟବଧାନ ଅଛି ବୋଲି ସ୍ୱୀକାର କରିବାକୁ ହେବ । ଏହିପରି ସୂକ୍ଷ୍ମତର, ସୂକ୍ଷ୍ମତମ ଇଥର କଳ୍ପନା କରି କରି କିଛି ସିଦ୍ଧାନ୍ତ ମିଳିବ ନାହିଁ—ଏହାକୁ ଅନବସ୍ଥା ଦୋଷ କହନ୍ତି । ଅତଏବ ପରମାଣୁବାଦ ଚରମ ସିଦ୍ଧାନ୍ତ ହୋଇପାରେ ନାହିଁ । ସାଙ୍ଖ୍ୟମତରେ ପ୍ରକୃତି ସର୍ବବ୍ୟାପୀ, ତାହା ଏକ ସର୍ବବ୍ୟାପୀ ଜଡ଼ରାଶିସ୍ୱରୂପ । ତେଣୁ ଏ ଜଗତରେ ଯାହାସବୁ ଅଛି, ସେ ସମୁଦାୟର କାରଣ ରହିଛି । କାରଣ କହିଲେ କଅଣ ବୁଝାଯାଏ ? କାରଣ କହିଲେ ବ୍ୟକ୍ତ ଅବସ୍ଥାର ସୂକ୍ଷ୍ମତର ଅବସ୍ଥାକୁ ବୁଝାଯାଏ—ଯାହା ବ୍ୟକ୍ତ ହୁଏ ତାହାର ହିଁ ଅବ୍ୟକ୍ତ ଅବସ୍ଥା । ବିନାଶ କହିଲେ କଅଣ ବୁଝାଯାଏ ? ବିନାଶ କହିଲେ କାରଣରେ ଲୟକୁ ବୁଝାଯାଏ; କାରଣାବସ୍ଥାପ୍ରାପ୍ତିର ଅର୍ଥ ଯେଉଁସବୁ ଉପାଦାନରୁ କୌଣସି ବସ୍ତୁ ନିର୍ମିତ ହୋଇଥିଲା ସେସବୁ ସେମାନଙ୍କର ଆଦିମ ଅବସ୍ଥାକୁ ଚାଲିଯାଏ । ବିନାଶ ଶବ୍ଦର ଏହି ଅର୍ଥ ବ୍ୟତୀତ ସମ୍ପୂର୍ଣ୍ଣ ଅଭାବ ଅର୍ଥ ଯେ ଅସମ୍ଭବ, ଏହା ସ୍ପଷ୍ଟଭାବରେ ଦେଖା ଯାଉଛି । କପିଳ ଅନେକ ଯୁଗ ପୂର୍ବେ ବିନାଶର ଯେଉଁ କାରଣଲୟ ଅର୍ଥ କରିଥିଲେ, ବାସ୍ତବିକ ଏହାଦ୍ୱାରା ଯେ ତାହା ହିଁ ବୁଝାଏ, ତାହା ଆଧୁନିକ ପଦାର୍ଥ ବିଜ୍ଞାନାନୁସାରେ ପ୍ରମାଣ କରାଯାଇପାରେ । ସୂକ୍ଷ୍ମତର ଅବସ୍ଥାକୁ ଗମନ ବ୍ୟତୀତ ବିନାଶର ଆଉ କୌଣସି ଅର୍ଥ ନାହିଁ । ଆପଣମାନେ ଜାଣନ୍ତି, ବୈଜ୍ଞାନିକ ପରୀକ୍ଷାଗାରରେ କିପରି ଏହା ପ୍ରମାଣ କରାଯାଇପାରେ ଯେ ଭୂତ ଅବିନଶ୍ୱର । ଆପଣମାନଙ୍କ ମଧ୍ୟରେ ଯେଉଁମାନେ ରସାୟନ ବିଦ୍ୟା ଅଧ୍ୟୟନ କରିଛନ୍ତି, ସେମାନେ ଅବଶ୍ୟ ଜାଣନ୍ତି ଯେ, ଯଦି ଗୋଟିଏ କାଚନଳୀ ଭିତରେ ଗୋଟିଏ ବତି ଓ କଷ୍ଟିକର (Caustic soda) ପେନ୍‌ସିଲ୍ ରଖାଯାଏ ଏବଂ ବତିଟି ସମୁଦାୟ ପୋଡ଼ି ଦିଆଯାଏ, ତେବେ ଏହି କଷ୍ଟିକର (Caustic soda) ପେନ୍‌ସିଲ୍‌ଟି ବାହାର କରି ଓଜନ କଲେ ଦେଖାଯିବ ଯେ, ସେହି ପେନସିଲ୍‌ଟିର ଓଜନ ବର୍ତ୍ତମାନ ତାହାର ପୂର୍ବ ଓଜନ ସହିତ ବତିର ଓଜନ ଯୋଗ କଲେ ଯାହା ହୁଅନ୍ତା, ଠିକ୍ ସେତିକି ହୋଇଛି । ସେହି ବତିଟି ହିଁ ସୂକ୍ଷ୍ମରୁ ସୂକ୍ଷ୍ମତର ହୋଇ

କଷ୍ଟିକରେ ପ୍ରବିଷ୍ଟ ହୋଇଛି । ଅତଏବ ଆମର ଆଜକାଲର ଜ୍ଞାନୋନ୍ନତ ଅବସ୍ଥାରେ ଯଦି କେହି କହେ ଯେ, କୌଣସି ଜନପ ସମ୍ପୂର୍ଣ୍ଣ ବିନାଶପ୍ରାପ୍ତ ହୁଏ, ତେବେ ସେ ନିଜେ ହିଁ କେବଳ ଉପହାସାସ୍ପଦ ହେବ । କେବଳ ଅଶିକ୍ଷିତ ବ୍ୟକ୍ତି ହିଁ ଏପରି କଥା କହିବ ଏବଂ ଆଶ୍ଚର୍ଯ୍ୟର ବିଷୟ, ସେହି ପ୍ରାଚୀନ ଦାର୍ଶନିକମାନଙ୍କର ଉପଦେଶ ଆଧୁନିକ ବିଜ୍ଞାନ ସହିତ ମିଳିଯାଉଛି । ପ୍ରାଚୀନ ପଣ୍ଡିତମାନେ ମନକୁ ଭିତ୍ତିସ୍ୱରୂପ କରି ସେଗୁଡ଼ିକର ଅନୁସନ୍ଧାନରେ ଅଗ୍ରସର ହୋଇଥିଲେ । ସେମାନେ ଏହି ବ୍ରହ୍ମାଣ୍ଡର ମାନସିକ ଭାଗଟିର ବିଶ୍ଳେଷଣ କରିଥିଲେ ଏବଂ ତଦ୍ୱାରା କେତେଗୁଡ଼ିଏ ସିଦ୍ଧାନ୍ତରେ ଉପନୀତ ହୋଇଥିଲେ । ଆଉ ଆଧୁନିକ ବିଜ୍ଞାନ ତାହାର ଭୌତିକ (Physical) ଭାଗ ବିଶ୍ଳେଷଣ କରି ଠିକ୍ ସେହି ସିଦ୍ଧାନ୍ତରେ ହିଁ ଉପନୀତ ହୋଇଛନ୍ତି । ଉଭୟପ୍ରକାର ବିଶ୍ଳେଷଣ ଗୋଟିଏ ସତ୍ୟରେ ଉପନୀତ ହୋଇଛି ।

ଆପଣମାନଙ୍କର ଅବଶ୍ୟ ସ୍ମରଣ ଥିବ ଯେ, ଏହି ଜଗତରେ ପ୍ରକୃତିର ପ୍ରଥମ ବିକାଶକୁ ସାଙ୍ଖ୍ୟବାଦୀଗଣ ମହତ୍ତ୍ୱ ବୋଲି କହନ୍ତି । ଏହାକୁ ଆମେ ସମଷ୍ଟି-ବୁଦ୍ଧି କହିପାରୁ, ତାହାର ଠିକ୍ ଶବ୍ଦାର୍ଥ ମହତ୍-ତତ୍ତ୍ୱ । ପ୍ରକୃତିର ପ୍ରଥମ ବିକାଶ ଏହି ବୁଦ୍ଧି । ତାକୁ ଅହଂଜ୍ଞାନ ବୁଝାଯାଏ ନାହିଁ, କହିଲେ ଭୁଲ ହେବ । ଅହଂଜ୍ଞାନ ଏହି ବୁଦ୍ଧିତତ୍ତ୍ୱର ଅଂଶବିଶେଷ ମାତ୍ର; ବୁଦ୍ଧିତତ୍ତ୍ୱ କିନ୍ତୁ ସାର୍ବଜନୀନ ତତ୍ତ୍ୱ । ଚେତନା, ଅବଚେତନା, ଅତିଚେତନା—ଏସବୁ ତାହାର ଅନ୍ତର୍ଗତ । ଉଦାହରଣସ୍ୱରୂପ, ପ୍ରକୃତିରାଜ୍ୟରେ କେତେକ ପରିବର୍ତ୍ତନ ଆମ ଚକ୍ଷୁ ସମକ୍ଷରେ ଘଟୁଛି; ଆପଣମାନେ ସେଗୁଡ଼ିକୁ ଦେଖୁଛନ୍ତି ଓ ବୁଝୁଛନ୍ତି; କିନ୍ତୁ ଆଉ କେତେକ ପରିବର୍ତ୍ତନ ଅଛି, ସେଗୁଡ଼ିକ ଏତେ ସୂକ୍ଷ୍ମ ଯେ, କୌଣସି ମାନବୀୟ ବୋଧଶକ୍ତିର ସେସବୁ ଆୟତ୍ତ ନୁହେଁ । ଏହି ଉଭୟପ୍ରକାର ପରିବର୍ତ୍ତନ ଗୋଟିଏ କାରଣରୁ ଘଟୁଛି । ସେହି ଗୋଟିଏ ମହତ୍ ଏହି ଉଭୟ ପ୍ରକାର ପରିବର୍ତ୍ତନ ସାଧନ କରୁଛି । ଆଉ କେତୋଟି ପରିବର୍ତ୍ତନ ଅଛି, ଯେଉଁଗୁଡ଼ିକ ଆମ ମନ ବା ବିଚାରଶକ୍ତିର ଅତୀତ । ଏ ସକଳ ପରିବର୍ତ୍ତନ ଏହି ମହତ୍ତ୍ୱ ମଧ୍ୟରେ । ବ୍ୟଷ୍ଟି ଯେବେ ମୁଁ ଯେତେବେଳେ ଆଲୋଚନା କରିବାକୁ ପ୍ରବୃତ୍ତ ହେବ, ସେତେବେଳେ ଏକଥା ଆହୁରି ଭଲରୂପେ ଆପଣମାନେ ବୁଝିବେ । ଏହି ମହତ୍ତ୍ୱରୁ ସମଷ୍ଟି ଅହଂତତ୍ତ୍ୱର ଉତ୍ପତ୍ତି, ପୁଣି ଏ ଉଭୟ ହିଁ ଭୌତିକ । ଭୂତ ଓ ମନ ଭିତରେ ପରିମାଣଗତ ଭେଦ ବ୍ୟତୀତ ଅନ୍ୟ କୌଣସି ଭେଦ ନାହିଁ । ଗୋଟିଏ ବସ୍ତୁର ହିଁ ସୂକ୍ଷ୍ମ ଓ ସ୍ଥୂଳାବସ୍ଥା, ଗୋଟିଏ ଅନ୍ୟ ଗୋଟିକରେ ପରିଣତ ହୋଇଛି । ଏହା ସହିତ ଆଧୁନିକ ଶରୀର ବିଜ୍ଞାନଗତ ସିଦ୍ଧାନ୍ତର ଐକ୍ୟ ଅଛି । ମସ୍ତିଷ୍କଠାରୁ ପୃଥକ୍ ଗୋଟିଏ ମନ ଅଛି—ଏ ପ୍ରକାର ସମୁଦାୟ ଅସମ୍ଭବ ବିଷୟରେ ବିଶ୍ୱାସ କଲେ ଯେପରି ବିଜ୍ଞାନଶାସ୍ତ୍ର ସହିତ ବିରୋଧ ଓ ଦ୍ୱନ୍ଦ୍ୱ ଉପସ୍ଥିତ ହୁଏ, ପୂର୍ବୋକ୍ତ ବିଶ୍ୱାସଦ୍ୱାରା ବରଂ ସେହି ବିରୋଧରୁ ରକ୍ଷା ମିଳେ । ମହତ୍ ନାମକ ପଦାର୍ଥ ଅହଂତତ୍ତ୍ୱ ନାମକ ଜଡ଼ ପଦାର୍ଥର ସୂକ୍ଷ୍ମାବସ୍ଥାବିଶେଷରେ ପରିଣତ ହୁଏ ଏବଂ ସେହି ଅହଂତତ୍ତ୍ୱର ଦୁଇପ୍ରକାର ପରିଣାମ ଘଟେ । ତନ୍ମଧ୍ୟରେ ଏକପ୍ରକାର ପରିଣାମ ଇନ୍ଦ୍ରିୟ । ଇନ୍ଦ୍ରିୟ

ଦୁଇପ୍ରକାର—କର୍ମେନ୍ଦ୍ରିୟ ଓ ଜ୍ଞାନେନ୍ଦ୍ରିୟ । ଇନ୍ଦ୍ରିୟ କହିଲେ ଏହିସବୁ ଦୃଶ୍ୟମାନ ଚକ୍ଷୁକର୍ଣ୍ଣାଦିଙ୍କୁ ବୁଝାଉ ନାହିଁ, ଇନ୍ଦ୍ରିୟ ଏସବୁଠାରୁ ସୂକ୍ଷ୍ମତର—ଯାହାକୁ ଆପଣମାନେ ମସ୍ତିଷ୍କକେନ୍ଦ୍ର ଓ ସ୍ନାୟୁକେନ୍ଦ୍ର କହନ୍ତି । ଏହି ଅହଂତତ୍ତ୍ୱ ପରିଣାମପ୍ରାପ୍ତ ହୁଏ ଏବଂ ଅହଂତତ୍ତ୍ୱରୂପକ ଉପାଦାନରୁ ଏହି କେନ୍ଦ୍ର ଓ ସ୍ନାୟୁସବୁ ଉତ୍ପନ୍ନ ହୁଏ । ଅହଂତତ୍ତ୍ୱରୂପକ ସେହି ଉପାଦାନରୁ ଆଉ ଏକପ୍ରକାର ସୂକ୍ଷ୍ମପଦାର୍ଥର ଉତ୍ପତ୍ତି ହୁଏ—ତନ୍ମାତ୍ର ଅର୍ଥାତ୍ ସୂକ୍ଷ୍ମ ଭୌତିକ ପରମାଣୁ । ଯାହା ଆପଣଙ୍କର ନାସିକା ସଂସ୍ପର୍ଶରେ ଆସି ଆପଣମାନଙ୍କୁ ଘ୍ରାଣବିଷୟରେ ଜଣାଇଦିଏ, ତାହା ହିଁ ତନ୍ମାତ୍ରର ଗୋଟିଏ ଦୃଷ୍ଟାନ୍ତ । ଏହି ସୂକ୍ଷ୍ମ ତନ୍ମାତ୍ରଗୁଡ଼ିକୁ ଆପଣମାନେ ପ୍ରତ୍ୟକ୍ଷରୂପେ ଦେଖିପାରନ୍ତି ନାହିଁ; କେବଳ ସେଗୁଡ଼ିକ ଯେ ଅଛି, ଏ ବିଷୟରେ ଆପଣ ଅବଗତ ହୋଇପାରନ୍ତି । ଅହଂତତ୍ତ୍ୱରୁ ତନ୍ମାତ୍ରଗୁଡ଼ିକର ଉତ୍ପତ୍ତି ହୁଏ, ଆଉ ସେହି ତନ୍ମାତ୍ର ବା ସୂକ୍ଷ୍ମଭୂତରୁ ସ୍ଥୂଳଭୂତ ଅର୍ଥାତ୍ ବାୟୁ, ଜଳ, ପୃଥିବୀ ଏବଂ ଅନ୍ୟାନ୍ୟ ଯାହା କିଛି ଆମେ ଦେଖିପାରୁ ବା ଅନୁଭବ କରୁ ସେସବୁର ଉତ୍ପତ୍ତି ହୁଏ । ମୁଁ ଏହି ବିଷୟଟି ଆପଣମାନଙ୍କ ମନରେ ଦୃଢ଼ଭାବରେ ମୁଦ୍ରିତ କରିଦେବା ପାଇଁ ଇଚ୍ଛା କରେ । ଏହା ଧାରଣା କରିବା ଅତି କଠିନ, କାରଣ ପାଶ୍ଚାତ୍ୟ ଦେଶରେ ମନ ଏବଂ ଭୂତ ସମ୍ବନ୍ଧରେ ଅଦ୍ଭୁତ ଅଦ୍ଭୁତ ଧାରଣା ଅଛି । ମସ୍ତିଷ୍କରୁ ସେସବୁ ସଂସ୍କାର ଦୂର କରିବା ଅତି କଠିନ । ବାଲ୍ୟକାଳରେ ପାଶ୍ଚାତ୍ୟ ଦର୍ଶନରେ ଶିକ୍ଷିତ ହୋଇଥିବାରୁ ମୋତେ ଏହି ତତ୍ତ୍ୱଗୁଡ଼ିକ ବୁଝିବାକୁ ବହୁତ କଷ୍ଟ ସ୍ୱୀକାର କରିବାକୁ ପଡ଼ିଥିଲା ।

ଏହି ସମୁଦାୟ ବିଷୟ ଜଗତର ଅନ୍ତର୍ଗତ । ଭାବି ଦେଖନ୍ତୁ, ପ୍ରଥମ ଅବସ୍ଥାରେ ଏକ ସର୍ବବ୍ୟାପୀ, ଅଖଣ୍ଡ, ଅବିଭକ୍ତ ଜଡ଼ରାଶି ରହିଅଛି । ଯେପରି ଦୁଗ୍ଧ ପରିଣାମପ୍ରାପ୍ତ ହୋଇ ଦହି ହୁଏ, ତଦ୍ରୂପ ତାହା ମହତ୍ ନାମକ ଅନ୍ୟ ଏକ ପଦାର୍ଥରେ ପରିଣତ ହୁଏ —ଏହି ମହତ୍ ଗୋଟିଏ ଅବସ୍ଥାରେ* ବୁଦ୍ଧିତତ୍ତ୍ୱରୂପେ ଅବସ୍ଥାନ କରେ, ଅନ୍ୟ ଅବସ୍ଥାରେ ତାହା ଅହଂତତ୍ତ୍ୱରୂପେ ପରିଣତ ହୁଏ । ତାହା ସେହି ଏକମାତ୍ର ବସ୍ତୁ, କେବଳ ଅପେକ୍ଷାକୃତ ସ୍ଥୂଳତର ଆକାରରେ ପରିଣତ ହୋଇ ଅହଂତତ୍ତ୍ୱ ନାମ ଧାରଣ କରିଅଛି । ଏପରି ସମଗ୍ର ବ୍ରହ୍ମାଣ୍ଡ ଯେପରିକି ସ୍ତର ସ୍ତର ହୋଇ ବିରଚିତ । ପ୍ରଥମେ ଅବ୍ୟକ୍ତ ପ୍ରକୃତି, ତାହା ସର୍ବବ୍ୟାପୀ ବୁଦ୍ଧିତତ୍ତ୍ୱରୂପେ ବା ମହତ୍‌ରେ ପରିଣତ ହୁଏ; ତାହା ପୁଣି ସର୍ବବ୍ୟାପୀ ଅହଂତତ୍ତ୍ୱ ବା ଅହଙ୍କାରରେ ଏବଂ ତାହା ପରିଣାମପ୍ରାପ୍ତ ହୋଇ ସର୍ବବ୍ୟାପୀ ଇନ୍ଦ୍ରିୟଗ୍ରାହ୍ୟ ଭୂତରେ** ପରିଣତ ହୁଏ । ସେହି ଭୂତସମଷ୍ଟି ଇନ୍ଦ୍ରିୟ ବା ସ୍ନାୟୁକେନ୍ଦ୍ର–

* ଭାଷାର ଭଙ୍ଗୀରେ ପାଠକ ମନେ କରିପାରନ୍ତି ବୁଦ୍ଧିତତ୍ତ୍ୱ ମହତ୍‌ର ଅବସ୍ଥାବିଶେଷ ! ପ୍ରକୃତ ପକ୍ଷରେ କିନ୍ତୁ ତାହା ନୁହେଁ, ଯାହାକୁ ମହତ୍ କହନ୍ତି, ତାହା ହିଁ ବୁଦ୍ଧିତତ୍ତ୍ୱ ।

** ପୂର୍ବେ ସାଙ୍ଖ୍ୟମତାନୁଯାୟୀ ଯେଉଁ ସୃଷ୍ଟିର କ୍ରମ ବର୍ଣ୍ଣିତ ହୋଇଛି, ତାହା ସହିତ ଏହି ସ୍ଥାନରେ ସ୍ୱାମୀଜୀଙ୍କ କଥାର ସାମାନ୍ୟ ବିରୋଧ ଆପାତତଃ ବୋଧ ହୋଇପାରେ । ପୂର୍ବରୁ ବୁଝାଇ ଦିଆଯାଇଅଛି, ଅହଂତତ୍ତ୍ୱରୁ ଇନ୍ଦ୍ରିୟ ଓ ତନ୍ମାତ୍ରର ଉତ୍ପତ୍ତି ହୁଏ । ଏଠି ପୁଣି ଇନ୍ଦ୍ରିୟଗ୍ରାହ୍ୟ ଭୂତ କଥା କହୁଛନ୍ତି । ଏହା କ'ଣ କୌଣସି ନୂତନ

ସମୂହରେ ଏବଂ ସମଷ୍ଟି ସୂକ୍ଷ୍ମ ପରମାଣୁସମୂହରେ ପରିଣତ ହୁଏ । ପରେ ଏଗୁଡ଼ିକ ମିଳିତ ହୋଇ ଏହି ସ୍ଥୂଳ ଜଗତ୍-ପ୍ରପଞ୍ଚର ଉତ୍ପତ୍ତି । ସାଙ୍ଖ୍ୟମତରେ ଏହା ହିଁ ସୃଷ୍ଟିର କ୍ରମ । ପୁଣି ବିରାଟ ବା ସମଷ୍ଟି-ବ୍ରହ୍ମାଣ୍ଡ ମଧ୍ୟରେ ଯାହା ଅଛି, ତାହା ବ୍ୟଷ୍ଟି ବା କ୍ଷୁଦ୍ର ବ୍ରହ୍ମାଣ୍ଡରେ ମଧ୍ୟ ଅବଶ୍ୟ ରହିବ ।

ବ୍ୟଷ୍ଟିସ୍ୱରୂପ ଗୋଟିଏ ମନୁଷ୍ୟ କଥା ଧରନ୍ତୁ । ପ୍ରଥମତଃ, ତାହା ଭିତରେ ସେହି ସାମ୍ୟାବସ୍ଥାପନ୍ନ ପ୍ରକୃତିର ଅଂଶ ଅଛି । ସେହି ଜଡ଼ସ୍ୱରୂପା ପ୍ରକୃତି ତାହା ଭିତରେ ମହତ୍‌ରୂପେ ପରିଣତ ହୋଇଛି । ସେହି ମହତ୍ ଅର୍ଥାତ୍ ସର୍ବବ୍ୟାପୀ ବୁଦ୍ଧିତତ୍ତ୍ୱର ଏକ ଅଂଶ ତାହା ଭିତରେ ରହିଛି ଏବଂ ସେହି ସର୍ବବ୍ୟାପୀ ବୁଦ୍ଧିତତ୍ତ୍ୱର କ୍ଷୁଦ୍ର ଅଂଶଟି ତାହା ଭିତରେ ଅହଂତତ୍ତ୍ୱରେ ବା ଅହଂକାରରେ ପରିଣତ ହୋଇଛି—ତାହା ସେହି ସର୍ବବ୍ୟାପୀ ଅହଂତତ୍ତ୍ୱର କ୍ଷୁଦ୍ର ଅଂଶମାତ୍ର । ଏ ଅହଂକାର ପୁଣି ଇନ୍ଦ୍ରିୟ ଓ ତନ୍ମାତ୍ରରେ ପରିଣତ ହୋଇଛି । ତନ୍ମାତ୍ରଗୁଡ଼ିକ ପୁଣି ପରସ୍ପର ମିଳିତ ହୋଇ ତାହା ନିଜ କ୍ଷୁଦ୍ର ବ୍ରହ୍ମାଣ୍ଡ-ଦେହ ସୃଷ୍ଟି କରିଛନ୍ତି । ଏହି ବିଷୟଟି ମୁଁ ସୁସ୍ପଷ୍ଟରୂପେ ଆପଣମାନଙ୍କୁ ବୁଝାଇବାକୁ ଚାହେଁ, କାରଣ ଏହା ବେଦାନ୍ତ ବୁଝିବା ପକ୍ଷରେ ପ୍ରଥମ ସୋପାନ-ସ୍ୱରୂପ; ପୁଣି ଏହା ଆପଣମାନଙ୍କର ଜାଣିବା ଅତ୍ୟାବଶ୍ୟକ, କାରଣ ଏହା ହିଁ ସମଗ୍ର ଜଗତର ବିଭିନ୍ନ ପ୍ରକାର ଦର୍ଶନଶାସ୍ତ୍ରର ଭିତ୍ତିସ୍ୱରୂପ । ଜଗତରେ ଏପରି କୌଣସି ଦର୍ଶନଶାସ୍ତ୍ର ନାହିଁ, ଯାହା ଏହି ସାଙ୍ଖ୍ୟଦର୍ଶନ-ପ୍ରତିଷ୍ଠାତା କପିଳଙ୍କ ନିକଟରେ ଋଣୀ ନୁହେଁ । ପିଥାଗୋରାସ୍ ଭାରତକୁ ଆସି ଏହି ଦର୍ଶନ ଅଧ୍ୟୟନ କରିଥିଲେ ଏବଂ ଗ୍ରୀକ୍‌ମାନଙ୍କ ନିକଟକୁ ଏହାର କେତେଗୁଡ଼ିଏ ତତ୍ତ୍ୱ ନେଇ ଯାଇଥିଲେ । ପରେ ଏହା 'ଆଲେକ୍‌ଜାଣ୍ଡ୍ରିୟାର ଦାର୍ଶନିକ ସମ୍ପ୍ରଦାୟର' ଭିତ୍ତିସ୍ୱରୂପ ହୁଏ ଏବଂ ଆହୁରି ପରବର୍ତ୍ତୀ କାଳରେ 'ନଷ୍ଟିକ ଦର୍ଶନ' (Gnostic philosophy)ର ଭିତ୍ତି ହୁଏ । ଏହିପରି ଏହା ଦୁଇଭାଗରେ ବିଭକ୍ତ । ଗୋଟିଏ ଭାଗ ୟୁରୋପ ଓ ଆଲେକ୍‌ଜାଣ୍ଡ୍ରିୟାକୁ ଗଲା, ଅନ୍ୟ ଭାଗଟି ଭାରତରେ ରହିଲା ଏବଂ ସବୁପ୍ରକାର ହିନ୍ଦୁ ଦର୍ଶନର ଭିତ୍ତିସ୍ୱରୂପ ହେଲା । କାରଣ, ବ୍ୟାସଦେବଙ୍କ ବେଦାନ୍ତ-ଦର୍ଶନ ଏହାର ପରିଣତିସ୍ୱରୂପ । ଏହି କପିଳଦର୍ଶନ ହିଁ ଜଗତ ମଧ୍ୟରେ ଯୁକ୍ତି-ବିଚାରଦ୍ୱାରା ଜଗତ୍‌ତତ୍ତ୍ୱ ବ୍ୟାଖ୍ୟାର ସର୍ବପ୍ରଥମ ଚେଷ୍ଟା । ଜଗତର ସକଳ ଦାର୍ଶନିକଙ୍କର କର୍ତ୍ତବ୍ୟ କପିଳଙ୍କ ପ୍ରତି ଉଚିତ ସମ୍ମାନ ପ୍ରଦର୍ଶନ କରିବା । ମୁଁ ଆପଣମାନଙ୍କ ମନରେ ଏ କଥାଟି ବିଶେଷରୂପେ ମୁଦ୍ରିତ କରିବାକୁ ଚାହେଁ ଯେ, ଦର୍ଶନଶାସ୍ତ୍ରର ଜନକ ବୋଲି ଆମେ ତାହାଙ୍କ ଉପଦେଶ ଶୁଣିବାକୁ ବାଧ୍ୟ ଏବଂ ସେ ଯାହା କହି ଯାଇଛନ୍ତି ସେସବୁ ପ୍ରତି ଶ୍ରଦ୍ଧା କରିବା କର୍ତ୍ତବ୍ୟ । ଏପରି କି ବେଦରେ ମଧ୍ୟ ଏହି ଅଦ୍ଭୁତ

---

ତତ୍ତ୍ୱ ? ବୋଧହୁଏ ଅହଂତତ୍ତ୍ୱ ଅତି ସୂକ୍ଷ୍ମ ପଦାର୍ଥ ବୋଲି ସେଥିରୁ ଇନ୍ଦ୍ରିୟ ଓ ତନ୍ମାତ୍ରର ଉତ୍ପତ୍ତି ସହଜରେ ବୁଝାଇବା ପାଇଁ ସ୍ୱାମୀଜୀ ଏପରି ଇନ୍ଦ୍ରିୟଗ୍ରାହ୍ୟ ଭୂତ କଥା କଳ୍ପନା କରିଛନ୍ତି ।

ବ୍ୟକ୍ତିଙ୍କର—ଏହି ସର୍ବପ୍ରାଚୀନ ଦାର୍ଶନିକଙ୍କର ଉଲ୍ଲେଖ ଦେଖିବାକୁ ମିଳେ । ତାହାଙ୍କ ଅନୁଭୂତିସମୁଦାୟ କି ଅପୂର୍ବ ! ଯଦି ଯୋଗୀମାନଙ୍କ ଅତୀନ୍ଦ୍ରିୟ ପ୍ରତ୍ୟକ୍ଷ ଶକ୍ତିର କୌଣସି ପ୍ରମାଣପ୍ରୟୋଗ ଆବଶ୍ୟକ ପଡ଼େ, ତେବେ କହିବାକୁ ହେବ ଏହିପରି ବ୍ୟକ୍ତିମାନେ ତାହାର ପ୍ରମାଣ । ସେମାନେ କିପରି ଏସବୁ ତତ୍ତ୍ୱ ଉପଲବ୍ଧି କଲେ ? ସେମାନଙ୍କର ତ ଅଣୁବୀକ୍ଷଣ ବା ଦୂରବୀକ୍ଷଣ ନ ଥିଲା । ସେମାନଙ୍କର ଅନୁଭବଶକ୍ତି କେତେ ସୂକ୍ଷ୍ମ ଥିଲା, ସେମାନଙ୍କର ବିଶ୍ଳେଷଣ କିପରି ନିର୍ଦ୍ଦୋଷ ଓ କେଡ଼େ ଅଦ୍ଭୁତ !

ଯାହା ହେଉ, ବର୍ତ୍ତମାନ ପୂର୍ବ ପ୍ରସଙ୍ଗର ଅନୁବୃତ୍ତି କରାଯାଉ । ଆମେ କ୍ଷୁଦ୍ର ବ୍ରହ୍ମାଣ୍ଡ—ମାନବର ତତ୍ତ୍ୱ ଆଲୋଚନା କରିଥିଲେ । ଆମେମାନେ ଦେଖିଛେ, ବୃହତ୍ ବ୍ରହ୍ମାଣ୍ଡ ଯେଉଁ ନିୟମରେ ନିର୍ମିତ, କ୍ଷୁଦ୍ର ବ୍ରହ୍ମାଣ୍ଡ ମଧ୍ୟ ତଦ୍ରୂପ । ପ୍ରଥମେ ଅବିଭକ୍ତ ବା ସମ୍ପୂର୍ଣ୍ଣ ସାମ୍ୟାବସ୍ଥାପନ୍ନ ପ୍ରକୃତି । ତା'ପରେ ଏହା ବୈଷମ୍ୟପ୍ରାପ୍ତ ହେଲେ କାର୍ଯ୍ୟ ଆରମ୍ଭ ହୁଏ ଏବଂ ସେହି କାର୍ଯ୍ୟଫଳରେ ଯେଉଁ ପ୍ରଥମ ପରିଣାମ ହୁଏ ତାହା ମହତ୍ ଅର୍ଥାତ୍ ବୁଦ୍ଧି । ବର୍ତ୍ତମାନ ଆପଣମାନେ ଦେଖୁଛନ୍ତି, ମନୁଷ୍ୟ ଭିତରେ ଯେ ଏହି ବୁଦ୍ଧି ରହିଛି, ତାହା ସର୍ବବ୍ୟାପୀ ବୁଦ୍ଧିତତ୍ତ୍ୱ ବା ମହତ୍ତ୍ୱର କ୍ଷୁଦ୍ର ଅଂଶସ୍ୱରୂପ । ଏହା ମଧ୍ୟରୁ ଅହଂଜ୍ଞାନର ଉଦ୍ଭବ, ସେଥିରୁ ଅନୁଭବାତ୍ମକ ଓ ଗତ୍ୟାତ୍ମକ ସ୍ନାୟୁସକଳ ଏବଂ ସୂକ୍ଷ୍ମ ପରମାଣୁ ବା ତନ୍ମାତ୍ର । ଏହି ତନ୍ମାତ୍ରରୁ ସ୍ଥୂଳ ଦେହ ବିରଚିତ ହୁଏ । ମୁଁ ଏଠାରେ କହିବାକୁ ଇଚ୍ଛାକରେ, ସୋପେନହାଉଆର୍‌ଙ୍କର ଦର୍ଶନ ଓ ବେଦାନ୍ତ ମଧ୍ୟରେ ଗୋଟିଏ ପ୍ରଭେଦ ଅଛି । ସୋପେନହାଉଆର୍ କହନ୍ତି, ବାସନା ବା ଇଚ୍ଛା ସବୁକିଛିର କାରଣ । ଆମମାନଙ୍କର ଏହି ବ୍ୟକ୍ତ-ଭାବାପନ୍ନ ହେବାର କାରଣ ପ୍ରାଣଧାରଣର ଇଚ୍ଛା; କିନ୍ତୁ ଅଦ୍ୱୈତବାଦୀମାନେ ଏହା ଅସ୍ୱୀକାର କରନ୍ତି । ସେମାନେ କହନ୍ତି ମହତ୍ତତ୍ତ୍ୱ ହିଁ ଏହାର କାରଣ, ଏପରି ଗୋଟିଏ ଇଚ୍ଛା ହୋଇ ନ ପାରେ ଯାହା ପ୍ରତିକ୍ରିୟାସ୍ୱରୂପ ନୁହେଁ, ଇଚ୍ଛାର ଅତୀତ ଅନେକ ବସ୍ତୁ ରହିଛି । ଏହା ଅହଂଦ୍ୱାରା ଗଠିତ ଗୋଟିଏ ଜିନିଷ, ଅହଂ ପୁଣି ତା' ଅପେକ୍ଷା ଉଚ୍ଚତର ବସ୍ତୁ ଅର୍ଥାତ୍ ମହତ୍ତତ୍ତ୍ୱରୁ ଉତ୍ପନ୍ନ ଏବଂ ତାହା ପୁଣି ଅବ୍ୟକ୍ତ ପ୍ରକୃତିର ବିକାର-ସ୍ୱରୂପ ।

ମଣିଷ ଭିତରେ ଏହି ଯେଉଁ ମହତ୍ ବା ବୁଦ୍ଧିତତ୍ତ୍ୱ ରହିଛି ତାହାର ସ୍ୱରୂପ ଉତ୍ତମରୂପେ ବୁଝିବା ବିଶେଷ ଆବଶ୍ୟକ । ଏହି ମହତ୍ତତ୍ତ୍ୱ ଯାହାକୁ ଆମେ 'ଅହଂ' ବୋଲି କହୁ, ତାହା ସେଥିରେ ପରିଣତ ହୁଏ ଏବଂ ଏହି ମହତ୍ତତ୍ତ୍ୱ ହିଁ ସେହି ସମୁଦାୟ ପରିବର୍ତ୍ତନର କାରଣ, ଯାହା ଫଳରେ ଏହି ଶରୀର ନିର୍ମିତ ହୋଇଛି । ଅବଚେତନ, ଚେତନ ଓ ଅତିଚେତନ ଅବସ୍ଥା—ଏ ସମସ୍ତ ହିଁ ମହତ୍ତତ୍ତ୍ୱର ଅନ୍ତର୍ଗତ । ଏ ତିନୋଟି ଅବସ୍ଥା କ'ଣ ? ଅବଚେତନ ଜ୍ଞାନର ନିମ୍ନଭୂମି, ଆମେ ପଶୁମାନଙ୍କ ଭିତରେ ଏହା ଦେଖିଥାଉ ଏବଂ ଏହାକୁ ସହଜାତ ଜ୍ଞାନ (Instinct) କହିଥାଉଁ । ଏହା ପ୍ରାୟ ଅଭ୍ରାନ୍ତ, ତେବେ ଏହାଦ୍ୱାରା ଜ୍ଞାତବ୍ୟ ବିଷୟର ସୀମା ଅତି ଅଳ୍ପ । ସହଜାତ ଜ୍ଞାନରେ ପ୍ରାୟ କିଛି ଭୁଲ ହୁଏ ନାହିଁ । ଗୋଟିଏ ପଶୁ ସେହି ସହଜାତ ଜ୍ଞାନପ୍ରଭାବରେ କେଉଁ ଶସ୍ୟଟି ଆହାର୍ଯ୍ୟ ବା କେଉଁଟି

ବିଷାକ୍ତ ତାହା ଅନାୟାସରେ ବୁଝିପାରେ; କିନ୍ତୁ ଏହି ସହଜାତ ଜ୍ଞାନ ଗୋଟିଏ ଦୁଇଟି ସାମାନ୍ୟ ବିଷୟରେ ସୀମାବଦ୍ଧ ମାତ୍ର, ଏହା ଯନ୍ତ୍ରବତ୍ କାର୍ଯ୍ୟ କରିଥାଏ । ତା'ପରେ ଚେତନ, ଆମର ସାଧାରଣ ଜ୍ଞାନ—ତାହା ଅପେକ୍ଷାକୃତ ଉଚ୍ଚତର ଅବସ୍ଥା । ଆମର ଏହି ସାଧାରଣ ଜ୍ଞାନ ଭ୍ରାନ୍ତିମୟ, ତାହା ପଦେ ପଦେ ଭ୍ରମରେ ପତିତ ହୁଏ; କିନ୍ତୁ ତାହାର ଗତି ଏପରି ମୃଦୁ ହେଲେ ମଧ୍ୟ ତାହାର ପରିସର ବହୁଦୂରବ୍ୟାପୀ, ଏହାକୁ ଆପଣମାନେ ଯୁକ୍ତି ବା ବିଚାରଶକ୍ତି ବୋଲି କହିଥାଆନ୍ତି । ସହଜାତ ଜ୍ଞାନ ଅପେକ୍ଷା ତାହାର ପ୍ରସାର ଅଧିକ ଦୂର ସତ୍ୟ, କିନ୍ତୁ ସହଜାତ ଜ୍ଞାନ ଅପେକ୍ଷା ଯୁକ୍ତିବିଚାର ଉପରେ ହିଁ ଅଧିକ ଭ୍ରମର ଆଶଙ୍କା ଥାଏ । ଏହା ଅପେକ୍ଷା ମନର ଆଉ ଗୋଟିଏ ଉଚ୍ଚତର ଅବସ୍ଥା ଅଛି, 'ଅତିଚେତନ' ଅବସ୍ଥା—ସେହି ଅବସ୍ଥାରେ, କେବଳ ଯୋଗୀମାନଙ୍କର ଅର୍ଥାତ୍ ଯେଉଁମାନେ ଚେଷ୍ଟା କରି ଏହି ଅବସ୍ଥା ଲାଭ କରିଛନ୍ତି, ସେହିମାନଙ୍କର ହିଁ ଅଧିକାର । ତାହା ସହଜାତ ଜ୍ଞାନପରି ଅଭ୍ରାନ୍ତ, ପୁଣି ଯୁକ୍ତିବିଚାରଠାରୁ ଏହାର ପ୍ରସାର ଅଧିକ । ତାହା ସର୍ବୋଚ୍ଚ ଅବସ୍ଥା । ଆମର ଏ କଥା ସ୍ମରଣ ରଖିବା ବିଶେଷ ଆବଶ୍ୟକ ଯେ, ମହତ୍ ଯେପରି ମାନବ ଭିତରେ ଅବଚେତନ, ଚେତନ ଓ ଅତିଚେତନ—ଜ୍ଞାନ ଯେଉଁ ତିନି ଅବସ୍ଥାରେ ଅବସ୍ଥାନ କରେ—ଏହି ସମୁଦାୟ ଭାବରେ ପ୍ରକାଶିତ ହେଉଛି, ସେହିପରି ଏହି ବୃହତ୍ ବ୍ରହ୍ମାଣ୍ଡରେ ମଧ୍ୟ ସେହି ସର୍ବବ୍ୟାପୀ ବୁଦ୍ଧିତତ୍ତ୍ୱ ବା ମହତ୍—ଏହିପରି ସହଜାତ ଜ୍ଞାନ, ଯୁକ୍ତି-ବିଚାରଜନିତ ଜ୍ଞାନ ଓ ବିଚାରାତୀତ ଜ୍ଞାନ—ଏହି ତ୍ରିବିଧ ଭାବରେ ଅବସ୍ଥିତ ।

ବର୍ତ୍ତମାନ ଗୋଟିଏ ସୂକ୍ଷ୍ମ ପ୍ରଶ୍ନ ଉଠୁଛି ଏବଂ ଏ ପ୍ରଶ୍ନଟି ସର୍ବଦା ଜିଜ୍ଞାସିତ ହୋଇଥାଏ—ଯଦି ପୂର୍ଣ୍ଣ ଈଶ୍ୱର ଏହି ଜଗତ୍ ବ୍ରହ୍ମାଣ୍ଡ ସୃଷ୍ଟି କରିଥାଆନ୍ତି ତେବେ ଏଠାରେ ଅପୂର୍ଣ୍ଣତା କାହିଁକି ? ଆମେ ଯେତେଦୂର ଦେଖୁଅଛୁ ତାକୁ ହିଁ ବ୍ରହ୍ମାଣ୍ଡ ବା ଜଗତ୍ ବୋଲି କହୁଛୁ—ପୁଣି ଏହା ଆମର ସାଧାରଣଜ୍ଞାନ ବା ଯୁକ୍ତିବିଚାରଜନିତ ଜ୍ଞାନର ଏହି କ୍ଷୁଦ୍ର ଭୂମି ବ୍ୟତୀତ ଆଉ କିଛି ନୁହେଁ । ତାହା ବାହାରେ ଆମେ ଆଉ କିଛି ଦେଖିବାକୁ ପାଉ ନାହୁଁ । ଏ ପ୍ରଶ୍ନଟି ଯେ ଗୋଟିଏ ଅସମ୍ଭବ ପ୍ରଶ୍ନ । ଯଦି ମୁଁ ଗୋଟିଏ ବୃହତ୍ ବସ୍ତୁରାଶିରୁ କ୍ଷୁଦ୍ର ଅଂଶବିଶେଷ ନିଏ ଏବଂ ସେଥିରେ ଦୃଷ୍ଟିପାତ କରେ, ତାହା ସ୍ୱଭାବତଃ ଅସମ୍ପୂର୍ଣ୍ଣ ବୋଧ ହେବ । ଏହି ଜଗତ୍ ଅସମ୍ପୂର୍ଣ୍ଣ ବୋଧ ହୁଏ, କାରଣ ଆମେ ତାକୁ ଅସମ୍ପୂର୍ଣ୍ଣ କରିଛେ । ଏହା ଆମେ କିପରି କଲେ ? ପ୍ରଥମେ ଦେଖାଯାଉ—ଯୁକ୍ତିବିଚାର କାହାକୁ କହନ୍ତି, ଜ୍ଞାନ କାହାକୁ କହନ୍ତି । ଜ୍ଞାନ ଅର୍ଥ ସାଦୃଶ୍ୟ-ଅନୁସନ୍ଧାନ । ଆପଣମାନେ ରାସ୍ତାରେ ଯାଇ ଗୋଟିଏ ମନୁଷ୍ୟ ଦେଖିଲେ, ଦେଖି ଜାଣିଲେ—ସେ ମନୁଷ୍ୟ । ଆପଣମାନେ ଅନେକ ମନୁଷ୍ୟ ଦେଖିଛନ୍ତି । ସମସ୍ତେ ଆପଣଙ୍କ ମନରେ ଗୋଟିଏ ସଂସ୍କାର ଉତ୍ପାଦନ କରିଛନ୍ତି । ଗୋଟିଏ ନୂତନ ମନୁଷ୍ୟକୁ ଦେଖିବା ମାତ୍ରେ ଏହାକୁ ଆପଣମାନେ ନିଜ ସଂସ୍କାର-ଭଣ୍ଡାରକୁ ନେଇଯାଇ ଦେଖିଲେ—ସେଠାରେ ମନୁଷ୍ୟର ଅନେକ ଛବି ରହିଛି । ସେତେବେଳେ ଏହି ନୂତନ ଛବିଟି ଅବଶିଷ୍ଟ ଛବି ସହିତ ସେମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ଖୋପରେ ରଖିଲେ—

ସେତେବେଳେ ଯାଇ ଆପଣମାନେ ତୃପ୍ତ ହେଲେ । କୌଣସି ନୂତନ ସଂସ୍କାର ଆସିଲେ ଯଦି ଆପଣଙ୍କ ମନରେ ତାହାର ସଦୃଶ ସଂସ୍କାରଗୁଡ଼ିକ ପୂର୍ବରୁ ବର୍ତ୍ତମାନ ଥାଏ, ତେବେ ଯାଇ ଆପଣମାନେ ତୃପ୍ତ ହୁଅନ୍ତି ଆଉ ଏହି ମିଳନ ବା ସହଯୋଗକୁ ଜ୍ଞାନ କହନ୍ତି । ଅତଏବ ଜ୍ଞାନର ଅର୍ଥ ପୂର୍ବରୁ ଆମର ଯେଉଁ ଅନୁଭୂତସମଷ୍ଟି ରହିଛି, ତାହା ସହିତ ଆଉ ଗୋଟିଏ ଅନୁଭୂତକୁ ଏକ ଖୋପରେ ରଖିବା । ଆଉ ଆପଣଙ୍କର ପୂର୍ବରୁ ଗୋଟିଏ ଜ୍ଞାନଭଣ୍ଡାର ନ ଥିଲେ ଯେ ନୂତନ କୌଣସି ଜ୍ଞାନ ଜନ୍ମିପାରେ ନାହିଁ ଏହା ହିଁ ତାହାର ଅନ୍ୟତମ ପ୍ରବଳ ପ୍ରମାଣ । ଯଦି ଆପଣମାନଙ୍କର ପୂର୍ବ ଅଭିଜ୍ଞତା କିଛି ନ ଥାଏ ଅଥବା କେତେକ ୟୁରୋପୀୟ ଦାର୍ଶନିକଙ୍କର ମତପରି, ମନ ଯଦି 'ଅନୁତ୍କୀର୍ଣ୍ଣ ଫଳକ' (Tabula Rasa) ସ୍ୱରୂପ ହୁଏ, ତେବେ ତାହା ପକ୍ଷରେ କୌଣସି ପ୍ରକାର ଜ୍ଞାନଲାଭ କରିବା ଅସମ୍ଭବ; କାରଣ ଜ୍ଞାନ ଅର୍ଥରେ ହିଁ ପୂର୍ବରୁ ଯେଉଁ ସଂସ୍କାରସମଷ୍ଟି ଅବସ୍ଥିତ, ତାହା ସହିତ ତୁଳନା କରି ନୂତନର ଗ୍ରହଣ ମାତ୍ର । ଜ୍ଞାନଭଣ୍ଡାର ପୂର୍ବରୁ ହିଁ ବିଦ୍ୟମାନ ଥିବା ଆବଶ୍ୟକ, ଯାହା ସହିତ ନୂତନ ସଂସ୍କାରଟିକୁ ମିଳାଇବାକୁ ହେବ । ମନେ କରନ୍ତୁ ଗୋଟିଏ ଶିଶୁ ଏହି ଜଗତରେ ଜନ୍ମଗ୍ରହଣ କଲା, ଯାହାର ଏହି ଜ୍ଞାନଭଣ୍ଡାର ନାହିଁ । ତାହାହେଲେ ତାହା ପକ୍ଷରେ କୌଣସି ପ୍ରକାର ଜ୍ଞାନଲାଭ କରିବା ଏକାବେଳକେ ଅସମ୍ଭବ । ଅତଏବ ସ୍ୱୀକାର କରିବାକୁ ହେବ ଯେ ଏହି ଶିଶୁର ଅବଶ୍ୟ ଏପରି ଗୋଟିଏ ଜ୍ଞାନଭଣ୍ଡାର ଥିଲା । ଏହିପରି ଅନନ୍ତକାଳ ଧରି ଜ୍ଞାନଲାଭ ହେଉଛି । ଏହି ସିଦ୍ଧାନ୍ତ କୌଣସି ପ୍ରକାରେ ଏଡ଼ି ହେବ ନାହିଁ । ଏହା ଗଣିତ ପରି ଧ୍ରୁବ ସିଦ୍ଧାନ୍ତ । ଏହା ଅନେକ ପରିମାଣରେ ସ୍ପେନସର୍ ଓ ଅନ୍ୟାନ୍ୟ କେତେକ ୟୁରୋପୀୟ ଦାର୍ଶନିକଙ୍କ ସିଦ୍ଧାନ୍ତ ସଦୃଶ । ସେମାନେ ଏପର୍ଯ୍ୟନ୍ତ ଜାଣିଛନ୍ତି ଯେ, ଅତୀତ ଜ୍ଞାନର ଭଣ୍ଡାର ନ ଥିଲେ କୌଣସି ପ୍ରକାର ଜ୍ଞାନ ଲାଭ କରିବା ଅସମ୍ଭବ, ଅତଏବ ଶିଶୁ ପୂର୍ବଜ୍ଞାନ ଧରି ଜନ୍ମଗ୍ରହଣ କରେ । ସେମାନେ ଏହି ସତ୍ୟ ବୁଝିଛନ୍ତି ଯେ, କାରଣ କାର୍ଯ୍ୟ ମଧ୍ୟରେ ଅନ୍ତର୍ନିହିତ ଥାଏ, ତାହା ସୂକ୍ଷ୍ମାକାରରେ ଆସି ପରେ ବିକାଶପ୍ରାପ୍ତ ହୁଏ । ତେବେ ଏହି ଦାର୍ଶନିକମାନେ କହନ୍ତି, ଶିଶୁ ଯେଉଁ ସଂସ୍କାର ନେଇ ଜନ୍ମଗ୍ରହଣ କରେ ତାହା ତାହାର ନିଜର ଅତୀତ ଅବସ୍ଥାର ଜ୍ଞାନରୁ ଲବ୍ଧ ନୁହେଁ,ତାହା ତାହାର ପୂର୍ବପୁରୁଷ-ମାନଙ୍କ ସଞ୍ଚିତ ସଂସ୍କାର; 'ବଂଶାନୁକ୍ରମିକ ସଞ୍ଚରଣ'ଦ୍ୱାରା ତାହା ସେହି ଶିଶୁ ଅନ୍ତରକୁ ଆସିଛି । ଅତିଶୀଘ୍ର ଏମାନେ ବୁଝିବେ ଯେ, ଏହି ମତବାଦ ପ୍ରମାଣସମ୍ମତ ନୁହେଁ । ଏଥି ମଧ୍ୟରେ ଅନେକେ ଏହି ବଂଶାନୁକ୍ରମିକ-ସଞ୍ଚାର ମତ ବିରୋଧରେ ତୀବ୍ର ଆକ୍ରମଣ ଆରମ୍ଭ କରିଛନ୍ତି । ଏହି ମତ ଅସତ୍ୟ ନୁହେଁ, କିନ୍ତୁ ଅସମ୍ପୂର୍ଣ୍ଣ । ଏହା କେବଳ ମାନବର ଜଡ଼-ଭାଗଟାକୁ ବ୍ୟାଖ୍ୟା କରେ ମାତ୍ର । ଯଦି କୁହାଯାଏ, ଏହି ମତାନୁଯାୟୀ ପାରିପାର୍ଶ୍ୱିକ ଅବସ୍ଥାର ପ୍ରଭାବ କିପରି ବ୍ୟାଖ୍ୟା କରାଯିବ, ତେବେ ସେମାନେ କହନ୍ତି, ଅନେକ କାରଣ ମିଳି ଗୋଟିଏ କାର୍ଯ୍ୟ ହୁଏ, ପାରିପାର୍ଶ୍ୱିକ ଅବସ୍ଥା ତହିଁରୁ ଗୋଟିଏ । ଅନ୍ୟ ଦିଗରେ ହିନ୍ଦୁ ଦାର୍ଶନିକଗଣ କହନ୍ତି, ଆମେ ନିଜେ ଆମର ପାରିପାର୍ଶ୍ୱିକ ଅବସ୍ଥାର ଗଠନକର୍ତ୍ତା; କାରଣ, ଆମେ ଅତୀତ ଅବସ୍ଥାରେ ଯେପରି ଥିଲୁ ବର୍ତ୍ତମାନ ମଧ୍ୟ ସେହିପରି ପରିବେଶ ପାଇବୁ ।

ଅନ୍ୟ କଥାରେ କହିଲେ, ଆମେ ଅତୀତ କାଳରେ ଯେପରି ଥିଲୁ, ବର୍ତ୍ତମାନ ଠିକ୍ ସେହି ଅବସ୍ଥାପନ୍ନ ହୋଇଛୁ ।

ଜ୍ଞାନ କହିଲେ କଅଣ ବୁଝାଏ, ଏବେ ଆପଣମାନେ ବୁଝିଲେ । ଜ୍ଞାନ ଆଉ କିଛି ନୁହେଁ, ପୁରାତନ ସଂସ୍କାରଗୁଡ଼ିକ ସହିତ ଗୋଟିଏ ନୂତନ ସଂସ୍କାରକୁ ଗୋଟିଏ ଖୋପରେ ପୂରାଇ ନୂତନ ସଂସ୍କାରଟିକୁ ଚିହ୍ନିବା । ଚିହ୍ନିବା ବା 'ପ୍ରତ୍ୟଭିଜ୍ଞା'ର ଅର୍ଥ କଅଣ ? ଆମର ପୂର୍ବରୁ ଯେଉଁ ସଦୃଶ ସଂସ୍କାରସମୂହ ଅଛି, ତାହା ସହିତ ଏହାର ସମ୍ବନ୍ଧ ଆବିଷ୍କାର । ଜ୍ଞାନ କହିଲେ ଏହାଛଡ଼ା ଆଉ କିଛି ବୁଝାଏ ନାହିଁ । ତାହା ଯଦି ହେଲା, ତେବେ ଅବଶ୍ୟ ସ୍ୱୀକାର କରିବାକୁ ହେବ, ଏହି ଜ୍ଞାନଲାଭ ପ୍ରଣାଳୀରେ ଯେତେ ପ୍ରକାର ସଦୃଶ ବିଷୟ ଅଛି, ତାହା ସବୁ ଦେଖିବାକୁ ହେବ । ତାହା ନୁହେଁ କି ? ମନେ କରନ୍ତୁ—ଆପଣଙ୍କୁ ଖଣ୍ଡେ ପ୍ରସ୍ତର ଜାଣିବାକୁ ହେବ, ତାହାହେଲେ ତାହା ସହିତ ମେଳ ଖୁଆଇବା ପାଇଁ ଆପଣଙ୍କୁ ତାହା ସଦୃଶ ସମୁଦାୟ ପ୍ରସ୍ତରଖଣ୍ଡ ଦେଖିବାକୁ ହେବ; କିନ୍ତୁ ଜଗତ୍ ସମ୍ବନ୍ଧରେ ଆମେ ତାହା କରିପାରିବା ନାହିଁ, କାରଣ ଆମର ସାଧାରଣ ଜ୍ଞାନଦ୍ୱାରା ଆମେ ଏହାର ଏକ ପ୍ରକାର ଅନୁଭବମାତ୍ର ପାଇଥାଉ—ତାହାର ଏପାଖ ସେପାଖ ଆମେ କିଛି ଦେଖିପାରୁ ନାହିଁ, ଯାହାଦ୍ୱାରା ତା' ସଦୃଶ ବସ୍ତୁ ସହିତ ତାହାକୁ ମିଳାଇପାରନ୍ତେ । ସେଥିପାଇଁ ଜଗତ୍ ଆମ ନିକଟରେ ଅବୋଧ ବୋଧହୁଏ; କାରଣ, ଜ୍ଞାନ ଓ ବିଚାର ସର୍ବଦା ହିଁ ସଦୃଶ ବସ୍ତୁ ସହିତ ମିଳନ-ସାଧନରେ ନିଯୁକ୍ତ । ବ୍ରହ୍ମାଣ୍ଡର ଏହି ଅଂଶଟି—ଯାହା ଆମର ଜ୍ଞାନାବଚ୍ଛିନ୍ନ, ତାହା ଆମ ନିକଟରେ ଗୋଟିଏ ବିସ୍ମୟକର ନୂତନ ପଦାର୍ଥ ବୋଲି ବୋଧ ହୁଏ; ତାହା ସହିତ ମେଳ ଖାଇବ, ଏଭଳି କୌଣସି ସଦୃଶ ବସ୍ତୁ ଆମେ ପାଉନାହିଁ । ଏଥିପାଇଁ ତାହା ଯେଣି ଏତେ ଗଣ୍ଡଗୋଳ—ଆମେ ଭାବୁ, ଜଗତ୍ ଅତି ଭୟଙ୍କର ଓ ମନ୍ଦ । କେବେ କେବେ ଆମେ ଅବଶ୍ୟ ତାହାକୁ ଭଲ ବୋଲି ମନେକରୁ; କିନ୍ତୁ ସାଧାରଣତଃ ତାହାକୁ ଅସମ୍ପୂର୍ଣ୍ଣ ଭାବିଥାଉ । ଜଗତକୁ ସେତେବେଳେ ଜାଣିହେବ, ଯେତେବେଳେ ଆମେ ଏହା ସଦୃଶ କୌଣସି ଭାବ ବା ସତ୍ତା ବାହାର କରିପାରିବା । ସେତେବେଳେ ଆମେ ସେଗୁଡ଼ିକୁ ଜାଣିପାରିବା; ଯେତେବେଳେ ଆମେ ଏହି ଜଗତର—ଆମର ଏହି କ୍ଷୁଦ୍ର ଅହଂଜ୍ଞାନର ବାହାରକୁ ଯାଇପାରିବା; ସେତେବେଳେ କେବଳ ଜଗତ ଆମ ନିକଟରେ ଜ୍ଞାତ ହେବ । ଯେତେଦିନ ପର୍ଯ୍ୟନ୍ତ ଆମେ ତାହା କରି ନ ପାରିଛୁ, ସେତେଦିନ ଆମର ସକଳ ନିଷ୍ଫଳ ଚେଷ୍ଟାଦ୍ୱାରା କଦାପି ତାହାର ବ୍ୟାଖ୍ୟା ହୋଇପାରିବ ନାହିଁ । କାରଣ, ଜ୍ଞାନର ଅର୍ଥ ସଦୃଶ ବିଷୟର ଆବିଷ୍କାର ଏବଂ ଆମର ଏହି ସାଧାରଣ ଜ୍ଞାନଭୂମି ଆମକୁ କେବଳ ଜଗତର ଗୋଟିଏ ଆଂଶିକ ଭାବ ଦେଉଛି ମାତ୍ର । ଏହି ସମଷ୍ଟି-ମହତ୍, ଅଥବା ଆମେ ଆମର ସାଧାରଣ ପ୍ରାତ୍ୟହିକ ବ୍ୟବହାର୍ଯ୍ୟ ଭାଷାରେ ଯାହାଙ୍କୁ ଈଶ୍ୱର କହୁ, ତା'ର ଧାରଣା ସମ୍ବନ୍ଧରେ ମଧ୍ୟ ତଦ୍ରୂପ । ଆମର ଈଶ୍ୱରସମ୍ବନ୍ଧୀୟ ଧାରଣା ଯାହା କିଛି ଅଛି, ତାହା ତାଙ୍କର ଏକ ବିଶେଷପ୍ରକାର ଜ୍ଞାନମାତ୍ର; ତାଙ୍କର ଆଂଶିକ ଧାରଣା ମାତ୍ର—ତାଙ୍କର ଅନ୍ୟାନ୍ୟ ସମୁଦାୟ ଭାବ ଆମର ମାନବୀୟ ଅସମ୍ପୂର୍ଣ୍ଣତାଦ୍ୱାରା ଆବୃତ ।

'ମୁଁ ସର୍ବବ୍ୟାପୀ ଏବଂ ଏତେ ବୃହତ୍ ଯେ, ଏହି ଜଗତ ମଧ୍ୟ ମୋର ଅଂଶ ମାତ୍ର ।'[୧]

ଏହି କାରଣରୁ ଆମେ ଈଶ୍ୱରଙ୍କୁ ଅସମ୍ପୂର୍ଣ୍ଣ ଦେଖିଥାଉ, ଆଉ ଆମେ ତାଙ୍କର ଭାବ କେବେହେଲେ ବୁଝିପାରୁ ନାହିଁ; କାରଣ ତାହା ଅସମ୍ଭବ । ତାହାଙ୍କୁ ବୁଝିବାର ଏକମାତ୍ର ଉପାୟ, ଯୁକ୍ତି-ବିଚାରର ଅତୀତ ପ୍ରଦେଶକୁ ଯିବା—ଅହଂଜ୍ଞାନର ବାହାରକୁ ଯିବା ।

'ଯେତେବେଳେ ଶ୍ରୁତ ଓ ଶ୍ରବଣ, ଚିନ୍ତିତ ଓ ଚିନ୍ତା, ଏହି ସମୁଦାୟର ବାହାରକୁ ଯିବ, ସେତେବେଳେ ଯାଇ ସତ୍ୟଲାଭ କରିବ ।'[୨]

'ଶାସ୍ତ୍ରର ବାହାରକୁ ଚାଲିଯାଅ; କାରଣ, ସେଗୁଡ଼ିକ ପ୍ରକୃତିର ତତ୍ତ୍ୱପର୍ଯ୍ୟନ୍ତ, ତାହା ଯେଉଁ ତିନୋଟି ଗୁଣରେ ନିର୍ମିତ, ସେହି ପର୍ଯ୍ୟନ୍ତ—(ଯାହାଠାରୁ ଜଗତ ଉତ୍ପନ୍ନ ହୋଇଛି) ଶିକ୍ଷା ଦେଇଥାଏ ।'[୩]

ଆମେମାନେ ଏହାର ବାହାରକୁ ଗଲେ ସାମଞ୍ଜସ୍ୟ ଓ ମିଳନ ଦେଖିଥାଉ, ତାହା ପୂର୍ବରୁ ନୁହେଁ ।

ଏପର୍ଯ୍ୟନ୍ତ ଏହା ସ୍ପଷ୍ଟଭାବରେ ବୁଝାଗଲା ଯେ, ଏହି ବୃହତ୍ ଓ କ୍ଷୁଦ୍ର ବ୍ରହ୍ମାଣ୍ଡ ଠିକ୍ ଗୋଟିଏ ନିୟମରେ ନିର୍ମିତ ଏବଂ ଏହି କ୍ଷୁଦ୍ର ବ୍ରହ୍ମାଣ୍ଡର ଆମେ ଖୁବ୍ ସାମାନ୍ୟ ଅଂଶ ହିଁ ଜାଣୁ । ଆମେ ଜ୍ଞାନର ନିମ୍ନଭୂମି ଜାଣୁ ନାହିଁ, ଜ୍ଞାନାତୀତ ଭୂମି ମଧ୍ୟ ଜାଣୁନାହିଁ, ଆମେ କେବଳ ସାଧାରଣଜ୍ଞାନଭୂମି ହିଁ ଜାଣୁ । ଯଦି କୌଣସି ବ୍ୟକ୍ତି କହେ, ମୁଁ ପାପୀ—ସେ ନିର୍ବୋଧ ମାତ୍ର, କାରଣ, ସେ ନିଜକୁ ଜାଣେ ନାହିଁ । ସେ ନିଜ ସମ୍ବନ୍ଧରେ ଅଜ୍ଞ । ସେ ନିଜର ଗୋଟିଏ ଅଂଶ ମାତ୍ର ଜାଣେ, କାରଣ ଜ୍ଞାନ ତା'ର ମାନସ ଭୂମିର ଏକାଂଶବ୍ୟାପୀ ମାତ୍ର । ସମଗ୍ର ବ୍ରହ୍ମାଣ୍ଡ ସମ୍ବନ୍ଧରେ ମଧ୍ୟ ତାହା । ଯୁକ୍ତି ବିଚାରଦ୍ୱାରା ତାହାର ଏକାଂଶ ମାତ୍ର ଜାଣିବା ସମ୍ଭବ; କିନ୍ତୁ ପ୍ରକୃତି ବା ଜଗତ ପ୍ରପଞ୍ଚ କହିଲେ ଜ୍ଞାନର ନିମ୍ନଭୂମି, ସାଧାରଣ ଜ୍ଞାନଭୂମି, ଜ୍ଞାନାତୀତ ଭୂମି, ବ୍ୟଷ୍ଟି-ମହତ୍, ସମଷ୍ଟି-ମହତ୍ ଏବଂ ସେଗୁଡ଼ିକର ପରବର୍ତ୍ତୀ ସମୁଦାୟ ବିକାର—ଏହି ସବୁଗୁଡ଼ିକୁ ହିଁ ବୁଝାଇଥାଏ; ଏଗୁଡ଼ିକ ସାଧାରଣ ଜ୍ଞାନର ବା ଯୁକ୍ତିର ଅତୀତ ।

କିପରି ପ୍ରକୃତିକୁ ପରିଣାମପ୍ରାପ୍ତ କରାଯାଏ ? ଆମେ ଏପର୍ଯ୍ୟନ୍ତ ଦେଖିଲେ, ପ୍ରାକୃତିକ ସକଳ ବସ୍ତୁ, ଏପରିକି, ପ୍ରକୃତି ସ୍ୱୟଂ ମଧ୍ୟ ଜଡ଼ ବା ଅଚେତନ । ସେମାନେ ନିୟମାଧୀନ ହୋଇ କାର୍ଯ୍ୟ କରୁଛନ୍ତି । ସମୁଦାୟ ହିଁ ବିଭିନ୍ନ ଦ୍ରବ୍ୟର ମିଶ୍ରଣସ୍ୱରୂପ ଏବଂ

---

୧ ବିଷ୍ଟଭ୍ୟାହମିଦଂ କୃତ୍ସ୍ନମେକାଂଶେନ ସ୍ଥିତୋ ଜଗତ୍ ।
—ଭଗବଦ୍‌ଗୀତା, ୧୦।୪୨

୨ ତଦା ଗନ୍ତାସି ନିର୍ବେଦଂ ଶ୍ରୋତବ୍ୟସ୍ୟ ଶ୍ରୁତସ୍ୟ ଚ ।—ଭଗବଦ୍‌ଗୀତା, ୨।୫୨

୩ ତ୍ରୈଗୁଣ୍ୟବିଷୟା ବେଦା ନିସ୍ତ୍ରୈଗୁଣ୍ୟୋ ଭବାର୍ଜୁନ ।—ଭଗବଦ୍‌ଗୀତା, ୨।୪୫

ଅଚେତନ । ମନ, ମହତ୍ତତ୍ତ୍ୱ, ନିଶ୍ଚୟାତ୍ମିକା ବୃତ୍ତି, ଏସବୁ ଅଚେତନ; କିନ୍ତୁ ସେଗୁଡ଼ିକ ସବୁ ଏପରି ଏକ ପୁରୁଷର ଚିତ୍ ବା ଚୈତନ୍ୟରେ ପ୍ରତିବିମ୍ବିତ ହେଉଛନ୍ତି ଯେ ଏ ସବୁ-ଗୁଡ଼ିକର ଅତୀତ, ଆଉ ସାଙ୍ଖ୍ୟମତାବଲମ୍ବୀଗଣ ଏହାକୁ ହିଁ ପୁରୁଷ ନାମରେ ଅଭିହିତ କରିଅଛନ୍ତି । ଜଗତ ମଧ୍ୟରେ, ପ୍ରକୃତି ମଧ୍ୟରେ—ଏହି ଯେଉଁ ସବୁ ପରିଣାମ ହେଉଛି, ଏହି ପୁରୁଷ ତାହାର ସାକ୍ଷୀସ୍ୱରୂପ କାରଣ, ଅର୍ଥାତ୍ ଏହି ପୁରୁଷଙ୍କୁ ଯଦି ସାର୍ବଜନୀନ ଅର୍ଥରେ ଧରାଯାଏ, ତେବେ ସେ ବ୍ରହ୍ମାଣ୍ଡର ଈଶ୍ୱର ।* ଏହା କଥିତ ହୋଇଥାଏ ଯେ, ଈଶ୍ୱରଙ୍କର ଇଚ୍ଛାରେ ଏହି ବ୍ରହ୍ମାଣ୍ଡର ସୃଷ୍ଟି ହୋଇଛି । ସାଧାରଣ ଦୈନିକ ବ୍ୟବହାର୍ଯ୍ୟ ବାକ୍ୟ ହିସାବରେ ଏହା ଅତି ସୁନ୍ଦର ବାକ୍ୟ ହୋଇପାରେ, କିନ୍ତୁ ତଦପେକ୍ଷା ଏହାର ଅଧିକ ଆଉ କିଛି ମୂଲ୍ୟ ନାହିଁ । ଇଚ୍ଛା କିପରି ସୃଷ୍ଟିର କାରଣ ହୋଇପାରେ ? ଇଚ୍ଛା—ପ୍ରକୃତିର ତୃତୀୟ ବା ଚତୁର୍ଥ ବିକାର । ଅନେକ ବସ୍ତୁ ତାହା ପୂର୍ବରୁ ହିଁ ହୋଇଛି । ସେଗୁଡ଼ିକ କିଏ ସୃଷ୍ଟି କଲେ ? ଇଚ୍ଛା ଗୋଟିଏ ଯୌଗିକ ପଦାର୍ଥ ମାତ୍ର, ଆଉ ଯାହା କିଛି ଯୌଗିକ, ସକଳ ହିଁ ପ୍ରକୃତିରୁ ଉତ୍ପନ୍ନ । ଇଚ୍ଛା ସ୍ୱୟଂ କେବେହେଲେ ପ୍ରକୃତିକୁ ସୃଷ୍ଟି କରିପାରେ ନାହିଁ । ତାହା ଗୋଟିଏ ଅମିଶ୍ର ବସ୍ତୁ ନୁହେଁ । ଅତଏବ ଈଶ୍ୱରଙ୍କର ଇଚ୍ଛାରେ ଏହି ବ୍ରହ୍ମାଣ୍ଡ ସୃଷ୍ଟି ହୋଇଛି କହିବା ଯୁକ୍ତିବିରୁଦ୍ଧ । ମନୁଷ୍ୟ ଭିତରେ ଇଚ୍ଛା ଆମ ଅହଂଜ୍ଞାନର ଅଳ୍ପାଂଶମାତ୍ର ବ୍ୟାପୀ ରହିଛି । କେହି କେହି କହନ୍ତି, ତାହା ଆମର ମସ୍ତିଷ୍କକୁ ସଞ୍ଚାଳିତ କରେ । ଯଦି ତାହା ହିଁ କରୁଥାଏ, ତେବେ ଆପଣମାନେ ଇଚ୍ଛା କଲମାତ୍ରେ ମସ୍ତିଷ୍କର କାର୍ଯ୍ୟ ବନ୍ଦ କରିପାରନ୍ତେ, କିନ୍ତୁ ତାହା ତ ଆପଣମାନେ ପାରନ୍ତି ନାହିଁ । ସୁତରାଂ ଇଚ୍ଛା ମସ୍ତିଷ୍କକୁ ସଞ୍ଚାଳିତ କରୁନାହିଁ । ହୃଦୟକୁ ଗତିଶୀଳ କରୁଛି କିଏ ? ଇଚ୍ଛା କଦାପି ନୁହେଁ; କାରଣ ଯଦି ତାହା ହୋଇଥାନ୍ତା, ତେବେ ଇଚ୍ଛା କଲେ ହିଁ ଆମେ ହୃଦୟର ଗତିରୋଧ କରିପାରନ୍ତେ । ଇଚ୍ଛା ଆପଣମାନଙ୍କର ଦେହକୁ ମଧ୍ୟ ପରିଚାଳିତ କରୁନାହିଁ, ବ୍ରହ୍ମାଣ୍ଡକୁ ମଧ୍ୟ ନିୟମିତ କରୁନାହିଁ । ଅନ୍ୟ କୌଣସି ବସ୍ତୁ ତାହାର ନିୟାମକ—ଇଚ୍ଛା ଯାହାର ଗୋଟିଏ ବିକାଶ ମାତ୍ର । ଏହି ଦେହକୁ ଏପରି ଏକ ଶକ୍ତି ପରିଚାଳିତ କରୁଛି, ଇଚ୍ଛା ଯାହାର ବିକାଶ ମାତ୍ର । ସମଗ୍ର ଜଗତ୍ ଇଚ୍ଛାଦ୍ୱାରା ପରିଚାଳିତ ହେଉନାହିଁ, ସେଥିପାଇଁ ଇଚ୍ଛା କହିଲେ ଏହାର ଠିକ୍ ବ୍ୟାଖ୍ୟା ହେଉନାହିଁ । ମନେ କରନ୍ତୁ, ମୁଁ ମାନିଲି—ଇଚ୍ଛା ହିଁ ଆମ ଦେହକୁ ଚଳାଉଅଛି; ତା'ପରେ ଏହି ଦେହକୁ ଇଚ୍ଛାନୁସାରେ ମୁଁ ପରିଚାଳିତ କରିପାରୁ ନାହିଁ ବୋଲି ବିରକ୍ତି ପ୍ରକାଶ କରିବାକୁ ଆରମ୍ଭ କଲି । ଏହା ତ ମୋର ଦୋଷ, କାରଣ, ଇଚ୍ଛା ହିଁ ଆମର ଦେହ-ପରିଚାଳନକର୍ତ୍ତ୍ରୀ—ଏହା ମାନିନେବା ପାଇଁ ମୋର କୌଣସି ଅଧିକାର ନ ଥିଲା ।

---

* ଇତିପୂର୍ବେ ମହତ୍ତତ୍ତ୍ୱକୁ ଈଶ୍ୱର କୁହାଯାଇଛି, ଏଠାରେ ପୁଣି ପୁରୁଷର ସାର୍ବଜନୀନ ଭାବକୁ ଈଶ୍ୱର କୁହାଗଲା । ଏହି ଦୁଇଟି କଥା ଆପାତବିରୋଧୀ ବୋଲି ବୋଧହୁଏ । ଏଠାରେ ଏତିକିମାତ୍ର ବୁଝିବାକୁ ହେବ ଯେ, ପୁରୁଷ ମହତ୍ତତ୍ତ୍ୱରୂପକ ଉପାଧି ପରିଗ୍ରହ କଲେ ତାହାଙ୍କୁ ଈଶ୍ୱର କୁହାଯାଏ ।

ଏହିପରି ଭାବରେ ଯଦି ଆମେ ମାନିନେଉ ଯେ, ଇଚ୍ଛା ହିଁ ଜଗତ୍ ପରିଚାଳନା କରୁଛି, ଆଉ ତା'ପରେ ଦେଖୁ, ପ୍ରକୃତ ଘଟଣା ସହିତ ଏହା ମେଳ ଖାଉନାହିଁ—ତେବେ ଏହା ମୋର ହିଁ ଦୋଷ । ଏହି ପୁରୁଷ ଇଚ୍ଛା ନୁହେଁ ବା ବୁଦ୍ଧି ନୁହେଁ; କାରଣ, ବୁଦ୍ଧି ଗୋଟିଏ ଯୌଗିକ ପଦାର୍ଥ ମାତ୍ର । କୌଣସି ପ୍ରକାର ଜଡ଼ ପଦାର୍ଥ ନ ଥିଲେ କୌଣସି ପ୍ରକାର ବୁଦ୍ଧି ମଧ୍ୟ ରହିପାରେ ନାହିଁ । ମନୁଷ୍ୟ ଏହି ଜଡ଼ ମସ୍ତିଷ୍କାକାର ଧାରଣ କରିଛି । ଯେଉଁଠାରେ ବୁଦ୍ଧି ଅଛି, ସେଠାରେ ହିଁ କୌଣସି ନା କୌଣସି ଆକାରରେ ଜଡ଼ ପଦାର୍ଥ ରହିବ ହିଁ ରହିବ । ଅତଏବ ବୁଦ୍ଧି ଯେତେବେଳେ ଯୌଗିକ ପଦାର୍ଥ ହେଲା, ତେବେ ପୁରୁଷ କ'ଣ ? ତାହା ମହତ୍ତତ୍ତ୍ୱ ନୁହେଁ, ନିଶ୍ଚୟାତ୍ମିକା ବୃତ୍ତି ମଧ୍ୟ ନୁହେଁ; ବରଂ ତାହା ଏହି ଉଭୟର କାରଣ । ତାଙ୍କର ସାନ୍ନିଧ୍ୟ ହିଁ ସେସବୁକୁ କ୍ରିୟାଶୀଳ କରେ ଓ ପରସ୍ପରକୁ ମିଳିତ କରାଏ । ପୁରୁଷଙ୍କୁ ସେହିସବୁ ବସ୍ତୁ ସହିତ ତୁଳନା କରା ଯାଇପାରେ, ଯାହାଙ୍କର କେବଳ ସାନ୍ନିଧ୍ୟ ଯୋଗୁଁ ରାସାୟନିକ କାର୍ଯ୍ୟ ଶୀଘ୍ର ସଂଘଟିତ ହୁଏ, ଯେପରି ସୁନା ତରଳାଇବାକୁ ହେଲେ ସେଥିରେ ପୋଟାସିୟମ୍ ସାଇନାଇଡ୍ (Cyanide of Potassium) ମିଶାଇବାକୁ ହୁଏ । ପୋଟାସିୟମ୍ ସାଇନାଇଡ୍ ପୃଥକ୍ ରହିଯାଏ, ତାହା ଉପରେ କୌଣସି ରାସାୟନିକ କାର୍ଯ୍ୟ ହୁଏ ନାହିଁ; କିନ୍ତୁ ସୁନା ତରଳାଇବା କାର୍ଯ୍ୟ ସଫଳ କରିବା ନିମିତ୍ତ ତାହାର ସାନ୍ନିଧ୍ୟ ପ୍ରୟୋଜନ ।* ପୁରୁଷ ସମ୍ବନ୍ଧରେ ମଧ୍ୟ ସେହି କଥା । ତାହା ପ୍ରକୃତି ସହିତ ମିଶ୍ରିତ ହୁଏ ନାହିଁ, ତାହା ବୁଦ୍ଧି ବା ମହତ୍ ବା ତାହାର କୌଣସି ପ୍ରକାର ବିକାର ନୁହେଁ, ତାହା ଶୁଦ୍ଧ ପୂର୍ଣ୍ଣ ଆତ୍ମା ।

'ମୁଁ ସାକ୍ଷୀସ୍ୱରୂପ ଅବସ୍ଥିତ ଥିବାରୁ ପ୍ରକୃତି ଚେତନ ଓ ଅଚେତନ ସମୁଦାୟ ସୃଜନ କରିଛି ।'**

ପ୍ରକୃତିରେ ତାହାହେଲେ ଚେତନତ୍ୱ କେଉଁଠାରୁ ଆସିଲା ? ପୁରୁଷ ହିଁ ଏହି ଚେତନାର ଭିତ୍ତି, ସେହି ଚେତନା ହିଁ ପୁରୁଷର ସ୍ୱରୂପ । ତାହା ଏପରି ଗୋଟିଏ ବସ୍ତୁ, ଯାହା ବାକ୍ୟରେ ବ୍ୟକ୍ତ କରି ହେବ ନାହିଁ, ବୁଦ୍ଧିଦ୍ୱାରା ବୁଝି ହେବ ନାହିଁ; କିନ୍ତୁ ଆମେ ଯାହାକୁ ଜ୍ଞାନ କହୁ, ଏହା ତାହାର ଉପାଦାନସ୍ୱରୂପ । ଏହି ପୁରୁଷ ଆମର ସାଧାରଣ ଜ୍ଞାନ ନୁହେଁ, କାରଣ ଜ୍ଞାନ ଗୋଟିଏ ଯୌଗିକ ପଦାର୍ଥ; ତେବେ ସେହି ଜ୍ଞାନ ଭିତରେ ଯାହା ଉଜ୍ଜ୍ୱଳ ଓ ଉତ୍ତମ, ତାହା ଏହି ପୁରୁଷର । ପୁରୁଷ ମଧ୍ୟରେ ଚୈତନ୍ୟ ଅଛି; କିନ୍ତୁ ପୁରୁଷଙ୍କୁ ବୁଦ୍ଧିମାନ ବା ଜ୍ଞାନବାନ୍ କୁହାଯାଇପାରିବ ନାହିଁ । ତାହା ଏପରି ଗୋଟିଏ ବସ୍ତୁ, ଯାହା ଥିଲେ ହିଁ ଜ୍ଞାନ ସମ୍ଭବ ହୁଏ । ପୁରୁଷ ମଧ୍ୟରେ ଯେଉଁ ଚିତ୍ ଅଛି ତାହା ପ୍ରକୃତି ସହିତ ମିଳିତ ହୋଇ ଆମ ନିକଟରେ ବୁଦ୍ଧି ବା ଜ୍ଞାନ ବୋଲି ପରିଚିତ ହୁଏ । ଜଗତରେ ଯେଉଁ ସୁଖ, ଆନନ୍ଦ, ଶାନ୍ତି ଅଛି ସେ ସମୁଦାୟ ପୁରୁଷର; କିନ୍ତୁ ସେଗୁଡ଼ିକ ମିଶ୍ର, କାରଣ

---

* ପାଶ୍ଚାତ୍ୟ ରସାୟନ ଶାସ୍ତ୍ରରେ ଏହାକୁ catalytic agent କୁହନ୍ତି ।

** ମୟାଧ୍ୟକ୍ଷେଣ ପ୍ରକୃତିଃ ସୂୟତେ ସଚରାଚରମ୍ ।—ଭଗବଦ୍‌ଗୀତା, ୯।୧୦

ତନ୍ହିଁରେ ପୁରୁଷ ଓ ପ୍ରକୃତର ମିଶ୍ରଣ ଘଟିଛି ।

'ଯେଉଁଠାରେ କୌଣସି ପ୍ରକାର ସୁଖ, ଯେଉଁଠାରେ କୌଣସି ପ୍ରକାର ଆନନ୍ଦ, ସେହିଠାରେ ସେହି ଅମୃତସ୍ୱରୂପ ପୁରୁଷଙ୍କର ଏକ ଅଣୁ ଆଏ ବୋଲି ବୁଝିବାକୁ ହେବ ।'*

ଏହି ପୁରୁଷ ହିଁ ସମଗ୍ର ଜଗତର ମହା ଆକର୍ଷଣସ୍ୱରୂପ; ସେ ଯଦିଓ ତାହାଦ୍ୱାରା ଅସ୍ପୃଷ୍ଟ ଓ ତାହା ସହିତ ଅସଂଶ୍ଲିଷ୍ଟ, ତଥାପି ସେ ସମଗ୍ର ଜଗତକୁ ଆକର୍ଷଣ କରୁଛନ୍ତି । ମନୁଷ୍ୟକୁ ଯେଉଁ କାଞ୍ଚନ ଅନ୍ୱେଷଣରେ ଧାବମାନ ହେବାର ଦେଖିବାକୁ ମିଳେ, ତାହାର କାରଣ ସେ ନ ଜାଣିଲେ ମଧ୍ୟ ପ୍ରକୃତ ପକ୍ଷରେ ସେହି କାଞ୍ଚନ ମଧ୍ୟରେ ପୁରୁଷଙ୍କର ଏକ ସ୍ଫୁଲିଙ୍ଗ ବିଦ୍ୟମାନ । ମନୁଷ୍ୟ ଯେତେବେଳେ ସନ୍ତାନ ପ୍ରାର୍ଥନା କରେ, ଅଥବା ସ୍ତ୍ରୀ ଯେତେବେଳେ ସ୍ୱାମୀର ଆକାଙ୍କ୍ଷା କରେ, ସେତେବେଳେ କେଉଁ ଶକ୍ତି ସେମାନଙ୍କୁ ଆକର୍ଷଣ କରେ ? ସେହି ସନ୍ତାନ ଓ ସେହି ସ୍ୱାମୀ ଭିତରେ ପୁରୁଷଙ୍କର ଯେଉଁ ଅଂଶ ଅଛି, ତାହା ହିଁ ସେହି ଆକର୍ଷଣୀ ଶକ୍ତି । ସେ ସମସ୍ତଙ୍କର ପଶ୍ଚାତ୍ତରେ ରହିଛନ୍ତି—କେବଳ ତାଙ୍କ ଉପରେ ଜଡ଼ର ଆବରଣ ପଡ଼ିଛି । ଅନ୍ୟ କିଛି କାହାକୁ ଆକର୍ଷଣ କରିପାରେ ନାହିଁ । ଏହି ଅଚେତନାତ୍ମକ ଜଗତ୍ ମଧ୍ୟରେ ସେହି ପୁରୁଷ ହିଁ ଏକମାତ୍ର ଚେତନ । ସେ ହେଉଛନ୍ତି ସାଙ୍ଖ୍ୟର ପୁରୁଷ । ଅତଏବ ଏଥିରୁ ନିଶ୍ଚିତରୂପେ ବୁଝାଯାଉଛି ଯେ, ଏହି ପୁରୁଷ ଅବଶ୍ୟ ହିଁ ସର୍ବବ୍ୟାପୀ, କାରଣ, ଯାହା ସର୍ବବ୍ୟାପୀ ନୁହେଁ, ତାହା ଅବଶ୍ୟ ସସୀମ । ସମୁଦାୟ ସୀମାବଦ୍ଧ ଭାବ ହିଁ କୌଣସି କାରଣର କାର୍ଯ୍ୟସ୍ୱରୂପ ଏବଂ ଯାହା କାର୍ଯ୍ୟସ୍ୱରୂପ, ତାହାର ଅବଶ୍ୟ ଆଦି ଓ ଅନ୍ତ ରହିବ । ଯଦି ପୁରୁଷ ସୀମାବଦ୍ଧ ହୁଅନ୍ତି, ତେବେ ସେ ଅବଶ୍ୟ ବିନାଶପ୍ରାପ୍ତ ହେବେ, ତେବେ ସେ ଆଉ ଚରମ ତତ୍ତ୍ୱ ହେଲେ ନାହିଁ, ସେ ମୁକ୍ତସ୍ୱରୂପ ହେଲେ ନାହିଁ—ସେ କୌଣସି କାରଣର କାର୍ଯ୍ୟସ୍ୱରୂପ ଉତ୍ପନ୍ନ ପଦାର୍ଥ ହେଲେ । ଅତଏବ ଯଦି ସେ ସୀମାବଦ୍ଧ ନ ହୁଅନ୍ତି, ତେବେ ସେ ସର୍ବବ୍ୟାପୀ । କପିଳଙ୍କ ମତରେ ପୁରୁଷଙ୍କର ସଂଖ୍ୟା ଏକ ନୁହେଁ—ବହୁ । ଅନନ୍ତ ସଂଖ୍ୟକ ପୁରୁଷ ରହିଛନ୍ତି, ଆପଣ ଜଣେ ପୁରୁଷ, ମୁଁ ମଧ୍ୟ ଜଣେ ପୁରୁଷ, ପ୍ରତ୍ୟେକେ ଜଣେ ଜଣେ ପୁରୁଷ—ସେମାନେ ଯେପରି କି ଅନନ୍ତସଂଖ୍ୟକ ବୃତ୍ତ-ସ୍ୱରୂପ । ସେମାନେ ପ୍ରତ୍ୟେକେ ପୁଣି ଅନନ୍ତ ବିସ୍ତୃତ । ପୁରୁଷ ଜନ୍ମନ୍ତି ନାହିଁ କି ମରନ୍ତି ନାହିଁ । ସେ ମନ ନୁହନ୍ତି କି ଭୂତ ନୁହନ୍ତି । ଆଉ ଆମେ ଯାହା ଜାଣୁ, ସେସବୁ ହିଁ ତାଙ୍କର ପ୍ରତିବିମ୍ବ ସ୍ୱରୂପ । ଆମେ ନିଶ୍ଚିତ ଭାବରେ ଜାଣୁ ଯେ, ଯଦି ସେ ସର୍ବବ୍ୟାପୀ ହୁଅନ୍ତି, ତେବେ ତାଙ୍କର କଦାପି ଜନ୍ମମୃତ୍ୟୁ ହୋଇ ନ ପାରେ । ପ୍ରକୃତ ତାଙ୍କ ଉପରେ ନିଜର ଛାୟା—ଜନ୍ମମୃତ୍ୟୁର ଛାୟା ପ୍ରକ୍ଷେପ କରୁଛି; କିନ୍ତୁ ସେ ସ୍ୱରୂପତଃ ନିତ୍ୟ । ଏପର୍ଯ୍ୟନ୍ତ ଆମେ ଦେଖିଲେ ଯେ କପିଳଙ୍କ ମତ ଅତି ଅପୂର୍ବ ।

ଏଥର ଆମେମାନେ ଏହି ସାଙ୍ଖ୍ୟ ମତ ବିରୋଧରେ ଯାହା ଯାହା କହିବାର ଅଛି, ସେ ବିଷୟରେ ଆଲୋଚନା କରିବା । ଯେତେଦୂର ପର୍ଯ୍ୟନ୍ତ ଦେଖିଲେ ସେଥିରୁ ବୁଝିଲେ,

---

* ଏତସ୍ୟୈବାନନ୍ଦସ୍ୟାନ୍ୟାନି ଭୂତାନି ମାତ୍ରାମୁପଜୀବନ୍ତି ।—ବୃହ.ଉପ., ୪।୩।୩୨

ଏହି ବିଶ୍ଳେଷଣ ନିର୍ଦ୍ଦୋଷ—ଏହାର ମନୋବିଜ୍ଞାନ ଅଖଣ୍ଡନୀୟ—ତାହା ବିରୋଧରେ କୌଣସି ପ୍ରକାର ଆପତ୍ତି ହୋଇ ନ ପାରେ । ଆମେ କପିଳଙ୍କୁ ଏହି ପ୍ରଶ୍ନ କରିଥିଲୁ ଯେ, ପ୍ରକୃତିକୁ କିଏ ସୃଷ୍ଟି କଲା ? ଆଉ ତାହାର ଉତ୍ତର ଏହା ମିଳିଲା ଯେ, ତାହା ସୃଷ୍ଟି ନୁହେଁ । ସେ ଏହା ମଧ୍ୟ କହିଛନ୍ତି ଯେ ପୁରୁଷ ଅସୃଷ୍ଟ ଓ ସର୍ବବ୍ୟାପୀ, ପୁଣି ପୁରୁଷଙ୍କ ସଂଖ୍ୟା ଅନନ୍ତ । ସାଙ୍ଖ୍ୟରୁ ଏହି ଶେଷ ସିଦ୍ଧାନ୍ତଟିର ପ୍ରତିବାଦ କରି ଆମକୁ ଉତ୍କୃଷ୍ଟତର ସିଦ୍ଧାନ୍ତରେ ଉପନୀତ ହେବାକୁ ପଡ଼ିବ ଏବଂ ତାହା କଲେ ଆମକୁ ବେଦାନ୍ତର ପରିସର ଭିତରକୁ ଯିବାକୁ ପଡ଼ିବ । ଆମେ ପ୍ରଥମରୁ ଏହି ଆଶଙ୍କା ଉତ୍ଥାପନ କରିବା ଯେ ପ୍ରକୃତି ଓ ପୁରୁଷ ଏହି ଦୁଇଟି ଅନନ୍ତ କିପରି ରହିପାରନ୍ତି । ତା'ପରେ ଆମେ ଏ ଭାବରେ ତର୍କ କରିବା ଯେ, ଏହା ସମ୍ପୂର୍ଣ୍ଣ ସାମାନ୍ୟୀକରଣ(generalisation)* ନୁହେଁ । ଅତଏବ, ଆମେ ସମ୍ପୂର୍ଣ୍ଣ ସିଦ୍ଧାନ୍ତରେ ଉପନୀତ ହେଲେ ନାହିଁ । ତା'ପରେ ଆମେ ଦେଖିବା, ବେଦାନ୍ତୀମାନେ ଏସବୁ ଆପତ୍ତି ଓ ଆଶଙ୍କା ଦୂର କରି କିପରି ସମ୍ପୂର୍ଣ୍ଣ ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି; କିନ୍ତୁ ପ୍ରକୃତ ପକ୍ଷରେ ସବୁ ପ୍ରକାର ଗୌରବ କପିଳଙ୍କର ପ୍ରାପ୍ୟ । ସମ୍ପୂର୍ଣ୍ଣପ୍ରାୟ ଅଟ୍ଟାଳିକାକୁ ସମ୍ପୂର୍ଣ୍ଣ କରିବା ଅତି ସହଜ କାର୍ଯ୍ୟ ।

## ସାଙ୍ଖ୍ୟ ଓ ଅଦ୍ୱୈତ

ଆପଣମାନଙ୍କ ଆଗରେ ମୁଁ ପ୍ରଥମେ ଯେଉଁ ସାଙ୍ଖ୍ୟଦର୍ଶନ ସମ୍ବନ୍ଧରେ ଆଲୋଚନା କରିଥିଲି, ତାହାର ମୋଟାମୋଟି କଥାଗୁଡ଼ିକ ସଂକ୍ଷେପରେ କହିବି । କାରଣ ଆମେ ଏହି ବକ୍ତୃତାରେ ଏହାର ଅସମ୍ପୂର୍ଣ୍ଣତା କେଉଁଗୁଡ଼ିକ ତାହା ବାହାର କରିବାକୁ ଏବଂ ବେଦାନ୍ତ କିଭଳି ଭାବରେ ସେହି ଅସମ୍ପୂର୍ଣ୍ଣତାଗୁଡ଼ିକୁ ସମ୍ପୂର୍ଣ୍ଣ କରିଦିଏ ତାହା ବୁଝିବାକୁ ଚାହୁଁ । ଆପଣମାନଙ୍କର ଅବଶ୍ୟ ସ୍ମରଣ ଥିବ ଯେ ସାଙ୍ଖ୍ୟଦର୍ଶନ ମତରେ ପ୍ରକୃତିଠାରୁ ଚିନ୍ତା, ବୁଦ୍ଧି ବିଚାର, ରାଗ, ଦ୍ୱେଷ, ସ୍ପର୍ଶ, ରସ—ଗୋଟିଏ କଥାରେ ସମୁଦାୟ ବିକାଶ ଘଟୁଛି । ଏହି ପ୍ରକୃତି ସତ୍ତ୍ୱ, ରଜଃ ଓ ତମଃ ନାମକ ତିନିପ୍ରକାର ଉପାଦାନରେ ଗଠିତ । ଏଗୁଡ଼ିକ ଗୁଣ ନୁହେଁ, ଜଗତର ଉପାଦାନକାରଣ; ଏଗୁଡ଼ିକରୁ ଜଗତ୍ ଉତ୍ପନ୍ନ ହେଉଛି ଏବଂ ଯୁଗର ପ୍ରାରମ୍ଭରେ ଏଗୁଡ଼ିକ ସାମଞ୍ଜସ୍ୟ ଭାବରେ ବା ସାମ୍ୟାବସ୍ଥାରେ ଥାଏ । ସୃଷ୍ଟି ଆରମ୍ଭ ହେଲା ମାତ୍ରେ ସାମ୍ୟାବସ୍ଥା ଭଙ୍ଗ ହୁଏ । ସେତେବେଳେ ଏହି ଦ୍ରବ୍ୟଗୁଡ଼ିକ ପରସ୍ପର ନାନା ରୂପରେ ମିଳିତ ହୋଇ ଏହି ବ୍ରହ୍ମାଣ୍ଡ ସୃଷ୍ଟି କରେ । ଏମାନଙ୍କର ପ୍ରଥମ ବିକାଶକୁ ସାଙ୍ଖ୍ୟବାଦୀମାନେ 'ମହତ୍' (ଅର୍ଥାତ୍ ସର୍ବବ୍ୟାପୀ ବୁଦ୍ଧି) ବୋଲି କହନ୍ତି, ଆଉ ସେଥିରୁ

* କେତେଗୁଡ଼ିଏ ବିଶେଷ ବିଶେଷ ଘଟଣା ପର୍ଯ୍ୟବେକ୍ଷଣ କରି ସେମାନଙ୍କ ମଧ୍ୟରେ ସାଧାରଣ ତତ୍ତ୍ୱ ଆବିଷ୍କାରକୁ ସାମାନ୍ୟୀକରଣ (generalisation) କହନ୍ତି ।

ଅହଂଜ୍ଞାନର ଉତ୍ପତ୍ତି ହୁଏ । ଅହଂଜ୍ଞାନରୁ ମନ ଅର୍ଥାତ୍ ସର୍ବବ୍ୟାପୀ ମନସ୍ତତ୍ତ୍ୱର ଉଦ୍ଭବ । ସେହି ଅହଂଜ୍ଞାନ ବା ଅହଙ୍କାରରୁ ଜ୍ଞାନ-କର୍ମ-ଇନ୍ଦ୍ରିୟ ଏବଂ ତନ୍ମାତ୍ର ଅର୍ଥାତ୍ ଶବ୍ଦ, ସ୍ପର୍ଶ, ରସ ପ୍ରଭୃତିର ସୂକ୍ଷ୍ମ ସୂକ୍ଷ୍ମ ପରମାଣୁର ଉତ୍ପତ୍ତି ହୁଏ; ଏହି ଅହଂକାରରୁ ସମୁଦାୟ ସୂକ୍ଷ୍ମ ପରମାଣୁର ଉଦ୍ଭବ ଏବଂ ସେହି ସୂକ୍ଷ୍ମ ପରମାଣୁସମୂହରୁ ସ୍ଥୂଳ ପରମାଣୁସମୂହ ଉତ୍ପନ୍ନ ହୁଏ, ଯାହାକୁ ଆମେ ଜଡ଼ କହୁ । ତନ୍ମାତ୍ର (ଅର୍ଥାତ୍ ଯେଉଁସବୁ ପରମାଣୁ ଦେଖାଯାଏ ନାହିଁ ବା ଯାହାର ପରିମାଣ କରାଯାଏ ନାହିଁ) ପରେ ସ୍ଥୂଳ ପରମାଣୁ ଗୁଡ଼ିକର ଉତ୍ପତ୍ତି—ଯାହାକୁ ଆମେ ଅନୁଭବ ଓ ଇନ୍ଦ୍ରିୟଗୋଚର କରିପାରୁ । ବୁଦ୍ଧି, ଅହଂକାର ଓ ମନ ଏହି ତ୍ରିବିଧ କାର୍ଯ୍ୟସମନ୍ୱିତ ଚିତ୍ତ, ପ୍ରାଣ ନାମକ ଶକ୍ତିସମୂହକୁ ସୃଷ୍ଟି କରି ସେସବୁକୁ ପରିଚାଳିତ କରୁଛି । ଏହି ପ୍ରାଣ ସହିତ ଶ୍ୱାସ-ପ୍ରଶ୍ୱାସର କୌଣସି ସମ୍ବନ୍ଧ ନାହିଁ; ଆପଣମାନଙ୍କର ଏ ଧାରଣା ବର୍ତ୍ତମାନ ଛାଡ଼ିଦେବା ଉଚିତ । ଶ୍ୱାସ-ପ୍ରଶ୍ୱାସ ପ୍ରାଣ ଅର୍ଥାତ୍ ସର୍ବବ୍ୟାପୀ ଶକ୍ତିର ଗୋଟିଏ କାର୍ଯ୍ୟ ମାତ୍ର । କିନ୍ତୁ ଏଠାରେ ପ୍ରାଣସମୂହ ଅର୍ଥରେ ସେହି ସ୍ନାୟବୀୟ ଶକ୍ତିସମୂହକୁ ବୁଝାଏ, ଯାହା ସମୁଦାୟ ଦେହକୁ ଚଳାଉଅଛି ଏବଂ ଚିନ୍ତା ଓ ଦେହର ନାନାବିଧ କ୍ରିୟା ରୂପେ ପ୍ରକାଶ ପାଉଛି । ଶ୍ୱାସ-ପ୍ରଶ୍ୱାସର ଗତି ପ୍ରାଣସମୂହର ପ୍ରଧାନ ଓ ପ୍ରତ୍ୟକ୍ଷତମ ପ୍ରକାଶ । ଯଦି ବାୟୁଦ୍ୱାରା ହିଁ ଏହି ଶ୍ୱାସ-ପ୍ରଶ୍ୱାସ କାର୍ଯ୍ୟ ହୁଅନ୍ତା, ତେବେ ମୃତ ବ୍ୟକ୍ତି ମଧ୍ୟ ଶ୍ୱାସ-ପ୍ରଶ୍ୱାସ କାର୍ଯ୍ୟ କରନ୍ତା । ପ୍ରାଣ ହିଁ ବାୟୁ ଉପରେ କାର୍ଯ୍ୟ କରୁଛି, ବାୟୁ ପ୍ରାଣ ଉପରେ କାର୍ଯ୍ୟ କରୁ ନାହିଁ । ଏହି ପ୍ରାଣସମୂହ ଜୀବନଶକ୍ତିସ୍ୱରୂପ ସମୁଦାୟ ଶରୀର ଉପରେ କାର୍ଯ୍ୟ କରୁଛି, ସେମାନେ ପୁଣି ମନ ଏବଂ ଇନ୍ଦ୍ରିୟଗଣ (ଅର୍ଥାତ୍ ଦୁଇପ୍ରକାର ସ୍ନାୟୁକେନ୍ଦ୍ର) ଦ୍ୱାରା ପରିଚାଳିତ ହେଉଛନ୍ତି ।

ଏ ପର୍ଯ୍ୟନ୍ତ ମନସ୍ତତ୍ତ୍ୱର ବିଶ୍ଳେଷଣ ଅତି ସ୍ପଷ୍ଟ ଓ ପରିଷ୍କାର । ପୁଣି ଭାବି ଦେଖନ୍ତୁ କେତେ ଯୁଗ ପୂର୍ବେ ଏହି ତତ୍ତ୍ୱ ଆବିଷ୍କୃତ ହୋଇଛି—ଏହା ଜଗତରେ ପ୍ରାଚୀନତମ ଯୁକ୍ତିସିଦ୍ଧ ଚିନ୍ତାପ୍ରଣାଳୀ । ଯେଉଁଠାରେ କୌଣସି ପ୍ରକାର ଦର୍ଶନ ବା ଯୁକ୍ତିସିଦ୍ଧ ଚିନ୍ତା-ପ୍ରଣାଳୀ ଦେଖାଯାଏ, ତାହା କପିଳଙ୍କ ନିକଟରେ କେତେକ ପରିମାଣରେ ଋଣୀ । ଯେଉଁଠାରେ ମନସ୍ତତ୍ତ୍ୱ-ବିଜ୍ଞାନର କିଛି ଉନ୍ନତି ହୋଇଛି, ସେଠାରେ ଚିନ୍ତାପ୍ରଣାଳୀର ଜନକ ଏହି କପିଳଙ୍କ ନିକଟରେ ତାହା ଯେ ଋଣୀ, ଏହା ଦେଖିବାକୁ ମିଳେ ।

ଏପର୍ଯ୍ୟନ୍ତ ଆମେ ଦେଖିଲେ ଯେ, ଏ ମନୋବିଜ୍ଞାନ ଅତି ଅପୂର୍ବ; କିନ୍ତୁ ଆମେ ଯେତିକି ଅଗ୍ରସର ହେବା ସେତିକି ଦେଖିବା ଯେ କୌଣସି କୌଣସି ବିଷୟରେ ଏହା ସହିତ ଆମକୁ ଭିନ୍ନ ମତ ଅବଲମ୍ବନ କରିବାକୁ ହେବ । କପିଳଙ୍କର ପ୍ରଧାନ ମତ—ପରିଣାମ । ସେ କହନ୍ତି, ଗୋଟିଏ ବସ୍ତୁ ଅପର ବସ୍ତୁର ପରିଣାମ ବା ବିକାରସ୍ୱରୂପ; କାରଣ ତାଙ୍କ ମତରେ କାର୍ଯ୍ୟ କାରଣର ଲକ୍ଷଣ ଏହି ଯେ—କାର୍ଯ୍ୟ ଅନ୍ୟ ରୂପରେ ପରିଣତ କାରଣ ମାତ୍ର ।* ଆଉ ଯେହେତୁ ଆମେ ଯେତେଦୂର ଦେଖିପାରୁଛେ, ସେଥିରୁ ଜଣାଯାଉଛି ଯେ ସମଗ୍ର ଜଗତ କ୍ରମାଗତ ପରିଣାମପ୍ରାପ୍ତ ହେଉଛି । ଏହି ସମଗ୍ର ବ୍ରହ୍ମାଣ୍ଡ

* କାରଣଭାବାତ୍ ।—ସାଂଖ୍ୟସୂତ୍ର, ୧।୧୧୮

ନିଶ୍ଚିତ କୌଣସି ଉପାଦାନରୁ ଅର୍ଥାତ୍ ପ୍ରକୃତିର ପରିଣାମରୁ ଉତ୍ପନ୍ନ ହୋଇଛି । ସୁତରାଂ ପ୍ରକୃତି ତାହାର କାରଣରୁ ସ୍ୱରୂପତଃ କେବେ ଭିନ୍ନ ହୋଇପାରେ ନାହିଁ । କେବଳ ଯେତେବେଳେ ତାହା ବିଶିଷ୍ଟ ଆକାର ଧାରଣ କରେ, ସେତେବେଳେ ତାହା ସୀମାବିଶିଷ୍ଟ ହୁଏ । ଏହି ଉପାଦାନଟି ସ୍ୱୟଂ ନିରାକାର; କିନ୍ତୁ କପିଳଙ୍କ ମତରେ ଅବ୍ୟକ୍ତ ପ୍ରକୃତିଠାରୁ ବୈଷମ୍ୟପ୍ରାପ୍ତିର ଶେଷ ସୋପାନ ପର୍ଯ୍ୟନ୍ତ କୌଣସିଟି 'ପୁରୁଷ' ଅର୍ଥାତ୍ ଭୋକ୍ତା ବା ପ୍ରକାଶକ ସହିତ ସମାନ ନୁହେଁ । ମାଟିପିଣ୍ଡୁଳା ଯେପରି, ମନସମଷ୍ଟି ମଧ୍ୟ ତଦ୍ରୂପ, ସମଗ୍ର ଜଗତ ମଧ୍ୟ ସେହିପରି । ସ୍ୱରୂପତଃ ସେମାନଙ୍କର ଚୈତନ୍ୟ ନାହିଁ; କିନ୍ତୁ ସେମାନଙ୍କ ଭିତରେ ଆମେ ବିଚାରବୁଦ୍ଧି ଓ ଜ୍ଞାନ ଦେଖିପାରୁ । ଅତଏବ ସେମାନଙ୍କ ପଶ୍ଚାତ୍‌ରେ, ସମଗ୍ର ପ୍ରକୃତିର ପଶ୍ଚାତ୍‌ରେ ନିଶ୍ଚୟ ଏପରି କୌଣସି ସତ୍ତା ଅଛି ଯାହାର ଆଲୋକ ତାହା ଉପରେ ପଡ଼ି ମହତ୍, ଅହଂଜ୍ଞାନ ଓ ଏହିସବୁ ନାନା ବସ୍ତୁରୂପରେ ପ୍ରତୀତ ହେଉଛି । ଆଉ ଏହି ସତ୍ତାକୁ କପିଳ ପୁରୁଷ ବା ଆତ୍ମା ବୋଲି କହନ୍ତି । ବେଦାନ୍ତୀମାନେ ତାକୁ ଆତ୍ମା ବୋଲି କହନ୍ତି । କପିଳଙ୍କ ମତରେ ପୁରୁଷ ଅମିଶ୍ର ପଦାର୍ଥ—ତାହା ଯୌଗିକ ପଦାର୍ଥ ନୁହେଁ । ତାହା ଏକମାତ୍ର ଅଜଡ଼ ପଦାର୍ଥ ଏବଂ ସମୁଦାୟ ପ୍ରପଞ୍ଚ-ବିକାର ହିଁ ଜଡ଼ । ପୁରୁଷ କେବଳ ଏକମାତ୍ର ଜ୍ଞାତା । ମନେକରନ୍ତୁ, ମୁଁ ଗୋଟିଏ ବୋର୍ଡ଼ ଦେଖୁଛି । ପ୍ରଥମେ ବାହାର ଯନ୍ତ୍ର-ଗୁଡ଼ିକ ମସ୍ତିଷ୍କକେନ୍ଦ୍ରକୁ (କପିଳଙ୍କ ମତରେ ଇନ୍ଦ୍ରିୟକୁ) ସେହି ବିଷୟଟିକୁ ନେଇ ଆସିବ; ତାହା ପୁଣି ସେହି କେନ୍ଦ୍ରରୁ ମନକୁ ଯାଇ ତାହା ଉପରେ ଆଘାତ କରିବ । ମନ ତାହାକୁ ପୁଣି ଅହଂଜ୍ଞାନରୂପକ ଅନ୍ୟ ଗୋଟିଏ ପଦାର୍ଥଦ୍ୱାରା ଆବୃତ କରି ମହତ୍ ବା ବୁଦ୍ଧି ନିକଟରେ ସମର୍ପଣ କରିବ; କିନ୍ତୁ ମହତ୍‌ର ସ୍ୱୟଂ କାର୍ଯ୍ୟ କରିବାର ଶକ୍ତି ନାହିଁ—ତାହା ପଛରେ ଯେଉଁ ପୁରୁଷ ରହିଛନ୍ତି ସେ ହିଁ ପ୍ରକୃତପକ୍ଷରେ କର୍ତ୍ତା । ଏସବୁ ତାଙ୍କର ଭୃତ୍ୟପରି ବିଷୟଗୁଡ଼ିକର ଆଘାତ ତାହାଙ୍କ ନିକଟକୁ ଆଣି ଦିଅନ୍ତି, ସେତେବେଳେ ସେ ଆଦେଶ ଦେଲେ ମହତ୍ ପ୍ରତିଘାତ ବା ପ୍ରତିକ୍ରିୟା କରେ । ପୁରୁଷ ହିଁ ଭୋକ୍ତା, ବୋଧା, ଯଥାର୍ଥ ସତ୍ତା, ସିଂହାସନୋପବିଷ୍ଟ ରାଜା, ମାନବର ଆତ୍ମା; ପୁଣି ସେ ଅଜଡ଼ । ଯେହେତୁ ସେ ଅଜଡ଼, ସେହେତୁ ସେ ଅନନ୍ତ; ତାଙ୍କର କୌଣସି ସୀମା ରହି ନ ପାରେ । ସୁତରାଂ ଏହି ପୁରୁଷଙ୍କ ମଧ୍ୟରୁ ପ୍ରତ୍ୟେକେ ସର୍ବବ୍ୟାପୀ; ତେବେ ସେ କେବଳ ସୂକ୍ଷ୍ମ ଓ ସ୍ଥୂଳ ଜଡ଼ପଦାର୍ଥ ମଧ୍ୟ ଦେଇ କାର୍ଯ୍ୟ କରିପାରନ୍ତି । ମନ, ଅହଂଜ୍ଞାନ, ମସ୍ତିଷ୍କ-କେନ୍ଦ୍ର ବା ଇନ୍ଦ୍ରିୟଗଣ ଏବଂ ପ୍ରାଣ ଏହି କେତୋଟିକୁ ନେଇ ସୂକ୍ଷ୍ମ ଶରୀର, ଅଥବା ଖ୍ରୀଷ୍ଟୀୟ ଦର୍ଶନ ମତରେ ଯାହାକୁ ମନୁଷ୍ୟର 'ଆଧ୍ୟାତ୍ମିକ ଦେହ' କହନ୍ତି, ତାହା ଗଠିତ । ଏହି ଦେହ ପୁରସ୍କାର ବା ଦଣ୍ଡ ପାଏ, ଏହା ହିଁ ବିଭିନ୍ନ ସ୍ୱର୍ଗକୁ ଯାଇଥାଏ । ଏହା ହିଁ ବାରମ୍ବାର ଜନ୍ମଲାଭ କରେ । କାରଣ ପ୍ରଥମରୁ ଆମେ ଦେଖି ଆସୁଛେ ପୁରୁଷ ବା ଆତ୍ମା ପକ୍ଷରେ ଯିବା ଆସିବା ଅସମ୍ଭବ । ଗତିର ଅର୍ଥ ଯିବା ଆସିବା, ଆଉ ଯାହା ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଗମନ କରେ, ତାହା କେବେ ସର୍ବବ୍ୟାପୀ ହୋଇପାରେ ନାହିଁ । ଏହି ଲିଙ୍ଗ-ଶରୀର ବା ସୂକ୍ଷ୍ମ-ଶରୀର ହିଁ ଆସେ ଯାଏ ।

ଏପର୍ଯ୍ୟନ୍ତ ଆମେ କପିଳଙ୍କ ଦର୍ଶନରୁ ଜାଣିଲୁ ଯେ, ଆତ୍ମା ଅନନ୍ତ ଏବଂ ଏକମାତ୍ର ତାହା ହିଁ ପ୍ରକୃତିର ପରିଣାମ ନୁହେଁ । ଏକମାତ୍ର ତାହା ହିଁ ପ୍ରକୃତିର ବାହାରେ; କିନ୍ତୁ ତାହା ପ୍ରକୃତିଦ୍ୱାରା ବଦ୍ଧ ହୋଇଛି ବୋଲି ପ୍ରତୀତ ହେଉଛି । ପ୍ରକୃତି ପୁରୁଷକୁ ଘେରି ରହିଛି, ସେଥିପାଇଁ ପୁରୁଷ ଆପଣାକୁ ପ୍ରକୃତି ସଙ୍ଗେ ମିଶାଇ ଦେଇଛନ୍ତି । ପୁରୁଷ ଭାବୁଛନ୍ତି, 'ମୁଁ ଲିଙ୍ଗ ଶରୀର', 'ମୁଁ ସ୍ଥୂଳ ଶରୀର' ଆଉ ସେଇଥିପାଇଁ ସେ ସୁଖ-ଦୁଃଖ ଭୋଗ କରୁଛନ୍ତି; କିନ୍ତୁ ପ୍ରକୃତ ପକ୍ଷରେ ସୁଖ-ଦୁଃଖ ଆତ୍ମାର ନୁହେଁ, ସେଗୁଡ଼ିକ ଲିଙ୍ଗ-ଶରୀରର ଓ ସ୍ଥୂଳ-ଶରୀରର । କେତେଗୁଡ଼ିଏ ସ୍ନାୟୁ ଯେତେବେଳେ ଆଘାତପ୍ରାପ୍ତ ହୁଏ, ସେତେବେଳେ ଆମେ କଷ୍ଟ ଅନୁଭବ କରୁ; ଆମେ ତାହା ତତ୍‌କ୍ଷଣାତ୍ ଉପଲବ୍‌ଧି କରିଥାଉ । ଯଦି ମୋର ଆଙ୍ଗୁଳିର ସ୍ନାୟୁଗୁଡ଼ିକ ନଷ୍ଟ ହୁଏ, ତେବେ ମୋ ଆଙ୍ଗୁଳି କାଟି ଫିଙ୍ଗିଦେଲେ ମଧ୍ୟ ତାହା ଅନୁଭବ କରିବି ନାହିଁ । ଅତଏବ ସୁଖଦୁଃଖ ସ୍ନାୟୁ-କେନ୍ଦ୍ର-ସମୂହର । ମନେ କରନ୍ତୁ, ମୋର ଦର୍ଶନେନ୍ଦ୍ରିୟ ନଷ୍ଟ ହୋଇଗଲା, ତାହା ହେଲେ ମୋ ଚକ୍ଷୁ-ଯନ୍ତ୍ର ଥିଲେ ମଧ୍ୟ ମୁଁ ରୂପରୁ କୌଣସି ସୁଖ-ଦୁଃଖ ଅନୁଭବ କରିବି ନାହିଁ । ତେଣୁ ଏହା ସ୍ପଷ୍ଟଭାବରେ ଜଣାଯାଉଛି ଯେ, ସୁଖ-ଦୁଃଖ ଆତ୍ମାର ନୁହେଁ, ସେସବୁ ମନ ଓ ଦେହର ।

ଆତ୍ମାଙ୍କର ସୁଖ-ଦୁଃଖ ବୋଲି କିଛି ନାହିଁ, ସେ ସକଳ ବିଷୟର ସାକ୍ଷୀସ୍ୱରୂପ । ଯାହା କିଛି ଘଟୁଛି, ସେଗୁଡ଼ିକର ସେ ନିତ୍ୟ ସାକ୍ଷୀସ୍ୱରୂପ; କିନ୍ତୁ ସେ କୌଣସି କର୍ମର କୌଣସି ପ୍ରକାର ଫଳ ଗ୍ରହଣ କରନ୍ତି ନାହିଁ ।

'ସୂର୍ଯ୍ୟ ଯେପରି ସକଳ ଲୋକଙ୍କର ଦୃଷ୍ଟିର କାରଣ ହେଲେ ମଧ୍ୟ ସ୍ୱୟଂ କୌଣସି ଚକ୍ଷୁର ଦୋଷରେ ଲିପ୍ତ ହୁଏ ନାହିଁ, ପୁରୁଷ ମଧ୍ୟ ତଦ୍ରୂପ ।'[୧]

'ଯେପରି ଖଣ୍ଡିଏ ସ୍ଫଟିକ ସମ୍ମୁଖରେ ନାଲି ଫୁଲଟିଏ ରଖିଲେ ତାହା ନାଲି ଦେଖାଯାଏ, ସେହିପରି ପୁରୁଷଙ୍କୁ ପ୍ରକୃତିର ପ୍ରତିବିମ୍ବଦ୍ୱାରା ସୁଖ-ଦୁଃଖରେ ଲିପ୍ତ ହେଲି ପରି ବୋଧ ହୁଏ; କିନ୍ତୁ ତାହା ସବୁବେଳେ ଅପରିଣାମୀ ।'[୨]

ତାହାର ଅବସ୍ଥା ଯେତେଦୂର ସମ୍ଭବ ପାଖାପାଖି ବର୍ଣ୍ଣନା କରିବାକୁ ଗଲେ କହିବାକୁ ହେବ ଯେ, ଧ୍ୟାନ ସମୟରେ ଆମେ ଯେଉଁ ଭାବ ଅନୁଭବ କରୁ, ତାହା ପ୍ରାୟ ତଦ୍ରୂପ । ଏହି ଧ୍ୟାନାବସ୍ଥାରେ ହିଁ ଆପଣମାନେ ପୁରୁଷର ଖୁବ୍ ସନ୍ନିହିତ ହୋଇଥାଆନ୍ତି । ଅତଏବ ଆମେ ଦେଖୁଛେଁ, ଯୋଗୀମାନେ ଏହି ଧ୍ୟାନାବସ୍ଥାକୁ କାହିଁକି ସର୍ବୋଚ୍ଚ ଅବସ୍ଥା ବୋଲି କହିଥାଆନ୍ତି ? କାରଣ, ପୁରୁଷ ସହିତ ଆପଣଙ୍କର ଏହି ଏକତ୍ୱବୋଧ—ଜଡ଼ାବସ୍ଥା ବା କ୍ରିୟାଶୀଳ ଅବସ୍ଥା ନୁହେଁ, ତାହା ଧ୍ୟାନାବସ୍ଥା—ଏହା ହିଁ ସାଂଖ୍ୟଦର୍ଶନ ।

ତା'ପରେ ସାଂଖ୍ୟବାଦୀମାନେ ପୁଣି କହନ୍ତି ଯେ, ପ୍ରକୃତିର ଏହିସବୁ ବିକାର ଆତ୍ମା ନିମିତ୍ତ । ତାହାର ବିଭିନ୍ନ ଉପାଦାନର ସମ୍ମିଳନ ଇତ୍ୟାଦି ସମସ୍ତ ହିଁ ତା'ଠାରୁ ସ୍ୱତନ୍ତ୍ର

୧ କଠୋପନିଷଦ୍, ୨।୨।୧୧

୨ କୁସୁମବଚ୍ଚ ମଣିଃ । —ସାଂଖ୍ୟସୂତ୍ର, ୨।୩୫

ଅନ୍ୟ କାହା ଲାଗି । ସୁତରାଂ ଏହି ଯେ ନାନାବିଧ ମିଶ୍ରଣକୁ ଆମେ ପ୍ରକୃତି ବା ଜଗତ୍-ପ୍ରପଞ୍ଚ କହୁ—ଏହି ଯେ ଆମ ଭିତରେ ଓ ଚତୁର୍ଦ୍ଦିଗରେ କ୍ରମାଗତ ପରିବର୍ତ୍ତନ-ପରମ୍ପରା ଘଟୁଛି, ତାହା ଆତ୍ମାର ଭୋଗ ଓ ଅପବର୍ଗ ବା ମୁକ୍ତି ଲାଗି । ଆତ୍ମା ସର୍ବନିମ୍ନ ଅବସ୍ଥାରୁ ସର୍ବୋଚ୍ଚ ଅବସ୍ଥା ପର୍ଯ୍ୟନ୍ତ ସ୍ୱୟଂ ଭୋଗ କରି ସେଥିରୁ ଅଭିଜ୍ଞତା ସଞ୍ଚୟ କରିପାରନ୍ତି । ପୁଣି ଆତ୍ମା ଯେତେବେଳେ ଏହି ଅଭିଜ୍ଞତା ଲାଭ କରନ୍ତି, ସେତେବେଳେ ସେ ବୁଝିପାରନ୍ତି ଯେ, ସେ କୌଣସି କାଳରେ ପ୍ରକୃତିଦ୍ୱାରା ବଦ୍ଧ ହୋଇ ନ ଥିଲେ, ସେ ସର୍ବଦା ସେଥିରୁ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ଥିଲେ । ସେତେବେଳେ ସେ ଆହୁରି ମଧ୍ୟ ଦେଖିପାରନ୍ତି ଯେ, ସେ ଅବିନାଶୀ, ତାଙ୍କର ଯିବା ଆସିବା କିଛି ନାହିଁ । ସ୍ୱର୍ଗକୁ ଯିବା, ପୁଣି ଜନ୍ମ ଗ୍ରହଣ କରିବା ସମୁଦାୟ ହିଁ ପ୍ରକୃତିର—ତାଙ୍କର ନିଜର ନୁହେଁ । ସେତେବେଳେ ଆତ୍ମା ମୁକ୍ତ ହୋଇଯାଆନ୍ତି । ଏହି ରୂପେ ସମଗ୍ର ପ୍ରକୃତି ଆତ୍ମାର ଭୋଗ ବା ଅଭିଜ୍ଞତା ସଞ୍ଚୟ ନିମିତ୍ତ କାର୍ଯ୍ୟ କରି ଯାଉଛନ୍ତି ଏବଂ ଆତ୍ମା ସେହି ଚରମ ଲକ୍ଷ୍ୟ ଦିଗକୁ ଯିବା ନିମିତ୍ତ ଏହି ଅଭିଜ୍ଞତା ସଞ୍ଚୟ କରୁଅଛନ୍ତି, ଏବଂ ମୁକ୍ତି ହିଁ ଏହି ଚରମ ଲକ୍ଷ୍ୟ । ସାଙ୍ଖ୍ୟଦର୍ଶନ ମତରେ ଏହି ଆତ୍ମାଙ୍କର ସଂଖ୍ୟା ବହୁତ । ଅନନ୍ତସଂଖ୍ୟକ ଆତ୍ମା ରହିଛନ୍ତି । ସାଂଖ୍ୟର ଆଉ ଗୋଟିଏ ସିଦ୍ଧାନ୍ତ ଏହି ଯେ, ଈଶ୍ୱର ନାହାନ୍ତି—ଜଗତର ସୃଷ୍ଟିକର୍ତ୍ତା କେହି ନାହାନ୍ତି । ସାଂଖ୍ୟବାଦୀଗଣ କହନ୍ତି, ପ୍ରକୃତି ଯେତେବେଳେ ଏହିସବୁ ବିଭିନ୍ନ ରୂପ ସୃଜନ କରିବାକୁ ସମର୍ଥ ସେତେବେଳେ ଈଶ୍ୱର ସ୍ୱୀକାର କରିବାର ପ୍ରୟୋଜନ ନାହିଁ ।

ଏବେ ଆମକୁ ସାଂଖ୍ୟବାଦୀମାନଙ୍କର ଏହି ତିନୋଟି ମତ ଖଣ୍ଡନ କରିବାକୁ ହେବ । ପ୍ରଥମଟି ଏହି ଯେ, ଜ୍ଞାନ ବା ଏତାଦୃଶ ଯାହା କିଛି ତାହା ଆତ୍ମାର ନୁହେଁ, ତାହା ସମ୍ପୂର୍ଣ୍ଣ ରୂପେ ପ୍ରକୃତିର ଅଧିକାରରେ, ଆତ୍ମା ନିର୍ଗୁଣ ଓ ଅରୂପ । ସାଙ୍ଖ୍ୟର ଦ୍ୱିତୀୟ ମତ ଯାହା ମୁଁ ଖଣ୍ଡନ କରିବି, ତାହା ଏହି ଯେ, ଈଶ୍ୱର ନାହାନ୍ତି—ବେଦାନ୍ତ ଦେଖାଇବେ ଈଶ୍ୱର ସ୍ୱୀକାର ନ କଲେ ଜଗତର କୌଣସି ପ୍ରକାର ବ୍ୟାଖ୍ୟା ହୋଇପାରିବ ନାହିଁ । ତୃତୀୟତଃ ଆମକୁ ଦେଖାଇବାକୁ ହେବ ଯେ, ବହୁ ଆତ୍ମା ନାହିଁ । ଆତ୍ମା ଅନନ୍ତସଂଖ୍ୟକ ହୋଇପାରିବ ନାହିଁ; ଜଗଦ୍‌ବ୍ରହ୍ମାଣ୍ଡରେ କେବଳ ଗୋଟିଏ ଆତ୍ମା ଅଛି, ଆଉ ସେହି ଏକ ହିଁ ବହୁ ରୂପରେ ପ୍ରତୀତ ହେଉଛି ।

ପ୍ରଥମେ ଆମେ ସାଙ୍ଖ୍ୟର ସେହି ପ୍ରଥମ ସିଦ୍ଧାନ୍ତଟି ଯେଉଁ ଆଲୋଚନା କରିବା ଯେ ବୁଦ୍ଧି ଓ ଯୁକ୍ତି ସମ୍ପୂର୍ଣ୍ଣରୂପେ ପ୍ରକୃତିର ଅଧିକାରରେ, ଆତ୍ମାରେ ତାହା ନାହିଁ । ବେଦାନ୍ତ କହେ, ଆତ୍ମାର ସ୍ୱରୂପ ଅସୀମ ଅର୍ଥାତ୍ ତାହା ପୂର୍ଣ୍ଣ ସତ୍ତା, ଜ୍ଞାନ ଓ ଆନନ୍ଦସ୍ୱରୂପ । ତେବେ ଆମର ସାଙ୍ଖ୍ୟ ସହିତ ଏହି ବିଷୟରେ ଏକମତ ଯେ, ସେମାନେ ଯାହାକୁ ଜ୍ଞାନ କହନ୍ତି, ତାହା ଗୋଟିଏ ଯୌଗିକ ପଦାର୍ଥ ମାତ୍ର । ଦୃଷ୍ଟାନ୍ତସ୍ୱରୂପ ଆମର ବିଷୟାନୁଭୂତି ଉପରେ ହୁଏ ସେହି ଘଟଣାଟି ଆଲୋଚନା କରାଯାଉ । ଆମର ସ୍ମରଣ ଅଛି ଯେ, ଚକ୍ଷୁ ହିଁ ବାହାରର ବିଭିନ୍ନ ବସ୍ତୁକୁ ନେଉଛି, ତାହା ଉପରେ ବହିର୍ବିଷୟର ଆଘାତ ଲାଗୁଛି ଏବଂ ସେଥିରୁ ପ୍ରତିକ୍ରିୟା ହେଉଛି । ମନେ କରନ୍ତୁ, ବାହାରେ କୌଣସି ବସ୍ତୁ ଅଛି । ମୁଁ ଗୋଟିଏ

ବୋର୍ଡ଼ ଦେଖୁଛୁ । ତାହାର ଜ୍ଞାନ କିପରି ହେଉଛି ? ବୋର୍ଡ଼ଟିର ସ୍ୱରୂପ ଅଜ୍ଞାତ; ଆମେ କେବେ ତାହାକୁ ଜାଣିପାରୁ ନାହିଁ । ଜର୍ମାନ ଦାର୍ଶନିକଗଣ ତାହାକୁ 'ବସ୍ତୁର ସ୍ୱରୂପ' (Thing-in-itself) କହିଥାଆନ୍ତି । ସେହି ବୋର୍ଡ଼ଟି ସ୍ୱରୂପତଃ ଯାହା, ସେହି ଅଜ୍ଞେୟ ସତ୍ତା 'କ' ମୋର ଚିତ୍ତ ଉପରେ କାର୍ଯ୍ୟ କରୁଛି, ଆଉ ଚିତ୍ତ ପ୍ରତିକ୍ରିୟା କରୁଛି । ଚିତ୍ତ ଗୋଟିଏ ହ୍ରଦପରି । ଯଦି ହ୍ରଦ ଉପରେ ଆପଣ ଖଣ୍ଡିଏ ପ୍ରସ୍ତର ନିକ୍ଷେପ କରନ୍ତି, ତେବେ ଯେତେବେଳେ ପ୍ରସ୍ତର ସେହି ହ୍ରଦ ଉପରେ ଆଘାତ କରିବ, ସେତେବେଳେ ପ୍ରସ୍ତର ଆଡ଼କୁ ହ୍ରଦର ପ୍ରତିକ୍ରିୟାସ୍ୱରୂପ ଗୋଟିଏ ତରଙ୍ଗ ଆସିବ । ଆପଣମାନେ ବିଷୟାନୁଭୂତି କାଳରେ ବାସ୍ତବିକ ଏହି ତରଙ୍ଗଟିକୁ ହିଁ ଦେଖିଥାଆନ୍ତି । ଆଉ ସେହି ତରଙ୍ଗ ପ୍ରସ୍ତରଟି ପରି ଆଦୌ ନୁହେଁ, ତାହା ଗୋଟିଏ ତରଙ୍ଗ । ଅତଏବ ସେହି ଯଥାର୍ଥ ବୋର୍ଡ଼ 'କ' ହିଁ ପ୍ରସ୍ତର ରୂପେ ମନ ଉପରେ ଆଘାତ କରୁଛି ଏବଂ ମନ ସେହି ଆଘାତକାରୀ ପଦାର୍ଥ ଆଡ଼କୁ ଗୋଟିଏ ତରଙ୍ଗ ନିକ୍ଷେପ କରୁଛି । ତାହା ଆଡ଼କୁ ଏହି ଯେଉଁ ତରଙ୍ଗଟି ନିକ୍ଷିପ୍ତ ହୋଇଛି, ତାହାକୁ ହିଁ ଆମେ ବୋର୍ଡ଼ ନାମରେ ଅଭିହିତ କରିଥାଉଁ । ମୁଁ ଆପଣଙ୍କୁ ଦେଖୁଛି, ଆପଣ ସ୍ୱରୂପତଃ ଯାହା, ତାହା ଅଜ୍ଞାତ ଓ ଅଜ୍ଞେୟ । ଆପଣ ସେହି ଅଜ୍ଞାତ ସତ୍ତା 'କ' ସ୍ୱରୂପ ମୋର ମନ ଉପରେ କାର୍ଯ୍ୟ କରୁଛନ୍ତି । ଯେଉଁ ଦିଗରୁ ଏହି କାର୍ଯ୍ୟ ହୋଇଥିଲା, ସେହି ଦିଗକୁ ମନ ଗୋଟିଏ ତରଙ୍ଗ ନିକ୍ଷେପ କରିଥାଏ, ଆଉ ସେହି ତରଙ୍ଗକୁ ଆମେ ଅମୁକ ନର ବା ଅମୁକ ନାରୀ ବୋଲି କହିଥାଉଁ ।

ଏହି ଜ୍ଞାନକ୍ରିୟାର ଦୁଇଟି ଉପାଦାନ—ସେଥିମଧ୍ୟରେ ଗୋଟିଏ ଭିତରୁ ଓ ଅନ୍ୟଟି ବାହାରଆଡ଼ୁ ଆସୁଛି, ପୁଣି ସେହି ଦୁଇଟିର ମିଶ୍ରଣ (କ+ମନ) ଆମର ବାହ୍ୟ ଜଗତ୍ । ସମୁଦାୟ ଜ୍ଞାନ ପ୍ରତିକ୍ରିୟାର ଫଳ । ତିମି ମତ୍ସ୍ୟ ସମ୍ବନ୍ଧରେ ଗଣନାଦ୍ୱାରା ସ୍ଥିର କରାହୋଇଛି ଯେ, ତା'ର ଲାଞ୍ଜରେ ଆଘାତ କରିବାର କେତେକ୍ଷଣ ପରେ ତାହାର ମନ ସେହି ଲାଞ୍ଜ ଉପରେ ପ୍ରତିକ୍ରିୟା କରେ ଓ ସେହି ଲାଞ୍ଜରେ କଷ୍ଟ ଅନୁଭୂତ ହୁଏ । ଶାମୁକା କଥା ଧରନ୍ତୁ, ଗୋଟିଏ ବାଲୁକାକଣା* ସେହି ଶାମୁକାର ଖୋଳ ଭିତରେ ପ୍ରବେଶ କରି ତାକୁ ଉତ୍ତେଜିତ କରୁଥାଏ—ସେତେବେଳେ ସେ ଶାମୁକା ବାଲୁକାକଣାର ଚତୁର୍ଦ୍ଦିଗରେ ନିଜ ରସ ପ୍ରକ୍ଷେପ କରେ—ତାହାଦ୍ୱାରା ମୁକ୍ତା ଉତ୍ପନ୍ନ ହୁଏ । ଦୁଇଟି ଜିନିଷରେ ମୁକ୍ତା ପ୍ରସ୍ତୁତ ହେଉଛି । ପ୍ରଥମତଃ, ଶାମୁକା ଦେହରୁ ନିଃସୃତ ରସ, ଆଉ ଦ୍ୱିତୀୟତଃ ବହିର୍ଦ୍ଦେଶରୁ ପ୍ରଦତ୍ତ ଆଘାତ । ଆମର ଏହି ଟେବୁଲଟିର ଜ୍ଞାନ ମଧ୍ୟ ତଦ୍ରୂପ—'କ'+ମନ । ସେହି ବସ୍ତୁକୁ ଜାଣିବାର ଚେଷ୍ଟା ମନ କରିବ; ସୁତରାଂ ମନ ତାହାକୁ ବୁଝିବା ପାଇଁ ନିଜର କେତେକ ସତ୍ତା ସେଥିରେ ପ୍ରଦାନ କରିବ, ପୁଣି ଆମେ ତାହା ଯେତେବେଳେ ଜାଣିଲୁ ସେତେବେଳେ ତାହା ଗୋଟିଏ ଯୌଗିକ ପଦାର୍ଥରେ ରୂପାନ୍ତରିତ ହୋଇଛି—'କ'+

* ବୈଜ୍ଞାନିକ ପଣ୍ଡିତମାନଙ୍କ ମତରେ ବାଲୁକାକଣାରୁ ମୁକ୍ତାର ଉତ୍ପତ୍ତି—ଏହି ଲୋକପ୍ରଚଳିତ ବିଶ୍ୱାସଟିର କୌଣସି ଭିତ୍ତି ନାହିଁ । ସମ୍ଭବତଃ କ୍ଷୁଦ୍ର କୀଟାଣୁବିଶେଷରୁ (Parasite) ମୁକ୍ତାର ଉତ୍ପତ୍ତି ।

ମନ । ଆଭ୍ୟନ୍ତରୀଣ ଅନୁଭୂତି ସମ୍ବନ୍ଧରେ ଅର୍ଥାତ୍ ଯେତେବେଳେ ଆମେ ନିଜକୁ ଜାଣିବାକୁ ଇଚ୍ଛା କରୁ, ସେତେବେଳେ ମଧ୍ୟ ତାହା ଘଟିଥାଏ ।

ଯଥାର୍ଥ ଆତ୍ମା ବା ମୁଁ, ଯାହା ଆମ ଭିତରେ ରହିଛି, ତାହା ମଧ୍ୟ ଅଜ୍ଞାତ ଓ ଅଜ୍ଞେୟ । ତାହାକୁ 'ଖ' କୁହାଯାଉ । ଯେତେବେଳେ ମୁଁ ମୋତେ ଅମୁକ ବ୍ୟକ୍ତି ବିଶେଷ ବୋଲି ଜାଣିବାକୁ ଚାହେଁ, ସେତେବେଳେ ସେହି ଖ, 'ଖ+ମନ' ଏହିପରି ପ୍ରତୀତ ହୁଏ । ଯେତେବେଳେ ମୁଁ ମୋତେ ଜାଣିବାକୁ ଚାହେଁ, ସେତେବେଳେ ସେହି 'ଖ' ମନଉପରେ ଗୋଟିଏ ଆଘାତ କରେ, ମନ ମଧ୍ୟ ପୁଣି ସେହି 'ଖ' ଉପରେ ଆଘାତ କରିଥାଏ । ଅତଏବ ଆମର ସମଗ୍ର ଜଗତରେ ଜ୍ଞାନକୁ 'କ+ମନ' (ବାହ୍ୟ ଜଗତ) ଏବଂ 'ଖ+ମନ' (ଅନ୍ତର୍ଜଗତ) ରୂପେ ନିର୍ଦ୍ଦେଶ କରାଯାଇପାରେ । ଆମେ ପରେ ଦେଖିବା ଅଦ୍ୱୈତବାଦୀ-ମାନଙ୍କ ସିଦ୍ଧାନ୍ତ କିପରି ଗଣିତଭୂଲ୍ୟ ପ୍ରମାଣିତ କରାଯାଇପାରେ ।

'କ' ଓ 'ଖ' କେବଳ ବୀଜଗଣିତର ଅଜ୍ଞାତ ସଂଖ୍ୟାମାତ୍ର । ଆମେ ଦେଖୁଛୁ ସକଳ ଜ୍ଞାନ ହିଁ ଯୌଗିକ—ବାହ୍ୟଜଗତ୍ ବା ବ୍ରହ୍ମାଣ୍ଡର ଜ୍ଞାନ ମଧ୍ୟ ଯୌଗିକ ଏବଂ ବୁଦ୍ଧି ବା ଅହଂଜ୍ଞାନ ମଧ୍ୟ ତଦନୁରୂପ ଗୋଟିଏ ଯୌଗିକ ବ୍ୟାପାର । ଯଦି ତାହା ଭିତରର ଜ୍ଞାନ ବା ମାନସିକ ଅନୁଭୂତି ହୁଏ, ତେବେ ତାହା 'ଖ+ମନ', ପୁଣି ଯଦି ତାହା ବାହାରର ଜ୍ଞାନ ବା ବିଷୟାନୁଭୂତି ହୁଏ, ତେବେ ତାହା 'କ+ମନ' । ସମୁଦାୟ ଭିତରର ଜ୍ଞାନ 'ଖ' ସହିତ ମନସଂଯୋଗ-ଲବ୍ଧ ଏବଂ ବାହାରର ଜଡ଼ ପଦାର୍ଥରେ ସମୁଦାୟ ଜ୍ଞାନ 'କ' ସହିତ ମନସଂଯୋଗର ଫଳ । ପ୍ରଥମେ ଭିତର ବ୍ୟାପାରଟି ଗ୍ରହଣକଲେ ଆମେ ପ୍ରକୃତିରେ ଯେଉଁ ଜ୍ଞାନ ଦେଖିବାକୁ ପାଉ ତାହା ସମ୍ପୂର୍ଣ୍ଣରୂପେ ପ୍ରାକୃତିକ ହୋଇପାରେ ନାହିଁ, କାରଣ, ଜ୍ଞାନ ହିଁ—'ଖ' ଓ ମନର ସଂଯୋଗଲବ୍ଧ; ପୁଣି ସେହି 'ଖ' ଆତ୍ମାଠାରୁ ଆସିଛି । ଅତଏବ ଆମେ ଯେଉଁ ଜ୍ଞାନ ସହିତ ପରିଚିତ ତାହା ଆତ୍ମଚୈତନ୍ୟ-ଶକ୍ତି ସହିତ ପ୍ରକୃତିର ସଂଯୋଗର ଫଳ । ଏହିରୂପେ ଆମେ ବାହାରର ସତ୍ତା ଯାହା ଜାଣିଛେ, ତାହା ଅବଶ୍ୟ ମନ ସହିତ 'କ'ର ସଂଯୋଗରୁ ଉତ୍ପନ୍ନ । ଅତଏବ ଆମେ ଦେଖିଲେ, ମୁଁ ଅଛି, ମୁଁ ଜାଣୁଛି ଓ ମୁଁ ସୁଖୀ (ଅର୍ଥାତ୍ ସମସ୍ତେ ସମସ୍ତେ ଆମେ ଭାବୁ ଯେ, ମୋର କୌଣସି ଅଭାବ ନାହିଁ) ଏହି ତିନୋଟି ତତ୍ତ୍ୱରେ ଆମ ଜୀବନର କେନ୍ଦ୍ରଗତ ଭାବ, ଆମ ଜୀବନର ମହାନ୍ ଭିତ୍ତି ପ୍ରତିଷ୍ଠିତ; ଆଉ ସେହି କେନ୍ଦ୍ର ବା ଭିତ୍ତି ସୀମାବିଶିଷ୍ଟ ହୋଇ ଅପର ବସ୍ତୁର ସଂଯୋଗରେ ଯୌଗିକ ଭାବ ଧାରଣ କଲେ ଆମେ ତାହାକୁ ସୁଖ ବା ଦୁଃଖ ନାମରେ ଅଭିହିତ କରିଥାଉ । ଏହି ତିନୋଟି ତତ୍ତ୍ୱ ହିଁ ବ୍ୟାବହାରିକ ସତ୍ତା, ବ୍ୟାବହାରିକ ଜ୍ଞାନ ଓ ବ୍ୟାବହାରିକ ଆନନ୍ଦ ବା ପ୍ରେମରୂପରେ ପ୍ରକାଶିତ ହେଉଛି । ପ୍ରତ୍ୟେକ ବ୍ୟକ୍ତିର ହିଁ ଅସ୍ତିତ୍ୱ ଅଛି; ପ୍ରତ୍ୟେକଙ୍କୁ ଜାଣିବାକୁ ହେବ ଏବଂ ପ୍ରତ୍ୟେକ ବ୍ୟକ୍ତି ଆନନ୍ଦ ନିମିତ୍ତ ଜନ୍ମିଛି । ଏହା ଅତିକ୍ରମ କରିବା ପାଇଁ ତାହାର ସାଧ୍ୟ ନାହିଁ । ସମଗ୍ର ଜଗତ୍ ଏହିପରି । ପଶୁଗଣ ଓ ଉଦ୍ଭିଦଗଣ, ଅତି ନିମ୍ନତମରୁ ଅତି ଉଚ୍ଚତମ ସତ୍ତା ପର୍ଯ୍ୟନ୍ତ ସମସ୍ତେ ସମସ୍ତଙ୍କୁ ଭଲ ପାଇଥାନ୍ତି । ଆପଣମାନେ ତାହାକୁ ଭଲପାଇବା ବୋଲି ନ କହିପାରନ୍ତି, କିନ୍ତୁ ସେମାନେ ଅବଶ୍ୟ ସମସ୍ତେ ଜଗତରେ

ଥିବେ, ସମସ୍ତେ ଜ୍ଞାନଲାଭ କରିବେ ଏବଂ ସମସ୍ତେ ଭଲପାଇବେ । ଅତଏବ ଏହି ଯେ ସତ୍ତା ଆମେ ଜାଣୁଛେ, ତାହା ପୂର୍ବୋକ୍ତ 'କ' ଓ ମନର ସଂଯୋଗର ଫଳ । ପୁଣି ଆମ ଜ୍ଞାନ ମଧ୍ୟ ସେହି ଭିତରର 'ଖ' ଓ ମନର ସଂଯୋଗର ଫଳ ଏବଂ ପ୍ରେମ ମଧ୍ୟ ସେହି 'ଗ' ଓ ମନର ସଂଯୋଗଫଳ । ଅତଏବ ଏହି ଯେଉଁ ତିନୋଟି ବସ୍ତୁ ବା ତତ୍ତ୍ୱ ଭିତରୁ ଆସି ବାହାର ବସ୍ତୁ ସହିତ ମିଶ୍ରିତ ହୋଇ ବ୍ୟାବହାରିକ ସତ୍ତା, ବ୍ୟାବହାରିକ ଜ୍ଞାନ ଓ ବ୍ୟାବହାରିକ ପ୍ରେମ ସୃଷ୍ଟି କରୁଛି, ସେଗୁଡ଼ିକୁ ହିଁ ବୈଦାନ୍ତିକମାନେ ନିରପେକ୍ଷ ବା ପାରମାର୍ଥିକ ସତ୍ତା (ସତ୍), ପାରମାର୍ଥିକ ଜ୍ଞାନ (ଚିତ୍) ଓ ପାରମାର୍ଥିକ 'ଆନନ୍ଦ' କହିଥାଆନ୍ତି ।

ସେହି ପାରମାର୍ଥିକ ସତ୍ତା, ଯାହା ଅସୀମ, ଅମିଶ୍ର, ଅଯୌଗିକ, ଯାହାର କୌଣସି ପରିଣାମ ନାହିଁ—ତାହା ହିଁ ସେହି ମୁକ୍ତ ଆତ୍ମା । ଆଉ ସେହି ପ୍ରକୃତ ସତ୍ତା ପ୍ରାକୃତିକ ବସ୍ତୁ ସହିତ ମିଶ୍ରିତ ହୋଇ ମଳିନ ହୋଇଗଲେ ତାହାକୁ ଆମେ ମାନବ ନାମରେ ଅଭିହିତ କରୁ । ତାହା ସୀମାବଦ୍ଧ ହୋଇ ଉଦ୍ଭିଦ-ଜୀବନ, ପଶୁ-ଜୀବନ, ମାନବ-ଜୀବନରୂପେ ପ୍ରକାଶିତ ହୁଏ; ଯେପରି ଅନନ୍ତ ଦେଶ ଏହି ଗୃହର କାନ୍ଥ ବା ଅନ୍ୟ କୌଣସି ପ୍ରକାର ବେଷ୍ଟନୀଦ୍ୱାରା ଆପାତତଃ ସୀମାବଦ୍ଧ ବୋଧହୁଏ । ସେହି ପାରମାର୍ଥିକ ଜ୍ଞାନ କହିଲେ ଯେଉଁ ଜ୍ଞାନ ବିଷୟରେ ଆମେ ଜାଣୁ ତାହା ବୁଝାଏ ନାହିଁ, ବୁଦ୍ଧି ବା ବିଚାରଶକ୍ତି ବା ସହଜାତ ଜ୍ଞାନ କିଛି ହିଁ ବୁଝାଏ ନାହିଁ; ତାହା ସେହି ବସ୍ତୁକୁ ବୁଝାଏ, ଯାହା ବିଭିନ୍ନ ଆକାରରେ ପ୍ରକାଶିତ ହେଲେ ଆମେ ଏହି ସବୁକୁ ବିଭିନ୍ନ ନାମରେ ଅଭିହିତ କରିଥାଉ । ଯେତେବେଳେ ସେହି ନିରପେକ୍ଷ ବା ପୂର୍ଣ୍ଣ ଜ୍ଞାନ ସୀମାବଦ୍ଧ ହୁଏ, ଆମେ ସେତେବେଳେ ତାହାକୁ ଦିବ୍ୟ ବା ପ୍ରାତିଭ ଜ୍ଞାନ କହୁ, ଯେତେବେଳେ ଆହୁରି ଅଧିକ ସୀମାବଦ୍ଧ ହୁଏ, ସେତେବେଳେ ତାହାକୁ ଯୁକ୍ତିବିଚାର, ସହଜାତ ଜ୍ଞାନ ଇତ୍ୟାଦି ନାମ ଦେଇଥାଉ । ସେହି ନିରପେକ୍ଷ ଜ୍ଞାନକୁ 'ବିଜ୍ଞାନ' କହନ୍ତି । ତାହାକୁ 'ସର୍ବଜ୍ଞତା' କହିଲେ ତାର ଭାବ ଅନେକାଂଶରେ ପ୍ରକାଶ ହୋଇପାରେ । ତାହା କୌଣସି ପ୍ରକାର ଯୌଗିକ ପଦାର୍ଥ ନୁହେ, ତାହା ଆତ୍ମାର ସ୍ୱଭାବ । ଯେତେବେଳେ ସେହି ନିରପେକ୍ଷ ଆନନ୍ଦ ସୀମାବଦ୍ଧ ଭାବ ଧାରଣ କରେ, ସେତେବେଳେ ହିଁ ତାହାକୁ ଆମେମାନେ ପ୍ରେମ କହୁ—ଯାହା ସ୍ଥୂଳ ଶରୀର, ସୂକ୍ଷ୍ମ ଶରୀର ବା ଭାବସମୂହ ପ୍ରତି ଆକର୍ଷଣସ୍ୱରୂପ । ଏସବୁ ସେହି ଆନନ୍ଦର ବିକୃତ ପ୍ରକାଶ ମାତ୍ର ଏବଂ ସେହି ଆନନ୍ଦ ଆତ୍ମାର ଗୁଣବିଶେଷ ନୁହେଁ, ତାହା ଆତ୍ମାର ସ୍ୱରୂପ—ତାହାର ଆଭ୍ୟନ୍ତରୀଣ ପ୍ରକୃତି । ନିରପେକ୍ଷ ସତ୍ତା ନିରପେକ୍ଷ ଜ୍ଞାନ ଓ ନିରପେକ୍ଷ ଆନନ୍ଦ ଆତ୍ମାର ଗୁଣ ନୁହେଁ । ସେଗୁଡ଼ିକ ଆତ୍ମାର ସ୍ୱରୂପ, ସେଗୁଡ଼ିକ ସହିତ ଆତ୍ମାର କୌଣସି ପ୍ରଭେଦ ନାହିଁ ଏବଂ ସେହି ତିନୋଟି ଏକା ଜିନିଷ; ଆମେ ଏକ ବସ୍ତୁକୁ ତିନୋଟି ବିଭିନ୍ନ ଭାବରେ ଦେଖିଥାଉ ମାତ୍ର; ସେଗୁଡ଼ିକ ସମୁଦାୟ ସାଧାରଣଜ୍ଞାନର ଅତୀତ ଏବଂ ସେସବୁର ପ୍ରତିବିମ୍ବରେ ହିଁ ପ୍ରକୃତିକୁ ଚୈତନ୍ୟବାନ ବୋଲି ବୋଧହୁଏ ।

ଆତ୍ମାର ସେହି ନିତ୍ୟ ନିରପେକ୍ଷ ଜ୍ଞାନ ହିଁ ମାନବ-ମନ ମଧ୍ୟକୁ ଆସି ଆମର ବିଚାର,

ଯୁକ୍ତି, ବୁଦ୍ଧି ହୋଇଛୁ । ଯେଉଁ ଉପାଧି ବା ମାଧ୍ୟମ ଦେଇ ତାହା ପ୍ରକାଶ ପାଏ, ତାହାର ବିଭିନ୍ନତା ଅନୁସାରେ ସେମାନଙ୍କର ବିଭିନ୍ନତା ହୁଏ । ଆତ୍ମା ହିସାବରେ ଆମେ ଓ ଅତି କ୍ଷୁଦ୍ରତମ ପ୍ରାଣୀ ମଧ୍ୟରେ କୌଣସି ପ୍ରଭେଦ ନାହିଁ—କେବଳ ତାହାର ମସ୍ତିଷ୍କ ଜ୍ଞାନପ୍ରକାଶ ପାଇଁ ଅପେକ୍ଷାକୃତ ଅନୁପଯୋଗୀ ଯନ୍ତ୍ର, ଏଥିପାଇଁ ତାହାର ଜ୍ଞାନକୁ ଆମେ ସହଜାତ ଜ୍ଞାନ କହିଥାଉ । ମାନବର ମସ୍ତିଷ୍କ ଅପେକ୍ଷାକୃତ ସୂକ୍ଷ୍ମତର ଓ ଜ୍ଞାନପ୍ରକାଶର ଉପଯୋଗୀ, ସେଥିପାଇଁ ତାହା ନିକଟରେ ଜ୍ଞାନପ୍ରକାଶ ସ୍ପଷ୍ଟତର, ପୁଣି ଉଚ୍ଚତମ ମାନବ ପକ୍ଷରେ ତାହା ଖଣ୍ଡେ କାଚପରି ସ୍ୱଚ୍ଛ ହୋଇଯାଇଛୁ । ଅସ୍ତିତ୍ୱ ବା ସତ୍ତା ସମ୍ବନ୍ଧରେ ମଧ୍ୟ ତଦ୍ରୂପ; ଆମେ ଯେଉଁ ଅସ୍ତିତ୍ୱକୁ ଜାଣୁ, ଏହି ସୀମାବଦ୍ଧ କ୍ଷୁଦ୍ର ଅସ୍ତିତ୍ୱଟି ସେହି ନିରପେକ୍ଷ ସତ୍ତାର ପ୍ରତିବିମ୍ବ ମାତ୍ର. ଏହି ନିରପେକ୍ଷ ସତ୍ତା ହିଁ ଆତ୍ମାର ସ୍ୱରୂପ । ଆନନ୍ଦ ସମ୍ବନ୍ଧରେ ମଧ୍ୟ ଏହିପରି; ଯାହାକୁ ଆମେ ପ୍ରେମ, ବା ଆକର୍ଷଣ କହୁ, ତାହା ସେହି ଆତ୍ମାର ନିତ୍ୟ ଆନନ୍ଦର ପ୍ରତିବିମ୍ବସ୍ୱରୂପ; କାରଣ ବ୍ୟକ୍ତ ହେବା ମାତ୍ରେ ହିଁ ସସୀମତା ଆସିଥାଏ; କିନ୍ତୁ ଆତ୍ମାର ସେହି ଅବ୍ୟକ୍ତ ସ୍ୱାଭାବିକ ସ୍ୱରୂପଗତ ସତ୍ତା ଅସୀମ ଓ ଅନନ୍ତ, ସେହି ଆନନ୍ଦର ସୀମା ନାହିଁ । କିନ୍ତୁ ମାନବୀୟ ପ୍ରେମର ସୀମା ଅଛି । ମୁଁ ଆଜି ଆପଣଙ୍କୁ ଭଲ ପାଇଲି, ତାର ପରଦିନ କିନ୍ତୁ ମୁଁ ଆପଣଙ୍କୁ ଆଉ ଭଲ ପାଇ ନ ପାରେ । ଦିନେ ମୋର ସ୍ନେହ ବଢ଼ିଉଠିଲା, ତା' ପରଦିନ କମିଗଲା, କାରଣ ତାହା ଗୋଟିଏ ସୀମାବଦ୍ଧ ପ୍ରକାଶମାତ୍ର । ଅତଏବ କପିଳଙ୍କ ମତ ବିରୋଧରେ ଏହି ପ୍ରଥମ ଯୁକ୍ତି ପାଇଲୁ ଯେ, ଆତ୍ମାକୁ ନିର୍ଗୁଣ, ଅରୂପ, ନିଷ୍କ୍ରିୟ ପଦାର୍ଥ ବୋଲି ସେ କଳ୍ପନା କରିଅଛନ୍ତି; କିନ୍ତୁ ବେଦାନ୍ତ ଉପଦେଶ ଦେଇଛନ୍ତି ଯେ ତାହା ସମୁଦାୟ ସତ୍ତା, ଜ୍ଞାନ ଓ ଆନନ୍ଦର ସାରସ୍ୱରୂପ । ଆମେ ଯେତେପ୍ରକାର ଜ୍ଞାନ ବିଷୟରେ ଜାଣୁ, ସେ ସେଥିରୁ ଅନନ୍ତ ଗୁଣରେ ଶ୍ରେଷ୍ଠତର, ଆମେ ମାନବୀୟ ପ୍ରେମ ବା ଆନନ୍ଦର ଯେତେଦୂର ପର୍ଯ୍ୟନ୍ତ କଳ୍ପନା କରିପାରୁ, ସେ ସେଥିରୁ ଅନନ୍ତ ଗୁଣରେ ଅଧିକ ଆନନ୍ଦମୟ ପୁଣି ଅନନ୍ତ ସତ୍ତାବାନ । ଆତ୍ମାର କେବେହେଲେ ମୃତ୍ୟୁ ହୁଏ ନାହିଁ । ଆତ୍ମା ସମ୍ବନ୍ଧରେ ଜନ୍ମ-ମରଣ କଥା ମଧ୍ୟ ଭାବି ହୁଏ ନାହିଁ, କାରଣ ସେ ଅନନ୍ତ ସତ୍ତାସ୍ୱରୂପ ।

କପିଳଙ୍କ ସହିତ ଆମର ଦ୍ୱିତୀୟ ବିଷୟରେ ମତଭେଦ ତାଙ୍କର ଈଶ୍ୱର ବିଷୟକ ଧାରଣା ଯୋଗ । ଯେପରି ବ୍ୟଷ୍ଟି-ବୁଦ୍ଧିରୁ ଆରମ୍ଭ କରି ବ୍ୟଷ୍ଟି-ଶରୀର ପର୍ଯ୍ୟନ୍ତ ଏହି ପ୍ରାକୃତିକ ସାନ୍ତ ପ୍ରକାଶ-ଶ୍ରେଣୀର ପଶ୍ଚାତ୍ତରେ ତାହାର ନିୟନ୍ତା ଓ ସ୍ୱରୂପ ଆତ୍ମା ସ୍ୱୀକାର କରିବାର ପ୍ରୟୋଜନ, ସମଷ୍ଟି ଭିତରେ ମଧ୍ୟ—ବୃହତ୍ତ ବ୍ରହ୍ମାଣ୍ଡରେ ମଧ୍ୟ—ସମଷ୍ଟି-ବୁଦ୍ଧି, ସମଷ୍ଟି-ମନ, ସମଷ୍ଟି-ସୂକ୍ଷ୍ମ ଓ ସ୍ଥୂଳ ଜଡ଼ର ପଶ୍ଚାତ୍ତରେ ତାହାର ନିୟନ୍ତା ଓ ଶାସ୍ତା ରୂପେ କିଏ ଅଛନ୍ତି, ଆମେ ତାହାଙ୍କୁ ଏହି କଥା ପଚାରିବୁ । ଏହି ସମଷ୍ଟି-ବୁଦ୍ଧ୍ୟାଦି-ଶ୍ରେଣୀର ପଶ୍ଚାତ୍ତରେ ସେମାନଙ୍କର ନିୟନ୍ତା ଓ ଶାସ୍ତାସ୍ୱରୂପ ଜଣେ ସର୍ବବ୍ୟାପୀ ଆତ୍ମା ସ୍ୱୀକାର ନ କଲେ ସେ ଶ୍ରେଣୀ ସମ୍ପୂର୍ଣ୍ଣ ହେବ କିପରି ? ଯଦି ସମୁଦାୟ ବ୍ରହ୍ମାଣ୍ଡର ଜଣେ ଶାସ୍ତା ଅଛନ୍ତି ବୋଲି ଆମେ ଅସ୍ୱୀକାର କରୁ, ତାହାହେଲେ ସେହି କ୍ଷୁଦ୍ରତର ଶ୍ରେଣୀର ପଶ୍ଚାତ୍ତରେ ମଧ୍ୟ ଯେ ଏକ ଆତ୍ମା ଅଛନ୍ତି, ତାହା ମଧ୍ୟ ଅସ୍ୱୀକାର କରିବାକୁ ହେବ;

କାରଣ ସମଗ୍ର ବ୍ରହ୍ମାଣ୍ଡ କେବଳ ଗୋଟିଏ ନିର୍ମାଣପ୍ରଣାଳୀର ପୌନଃ-ପୌନିକତା ମାତ୍ର । ଆମେ ପିଣ୍ଡୁଳାଏ ମାଟିକୁ ଜାଣିପାରଲେ ସକଳ ମୃତ୍ତିକାର ସ୍ୱରୂପ ଜାଣିପାରିବା । ଯଦି ଆମେ ଜଣେ ମାନବକୁ ବିଶ୍ଳେଷଣ କରିପାରୁ, ତେବେ ସମଗ୍ର ଜଗତକୁ ବିଶ୍ଳେଷଣ କରି-ହେଲା, କାରଣ ସବୁ ଗୋଟିଏ ନିୟମରେ ନିର୍ମିତ । ଅତଏବ ଯଦି ଏହା ସତ୍ୟ ହୁଏ ଯେ, ଏହି ବ୍ୟଷ୍ଟି-ଶ୍ରେଣୀର ପଶ୍ଚାତ୍ତରେ ଏପରି ଜଣେ ଅଛନ୍ତି ଯେ ସମୁଦାୟ ପ୍ରକୃତିର ଅତୀତ, ଯେ କୌଣସି ପ୍ରକାର ଉପାଦାନରେ ନିର୍ମିତ ନୁହନ୍ତି, ଅର୍ଥାତ୍ ପୁରୁଷ—ତାହାହେଲେ ଏହି ଯୁକ୍ତି ସମଷ୍ଟି-ବ୍ରହ୍ମାଣ୍ଡ ଉପରେ ମଧ୍ୟ ପ୍ରଯୋଜ୍ୟ ହେବ ଏବଂ ତାହାର ପରରେ ମଧ୍ୟ ଏକ ଚୈତନ୍ୟକୁ ସ୍ୱୀକାର କରିବାର ପ୍ରୟୋଜନ ହେବ । ଯେଉଁ ସର୍ବବ୍ୟାପୀ ଚୈତନ୍ୟ ପ୍ରକୃତିର ସମୁଦାୟ ବିକାରର ପଶ୍ଚାତ୍‌ରେ ରହିଛି, ତାହାକୁ ବେଦାନ୍ତ ସମୟଙ୍କର ନିୟନ୍ତା 'ଈଶ୍ୱର' କହନ୍ତି ।

ବର୍ତ୍ତମାନ ପୂର୍ବୋକ୍ତ ଦୁଇଟି ବିଷୟରୁ ଗୁରୁତର ବିଷୟ ଯେନି ସାଙ୍ଖ୍ୟ ସହିତ ଆମକୁ ବିବାଦ କରିବାକୁ ହେବ । ବେଦାନ୍ତର ମତ ଏହି ଯେ—ଗୋଟିଏ ମାତ୍ର ଆତ୍ମା ବିରାଜିତ । ଆମେ ବିବାଦର ପ୍ରାରମ୍ଭରୁ ସାଙ୍ଖ୍ୟର ଗୋଟିଏ ମତ—ଯେହେତୁ ଆତ୍ମା ଅନ୍ୟ କୌଣସି ବସ୍ତୁରୁ ଗଠିତ ନୁହେଁ, ସେହି ହେତୁ ପ୍ରତ୍ୟେକ ଆତ୍ମା ଅବଶ୍ୟ ସର୍ବବ୍ୟାପୀ ହେବ—ଏହା ପ୍ରମାଣ କରି ସେଗୁଡ଼ିକୁ ଘୋର ଆଘାତ ଦେଇପାରୁ । ଯାହା ସୀମାବଦ୍ଧ, ତାହା ଅନ୍ୟ କାହାଦ୍ୱାରା ସୀମିତ । ଏହି ଟେବୁଲଟି ରହିଛି—ଏହାର ଅସ୍ତିତ୍ୱ ଅନେକ ବସ୍ତୁଦ୍ୱାରା ସୀମାବଦ୍ଧ । ପୁଣି ସୀମାବଦ୍ଧ ବସ୍ତୁ କହିଲେ ପୂର୍ବରୁ ଏଭଳି ଏକ ବସ୍ତୁ କଳ୍ପନା କରିବାକୁ ହେବ, ଯାହା ଏହାକୁ ସୀମାବଦ୍ଧ କରିଛି । ଯଦି ଆମେ 'ଦେଶ' ସମ୍ବନ୍ଧରେ ଚିନ୍ତା କରୁ ତେବେ ତାହାକୁ ଏକ କ୍ଷୁଦ୍ର ବୃତ୍ତ ଭଳି ଚିନ୍ତା କରିବାକୁ ହୁଏ, କିନ୍ତୁ ତାହାର ବହିର୍ଦ୍ଦେଶରେ ମଧ୍ୟ ଆଉ ଦେଶ ରହିଛି । ଆମେ ଅନ୍ୟ କୌଣସି ଉପାୟରେ ସୀମାବଦ୍ଧ ଦେଶ ବିଷୟରେ କଳ୍ପନା କରିପାରିବା ନାହିଁ । ତାହାକୁ କେବଳ ଅନନ୍ତର ମଧ୍ୟଦେଇ ବୁଝିହୁଏ ଓ ଅନୁଭବ କରିଯାଇପାରେ । ସସୀମକୁ ଅନୁଭବ କରିବାକୁ ହେଲେ ସକଳ ସ୍ଥଳରେ ହିଁ ଆମକୁ ଅସୀମର ଉପଲବ୍ଧି କରିବାକୁ ହୁଏ । ହୁଏତ ଦୁଇଟିଯାକ ସ୍ୱୀକାର କରିବାକୁ ହେବ, ନଚେତ୍ କୌଣସିଟିକୁ ସ୍ୱୀକାର କରିବା ଚଳିବ ନାହିଁ । ଆପଣମାନେ ଯେତେବେଳେ କାଳ ସମ୍ବନ୍ଧରେ ଚିନ୍ତା କରନ୍ତି, ସେତେବେଳେ ଆପଣମାନଙ୍କୁ ଏକ ନିର୍ଦ୍ଦିଷ୍ଟ କାଳର ଅତୀତ କାଳ ସମ୍ବନ୍ଧରେ ଚିନ୍ତା କରିବାକୁ ହୁଏ । ତା' ଭିତରୁ ଗୋଟିଏ ସୀମାବଦ୍ଧ କାଳ ଓ ବୃହତ୍ତରଟି ଅସୀମ କାଳ । ଯେତେବେଳେ ଆପଣମାନେ ସସୀମକୁ ଅନୁଭବ କରିବାର ଚେଷ୍ଟା କରିବେ, ସେତେବେଳେ ଆପଣମାନେ ଦେଖିବେ, ତାହାକୁ ଅସୀମଠାରୁ ପୃଥକ୍ କରିବା ଅସମ୍ଭବ । ଯଦି ତାହା ହିଁ ହୁଏ, ତେବେ ଆମେ ଏହିଁରୁ ପ୍ରମାଣ କରିବା ଯେ, ଏହି ଆତ୍ମା ଅସୀମ ଓ ସର୍ବବ୍ୟାପୀ । ବର୍ତ୍ତମାନ ଗୋଟିଏ ଗଭୀର ସମସ୍ୟା ପଡ଼ିଥିଲା । ସର୍ବବ୍ୟାପୀ ଓ ଅନନ୍ତ ପଦାର୍ଥ କଅଣ ଦୁଇଟା ହୋଇପାରେ ? ମନେ କରନ୍ତୁ, ଅସୀମ ଦୁଇଟା ହେଲା—ତାହା ହେଲେ ସେମାନଙ୍କ ମଧ୍ୟରୁ ଗୋଟିଏ ଅନ୍ୟଟିକୁ ସୀମାବଦ୍ଧ କରିବ ।

ମନେକରନ୍ତୁ 'କ' ଓ 'ଖ' ଦୁଇଟି ଅନନ୍ତ ବସ୍ତୁ ରହିଛି । ତାହା ହେଲେ ଅନନ୍ତ 'କ' ଅନନ୍ତ 'ଖ'କୁ ସୀମାବଦ୍ଧ କରିବ । କାରଣ, ଆପଣ ଏ କଥା କହିପାରନ୍ତି ଯେ, ଅନନ୍ତ 'କ' ଅନନ୍ତ 'ଖ' ନୁହେଁ; ପୁଣି ଅନନ୍ତ 'ଖ' ସମ୍ବନ୍ଧରେ ମଧ୍ୟ କୁହାଯାଇପାରେ ଯେ ତାହା ଅନନ୍ତ 'କ' ନୁହେଁ । ଅତଏବ ଗୋଟିଏ ମାତ୍ର 'ଅନନ୍ତ' ରହିପାରେ । ଦ୍ୱିତୀୟତଃ ଅନନ୍ତର ଭାଗ ହୋଇ ନ ପାରେ । ଅନନ୍ତକୁ ଯେତେଭାଗ କରାଯାଉନା କାହିଁକି ତଥାପି ତାହା ଅନନ୍ତ ହିଁ ରହିବ, କାରଣ ତାହାକୁ ନିଜଠାରୁ ପୃଥକ୍ କରାଯାଇପାରିବ ନାହିଁ । ମନେକରନ୍ତୁ, ଏକ ଅନନ୍ତ ସମୁଦ୍ର ରହିଛି, ତହିଁରୁ କଅଣ ଆପଣ ବିନ୍ଦୁଏ ଜଳ ନେଇ-ପାରିବେ ? ଯଦି ପାରନ୍ତି, ତାହାହେଲେ ସମୁଦ୍ର ଆଉ ଅନନ୍ତ ରହିବ ନାହିଁ, ସେହି ବିନ୍ଦୁଏ ଜଳ ହିଁ ତାହାକୁ ସୀମାବଦ୍ଧ କରିବ । ଅନନ୍ତକୁ କୌଣସି ଉପାୟରେ ଭାଗ କରାଯାଇପାରିବ ନାହିଁ ।

କିନ୍ତୁ ଆତ୍ମା ଯେ ଏକ, ତାହାର ଏହାଠାରୁ ଆହୁରି ପ୍ରବଳତର ପ୍ରମାଣ ଅଛି । କେବଳ ତାହା ନୁହେଁ, ସମଗ୍ର ବ୍ରହ୍ମାଣ୍ଡ ଯେ ଏକ ଅଖଣ୍ଡ ସତ୍ତା ଏହା ମଧ୍ୟ ପ୍ରମାଣ କରାଯାଇ ପାରେ । ଆଉଥରେ ଆମେମାନେ ପୂର୍ବକଥିତ 'କ' ଓ 'ଖ' ନାମକ ଅଜ୍ଞାତ ବସ୍ତୁସୂଚକ ଶବ୍ଦର ସାହାଯ୍ୟ ଗ୍ରହଣ କରିବା । ଆମେ ପୂର୍ବରୁ ଦେଖିଛେ, ଯାହାକୁ ଆମେ ବହିର୍ଜଗତ୍ କହୁଁ, ତାହା 'କ+ମନ', ଆଉ ଅନ୍ତର୍ଜଗତ୍ 'ଖ+ମନ' । 'କ' ଓ 'ଖ' ଏହି ଦୁଇଟି ହିଁ ଅଜ୍ଞାତ ସଂଖ୍ୟାବାଚକ—ଉଭୟଟି ଅଜ୍ଞାତ ଓ ଅଜ୍ଞେୟ । ବର୍ତ୍ତମାନ 'ମନ' କଅଣ ଦେଖାଯାଉ । ମନ ଦେଶ-କାଳ-ନିମିତ୍ତ ବ୍ୟତୀତ ଆଉ କିଛି ନୁହେଁ; ସେଗୁଡ଼ିକ ମଧ୍ୟ ମନର ସ୍ୱରୂପ । ଆପଣମାନେ କାଳ ବ୍ୟତୀତ କେବେବେଳେ ଚିନ୍ତା କରିପାରନ୍ତି ନାହିଁ, ଦେଶ ବ୍ୟତୀତ କୌଣସି ବସ୍ତୁର ଧାରଣା କରିପାରନ୍ତି ନାହିଁ ଏବଂ ନିମିତ୍ତ ବା କାର୍ଯ୍ୟକାରଣ ସମ୍ବନ୍ଧ ଛଡ଼ା କୌଣସି ବସ୍ତୁର କଳ୍ପନା କରିପାରନ୍ତି ନାହିଁ । ପୂର୍ବୋକ୍ତ 'କ' ଓ 'ଖ' ଏହି ତିନୋଟି ଛାଞ୍ଚରେ ପଡ଼ି ମନଦ୍ୱାରା ସୀମାବଦ୍ଧ ହୋଇଛି । ଏହିସବୁ ବ୍ୟତୀତ ମନର ଅନ୍ୟ ସ୍ୱରୂପ ନାହିଁ । ବର୍ତ୍ତମାନ ସେହି ତିନୋଟି ଛାଞ୍ଚ, ଯାହାର ସ୍ୱୟଂ କୌଣସି ଅସ୍ତିତ୍ୱ ନାହିଁ, ସେଗୁଡ଼ିକୁ ଉଠାଇ ନିଅନ୍ତୁ । କ'ଣ ଅବଶିଷ୍ଟ ରହିବ ? ସେତେବେଳେ ସବୁ ଏକ ହୋଇଯିବ । 'କ' ଓ 'ଖ' ଗୋଟିଏ ବୋଲି ବୋଧହେବ । କେବଳ ଏହି ମନ, ଏହି ଛାଞ୍ଚ ହିଁ ତାହାକୁ ଆପାତଦୃଷ୍ଟିରେ ସୀମାବଦ୍ଧ କରିଥିଲା ଏବଂ ସେଗୁଡ଼ିକୁ ଅନ୍ତର୍ଜଗତ୍ ଓ ବାହ୍ୟଜଗତ୍ ଏହି ଦୁଇ ରୂପରେ ଭିନ୍ନ କରିଥିଲା । 'କ' ଓ 'ଖ' ଦୁଇଟି ହିଁ ଅଜ୍ଞାତ ଓ ଅଜ୍ଞେୟ । ଆମେ ସେଗୁଡ଼ିକ ଉପରେ କୌଣସି ଗୁଣ ଆରୋପ କରିପାରିବା ନାହିଁ । ସୁତରାଂ ଗୁଣ ବା ବିଶେଷଣରହିତ ଉଭୟ ହିଁ ଏକ । ଯାହା ଗୁଣରହିତ ଓ ନିରପେକ୍ଷ ପୂର୍ଣ୍ଣ ତାହା ଅବଶ୍ୟ ହିଁ ଏକ ହେବ । ନିରପେକ୍ଷ ପୂର୍ଣ୍ଣ ବସ୍ତୁ ଦୁଇଟି ହୋଇପାରେ ନାହିଁ । ଯେଉଁଠାରେ କୌଣସି ଗୁଣ ନାହିଁ, ସେଠାରେ କେବଳ ଗୋଟିଏ ବସ୍ତୁ ହିଁ ରହିପାରେ । 'କ' ଓ 'ଖ' ଉଭୟ ହିଁ ନିର୍ଗୁଣ; କାରଣ ସେମାନେ କେବଳ ମନରୁ ଗୁଣ ପାଉଛନ୍ତି । ଅତଏବ ଏହି 'କ' ଓ 'ଖ' ଏକ ।

– ସମଗ୍ର ବ୍ରହ୍ମାଣ୍ଡ ଏକ ଅଖଣ୍ଡ ସତ୍ତା ମାତ୍ର । ଜଗତରେ କେବଳ ଏକ ଆତ୍ମା, ଏକ ସତ୍ତା ଅଛି; ଏବଂ ସେହି ଏକ ସତ୍ତା, ଯେତେବେଳେ ଦେଶକାଳନିମିତ୍ତର ଛାଞ୍ଚରେ ପଡ଼େ, ସେତେବେଳେ ହିଁ ତାହାକୁ ବୁଦ୍ଧି, ଅହଂଜ୍ଞାନ, ସୂକ୍ଷ୍ମଭୂତ, ସ୍ଥୂଳଭୂତ ଆଦି ଆଖ୍ୟା ଦିଆଯାଏ । ସମୁଦାୟ ଭୌତିକ ଓ ମାନସିକ ଆକାର ବା ରୂପ, ଯାହା କିଛି ଏହି ଜଗତ୍ ବ୍ରହ୍ମାଣ୍ଡରେ ଅଛି, ତାହା ସେହି ଏକ ବସ୍ତୁ—କେବଳ ବିଭିନ୍ନ ରୂପରେ ପ୍ରତିଭାତ ହେଉଛି ମାତ୍ର । ଯେତେବେଳେ ତାହାର ସାମାନ୍ୟ ଏହି ଦେଶକାଳନିମିତ୍ତ ଜାଲରେ ପଡ଼େ, ସେତେବେଳେ ତାହା ଆକାର ଗ୍ରହଣ କରେ ବୋଲି ବୋଧହୁଏ; ସେହି ଜାଲ ଘୁଞ୍ଚାଇ ଦେଖନ୍ତୁ—ସବୁ ଏକ । ଏହି ସମଗ୍ର ଜଗତ୍ ଅଖଣ୍ଡସ୍ୱରୂପ; ଏବଂ ତାହାକୁ ହିଁ ଅଦ୍ୱୈତ-ବେଦାନ୍ତ-ଦର୍ଶନରେ ବ୍ରହ୍ମ କୁହାଯାଏ । ଯେତେବେଳେ ବ୍ରହ୍ମ ବ୍ରହ୍ମାଣ୍ଡର ପଶ୍ଚାଦ୍ଦେଶରେ ଅଛନ୍ତି ବୋଲି ପ୍ରତୀତ ହୁଏ, ସେତେବେଳେ ତାଙ୍କୁ ଈଶ୍ୱର କୁହାଯାଏ; ପୁଣି ଯେତେବେଳେ ସେ ଏହି କ୍ଷୁଦ୍ର ବ୍ରହ୍ମାଣ୍ଡର ପଶ୍ଚାତ୍‌ରେ ବର୍ତ୍ତମାନ ବୋଲି ପ୍ରତୀତ ହୁଅନ୍ତି, ସେତେବେଳେ ତାଙ୍କୁ 'ଆତ୍ମା' କୁହାଯାଏ । ଅତଏବ ଏହି ଆତ୍ମା ହିଁ ମାନବର ଅଭ୍ୟନ୍ତରସ୍ଥ ଈଶ୍ୱର । ଜଣେମାତ୍ର ପୁରୁଷ ଅଛନ୍ତି—ତାଙ୍କୁ ଈଶ୍ୱର କୁହାଯାଏ, ପୁଣି ଯେତେବେଳେ ଈଶ୍ୱର ଓ ମାନବ ଉଭୟର ସ୍ୱରୂପ ବିଶ୍ଲେଷଣ କରାଯାଏ, ସେତେବେଳେ ଉଭୟ ଏକ ବୋଲି ବୋଧହୁଏ । ଆପଣ ହିଁ ସ୍ୱୟଂ ଏହି ବ୍ରହ୍ମାଣ୍ଡ, ଆପଣ ଅବିଭକ୍ତ, ଆପଣ ଏହି ସମଗ୍ର ଜଗତ ମଧ୍ୟରେ ରହିଛନ୍ତି । ସକଳ ହସ୍ତରେ ଆପଣ କାର୍ଯ୍ୟ କରୁଛନ୍ତି, ସକଳ ମୁଖରେ ଆପଣ ଖାଉଛନ୍ତି, ସକଳ ନାସିକାରେ ଆପଣ ଶ୍ୱାସ-ପ୍ରଶ୍ୱାସ ନେଉଛନ୍ତି, ସକଳ ମନରେ ଆପଣ ଚିନ୍ତା କରୁଛନ୍ତି ।* ଆପଣ ହିଁ ସମଗ୍ର ଜଗତ୍ । ଏହି ବ୍ରହ୍ମାଣ୍ଡ ଆପଣଙ୍କର ଶରୀର । ଆପଣ ହିଁ ଉଭୟ ବ୍ୟକ୍ତ ଓ ଅବ୍ୟକ୍ତ ଜଗତ୍, ଆପଣ ହିଁ ଜଗତର ଆତ୍ମା, ପୁଣି ଆପଣ ହିଁ ତାହାର ଶରୀର । ଆପଣ ହିଁ ଈଶ୍ୱର, ଆପଣ ହିଁ ଦେବତା, ଆପଣ ହିଁ ମନୁଷ୍ୟ, ଆପଣ ହିଁ ପଶୁ; ଆପଣ ହିଁ ଉଦ୍ଭିଦ, ଖଣିଜ, ଆପଣ ହିଁ ସବୁ—ଆପଣ ସମୁଦାୟ ବ୍ୟକ୍ତ ଜଗତ୍ । ଯାହା କିଛି ଅଛି, ସବୁ ହିଁ ଆପଣ—ଯଥାର୍ଥ 'ଆପଣ', ସେହି ଏକ ଅବିଭକ୍ତ ଆତ୍ମା; ଯେଉଁ କ୍ଷୁଦ୍ର ସୀମାବଦ୍ଧ ବ୍ୟକ୍ତିବିଶେଷକୁ ଆପଣ 'ଆପଣ' ବୋଲି ମନେ କରୁଛନ୍ତି ତାହା ନୁହେଁ ।

ବର୍ତ୍ତମାନ ଏହି ପ୍ରଶ୍ନ ଉଠୁଛି ଯେ, ଆପଣ ଅନନ୍ତ ପୁରୁଷ ହେବା ସତ୍ତ୍ୱେ କିପରି ଏହିଭଳି ଖଣ୍ଡ ଖଣ୍ଡ ହେଲେ ?—ଅମୁକ ବ୍ୟକ୍ତି, ପଶୁପକ୍ଷୀ ବା ଅନ୍ୟାନ୍ୟ ବସ୍ତୁ ହୋଇଛନ୍ତି ? ଏହାର ଉତ୍ତର ଏହି—ଏହି ସମୁଦାୟ ବିଭାଗ ଆପାତପ୍ରତୀୟମାନ । ଆମେ ଜାଣୁ, ଅନନ୍ତର କେବେ ବିଭାଗ ହୋଇପାରେ ନାହିଁ । ଅତଏବ ଆପଣ ଗୋଟିଏ ଅଂଶମାତ୍ର—ଏ କଥା ମିଥ୍ୟା, ତାହା କେବେହେଲେ ସତ୍ୟ ହୋଇ ନ ପାରେ । ଆଉ, ଆପଣ ଯେ ଅମୁକ ବ୍ୟକ୍ତି—ଏ କଥା ମଧ୍ୟ କୌଣସି କାଳରେ ସତ୍ୟ ନୁହେଁ—ତାହା କେବଳ ସ୍ୱପ୍ନମାତ୍ର । ଏହା ଜାଣି ମୁକ୍ତ ହୁଅନ୍ତୁ । ଏହା ହିଁ ଅଦ୍ୱୈତବାଦୀଙ୍କର ସିଦ୍ଧାନ୍ତ । 'ମୁଁ ମନ ନୁହେଁ, ଦେହ ମଧ

* ଗୀତା, ୧୩।୧୩ ।

ନୁହେଁ, ଇନ୍ଦ୍ରିୟ ମଧ୍ୟ ନୁହେଁ—ମୁଁ ଅଖଣ୍ଡ ସଚ୍ଚିଦାନନ୍ଦସ୍ୱରୂପ; ମୁଁ ସେହି, ମୁଁ ସେହି ।*

ଏହା ହିଁ ଜ୍ଞାନ ଏବଂ ଏହା ବ୍ୟତୀତ ଆଉ ଯାହା କିଛି, ସବୁ ହିଁ ଅଜ୍ଞାନ । ଯାହା କିଛି ଅଛି ସମୁଦାୟ ହିଁ ଅଜ୍ଞାନ—ଅଜ୍ଞାନର ଫଳସ୍ୱରୂପ । ମୁଁ ଆଉ କେଉଁ ଜ୍ଞାନ ଲାଭ କରିବି ? ମୁଁ ସ୍ୱୟଂ ଜ୍ଞାନସ୍ୱରୂପ । ମୁଁ ଆଉ ଜୀବନ କଅଣ ଲାଭ କରିବି ? ମୁଁ ସ୍ୱୟଂ ପ୍ରାଣସ୍ୱରୂପ । ଜୀବନ ମୋ ସ୍ୱରୂପର ଗୌଣ ବିକାଶ ମାତ୍ର । ମୁଁ ନିଶ୍ଚିତଭାବେ ଜାଣେ ଯେ, ମୁଁ ଜୀବିତ; ଏହାର କାରଣ, ମୁଁ ଜୀବନସ୍ୱରୂପ, ସେହି ଏକ ପୁରୁଷ । ଏଭଳି କୌଣସି ବସ୍ତୁ ନାହିଁ, ଯାହା ମୋ ମଧ୍ୟଦେଇ ପ୍ରକାଶିତ ନୁହେଁ, ଯାହା ମୋଠାରେ ନାହିଁ ଏବଂ ଯାହା ମୋ ସ୍ୱରୂପରେ ଅବସ୍ଥିତ ନୁହେଁ । ମୁଁ କେବଳ ପଞ୍ଚଭୂତରୂପେ ପ୍ରକାଶିତ ହୋଇଛି; କିନ୍ତୁ ମୁଁ ମୁକ୍ତସ୍ୱରୂପ । କିଏ ମୁକ୍ତି ଚାହେଁ ? କାହାର ମୁକ୍ତି ଲୋଡ଼ା ନାହିଁ । ଯଦି ଆପଣ ନିଜକୁ ବଦ୍ଧ ବୋଲି ଭାବନ୍ତି ତେବେ ଅବଶ୍ୟ ବଦ୍ଧ ହୋଇ ରହିବେ, ଆପଣ ନିଜେ ହିଁ ନିଜ ବନ୍ଧନର କାରଣ ହେବେ ଏବଂ ଆପଣ ଯଦି ଉପଲବ୍ଧି କରନ୍ତି ଯେ, ଆପଣ ମୁକ୍ତ, ତେବେ ଏହି ମୁହୂର୍ତ୍ତରୁ ହିଁ ଆପଣ ମୁକ୍ତ । ଏହା ହିଁ ଜ୍ଞାନ—ମୁକ୍ତିପ୍ରଦ ଜ୍ଞାନ; ଏବଂ ସମୁଦାୟ ପ୍ରକୃତିର ଚରମ ଲକ୍ଷ୍ୟ ହିଁ ମୁକ୍ତି ।

## ଆତ୍ମାର ମୁକ୍ତସ୍ୱଭାବ

ଆମେ ଦେଖିଲେ ଯେ, ସାଙ୍ଖ୍ୟର ବିଶ୍ଳେଷଣ ଦ୍ୱୈତବାଦରେ ପର୍ଯ୍ୟବସିତ— ତାହାର ସିଦ୍ଧାନ୍ତ ଏହା ଯେ, ଚରମ ତତ୍ତ୍ୱ ପ୍ରକୃତି ଓ ଆତ୍ମାସମୂହ । ଆତ୍ମାର ସଂଖ୍ୟା ଅନନ୍ତ ଏବଂ ଯେହେତୁ ଆତ୍ମା ଅମିଶ୍ର ପଦାର୍ଥ, ସେହେତୁ ତାହାର ବିନାଶ ନାହିଁ । ସୁତରାଂ ତାହା ପ୍ରକୃତିଠାରୁ ଅବଶ୍ୟ ସ୍ୱତନ୍ତ୍ର । ପ୍ରକୃତିର ପରିଣାମ ହୁଏ ଏବଂ ସେ ଏହି ସମୁଦାୟ ପ୍ରପଞ୍ଚ ପ୍ରକାଶ କରେ । ସାଙ୍ଖ୍ୟମତରେ ଆତ୍ମା ନିଷ୍କ୍ରିୟ । ତାହା ଅମିଶ୍ର ଏବଂ ପ୍ରକୃତି ଆତ୍ମାର ଅପବର୍ଗ ବା ମୁକ୍ତିସାଧନ ପାଇଁ ଏହି ସମୁଦାୟ ପ୍ରପଞ୍ଚ-ଜାଲ ବିସ୍ତାର କରେ ଏବଂ ଆତ୍ମା ଯେତେବେଳେ ବୁଝିପାରେ ଯେ ସେ ପ୍ରକୃତି ନୁହେଁ, ସେତେବେଳେ ତା'ର ମୁକ୍ତି । ଅନ୍ୟ ଦିଗରୁ ଏ କଥା ମଧ୍ୟ ଆମେ ଦେଖିଛେ ଯେ, ସାଙ୍ଖ୍ୟବାଦୀମାନଙ୍କୁ ବାଧ୍ୟ ହୋଇ ସ୍ୱୀକାର କରିବାକୁ ପଡ଼ିଥିଲା ଯେ, ପ୍ରତ୍ୟେକ ଆତ୍ମା ହିଁ ସର୍ବବ୍ୟାପୀ । ଆତ୍ମା ଯେତେବେଳେ ଅମିଶ୍ର ପଦାର୍ଥ, ସେତେବେଳେ ସେ ସସୀମ ହୋଇ ନ ପାରେ । କାରଣ ସମୁଦାୟ ସୀମାବଦ୍ଧ ଭାବ, ଦେଶ, କାଳ ବା ନିମିତ୍ତଦ୍ୱାରା କୃତ ହୋଇଥାଏ । ଆତ୍ମା ଯେତେବେଳେ ସମ୍ପୂର୍ଣ୍ଣ-

---

* ମନୋବୁଦ୍ଧ୍ୟହଂକାରଚିତ୍ତାନି ନାହଂ ନ ଚ ଶ୍ରୋତ୍ରଜିହ୍ୱେ ନ ଚ ଘ୍ରାଣନେତ୍ରେ ।
ନ ଚ ବ୍ୟୋମଭୂମିର୍ନ ତେଜୋ ନ ବାୟୁ-
ଶ୍ଚିଦାନନ୍ଦରୂପଃ ଶିବୋଽହଂ ଶିବୋଽହମ୍ ॥ —ନିର୍ବାଣଷଟ୍କମ୍ ୧, ଶଙ୍କରାଚାର୍ଯ୍ୟ

ରୂପେ ଏମାନଙ୍କର ଅତୀତ, ସେତେବେଳେ ସେଥିରେ ଆଦୌ ସସୀମ ଭାବ ରହିପାରେ ନାହିଁ । ସସୀମ ହେବାକୁ ଗଲେ ତାହାକୁ ଦେଶରେ ରହିବାକୁ ହେବ ଏବଂ ଏହାର ଅର୍ଥ ତାର ଗୋଟିଏ ଦେହ ଅବଶ୍ୟ ରହିବ । ପୁଣି ଯାହାର ଦେହ ଅଛି, ସେ ଅବଶ୍ୟ ପ୍ରକୃତିର ଅନ୍ତର୍ଗତ । ଯଦି ଆତ୍ମାର ଆକାର ଥାନ୍ତା, ତେବେ ଆତ୍ମା ପ୍ରକୃତିଠାରୁ ଅଭିନ୍ନ ହୋଇଥାନ୍ତା; ଅତଏବ ଆତ୍ମା ନିରାକାର, ଏବଂ ଯାହା ନିରାକାର ତାହା ଏଠି ସେଠି ବା ଅନ୍ୟ କେଉଁଠି ଅଛି, ଏ କଥା କୁହାଯାଇ ନ ପାରେ । ତାହା ନିଶ୍ଚୟ ସର୍ବବ୍ୟାପୀ । ସାଂଖ୍ୟଦର୍ଶନ ଏହା ଉପରକୁ ଆଉ ଯାଇ ନାହିଁ ।

ସାଂଖ୍ୟମାନଙ୍କର ଏହି ମତ ବିରୋଧରେ ବେଦାନ୍ତୀମାନଙ୍କର ପ୍ରଥମ ଆପତ୍ତି ଏହି ଯେ, ସାଂଖ୍ୟର ଏହି ବିଶ୍ଳେଷଣ ସମ୍ପୂର୍ଣ୍ଣ ନୁହେଁ । ଯଦି ପ୍ରକୃତି ଏକ ଅମିଶ୍ର ବସ୍ତୁ ହୁଏ ଏବଂ ଆତ୍ମା ମଧ୍ୟ ଯଦି ଏକ ଅମିଶ୍ର ବସ୍ତୁ ହୁଏ—ତେବେ ଦୁଇଟିଯାକ ଅମିଶ୍ର ବସ୍ତୁ ହେବାରୁ ଯେଉଁସବୁ ଯୁକ୍ତିଦ୍ୱାରା ଆତ୍ମାର ସର୍ବବ୍ୟାପିତ୍ୱ ପ୍ରମାଣିତ ହୁଏ, ତାହା ପ୍ରକୃତି ପକ୍ଷରେ ମଧ୍ୟ ପ୍ରଯୋଜ୍ୟ, ସୁତରାଂ ତାହା ସମସ୍ତ ଦେଶକାଳ ନିମିତ୍ତର ଅତୀତ ହେବ । ପ୍ରକୃତି ଯଦି ଏହି ପ୍ରକାର ହୁଏ, ତେବେ ତାହାର କୌଣସି ପରିଣାମ ବା ବିକାଶ ହେବ ନାହିଁ । ଏଥିରେ ଏହି ଅସୁବିଧା ହୁଏ ଯେ, ଦୁଇଟି ଅମିଶ୍ର ବା ପୂର୍ଣ୍ଣ ବସ୍ତୁକୁ ସ୍ୱୀକାର କରିବାକୁ ପଡ଼େ, ଯାହା ଅସମ୍ଭବ । ବେଦାନ୍ତୀମାନଙ୍କର ଏ ସମ୍ବନ୍ଧରେ ସିଦ୍ଧାନ୍ତ କଅଣ ? ସେମାନଙ୍କର ସିଦ୍ଧାନ୍ତ ଏହି ଯେ, ସ୍ଥୂଳ ଜଡ଼ରୁ ମହତ୍ ବା ବୁଦ୍ଧିତତ୍ତ୍ୱ ପର୍ଯ୍ୟନ୍ତ ପ୍ରକୃତିର ସମୁଦାୟ ବିକାର ଯେତେବେଳେ ଅଚେତନ, ସେତେବେଳେ ଯାହାଦ୍ୱାରା ମନ ଚିନ୍ତା କରିପାରେ ଏବଂ ପ୍ରକୃତି କାର୍ଯ୍ୟ କରିପାରେ, ସେଥିପାଇଁ ସେମାନଙ୍କ ପଶ୍ଚାତ୍‌ରେ ସେମାନଙ୍କର ପରିଚାଳକ ଶକ୍ତିସ୍ୱରୂପ ଜଣେ ଚୈତନ୍ୟବାନ୍ ପୁରୁଷଙ୍କ ଅସ୍ତିତ୍ୱ ସ୍ୱୀକାର କରିବା ଆବଶ୍ୟକ । ବେଦାନ୍ତୀ କହନ୍ତି, ସମଗ୍ର ବ୍ରହ୍ମାଣ୍ଡ ପଛରେ ଏହି ଚୈତନ୍ୟବାନ୍ ପୁରୁଷ ରହିଛନ୍ତି, ଯାହାଙ୍କୁ ଆମେ ଈଶ୍ୱର କହୁ । ସୁତରାଂ ଏହି ଜଗତ୍ ତାଙ୍କଠାରୁ ପୃଥକ୍ ନୁହେଁ । ସେ ଜଗତର କେବଳ ନିମିତ୍ତ କାରଣ ନୁହନ୍ତି, ସେ ଉପାଦାନ କାରଣ ମଧ୍ୟ । କୌଣସି ସମୟରେ କାରଣ କାର୍ଯ୍ୟଠାରୁ ପୃଥକ୍ ନୁହେଁ । କାର୍ଯ୍ୟ କାରଣର ହିଁ ରୂପାନ୍ତର ମାତ୍ର । ଏହା ତ ଆମେ ପ୍ରତିଦିନ ଦେଖୁଛେ । ଅତଏବ ସେ ହିଁ ପ୍ରକୃତିର କାରଣ-ସ୍ୱରୂପ । ଦ୍ୱୈତ, ବିଶିଷ୍ଟାଦ୍ୱୈତ ବା ଅଦ୍ୱୈତ ବେଦାନ୍ତର ଯେତେ ବିଭିନ୍ନ ମତ ବା ବିଭାଗ ଅଛି, ସେସବୁର ପ୍ରଥମ ସିଦ୍ଧାନ୍ତ ହେଲା, ଈଶ୍ୱର ଏହି ଜଗତର କେବଳ ନିମିତ୍ତ କାରଣ ନୁହନ୍ତି, ସେ ତାହାର ଉପାଦାନ କାରଣ ମଧ୍ୟ, ଯାହା କିଛି ଜଗତ୍‌ରେ ଅଛି, ସେସବୁ । ବେଦାନ୍ତର ଦ୍ୱିତୀୟ ସୋପାନ ହେଉଛି, ଏହି ଯେଉଁ ଆତ୍ମାସମୂହ, ଏମାନେ ମଧ୍ୟ ଈଶ୍ୱରଙ୍କର ଅଂଶସ୍ୱରୂପ, ସେହି ଅନନ୍ତ ବହ୍ନିର ଏକ ଏକ ସ୍ଫୁଲିଙ୍ଗମାତ୍ର ।—ଅର୍ଥାତ୍ ଯେପରି ଏକ ବୃହତ୍ ଅଗ୍ନିରାଶିରୁ ସହସ୍ର ସହସ୍ର ସ୍ଫୁଲିଙ୍ଗ ବହିର୍ଗତ ହୁଏ, ସେହିପରି ସେହି ପୁରାତନ ପୁରୁଷଙ୍କଠାରୁ ଏହି ସମୁଦାୟ ଆତ୍ମା ବହିର୍ଗତ ହୋଇଛି ।*

* ଯଥା ସୁଦୀପ୍ତାତ୍ ପାବକାତ୍ ବିସ୍ଫୁଲିଙ୍ଗାଃ ସହସ୍ରଶଃ ପ୍ରଭବନ୍ତେ ସ୍ୱରୂପା ।

ଏପର୍ଯ୍ୟନ୍ତ ବେଶ୍ ବୁଝିହେଲ, ତଥାପି ଏ ସିଦ୍ଧାନ୍ତରୁ ତୃପ୍ତି ମିଳୁ ନାହିଁ । ଅନନ୍ତଙ୍କ ଅଂଶ—ଏ କଥାର ଅର୍ଥ କଅଣ ? ଯାହା ଅନନ୍ତ ତାହା ଅବିଭାଜ୍ୟ । ଅନନ୍ତଙ୍କର ଅଂଶ କୌଣସିମତେ ହୋଇପାରେ ନାହିଁ । ପୂର୍ଣ୍ଣ ବସ୍ତୁ କେବେହେଲେ ବିଭକ୍ତ ହୋଇପାରେ ନାହିଁ । ତେବେ ଯେ କୁହାଗଲା, ଆତ୍ମାସମୂହ ତାହାଙ୍କ ଦେହରୁ ସ୍ଫୁଲିଙ୍ଗପରି ବହିର୍ଗତ ହୋଇଛି, ଏ କଥାର ତାତ୍ପର୍ଯ୍ୟ କଅଣ ? ଅଦ୍ୱୈତ-ବେଦାନ୍ତୀ ଏ ସମସ୍ୟାର ଏହିପରି ମୀମାଂସା କରନ୍ତି ଯେ, ପ୍ରକୃତ ପକ୍ଷରେ ପୂର୍ଣ୍ଣର ଅଂଶ ନାହିଁ । ସେ କହନ୍ତି, ପ୍ରତ୍ୟେକ ଆତ୍ମା ପ୍ରକୃତପକ୍ଷରେ ତାଙ୍କର ଅଂଶ ନୁହନ୍ତି—ପ୍ରତ୍ୟେକେ ଯଥାର୍ଥ ସେହି ଅନନ୍ତ ବ୍ରହ୍ମସ୍ୱରୂପ । ତେବେ ଏତେ ଆତ୍ମା କିପରି ଆସିଲେ ? ଲକ୍ଷ ଲକ୍ଷ ଜଳକଣା ଉପରେ ସୂର୍ଯ୍ୟର ପ୍ରତିବିମ୍ବ ପଡ଼ି ଲକ୍ଷ ଲକ୍ଷ ସୂର୍ଯ୍ୟ ଦେଖାଯାଏ, ଏବଂ ପ୍ରତ୍ୟେକ ଜଳକଣାରେ କ୍ଷୁଦ୍ରାକାରରେ ସୂର୍ଯ୍ୟର ମୂର୍ତ୍ତି ରହିଛି । ଅତଏବ ଏହିସବୁ ଆତ୍ମା ପ୍ରତିବିମ୍ବ ମାତ୍ର, ସତ୍ୟ ନୁହନ୍ତି । ସେମାନେ ପ୍ରକୃତପକ୍ଷରେ ସେହି 'ମୁଁ' ନୁହନ୍ତି, ଯେ ଏହି ଜଗତ୍‌ର ଈଶ୍ୱର, ଏହି ବ୍ରହ୍ମାଣ୍ଡର ଅବିଭକ୍ତ ସତ୍ତାସ୍ୱରୂପ । ଅତଏବ ଏହି ସବୁ ବିଭିନ୍ନ ପ୍ରାଣୀ, ମନୁଷ୍ୟ, ପଶୁ ଇତ୍ୟାଦି ପ୍ରତିବିମ୍ବ ମାତ୍ର, ସତ୍ୟ ନୁହନ୍ତି । ଏମାନେ ହେଉଛନ୍ତି ପ୍ରକୃତି ଉପରେ ପତିତ ମାୟାମୟ ପ୍ରତିବିମ୍ବମାତ୍ର । ଜଗତ୍‌ରେ ଏକମାତ୍ର ଅନନ୍ତ ପୁରୁଷ ଅଛନ୍ତି ଏବଂ ସେହି ପୁରୁଷ 'ଆପଣ', 'ମୁଁ' ଇତ୍ୟାଦି ରୂପରେ ପ୍ରତୀୟମାନ ହେଉଛନ୍ତି; କିନ୍ତୁ ଏହି ଭେଦ-ପ୍ରତୀତି ମିଥ୍ୟା ଛଡ଼ା ଆଉ କିଛି ନୁହେଁ । ସେ ବିଭକ୍ତ ହୁଅନ୍ତି ନାହିଁ, ବିଭକ୍ତ ହେଲପରି ବୋଧ ହୁଅନ୍ତି ମାତ୍ର ଏବଂ ତାଙ୍କୁ ଦେଶ-କାଳ-ନିମିତ୍ତ ଜାଲ ଭିତରଦେଇ ଦେଖିବାଦ୍ୱାରା ଏହି ଆପାତପ୍ରତୀୟମାନ ବିଭାଗ ବା ଭେଦ ହୋଇଛି । ମୁଁ ଯେତେବେଳେ ଈଶ୍ୱରଙ୍କୁ ଦେଶ-କାଳ-ନିମିତ୍ତ ଜାଲ ମଧ୍ୟଦେଇ ଦେଖେ, ସେତେବେଳେ ମୁଁ ତାଙ୍କୁ ଜଡ଼ଜଗତ୍ ବୋଲି ଦେଖେ—ଯେତେବେଳେ ଆଉ ଟିକିଏ ଉଚ୍ଚତର ଭୂମିରୁ ସେହି ଜାଲ ମଧ୍ୟଦେଇ ଦେଖେ, ସେତେବେଳେ ତାଙ୍କୁ ପଶୁ ବୋଲି—ଆଉ ଟିକିଏ ଉଚ୍ଚତର ଭୂମିକୁ ଉଠିଲେ ମାନବ-ରୂପରେ, ଆହୁରି ଉଚ୍ଚକୁ ଗଲେ ଦେବରୂପରେ ଦେଖିଥାଏ । ତଥାପି ଈଶ୍ୱର ଜଗତ୍-ବ୍ରହ୍ମାଣ୍ଡର ଏକ ଅନନ୍ତ ସତ୍ତା ଏବଂ ଆମେ ହେଉଛୁ ସେହି ସତ୍ତାସ୍ୱରୂପ । ମୁଁ ତାହା, ଆପଣ ମଧ୍ୟ ତାହା—ତାଙ୍କର ଅଂଶ ନୁହନ୍ତି; ବରଂ ତାଙ୍କର ସମୁଦାୟ । 'ସେ ଅନନ୍ତ ଜ୍ଞାତାରୂପେ' ସମୁଦାୟ ପ୍ରପଞ୍ଚ ପଛରେ ଦଣ୍ଡାୟମାନ ଅଛନ୍ତି ଏବଂ ସେ ସ୍ୱୟଂ ସମୁଦାୟ ପ୍ରପଞ୍ଚସ୍ୱରୂପ । ସେ ବିଷୟ, ବିଷୟୀ—ଉଭୟ । ସେ 'ମୁଁ', ସେ ମଧ୍ୟ 'ଆପଣ' । ଏହା କିପରି ହେଲା ?

ଏହି ବିଷୟଟି ନିମ୍ନଲିଖିତ ଭାବରେ ବୁଝାଯାଇପାରେ । ଜ୍ଞାତାକୁ କିପରି ଜାଣି ହେବ ?* ଜ୍ଞାତା କେବେହେଲେ ନିଜକୁ ଜାଣିପାରେ ନାହିଁ । ମୁଁ ସବୁ ଦେଖିପାରେ; କିନ୍ତୁ ନିଜକୁ ଦେଖିପାରେ ନାହିଁ । ସେ ଆତ୍ମା—ସେ ଜ୍ଞାତା ଓ ସମସ୍ତଙ୍କର ପ୍ରଭୁ, ସେ

---

ତଥାକ୍ଷରାଦ୍ ବିବିଧାଃ ସୌମ୍ୟଭାବାଃ ପ୍ରଜାୟନ୍ତେ ତତ୍ର ଚୈବାପି ଯନ୍ତି ।
—ମୁଣ୍ଡକୋପନିଷଦ୍, ୨।୧।୧

* ବିଜ୍ଞାତାରମରେ କେନ ବିଜାନୀୟାତ୍ ।—ବୃହ. ଉପ., ୪।୫।୧୫

ପ୍ରକୃତ ବସ୍ତୁ—ସେ ହେଉଛନ୍ତି ଜଗତର ସମୁଦାୟ ସୃଷ୍ଟିର କାରଣ; କିନ୍ତୁ ତାଙ୍କ ପକ୍ଷରେ ପ୍ରତିବିମ୍ବ ବ୍ୟତୀତ ନିଜକୁ ଦେଖିବା ବା ନିଜକୁ ଜାଣିବା ଅସମ୍ଭବ । ଆପଣ ଦର୍ପଣ ଛଡ଼ା ନିଜର ମୁଖ ଦେଖିପାରନ୍ତି ନାହିଁ । ସେହିପରି ଆତ୍ମା ମଧ୍ୟ ପ୍ରତିବିମ୍ବିତ ନ ହେଲେ ନିଜର ସ୍ୱରୂପ ଦେଖିପାରନ୍ତି ନାହିଁ । ସୁତରାଂ ଏହି ସମଗ୍ର ବ୍ରହ୍ମାଣ୍ଡ ହିଁ ଆତ୍ମାର ନିଜକୁ ଉପଲବ୍ଧି କରିବାର ଚେଷ୍ଟାସ୍ୱରୂପ । ଆଦି ପ୍ରାଣକୋଷ (Protoplasm) ତାଙ୍କର ପ୍ରଥମ ପ୍ରତିବିମ୍ବ, ତା'ପରେ ଉଦ୍ଭିଦ, ପଶୁ ପ୍ରଭୃତି ଉତ୍କୃଷ୍ଟ, ଉତ୍କୃଷ୍ଟତର ପ୍ରତିବିମ୍ବ-ଗ୍ରାହକରୁ ସର୍ବୋତ୍ତମ ପ୍ରତିବିମ୍ବ-ଗ୍ରାହକ ପୂର୍ଣ୍ଣମାନବର ପ୍ରକାଶ ହୁଏ । ଯେପରି କୌଣସି ଲୋକ ନିଜ ମୁହଁ ଦେଖିବାକୁ ଇଚ୍ଛା କରି ଗୋଟିଏ କ୍ଷୁଦ୍ର କର୍ଦ୍ଦମାବିଲ ଜଳରେ ଦେଖିଲେ ଗୋଟାଏ ମୋଟାମୋଟି ଆକାର ଦେଖେ । ତା'ପରେ ସେ ଅପେକ୍ଷାକୃତ ନିର୍ମଳତର ଜଳରେ ଅପେକ୍ଷାକୃତ ଉତ୍ତମ ପ୍ରତିବିମ୍ବ ଦେଖେ, ତା'ପରେ ଉଜ୍ଜ୍ୱଳ ଧାତୁରେ ତଦପେକ୍ଷା ସ୍ପଷ୍ଟ ପ୍ରତିବିମ୍ବ ଦେଖେ । ଶେଷରେ ଖଣ୍ଡିଏ ଦର୍ପଣ ଧରି ସେଥିରେ ଯେବେ ନିଜ ମୁହଁ ଦେଖେ, ସେତେବେଳେ ସେ ଯଥାର୍ଥଭାବେ ନିଜକୁ ପ୍ରତିବିମ୍ବିତ ଦେଖେ । ଅତଏବ ବିଷୟ ଓ ବିଷୟୀ ଉଭୟ-ସ୍ୱରୂପ ସେହି ପୁରୁଷଙ୍କର ସର୍ବଶ୍ରେଷ୍ଠ ପ୍ରତିବିମ୍ବ—'ପୂର୍ଣ୍ଣମାନବ' । ଆପଣମାନେ ବର୍ତ୍ତମାନ ଦେଖିପାରିବେ, ମାନବ ସ୍ୱଭାବବଶତଃ କାହିଁକି ସକଳ ବସ୍ତୁର ଉପାସନା କରିଥାଏ—ଏବଂ ସକଳ ଦେଶରେ ପୂର୍ଣ୍ଣମାନବଗଣ କାହିଁକି ସ୍ୱଭାବତଃ ଈଶ୍ୱରରୂପରେ ପୂଜିତ ହୋଇଥାଆନ୍ତି । ଆପଣମାନେ ମୁହଁରେ ଯାହା କହନ୍ତୁ ନା କାହିଁକି, ଏମାନଙ୍କର ଉପାସନା ଅବଶ୍ୟ କରିବାକୁ ହେବ । ଏଥିପାଇଁ ଲୋକେ ଖ୍ରୀଷ୍ଟ ବା ବୁଦ୍ଧ ଆଦି ଅବତାର-ମାନଙ୍କର ଉପାସନା କରିଥାଆନ୍ତି । ସେମାନେ ଅନନ୍ତ ଆତ୍ମାର ସର୍ବଶ୍ରେଷ୍ଠ ପ୍ରକାଶସ୍ୱରୂପ । ଆପଣ କିମ୍ବା ମୁଁ ଈଶ୍ୱରଙ୍କ ସମ୍ବନ୍ଧରେ ଯେକୌଣସି ଧାରଣା କରୁନା କାହିଁକି, ଏମାନେ ତାହାଠାରୁ ଉଚ୍ଚତର । ଜଣେ ପୂର୍ଣ୍ଣମାନବ ଏହି ସକଳ ଧାରଣାଠାରୁ ଶ୍ରେଷ୍ଠତର । ତାଙ୍କଠାରେ ହିଁ ଜଗତ୍-ରୂପକ ବୃତ୍ତ ସମ୍ପୂର୍ଣ୍ଣ ହୁଏ—ବିଷୟ ଓ ବିଷୟୀ ଏକ ହୋଇ-ଯାଆନ୍ତି । ତାଙ୍କର ସକଳ ଭ୍ରମ ଓ ମୋହ ଚାଲିଯାଏ । ତତ୍ପରବର୍ତ୍ତୀରେ ତାଙ୍କର ଏହି ଅନୁଭୂତି ହୁଏ ଯେ, ସେ ଚିରକାଳ ହିଁ ସେହି ପୂର୍ଣ୍ଣ ପୁରୁଷ ରହିଛନ୍ତି । ତେବେ ଏହି ବନ୍ଧନ କିପରି ଆସିଲା ? ଏକ ପୂର୍ଣ୍ଣ ପୁରୁଷଙ୍କ ପକ୍ଷରେ ଅବନତ ହୋଇ ଅପୂର୍ଣ୍ଣ-ସ୍ୱଭାବ ହେବା କିପରି ସମ୍ଭବ ହେଲା ? ମୁକ୍ତ ପକ୍ଷରେ ବଦ୍ଧ ହେବା କିଭଳି ସମ୍ଭବ ହେଲା ? ଅଦ୍ୱୈତବାଦୀମାନେ କହନ୍ତି—ସେ କୌଣସି କାଳରେ ହିଁ ବଦ୍ଧ ହୁଅନ୍ତି ନାହିଁ, ସେ ନିତ୍ୟମୁକ୍ତ । ଆକାଶରେ ନାନା ବର୍ଣ୍ଣର ନାନା ମେଘ ଆସେ । ସେଗୁଡ଼ିକ ମୁହୂର୍ତ୍ତେକାଳ ସେଠାରେ ରହି ଚାଲିଯାଆନ୍ତି; କିନ୍ତୁ ସେହି ଏକ ନୀଳ ଆକାଶ ବରାବର ସମାନ ଭାବରେ ରହିଛି । ଆକାଶର କେବେହେଲେ ପରିବର୍ତ୍ତନ ହୁଏ ନାହିଁ, ମେଘର ହିଁ କେବଳ ପରିବର୍ତ୍ତନ ହୁଏ । ଆପଣମାନେ ମଧ୍ୟ ପୂର୍ବରୁ ପୂର୍ଣ୍ଣସ୍ୱଭାବ, ଅନନ୍ତ କାଳଧରି ପୂର୍ଣ୍ଣ ରହିଛନ୍ତି, କେତେ-ବେଳେ ହେଲେ ଆପଣଙ୍କ ପ୍ରକୃତିକୁ କେହି ପରିବର୍ତ୍ତିତ କରିପାରିନାହିଁ । ଏହି ଯେଉଁସବୁ ଧାରଣା—ମୁଁ ଅପୂର୍ଣ୍ଣ, ମୁଁ ନର, ମୁଁ ନାରୀ, ମୁଁ ପାପୀ, ମୁଁ ମନ, ମୁଁ ଚିନ୍ତା କରୁଛି ଏବଂ

ଚିନ୍ତା କରିବି—ଏ ସମୁଦାୟ ଭ୍ରମମାତ୍ର । ଆପଣ କେତେବେଳେ ହେଲେ ଚିନ୍ତା କରନ୍ତି ନାହିଁ; ଆପଣଙ୍କର କୌଣସି କାଳରେ ଦେହ ନ ଥିଲା, ଆପଣ କୌଣସି ସମୟରେ ଅପୂର୍ଣ୍ଣ ନ ଥିଲେ । ଆପଣ ଏ ବ୍ରହ୍ମାଣ୍ଡର ଆନନ୍ଦମୟ ପ୍ରଭୁ । ଯାହା କିଛି ଅଛି ବା ହେବ, ଆପଣ ସେ ସମୁଦାୟର ସର୍ବଶକ୍ତିମାନ୍ ନିୟନ୍ତା—ଏହି ସୂର୍ଯ୍ୟ, ଚନ୍ଦ୍ର, ତାରା, ପୃଥିବୀ, ଉଦ୍ଭିଦ, ଆମମାନଙ୍କ ଜଗତ୍‌ର ପ୍ରତ୍ୟେକ ଅଂଶର—ମହାନ୍ ଶାସ୍ତା; ଆପଣଙ୍କ ଶକ୍ତିରେ ସୂର୍ଯ୍ୟ କିରଣ ଦେଉଛନ୍ତି, ତାରକାଗଣ ସେମାନଙ୍କ ପ୍ରଭା ବିକୀରଣ କରୁଛନ୍ତି, ପୃଥିବୀ ସୁନ୍ଦର ହୋଇଛି । ଆପଣଙ୍କର ଆନନ୍ଦ-ଶକ୍ତିରେ ହିଁ ସମସ୍ତେ ପରସ୍ପର ପରସ୍ପରକୁ ଭଲ ପାଉଛନ୍ତି ଓ ପରସ୍ପର ପ୍ରତି ଆକୃଷ୍ଟ ହେଉଛନ୍ତି । ଆପଣ ହିଁ ସମସ୍ତଙ୍କ ଭିତରେ ରହିଛନ୍ତି, ଆପଣ ହିଁ ସର୍ବସ୍ୱରୂପ । କାହାକୁ ତ୍ୟାଗ କରିବେ, କାହାକୁ ବା ଗ୍ରହଣ କରିବେ ? ଆପଣ ତ ସମୁଦାୟ ! ଯେତେବେଳେ ଏହି ଜ୍ଞାନ ଉଦିତ ହୁଏ, ସେତେବେଳେ ମାୟା ମୋହ ଉଭେଇଯାଏ ।

ଥରେ ମୁଁ ଭାରତର ମରୁଭୂମିରେ ଭ୍ରମଣକରୁଥିଲି । ମୁଁ ଏକମାସରୁ ଅଧିକ ଭ୍ରମଣ କରିଥିଲି, ଆଉ ପ୍ରତିଦିନ ମୋ ସମ୍ମୁଖରେ ଅତିଶୟ ମନୋରମ ଦୃଶ୍ୟସମୂହ—ଅତି ସୁନ୍ଦର ବୃକ୍ଷ ହ୍ରଦାଦି—ଦେଖିବାକୁ ପାଉଥାଏ । ଦିନେ ମୁଁ ଅତି ତୃଷାର୍ତ୍ତ ହୋଇ ଏକ ହ୍ରଦରେ ଜଳପାନ କରିବାକୁ ଇଚ୍ଛାକଲି; କିନ୍ତୁ ଯେମିତି ହ୍ରଦ ଆଡ଼କୁ ଅଗ୍ରସର ହେଲି, ସେମିତି ତାହା ଅନ୍ତର୍ହିତ ହୋଇଗଲା । ତତ୍‌କ୍ଷଣାତ୍ ମୋ ମସ୍ତିଷ୍କରେ ଯେପରି ପ୍ରବଳ ଆଘାତସହ ଏହି ଜ୍ଞାନ ଆସିଲା—ସାରାଜୀବନ ଧରି ମୁଁ ଯେଉଁ ମରୀଚିକା କଥା ପଢ଼ି ଆସିଛି, ଏହା ସେହି ମରୀଚିକା । ସେତେବେଳେ ମୁଁ ମୋର ନିଜର ଏହି ବୁଦ୍ଧିହୀନତା ସ୍ମରଣ କରି ହସିବାକୁ ଲାଗିଲି ଯେ ଗତ ଏକ ମାସ ଧରି ଏହି ଯେଉଁ ସୁନ୍ଦର ଦୃଶ୍ୟ ଓ ହ୍ରଦାଦି ଦେଖିବାକୁ ପାଇଥିଲି, ତାହା ସବୁ ଖାଲି ମରୀଚିକା ବ୍ୟତୀତ ଆଉ କିଛି ନୁହେଁ, ଅଥଚ ମୁଁ ସେତେବେଳେ ତାହା ବୁଝିପାରି ନ ଥିଲି । ପରଦିନ ପ୍ରଭାତରେ ମୁଁ ପୁଣି ଚାଲିବାକୁ ଲାଗିଲି—ସେହି ହ୍ରଦ ଓ ସେହି ସବୁ ଦୃଶ୍ୟ ପୁଣି ଦେଖାଗଲା; କିନ୍ତୁ ସେହି ସଙ୍ଗେ ସଙ୍ଗେ ତତ୍‌କ୍ଷଣାତ୍ ମୋର ଏହି ଜ୍ଞାନ ମଧ୍ୟ ଆସିଲା ଯେ ତାହା ମରୀଚିକା ମାତ୍ର । ଥରେ ଜାଣିପାରିବାରୁ ତାହାର ଭ୍ରମୋତ୍ପାଦିକାଶକ୍ତି ନଷ୍ଟ ହେଲା । ଏହିଭଳି ଏହି ଜଗଦ୍‌ଭ୍ରାନ୍ତି ଦିନେ ନଷ୍ଟପ୍ରାୟ ଘଟିବ । ଏହି ସମୁଦାୟ ବ୍ରହ୍ମାଣ୍ଡ ଦିନେ ଆମମାନଙ୍କ ସମ୍ମୁଖରୁ ଅନ୍ତର୍ହିତ ହେବ । ଏହାର ନାମ ହିଁ ପ୍ରତ୍ୟକ୍ଷାନୁଭୂତି । 'ଦର୍ଶନ' କେବଳ ଫମ୍ପା କଥା ବା ଥଟ୍ଟା ନୁହେଁ । ଏହା ପ୍ରତ୍ୟକ୍ଷାନୁଭୂତ ହେବ, ଏହି ଶରୀର ଉଡ଼ିଯିବ; ଏହି ପୃଥିବୀ ଏବଂ ଆଉ ଯାହା କିଛି ସବୁ ଉଡ଼ିଯିବ—ମୁଁ ଦେହ ବା ମୁଁ ମନ—ଏହି ଯେ ଆମର ଜ୍ଞାନ, ଏହା କିଛିକାଳ ପାଇଁ ଚାଲିଯିବ—ଅଥବା ଯଦି କର୍ମ ସମ୍ପୂର୍ଣ୍ଣ କ୍ଷୟ ହୋଇଥାଏ, ତେବେ ଏକାବେଳକେ ଚାଲିଯିବ, ଆଉ ଫେରି ଆସିବ ନାହିଁ; ଆଉ ଯଦି କର୍ମର କିଛିଅଂଶ ଅବଶିଷ୍ଟ ରହେ, ତେବେ ଯେପରି କୁମ୍ଭକାରର ଚକ—ହାଣ୍ଡି ପ୍ରସ୍ତୁତ ହୋଇଗଲେ ମଧ୍ୟ ପୂର୍ବବେଗରେ କିଛିକ୍ଷଣ ଘୂରୁଥାଏ, ସେହିପରି ମାୟା ମୋହ ସମ୍ପୂର୍ଣ୍ଣରୂପରେ ଦୂର ହୋଇଗଲେ ମଧ୍ୟ ଏହି ଦେହ ଆଉ କିଛିଦିନ ରହିବ । ଏହି ଜଗତ୍, ନରନାରୀ, ପ୍ରାଣୀ—ସବୁ ପୁଣି ଆସିବେ, ଯେପରିକି ପରେ ମଧ୍ୟ ମରୀଚିକା ଦେଖା

ଯାଇଥିଲି, କିନ୍ତୁ ପୂର୍ବଭଳି ସେମାନଙ୍କର ଶକ୍ତି ବିସ୍ତାର କରିପାରିବେ ନାହିଁ । କାରଣ, ସଙ୍ଗେ ସଙ୍ଗେ ଏହି ଜ୍ଞାନ ଜନ୍ମିବ ଯେ, ମୁଁ ଏମାନଙ୍କ ସ୍ୱରୂପ ଜାଣିଛି । ସେତେବେଳେ ସେମାନେ ଆଉ ବନ୍ଧ କରିପାରିବେ ନାହିଁ, କୌଣସିମତେ ଦୁଃଖ, କଷ୍ଟ, ଶୋକ ଆଉ ଆସିପାରିବ ନାହିଁ । ଯେତେବେଳେ ଦୁଃଖକର ବିଷୟ କିଛି ଆସିବ, ମନ ତାହାକୁ କହିପାରିବ ଯେ—ମୁଁ ଜାଣେ, ତୁମେ ଭ୍ରମମାତ୍ର । ଯେତେବେଳେ ମାନବ ଏହି ଅବସ୍ଥା ଲାଭ କରେ, ତାହାକୁ ଜୀବନ୍ମୁକ୍ତ କହନ୍ତି । ଜୀବନ୍ମୁକ୍ତ ଅର୍ଥ ଜୀବିତ ଅବସ୍ଥାରେ ହିଁ ମୁକ୍ତ । ଜ୍ଞାନଯୋଗୀଙ୍କର ଜୀବନର ଉଦ୍ଦେଶ୍ୟ ଜୀବନ୍ମୁକ୍ତ ହେବା । ସେ ଜୀବନ୍ମୁକ୍ତ, ଯେ ଅନାସକ୍ତ ହୋଇ ଜଗତରେ ବାସ କରିପାରନ୍ତି । ସେ ଜଳସ୍ଥ ପଦ୍ମପତ୍ର ଭଳି ଥାଆନ୍ତି—ତାହା ଯେପରି ପାଣି ଭିତରେ ଥିଲେ ମଧ୍ୟ ପାଣି ତାକୁ କେବେହେଲେ ସିକ୍ତ କରିପାରେ ନାହିଁ—ସେହିପରି ସେ ଜଗତରେ ନିର୍ଲିପ୍ତ ଭାବରେ ଥାଆନ୍ତି । ସେ ମନୁଷ୍ୟଜାତିଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ—ଖାଲି ସେତିକି କାହିଁକି, ସକଳ ପ୍ରାଣୀ ମଧ୍ୟରେ ସର୍ବଶ୍ରେଷ୍ଠ । କାରଣ ସେ ସେହି ପୂର୍ଣ୍ଣସ୍ୱରୂପଙ୍କ ସହିତ ଅଭେଦଭାବ ଉପଲବ୍ଧି କରିପାରିଛନ୍ତି; ସେ ଉପଲବ୍ଧି କରିପାରିଛନ୍ତି ଯେ, ସେ ଭଗବାନଙ୍କଠାରୁ ଅଭିନ୍ନ । ଯେତେଦିନ ଆପଣଙ୍କର ଜ୍ଞାନ ଥାଏ ଯେ, ଭଗବାନଙ୍କ ସହିତ ଆପଣଙ୍କର ସାମାନ୍ୟ ଭେଦ ଅଛି, ସେତେଦିନ ଯାଏ ଆପଣଙ୍କର ଭୟ ରହେ; କିନ୍ତୁ ଯେତେବେଳେ ଆପଣ ଜାଣିବେ ଯେ, ଆପଣ ସେହି ଭଗବାନ, ଆପଣ ଓ ତାଙ୍କ ମଧ୍ୟରେ କୌଣସି ଭେଦ ନାହିଁ, ବିନ୍ଦୁ ମାତ୍ର ଭେଦ ନାହିଁ, ତାଙ୍କର ସମଗ୍ର ରୂପଟି ହିଁ ଆପଣ—ସେତେବେଳେ ସକଳ ଭୟ ଦୂର ହୋଇଯାଏ ।

'ସେଠାରେ କିଏ କାହାକୁ ଦେଖେ ? କିଏ କାହାର ଉପାସନା କରେ ? କିଏ କାହା ସହିତ କଥା କହେ ? କିଏ କାହାର କଥା ଶୁଣେ ? ଯେଉଁଠାରେ ଜଣେ ଅନ୍ୟକୁ ଦେଖେ, ଜଣେ ଅନ୍ୟକୁ କଥା କହେ, ଜଣେ ଅନ୍ୟର କଥା ଶୁଣେ, ତାହା ନିୟମର ରାଜ୍ୟ । ଯେଉଁଠାରେ କିଏ କାହାକୁ ଦେଖେ ନାହିଁ, କିଏ କାହାକୁ କଥା କହେ ନାହିଁ, ତାହା ହିଁ ସର୍ବଶ୍ରେଷ୍ଠ, ତାହା ହିଁ ଭୂମା, ତାହା ହିଁ ବ୍ରହ୍ମ ।'* ଆପଣ ହିଁ ତାହା ଏବଂ ସର୍ବଦା ହିଁ ତାହା ଅଛନ୍ତି । ଆମେ ଜଗତର କି ଉପକାର କରିପାରିବା, ଏପରି ପ୍ରଶ୍ନ ସେଠାରେ ଉଦିତ ହୁଏ ନାହିଁ । ଏ ସେହି ଶିଶୁର କଥା ଭଳି, 'ମୁଁ ବଡ଼ ହେଲେ ମୋର ମିଠାଇର କଅଣ ହେବ ?' ବାଳକ ମଧ୍ୟ କହିଥାଏ, 'ମୁଁ ବଡ଼ ହେଲେ ମୋର ଗୋଲିଗୁଡ଼ିକର କି ଦଶା ହେବ, ତେବେ ମୁଁ ବଡ଼ ହେବି ନାହିଁ ।' ଛୋଟ ପିଲା ମଧ୍ୟ କହେ, 'ମୁଁ ବଡ଼ ହେଲେ ମୋର କଣ୍ଢେଇଗୁଡ଼ିକର କି ଦଶା ହେବ ?'—ଏହି ଜଗତ୍ ସମ୍ବନ୍ଧରେ ପୂର୍ବୋକ୍ତ ପ୍ରଶ୍ନଗୁଡ଼ିକ ମଧ୍ୟ ତଦ୍‌ରୂପ । ଭୂତ, ଭବିଷ୍ୟତ, ବର୍ତ୍ତମାନ—ଏହି ତିନିକାଳରେ ଜଗତର ଅସ୍ତିତ୍ୱ ନାହିଁ । ଯଦି ଆମେ ଆତ୍ମାର ଯଥାର୍ଥ ସ୍ୱରୂପ ଜାଣିପାରିବା, ଯଦି ଆମେ ଜାଣିପାରିବା ଯେ, ଏହି ଆତ୍ମା ବ୍ୟତୀତ ଆଉ କିଛି ନାହିଁ, ଆଉ ଯାହା କିଛି ସବୁ ସ୍ୱପ୍ନମାତ୍ର, ସେମାନଙ୍କର ପ୍ରକୃତ ପକ୍ଷରେ ଅସ୍ତିତ୍ୱ ନାହିଁ, ତେବେ ଏହି ଜଗତ୍‌ର ଦୁଃଖଦାରିଦ୍ର୍ୟ,

* ବୃହଦାରଣ୍ୟକ ଉପ, ୪।୧୫, ।

ପାପପୁଣ୍ୟ—ଆଦୌ ଆମକୁ ଚଞ୍ଚଳ କରିପାରିବ ନାହିଁ । ଯଦି ସେଗୁଡ଼ିକର ଅସ୍ତିତ୍ୱ ହିଁ ନଥାଏ, ତେବେ କାହା ପାଇଁ ଏବଂ କାହିଁକି ମୁଁ କଷ୍ଟ କରିବ ? ଜ୍ଞାନଯୋଗୀମାନେ ଏହା ହିଁ ଶିକ୍ଷା ଦିଅନ୍ତି । ଅତଏବ ସାହସ ଅବଲମ୍ବନ କରି ମୁକ୍ତ ହୁଅନ୍ତୁ, ଆପଣଙ୍କର ଚିନ୍ତାଶକ୍ତି ଆପଣଙ୍କୁ ଯେତେଦୂର ପର୍ଯ୍ୟନ୍ତ ନେଇଯାଇପାରେ ସାହସପୂର୍ବକ ଅଗ୍ରସର ହୁଅନ୍ତୁ ଏବଂ ସାହସପୂର୍ବକ ଏହାକୁ ଜୀବନରେ ପରିଣତ କରନ୍ତୁ । ଏହି ଜ୍ଞାନଲାଭ କରିବା ଅତି କଠିନ । ଏହା ମହାସାହସୀ ଲୋକର କାର୍ଯ୍ୟ । ଯେ ସମୁଦାୟ ଖେଳନା ଭାଙ୍ଗି ପକାଇବାକୁ ସାହସ କରେ—କେବଳ ମାନସିକ ବା କୁସଂସ୍କାରସ୍ୱରୂପ ଖେଳଣାଇ ନୁହେଁ, ଇନ୍ଦ୍ରିୟଭୋଗ୍ୟ ବିଷୟସମୂହରୂପକ ଖେଳଣାଇଗୁଡ଼ିକୁ ଯେ ଭାଙ୍ଗି ନଷ୍ଟ କରିପାରେ—ଏହା ତାହାର କାର୍ଯ୍ୟ ।

ଏ ଶରୀର ମୁଁ ନୁହେଁ, ଏହାର ବିନାଶ ଅବଶ୍ୟମ୍ଭାବୀ—ଏହା ତ ହେଉଛି ଉପଦେଶ; କିନ୍ତୁ ଏହି ଉପଦେଶର ଦୋହାଇ ଦେଇ ଲୋକେ ଅନେକ କିମ୍ଭୂତକିମାକାର କଥା କହି ପକାନ୍ତି । ଜଣେ ଲୋକ ଉଠି କହିଲା, 'ମୁଁ ଦେହ ନୁହେଁ, ଅତଏବ ମୋର ମୁଣ୍ଡବ୍ୟଥା ଭଲ ହୋଇଯାଉ;' କିନ୍ତୁ ତା'ର ଶିରପୀଡ଼ା ଯଦି ତା' ଦେହରେ ନ ଥାଏ, ତେବେ ଆଉ କେଉଁଠି ଅଛି ? ସହସ୍ର ସହସ୍ର ଶିରପୀଡ଼ା ଓ ସହସ୍ର ସହସ୍ର ଦେହ ଆସୁ ଯାଉ—ତହିଁରେ ମୋର କଅଣ ଅଛି ?

'ମୋର ଜନ୍ମ ନାହିଁ, ମୃତ୍ୟୁ ମଧ୍ୟ ନାହିଁ; ମୋର ପିତା ନାହିଁ କି ମାତା ମଧ୍ୟ ନାହିଁ; ମୋର ଶତ୍ରୁ ନାହିଁ କି ମିତ୍ର ମଧ୍ୟ ନାହିଁ; କାରଣ ସେ ସମସ୍ତେ ହିଁ ମୁଁ । (ମୁଁ ହେଉଛି ମୋର ବନ୍ଧୁ, ମୁଁ ହେଉଛି ମୋର ଶତ୍ରୁ), ମୁଁ ଅଖଣ୍ଡ ସଚ୍ଚିଦାନନ୍ଦ, ମୁଁ ସେହି, ମୁଁ ହିଁ ସେହି ।*

ଯଦି ମୁଁ ସହସ୍ର ସହସ୍ର ଦେହରେ ଜ୍ୱର ଓ ଅନ୍ୟାନ୍ୟ ରୋଗ ଭୋଗ କରୁଥାଏ, ତେବେ ମୁଁ ଲକ୍ଷ ଦେହରେ ସ୍ୱାସ୍ଥ୍ୟ ମଧ୍ୟ ସମ୍ଭୋଗ କରୁଛି । ଯଦି ସହସ୍ର ଦେହରେ ମୁଁ ଉପବାସ କରେ, ତେବେ ଅନ୍ୟ ସହସ୍ର ଦେହରେ ମୁଁ ପ୍ରଚୁର ପରିମାଣରେ ଆହାର ମଧ୍ୟ କରୁଛି । ଯଦି ସହସ୍ର ଦେହରେ ମୁଁ ଦୁଃଖ ଭୋଗ କରୁଥାଏ, ପୁଣି ସହସ୍ର ଦେହରେ ମୁଁ ସୁଖଭୋଗ ମଧ୍ୟ କରୁଛି । କିଏ କାହାର ନିନ୍ଦା କରିବ ? କିଏ କାହାର ସ୍ତୁତି କରିବ ? କାହାକୁ ଲୋଡ଼ିବ, କାହାକୁ ଛାଡ଼ିବ ? ମୁଁ କାହାକୁ ଲୋଡ଼ୁନାହିଁ, କାହାକୁ ମଧ୍ୟ ତ୍ୟାଗ କରୁ ନାହିଁ; କାରଣ ମୁଁ ସମୁଦାୟ ବ୍ରହ୍ମାଣ୍ଡସ୍ୱରୂପ । ମୁଁ ନିଜର ସ୍ତୁତି କରୁଛି, ମୁଁ ହିଁ ମୋର ନିନ୍ଦା କରୁଛି, ମୁଁ ନିଜ ଦୋଷରୁ ନିଜେ କଷ୍ଟ ପାଉଛି, ଆଉ ମୁଁ ଯେ ସୁଖୀ, ତାହା ମଧ୍ୟ ମୋର ନିଜ ଇଚ୍ଛାରେ । ମୁଁ ସ୍ୱାଧୀନ । ଏହା ହେଉଛି ଜ୍ଞାନୀର ଭାବ; ସେ ମହା ସାହସୀ—ଅକୁତୋଭୟ, ନିର୍ଭୀକ । ସମଗ୍ର ବ୍ରହ୍ମାଣ୍ଡ ନଷ୍ଟ ହୋଇଯାଉ ପଛେ, ସେ ହସି ହସି କହନ୍ତି—ତାହାର କେତେବେଳେ ହେଲେ ଅସ୍ତିତ୍ୱ ନ ଥିଲା, ତାହା କେବଳ ମାୟା ଓ ଭ୍ରମ ମାତ୍ର । ଏହିପରି ଭାବରେ ସେ ତାଙ୍କର ଚକ୍ଷୁ ସମକ୍ଷରେ ଜଗତ୍ ବ୍ରହ୍ମାଣ୍ଡକୁ ଯଥାର୍ଥ

* ନ ମେ ମୃତ୍ୟୁଶଙ୍କା ନ ମେ ଜାତିଭେଦଃ ପିତା ନୈବ ମେ ନୈବ ମାତା ନ ଜନ୍ମ ।
ନ ବନ୍ଧୁର୍ନମିତ୍ରଂ ଗୁରୁର୍ନୈବ ଶିଷ୍ୟଃ ଚିଦାନନ୍ଦରୂପଃ ଶିବୋଽହଂ ଶିବୋଽହମ୍ ॥
—ନିର୍ବାଣଷଟ୍କମ ୫, ଶଙ୍କରାଚାର୍ଯ୍ୟ

ଅନ୍ତର୍ହିତ ହେବାର ଦେଖନ୍ତି ଆଉ ବିସ୍ମୟ ସହିତ ପ୍ରଶ୍ନ କରନ୍ତି, 'ଏ ଜଗତ୍ କେଉଁଠି ଥିଲା ? କେଉଁଠି ବା ଲୀନ ହୋଇଗଲା ?'[1]

ଏହି ଜ୍ଞାନ-ସାଧନ ସମ୍ବନ୍ଧରେ ଆଲୋଚନା କରିବାକୁ ପ୍ରବୃତ୍ତ ହେବା ପୂର୍ବରୁ ଆଉ ଗୋଟିଏ ଆଶଙ୍କାର ଆଲୋଚନା ଓ ତାହାର ସମାଧାନ କରିବାକୁ ଚେଷ୍ଟା କରିବି । ଏପର୍ଯ୍ୟନ୍ତ ଯାହା ବିଚାର କରାଗଲା, ତାହା ନ୍ୟାୟଶାସ୍ତ୍ରର ସୀମାକୁ ବିନ୍ଦୁମାତ୍ର ଉଲ୍ଲଙ୍ଘନ କରି ନାହିଁ । ଯଦି କୌଣସି ବ୍ୟକ୍ତି ବିଚାରରେ ପ୍ରବୃତ୍ତ ହୁଏ, ତେବେ ଯେତେକ୍ଷଣ ସେ ସିଦ୍ଧାନ୍ତ ନ କରିଛି ଯେ, ଏକମାତ୍ର ସତ୍ତା ହିଁ ବିଦ୍ୟମାନ ଓ ଅନ୍ୟ ସମୁଦାୟ କିଛି ନୁହେଁ, ସେପର୍ଯ୍ୟନ୍ତ ଅଟକି ରହିବାର ସ୍ଥିରି ତା'ର ନାହିଁ । ଯୁକ୍ତିପରାୟଣ ମାନବଜାତି ପକ୍ଷରେ ଏହି ସିଦ୍ଧାନ୍ତ ଅବଲମ୍ବନ ବ୍ୟତୀତ ଗତ୍ୟନ୍ତର ନାହିଁ; କିନ୍ତୁ ବର୍ତ୍ତମାନ ପ୍ରଶ୍ନ ହେଉଛି, ଯେ ଅସୀମ, ସଦାପୂର୍ଣ୍ଣ, ସଦାନନ୍ଦମୟ, ଅଖଣ୍ଡ ସଚ୍ଚିଦାନନ୍ଦସ୍ୱରୂପ ସେ ଏହିସବୁ ଭ୍ରାନ୍ତିର ଅଧୀନ ହେଲେ କିପରି ? ଏହିପରି ପ୍ରଶ୍ନ ହିଁ ଜଗତରେ ସର୍ବତ୍ର, ସବୁ ସମୟରେ ଜିଜ୍ଞାସିତ ହୋଇଆସୁଛି । ସାଧାରଣ ପ୍ରଚଳିତ କଥାରେ ପ୍ରଶ୍ନଟି ଏହିପରି ଭାବରେ ପଚରା ଯାଇଥାଏ—ଏହି ଜଗତକୁ ପାପ କିପରି ଆସିଲା । ପ୍ରଶ୍ନର ଏହା ହିଁ ପ୍ରଚଳିତ ଓ ବ୍ୟାବହାରିକ ରୂପ ଏବଂ ଅନ୍ୟଟି ହେଲା ଅପେକ୍ଷାକୃତ ଦାର୍ଶନିକ ରୂପ; କିନ୍ତୁ ଉତ୍ତର ଅବଶ୍ୟ ଗୋଟିଏ । ନାନାରୂପରେ, ନାନାଭାବରେ, ନାନାଧରଣରେ ସେହି ଏକ ପ୍ରଶ୍ନ ଜିଜ୍ଞାସିତ ହୋଇଛି; କିନ୍ତୁ ନିମ୍ନତର ରୂପରେ ପ୍ରଶ୍ନ ପଚରାଗଲେ ତାହାର ଠିକ୍ ମୀମାଂସା ହୁଏ ନାହିଁ; କାରଣ ଆପେଲ୍, ସାପ ଓ ନାରୀର ଗଳ୍ପରେ[2] ଏହି ତତ୍ତ୍ୱର କିଛି ବ୍ୟାଖ୍ୟା ହୁଏ ନାହିଁ । ସେହି ଅବସ୍ଥାରେ ପ୍ରଶ୍ନଟି ମଧ୍ୟ ଯେପରି ଶିଶୁଜନୋଚିତ, ତାହାର ଉତ୍ତର ମଧ୍ୟ ତଦ୍ରୂପ; କିନ୍ତୁ ବେଦାନ୍ତରେ ଏହି ପ୍ରଶ୍ନଟି ଅତି ଗୁରୁତର ଆକାର ଧାରଣ କରିଛି । ଏହି ଭ୍ରମ କିପରି ହେଲା ? ଆଉ ଉତ୍ତର ମଧ୍ୟ ତଦ୍ରୂପ ଗମ୍ଭୀର । ଉତ୍ତରଟି ହେଉଛି—ଅସମ୍ଭବ ପ୍ରଶ୍ନର ଉତ୍ତର ଆଶା କର ନାହିଁ । ସେହି ପ୍ରଶ୍ନଟିର ଅନ୍ତର୍ଗତ ବାକ୍ୟଗୁଡ଼ିକ ପରସ୍ପରବିରୋଧୀ ବୋଲି ପ୍ରଶ୍ନଟି ମଧ୍ୟ ଅସମ୍ଭବ । କାହିଁକି ? ପୂର୍ଣ୍ଣତା କହିଲେ କଅଣ ବୁଝାଏ ? ଯାହା ଦେଶକାଳନିମିତ୍ତର ଅତୀତ, ତାହା ହିଁ ପୂର୍ଣ୍ଣ । ତାହା ପରେ ଆପଣ ପଚାରୁଛନ୍ତି ପୂର୍ଣ୍ଣ ଅପୂର୍ଣ୍ଣ ହେଲା କିପରି ? ନ୍ୟାୟଶାସ୍ତ୍ରସଙ୍ଗତ ଭାଷାରେ କହିଲେ ପ୍ରଶ୍ନଟି ଏହିପରି ହେବ—"ଯେଉଁ

[1] କ୍ୱ ଗତଂ କେନ ବା ନୀତଂ କୁତ୍ର ଲୀନମିଦଂ ଜଗତ୍ ।—ବିବେକଚୂଡ଼ାମଣି, ୪୮୫

[2] ବାଇବେଲର ଓଲ୍ଡ଼ ଟେଷ୍ଟାମେଣ୍ଟରେ ଅଛି—ଈଶ୍ୱର ଆଦି-ନର ଆଦମ୍ ଓ ଆଦି-ନାରୀ ଇଭଙ୍କୁ ସୃଷ୍ଟି କରି ତାଙ୍କୁ ନନ୍ଦନକାନନ(Eden) ନାମକ ସୁରମ୍ୟ ଉଦ୍ୟାନରେ ସ୍ଥାପନ କରି ସେହି ଉଦ୍ୟାନସ୍ଥ ଜ୍ଞାନବୃକ୍ଷର ଫଳଭୋଜନ ନିଷେଧ କଲେ; କିନ୍ତୁ ସଇତାନ ସର୍ପରୂପ ଧରି ପ୍ରଥମେ ଇଭଙ୍କୁ ପ୍ରଲୋଭିତ କରି ତତ୍ପରେ ତାଙ୍କଦ୍ୱାରା ଆଦମଙ୍କୁ ସେହିବୃକ୍ଷର ଫଳ ଖାଇବାକୁ ପ୍ରଲୋଭିତ କଲା । ସେହିଦିନଠାରୁ ତାଙ୍କର ଭଲମନ୍ଦ ଜ୍ଞାନ ହୋଇ ପ୍ରଥମେ ପୃଥିବୀରେ ପାପ ପ୍ରବେଶ କଲା ।—O.T. Genesis, Ch. 1-3

ବସ୍ତୁ କାର୍ଯ୍ୟକାରଣ-ସମ୍ବନ୍ଧର ଅତୀତ, ତାହା କିପରି କାର୍ଯ୍ୟ-ରୂପରେ ପରିଣତ ହୁଏ ?" ଏଠାରେ ଆପଣ ହିଁ ଆପଣଙ୍କୁ ଖଣ୍ଡନ କରୁଛନ୍ତି; ପ୍ରଥମେ ମାନି ଯାଉଛନ୍ତି, ତାହା କାର୍ଯ୍ୟ କାରଣ-ସମ୍ବନ୍ଧର ଅତୀତ—ତା'ପରେ ଆପଣ ପଚାରୁଛନ୍ତି, ତାହା କିପରି କାର୍ଯ୍ୟରେ ପରିଣତ ହୁଏ ? କାର୍ଯ୍ୟକାରଣ-ସମ୍ବନ୍ଧର ସୀମା ଭିତରେ ହିଁ କେବଳ ପ୍ରଶ୍ନ ପଚରା ଯାଇ-ପାରେ । ଯେତେଦୂର ପର୍ଯ୍ୟନ୍ତ ଦେଶକାଳନିମିତ୍ତର ଅଧିକାର ସେତେଦୂର ପର୍ଯ୍ୟନ୍ତ ହିଁ ଏହି ପ୍ରଶ୍ନ ପଚରା ଯାଇପାରେ; କିନ୍ତୁ ତା'ର ଅତୀତ ବସ୍ତୁ ସମ୍ବନ୍ଧରେ ପ୍ରଶ୍ନ କରିବା ନିରର୍ଥକ; କାରଣ ପ୍ରଶ୍ନଟି ନ୍ୟାୟଶାସ୍ତ୍ର-ବିରୁଦ୍ଧ ହୋଇଯିବ । ଦେଶକାଳନିମିତ୍ତର ସୀମା ଭିତରେ କୌଣସି ସମୟରେ ତା'ର ଉତ୍ତର ଦିଆଯାଇପାରେ ନାହିଁ, ଆଉ ଏହାର ଅତୀତ ପ୍ରଦେଶକୁ ଗଲେ କି ଉତ୍ତର ମିଳିବ, ତାହା ସେଠାକୁ ଗଲେ ହିଁ ଜଣାଯାଇପାରେ । ଅତଏବ ବିଜ୍ଞ ବ୍ୟକ୍ତିମାନେ ଏହି ପ୍ରଶ୍ନଟିର ଉତ୍ତର ପାଇଁ ବିଶେଷ ବ୍ୟସ୍ତ ହୁଅନ୍ତି ନାହିଁ । ଯେତେବେଳେ ଲୋକ ପୀଡ଼ିତ ହୁଏ, ସେତେବେଳେ 'କିପରି ସେହି ରୋଗର ଉତ୍ପତ୍ତି ହେଲା'—ତାହା ପ୍ରଥମେ ଜାଣିବାକୁ ବିଶେଷ ଜିଦ୍ ନ କରି ରୋଗ ଯେଉଁଥିରେ ଉପଶମ ହେବ, ସେଥିପାଇଁ ପ୍ରାଣପଣେ ଯତ୍ନ କରେ ।

ଏହି ପ୍ରଶ୍ନ ଆଉ ଏକ ଆକାରରେ ପଚରା ଯାଇଥାଏ । ଏହା ଅପେକ୍ଷାକୃତ ନିମ୍ନଦୃଷ୍ଟିର କଥା ସତ, କିନ୍ତୁ ଏଥିରେ ଆମମାନଙ୍କର କର୍ମଜୀବନ ସହିତ ଅନେକ ପରିମାଣରେ ସମ୍ବନ୍ଧ ଅଛି ଏବଂ ଏଥିରେ ତତ୍ତ୍ୱଟି ଅନେକାଂଶରେ ସ୍ପଷ୍ଟତର ହୋଇଥାଏ । ପ୍ରଶ୍ନଟି ଏହା—ଏହି ଭ୍ରମ କିଏ ପ୍ରସବ କଲା ? କୌଣସି ସତ୍ୟ କ'ଣ କେବେ ଭ୍ରମ ପ୍ରସବ କରିପାରେ ? କଦାପି ନୁହେଁ । ଆମେମାନେ ଦେଖିବାକୁ ପାଉ, ଗୋଟିଏ ଭ୍ରମ ଆଉ ଗୋଟିଏ ଭ୍ରମକୁ ଜାତ କରିଥାଏ, ଯାହା ପୁଣି ଆଉ ଗୋଟିଏ ଭ୍ରମ ଜାତ କରେ—ଏହିପରି ଚାଲିଥାଏ । ଭ୍ରମ ହିଁ ଚିରକାଳ ଭ୍ରମ ଜାତ କରିଥାଏ । ରୋଗ ହିଁ ରୋଗ ଜାତ କରିଥାଏ, ସ୍ୱାସ୍ଥ୍ୟ କେବେହେଲେ ରୋଗ ଜାତ କରେ ନାହିଁ । ଜଳ ଓ ଜଳର ତରଙ୍ଗରେ କୌଣସି ଭେଦ ନାହିଁ—କାର୍ଯ୍ୟ ମଧ୍ୟ କାରଣର ହିଁ ଆଉ ଗୋଟିଏ ରୂପମାତ୍ର । କାର୍ଯ୍ୟ ଯେତେବେଳେ ଭ୍ରମ, ସେତେବେଳେ ତାହାର କାରଣ ମଧ୍ୟ ଅବଶ୍ୟ ଭ୍ରମ ହେବ । ଏହି ଭ୍ରମ କିଏ ଜାତ କଲା ? ଅବଶ୍ୟ ଆଉ ଗୋଟିଏ ଭ୍ରମ । ଏହିପରି ତର୍କ କଲେ ତର୍କ ଆଉ ଶେଷ ହେବ ନାହିଁ—ଭ୍ରମର ଆଦି ମଧ୍ୟ ମିଳିବ ନାହିଁ । ବର୍ତ୍ତମାନ ଆପଣଙ୍କର ଗୋଟିଏ ମାତ୍ର ପ୍ରଶ୍ନ ଅବଶିଷ୍ଟ ରହିବ ଯେ ଭ୍ରମର ଅନାଦିତ୍ୱ ସ୍ୱୀକାର କଲେ କିଅଣ ଆପଣଙ୍କର ଅଦ୍ୱୈତବାଦ ଖଣ୍ଡିତ ହେଲା ନାହିଁ । କାରଣ, ଆପଣ ଜଗତରେ ଦୁଇଟି ସତ୍ତାକୁ ସ୍ୱୀକାର କରିଛନ୍ତି—ଗୋଟିଏ ଆପଣ, ଆଉ ଗୋଟିଏ ସେହି ଭ୍ରମ । ଏହାର ଉତ୍ତର ଏହି ଯେ, ଭ୍ରମକୁ ସତ୍ତା ବୋଲି କୁହାଯାଇ ନ ପାରେ । ଆପଣମାନେ ଜୀବନରେ ସହସ୍ର ସହସ୍ର ସ୍ୱପ୍ନ ଦେଖୁଛନ୍ତି; କିନ୍ତୁ ସେସବୁ ଆପଣମାନଙ୍କ ଜୀବନର ଅଂଶ ସ୍ୱରୂପ ନୁହେଁ ସ୍ୱପ୍ନ ଆସେ ପୁଣି ଚାଲିଯାଏ । ସେଗୁଡ଼ିକର କୌଣସି ଅସ୍ତିତ୍ୱ ନାହିଁ । ଭ୍ରମକୁ ଗୋଟାଏ ସତ୍ତା ବା ଅସ୍ତିତ୍ୱ କହିଲେ ତାହା ଆପାତତଃ ଯୁକ୍ତିସଙ୍ଗତ ମନେ ହୁଏ ସତ, ବାସ୍ତବିକ ତାହା

ଅଯୌକ୍ତିକ କଥା ମାତ୍ର । ଅତଏବ, ଜଗତରେ ନିତ୍ୟମୁକ୍ତ ଓ ନିତ୍ୟାନନ୍ଦସ୍ୱରୂପ ଏକମାତ୍ର ସତ୍ତା ଅଛି, ଏବଂ ତାହା ହିଁ ଆପଣ । ଅଦ୍ୱୈତବାଦୀମାନଙ୍କର ଏହା ହିଁ ଚରମ ସିଦ୍ଧାନ୍ତ । ଏବେ ପଚରା ଯାଇପାରେ, ଏହି ଯେଉଁସବୁ ବିଭିନ୍ନ ଉପାସନା-ପ୍ରଣାଳୀ ରହିଛି, ଏହିସବୁ କଅଣ ହେବ ? ତାହା ସବୁ ରହିବ । ସେସବୁ କେବଳ ଅନ୍ଧାରରେ ଆଲୁଅ ଅନ୍ୱେଷିବା ମାତ୍ର; ଆଉ ସେହିପରି ଅନ୍ୱେଷୁ ଅନ୍ୱେଷୁ ଆଲୋକ ନିଶ୍ଚୟ ଆସିବ । ଆମେ ବର୍ତ୍ତମାନ ଦେଖିଲେ ଯେ, ଆତ୍ମା ନିଜକୁ ଦେଖିପାରେ ନାହିଁ । ଆମମାନଙ୍କର ସମୁଦାୟ ଜ୍ଞାନ ମାୟା (ମିଥ୍ୟା) ଜାଲଭିତରେ ଅବସ୍ଥିତ, ମୁକ୍ତି ତାହାର ବାହାରେ । ଏହି ଜାଲ ଭିତରେ ଦାସତ୍ୱ, ଏହାର ସମୁଦାୟ ନିୟମାଧୀନ । ତାହାର ବାହାରେ ଆଉ କୌଣସି ନିୟମ ନାହିଁ । ଏହି ବ୍ରହ୍ମାଣ୍ଡ ଯେତେଦୂର ପର୍ଯ୍ୟନ୍ତ ବ୍ୟାପ୍ତ, ସେତେଦୂର ପର୍ଯ୍ୟନ୍ତ ନିୟମାଧୀନ; ମୁକ୍ତି ତାହାର ବାହାରେ । ଯେତେଦିନ ଆପଣ ଦେଶ-କାଳ-ନିମିତ୍ତ-ଜାଲ ମଧ୍ୟରେ ରହିଛନ୍ତି, ସେତେଦିନ ପର୍ଯ୍ୟନ୍ତ ଆପଣ ମୁକ୍ତ—ଏକଥା କହିବା ନିରର୍ଥକ । କାରଣ, ସେହି ଜାଲ ମଧ୍ୟରେ ସମୁଦାୟ ହିଁ କଠୋର ନିୟମାଧୀନ, କାର୍ଯ୍ୟକାରଣଶୃଙ୍ଖଳରେ ଆବଦ୍ଧ । ଆପଣ ଯେ କୌଣସି ଚିନ୍ତା କରନ୍ତୁ, ତାହା ପୂର୍ବ କାରଣର କାର୍ଯ୍ୟସ୍ୱରୂପ, ପ୍ରତ୍ୟେକ ଭାବ ହିଁ କାରଣର କାର୍ଯ୍ୟସ୍ୱରୂପ । ଇଚ୍ଛାକୁ ସ୍ୱାଧୀନ କହିବା ସମ୍ପୂର୍ଣ୍ଣ ନିରର୍ଥକ । ଯେତେବେଳେ ସେହି ଅନନ୍ତ ସତ୍ତା ଏହି ମାୟାଜାଲରେ ପଡ଼େ, ସେତେବେଳେ ହିଁ ତାହା ଇଚ୍ଛାର ଆକାର ଧାରଣ କରେ । ଇଚ୍ଛା ମାୟାଜାଲରେ ଆବଦ୍ଧ ସେହି ପୁରୁଷଙ୍କର କିୟଦଂଶ ମାତ୍ର, ସୁତରାଂ 'ସ୍ୱାଧୀନ ଇଚ୍ଛା' ବାକ୍ୟଟିର କୌଣସି ଅର୍ଥ ନାହିଁ, ତାହା ସମ୍ପୂର୍ଣ୍ଣ ନିରର୍ଥକ; ସ୍ୱାଧୀନତା ବା ମୁକ୍ତି ସମ୍ବନ୍ଧରେ ଏହି ସମୁଦାୟ ବାଗାଡ଼ମ୍ବର ମଧ୍ୟ ବୃଥା । ମାୟା ଭିତରେ ସ୍ୱାଧୀନତା ନାହିଁ ।

ପ୍ରତ୍ୟେକ ବ୍ୟକ୍ତି ଚିନ୍ତାରେ, ମନରେ, କାର୍ଯ୍ୟରେ ଖଣ୍ଡେ ପଥର ବା ଏହି ଟେବୁଲଟିପରି ବଦ୍ଧ । ମୁଁ ଆପଣଙ୍କ ନିକଟରେ ବକ୍ତୃତା ଦେଉଛି, ଆଉ ଆପଣମାନେ ମୋ କଥା ଶୁଣୁଛନ୍ତି, ଏହି ଉଭୟ ହିଁ କଠୋର କାର୍ଯ୍ୟ-କାରଣ-ନିୟମର ଅଧୀନ । ମାୟା ଭିତରୁ ଯେତେଦିନ ବାହାରକୁ ନ ଯାଉଛନ୍ତି, ସେପର୍ଯ୍ୟନ୍ତ ସ୍ୱାଧୀନତା ବା ମୁକ୍ତି ନାହିଁ । ସେହି ମାୟାତୀତ ଅବସ୍ଥା ହିଁ ଆତ୍ମାର ଯଥାର୍ଥ ସ୍ୱାଧୀନତା; କିନ୍ତୁ ମନୁଷ୍ୟ ଯେତେଦୂର ତୀକ୍ଷ୍ଣବୁଦ୍ଧି ହେଉ ନା କାହିଁକି, ଏଠାରେ କୌଣସି ବସ୍ତୁ ସ୍ୱାଧୀନ ବା ମୁକ୍ତ ହୋଇପାରେ ନାହିଁ —ଏହି ଯୁକ୍ତିର ବଳ କଣେ ଯେତେଦୂର ସ୍ପଷ୍ଟରୂପେ ଦେଖୁନା କାହିଁକି ସମସ୍ତଙ୍କୁ ବାଧ୍ୟ ହୋଇ ନିଜକୁ ସ୍ୱାଧୀନ ବୋଲି ଚିନ୍ତା କରିବାକୁ ହେବ, ତାହା ନ କରି ରହି ହେବ ନାହିଁ । ଯେପର୍ଯ୍ୟନ୍ତ ନା ଆମେ କହୁ ଯେ ଆମେ ସ୍ୱାଧୀନ, ସେପର୍ଯ୍ୟନ୍ତ କୌଣସି କାର୍ଯ୍ୟ ଚଳିବ ନାହିଁ । ଏହାର ତାତ୍ପର୍ଯ୍ୟ ଏହି ଯେ, ଆମେମାନେ ଯେଉଁ ସ୍ୱାଧୀନତାର କଥା କହିଥାଉ, ତାହା ଅଜ୍ଞାନରୂପକ ମେଘରାଶି ମଧ୍ୟଦେଇ ନିର୍ମଳ ନୀଳାକାଶରୂପକ ସେହି ଶୁଦ୍ଧ ବୁଦ୍ଧ-ମୁକ୍ତ ଆତ୍ମାର ଚକିତ ଦର୍ଶନମାତ୍ର, ଆଉ, ନୀଳାକାଶରୂପ ପ୍ରକୃତ ସ୍ୱାଧୀନତା ଅର୍ଥାତ୍ ମୁକ୍ତସ୍ୱଭାବ ଆତ୍ମା ତାହାର ବାହାରେ ରହିଛି । ଯଥାର୍ଥ ସ୍ୱାଧୀନତା ଏହି ଭ୍ରମ ଭିତରେ, ଏହି ମିଥ୍ୟା ମଧ୍ୟରେ, ଏହି ଅର୍ଥହୀନ ଜଗତରେ, ଇନ୍ଦ୍ରିୟ-ମନ-ଦେହ-ସମନ୍ୱିତ ଏହି

ବ୍ରହ୍ମାଣ୍ଡ ଭିତରେ ରହିପାରେ ନାହିଁ । ଏହି ସମୁଦାୟ ଅନାଦି ଅନନ୍ତ ସ୍ୱପ୍ନ—ଯାହା ଆମମାନଙ୍କର ବଶ ନୁହେଁ, ଯାହାକୁ ବଶ ମଧ୍ୟ କରାଯାଇ ନ ପାରେ, ଯାହା ଅଯଥାସନ୍ନିବେଶିତ, ଭଗ୍ନ ଓ ଅସାମଞ୍ଜସ୍ୟମୟ—ସେହି ସମୁଦାୟ ସ୍ୱପ୍ନଗୁଡ଼ିକୁ ନେଇ ଆମମାନଙ୍କର ଏହି ଜଗତ୍ । ଆପଣ ଯେତେବେଳେ ସ୍ୱପ୍ନରେ ଦେଖନ୍ତି ଯେ, ବିଂଶମୁଣ୍ଡବିଶିଷ୍ଟ ଗୋଟାଏ ଦୈତ୍ୟ ଆପଣଙ୍କୁ ଧରିବାକୁ ଆସୁଛି, ଆଉ ଆପଣ ତା' ପାଖରୁ ପଳାଇ ଯାଉଛନ୍ତି, ଆପଣ ତାକୁ ଅସଲଗ୍ନ ମନେକରନ୍ତି ନାହିଁ । ଆପଣ ମନେକରନ୍ତି, ଏହା ଠିକ୍ ହେଉଛି । ଆମେମାନେ ଯାହାକୁ ନିୟମ କହୁ, ତାହା ମଧ୍ୟ ଏହିପରି । ଆପଣ ଯାହା କିଛି ନିୟମ ବୋଲି ନିର୍ଦ୍ଦିଷ୍ଟ କରନ୍ତି, ତାହା କେବଳ ଆକସ୍ମିକ ଘଟଣା ମାତ୍ର, ସେଗୁଡ଼ିକର କୌଣସି ଅର୍ଥ ନାହିଁ । ଏହି ସ୍ୱପ୍ନାବସ୍ଥାରେ ଆପଣ ତାହାକୁ ନିୟମ ବୋଲି ଅଭିହିତ କରନ୍ତି । ମାୟା ଭିତରେ ଯେତେଦିନ ପର୍ଯ୍ୟନ୍ତ ଏହି ଦେଶ-କାଳ-ନିମିତ୍ତର ନିୟମ ବିଦ୍ୟମାନ, ସେତେଦିନ ପର୍ଯ୍ୟନ୍ତ ସ୍ୱାଧୀନତା ବା ମୁକ୍ତି ନାହିଁ; ଏବଂ ଏହି ବିଭିନ୍ନ ଉପାସନା-ପ୍ରଣାଳୀସମୂହ ସମୁଦାୟ ଏହି ମାୟାର ଅନ୍ତର୍ଗତ । ଈଶ୍ୱରଧାରଣା ଏବଂ ପଶୁ ଓ ମାନବର ଧାରଣା—ଏସମସ୍ତ ମଧ୍ୟ ଏହି ମାୟା ଭିତରେ, ସୁତରାଂ ସବୁଗୁଡ଼ିକ ସମଭାବରେ ଭ୍ରମାତ୍ମକ, ସବୁ ସ୍ୱପ୍ନମାତ୍ର । ତେବେ ଆଜିକାଲି ଆମେ କେତେକ ଅତିବୁଦ୍ଧି ବ୍ୟକ୍ତିଙ୍କୁ ଦେଖିବାକୁ ପାଉ । ଆପଣମାନେ ସେମାନଙ୍କପରି ତର୍କ ବା ସିଦ୍ଧାନ୍ତ ନ କରି ସେହି ବିଷୟରେ ସାବଧାନ ରହିବେ । ସେମାନେ କହନ୍ତି, ଈଶ୍ୱରଧାରଣା ଭ୍ରମାତ୍ମକ, କିନ୍ତୁ ଏହି ଜଗତର ଧାରଣା ସତ୍ୟ । ପ୍ରକୃତପକ୍ଷରେ ଏହି ଉଭୟ ଧାରଣା ହିଁ ଏକ ଭିତ୍ତି ଉପରେ ପ୍ରତିଷ୍ଠିତ । ସେହିମାନେ କେବଳ ଯଥାର୍ଥ ନାସ୍ତିକ ହେବାର ଅଧିକାର ପାଇବେ, ଯେଉଁମାନେ ଇହଜଗତ୍ ଓ ପରଜଗତ୍, ଉଭୟକୁ ହିଁ ଅସ୍ୱୀକାର କରନ୍ତି । ଉଭୟେ ହିଁ ଏକ ଯୁକ୍ତି ଉପରେ ପ୍ରତିଷ୍ଠିତ । ଈଶ୍ୱରଙ୍କଠାରୁ କ୍ଷୁଦ୍ରତମ ଜୀବ ପର୍ଯ୍ୟନ୍ତ—ଆବ୍ରହ୍ମସ୍ତମ୍ବ ପର୍ଯ୍ୟନ୍ତ, ସେହି ଏକମାୟାର ରାଜତ୍ୱ । ଏକପ୍ରକାର ଯୁକ୍ତିରେ ଏମାନଙ୍କର ଅସ୍ତିତ୍ୱ, ପ୍ରତିଷ୍ଠା ବା ନାସ୍ତିତ୍ୱ ସିଦ୍ଧ ହୁଏ । ଯେଉଁ ବ୍ୟକ୍ତି ଈଶ୍ୱରଧାରଣାକୁ ଭ୍ରମାତ୍ମକ ମନେ କରନ୍ତି, ତାଙ୍କର ନିଜ ଦେହ ଓ ମନର ଧାରଣାକୁ ମଧ୍ୟ ଭ୍ରମାତ୍ମକ ବୋଲି ମନେ କରିବା ଉଚିତ । ଯେତେବେଳେ ଈଶ୍ୱର ଉଭେଇ ଯାଆନ୍ତି, ସେତେବେଳେ ଦେହ ଓ ମନ ମଧ୍ୟ ଉଭେଇ ଯାଏ ଏବଂ ଯେତେବେଳେ ଉଭୟ ହିଁ ଲୋପ ପାଏ, ସେତେବେଳେ ଯାହା ଯଥାର୍ଥ ସତ୍ତା, ତାହା ଚିରକାଳ ପାଇଁ ରହିଯାଏ । 'ସେଠାକୁ ଦୃଷ୍ଟି ଯାଇପାରେ ନାହିଁ, ବାକ୍ୟ ମଧ୍ୟ ଯାଇପାରେ ନାହିଁ, ମନ ମଧ୍ୟ ନୁହେଁ । ଆମେ ତାଙ୍କୁ ଦେଖିପାରୁ ନାହିଁ କିମ୍ବା ଜାଣି ମଧ୍ୟ ପାରୁ ନାହିଁ ।'* ଏହାର ତାତ୍ପର୍ଯ୍ୟ ବର୍ତ୍ତମାନ ଆମେ ବୁଝିପାରୁଛୁ ଯେ, ଯେତେଦୂର ପର୍ଯ୍ୟନ୍ତ ବାକ୍ୟ, ଚିନ୍ତା ବା ବୁଦ୍ଧି ଯାଇପାରେ, ସେତେଦୂର ପର୍ଯ୍ୟନ୍ତ ମାୟାର ଅଧିକାର, ସେପର୍ଯ୍ୟନ୍ତ ସବୁ ବନ୍ଧନ ଭିତରେ । ସତ୍ୟ ସେଗୁଡ଼ିକର ବାହାରେ । ସେଠାରେ ଚିନ୍ତା, ମନ ବା ବାକ୍ୟ ପହଞ୍ଚିପାରେ ନାହିଁ ।

* ନ ତତ୍ର ଚକ୍ଷୁର୍ଗଚ୍ଛତି ନ ବାଗ୍ଗଚ୍ଛତି ନୋ ମନଃ ।—କେନୋପନିଷଦ୍, ୧।୩

ଏପର୍ଯ୍ୟନ୍ତ ବିଚାରଦ୍ୱାରା ତ ବେଶ୍ ବୁଝାଗଲା; କିନ୍ତୁ ଏଣିକି ସାଧନାର କଥା ବିଚାର କରାଯାଉ । ଏହିସବୁ ବକ୍ତୃତାର ଅସଲ ଶିକ୍ଷାର ବିଷୟ ସାଧନ । ଏହି ଏକତ୍ୱ ଉପଲବ୍‌ଧି ପାଇଁ କୌଣସି ପ୍ରକାର ସାଧନାର ପ୍ରୟୋଜନ ଅଛି କି ? ନିଶ୍ଚୟ ଅଛି । ସାଧନା ଦ୍ୱାରା ଯେ ଆପଣମାନଙ୍କୁ ଏହି ବ୍ରହ୍ମ ହେବାକୁ ହେବ, ତା ନୁହେଁ । ଆପଣମାନେ ପୂର୍ବରୁ ତ ତାହା ଅଛନ୍ତି । ଆପଣମାନଙ୍କୁ ଈଶ୍ୱର ହେବାକୁ ହେବ ବା ପୂର୍ଣ୍ଣ ହେବାକୁ ହେବ, ଏକଥା ସତ୍ୟ ନୁହେଁ । ଆପଣମାନେ ସର୍ବଦା ପୂର୍ଣ୍ଣସ୍ୱରୂପ ରହିଛନ୍ତି ଏବଂ ଯେତେବେଳେ ଆପଣମାନେ ମନେ କରିବେ, ଆପଣମାନେ ପୂର୍ଣ୍ଣ ନୁହନ୍ତି, ତାହା ଗୋଟିଏ ଭ୍ରମ । ଏହି ଭ୍ରମ—ଯେଉଁଥିରେ ଆପଣମାନେ ଅମୁକ ପୁରୁଷ, ଅମୁକ ନାରୀ ବୋଲି ବୋଧ କରୁଛନ୍ତି, ତାହା ଆଉ ଏକ ଭ୍ରମଦ୍ୱାରା ଦୂର ହୋଇପାରେ ଏବଂ ସାଧନା ବା ଅଭ୍ୟାସ ହେଉଛି ସେହି ଅପର ଭ୍ରମ । ନିଆଁ ହିଁ ନିଆଁକୁ ଖାଇବ—ଆପଣମାନେ ଏକ ଭ୍ରମକୁ ନାଶ କରିବାପାଇଁ ଅନ୍ୟ ଏକ ଭ୍ରମର ସାହାଯ୍ୟ ନେଇପାରନ୍ତି । ଖଣ୍ଡେ ମେଘ ଆସି ଆଉ ଖଣ୍ଡେ ମେଘକୁ ଘୁଞ୍ଚେଇଦେବ, ଶେଷରେ ଉଭୟେ ଚାଲିଯିବେ । ତେବେ ଏହି ସାଧନା ସବୁ କିଅଣ ? ସବୁବେଳେ ଆମକୁ ମନେ ରଖିବାକୁ ହେବ ଯେ, ଆମେ ଯେ ମୁକ୍ତ ହେବା ତାହା ନୁହେଁ; ଆମ୍ଭେ ସର୍ବଦା ମୁକ୍ତ । ଆମେ ବଦ୍ଧ, ଏପରି ଭାବନା ମାତ୍ର ହିଁ ଭ୍ରମ; ଆମେ ସୁଖୀ ବା ଆମେ ଅସୁଖୀ, ଏହିପରି ଭାବନା ମଧ୍ୟ ଗୁରୁତର ଭ୍ରମ । ଆଉ ଏକ ଭ୍ରମ ଆସିବ ଯେ, ଆମକୁ ମୁକ୍ତ ହେବା ପାଇଁ ସାଧନା, ଉପାସନା ଓ ଚେଷ୍ଟା କରିବାକୁ ହେବ, ଏହି ଭ୍ରମ ଆସି ପ୍ରଥମ ଭ୍ରମକୁ ହଟାଇ ଦେବ, ସେତିକିବେଳେ ଉଭୟ ଭ୍ରମ ଦୂର ହେବ ।

ମୁସଲମାନମାନେ ଶୃଗାଳକୁ ଅତିଶୟ ଅପବିତ୍ର ମନେକରନ୍ତି—ହିନ୍ଦୁମାନେ ମଧ୍ୟ ସେହିପରି କୁକୁରକୁ ଅଶୁଚି ବୋଲି ଭାବିଥାଆନ୍ତି । ଅତଏବ ଶୃଗାଳ ବା କୁକୁର ଖାଦ୍ୟ ଛୁଇଁଲେ ତାହା ଫିଙ୍ଗି ଦିଆ ହୁଏ, ତାହା ଆଉ କେହି ଖାଇବାର ଉପାୟ ନାହିଁ । କୌଣସି ଏକ ମୁସଲମାନ ଘରେ ଗୋଟିଏ ଶୃଗାଳ ପ୍ରବେଶ କରି ଟେବୁଲ ଉପରୁ କିଛି ଖାଦ୍ୟ ଖାଇ ଚାଲିଗଲା । ଲୋକଟି ବଡ଼ ଗରିବ ଥିଲା । ସେ ନିଜ ପାଇଁ ସେଦିନ ଅତି ଉତ୍ତମ ଖାଦ୍ୟର ଆୟୋଜନ କରିଥିଲା; କିନ୍ତୁ ସେହି ଭୋଜ୍ୟ ଦ୍ରବ୍ୟସବୁ ଶୃଗାଳ ଛୁଇଁବାଦ୍ୱାରା ଅପବିତ୍ର ହୋଇଗଲା, ଆଉ ତାହା ଖାଇବାକୁ ତାର ଚାରା ନାହିଁ । ସେ ଏହି କାରଣରୁ ଜଣେ ମୋଲ୍ଲାଙ୍କ ପାଖକୁ ଯାଇ ନିବେଦନ କଲା, 'ସାହେବ, ଗରିବର ଗୋଟିଏ ନିବେଦନ ଶୁଣନ୍ତୁ । ଗୋଟାଏ ଶୃଗାଳ ଆସି ମୋ ଖାଦ୍ୟରୁ କିଛି ନେଇ ଖାଇ ଦେଇଛି, ଏବେ ଏହାର ଗୋଟିଏ ଉପାୟ କହନ୍ତୁ । ମୁଁ ଅତି ସୁଖାଦ୍ୟ ସବୁ ତିଆରି କରିଥିଲି । ମୋର ଖୁବ୍ ବାସନା ଥିଲା ଯେ, ପରମ ତୃପ୍ତିରେ ତାହା ଖାଇବି । ଉପସ୍ଥିତ ଶୃଗାଳଟା ଆସି ସବୁ ନଷ୍ଟ କରିଦେଇଗଲା । ଆପଣ ଏଥିପାଇଁ ଯାହା ହେଉ ଗୋଟିଏ ବ୍ୟବସ୍ଥା ଦିଅନ୍ତୁ ।' ମୋଲ୍ଲା ମୁହୂର୍ତ୍ତିକପାଇଁ ଟିକିଏ ଭାବିଲେ; ତା'ପରେ ତାହାର ଏକ ସିଦ୍ଧାନ୍ତ କରି କହିଲେ, 'ଏହାର ଏକମାତ୍ର ଉପାୟ—ଯେଉଁ ଥାଳିରୁ ଶୃଗାଳଟି ଖାଇଛି ଗୋଟାଏ କୁକୁର ଧରିଆଣି ସେହି ଥାଳିରୁ ତାକୁ କିଛି ଖୁଆଇଦିଅ । କୁକୁର ଓ ଶୃଗାଳ ମଧ୍ୟରେ ନିତ୍ୟ ବିବାଦ ଅଛି ।

ଶୃଗାଳର ଉଚ୍ଛିଷ୍ଟ ମଧ୍ୟ ତୁମ ପେଟକୁ ଯିବ, କୁକୁରର ଉଚ୍ଛିଷ୍ଟ ମଧ୍ୟ ତୁମ ପେଟକୁ ଯିବ, ସେହି ଦୁଇ ଉଚ୍ଛିଷ୍ଟ ପରସ୍ପର ସେଠାରେ କଳି ଲଗିବେ, ସେତେବେଳେ ସବୁ ଶୁଦ୍ଧ ହୋଇଯିବ ।' ଆମେମାନେ ଅନେକ ପରିମାଣରେ ଏହିପରି ସମସ୍ୟାରେ ପଡ଼ିଛେ । ଆମେମାନେ ଯେ ଅପୂର୍ଣ୍ଣ, ଏହା ଗୋଟାଏ ଭ୍ରମ, ଆମେ ତାହା ଦୂର କରିବା ପାଇଁ ଆଉ ଗୋଟିଏ ଭ୍ରମର ସାହାଯ୍ୟ ନେଉଛେ ଯେ, ପୂର୍ଣ୍ଣତା ଲାଭ ପାଇଁ ଆମମାନଙ୍କୁ ସାଧନା କରିବାକୁ ହେବ । ସେତେବେଳେ ଗୋଟିଏ ଭ୍ରମ ଆଉ ଏକ ଭ୍ରମକୁ ଦୂର କରି ଦେବ, ଯେପରି ଆମେ ଗୋଟାଏ କଣ୍ଟା କାଢ଼ିବା ପାଇଁ ଆଉ ଗୋଟିଏ କଣ୍ଟାର ସାହାଯ୍ୟ ନେଇଥାଉ ଏବଂ ଶେଷରେ ଉଭୟ କଣ୍ଟାକୁ ଫିଙ୍ଗିଦେଉ । ଏପରି ଲୋକ ଅଛନ୍ତି, ଯେଉଁମାନଙ୍କ ପକ୍ଷରେ ଥରେ 'ତତ୍ତ୍ୱମସି' ଶୁଣିବାମାତ୍ରେ ତତ୍‌କ୍ଷଣାତ୍ ଜ୍ଞାନ ଉଦିତ ହୁଏ । ନିମିଷକ ମଧ୍ୟରେ ଏହି ଜଗତ୍ କୁଆଡ଼େ ଉଭେଇ ଯାଏ, ପୁଣି ଆତ୍ମାର ଯଥାର୍ଥ ସ୍ୱରୂପ ପ୍ରକାଶ ପାଇଥାଏ; କିନ୍ତୁ ଅନ୍ୟ ସମସ୍ତଙ୍କୁ ଏହି ବନ୍ଧନର ଧାରଣା ଦୂର କରିବା ପାଇଁ କଠୋର ଚେଷ୍ଟା କରିବାକୁ ହୁଏ ।

ପ୍ରଥମ ପ୍ରଶ୍ନ ଏହି, ଜ୍ଞାନଯୋଗୀ ହେବାର ଅଧିକାରୀ କେଉଁମାନେ ? ଯେଉଁମାନଙ୍କର ନିମ୍ନଲିଖିତ ସାଧନ-ସମ୍ପତ୍ତି ସବୁ ଅଛି । ପ୍ରଥମତଃ, ଇହାମୁତ୍ରଫଳଭୋଗବିରାଗ—ଏହି ଜୀବନରେ ବା ପରଜୀବନରେ ସର୍ବପ୍ରକାର କର୍ମଫଳ ଓ ସର୍ବପ୍ରକାର ଭୋଗ-ବାସନା ତ୍ୟାଗ । ଯଦି ଆପଣ ଏହି ଜଗତର ସ୍ରଷ୍ଟା ହୁଅନ୍ତି, ତେବେ ଆପଣ ଯାହା ବାସନା କରିବେ, ତାହା ହିଁ ପାଇବେ; କାରଣ ଆପଣ ତାହା ସ୍ୱୀୟ ଭୋଗ ପାଇଁ ସୃଷ୍ଟି କରିବେ । କେବଳ କାହାର ଶୀଘ୍ର, କାହାର ବା ବିଳମ୍ବରେ ସେହି ଫଳଲାଭ ହୋଇଥାଏ । କେହି କେହି ତତ୍‌କ୍ଷଣାତ୍ ତାହା ପ୍ରାପ୍ତ ହୁଅନ୍ତି; ଅନ୍ୟମାନଙ୍କ ପକ୍ଷରେ ସେମାନଙ୍କର ସଂସ୍କାର-ସମଷ୍ଟି ସେମାନଙ୍କର ବାସନାପୂର୍ତ୍ତିରେ ବ୍ୟାଘାତ କରିଥାଏ । ଆମେମାନେ ଇହଜନ୍ମ ବା ପରଜନ୍ମର ଭୋଗବାସନାକୁ ସର୍ବଶ୍ରେଷ୍ଠ ସ୍ଥାନ ଦେଇଥାଉ । ଇହଜନ୍ମ ବା ପରଜନ୍ମ କିମ୍ବା ଆପଣଙ୍କର ଅନ୍ୟ କୌଣସି ଜନ୍ମ ଅଛି, ଏହା ଏକାବେଳକେ ଅସ୍ୱୀକାର କରନ୍ତୁ; କାରଣ ଜୀବନ ମୃତ୍ୟୁର ହିଁ ନାମାନ୍ତର ମାତ୍ର । ଆପଣ ଯେ ଜୀବନସମ୍ପନ୍ନ ପ୍ରାଣୀ, ଏହା ମଧ୍ୟ ଅସ୍ୱୀକାର କରନ୍ତୁ । ଜୀବନପାଇଁ କିଏ ବ୍ୟସ୍ତ ? ଜୀବନ ଗୋଟାଏ ଭ୍ରମମାତ୍ର, ମୃତ୍ୟୁ ତାହାର କେବଳ ଅନ୍ୟ ଏକ ଦିଗ । ସୁଖ ଏହି ଭ୍ରମର ଗୋଟିଏ ଦିଗ, ଦୁଃଖ ଏହାର ଆଉ ଏକ ଦିଗ । ଅନ୍ୟ ସବୁ ବିଷୟରେ ମଧ୍ୟ ଏହିପରି । ଆପଣମାନଙ୍କର ଜୀବନ ବା ମୃତ୍ୟୁକୁ ନେଇ କଅଣ ହେବ ? ଏସବୁ ତ ମନର ସୃଷ୍ଟି ମାତ୍ର । ଏହାକୁ ହିଁ ଇହାମୁତ୍ରଫଳଭୋଗବିରାଗ କହନ୍ତି ।

ତାହାପରେ, ଶମ ବା ମନ-ସଂଯମର ପ୍ରୟୋଜନ । ମନକୁ ଏପରି ଶାନ୍ତ କରିବାକୁ ହେବ, ଯେପରି ତାହା ଆଉ ତରଙ୍ଗାକାରରେ ଭଗ୍ନ ହୋଇ ବିବିଧ ବାସନାର ଲୀଳାକ୍ଷେତ୍ର ହେବ ନାହିଁ । ମନକୁ ସ୍ଥିର ରଖିବାକୁ ହେବ । ବାହାର ବା ଭିତରର କୌଣସି କାରଣରୁ ସେଥିରେ ଯେପରି ତରଙ୍ଗ ନ ଉଠେ—କେବଳ ଇଚ୍ଛାଶକ୍ତି ଦ୍ୱାରା ମନକୁ ସମ୍ପୂର୍ଣ୍ଣରୂପେ ସଂଯତ କରିବାକୁ ହେବ । ଜ୍ଞାନଯୋଗୀ ଶାରୀରିକ ବା ମାନସିକ କାହାର ସାହାଯ୍ୟ ନିଅନ୍ତି

ନାହିଁ । ସେ କେବଳ ଦାର୍ଶନିକ ବିଚାର-ଜ୍ଞାନ ଓ ନିଜ ଇଚ୍ଛା-ଶକ୍ତିର ସାଧନାରେ ହିଁ ବିଶ୍ୱାସୀ । ତାହା ପରେ ତିତିକ୍ଷା—କୌଣସି ପ୍ରକାର ବିଳାପ ନ କରି ସର୍ବଦୁଃଖର ସହନ । ଯେତେବେଳେ ଆପଣଙ୍କର କୌଣସି ପ୍ରକାର ଅନିଷ୍ଟ ଘଟିବ, ସେ ଦିଗକୁ ନଜର ଦେବେ ନାହିଁ । ଯଦି ସମ୍ମୁଖକୁ ଗୋଟାଏ ବ୍ୟାଘ୍ର ଆସେ, ତେବେ ସ୍ଥିର ଭାବରେ ଠିଆ ହୋଇ ରହନ୍ତୁ । ଅନେକ ଲୋକ ଅଛନ୍ତି, ଯେଉଁମାନେ ତିତିକ୍ଷା ଅଭ୍ୟାସ କରନ୍ତି ଏବଂ ସେଥିରେ କୃତକାର୍ଯ୍ୟ ହୁଅନ୍ତି । ଭାରତରେ ଏପରି ଅନେକ ଲୋକ ଏବେ ମଧ୍ୟ ଅଛନ୍ତି ଯେଉଁମାନେ ଗ୍ରୀଷ୍ମକାଳର ପ୍ରଖର ମଧ୍ୟାହ୍ନ ସୂର୍ଯ୍ୟତାପରେ ଗଙ୍ଗାକୂଳରେ ଶୋଇଥାଆନ୍ତି, ପୁଣି ଶୀତକାଳରେ ଥଣ୍ଡା ଗଙ୍ଗାଜଳରେ ସାରାଦିନ ଭାସନ୍ତି । ସେମାନେ ଏସବୁକୁ ଆଦୌ ଗ୍ରାହ୍ୟ କରନ୍ତି ନାହିଁ । ଅନେକ ଲୋକ ହିମାଳୟର ତୁଷାରରାଶି ମଧ୍ୟରେ ବସିଥାଆନ୍ତି, କୌଣସି ପ୍ରକାର ବସ୍ତ୍ରାଦିର ପ୍ରୟୋଜନ ଅନୁଭବ କରନ୍ତି ନାହିଁ । ଭାବନ୍ତି—ଗ୍ରୀଷ୍ମ କଅଣ ବା ଶୀତ କଅଣ ? ଏସବୁ ଆସୁ, ଯାଉ—ମୋର ସେଥିରେ କଅଣ ଅଛି ? 'ମୁଁ' ତ ଶରୀର ନୁହେଁ । ପାଶ୍ଚାତ୍ୟ ଦେଶମାନଙ୍କରେ ଏକଥା ବିଶ୍ୱାସ କରିବା ଅତି କଠିନ; କିନ୍ତୁ ଲୋକେ ଯେ ଏପରି କରିଥାଆନ୍ତି, ତାହା ଜାଣିରଖିବା ଭଲ । ଯେପରି ଆପଣମାନଙ୍କ ଦେଶର ଲୋକେ କମାଣ ମୁହଁରେ ବା ଯୁଦ୍ଧକ୍ଷେତ୍ରକୁ ଡେଇଁ ପଡ଼ିବାରେ ସାହସିକତା ଦେଖାଇଥାଆନ୍ତି, ଆମ ଦେଶର ଲୋକେ ମଧ୍ୟ ସେହିପରି ସେମାନଙ୍କର ଦର୍ଶନାନୁସାରେ ଚିନ୍ତାପ୍ରଣାଳୀ ନିୟମିତ କରିବାରେ ଓ ତଦନୁସାରେ କାର୍ଯ୍ୟ କରିବାରେ ସାହସିକତା ଦେଖାଇଥାଆନ୍ତି । ସେମାନେ ଏଥିପାଇଁ ପ୍ରାଣ ଦେଇଥାଆନ୍ତି । 'ମୁଁ ସଚ୍ଚିଦାନନ୍ଦସ୍ୱରୂପ'—'ସୋଽହଂ, ସୋଽହଂ' । ଦୈନନ୍ଦିନ କର୍ମ-ଜୀବନରେ ବିଳାସିତା ବଜାୟ ରଖିବା ଯେପରି ପାଶ୍ଚାତ୍ୟ ଆଦର୍ଶ, ସେହିପରି କର୍ମ-ଜୀବନର ସର୍ବୋଚ୍ଚ ଆଧ୍ୟାତ୍ମିକ ଭାବ ରକ୍ଷା କରିବା ଆମର ଆଦର୍ଶ । ଆମେ ତାହାଦ୍ୱାରା ଏହା ହିଁ ପ୍ରମାଣ କରିବାକୁ ଚାହୁଁ ଯେ ଧର୍ମ କେବଳ ଫମ୍ପା କଥା ନୁହେଁ; ବରଂ ଏହି ଜୀବନରେ ଧର୍ମକୁ ସର୍ବାଙ୍ଗ-ସମ୍ପୂର୍ଣ୍ଣରୂପେ କାର୍ଯ୍ୟରେ ପରିଣତ କରାଯାଇପାରେ । ଏହା ହିଁ ତିତିକ୍ଷା—ସମସ୍ତ ସହ୍ୟ କରିବା—କୌଣସି ବିଷୟରେ ଅସନ୍ତୋଷ ପ୍ରକାଶ ନ କରିବା । ମୁଁ ନିଜେ ଏପରି ଲୋକ ଦେଖିଛି, ଯେଉଁମାନେ କହନ୍ତି, 'ମୁଁ ଆତ୍ମା—ମୋ ନିକଟରେ ବ୍ରହ୍ମାଣ୍ଡର ପୁଣି ଗୌରବ କଅଣ ? ସୁଖ-ଦୁଃଖ, ପାପ-ପୁଣ୍ୟ, ଶୀତ-ଉଷ୍ମ, ଏସବୁ ମୋ ପକ୍ଷରେ କିଛି ନୁହେଁ ।' ଏହା ହିଁ ତିତିକ୍ଷା—ଦେହର ଭୋଗ-ସୁଖ ପାଇଁ ଧାବମାନ ହେବା ନୁହେଁ । ଧର୍ମ କଅଣ ? ଧର୍ମର ଅର୍ଥ କ'ଣ ଏହିପରି ପ୍ରାର୍ଥନା କରିବାକୁ ହେବ ଯେ, 'ମୋତେ ଏହା ଦିଅ, ତାହା ଦିଅ' ? ଧର୍ମ ସମ୍ବନ୍ଧରେ ଏସବୁ ହେଉଛି ମୂଢ଼ ଧାରଣା । ଯେଉଁମାନେ ଧର୍ମକୁ ଏପରି ମନେ କରନ୍ତି, ସେମାନଙ୍କର ଈଶ୍ୱର ଓ ଆତ୍ମା ସମ୍ବନ୍ଧରେ ଯଥାର୍ଥ ଧାରଣା ନାହିଁ । ମଦୀୟ ଆଚାର୍ଯ୍ୟଦେବ କହୁଥିଲେ, 'ଚିଲ ଶାଗୁଣା ଖୁବ୍ ଉଚ୍ଚରେ ଉଡ଼ନ୍ତି; କିନ୍ତୁ ସେମାନଙ୍କର ନଜର ଥାଏ ମଡ଼ା ମଶାଣି ଉପରେ ।' ଯାହାହେଉ ଆପଣମାନଙ୍କର ଧର୍ମ ସମ୍ବନ୍ଧରେ ଯେଉଁସବୁ ଧାରଣା ଅଛି, ତାହାର କି ଫଳ କହନ୍ତୁ ଦେଖି—ରାସ୍ତା ସଫା କରିବା, ଆଉ, ଉତ୍ତମରୂପେ ଅନ୍ନବସ୍ତ୍ରର ଯୋଗାଡ଼ କରିବା ? ଅନ୍ନବସ୍ତ୍ର

ପାଇଁ କିଏ ଭାବେ ? ପ୍ରତି ମୁହୂର୍ତ୍ତରେ ଲକ୍ଷ ଲକ୍ଷ ଲୋକ ଆସୁଛନ୍ତି, ଲକ୍ଷ ଲକ୍ଷ ଲୋକ ଯାଉ-ଛନ୍ତି—କିଏ ଗ୍ରାହ୍ୟ କରେ ? ଏହି କ୍ଷୁଦ୍ର ଜଗତର ସୁଖ-ଦୁଃଖକୁ ଗ୍ରାହ୍ୟ କରୁଛନ୍ତି କାହିଁକି ? ଯଦି ସାହସ ଥାଏ, ତାହାର ବାହାରକୁ ଚାଲିଯାଆନ୍ତୁ, ସମୁଦାୟ ନିୟମର ବାହାରକୁ ଚାଲିଯାଆନ୍ତୁ, ସମସ୍ତ ଜଗତ୍ ଉଡ଼ିଯାଉ— ଆପଣ ଏକାକୀ ଆସି ଠିଆ ହୁଅନ୍ତୁ । 'ମୁଁ ନିରପେକ୍ଷ ସତ୍ତା, ନିରପେକ୍ଷ ଜ୍ଞାନ ଓ ନିରପେକ୍ଷ ଆନନ୍ଦସ୍ୱରୂପ—ସତ୍-ଚିତ୍-ଆନନ୍ଦ—ସୋଽହମ୍, ସୋଽହମ୍ ।'

## ବହୁରୂପରେ ପ୍ରକାଶିତ ଏକ ସତ୍ତା

ଆମେ ଦେଖୁଛେ, ବୈରାଗ୍ୟ ବା ତ୍ୟାଗ ହିଁ ଏହି ସମୁଦାୟ ବିଭିନ୍ନ ଯୋଗର ମୂଳଭିତ୍ତି । କର୍ମୀ କର୍ମଫଳ ତ୍ୟାଗ କରନ୍ତି । ଭକ୍ତ ସେହି ସର୍ବଶକ୍ତିମାନ୍ ଓ ସର୍ବବ୍ୟାପୀ ପ୍ରେମସ୍ୱରୂପଙ୍କ ପାଇଁ ସମୁଦାୟ କ୍ଷୁଦ୍ର କ୍ଷୁଦ୍ର ପ୍ରେମ ତ୍ୟାଗ କରନ୍ତି । ଯୋଗୀ ଯାହା କିଛି ଅନୁଭବ କରନ୍ତି, ତାଙ୍କର ଯାହା କିଛି ଅଭିଜ୍ଞତା ସମୁଦାୟ ପରିତ୍ୟାଗ କରନ୍ତି; କାରଣ ତାଙ୍କ ଯୋଗଶାସ୍ତ୍ରର ଶିକ୍ଷା ଏହି ଯେ, ସମୁଦାୟ ପ୍ରକୃତି ଯଦିଓ ଆତ୍ମାର ଭୋଗ ଓ ଅଭିଜ୍ଞତା ପାଇଁ, ତଥାପି ତାହା ଅବଶେଷରେ ତାଙ୍କୁ ଜଣାଇଦିଏ ଯେ, ସେ ପ୍ରକୃତିରେ ଅବସ୍ଥିତ ନୁହନ୍ତି; ବରଂ ପ୍ରକୃତିଠାରୁ ନିତ୍ୟ-ସ୍ୱତନ୍ତ୍ର । ଜ୍ଞାନୀ ସମୁଦାୟ ତ୍ୟାଗ କରନ୍ତି, କାରଣ ଜ୍ଞାନଶାସ୍ତ୍ରର ସିଦ୍ଧାନ୍ତ ଏହି ଯେ, ଭୂତ-ଭବିଷ୍ୟତ-ବର୍ତ୍ତମାନ କୌଣସି କାଳରେ ପ୍ରକୃତିର ଅସ୍ତିତ୍ୱ ନାହିଁ । ଆମେ ଏ କଥା ମଧ୍ୟ ଦେଖୁଛେ ଯେ, ଏହି ସକଳ ଉଚ୍ଚତର ବିଷୟରେ 'ଏଥିରେ କି ଲାଭ'—ଏ ପ୍ରଶ୍ନ ମଧ୍ୟ ପଚରା ଯାଇପାରେ ନାହିଁ । ଲାଭ-କ୍ଷତିର ପ୍ରଶ୍ନ ଏଠାରେ ଅସ୍ୱାଭାବିକ; ଆଉ ଯଦି ଏହି ପ୍ରଶ୍ନ ପଚରାଯାଏ, ତାହାହେଲେ ମଧ୍ୟ ଆମେ ସେହି ପ୍ରଶ୍ନଟିକୁ ଉତ୍ତମରୂପେ ବିଶ୍ଳେଷଣ କରି କଅଣ ପାଉ ? ଲାଭ ମାନେ କଅଣ ? ଯାହା ଲୋକର ସାଂସାରିକ ଅବସ୍ଥାର ଉନ୍ନତି-ସାଧନ ନ କରେ, ଯେଉଁଥିରେ ତା'ର ସୁଖବୃଦ୍ଧି ନ ହୁଏ, ତାହା ଅପେକ୍ଷା ଯେଉଁଥିରେ ତାହାର ଅଧିକ ସୁଖ, ଯେଉଁଥିରେ ତା'ର ବେଶୀ ଲାଭ, ବେଶୀ ହିତ—ତାହା ହିଁ ସୁଖର ଆଦର୍ଶ । ସମୁଦାୟ ବିଜ୍ଞାନ ସେହି ଲକ୍ଷ୍ୟ ସାଧନରେ ଅର୍ଥାତ୍ ମନୁଷ୍ୟ ଜାତିକୁ ସୁଖୀ କରିବା ପାଇଁ ଚେଷ୍ଟା କରୁଛି, ଆଉ ଯାହା ବେଶୀ ପରିମାଣର ସୁଖ ଆନୟନ କରେ, ମନୁଷ୍ୟ ତାହା ଗ୍ରହଣ କରେ, ଯେଉଁଥିରେ ଅଳ୍ପ ସୁଖ, ତାହା ତ୍ୟାଗ କରେ । ଆମେ ଦେଖୁଛେ, ସୁଖ ହୁଏତ ଦେହରେ ବା ମନରେ ଅଥବା ଆତ୍ମାରେ ଅବସ୍ଥିତ । ପଶୁମାନଙ୍କର ଏବଂ ପଶୁପ୍ରାୟ ଅନୁନ୍ନତ ମନୁଷ୍ୟମାନଙ୍କର ସମୁଦାୟ ସୁଖ ଦେହରେ । ଗୋଟାଏ କ୍ଷୁଧାର୍ତ୍ତ କୁକୁର ବା ବ୍ୟାଘ୍ର ଯେପରି ତୃପ୍ତିର ସହିତ ଆହାର କରେ, କୌଣସି ମନୁଷ୍ୟ ତାହା ପାରେ ନାହିଁ । ସୁତରାଂ କୁକୁର ଓ ବ୍ୟାଘ୍ରର ସୁଖର ଆଦର୍ଶ ସମ୍ପୂର୍ଣ୍ଣ

ଦେହଗତ । ଆମେ ମନୁଷ୍ୟମାନେ ଟିକିଏ ଉଚ୍ଚତର ସୁଖ ଖୋଜ୍—ମନୁଷ୍ୟ ଜ୍ଞାନାଲୋଚନାରେ ସୁଖୀ ହୋଇଥାଏ । ସର୍ବୋଚ୍ଚ ସ୍ତରର ସୁଖ ଜ୍ଞାନୀର—ସେ ଆତ୍ମାନନ୍ଦରେ ବିଭୋର ଥାଆନ୍ତି । ଆତ୍ମା ହିଁ ତାଙ୍କର ସୁଖର ଏକମାତ୍ର ଉପକରଣ । ଅତଏବ ଜ୍ଞାନୀ ପକ୍ଷରେ ଏହି ଆତ୍ମଜ୍ଞାନ ହିଁ ପରମ ଲାଭ ବା ହିତ; କାରଣ, ଏଥିରେ ହିଁ ସେ ପରମସୁଖ ପାଇଥାଆନ୍ତି । ଜଡ଼ବିଷୟସମୂହ ବା ଇନ୍ଦ୍ରିୟଚରିତାର୍ଥତା ତାଙ୍କ ନିକଟରେ ସର୍ବୋଚ୍ଚ ଲାଭର ବିଷୟ ହୋଇପାରେ ନାହିଁ; କାରଣ ସେ ଜ୍ଞାନରେ ଯେଉଁ ପ୍ରକାର ସୁଖ ପାଇଥାଆନ୍ତି, ସେଥିରେ ତଦ୍ରୂପ ପାଆନ୍ତି ନାହିଁ । ଆଉ ପ୍ରକୃତ ପକ୍ଷରେ ଜ୍ଞାନ ହିଁ ସମସ୍ତଙ୍କର ଏକମାତ୍ର ଲକ୍ଷ୍ୟ ! ଆମେ ଯେତେ ପ୍ରକାର ସୁଖବିଷୟ ଅବଗତ ଅଛୁ, ତନ୍ମଧ୍ୟରେ ତାହା ହିଁ ସର୍ବୋଚ୍ଚ ସୁଖ । 'ଯେଉଁମାନେ ଅଜ୍ଞାନରେ କାର୍ଯ୍ୟ କରିଥାଆନ୍ତି, ସେମାନେ ଦେବଗଣଙ୍କର ଭାରବାହୀ ପଶୁତୁଲ୍ୟ'—ଏଠାରେ ଦେବର ଅର୍ଥ ଜ୍ଞାନୀ ବ୍ୟକ୍ତି ବୋଲି ବୁଝିବାକୁ ହେବ । ଯେଉଁ ସକଳ ବ୍ୟକ୍ତି ଯନ୍ତ୍ରବତ୍ କାର୍ଯ୍ୟ ଓ ପରିଶ୍ରମ କରିଥାଆନ୍ତି, ସେମାନେ ପ୍ରକୃତରେ ଜୀବନକୁ ସମ୍ଭୋଗ କରନ୍ତି ନାହିଁ, ଜ୍ଞାନୀ ବ୍ୟକ୍ତି ହିଁ ଜୀବନକୁ ସମ୍ଭୋଗ କରନ୍ତି । ଜଣେ ବଡ଼ଲୋକ ହୁଏତ ଏକଲକ୍ଷ ଟଙ୍କା ଖର୍ଚ୍ଚ କରି ଖଣ୍ଡିଏ ଛବି କିଣିଲା; କିନ୍ତୁ ଯେ ଶିଳ୍ପର ମହତ୍ତ୍ୱ ବୁଝିବ, ସେ ହିଁ ତାହା ସମ୍ଭୋଗ କରିପାରିବ । କ୍ରେତା ଯଦି ଶିଳ୍ପଜ୍ଞାନଶୂନ୍ୟ ହୁଅନ୍ତି, ତେବେ ତାଙ୍କ ପକ୍ଷରେ ତାହା ନିରର୍ଥକ, ସେ କେବଳ ତାହାର ଅଧିକାରୀ ମାତ୍ର । ସମଗ୍ର ଜଗତ୍ ମଧ୍ୟରେ ଜ୍ଞାନୀ ବ୍ୟକ୍ତି ହିଁ କେବଳ ଜଗତର ସୁଖ-ସମ୍ଭୋଗ କରନ୍ତି । ଅଜ୍ଞାନ ବ୍ୟକ୍ତି କେବେହେଲେ ସୁଖଭୋଗ କରିପାରେ ନାହିଁ, ତାହାକୁ ଅଜ୍ଞାତସାରରେ ମଧ୍ୟ ଅନ୍ୟ ପାଇଁ ପରିଶ୍ରମ କରିବାକୁ ହୁଏ ।

ଏପର୍ଯ୍ୟନ୍ତ ଆମେ ଅଦ୍ୱୈତବାଦୀମାନଙ୍କର ସିଦ୍ଧାନ୍ତସମୂହ ଚର୍ଚ୍ଚା କରି ଆସିଲେ, ଦେଖିଲେ ସେମାନଙ୍କ ମତରେ ଗୋଟିଏ ଆତ୍ମା ଅଛି । ଦୁଇଟି ଆତ୍ମା ରହି ନ ପାରେ । ଆମେ ଦେଖିଲେ—ସମଗ୍ର ଜଗତରେ ଗୋଟିଏ ସତ୍ତାମାତ୍ର ବିଦ୍ୟମାନ; ଆଉ ସେହି ଏକ ସତ୍ତାକୁ ଇନ୍ଦ୍ରିୟ ଭିତର ଦେଇ ଦେଖିଲେ, ତାହା ଜଡ଼ଜଗତ୍ ବୋଲି ବୋଧହୁଏ । ଯେତେବେଳେ କେବଳ ମନ ଭିତର ଦେଇ ଏହା ଦେଖାଯାଏ ସେତେବେଳେ ତାହାକୁ ଚିନ୍ତା ଓ ଭାବଜଗତ୍ କୁହାଯାଏ ଏବଂ ଯେତେବେଳେ ତାହାର ଯଥାର୍ଥ ସ୍ୱରୂପର ଜ୍ଞାନ ହୁଏ, ସେତେବେଳେ ତାହା ଏକ ଅନନ୍ତ ପୁରୁଷ ବୋଲି ପ୍ରତୀତ ହୁଏ । ଏହି ବିଷୟଟି ଆପଣମାନେ ବିଶେଷ ଭାବରେ ସ୍ମରଣ ରଖିବେ—ଏହା କହିବା ଠିକ୍ ନୁହେଁ ଯେ, ମନୁଷ୍ୟ ଭିତରେ ଗୋଟିଏ ଆତ୍ମା ଅଛି, ଯଦିଓ ବୁଝାଇବା ପାଇଁ ପ୍ରଥମେ ମୋତେ ଏହା ଧରି ନେବାକୁ ପଡ଼ିଥିଲା । ବାସ୍ତବିକ ପକ୍ଷରେ କେବଳ ଗୋଟିଏ ସତ୍ତା ରହିଛି ଏବଂ ସେହି ସତ୍ତା ଆତ୍ମା—ଆଉ, ତାହା ଯେତେବେଳେ ଇନ୍ଦ୍ରିୟମାନଙ୍କ ଭିତର ଦେଇ ଅନୁଭୂତ ହୁଏ, ସେତେବେଳେ ତାହାକୁ ଦେହ କହନ୍ତି, ଯେତେବେଳେ ତାହା ଚିନ୍ତା ବା ଭାବ ମଧ୍ୟଦେଇ ଅନୁଭୂତ ହୁଏ, ସେତେବେଳେ ତାକୁ ମନ କହନ୍ତି, ପୁଣି ଯେତେବେଳେ ତାହା ସ୍ୱ-ସ୍ୱରୂପରେ ଉପଲବ୍ଧ ହୁଏ, ସେତେବେଳେ ତାହା ଆତ୍ମାରୂପରେ ସେହି ଏକ

ଅଦ୍ୱିତୀୟ ସତ୍ତାରୂପେ ପ୍ରତୀତ ହୁଏ । ଅତଏବ ଏହା ଠିକ୍ ନୁହେଁ ଯେ ଦେହ, ମନ ଓ ଆତ୍ମା, ଏହି ତିନିଟି ଜିନିଷ ଏକାଠି ରହିଅଛନ୍ତି, ଯଦିଓ ସେପରି ବ୍ୟାଖ୍ୟା କରିବାରୁ ବୁଝାଇବା ବେଶ୍ ସହଜ ହୋଇଥିଲା । ସବୁ ହିଁ ସେହି ଆତ୍ମା, ଆଉ ସେହି ଏକ ପୁରୁଷ ହିଁ ବିଭିନ୍ନ ଦୃଷ୍ଟି ଅନୁସାରେ କେତେବେଳେ ଦେହ, କେତେବେଳେ ମନ, କେତେବେଳେ ବା ଆତ୍ମା ବୋଲି କଥିତ ହୋଇଥାଆନ୍ତି । ଏକମାତ୍ର ପୁରୁଷ ହିଁ ଅଛନ୍ତି । ଅଜ୍ଞାନୀମାନେ ତାଙ୍କୁ ଜଗତ୍ ବୋଲି କହନ୍ତି । ଯେତେବେଳେ ସେହି ବ୍ୟକ୍ତି ଜ୍ଞାନରେ ଅପେକ୍ଷାକୃତ ଉନ୍ନତ ହୁଏ, ସେତେବେଳେ ସେ ସେହି ପୁରୁଷଙ୍କୁ ଭାବଜଗତ୍ କହିଥାଏ ଏବଂ ଯେତେବେଳେ ପୂର୍ଣ୍ଣ ଜ୍ଞାନୋଦୟ ହୋଇ ସମୁଦାୟ ଭ୍ରମ ଚାଲିଯାଏ, ସେତେବେଳେ ମାନବ ଦେଖିପାରେ, ଏ ସମୁଦାୟ ଆତ୍ମା ବ୍ୟତୀତ ଆଉ କିଛି ନୁହେଁ । ଚରମ ସିଦ୍ଧାନ୍ତ ଏହି ଯେ 'ମୁଁ ସେହି ଏକ ସତ୍ତା' । ଜଗତରେ ଦୁଇଟି ବା ତିନୋଟି ସତ୍ତା ନାହିଁ, ସବୁ ଏକ । ସେହି ଏକସତ୍ତା ହିଁ ମାୟାର ପ୍ରଭାବରେ ବହୁରୂପେ ଦେଖାଯାଏ, ଯେପରି ଅଜ୍ଞାନ-ବଶତଃ ରଜ୍ଜୁ ଦେଖିଲେ ସର୍ପ ବୋଲି ଭ୍ରମ ହୋଇଥାଏ । ସେହି ଦଉଡ଼ିଟି ସାପ ଭଳି ଦିଶେ । ଏଠାରେ ଦଉଡ଼ି ଓ ସାପ—ଅଲଗା ଦୁଇଟି ପୃଥକ୍ ବସ୍ତୁ ନାହିଁ । କେହି ସେଠାରେ ଦୁଇଟି ବସ୍ତୁ ଦେଖେ ନାହିଁ । ଦ୍ୱୈତବାଦ ଓ ଅଦ୍ୱୈତବାଦ ଅତି ସୁନ୍ଦର ଦାର୍ଶନିକ ପାରିଭାଷିକ ଶବ୍ଦ ହୋଇପାରେ, କିନ୍ତୁ ପୂର୍ଣ୍ଣ ଅନୁଭୂତି ସମୟରେ ସତ୍ୟ ଓ ମିଥ୍ୟା ଉଭୟ ଏକାଠି ଦେଖିବାକୁ ମିଳିବ ନାହିଁ । ଆମେ ସମସ୍ତେ ଜନ୍ମରୁ ଏକତ୍ୱବାଦୀ—ଅନ୍ୟଥା ହୋଇ ନ ପାରେ । ଆମେ ସବୁସମୟରେ 'ଏକ' ଦେଖିଥାଉ । ଯେତେବେଳେ ଆମେ ଦଉଡ଼ି ଦେଖୁ, ସେତେବେଳେ ସାପକୁ ଆଦୌ ଦେଖୁନାହିଁ, ଆଉ ଯେତେବେଳେ ସାପ ଦେଖୁ, ସେତେବେଳେ ମୋଟେ ଦଉଡ଼ି ଦେଖୁ ନାହିଁ, ତାହା ସେତେବେଳେ ଚାଲିଯାଏ । ଯେତେବେଳେ ଆପଣମାନଙ୍କର ଭ୍ରମ-ଦର୍ଶନ ହୁଏ, ସେତେବେଳେ ଆପଣମାନେ ଯଥାର୍ଥ ବସ୍ତୁକୁ ଦେଖନ୍ତି ନାହିଁ । ମନେକରନ୍ତୁ, ଦୂରରୁ ରାସ୍ତାରେ ଆପଣଙ୍କର ଜଣେ ବନ୍ଧୁ ଆସୁଛନ୍ତି । ତାଙ୍କୁ ଆପଣ ଅତି ଉତ୍ତମରୂପେ ଜାଣନ୍ତି, କିନ୍ତୁ ଆପଣଙ୍କ ସମ୍ମୁଖରେ କୁହୁଡ଼ି ଥିବାରୁ ଆପଣ ତାଙ୍କୁ ଅନ୍ୟ ଲୋକ ବୋଲି ମନେ କରୁଛନ୍ତି । ଯେତେବେଳେ ଆପଣ ନିଜ ବନ୍ଧୁଙ୍କୁ ଅନ୍ୟ ଲୋକ ବୋଲି ମନେ କରୁଛନ୍ତି ସେତେବେଳେ ଆପଣ ଆଉ ବନ୍ଧୁଙ୍କୁ ଦେଖୁନାହାନ୍ତି, ସେ ଅନ୍ତର୍ହିତ ହୋଇଛନ୍ତି । ଆପଣ ଜଣେ ମାତ୍ର ଲୋକଙ୍କୁ ଦେଖୁଛନ୍ତି । ମନେକରନ୍ତୁ, ଆପଣଙ୍କ ବନ୍ଧୁଙ୍କୁ 'କ' ବୋଲି ଅଭିହିତ କରାଗଲା । ତାହାହେଲେ ଆପଣ ଯେତେବେଳେ 'କ' ଙ୍କୁ 'ଖ' ବୋଲି ଦେଖୁଛନ୍ତି, ସେତେବେଳେ ଆପଣ 'କ'ଙ୍କୁ ଆଦୌ ଦେଖୁ ନାହାନ୍ତି । ସବୁ ସ୍ଥଳରେ ଆପଣମାନଙ୍କର ଏଭଳି ଉପଲବ୍ଧି ହୋଇଥାଏ । ଯେତେବେଳେ ଆପଣ ଆପଣଙ୍କୁ ଦେହରୂପେ ଦର୍ଶନ କରନ୍ତି, ସେତେବେଳେ ଆପଣ ଦେହମାତ୍ର, ଆଉ କିଛି ନୁହନ୍ତି, ଜଗତର ଅଧିକାଂଶ ମାନବ ଏହିପରି ଉପଲବ୍ଧି କରନ୍ତି । ସେମାନେ ଆତ୍ମା, ମନ ଇତ୍ୟାଦି କଥା କହିପାରନ୍ତି, କିନ୍ତୁ ସେମାନେ ଦେଖନ୍ତି ଏହି ସ୍ଥୂଳ ଭୌତିକ ଆକୃତିଟିକୁ

ଓ ଏହାର ସ୍ପର୍ଶ, ଦର୍ଶନ, ଆସ୍ୱାଦନ ଇତ୍ୟାଦି । କୌଣସି କୌଣସି ଲୋକ ଜ୍ଞାନଭୂମିର ବିଶେଷ ଅବସ୍ଥାରେ ନିଜକୁ ଚିନ୍ତା ବା ଭାବରୂପରେ ଅନୁଭବ କରିଥାଆନ୍ତି । ଆପଣମାନେ ସାର୍ ହାମ୍ଫ୍ରୀ ଡେଭିଙ୍କ ସମ୍ବନ୍ଧରେ ଯେଉଁ ଗଳ୍ପ କଥିତ ହୋଇଥାଏ ତାହା ଅବଶ୍ୟ ଜାଣନ୍ତି । ସେ ତାଙ୍କ କ୍ଲାସ୍‌ରେ 'ହାସ୍ୟଜନକ ବାଷ୍ପ'(Laughing gas) ନେଇ ପରୀକ୍ଷା କରୁଥିଲେ । ହଠାତ୍ ଗୋଟିଏ ନଳୀ ଭାଙ୍ଗି ସେହି ବାଷ୍ପ ବାହାରିଗଲା ଓ ସେ ନିଃଶ୍ୱାସରେ ତାହା ଗ୍ରହଣ କଲେ । କିଛି ସମୟ ଯାଏ ସେ ପ୍ରସ୍ତରମୂର୍ତ୍ତିପରି ନିଶ୍ଚଳ ଭାବରେ ଦଣ୍ଡାୟମାନ ରହିଲେ । ଅବଶେଷରେ ସେ ଛାତ୍ରମାନଙ୍କୁ କହିଲେ, 'ସେହି ଅବସ୍ଥାରେ ମୁଁ ବାସ୍ତବିକ ଅନୁଭବ କରୁଥିଲି ଯେ, ସମଗ୍ର ଜଗତ ଚିନ୍ତା ବା ଭାବଦ୍ୱାରା ଗଠିତ' । ସେହି ବାଷ୍ପର ଶକ୍ତିରେ କିଛିକ୍ଷଣ ପାଇଁ ତାଙ୍କର ଦେହଜ୍ଞାନ ବିସ୍ମରଣ ହୋଇ ଯାଇଥିଲା, ଆଉ ଯାହା ପୂର୍ବେ ସେ ଶରୀର ବୋଲି ଦେଖୁଥିଲେ, ତାହା ହିଁ ପରେ ଚିନ୍ତା ବା ଭାବସମୂହରୂପେ ଦେଖିଲେ । ଯେତେବେଳେ ଅନୁଭୂତି ଆହୁରି ଉଚ୍ଚତର ଅବସ୍ଥାକୁ ଯାଏ, ଯେତେବେଳେ ଏହି କ୍ଷୁଦ୍ର ଅହଂଜ୍ଞାନକୁ ସମ୍ପୂର୍ଣ୍ଣ ଅତିକ୍ରମ କରିଯାଏ, ସେତେବେଳେ ସମସ୍ତଙ୍କର ପଶ୍ଚାତ୍‌ରେ ଯେଉଁ ସତ୍ୟ ବସ୍ତୁ ରହିଛି, ତାହା ପ୍ରକାଶିତ ହୋଇଥାଏ । ସେତେବେଳେ ତାହାକୁ ଆମେ ଅଖଣ୍ଡ ସଚ୍ଚିଦାନନ୍ଦରୂପେ—ସେହି ଏକ ଆତ୍ମାରୂପେ, ଅନନ୍ତ ପୁରୁଷରୂପେ ଦର୍ଶନ କରୁ । 'ଜ୍ଞାନୀ ବ୍ୟକ୍ତି ସମାଧିକାଳରେ ଅନିର୍ବଚନୀୟ, ନିତ୍ୟବୋଧ, କେବଳାନନ୍ଦ, ନିରୁପମ, ଅପାର, ନିତ୍ୟମୁକ୍ତ, ନିଷ୍କ୍ରିୟ, ଅସୀମ, ଗଗନସମ, ନିଷ୍କଳ, ନିର୍ବିକଳ୍ପ, ପୂର୍ଣ୍ଣବ୍ରହ୍ମଙ୍କୁ ହୃଦୟରେ ସାକ୍ଷାତ୍ କରନ୍ତି ।'*

ଅଦ୍ୱୈତ ମତରେ ଏହି ବିଭିନ୍ନ ପ୍ରକାର ସ୍ୱର୍ଗ ଓ ନରକର ଏବଂ ସକଳ ଧର୍ମରେ ଆମେମାନେ ଯେଉଁ ନାନାବିଧ ଭାବ ଦେଖିବାକୁ ପାଉ, ଏସବୁର କିପରି ବ୍ୟାଖ୍ୟା କରିଯାଏ ? ଯେତେବେଳେ ମନୁଷ୍ୟର ମୃତ୍ୟୁ ହୁଏ, କୁହାଯାଇଥାଏ ଯେ, ସେ ସ୍ୱର୍ଗକୁ ବା ନରକକୁ ଯାଏ, ଏଠାକୁ ସେଠାକୁ ନାନା ସ୍ଥାନକୁ ଯାଏ ଅଥବା ସ୍ୱର୍ଗ ବା ଅନ୍ୟ କୌଣସି ଲୋକରେ ଦେହ ଧାରଣ କରି ଜନ୍ମ ପରିଗ୍ରହ କରେ । ଅଦ୍ୱୈତବାଦୀମାନେ କହନ୍ତି, ଏହି ସମୁଦାୟ କେବଳ ଭ୍ରମ । ପ୍ରକୃତ ପକ୍ଷରେ କେହି ଜାତ ହୁଏ ନାହିଁ କି ମରେ ନାହିଁ । ସ୍ୱର୍ଗ ନାହିଁ, କି ନରକ ମଧ୍ୟ ନାହିଁ ଅଥବା ଇହଲୋକ ମଧ୍ୟ ନାହିଁ । ଏହି ତିନୋଟିର କୌଣସି କାଳରେ ଅସ୍ତିତ୍ୱ ନାହିଁ । ଜଣେ ପିଲାକୁ ଅନେକ ଭୂତଗଳ୍ପ କହି ସନ୍ଧ୍ୟାବେଳେ ତାକୁ ବାହାରକୁ ଯିବାକୁ କହ । ଗୋଟାଏ ଥୁଣ୍ଟାଗଛ ରହିଛି । ପିଲାଟି କଅଣ ଦେଖେ ? ସେ ଦେଖେ—ଗୋଟାଏ ଭୂତ ହାତ ବଢ଼ାଇ ତାକୁ ଧରି-ବାକୁ ଆସୁଛି । ମନେକରନ୍ତୁ, ଜଣେ ପ୍ରଣୟୀ ତା'ର ପ୍ରଣୟିନୀ ସହିତ ସାକ୍ଷାତ କରିବା ପାଇଁ ରାସ୍ତାର ଗୋଟିଏ ଦିଗରୁ ଆସୁଛି—ସେ ସେହି ଶୁଷ୍କ ବୃକ୍ଷକାଣ୍ଡକୁ ତା'ର ପ୍ରଣୟିନୀ ବୋଲି

* କିମପି ସତତବୋଧଂ କେବଳାନନ୍ଦରୂପଂ ନିରୁପମମତିବେଲଂ ନିତ୍ୟମୁକ୍ତଂ ନିରୀହମ୍ ।
ନିରବଧି ଗଗନାଭଂ ନିଷ୍କଳଂ ନିର୍ବିକଳ୍ପଂ ହୃଦି କଳୟତି ବିଦ୍ୱାନ୍ ବ୍ରହ୍ମପୂର୍ଣ୍ଣଂ ସମାଧୌ ।
—ବିବେକଚୂଡ଼ାମଣି, ୪୧୦

ମନେ କରିବ । ଜଣେ ପହରାବାଲା ତାକୁ ଚୋର ବୋଲି ମନେ କରିବ, ଆଉ ଚୋର ତାକୁ ପହରାବାଲା ବୋଲି ଠଉରେଇବ । ସେହି ଏକ ଥୁଣ୍ଟାଗଛ ବିଭିନ୍ନରୂପେ ଦେଖାଯାଉଛି । ତାହା ହିଁ ସତ୍ୟ ଆଉ ଏହି ଯେ ବିଭିନ୍ନ ଭାବରେ ତାହାର ଦର୍ଶନ—ତାହା କେବଳ ନାନାପ୍ରକାର ମନର ବିକାର ମାତ୍ର । ଏକମାତ୍ର ପୁରୁଷ—ଏହି ଆତ୍ମା ହିଁ ଅଛନ୍ତି । ସେ କୁଆଡ଼େ ଯାଆନ୍ତି ନାହିଁ, ଆସନ୍ତି ନାହିଁ ମଧ୍ୟ । ଅଜ୍ଞାନ ମାନବ ସ୍ୱର୍ଗ ବା ତଥାବିଧ ସ୍ଥାନକୁ ଯିବାକୁ ବାସନା କରେ । ସାରାଜୀବନ ସେ କେବଳ କ୍ରମାଗତ ତାହାର ଚିନ୍ତା କରେ । ଏହି ପୃଥିବୀର ସ୍ୱପ୍ନ ଯେତେବେଳେ ତାହାର ଚାଲିଯାଏ, ସେତେବେଳେ ସେ ଏହି ଜଗତକୁ ହିଁ ସ୍ୱର୍ଗରୂପେ ଦେଖିବାକୁ ପାଏ—ଦେଖେ ଯେ, ଏଠାରେ ଦେବବୃନ୍ଦ ବିରାଜ କରୁଛନ୍ତି ଇତ୍ୟାଦି ଇତ୍ୟାଦି । ଯଦି କୌଣସି ବ୍ୟକ୍ତି ସାରାଜୀବନ ତାହାର ପୂର୍ବ ପିତୃପୁରୁଷାଦିଙ୍କୁ ଦେଖିବାକୁ ଚାହେଁ, ସେ ଆଦିମଠାରୁ ଆରମ୍ଭ କରି ସମସ୍ତଙ୍କୁ ଦେଖିବାକୁ ପାଏ, କାରଣ, ସେ ସ୍ୱୟଂ ହିଁ ସେମାନଙ୍କୁ ସୃଷ୍ଟି କରିଥାଏ । ଯଦି କେହି ଆହୁରି ଅଧିକ ଅଜ୍ଞାନ ହୁଏ ଏବଂ ଧର୍ମାନ୍ଧମାନେ ତାକୁ ଚିରକାଳ ନରକ ଭୟ ଦେଖାଉଥାନ୍ତି, ତେବେ ସେ ମୃତ୍ୟୁପରେ ଏହି ଜଗତକୁ ହିଁ ନରକରୂପେ ଦର୍ଶନ କରେ ଏବଂ ଏହା ମଧ୍ୟ ଦେଖେ ଯେ, ସେଠାରେ ଲୋକେ ନାନାବିଧ ଶାସ୍ତି ଭୋଗ କରୁଛନ୍ତି । ମୃତ୍ୟୁ ବା ଜନ୍ମର ଅନ୍ୟ କିଛି ଅର୍ଥ ନାହିଁ, କେବଳ ଦୃଷ୍ଟିର ପରିବର୍ତ୍ତନ । ଆପଣ କୁଆଡ଼େ ଯାଉନାହାନ୍ତି ବା ଆପଣ ଯାହା ଉପରେ ଆପଣଙ୍କର ଦୃଷ୍ଟିନିକ୍ଷେପ କରୁଛନ୍ତି, ତାହା ମଧ୍ୟ କୁଆଡ଼େ ଯାଏ ନାହିଁ । ଆପଣ ତ ନିତ୍ୟ, ଅପରିଣାମୀ । ଆପଣଙ୍କର ପୁଣି ଯିବା ଆସିବା କଅଣ ? ଏହା ଅସମ୍ଭବ । ଆପଣ ତ ସର୍ବବ୍ୟାପୀ । ଆକାଶ କେବେହେଲେ ଗତିଶୀଳ ନୁହେଁ; କିନ୍ତୁ ତା' ଉପରେ ମେଘ ଏପାଖ ସେପାଖ ଯାଇଥାଏ—ଆମେ ମନେକରୁ ଆକାଶ ହିଁ ଗତିଶୀଳ । ରେଳଗାଡ଼ିରେ ଚଢ଼ିଯିବା ସମୟରେ ଯେପରି ପୃଥିବୀ ଗତିଶୀଳ ବୋଧହୁଏ, ଏହା ମଧ୍ୟ ଠିକ୍ ସେହିପରି । ବାସ୍ତବିକ ତ ପୃଥିବୀ ହାଲୁ ନାହିଁ, ରେଳଗାଡ଼ି ଚାଲୁଛି । ଏହିପରି ଆପଣ ଯେଉଁଠି ଥିଲେ ସେଇଠି ଅଛନ୍ତି, କେବଳ ଏହି ସକଳ ବିଭିନ୍ନ ସ୍ୱପ୍ନ ମେଘ ସଦୃଶ ଏପାଖ ସେପାଖ ଯାଉଛନ୍ତି । ଗୋଟାଏ ସ୍ୱପ୍ନ ପରେ ଆଉ ଗୋଟିଏ ସ୍ୱପ୍ନ ଆସୁଛି—ସେମାନଙ୍କ ମଧ୍ୟରେ କୌଣସି ସମ୍ବନ୍ଧ ନାହିଁ । ଏହି ଜଗତରେ ନିୟମ ବା ସମ୍ବନ୍ଧ ବୋଲି କିଛି ନାହିଁ, କିନ୍ତୁ ଆମେ ଭାବୁଛେ, ପରସ୍ପରର ଯଥେଷ୍ଟ ସମ୍ବନ୍ଧ ଅଛି । ଆପଣମାନେ ସମସ୍ତେ ସମ୍ଭବତଃ 'ଏଲିସର ଅଦ୍ଭୁତ ଦେଶଦର୍ଶନ' (Alice in Wonderland) ନାମକ ଗ୍ରନ୍ଥ ପଢ଼ିଛନ୍ତି । ଏହି ଶତାବ୍ଦୀରେ ପିଲମାନଙ୍କ ପାଇଁ ଲେଖା ଏହା ଗୋଟିଏ ଆଶ୍ଚର୍ଯ୍ୟ ବହି । ମୁଁ ସେହି ବହିଖଣ୍ଡି ପଢ଼ି ଆନନ୍ଦଲାଭ କରିଥିଲି—ମୋ ମୁଣ୍ଡରେ ବରାବର ପିଲାଙ୍କ ପାଇଁ ସେପରି ବହି ଲେଖିବା ପାଇଁ ଇଚ୍ଛା ଥିଲା । ମୋତେ ତନ୍ମଧ୍ୟରୁ ସର୍ବାପେକ୍ଷା ଭଲଲାଗିଥିଲା ଏହି ଭାବଟି ଯେ, ଆପଣମାନେ ଯାହା ସର୍ବାପେକ୍ଷା ଅସଙ୍ଗତ ବୋଧ କରନ୍ତି ତାହା ହିଁ ସେଥିରେ ଅଛି —କୌଣସିଟି ସହିତ କୌଣସିଟିର ସମ୍ବନ୍ଧ ନାହିଁ । ଗୋଟିଏ ଭାବ ଆସି ଯେପରି ଆଉ ଗୋଟିକ ଉପରେ ଡେଇଁପଡ଼ୁଛି—ପରସ୍ପରର କୌଣସି ସମ୍ବନ୍ଧ ନାହିଁ । ଆପଣମାନେ ପିଲା

ଥିଲେ, ଆପଣମାନେ ଭାବୁଥିଲେ ସେମାନଙ୍କ ମଧ୍ୟରେ ଅଦ୍ଭୁତ ସମ୍ବନ୍ଧ ରହିଛି । ଏହି ବ୍ୟକ୍ତି ତାଙ୍କ ଶୈଶବାବସ୍ଥାର ଚିନ୍ତାଗୁଡ଼ିକୁ—ଶୈଶବାବସ୍ଥାରେ ଯାହା ତାଙ୍କ ପକ୍ଷେ ସମ୍ପୂର୍ଣ୍ଣ ସମ୍ବନ୍ଧଯୁକ୍ତ ବୋଲି ବୋଧ ହେଉଥିଲା, ତାହା ନେଇ ଶିଶୁମାନଙ୍କ ପାଇଁ ଏହି ପୁସ୍ତକଖଣ୍ଡି ରଚନା କରିଛନ୍ତି । ଆଉ ଅନେକେ ପିଲାମାନଙ୍କ ପାଇଁ ଯେଉଁସବୁ ଗ୍ରନ୍ଥ ରଚନା କରନ୍ତି, ସେଥିରେ ସେମାନଙ୍କର ବଡ଼ ହେବା ପରେ ଯେଉଁସବୁ ଚିନ୍ତା ଓ ଭାବ ଆସିଥାଏ, ସେ-ଗୁଡ଼ିକ ପିଲାମାନଙ୍କୁ ଗିଳାଇବାର ଚେଷ୍ଟା କରନ୍ତି—କିନ୍ତୁ ସେହି ବହିରୁ ପିଲାମାନଙ୍କ ପକ୍ଷରେ ଉପଯୋଗୀ ନୁହେଁ—ବାଜେ ଅନର୍ଥକ ଲେଖାମାତ୍ର । ସେ ଯାହା ହେଉ ଆମେ ମଧ୍ୟ ସମସ୍ତେ ବୟଃପ୍ରାପ୍ତ ଶିଶୁମାତ୍ର । ଆମର ଜଗତ୍ ମଧ୍ୟ ସେହିପରି ଅସମ୍ବନ୍ଧ ଜିନିଷମାତ୍ର, ଯେପରିକି ଏହା ସେହି ଏଲିସର ଅଦ୍ଭୁତ ରାଜ୍ୟ, କାହା ସହିତ କାହାର କୌଣସି ପ୍ରକାର ସମ୍ବନ୍ଧ ନାହିଁ । ଆମେମାନେ ଯେତେବେଳେ ଦେଖୁ ଯେ, କେତେଗୁଡ଼ିଏ ଘଟଣା ଏକ ନିର୍ଦ୍ଦିଷ୍ଟ କ୍ରମାନୁସାରେ ଘଟୁଛି, ଆମେ ତାକୁ କାର୍ଯ୍ୟକାରଣ ନାମରେ ଅଭିହିତ କରୁ ଏବଂ କହୁ ଯେ, ତାହା ପୁଣି ଥରେ ଘଟିବ । ଯେତେବେଳେ ଏହି ସ୍ୱପ୍ନ ଚାଲିଯାଇ ତାହା ସ୍ଥାନରେ ଆଉ ଏକ ସ୍ୱପ୍ନ ଆସି ପହଞ୍ଚିବ, ତାହା ମଧ୍ୟ ଏହିପରି ସମ୍ବନ୍ଧଯୁକ୍ତ ବୋଧ ହେବ । ସ୍ୱପ୍ନ ଦେଖିଲାବେଳେ ଆମେ ଯାହା କିଛି ଦେଖୁ ସେସବୁ ସମ୍ବନ୍ଧଯୁକ୍ତ ବୋଧହୁଏ, ସ୍ୱପ୍ନାବସ୍ଥାରେ ଆମେ ସେଗୁଡ଼ିକୁ କେବେହେଲେ ଅସମ୍ବନ୍ଧ ବା ଅସଙ୍ଗତ ମନେକରୁ ନାହିଁ । ମାତ୍ର ଯେତେବେଳେ ଚେଇଁଉଠୁ, ସେତିକିବେଳେ ସମ୍ବନ୍ଧର ଅଭାବ ଦେଖିବାକୁ ପାଉ । ଏହିପରି ଯେତେବେଳେ ଆମେ ଏହି ଜଗଦ୍ରୂପକ ସ୍ୱପ୍ନ-ଦର୍ଶନରୁ ଜାଗି ଉଠିବା ଓ ଏହି ସ୍ୱପ୍ନକୁ ସତ୍ୟ ସହିତ ତୁଳନା କରି ଦେଖିବା, ସେତେବେଳେ ତାହା ସମୁଦାୟ ଅସମ୍ବନ୍ଧ ଓ ନିରର୍ଥକ ବୋଲି ପ୍ରତିଭାତ ହେବ—ମନେ କରିବା, କେତେଗୁଡ଼ିଏ ଅସମ୍ବନ୍ଧ ଜିନିଷ ଆମମାନଙ୍କ ସମ୍ମୁଖ ଦେଇ ଚାଲିଗଲା । କୁଆଡ଼ୁ ଆସିଲା—କୁଆଡ଼େ ଯାଉଛି କିଛି ଜାଣୁ ନାହିଁ, କିନ୍ତୁ ଆମେ ଜାଣୁ ଯେ ଏହା ନିଶ୍ଚୟ ଶେଷ ହେବ । ଏହାକୁ କହନ୍ତି ମାୟା । ଏହି ସମୁଦାୟ ପରିଣାମଶୀଳ ବସ୍ତୁ—ରାଶି ରାଶି ଗତିଶୀଳ ମେଘଖଣ୍ଡସଦୃଶ ମେଘ ପରି ଏବଂ ତାହାର ପଶ୍ଚାତ୍‌ରେ ସେହି ଅପରିଣାମୀ ସୂର୍ଯ୍ୟ ଆପଣ ସ୍ୱୟଂ । ଯେତେବେଳେ ଆପଣ ସେହି ଅପରିଣାମୀ ସତ୍ତାକୁ ବାହାରୁ ଦେଖନ୍ତି, ତାକୁ ଆପଣ ଈଶ୍ୱର ବୋଲି କହନ୍ତି, ଆଉ ଭିତରୁ ଦେଖିଲେ ତାକୁ ଆପଣ ନିଜର ଆତ୍ମା ବା ସ୍ୱରୂପ ଭାବରେ ଦେଖନ୍ତି । ଏ ଉଭୟ ଏକ । ଆପଣଙ୍କଠାରୁ ଈଶ୍ୱର ପୃଥକ୍ ନୁହନ୍ତି । ଆପଣଙ୍କଠାରୁ—ଆପଣ ଯଥାର୍ଥତଃ ଯାହା—ତାହାଠାରୁ ଶ୍ରେଷ୍ଠତର ଦେବତା ନାହାନ୍ତି—ସକଳ ଈଶ୍ୱର ବା ଦେବତା ଆପଣଙ୍କ ତୁଳନାରେ କ୍ଷୁଦ୍ରତର । ଈଶ୍ୱର, ସ୍ୱର୍ଗସ୍ଥ ପିତା ପ୍ରଭୃତି ସମୁଦାୟ ଧାରଣା ଆପଣଙ୍କର ପ୍ରତିବିମ୍ବମାତ୍ର । ଈଶ୍ୱର ସ୍ୱୟଂ ଆପଣଙ୍କର ପ୍ରତିବିମ୍ବ ବା ପ୍ରତିମାସ୍ୱରୂପ । 'ଈଶ୍ୱର ମାନବକୁ ନିଜର ପ୍ରତିବିମ୍ବସ୍ୱରୂପ ସୃଷ୍ଟି କରିଛନ୍ତି'—ଏକଥା ଭୁଲ, ମନୁଷ୍ୟ ଈଶ୍ୱରଙ୍କୁ ନିଜର ପ୍ରତିବିମ୍ବାନୁଯାୟୀ ସୃଷ୍ଟି କରେ—ଏ କଥା ହିଁ ସତ୍ୟ । ସମଗ୍ର ଜଗତରେ ଆମେ ଆମର ପ୍ରତିବିମ୍ବାନୁଯାୟୀ ଈଶ୍ୱର ବା ଦେବତାମାନଙ୍କୁ ସୃଷ୍ଟି କରିଛେ । ଆମେମାନେ ଦେବତା ସୃଷ୍ଟି

କରୁ; ସେହି ଦେବତାଙ୍କ ପଦତଳେ ପଡ଼ି ତାଙ୍କୁ ଉପାସନା କରୁ, ଆଉ ଯେତେବେଳେ ଏହି ସ୍ୱପ୍ନ ଆମ ନିକଟକୁ ଆସିଥାଏ, ସେତେବେଳେ ଆମେ ତାଙ୍କୁ ଭଲ ପାଇଥାଉ ।

ଏ ବିଷୟଟି ବୁଝିବା ବିଶେଷ ପ୍ରୟୋଜନ । ଆଜି ସକାଳର ବକ୍ତୃତାର ସାରମର୍ମ—ଏହି ଗୋଟିଏ ମାତ୍ର ସତ୍ତା ଅଛି, ଆଉ ସେହି ସତ୍ତା ହିଁ ବିଭିନ୍ନ ମାଧ୍ୟମ ଦେଇ ଦୃଷ୍ଟ ହେଲେ ତାହା ପୃଥିବୀ ବା ସ୍ୱର୍ଗ ବା ନରକ ବା ଈଶ୍ୱର ବା ଭୂତପ୍ରେତ ଅଥବା ମାନବ ବା ଦୈତ୍ୟ କିମ୍ବା ଜଗତ୍ ବା ଅନ୍ୟ ଯାହା କିଛି ବୋଲି ବୋଧହୁଏ; କିନ୍ତୁ 'ଏ ବିଭିନ୍ନ ପରିଣାମୀ ବସ୍ତୁ ମଧ୍ୟରେ ଯାହାଙ୍କର କେତେବେଳେ ହେଲେ ପରିଣାମ ହୁଏ ନାହିଁ—ଯିଏ ଏହି ଚଞ୍ଚଳ ମର୍ତ୍ତ୍ୟ ଜଗତର ଏକମାତ୍ର ଜୀବନସ୍ୱରୂପ, ଯେଉଁ ଏକ ପୁରୁଷ ବହୁବ୍ୟକ୍ତିଙ୍କ କାମ୍ୟବସ୍ତୁବିଧାନ କରନ୍ତି, ତାଙ୍କୁ ଯେଉଁସବୁ ଧୀର ବ୍ୟକ୍ତି ନିଜର ଆତ୍ମା ମଧ୍ୟରେ ଅବସ୍ଥିତ ବୋଲି ଦର୍ଶନ କରନ୍ତି, ସେହିମାନଙ୍କର ହିଁ ନିତ୍ୟ ଶାନ୍ତି ଲାଭ ହୁଏ—ଅନ୍ୟ କାହାର ନୁହେଁ ।'* ସେହି ଏକ ସତ୍ତାଙ୍କୁ ସାକ୍ଷାତ୍ କରିବାକୁ ହେବ । କିପରି ତାଙ୍କର ଅପରୋକ୍ଷାନୁଭୂତି ହେବ—କିପରି ତାଙ୍କର ସାକ୍ଷାତ୍କାର ଲାଭ ହେବ, ଏହା ହିଁ ବର୍ତ୍ତମାନ ପ୍ରଶ୍ନ । କିପରି ଏହି ସ୍ୱପ୍ନ ଭଙ୍ଗ ହେବ, ଆମେ କ୍ଷୁଦ୍ର କ୍ଷୁଦ୍ର ନରନାରୀ—ଆମର ଏହା ଦରକାର, ଏହା କରିବାକୁ ହେବ, ଏହି ଯେ ସ୍ୱପ୍ନ—ଏଥିରୁ ଆମେ କିପରି ଜାଗ୍ରତ ହେବୁ ? ଆମେ ହେଉଛେ ଜଗତର ସେହି ଅନନ୍ତ ପୁରୁଷ ଏବଂ ଆମେ ଜଡ଼ଭାବାପନ୍ନ ହୋଇ ଏହି କ୍ଷୁଦ୍ର କ୍ଷୁଦ୍ର ନର-ନାରୀରୂପ ଧାରଣ କରିଛେ—ଜଣକର ମିଷ୍ଟ କଥାରେ ତରଳି ଯାଉଛେ, ପୁଣି ଜଣକର କଟୁ କଥାରେ ରାଗି ଯାଉଛେ—ଭଲମନ୍ଦ, ସୁଖ ଦୁଃଖ ଆମମାନଙ୍କୁ ନଚେଇ ଦେଉଛି ! କି ଭୟଙ୍କର ପରନିର୍ଭରତା, କି ଭୟଙ୍କର ଦାସତ୍ୱ ! ମୁଁ ଯେ ସକଳ ସୁଖ-ଦୁଃଖର ଅତୀତ, ସମଗ୍ର ଜଗତ୍ ହିଁ ଯାହାର ପ୍ରତିବିମ୍ବସ୍ୱରୂପ—ସୂର୍ଯ୍ୟ ଚନ୍ଦ୍ର ତାରା ଯାହାର ମହାପ୍ରାଣର କ୍ଷୁଦ୍ର କ୍ଷୁଦ୍ର ଉଚ୍ଛ୍ୱାସମାତ୍ର—ସେ ଏପରି ଭୟଙ୍କର ଦାସଭାବାପନ୍ନ ହୋଇ ରହିଛି ! ଆପଣ ମୋ ଦେହକୁ ଟିକିଏ ଚିମୁଟି ଦେଲେ ମୋତେ କାଟିଥାଏ । କେହି ଯଦି ଟିକିଏ ମିଠା କଥା କହେ, ତେବେ ମୋର ଆନନ୍ଦ ହୋଇଥାଏ । ମୋର କି ଦୁର୍ଦ୍ଦଶା ଦେଖନ୍ତୁ—ଦେହର ଦାସ, ମନର ଦାସ, ଜଗତର ଦାସ, ଗୋଟାଏ ଭଲ କଥାର ଦାସ, ଗୋଟାଏ ମନ୍ଦ କଥାର ଦାସ, ବାସନାର ଦାସ, ସୁଖର ଦାସ, ଜୀବନର ଦାସ, ମୃତ୍ୟୁର ଦାସ—ସବୁ ଜିନିଷର ଦାସ ! ଏହି ଦାସତ୍ୱକୁ କିପରି ଘୁଞ୍ଚାଇ ହେବ ?

ଆତ୍ମା ସମ୍ବନ୍ଧରେ ପ୍ରଥମେ ଶୁଣିବାକୁ ହେବ, ତତ୍ପରେ ତାହା ନେଇ ମନନ, ଅର୍ଥାତ୍ ବିଚାର କରିବାକୁ ହେବ, ତା'ପରେ ତାହାର ନିଦିଧ୍ୟାସନ ଅର୍ଥାତ୍ ଧ୍ୟାନ କରିବାକୁ ହେବ ।**

ଅଦ୍ୱୈତଜ୍ଞାନୀମାନଙ୍କର ଏହା ହିଁ ସାଧନପ୍ରଣାଳୀ । ସତ୍ୟ ସମ୍ବନ୍ଧରେ ପ୍ରଥମେ ଶୁଣିବାକୁ ହେବ, ପରେ ତା' ବିଷୟରେ ଚିନ୍ତା କରିବାକୁ ହେବ, ତା'ପରେ କ୍ରମାଗତ

---

* କଠୋପନିଷଦ୍, ୨।୨।୧୩

** ବୃହଦାରଣ୍ୟକ ଉପନିଷଦ୍, ୪।୬

ତାହା ମନେ ମନେ ଦୃଢ଼ ଭାବରେ କହିବାକୁ ହେବ । ସବୁବେଳେ ଭାବନ୍ତୁ—'ମୁଁ ବ୍ରହ୍ମ' —ଅନ୍ୟ ସମୁଦାୟ ଚିନ୍ତାକୁ ଦୁର୍ବଳତାର ଜନକ ବୋଲି ଦୂର କରି ଦେବାକୁ ହେବ । ଯେଉଁ ଚିନ୍ତାଦ୍ୱାରା ଆପଣମାନେ ନିଜକୁ ନରନାରୀ ବୋଲି ଭାବନ୍ତି, ତାହା ଦୂର କରି ଦିଅନ୍ତୁ । ଦେହ ଯାଉ, ମନ ଯାଉ, ଦେବତାମାନେ ମଧ୍ୟ ଯାଆନ୍ତୁ; ଭୂତପ୍ରେତାଦି ମଧ୍ୟ ଯାଆନ୍ତୁ—ସେହି ଏକ ସତ୍ତା ବ୍ୟତୀତ ଆଉ ସବୁ ଯାଉ ।

'ଯେଉଁଠି ଜଣେ ଅନ୍ୟ କିଛି ଦେଖେ, ଜଣେ ଅନ୍ୟ କିଛି ଶୁଣେ, ଜଣେ ଅନ୍ୟ କିଛି ଜାଣେ, ତାହା କ୍ଷୁଦ୍ର ବା ସସୀମ; ଆଉ ଯେଉଁଠି ଜଣେ ଅନ୍ୟକୁ ଦେଖେ ନାହିଁ, ଜଣେ ଅନ୍ୟ କିଛି ଶୁଣେ ନାହିଁ, ଜଣେ ଅନ୍ୟ କିଛି ଜାଣେ ନାହିଁ—ତାହା ହିଁ ଭୂମା ଅର୍ଥାତ୍ ମହାନ୍ ବା ଅନନ୍ତ ।'*

ତାହା ହିଁ ସର୍ବୋତ୍ତମ ବସ୍ତୁ, ଯେଉଁଠାରେ ବିଷୟୀ ଓ ବିଷୟ ଏକ ହୋଇଯାଏ । ଯେତେବେଳେ ମୁଁ ଶ୍ରୋତା, ମୁଁ ବକ୍ତା, ଯେତେବେଳେ ମୁଁ ଆଚାର୍ଯ୍ୟ ଓ ମୁଁ ଶିଷ୍ୟ ମଧ୍ୟ, ଯେତେବେଳେ ମୁଁ ସ୍ରଷ୍ଟା ଓ ମୁଁ ହିଁ ସୃଷ୍ଟ, ସେତେବେଳେ ହିଁ ଭୟ ଦୂର ହୁଏ । କାରଣ, ମୋତେ ଭୀତ କରିବାର ଅନ୍ୟ କେହି ବା କିଛି ନାହିଁ । ମୋ ବ୍ୟତୀତ ଯେତେବେଳେ ଆଉ କିଛି ନାହିଁ, ସେତେବେଳେ ମୋତେ ଭୟ ଦେଖାଇବ କିଏ ? ଦିନ ପରେ ଦିନ ଏହି ତତ୍ତ୍ୱ ଶୁଣିବାକୁ ହେବ । ଅନ୍ୟ ସମୁଦାୟ ଚିନ୍ତା ଦୂର କରି ଦିଅନ୍ତୁ । ଆଉ ସମୁଦାୟ ଦୂରକୁ ଫୋପାଡ଼ି ଦିଅନ୍ତୁ । ନିରନ୍ତର ଏହା ଆବୃତ୍ତି କରନ୍ତୁ । ଯେପର୍ଯ୍ୟନ୍ତ ତାହା ହୃଦୟରେ ନ ପହଞ୍ଚିଛି, ଯେତେକ୍ଷଣ ପର୍ଯ୍ୟନ୍ତ ପ୍ରତ୍ୟେକ ସ୍ନାୟୁ, ପ୍ରତ୍ୟେକ ମାଂସପେଶୀ, ଏପରି କି, ପ୍ରତ୍ୟେକ ଶୋଣିତବିନ୍ଦୁ ପର୍ଯ୍ୟନ୍ତ 'ମୁଁ ସେହି', 'ମୁଁ ସେହି' ଏହି ଭାବରେ ପୂର୍ଣ୍ଣ ନ ହୋଇଛି, ସେପର୍ଯ୍ୟନ୍ତ କର୍ଣ୍ଣ ଭିତରଦେଇ ସେହି ତତ୍ତ୍ୱ କ୍ରମାଗତ ଭିତରେ ପ୍ରବେଶ କରାଇବାକୁ ହେବ । ଏପରିକି, ମୃତ୍ୟୁର ସମ୍ମୁଖୀନ ହୋଇ ମଧ୍ୟ କହନ୍ତୁ—'ମୁଁ ସେହି' । ଭାରତରେ ଜଣେ ସନ୍ନ୍ୟାସୀ ଥିଲେ—ସେ 'ଶିବୋଽହଂ ଶିବୋଽହଂ' ଆବୃତ୍ତି କରୁଥିଲେ । ଦିନେ ଗୋଟାଏ ବ୍ୟାଘ୍ର ଆସି ତାଙ୍କ ଉପରକୁ ଡେଇଁ ପଡ଼ିଲା ଓ ତାଙ୍କୁ ଟାଣି ନେଇଯାଇ ମାରିଦେଲା । ଯେପର୍ଯ୍ୟନ୍ତ ସନ୍ନ୍ୟାସୀ ଜୀବିତ ଥିଲେ, ସେପର୍ଯ୍ୟନ୍ତ 'ଶିବୋଽହଂ ଶିବୋଽହଂ' ଧ୍ୱନି ଶୁଣାଯାଉଥିଲା । ମୃତ୍ୟୁର ଦ୍ୱାରରେ, ଘୋରତର ବିପଦରେ, ରଣକ୍ଷେତ୍ରରେ, ସମୁଦ୍ରତଳେ, ଉଚ୍ଚତମ ପର୍ବତଶିଖରରେ, ଗଭୀରତମ ଅରଣ୍ୟରେ, ଯେଉଁଠି ହେଉନା କାହିଁକି, ସର୍ବଦା ଆପଣ ମନେ ମନେ କହନ୍ତୁ—'ମୁଁ ସେହି, ମୁଁ ସେହି' । ଦିନରାତି କହୁଥାଆନ୍ତୁ—'ମୁଁ ସେହି' । ଏହା ଶ୍ରେଷ୍ଠତମ ତେଜର ପରିଚୟ, ଏହା ହିଁ ଧର୍ମ ।

'ଦୁର୍ବଳ ବ୍ୟକ୍ତି କେତେବେଳେ ହେଲେ ଆତ୍ମାକୁ ଲାଭ କରିପାରେ ନାହିଁ ।'** ତେଣୁ

* ଯତ୍ର ନାନ୍ୟତ୍ ପଶ୍ୟତି ନାନ୍ୟଚ୍ଛୃଣୋତି ନାନ୍ୟଦ୍ ବିଜାନାତି ସ ଭୂମା ।
ଅଥ ଯତ୍ରାନ୍ୟତ୍ ପଶ୍ୟତ୍ୟନ୍ୟଚ୍ଛୃଣୋତ୍ୟନ୍ୟଦ୍ୱିଜାନାତି ତଦଲ୍ପମ୍ ।
—ଛାନ୍ଦୋଗ୍ୟୋପନିଷଦ୍, ୭।୨୪

** ନାୟମାତ୍ମା ବଲହୀନେନ ଲଭ୍ୟଃ ।—ମୁଣ୍ଡକୋପନିଷଦ୍, ୩।୨।୪

କେତେବେଳେ କହିବେ ନାହିଁ, 'ହେ ପ୍ରଭୋ ମୁଁ ଅତି ଅଧମ ପାପୀ' । ଆପଣଙ୍କୁ କିଏ ସାହାଯ୍ୟ କରିବ ? ଆପଣ ଜଗତର ସାହାଯ୍ୟକର୍ତ୍ତା—ଆପଣଙ୍କୁ ପୁଣି ଏ ଜଗତରେ କିଏ ସାହାଯ୍ୟ କରିପାରିବ ? ଆପଣଙ୍କୁ ସାହାଯ୍ୟ କରିବାକୁ କେଉଁ ମାନବ, କେଉଁ ଦେବତା ବା କେଉଁ ଦୈତ୍ୟ କ୍ଷମ ? ଆପଣଙ୍କ ଉପରେ କାହାର ଶକ୍ତି ଖାଟିବ ? ଆପଣ ହିଁ ଜଗତର ଈଶ୍ୱର—ଆପଣ ପୁଣି କେଉଁଠାରେ ସାହାଯ୍ୟ ଅନ୍ୱେଷଣ କରିବେ ?

ଯାହା କିଛି ସାହାଯ୍ୟ ପାଇଛନ୍ତି, ଆପଣ ନିଜ ଛଡ଼ା ଆଉ କାହାଠାରୁ ପାଇଛନ୍ତି ? ଆପଣ ପ୍ରାର୍ଥନା କରି ଯାହା ଉତ୍ତର ପାଇଛନ୍ତି, ଅଜ୍ଞାନତାବଶତଃ ଆପଣ ମନେ କରିଛନ୍ତି, ଅନ୍ୟ କୌଣସି ପୁରୁଷ ତାହାର ଉତ୍ତର ଦେଇଛି; କିନ୍ତୁ ଅଜ୍ଞାତସାରରେ ଆପଣ ନିଜେ ହିଁ ସେହି ପ୍ରାର୍ଥନାର ଉତ୍ତର ଦେଇଛନ୍ତି । ଆପଣଙ୍କ ନିକଟରୁ ସାହାଯ୍ୟ ଆସିଥିଲା, ଆଉ ଆପଣ ଅତି ଆଗ୍ରହ ସହିତ କଳ୍ପନା କରି ନେଇଛନ୍ତି ଯେ, ଅନ୍ୟ କିଏ ଜଣେ ଆପଣଙ୍କ ପାଖକୁ ସାହାଯ୍ୟ ପ୍ରେରଣ କରିଛି । ଆପଣଙ୍କ ବାହାରେ ଆପଣଙ୍କ ସାହାଯ୍ୟକର୍ତ୍ତା ଆଉ କେହି ନାହିଁ । ଆପଣ ହିଁ ଜଗତର ସ୍ରଷ୍ଟା । ଏଣ୍ଡିପୋକ ଭଳି ଆପଣ ହିଁ ଆପଣଙ୍କ ଚାରିପାଖେ ଖୋଷା ତିଆରି କରିଛନ୍ତି । ଆପଣଙ୍କୁ କିଏ ଉଦ୍ଧାର କରିବ ? ଆପଣଙ୍କର ସେହି ଖୋଷାଟି କାଟି ଫିଙ୍ଗି ଦେଇ ସୁନ୍ଦର ପ୍ରଜାପତିରୂପେ ମୁକ୍ତ ଆତ୍ମା-ରୂପେ ବାହାରିକୁ ଚାଲିଆସନ୍ତୁ । ସେତିକିବେଳେ—କେବଳ ସେତିକିବେଳେ—ଆପଣ ସତ୍ୟ ଦର୍ଶନ କରିବେ । ସର୍ବଦା ଆପଣ ମନକୁ କହୁଥାଆନ୍ତୁ, 'ମୁଁ ସେହି' । ଏହି ବାକ୍ୟଗୁଡ଼ିକ ଆପଣଙ୍କ ମନର ଅପବିତ୍ରତାରୂପକ ଆବର୍ଜନା ଗୁଡ଼ିକୁ ପୋଡ଼ି ପକାଇବ, ଆପଣଙ୍କ ଭିତରେ ପୂର୍ବରୁ ଯେଉଁ ମହାଶକ୍ତି ଅବସ୍ଥିତ, ତାହା ପ୍ରକାଶ କରିଦେବ, ଯେଉଁଥିରେ ଆପଣଙ୍କ ହୃଦୟରେ ଯେ ଅନନ୍ତ ଶକ୍ତି ସୁପ୍ତଭାବେ ରହିଛି, ତାହାକୁ ଜାଗ୍ରତ କରିଦେବ । ସବୁବେଳେ ସତ୍ୟ—କେବଳମାତ୍ର ସତ୍ୟ ଶ୍ରବଣ କରି ଏହି ମହାଶକ୍ତିକୁ ଉଦ୍‌ବୋଧନ କରିବାକୁ ହେବ । ଯେଉଁଠାରେ ଦୁର୍ବଳତାର ଚିନ୍ତା ବିଦ୍ୟମାନ, ସେହି ସ୍ଥାନ ଆଡ଼କୁ ଆକୃଷ୍ଟ ହେବେ ନାହିଁ । ଯଦି ଜ୍ଞାନୀ ହେବାକୁ ଚାହାଁନ୍ତି, ସର୍ବପ୍ରକାର ଦୁର୍ବଳତା ପରିହାର କରନ୍ତୁ ।

ସାଧନ ଆରମ୍ଭ କରିବା ପୂର୍ବରୁ ମନରେ ଯେତେପ୍ରକାର ସନ୍ଦେହ ଆସିପାରେ, ସେସବୁ ଦୂର କରି ଦିଅନ୍ତୁ । ଯୁକ୍ତିତର୍କ ବିଚାର ଯେତେଦୂର କରିପାରନ୍ତି, କରନ୍ତୁ । ତା' ପରେ ଯେତେବେଳେ ମନ ଭିତରେ ସ୍ଥିର ସିଦ୍ଧାନ୍ତ କରିବେ ଯେ, ଏହା ହିଁ କେବଳ ମାତ୍ର ସତ୍ୟ—ଅନ୍ୟ କିଛି ନୁହେଁ, ସେତେବେଳେ ଆଉ ତର୍କ କରିବେ ନାହିଁ; ସେତେବେଳେ ମୁହଁ ବନ୍ଦ କରନ୍ତୁ । ସେତେବେଳେ ଆଉ ଯୁକ୍ତିତର୍କ ଶୁଣନ୍ତୁ ନାହିଁ, ନିଜେ ମଧ୍ୟ ତର୍କ କରନ୍ତୁ ନାହିଁ । ଆଉ ଯୁକ୍ତିତର୍କର ପ୍ରୟୋଜନ କଅଣ ? ଆପଣ ତ ବିଚାର କରି ତୃପ୍ତିଲାଭ କରିଛନ୍ତି, ଆପଣ ତ ସମସ୍ୟାର ସିଦ୍ଧାନ୍ତ କରିଛନ୍ତି, ତେବେ ଆଉ କଅଣ ବାକି ରହିଲା ? ବର୍ତ୍ତମାନ ସତ୍ୟ ସହିତ ସାକ୍ଷାତ୍ କରିବାକୁ ହେବ । ଅତଏବ ବୃଥା-ତର୍କରେ ବା ଅମୂଲ୍ୟ କାଳହରଣରେ କି ଫଳ ? ଏଣିକି ସେହି ସତ୍ୟକୁ ଧ୍ୟାନ କରିବାକୁ ହେବ, ଆଉ ଯେଉଁ ଚିନ୍ତା ଆପଣଙ୍କୁ ତେଜସ୍ୱୀ କରେ, ତାହା ଗ୍ରହଣ କରିବାକୁ ହେବ ଏବଂ ଯାହା

ଦୁର୍ବଳ କରେ, ତାହାକୁ ପରିତ୍ୟାଗ କରିବାକୁ ହେବ । ଭକ୍ତ ମୂର୍ତ୍ତି ପ୍ରତିମାଦି ଏବଂ ଈଶ୍ୱରଙ୍କ ଧ୍ୟାନ କରନ୍ତି । ଏହା ହିଁ ସ୍ୱାଭାବିକ ସାଧନ-ପ୍ରଣାଳୀ, କିନ୍ତୁ ଏହାଦ୍ୱାରା ଅତି ମୃଦୁଗତିରେ ଅଗ୍ରସର ହେବାକୁ ହୁଏ । ଯୋଗୀମାନେ ତାଙ୍କ ଦେହର ଅଭ୍ୟନ୍ତରସ୍ଥ ବିଭିନ୍ନ କେନ୍ଦ୍ର ବା ଚକ୍ର ଉପରେ ଧ୍ୟାନ କରନ୍ତି ଓ ମନୋମଧ୍ୟସ୍ଥ ଶକ୍ତିସମୂହକୁ ପରିଚାଳନା କରନ୍ତି । ଜ୍ଞାନୀ କହନ୍ତି—ମନର ଅସ୍ତିତ୍ୱ ନାହିଁ, ଦେହର ମଧ୍ୟ ନାହିଁ । ଏହି ଦେହ ଓ ମନର ଚିନ୍ତାକୁ ଦୂର କରିଦେବାକୁ ହେବ, ଅତଏବ ସେମାନଙ୍କର ଚିନ୍ତା କରିବା ଅଜ୍ଞାନୋଚିତ କାର୍ଯ୍ୟ । ତାହା ଯେପରି ଗୋଟିଏ ରୋଗ ଆଣି ଆଉ ଗୋଟିଏ ରୋଗକୁ ଆରୋଗ୍ୟ କରିବା ଭଳି, ଅତଏବ ଜ୍ଞାନୀଙ୍କର ଧ୍ୟାନ ହିଁ ସର୍ବାପେକ୍ଷା କଠିନ—'ନେତି ନେତି'; ସେ ସକଳ ବସ୍ତୁର ଅସ୍ତିତ୍ୱ ଅସ୍ୱୀକାର କରନ୍ତି, ଆଉ ଯାହା ଅବଶିଷ୍ଟ ରହେ, ତାହା ଆତ୍ମା । ଏହା ହିଁ ସର୍ବାପେକ୍ଷା ଅଧିକ ବିଶ୍ଳେଷଣାତ୍ମକ (ବିଲେମ) ସାଧନ । ଜ୍ଞାନୀ କେବଳମାତ୍ର ବିଶ୍ଳେଷଣ ବଳରେ ଜଗତକୁ ଆତ୍ମାଠାରୁ ବିଚ୍ଛିନ୍ନ କରିବାକୁ ଚାହାନ୍ତି । 'ମୁଁ ଜ୍ଞାନୀ' ଏ କଥା କହିବା ଖୁବ୍ ସହଜ; କିନ୍ତୁ ଯଥାର୍ଥ ଜ୍ଞାନୀ ହେବା ଅତି କଠିନ । ବେଦରେ ଅଛି—

ପଥ ଅତି ଦୀର୍ଘ, ଯେପରି ଶାଣିତ କ୍ଷୁରଧାର ଉପର ଦେଇ ଯାତ୍ରା—କିନ୍ତୁ ନିରାଶ ହୁଅ ନାହିଁ । ଉଠ, ଜାଗ, ଯେତେଦିନ ପର୍ଯ୍ୟନ୍ତ ସେହି ଚରମ ଲକ୍ଷ୍ୟରେ ନ ପହଞ୍ଚିଛ, ସେତେଦିନ ପର୍ଯ୍ୟନ୍ତ କ୍ଷାନ୍ତ ହୁଅ ନାହିଁ ।*

ଅତଏବ ଜ୍ଞାନୀର ଧ୍ୟାନ କି ପ୍ରକାର ହେଲା ? ଜ୍ଞାନୀ ଦେହ-ମନବିଷୟକ ସର୍ବପ୍ରକାର ଚିନ୍ତାକୁ ଅତିକ୍ରମ କରିବାକୁ ଚାହାନ୍ତି । ସେ ଯେ ଦେହ, ଏହି ଧାରଣାକୁ ଦୂର କରି ଦେବାକୁ ଚାହାନ୍ତି । ଦୃଷ୍ଟାନ୍ତସ୍ୱରୂପ ଦେଖନ୍ତୁ, ଯେତେବେଳେ ମୁଁ କହେ, 'ମୁଁ ଅମୁକର ସ୍ୱାମୀ', ତତ୍କ୍ଷଣାତ୍ ଦେହର ଭାବ ଆସିଯାଏ । ତେବେ କଅଣ କରିବାକୁ ହେବ ? ମନ ଉପରେ ବଳପୂର୍ବକ ଆଘାତ କରି କହିବାକୁ ହେବ, 'ମୁଁ ଦେହ ନୁହେଁ, ମୁଁ ଆତ୍ମା' । ରୋଗ ଆସୁ ଅଥବା ଅତି ଭୟାବହ ଆକାରରେ ମୃତ୍ୟୁ ଆସି ଉପସ୍ଥିତ ହେଉ, କିଏ ଗ୍ରାହ୍ୟ କରିବ ? ମୁଁ ଦେହ ନୁହେଁ, ଦେହକୁ ସୁନ୍ଦର ରଖିବାର ଚେଷ୍ଟା କାହିଁକି ? ଏହି ମାୟା, ଏହି ଭ୍ରାନ୍ତି—ଆଉଥରେ ଭୋଗ କରିବା ନିମନ୍ତେ ? ଏହି ଦାସତ୍ୱ ବଜାୟରଖିବା ନିମନ୍ତେ ? ଦେହ ଯାଉ, ମୁଁ ଦେହ ନୁହେଁ । ଏହା ହିଁ ଜ୍ଞାନୀର ସାଧନପ୍ରଣାଳୀ । ଭକ୍ତ କହନ୍ତି, 'ପ୍ରଭୁ ମୋତେ ଏହି ଜୀବନସମୁଦ୍ର ସହଜରେ ଉତ୍ତୀର୍ଣ୍ଣ ହେବା ଲାଗି ଏହି ଦେହ ଦେଇଛନ୍ତି, ଅତଏବ ଯେତେଦିନ ପର୍ଯ୍ୟନ୍ତ ଯାତ୍ରା ଶେଷ ନ ହୁଏ, ସେତେଦିନ ଏହାକୁ ଯତ୍ନପୂର୍ବକ ରକ୍ଷା କରିବାକୁ ହେବ ।' ଯୋଗୀ କହନ୍ତି, 'ମୋତେ ଦେହର ଯତ୍ନ ଅବଶ୍ୟ କରିବାକୁ ହେବ, ଯାହାଦ୍ୱାରା ମୁଁ ଧୀରେ ଧୀରେ ସାଧନପଥରେ ଅଗ୍ରସର ହୋଇ ପରିଣାମରେ ମୁକ୍ତି-ଲାଭ କରିପାରିବି ।' ଜ୍ଞାନୀ ମନେକରନ୍ତି, 'ମୁଁ ଆଉ ବିଳମ୍ବ କରିପାରିବି ନାହିଁ । ମୁଁ ଏହି ମୁହୂର୍ତ୍ତରେ ହିଁ ଚରମ ଲକ୍ଷ୍ୟରେ ପହଞ୍ଚିବି ।' ସେ କହନ୍ତି, 'ମୁଁ ନିତ୍ୟମୁକ୍ତ, ମୁଁ କେବେ-

* ମୂଳମନ୍ତ୍ର : ଉତ୍ତିଷ୍ଠତ ଜାଗ୍ରତ ପ୍ରାପ୍ୟ ବରାନ୍ ନିବୋଧତ । କ୍ଷୁରସ୍ୟ ଧାରା ନିଶିତା ଦୁରତ୍ୟୟା ଦୁର୍ଗଂ ପଥସ୍ତତ୍ କବୟୋ ବଦନ୍ତି ॥—କଠୋପନିଷଦ୍, ୧।୩।୧୪

ବେଳେ ହେଲେ ବଦ୍ଧ ନୁହେଁ; ମୁଁ ଅନନ୍ତକାଳ ଧରି ଏହି ଜଗତର ଈଶ୍ୱର । ମୋତେ ପୁଣି ପୂର୍ଣ୍ଣ କରିବ କିଏ ? ମୁଁ ନିତ୍ୟ ପୂର୍ଣ୍ଣସ୍ୱରୂପ ।' ଯେତେବେଳେ କୌଣସି ମାନବ ସ୍ୱୟଂ ପୂର୍ଣ୍ଣତାପ୍ରାପ୍ତ ହୁଏ, ସେ ଅନ୍ୟ ମଧ୍ୟରେ ପୂର୍ଣ୍ଣତା ଦେଖିଥାଏ । ଲୋକେ ଯେତେବେଳେ ଅନ୍ୟଠାରେ ଅପୂର୍ଣ୍ଣତା ଦେଖନ୍ତି, ସେତେବେଳେ ତାଙ୍କ ନିଜ ମନର ଛାପ ତାହା ଉପରେ ପଡ଼ିବାରୁ ସେ ସେପରି ଦେଖନ୍ତି, ବୁଝିବାକୁ ହେବ । ତାଙ୍କ ନିଜ ଭିତରେ ଯଦି ଅପୂର୍ଣ୍ଣତା ନ ଥାଏ, ତେବେ ସେ କିପରି ଅପୂର୍ଣ୍ଣତା ଦେଖିବେ ? ଅତଏବ ଜ୍ଞାନୀ ପୂର୍ଣ୍ଣତା ଅପୂର୍ଣ୍ଣତା କିଛି ଖାତିର୍ କରନ୍ତି ନାହିଁ । ତାଙ୍କ ପକ୍ଷରେ ଏ ସବୁର କିଛି ଅସ୍ତିତ୍ୱ ନାହିଁ । ଯେତେବେଳେ ସେ ମୁକ୍ତ ହୁଅନ୍ତି ସେ ଆଉ ଭଲମନ୍ଦ ଦେଖନ୍ତି ନାହିଁ । ଭଲମନ୍ଦ ଦେଖେ କିଏ ? —ଯାହାର ନିଜ ଭିତରେ ଭଲମନ୍ଦ ଅଛି । ଅନ୍ୟର ଦେହକୁ ଦେଖେ କିଏ ? ଯେ ନିଜକୁ ଦେହ ମନେ କରେ, ଯେଉଁ ମୁହୂର୍ତ୍ତରେ ଆପଣ ଦେହଭାବରହିତ ହେବେ, ସେ ମୁହୂର୍ତ୍ତରୁ ଆପଣ ଆଉ ଜଗତ୍ ଦେଖିପାରିବେ ନାହିଁ; ତାହା ଚିରଦିନ ପାଇଁ ଅନ୍ତର୍ହିତ ହୋଇଯିବ । ଜ୍ଞାନୀ କେବଳ ବିଚାରଜନିତ ସିଦ୍ଧାନ୍ତ ବଳରେ ଏହି ବନ୍ଧନରୁ ନିଜକୁ ବିଚ୍ଛିନ୍ନ କରିବାକୁ ଚେଷ୍ଟା କରନ୍ତି । ଏହା ହିଁ 'ନେତି, ନେତି' ମାର୍ଗ ।

## ଆତ୍ମାର ଏକତ୍ୱ

ପୂର୍ବ ବକ୍ତୃତାରେ ଯେଉଁ ସିଦ୍ଧାନ୍ତରେ ଉପନୀତ ହୋଇଛେ, ତାହା ଦୃଷ୍ଟାନ୍ତଦ୍ୱାରା ଦୃଢ଼ତର କରିବା ପାଇଁ ମୁଁ ଗୋଟିଏ ଉପନିଷଦ୍‌ରୁ* କିଛି ଅଂଶ ପାଠ କରି ଶୁଣାଇବି । ତହିଁରୁ ଦେଖିବେ, ଅତି ପ୍ରାଚୀନ କାଳରୁ ଭାରତରେ କିପରି ଏହି ସକଳ ତତ୍ତ୍ୱ ଶିକ୍ଷା ଦିଆଯାଉଥିଲା ।

ଯାଜ୍ଞବଲ୍‌କ୍ୟ ନାମକ ଜଣେ ମହର୍ଷି ଥିଲେ । ଆପଣମାନେ ଅବଶ୍ୟ ଜାଣିଛନ୍ତି, ଭାରତରେ ଏପରି ନିୟମ ଥିଲା ଯେ, ବୃଦ୍ଧାବସ୍ଥା ପ୍ରାପ୍ତ ହେଲେ ସମସ୍ତଙ୍କୁ ସଂସାର ତ୍ୟାଗ କରିବାକୁ ହେବ । ସୁତରାଂ ଯାଜ୍ଞବଲ୍‌କ୍ୟ ତାଙ୍କର ସନ୍ନ୍ୟାସ ଗ୍ରହଣର ସମୟ ଉପସ୍ଥିତ ହେବାରୁ ତାଙ୍କର ସ୍ତ୍ରୀଙ୍କୁ କହିଲେ —'ପ୍ରିୟେ ମୈତ୍ରେୟୀ, ମୁଁ ସଂସାର ତ୍ୟାଗକରି ଚାଲିଲି, ଏହି ମୋର ଯାହା କିଛି ଅର୍ଥ ଧନସମ୍ପତ୍ତି ବୁଝି ନିଅ ।'

ମୈତ୍ରେୟୀ କହିଲେ, 'ଭଗବନ୍ ! ଯଦି ମୁଁ ଧନରତ୍ନପୂର୍ଣ୍ଣ ଏହି ସମୁଦାୟ ପୃଥିବୀ ପ୍ରାପ୍ତ ହୁଏ ତେବେ ତାହାଦ୍ୱାରା କଅଣ ମୁଁ ଅମୃତତ୍ୱ ପ୍ରାପ୍ତ ହେବି ?'

---

* ବୃହଦାରଣ୍ୟକ ଉପନିଷଦ୍‌ର ୨ୟ ଅଧ୍ୟାୟର, ୪ର୍ଥ ବ୍ରାହ୍ମଣ ଓ ୪ର୍ଥ ଅଧ୍ୟାୟର ୫ମ ବ୍ରାହ୍ମଣ ଦ୍ରଷ୍ଟବ୍ୟ ।

ଯାଜ୍ଞବଲ୍‌କ୍ୟ କହିଲେ, 'ନା, ତାହା ହୋଇପାରିବ ନାହିଁ । ଧନୀ ଲୋକମାନେ ଯେଉଁଭଳି ଜୀବନ ଧାରଣ କରନ୍ତି, ତୁମର ଜୀବନ ସେଭଳି ହେବ, କାରଣ ଧନଦ୍ୱାରା କଦାପି ଅମୃତତ୍ୱ ଲାଭ ହୁଏ ନାହିଁ ।'

ମୈତ୍ରେୟୀ କହିଲେ, 'ଯାହାଦ୍ୱାରା ମୁଁ ଅମୃତତ୍ୱ ପ୍ରାପ୍ତ ହୋଇପାରେ, ତାହା ଲାଭ କରିବାପାଇଁ ମୋତେ କ'ଣ କରିବାକୁ ହେବ ? ଆପଣଙ୍କୁ ଯଦି ତାହା ଜଣାଥାଏ ତାହା ମୋତେ କହନ୍ତୁ ।'

ଯାଜ୍ଞବଲ୍‌କ୍ୟ କହିଲେ, 'ତୁମେ ତ ବରାବର ମୋର ପ୍ରିୟା ଥିଲ, ଆଉ ଏବେ ଏହି ପ୍ରଶ୍ନ କରିବାରୁ ତୁମେ ପ୍ରିୟତର ହେଲ । ଆସ, ଆସନ ଗ୍ରହଣ କର, ମୁଁ ତୁମର ଜିଜ୍ଞାସିତ ତତ୍ତ୍ୱ ବ୍ୟାଖ୍ୟା କରିବି । ତୁମେ ତାହା ଶୁଣି ସେ ବିଷୟରେ ଧ୍ୟାନ କର ।'

ଯାଜ୍ଞବଲ୍‌କ୍ୟ କହିବାକୁ ଲାଗିଲେ—

'ହେ ମୈତ୍ରେୟୀ, ସ୍ତ୍ରୀ ଯେ ସ୍ୱାମୀକୁ ଭଲ ପାଏ, ତାହା ସ୍ୱାମୀ ଲାଗି ନୁହେଁ, ବରଂ ଆତ୍ମା ନିମନ୍ତେ ହିଁ ସ୍ତ୍ରୀ ସ୍ୱାମୀକୁ ଭଲ ପାଏ; କାରଣ ସେ ଆତ୍ମାକୁ ଭଲ ପାଇଥାଏ । ସ୍ତ୍ରୀକୁ ସ୍ତ୍ରୀ ଲାଗି କେହି ଭଲ ପାଏ ନାହିଁ, ଯେହେତୁ ସେ ଆତ୍ମାକୁ ଭଲ ପାଏ, ସେହିହେତୁ ସ୍ତ୍ରୀକୁ ଭଲ ପାଇଥାଏ । କେହିହେଲେ ସନ୍ତାନମାନଙ୍କୁ ସେମାନଙ୍କ ଲାଗି ଭଲ ପାଏ ନାହିଁ, ଯେହେତୁ ସେ ଆତ୍ମାକୁ ଭଲପାଏ, ସେହିହେତୁ ସନ୍ତାନମାନଙ୍କୁ ଭଲ ପାଇଥାଏ । କେହିହେଲେ ଅର୍ଥଲାଗି ଅର୍ଥକୁ ଭଲପାଏ ନାହିଁ, କିନ୍ତୁ ଯେହେତୁ ଲୋକେ ଆତ୍ମାକୁ ଭଲ ପାଆନ୍ତି, ସେହିହେତୁ ଅର୍ଥକୁ ଭଲ ପାଇଥାଆନ୍ତି । ବ୍ରାହ୍ମଣଙ୍କୁ ଯେ ଲୋକେ ଭଲ ପାଆନ୍ତି, ତାହା ସେହି ବ୍ରାହ୍ମଣ ଲାଗି ନୁହେଁ, କିନ୍ତୁ ଆତ୍ମାକୁ ଭଲ ପାଆନ୍ତି ବୋଲି ହିଁ ବ୍ରାହ୍ମଣଙ୍କୁ ଲୋକେ ଭଲ ପାଇଥାଆନ୍ତି । କ୍ଷତ୍ରିୟଙ୍କୁ ମଧ୍ୟ ଲୋକେ କ୍ଷତ୍ରିୟ ଯୋଗୁଁ ଭଲ ପାଆନ୍ତି ନାହିଁ, ଆତ୍ମାକୁ ଭଲ ପାଆନ୍ତି ବୋଲି ଲୋକେ କ୍ଷତ୍ରିୟଙ୍କୁ ଭଲ ପାଇଥାଆନ୍ତି । ଏହି ଜଗତ୍‌କୁ ମଧ୍ୟ ଲୋକେ ଯେ ଭଲ ପାଆନ୍ତି, ତାହା ଜଗତ ଲାଗି ନୁହେଁ, ଯେହେତୁ ସେମାନେ ଆତ୍ମାକୁ ଭଲ ପାଆନ୍ତି, ସେହେତୁ ଜଗତ୍ ତାଙ୍କର ପ୍ରିୟ । ଦେବତାମାନଙ୍କୁ ଯେ ଲୋକେ ଭଲପାଆନ୍ତି, ତାହା ସେହି ଦେବତାମାନଙ୍କ ଲାଗି ନୁହେଁ, ଯେହେତୁ ସେ ଆତ୍ମାକୁ ଭଲ ପାଆନ୍ତି, ସେହିହେତୁ ଦେବଗଣ ତାଙ୍କର ପ୍ରିୟ । ଅଧିକ କ'ଣ କହିବା—କୌଣସି ବସ୍ତୁକୁ ଯେ ଲୋକେ ଭଲ ପାଆନ୍ତି, ତାହା ସେହି ବସ୍ତୁ ଲାଗି ନୁହେଁ, ବରଂ ତନ୍ମଧ୍ୟରେ ଯେ ଆତ୍ମା ବିଦ୍ୟମାନ ତାହା ନିମନ୍ତେ ହିଁ ସେ ସେହି ବସ୍ତୁକୁ ଭଲ ପାଆନ୍ତି । ଅତଏବ ଏହି ଆତ୍ମା ବିଷୟରେ ଶ୍ରବଣ କରିବାକୁ ହେବ, ତାହା ପରେ ମନନ ଅର୍ଥାତ୍ ବିଚାର କରିବାକୁ ହେବ, ତାହା ପରେ ନିଦିଧ୍ୟାସନ ଅର୍ଥାତ୍ ତାହାର ଧ୍ୟାନ କରିବାକୁ ହେବ । ହେ ମୈତ୍ରେୟୀ, ଆତ୍ମାର ଶ୍ରବଣ, ଆତ୍ମାର ଦର୍ଶନ, ଆତ୍ମାର ସାକ୍ଷାତ୍‌କାରଦ୍ୱାରା ଏହିସବୁ ଜ୍ଞାତ ହୁଏ ।'

ଏହି ଉପଦେଶର ତାତ୍ପର୍ଯ୍ୟ କ'ଣ ? ଏହା ଏକ ଅଦ୍ଭୁତ ଧରଣର ଦର୍ଶନ । ଆମେ ଜଗତ୍ ବୋଲି ଯାହା କିଛି ବୁଝୁ, ସେହି ସବୁର ମଧ୍ୟଦେଇ ଆତ୍ମା ପ୍ରକାଶ ପାଉଛନ୍ତି ।

ଲୋକେ କହୁଥାଆନ୍ତି, ସକଳ ପ୍ରକାର ପ୍ରେମ ହେଉଛି ସ୍ୱାର୍ଥପରତା—ସ୍ୱାର୍ଥପରତାର ଯେତେଦୂର ନିମ୍ନତମ ଅର୍ଥ ହୋଇପାରେ, ସେହି ଅର୍ଥରେ ସକଳ ପ୍ରେମ ହିଁ ସ୍ୱାର୍ଥପରତା-ପ୍ରସୂତ; ଯେହେତୁ ମୁଁ ମୋତେ ଭଲ ପାଏ, ସେହିହେତୁ ମୁଁ ଅପରକୁ ଭଲ ପାଇଥାଏ । ବର୍ତ୍ତମାନ ସମୟରେ ମଧ୍ୟ ଅନେକ ଦାର୍ଶନିକ ଅଛନ୍ତି, ଯେଉଁମାନଙ୍କ ମତ ଏହି ଯେ, 'ସ୍ୱାର୍ଥ ହିଁ ଜଗତରେ ସକଳ କାର୍ଯ୍ୟର ଏକମାତ୍ର ପ୍ରେରଣାଦାୟିନୀ ଶକ୍ତି ।' ଏକଥା ଗୋଟିଏ ଦିଗରୁ ସତ୍ୟ, ପୁଣି ଅନ୍ୟ ଦିଗରୁ ଭୁଲ । ଆମମାନଙ୍କର ଏହି 'ମୁଁ' ସେହି ପ୍ରକୃତ 'ମୁଁ' ବା ଆତ୍ମାର ଛାୟାମାତ୍ର, ଯେ କି ଆମମାନଙ୍କର ପଶ୍ଚାତ୍ତରେ ରହିଛନ୍ତି । ପୁଣି ସସୀମ ବୋଲି ଏହି କ୍ଷୁଦ୍ର 'ମୁଁ' ପ୍ରତି ଭଲ ପାଇବା ଅନ୍ୟାୟ ଓ ମନ୍ଦ ବୋଲି ବୋଧହୁଏ । ବିଶ୍ୱ-ଆତ୍ମାପ୍ରତି ଯେଉଁ ପ୍ରୀତି ତାହା ସସୀମ ଭାବରେ ଦୃଷ୍ଟ ହେଲେ ମନ୍ଦ ବୋଲି ବୋଧହୁଏ, ସ୍ୱାର୍ଥପରତା ବୋଲି ବୋଧହୁଏ । ଏପରି କି ସ୍ତ୍ରୀ ମଧ୍ୟ ଯେତେବେଳେ ସ୍ୱାମୀଙ୍କୁ ଭଲପାଏ, ସେ ଜାଣୁ ବା ନ ଜାଣୁ, ସେ ସେହି ଆତ୍ମା ଲାଗି ହିଁ ସ୍ୱାମୀଙ୍କୁ ଭଲ ପାଉଛି । ଜଗତରେ ତାହା ସ୍ୱାର୍ଥପରତାରୂପେ ବ୍ୟକ୍ତ ହୋଇଥାଏ ସତ, କିନ୍ତୁ ପ୍ରକୃତପକ୍ଷେ ତାହା ଆତ୍ମପରତା ବା ଆତ୍ମଭାବର କ୍ଷୁଦ୍ର ଅଂଶମାତ୍ର । ଯେତେବେଳେ କେହି କିଛି ଭଲ ପାଏ, ତାହାକୁ ସେହି ଆତ୍ମା ମାଧ୍ୟମରେ ଭଲ ପାଇବାକୁ ହୁଏ ।

ଏହି ଆତ୍ମାକୁ ଜାଣିବାକୁ ହେବ । ଯେଉଁମାନେ ଆତ୍ମାର ସ୍ୱରୂପ ନ ଜାଣି ତାକୁ ଭଲ ପାଆନ୍ତି, ସେମାନଙ୍କର ଭଲ ପାଇବା ହିଁ ସ୍ୱାର୍ଥପରତା । ଯେଉଁମାନେ ଆତ୍ମାକୁ ଜାଣି ତାକୁ ଭଲ ପାଆନ୍ତି, ସେମାନଙ୍କର ଭଲପାଇବାରେ କୌଣସି ପ୍ରକାର ବନ୍ଧନ ନାହିଁ, ସେମାନେ ପରମ ଜ୍ଞାନୀ । କେହିହେଲେ ବ୍ରାହ୍ମଣକୁ ବ୍ରାହ୍ମଣ ବୋଲି ଭଲ ପାଏ ନାହିଁ, କିନ୍ତୁ ବ୍ରାହ୍ମଣ ମାଧ୍ୟମରେ ଯେଉଁ ଆତ୍ମା ପ୍ରକାଶ ପାଉଛି, ସେହି ଆତ୍ମାକୁ ଭଲ ପାଏ ବୋଲି ହିଁ ସେ ବ୍ରାହ୍ମଣକୁ ଭଲ ପାଏ ।

'ବ୍ରାହ୍ମଣ ତାହାକୁ ପରିତ୍ୟାଗ କରନ୍ତି, ଯେ ବ୍ରାହ୍ମଣଙ୍କୁ ଆତ୍ମାଠାରୁ ପୃଥକ୍ ଭାବରେ ଦେଖେ; କ୍ଷତ୍ରିୟ ତାହାକୁ ପରିତ୍ୟାଗ କରନ୍ତି, ଯେ କ୍ଷତ୍ରିୟଙ୍କୁ ଆତ୍ମାଠାରୁ ପୃଥକ୍‌ରୂପେ ଦେଖେ; ଲୋକସମୂହ ବା ଜଗତ୍ ତାକୁ ତ୍ୟାଗ କରେ, ଯେ ଜଗତକୁ ଆତ୍ମାଠାରୁ ପୃଥକ୍ ଦେଖେ; ଦେବତାମାନେ ତାହାକୁ ପରିତ୍ୟାଗ କରନ୍ତି, ଯେ ଦେବତାମାନଙ୍କୁ ଆତ୍ମାଠାରୁ ପୃଥକ୍ ବୋଲି ବିଶ୍ୱାସ କରେ । ସମସ୍ତ ବସ୍ତୁ ହିଁ ତାହାକୁ ପରିତ୍ୟାଗ କରନ୍ତି, ଯେ ସେମାନଙ୍କୁ ଆତ୍ମାଠାରୁ ପୃଥକ୍‌ଭାବରେ ଦର୍ଶନ କରେ । ଏହି ବ୍ରାହ୍ମଣ, ଏହି କ୍ଷତ୍ରିୟ, ଏହି ଲୋକସମୂହ, ଏହି ଦେବଗଣ—ଏପରି କି, ଜଗତରେ ଯାହା କିଛି ଅଛି, ସବୁ ହିଁ ଆତ୍ମା ।'

ଏହିପରି ଯାଜ୍ଞବଲ୍କ୍ୟ ଭଲ ପାଇବା ଅର୍ଥରେ ସେ କ'ଣ ଲକ୍ଷ୍ୟ କରିଥିଲେ, ତାହା ବୁଝାଇଲେ । ଯେତେବେଳେ ଏହି ପ୍ରେମକୁ ଆମେ ଏକ ବିଶେଷ ବସ୍ତୁ କିମ୍ବା ବ୍ୟକ୍ତିରେ ସୀମାବଦ୍ଧ କରୁ, ସେତେବେଳେ ହିଁ ସବୁ ଗୋଳମାଳ । ମନେ କରନ୍ତୁ, ମୁଁ କୌଣସି ସ୍ତ୍ରୀ-ଲୋକକୁ ଭଲ ପାଉଛି; ମୁଁ ଯଦି ସେହି ସ୍ତ୍ରୀ-ଲୋକକୁ ଆତ୍ମାଠାରୁ ପୃଥକ୍ ଦେଖେ, ବିଶେଷରୂପରେ ଦେଖେ, ତେବେ ତାହା ଶାଶ୍ୱତ ପ୍ରେମ ହେଲା ନାହିଁ, ତାହା

ସ୍ୱାର୍ଥପର ଭଲପାଇବା ହୋଇଗଲା, ଆଉ ଦୁଃଖ ହିଁ ତାହାର ପରିଣାମ; କିନ୍ତୁ ମୁଁ ଯେତେବେଳେ ସେହି ସ୍ତ୍ରୀଲୋକଟିକୁ ଆତ୍ମାରୂପେ ଦେଖେ, ସେତେବେଳେ ସେହି ଭଲପାଇବା ଯଥାର୍ଥ ପ୍ରେମ ହେଲା, ତାହାର କୌଣସି ବିନାଶ ନାହିଁ । ଏହିଭଳି ଯେତେବେଳେ ଆପଣମାନେ ସମଗ୍ର ଜଗତ୍ ଅର୍ଥାତ୍ ଆତ୍ମାଠାରୁ ପୃଥକ୍ କରି ଜଗତର କୌଣସି ଏକ ବସ୍ତୁରେ ଆସକ୍ତ ହୁଅନ୍ତି, ସେତେବେଳେ ସେଥିରେ ପ୍ରତିକ୍ରିୟା ଆସିଥାଏ । ଆତ୍ମା ବ୍ୟତୀତ ଯାହା କିଛି ଆମେ ଭଲ ପାଉ, ତାହାର ଫଳ ଶୋକ ଓ ଦୁଃଖ, କିନ୍ତୁ ଯଦି ଆମେ ସମୁଦାୟ ବସ୍ତୁକୁ ଆତ୍ମାର ଅନ୍ତର୍ଗତ ଭାବି ଓ ଆତ୍ମା-ସ୍ୱରୂପରେ ସମ୍ଭୋଗ କରୁ, ତାହାହେଲେ କୌଣସି କଷ୍ଟ ବା ପ୍ରତିକ୍ରିୟା ଆସିବ ନାହିଁ । ଏହା ହିଁ ପୂର୍ଣ୍ଣ ଆନନ୍ଦ ।

ଏହି ଆଦର୍ଶରେ ଉପନୀତ ହେବାର ଉପାୟ କଅଣ ? ଯାଜ୍ଞବଲ୍କ୍ୟ ସେହି ଅବସ୍ଥା ଲାଭ କରିବାର ପ୍ରଣାଳୀ କହୁଛନ୍ତି । ଏହି ବ୍ରହ୍ମାଣ୍ଡ ଅନନ୍ତ, ଆତ୍ମାକୁ ନ ଜାଣି ଜଗତର ପ୍ରତ୍ୟେକ ବିଶେଷ ବିଶେଷ ବସ୍ତୁ ନେଇ ସେଥିରେ ଆତ୍ମଦୃଷ୍ଟି କରିବ କିପରି ?

'ଯଦି ଦୁନ୍ଦୁଭି ବାଜୁଥାଏ, ଆମେ ତହିଁରୁ ଉତ୍ପନ୍ନ ଶବ୍ଦତରଙ୍ଗଗୁଡ଼ିକୁ ପୃଥକ୍‌ରୂପେ ଗ୍ରହଣ କରିପାରିବା ନାହିଁ, କିନ୍ତୁ ଦୁନ୍ଦୁଭିର ସାଧାରଣ ଧ୍ୱନି ବା ଆଘାତୋତ୍ଥିତ ଧ୍ୱନିସମୂହ ଗୃହୀତ ହେଲେ ସେହି ବିଭିନ୍ନ ଶବ୍ଦଲହରୀ ମଧ୍ୟ ଗୃହୀତ ହୋଇଥାଏ ।'

'ଶଙ୍ଖ ବାଦିତ ହେଲେ ତାହାର ସ୍ୱରଲହରୀ ପୃଥକ୍ ପୃଥକ୍ ଭାବେ ଗ୍ରହଣ କରିପାରୁନାହିଁ, କିନ୍ତୁ ଶଙ୍ଖର ସାଧାରଣ ଧ୍ୱନି ଅଥବା ବିଭିନ୍ନ ରୂପରେ ବାଦିତ ଶବ୍ଦରାଶି ଗୃହୀତ ହେଲେ ସେହି ଶବ୍ଦ-ଲହରୀଗୁଡ଼ିକ ମଧ୍ୟ ଗୃହୀତ ହୁଏ ।'

'ବୀଣା ବାଜୁଥିଲେ ତାହାର ବିଭିନ୍ନ ସ୍ୱର ପୃଥକ୍‌ଭାବେ ଗୃହୀତ ହୁଏ ନାହିଁ, କିନ୍ତୁ ବୀଣାର ସାଧାରଣ ସ୍ୱର ଅଥବା ବିଭିନ୍ନ ରୂପରେ ଉତ୍ଥିତ ସ୍ୱରସମୂହ ଗୃହୀତ ହେଲେ ସେହି ସ୍ୱରସମୂହ ମଧ୍ୟ ଗୃହୀତ ହୁଏ ।'

'ଯେପରି କେହି ଓଦା କାଠକୁ ଜଳାଉଥିଲେ ତହିଁରୁ ନାନାପ୍ରକାର ଧୂମ ଓ ସ୍ଫୁଲିଙ୍ଗ ନିର୍ଗତ ହୁଏ, ସେହିପରି ସେହି ମହାନ୍ ପୁରୁଷଙ୍କଠାରୁ ଋକ୍‌ବେଦ, ଯଜୁର୍ବେଦ, ସାମବେଦ, ଅଥର୍ବାଙ୍ଗିରସ, ଇତିହାସ, ପୁରାଣ, ବିଦ୍ୟା, ଉପନିଷଦ୍, ଶ୍ଳୋକ, ସୂତ୍ର, ଅନୁବ୍ୟାଖ୍ୟା ଓ ବ୍ୟାଖ୍ୟା—ଏହି ସମୁଦାୟ ନିଃଶ୍ୱାସ ଭଳି ବହିର୍ଗତ ହୁଏ । ସମସ୍ତ ହିଁ ତାଙ୍କର ନିଃଶ୍ୱାସ-ସ୍ୱରୂପ ।'

'ଯେପରି ସମସ୍ତ ଜଳର ଏକମାତ୍ର ଆଶ୍ରୟ ସମୁଦ୍ର, ଯେପରି ସମୁଦାୟ ସ୍ପର୍ଶର ତ୍ୱକ୍ ହିଁ ଏକମାତ୍ର ଆଶ୍ରୟ, ଯେପରି ନାସିକା ହିଁ ସମସ୍ତ ଗନ୍ଧର ଏକମାତ୍ର ଆଶ୍ରୟ, ଯେପରି ଜିହ୍ୱା ସମୁଦାୟ ରସାସ୍ୱାଦର ଏକମାତ୍ର ଆଶ୍ରୟ, ଯେପରି ଚକ୍ଷୁ ହିଁ ସମସ୍ତ ରୂପର ଏକମାତ୍ର ଆଶ୍ରୟ, ଯେପରି ସମୁଦାୟ ଶବ୍ଦର କର୍ଣ୍ଣ ହିଁ ଏକମାତ୍ର ଆଶ୍ରୟ, ଯେପରି ମନ ହିଁ ସମସ୍ତ ଚିନ୍ତାର ଏକମାତ୍ର ଆଶ୍ରୟ, ଯେପରି ହୃଦୟ ହିଁ ସମସ୍ତ ଜ୍ଞାନର ଏକମାତ୍ର ଆଶ୍ରୟ, ଯେପରି ହସ୍ତ ହିଁ ସମସ୍ତ କର୍ମର ଏକମାତ୍ର ଆଶ୍ରୟ, ଯେପରି ବାଗିନ୍ଦ୍ରିୟ ହିଁ ସମସ୍ତ ବାକ୍ୟର ଏକମାତ୍ର ଆଶ୍ରୟ, ଯେପରି ସମୁଦ୍ର-ଜଳର ସର୍ବାଂଶରେ ପ୍ରଚୁର ଲବଣ ରହିଛି, ଅଥଚ

ତାହା ଚକ୍ଷୁକୁ ଦେଖାଯାଏ ନାହିଁ, ସେହିଭଳି ହେ ମୈତ୍ରେୟୀ ! ଏହି ଆତ୍ମାକୁ ଚକ୍ଷୁରେ ଦେଖି ହୁଏ ନାହିଁ, କିନ୍ତୁ ସେ ଏହି ଜଗତର ସର୍ବାଂଶରେ ବ୍ୟାପି ରହିଛନ୍ତି । ସେ ବିଜ୍ଞାନ-ଘନ । ସମଗ୍ର ଜଗତ ତାହାଁରୁ ଉତ୍ଥିତ ହୁଏ ଏବଂ ପୁନର୍ବାର ତାହା ଭିତରେ ହିଁ ଲୟ ହୁଏ, କାରଣ ତାଙ୍କ ନିକଟରେ ପହଞ୍ଚିଲେ ଆମେ ଜ୍ଞାନାତୀତ ଅବସ୍ଥାକୁ ଚାଲିଯାଉ ।'

ଏଠାରେ ଆମେ ଏହି ଭାବ ପାଇଲୁ ଯେ, ଆମେ ସମସ୍ତେ ହିଁ ସ୍ଫୁଲିଙ୍ଗାକାରରେ ତାଙ୍କଠାରୁ ବହିର୍ଗତ ହୋଇଛେ ଏବଂ ତାଙ୍କୁ ଜାଣିପାରିଲେ ତାଙ୍କ ନିକଟକୁ ଫେରିଯାଇ ପୁନର୍ବାର ତାଙ୍କ ସହିତ ଏକ ହୋଇଯାଉ ।

ଏହି ଉପଦେଶରେ ମୈତ୍ରେୟୀ ଭୀତ ହୋଇଗଲେ, ଯେପରିକି ସର୍ବତ୍ର ଲୋକେ ହୋଇଥାନ୍ତି । ମୈତ୍ରେୟୀ କହିଲେ, 'ଭଗବନ୍, ଆପଣ ଏଠାରେ ମୋତେ ବିଭ୍ରାନ୍ତ କରିଦେଲେ । ଦେବତା ପ୍ରଭୃତି ସେ ଅବସ୍ଥାରେ ରହିବେ ନାହିଁ, 'ମୁଁ'-ଜ୍ଞାନ ନଷ୍ଟ ହୋଇ-ଯିବ, ଏହା କହି ଆପଣ ମୋର ଭୀତି ଉତ୍ପାଦନ କରିଛନ୍ତି । ମୁଁ ଯେତେବେଳେ ସେହି ଅବସ୍ଥାରେ ପହଞ୍ଚିବି, ସେତେବେଳେ କ'ଣ ମୁଁ ଆତ୍ମାକୁ ଜାଣିପାରିବି ? ମୁଁ ଅହଂଜ୍ଞାନ ହରାଇ ଅଜ୍ଞାନ ଅବସ୍ଥା ପ୍ରାପ୍ତ ହେବି, ଅଥବା ମୁଁ ତାହାଙ୍କୁ ଜାଣିଅଛି, ଏହି ଜ୍ଞାନ ରହିବ ? ସେତେବେଳେ କ'ଣ କାହାକୁ ଜାଣିବାର, କିଛି ଅନୁଭବ କରିବାର, କାହାକୁ ଭଲ ପାଇବାର, କାହାକୁ ଘୃଣା କରିବାର ରହିବ ନାହିଁ ?'

ଯାଜ୍ଞବଲ୍କ୍ୟ କହିଲେ, 'ମୈତ୍ରେୟୀ, ମନେକର ନାହିଁ ଯେ ମୁଁ ମୋହଜନକ କଥା କହୁଛି, ତୁମେ ଭୟ କର ନାହିଁ । ଏହି ଆତ୍ମା ଅବିନାଶୀ, ସେ ସ୍ୱରୂପତଃ ନିତ୍ୟ । ଯେଉଁ ଅବସ୍ଥାରେ 'ଦୁଇ' ରହେ, ଅର୍ଥାତ୍ ଯାହା ଦ୍ୱୈତ ଅବସ୍ଥା, ତାହା ନିମ୍ନତର ଅବସ୍ଥା । ଯେଉଁଠାରେ ଦ୍ୱୈତଭାବ ଥାଏ, ସେଠାରେ ଜଣେ ଅପରକୁ ଘ୍ରାଣ କରେ, ଜଣେ ଅନ୍ୟକୁ ଦର୍ଶନ କରେ, ଜଣେ ଅନ୍ୟକୁ ଶ୍ରବଣ କରେ, ଜଣେ ଅନ୍ୟକୁ ଅଭ୍ୟର୍ଥନା କରେ, ଜଣେ ଅନ୍ୟ ସମ୍ବନ୍ଧରେ ଚିନ୍ତା କରେ, ଜଣେ ଅନ୍ୟକୁ ଜାଣେ, କିନ୍ତୁ ଯେତେବେଳେ ସବୁ କେବଳ ଆତ୍ମା ହୋଇଯାଏ, ସେତେବେଳେ କିଏ କାହାର ଘ୍ରାଣ ନେବ, କିଏ କାହାକୁ ଦେଖିବ, କିଏ କାହାକୁ ଶୁଣିବ, କିଏ କାହାକୁ ଅଭ୍ୟର୍ଥନା କରିବ, କିଏ କାହାକୁ ଜାଣିବ ? ଯାହାଙ୍କଦ୍ୱାରା ଜଣାଯାଏ, ତାଙ୍କୁ କିଏ ଜାଣିପାରିବ ? ଏହି ଆତ୍ମାକୁ କେବଳ 'ନେତି ନେତି' (ଏହା ନୁହେଁ, ଏହା ନୁହେଁ) ଏହିପରି ବର୍ଣ୍ଣନା କରାଯାଇପାରେ । ସେ ଅଚିନ୍ତ୍ୟ, ତାଙ୍କୁ ବୁଦ୍ଧିଦ୍ୱାରା ଧାରଣା କରାଯାଇପାରେ ନାହିଁ । ସେ ଅପରିଣାମୀ, ତାଙ୍କର କେବେହେଲେ କ୍ଷୟ ହୁଏ ନାହିଁ । ସେ ଅନାସକ୍ତ, କେବେହେଲେ ପ୍ରକୃତି ସହିତ ମିଶ୍ରିତ ହୁଅନ୍ତି ନାହିଁ । ସେ ପୂର୍ଣ୍ଣ, ସମୁଦାୟ ସୁଖ-ଦୁଃଖର ଅତୀତ । ବିଜ୍ଞାତାକୁ କିଏ ଜାଣିପାରିବ ? କି ଉପାୟରେ ଆମେ ତାଙ୍କୁ ଜାଣିପାରିବା ? କୌଣସି ଉପାୟରେ ନୁହେଁ । ହେ ମୈତ୍ରେୟୀ, ଏହା ହିଁ ଋଷିମାନଙ୍କର ଚରମ ସିଦ୍ଧାନ୍ତ । ସମୁଦାୟ ଜ୍ଞାନର ଅତୀତ ଅବସ୍ଥାକୁ ଗଲେ ତାଙ୍କୁ ଲାଭ କରାଯାଏ । ସେତେବେଳେ ହିଁ ଅମୃତତ୍ୱ ଲାଭ ହୁଏ ।'

ଏତେଦୂର ପର୍ଯ୍ୟନ୍ତ ଏହି ଭାବ ମିଳିଲା ଯେ, ଏ ସମୁଦାୟ ହିଁ ଏକ ଅନନ୍ତ ପୁରୁଷ

ଏବଂ ତାଙ୍କଠାରେ ଆମର ଯଥାର୍ଥ 'ମୁଁ'ତ୍ୱ—ସେଠାରେ କୌଣସି ଭାଗ ବା ଅଂଶ ନାହିଁ, ଭ୍ରମାତ୍ମକ ନିମ୍ନଭାବ କିଛି ନାହିଁ, ତଥାପି ଏହି କ୍ଷୁଦ୍ର 'ମୁଁ'ତ୍ୱ ଭିତରେ ମୂଳରୁ ଶେଷପର୍ଯ୍ୟନ୍ତ ସେହି ଅନନ୍ତ ଯଥାର୍ଥ 'ମୁଁ'ତ୍ୱ ପ୍ରତିଭାତ ହେଉଛି । ସମୁଦାୟ ହିଁ ଆତ୍ମାର ଅଭିବ୍ୟକ୍ତି ମାତ୍ର । କି ଉପାୟରେ ଆମେମାନେ ଏହି ଆତ୍ମାକୁ ଲାଭ କରିବା ? ଯାଜ୍ଞବଲ୍କ୍ୟ ପ୍ରଥମରୁହିଁ ଆମକୁ କହିଛନ୍ତି, 'ପ୍ରଥମେ ଏହି ଆତ୍ମା ସମ୍ବନ୍ଧରେ ଶୁଣିବାକୁ ହେବ । ତାହା ପରେ ବିଚାର କରିବାକୁ ହେବ, ତତ୍ପରେ ତାହାର ଧ୍ୟାନ କରିବାକୁ ହେବ ।'

ଏପର୍ଯ୍ୟନ୍ତ ସେ ଆତ୍ମାକୁ ଏହି ଜଗତର ସମସ୍ତ ବସ୍ତୁର ସାରରୂପେ ବର୍ଣ୍ଣନା କରିଛନ୍ତି । ତାହା ପରେ ସେହି ଆତ୍ମାର ଅନନ୍ତ ସ୍ୱରୂପ ଓ ମାନବ ମନର ସାନ୍ତଭାବ ସମ୍ବନ୍ଧରେ ବିଚାର କରି ସେ ଏହି ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି ଯେ, ସମସ୍ତଙ୍କର ଜ୍ଞାତା ଆତ୍ମାକୁ ସୀମାବଦ୍ଧ ମନଦ୍ୱାରା ଜାଣିବା ଅସମ୍ଭବ । ତେବେ ଯଦି ଆତ୍ମାକୁ ଜାଣିହେବ ନାହିଁ, ତେବେ କଅଣ କରିବାକୁ ହେବ ? ଯାଜ୍ଞବଲ୍କ୍ୟ ମୈତ୍ରେୟୀଙ୍କୁ କହିଲେ, ଯଦ୍ୟପି ଆତ୍ମାକୁ ଜାଣି ହୁଏ ନାହିଁ, ତଥାପି ତାହାକୁ ଉପଲବ୍ଧି କରି ହୁଏ । ସୁତରାଂ ତାହାକୁ କିପରି ଭାବରେ ଧ୍ୟାନ କରିବାକୁ ହେବ ସେ ବିଷୟରେ ଉପଦେଶ ଦେବାକୁ ଆରମ୍ଭ କଲେ । ଏହି ଜଗତ୍ ସକଳ ପ୍ରାଣୀଙ୍କର କଲ୍ୟାଣକାରୀ ଏବଂ ପ୍ରତ୍ୟେକ ପ୍ରାଣୀ ଜଗତର କଲ୍ୟାଣକାରୀ; କାରଣ, ଉଭୟ ହିଁ ପରସ୍ପରର ଅଂଶୀଭୂତ—ଗୋଟିକର ଉନ୍ନତି ଅନ୍ୟଟିର ଉନ୍ନତିରେ ସାହାଯ୍ୟ କରେ, କିନ୍ତୁ ସ୍ୱପ୍ରକାଶ ଆତ୍ମାର କଲ୍ୟାଣକାରୀ ବା ସାହାଯ୍ୟକାରୀ କେହି ହୋଇ ନ ପାରେ, କାରଣ ସେ ପୂର୍ଣ୍ଣ ଓ ଅନନ୍ତସ୍ୱରୂପ । ଜଗତରେ ଯେତେ ଆନନ୍ଦ ଅଛି, ଏପରିକି ଖୁବ୍ ନିମ୍ନସ୍ତରର ଆନନ୍ଦ ପର୍ଯ୍ୟନ୍ତ, ସବୁ ଏହାର ପ୍ରତିବିମ୍ବ ମାତ୍ର । ଯାହା କିଛି ଭଲ ସବୁ ସେହି ଆତ୍ମାର ପ୍ରତିବିମ୍ବ ମାତ୍ର, ପୁଣି ସେହି ପ୍ରତିବିମ୍ବ ଯେତେବେଳେ ଅପେକ୍ଷାକୃତ ଅସ୍ପଷ୍ଟ ହୁଏ ତାହାକୁ ମନ୍ଦ କୁହାଯାଏ । ଯେତେବେଳେ ଏହି ଆତ୍ମା କମ୍ ଅଭିବ୍ୟକ୍ତ ସେତେବେଳେ ତାହାକୁ ତମଃ ବା ମନ୍ଦ କୁହାଯାଏ, ଯେତେବେଳେ ଅଧିକତର ଅଭିବ୍ୟକ୍ତ ସେତେବେଳେ ତାହାକୁ ପ୍ରକାଶ ବା ଭଲ କୁହାଯାଏ । ଏହି ମାତ୍ର ପ୍ରଭେଦ । ଭଲମନ୍ଦ କେବଳ ମାତ୍ରାର ତାରତମ୍ୟ, ଆତ୍ମାର କମ୍ ବେଶୀ ଅଭିବ୍ୟକ୍ତି ଯେନି । ଆମମାନଙ୍କର ନିଜ ଜୀବନର ଦୃଷ୍ଟାନ୍ତ ନିଅନ୍ତୁ । ପିଲାଦିନେ କେତେ ଜିନିଷକୁ ଆମେ ଭଲ ବୋଲି ମନେକରୁ, ପ୍ରକୃତରେ ସେଗୁଡ଼ିକ ମନ୍ଦ; ପୁଣି କେତେ ଜିନିଷକୁ ମନ୍ଦ ବୋଲି ଭାବୁ, ବାସ୍ତବରେ ସେଗୁଡ଼ିକ ଭଲ । ଆମର ଧାରଣାର କିପରି ପରିବର୍ତ୍ତନ ହୁଏ ! ଗୋଟିଏ ଭାବ କିପରି ଉଚ୍ଚରୁ ଉଚ୍ଚତର ହୋଇଥାଏ ? ଆମେ ଏକ ସମୟରେ ଯାହାକୁ ଖୁବ୍ ଭଲ ବୋଲି ଭାବୁଥାଉ, ଏବେ ତାକୁ ତଦ୍ରୂପ ମନେ କରୁନାହୁଁ । ଏହିପରି ଭଲମନ୍ଦ ଆମର ମନର ବିକାଶ ଉପରେ ନିର୍ଭର କରେ, ବାହାରେ ତାହାର ଅସ୍ତିତ୍ୱ ନାହିଁ । ପ୍ରଭେଦ କେବଳ ମାତ୍ରାର ତାରତମ୍ୟରେ । ସବୁ ସେହି ଆତ୍ମାର ପ୍ରକାଶ ମାତ୍ର । ତାହା ସବୁଠାରେ ହିଁ ପ୍ରକାଶ ପାଇଥାଏ, କେବଳ ତାହାର ପ୍ରକାଶ ଅଳ୍ପ ହେଲେ ଆମେ ତାକୁ ମନ୍ଦ କହୁ ଓ ସ୍ପଷ୍ଟତର ହେଲେ ଭଲ କହୁ, କିନ୍ତୁ ଆତ୍ମା ସ୍ୱୟଂ ଶୁଭାଶୁଭର ଅତୀତ । ଅତଏବ

ଜଗତରେ ଯାହା କିଛି ଅଛି, ସମସ୍ତଙ୍କୁ ହିଁ ପ୍ରଥମେ ଭଲ ବୋଲି ଧ୍ୟାନ କରିବାକୁ ହେବ, କାରଣ ସବୁ ସେହି ପୂର୍ଣ୍ଣସ୍ୱରୂପର ଅଭିବ୍ୟକ୍ତି । ସେ ଭଲ ନୁହନ୍ତି କି ମନ୍ଦ ମଧ୍ୟ ନୁହନ୍ତି; ସେ ପୂର୍ଣ୍ଣ ଏବଂ ପୂର୍ଣ୍ଣବସ୍ତୁ କେବଳ ଗୋଟିଏ ମାତ୍ର ହୋଇପାରେ । ଭଲ ଜିନିଷ ଅନେକ ପ୍ରକାର ହୋଇପାରେ, ମନ୍ଦ ମଧ୍ୟ ଅନେକ ଥାଇପାରେ, ଭଲମନ୍ଦ ମଧ୍ୟରେ ପ୍ରଭେଦର ନାନାବିଧ ମାତ୍ରା ଥାଇପାରେ; କିନ୍ତୁ ପୂର୍ଣ୍ଣବସ୍ତୁ କେବଳ ଏକମାତ୍ର; ସେହି ପୂର୍ଣ୍ଣବସ୍ତୁ ବିଶେଷ ବିଶେଷ ପ୍ରକାର ଆବରଣ ମଧ୍ୟ ଦେଇ ଦୃଷ୍ଟ ହେଲେ ବିଭିନ୍ନ ମାତ୍ରାରେ ଭଲ ବୋଲି ଆମେ ଅଭିହିତ କରୁଁ, ଅନ୍ୟ ପ୍ରକାର ଆବରଣ ମଧ୍ୟ ଦେଇ ତାହା ପ୍ରକାଶିତ ହେଲେ ଆମେ ତାକୁ ମନ୍ଦ ବୋଲି ଅଭିହିତ କରୁ । ଏହି ବସ୍ତୁ ସମ୍ପୂର୍ଣ୍ଣ ଭଲ ଏବଂ ଏହି ବସ୍ତୁ ସମ୍ପୂର୍ଣ୍ଣ ମନ୍ଦ—ଏଭଳି ଧାରଣା କୁସଂସ୍କାର ମାତ୍ର । ପ୍ରକୃତ ପକ୍ଷରେ ଏପର୍ଯ୍ୟନ୍ତ କୁହାଯାଏ ଯେ, ଏ ଜିନିଷ ବେଶୀ ଭଲ ଓ ଏ ଜିନିଷ କମ୍ ଭଲ, ଆଉ କମ୍ ଭଲକୁ ହିଁ ଆମେ ମନ୍ଦ କହୁ । ଭଲମନ୍ଦ ସମ୍ବନ୍ଧରେ ଏହି ସମୁଦାୟ ଭ୍ରାନ୍ତଧାରଣା ହିଁ ସର୍ବପ୍ରକାର ଦ୍ୱୈତ ଭ୍ରମ ଜନ୍ମାଇଛି । ତାହା ସକଳ ଯୁଗର ନରନାରୀଙ୍କର ବିଭୀଷିକାପ୍ରଦ ଭାବରୂପେ ମାନବ-ହୃଦୟରେ ଦୃଢ଼ନିବଦ୍ଧ ହୋଇଯାଇଛି । ଆମେ ଯେ ଅନ୍ୟକୁ ଘୃଣା କରୁ, ତାହାର କାରଣ ଶୈଶବକାଳରୁ ଅଭ୍ୟସ୍ତ ଏହି ସମସ୍ତ ନିର୍ବୋଧ-ଜନୋଚିତ ଧାରଣା । ମାନବଜାତି ସମ୍ବନ୍ଧରେ ଆମର ବିଚାର ସମ୍ପୂର୍ଣ୍ଣରୂପେ ଭ୍ରାନ୍ତିପୂର୍ଣ୍ଣ । ଆମେ ଏହି ସୁନ୍ଦର ପୃଥିବୀକୁ ନରକରେ ପରିଣତ କରିଛୁ, କିନ୍ତୁ ଯେତେବେଳେ ଆମେ ଭଲମନ୍ଦର ଏହି ଭ୍ରାନ୍ତ ଧାରଣାଗୁଡ଼ିକୁ ତ୍ୟାଗ କରିବା, ସେତେବେଳେ ଏହା ସ୍ୱର୍ଗରେ ପରିଣତ ହେବ ।

ବର୍ତ୍ତମାନ ଯାଜ୍ଞବଲ୍କ୍ୟ ତାଙ୍କର ସ୍ତ୍ରୀଙ୍କୁ କି ଉପଦେଶ ଦେଇଥିଲେ, ଶୁଣାଯାଉ— 'ଏହି ପୃଥିବୀ ସକଳ ପ୍ରାଣୀଙ୍କ ପକ୍ଷରେ ମଧୁ ଅର୍ଥାତ୍ ମିଷ୍ଟ ବା ଆନନ୍ଦଜନକ, ସକଳ ପ୍ରାଣୀ ପୁଣି ଏହି ପୃଥିବୀ ପକ୍ଷରେ ମଧୁ—ଉଭୟେ ପରସ୍ପର ପରସ୍ପରକୁ ସାହାଯ୍ୟ କରିଥାନ୍ତି, ଏମାନଙ୍କର ଏହି ମଧୁରତ୍ୱ ସେହି ତେଜୋମୟ ଅମୃତମୟ ଆତ୍ମାଠାରୁ ଆସିଛି ।'

ସେହି ଏକ ମଧୁ ବା ମଧୁରତ୍ୱ ବିଭିନ୍ନ ଭାବରେ ଅଭିବ୍ୟକ୍ତ ହୋଇଛି । ଯେଉଁଠାରେ ହିଁ ମାନବ ଜାତି ଭିତରେ କୌଣସି ପ୍ରକାର ପ୍ରେମ ବା ମଧୁରତ୍ୱ ଦେଖାଯାଏ— ସାଧୁଙ୍କଠାରେ ହେଉ, ପାପୀଠାରେ ହେଉ, ମହାପୁରୁଷଙ୍କଠାରେ ହେଉ ବା ହତ୍ୟାକାରୀଠାରେ ହେଉ, ଦେହରେ ହେଉ, ମନରେ ହେଉ ବା ଇନ୍ଦ୍ରିୟରେ ହେଉ, ସେଠାରେ ସେ ରହିଛନ୍ତି । ସେହି ଏକ ପୁରୁଷ ବ୍ୟତୀତ ତାହା ଆଉ କିଏ ହୋଇପାରେ ? ଅତି ନିମ୍ନତମ ଇନ୍ଦ୍ରିୟସୁଖ ମଧ୍ୟ ସେ । ପୁଣି ଉଚ୍ଚତମ ଆଧ୍ୟାତ୍ମିକ ଆନନ୍ଦ ମଧ୍ୟ ସେ । ତାଙ୍କ ବ୍ୟତୀତ କୌଣସି ମଧୁରତ୍ୱ ରହି ନ ପାରେ । ଯାଜ୍ଞବଲ୍କ୍ୟ ଏହା ହିଁ କହୁଅଛନ୍ତି । ଯେତେବେଳେ ଆପଣ ସେହି ଅବସ୍ଥାରେ ଉପନୀତ ହେବେ, ଯେତେବେଳେ ସମସ୍ତ ବସ୍ତୁକୁ ସମଦୃଷ୍ଟିରେ ଦେଖିବେ, ଯେତେବେଳେ ମଦ୍ୟପର ପାନାସକ୍ତି ଓ ସାଧୁର ଧ୍ୟାନରେ ସେହି ଏକ ମଧୁରତ୍ୱ, ଏକ ଆନନ୍ଦର ପ୍ରକାଶ ଦେଖିବେ, ସେତେବେଳେ ବୁଝିବାକୁ ହେବ ଆପଣ ସତ୍ୟ ଲାଭ କରିଛନ୍ତି । ସେତେବେଳେ ହିଁ କେବଳ ଆପଣ ବୁଝିବେ ସୁଖ କାହାକୁ

କହନ୍ତୁ, ଶାନ୍ତ କାହାକୁ କହନ୍ତୁ, ପ୍ରେମ କାହାକୁ କହନ୍ତୁ; କିନ୍ତୁ ଯେତେଦିନ ପର୍ଯ୍ୟନ୍ତ ଆପଣ ଏହି ବୃଥା ଭେଦଜ୍ଞାନ ରଖିଥିବେ, ନିର୍ବୋଧ ଜନଭଳି ବାଲକୋଚିତ କୁସଂସ୍କାର-ଗୁଡ଼ିକୁ ରଖିଥିବେ ସେତେଦିନ ଆପଣଙ୍କର ସର୍ବପ୍ରକାର ଦୁଃଖ ଆସିବ । ସେହି ତେଜୋମୟ ଅମୃତମୟ ପୁରୁଷ ହିଁ ସମଗ୍ର ଜଗତର ଭିତ୍ତିରୂପେ ଏହାର ପଶ୍ଚାତ୍‌ରେ ରହିଛନ୍ତି— ସମୁଦାୟ ହିଁ ତାଙ୍କର ମଧୁରତ୍ୱର ଅଭିବ୍ୟକ୍ତି ମାତ୍ର । ଏହି ଦେହଟି ମଧ୍ୟ ଯେପରି କ୍ଷୁଦ୍ର ବ୍ରହ୍ମାଣ୍ଡ-ସ୍ୱରୂପ ଏବଂ ଏହି ଦେହର ସମସ୍ତ ଶକ୍ତି ଭିତର ଦେଇ, ମନର ସର୍ବପ୍ରକାର ଉପଭୋଗର ମଧ୍ୟ ଦେଇ ସେହି ତେଜୋମୟ ପୁରୁଷ ପ୍ରକାଶ ପାଉଛନ୍ତି । ଦେହ ଭିତରେ ଯେଉଁ ତେଜୋମୟ ସ୍ୱପ୍ରକାଶ ପୁରୁଷ ରହିଛନ୍ତି, ସେ ହିଁ ଆତ୍ମା । 'ଏହି ଜଗତ୍ ସମସ୍ତ ପ୍ରାଣୀଙ୍କ ପକ୍ଷରେ ମଧୁମୟ ଏବଂ ସମସ୍ତ ପ୍ରାଣୀ ମଧ୍ୟ ତାଙ୍କ ନିକଟରେ ମଧୁମୟ'; କାରଣ ସେହି ତେଜୋମୟ ଅମୃତମୟ ପୁରୁଷ ଏହି ସମଗ୍ର ଜଗତର ଆନନ୍ଦସ୍ୱରୂପ । ସେ ହେଉଛନ୍ତି ବ୍ରହ୍ମ ।

'ଏହି ବାୟୁ ସକଳ ପ୍ରାଣୀଙ୍କ ପକ୍ଷରେ ମଧୁସ୍ୱରୂପ ଏବଂ ବାୟୁ ନିକଟରେ ସକଳ ପ୍ରାଣୀ ମଧୁସ୍ୱରୂପ; କାରଣ ସେହି ତେଜୋମୟ, ଅମୃତମୟ ପୁରୁଷ ବାୟୁରେ ରହିଛନ୍ତି ଏବଂ ଦେହରେ ମଧ୍ୟ ରହିଛନ୍ତି । ସେ ସମସ୍ତ ପ୍ରାଣୀଙ୍କର ପ୍ରାଣରୂପେ ପ୍ରକାଶ ପାଉଛନ୍ତି ।'

'ଏହି ସୂର୍ଯ୍ୟ ସକଳ ପ୍ରାଣୀଙ୍କ ପକ୍ଷରେ ମଧୁସ୍ୱରୂପ ଏବଂ ଏହି ସୂର୍ଯ୍ୟ ପକ୍ଷରେ ସକଳ ପ୍ରାଣୀ ମଧୁସ୍ୱରୂପ । କାରଣ, ସେହି ତେଜୋମୟ ପୁରୁଷ ସୂର୍ଯ୍ୟରେ ରହିଛନ୍ତି ଏବଂ ତାଙ୍କର ହିଁ ପ୍ରତିବିମ୍ବ କ୍ଷୁଦ୍ର କ୍ଷୁଦ୍ର ଜ୍ୟୋତିରୂପେ ପ୍ରକାଶ ପାଉଛି । ସମୁଦାୟ ତାଙ୍କର ପ୍ରତିବିମ୍ବ ବ୍ୟତୀତ ଆଉ କ'ଣ ହୋଇପାରେ ? ସେ ଆମ ଦେହରେ ରହିଛନ୍ତି ଏବଂ ତାଙ୍କର ପ୍ରତିବିମ୍ବ ଯୋଗୁଁ ଆମେ ଆଲୋକ ଦର୍ଶନରେ ସମର୍ଥ ହୋଇଛେ ।'

'ଏହି ଚନ୍ଦ୍ର ସକଳ ପ୍ରାଣୀଙ୍କ ପକ୍ଷରେ ମଧୁସ୍ୱରୂପ, ଏହି ଚନ୍ଦ୍ର ପକ୍ଷରେ ପୁଣି ସମସ୍ତ ପ୍ରାଣୀ ମଧୁସ୍ୱରୂପ; କାରଣ ସେହି ତେଜୋମୟ, ଅମୃତମୟ ପୁରୁଷ ଯେ କି ଚନ୍ଦ୍ରଙ୍କର ଅନ୍ତରାତ୍ମାସ୍ୱରୂପ, ସେ ଆମ ଭିତରେ ମନରୂପେ ପ୍ରକାଶ ପାଉଛନ୍ତି ।'

'ଏହି ବିଦ୍ୟୁତ୍ ସକଳ ପ୍ରାଣୀଙ୍କ ପକ୍ଷରେ ମଧୁସ୍ୱରୂପ; ସମସ୍ତ ପ୍ରାଣୀ ମଧ୍ୟ ବିଦ୍ୟୁତ୍ ପକ୍ଷରେ ମଧୁସ୍ୱରୂପ; କାରଣ ସେହି ତେଜୋମୟ, ଅମୃତମୟ ପୁରୁଷ ବିଦ୍ୟୁତ୍‌ର ଆତ୍ମାସ୍ୱରୂପ ଏବଂ ସେ ଆମମାନଙ୍କ ଭିତରେ ରହିଛନ୍ତି । କାରଣ ସବୁ ସେହି ବ୍ରହ୍ମ ।'

'ସେ ହିଁ ବ୍ରହ୍ମ, ସେ ହିଁ ଆତ୍ମା — ସବୁ ପ୍ରାଣୀଙ୍କର ରାଜା ।'

ଏହି ଭାବଗୁଡ଼ିକ ମାନବ ପକ୍ଷରେ ଅତ୍ୟନ୍ତ ଉପକାରୀ; ଏହା ଧ୍ୟାନ ଲାଗି ଉପଯୋଗୀ । ଦୃଷ୍ଟାନ୍ତସ୍ୱରୂପ ପୃଥିବୀକୁ ଧ୍ୟାନ କରନ୍ତୁ, ପୃଥିବୀକୁ ଚିନ୍ତା କରନ୍ତୁ; ସଙ୍ଗେ ସଙ୍ଗେ ଏହା ମଧ୍ୟ ଭାବନ୍ତୁ ଯେ, ପୃଥିବୀରେ ଯାହା ଅଛି, ଆମମାନଙ୍କର ଦେହରେ ମଧ୍ୟ ତାହା ଅଛି । ଚିନ୍ତା ବଳରେ ଦେହ ଓ ପୃଥିବୀକୁ ଏକ କରି ଦିଅନ୍ତୁ ଓ ଦେହସ୍ଥ ଆତ୍ମା ସହିତ ପୃଥିବୀର ଅଭ୍ୟନ୍ତରବର୍ତ୍ତୀ ଆତ୍ମାର ଅଭିନ୍ନଭାବ ସାଧନ କରନ୍ତୁ । ବାୟୁକୁ ବାୟୁର ଅଭ୍ୟନ୍ତରବର୍ତ୍ତୀ ଓ ଆପଣଙ୍କର ଅଭ୍ୟନ୍ତରବର୍ତ୍ତୀ ଆତ୍ମା ସହିତ ଅଭିନ୍ନ ଭାବରେ ଚିନ୍ତା କରନ୍ତୁ । ଏଭଳି ଭାବରେ

ଏହିସବୁ ଧ୍ୟାନ କରିବାକୁ ହୁଏ । ଏଗୁଡ଼ିକ ହିଁ ଏକ, ବିଭିନ୍ନାକାରରେ ପ୍ରକାଶ ପାଇଛି ମାତ୍ର । ସକଳ ଧ୍ୟାନର ଚରମ ଲକ୍ଷ୍ୟ—ଏହି ଏକତ୍ୱ ଉପଲବ୍ଧି କରିବା ଏବଂ ଯାଜ୍ଞବଲ୍‌କ୍ୟ ମୈତ୍ରେୟୀଙ୍କୁ ଏହି କଥା ବୁଝାଇବାକୁ ଚେଷ୍ଟା କରିଥିଲେ ।

## ଜ୍ଞାନଯୋଗର ଚରମାଦର୍ଶ

ଆଜିର ବକ୍ତୃତା ପରେ ଏହି ସାଂଖ୍ୟ ଓ ବେଦାନ୍ତ ବିଷୟକ ବକ୍ତୃତାବଳୀ ଶେଷ ହେବ, ଅତଏବ ମୁଁ ଏହି କେତେଦିନ ଧରି ଯାହା ବୁଝାଇବାକୁ ଚେଷ୍ଟା କରୁଥିଲି, ଆଜି ସଂକ୍ଷେପରେ ତାହାର ପୁନରାବୃତ୍ତି କରିବି । ବେଦ ଓ ଉପନିଷଦ୍‌ରେ ଆମେମାନେ ହିନ୍ଦୁ-ମାନଙ୍କର ଅତି ପ୍ରାଚୀନ ଧର୍ମଭାବର କେତୋଟି ବର୍ଣ୍ଣନା ପାଇଥାଉ । ମହର୍ଷି କପିଳ ଖୁବ୍ ପ୍ରାଚୀନ ସତ, କିନ୍ତୁ ଏହି ସମସ୍ତ ଭାବ ତାଙ୍କଠାରୁ ମଧ୍ୟ ପ୍ରାଚୀନତମ । କପିଳଙ୍କ ସାଂଖ୍ୟ ଦର୍ଶନ ତଦ୍ଦ୍ୱାରା ଉଦ୍ଭାବିତ ନୂତନ ମତବାଦବିଶେଷ ନୁହେଁ । ତାଙ୍କ ସମୟରେ ଧର୍ମ ସମ୍ବନ୍ଧରେ ଯେଉଁ ସକଳ ବିଭିନ୍ନ ମତବାଦରାଶି ପ୍ରଚଳିତ ଥିଲା, ସେ ନିଜର ଅପୂର୍ବ ପ୍ରତିଭା ବଳରେ ସେଥିରୁ ଗୋଟିଏ ଯୁକ୍ତିସଙ୍ଗତ ଓ ସାମଞ୍ଜସ୍ୟମୟ ପ୍ରଣାଳୀ ଗଠନ କରିବାକୁ ଚେଷ୍ଟା କରିଥିଲେ ମାତ୍ର । ଭାରତବାସୀଗଣଙ୍କ ନିକଟରେ ସେ ଯେଉଁ ମନୋବିଜ୍ଞାନ ପ୍ରସଙ୍ଗରେ କୃତକାର୍ଯ୍ୟ ହୋଇଥିଲେ, ତାହା ଏବେ ମଧ୍ୟ ହିନ୍ଦୁମାନଙ୍କ ମଧ୍ୟରେ ବିଭିନ୍ନ ଆପାତବିରୋଧୀ ଦାର୍ଶନିକ ସଂପ୍ରଦାୟସମୂହ ମାନିଥାଆନ୍ତି । ପରବର୍ତ୍ତୀ କୌଣସି ଦାର୍ଶନିକ ଏପର୍ଯ୍ୟନ୍ତ ତାଙ୍କର ମାନବ-ମନର ଅପୂର୍ବ ବିଶ୍ଳେଷଣ ଏବଂ ଜ୍ଞାନଲାଭ ପ୍ରକ୍ରିୟା ସମ୍ବନ୍ଧରେ ବିସ୍ତାରିତ ସିଦ୍ଧାନ୍ତ ଉପରକୁ ଯାଇପାରି ନାହାନ୍ତି; ସେ ନିଃସନ୍ଦେହ ଭାବରେ ଅଦ୍ୱୈତବାଦର ଭିତ୍ତି ସ୍ଥାପନ କରି ଯାଇଛନ୍ତି; ସେ ଯେତେଦୂର ପର୍ଯ୍ୟନ୍ତ ସିଦ୍ଧାନ୍ତରେ ଅଗ୍ରସର ହୋଇଥିଲେ, ତାହା ଗ୍ରହଣ କରି ଅଦ୍ୱୈତବାଦ ଆଉ ଗୋଟିଏ ପଦ ଅଗ୍ରସର ହେଲା । ଏହିଭଳି ସାଂଖ୍ୟ-ଦର୍ଶନର ଶେଷ ସିଦ୍ଧାନ୍ତ ଦ୍ୱୈତବାଦକୁ ଅତିକ୍ରମ କରି ଚରମ ଏକତ୍ୱରେ ଆମେ ପହଞ୍ଚିଲୁ ।

କପିଳଙ୍କ ପୂର୍ବେ ଭାରତରେ ଯେଉଁ ସମସ୍ତ ଧର୍ମତତ୍ତ୍ୱ ପ୍ରଚଳିତ ଥିଲା—ମୁଁ ଅବଶ୍ୟ ପରିଚିତ ଓ ପ୍ରସିଦ୍ଧ ଧର୍ମତତ୍ତ୍ୱଗୁଡ଼ିକୁ ଲକ୍ଷ୍ୟ କରି କହୁଛି, ଧର୍ମ ନାମର ଅଯୋଗ୍ୟ ଖୁବ୍ ନିମ୍ନ ଧାରଣାଗୁଡ଼ିକୁ ନୁହେଁ—ସେମାନଙ୍କ ମଧ୍ୟରେ ଆମେ ଦେଖିବାକୁ ପାଉ, ଏପରିକି ପ୍ରାଥମିକ ଶ୍ରେଣୀଗୁଡ଼ିକ ଭିତରେ ମଧ୍ୟ ପ୍ରତ୍ୟାଦେଶ, ଈଶ୍ୱରଦିଷ୍ଟ ଶାସ୍ତ୍ର ପ୍ରଭୃତିର ଧାରଣା ଥିଲା । ଅତି ପ୍ରାଚୀନ ଅବସ୍ଥାରେ ସୃଷ୍ଟିର ଧାରଣା ବଡ଼ ବିଚିତ୍ର ଥିଲା; ସମଗ୍ର ଜଗତ୍ ଈଶ୍ୱରଙ୍କ ଇଚ୍ଛାବଳରେ ଶୂନ୍ୟରୁ ସୃଷ୍ଟ ହୋଇଛି—ପ୍ରଥମେ ଏହି ଜଗତ୍ ଏକାବେଳକେ ନ ଥିଲା ଏବଂ ସେହି ଅଭାବ ବା ଶୂନ୍ୟରୁ ହିଁ ଏହି ସମୁଦାୟ ଆସିଛି । ପରବର୍ତ୍ତୀ ସୋପାନରେ ଆମେମାନେ ଦେଖିବାକୁ ପାଉ, ଏହି ସିଦ୍ଧାନ୍ତରେ ସନ୍ଦେହ ପ୍ରକାଶ ପାଇଛି । ବେଦାନ୍ତର ପ୍ରଥମ ସୋପାନରେ ହିଁ ଏହି ପ୍ରଶ୍ନ ଦେଖିବାକୁ ମିଳେ, ଅସତ୍‌ରୁ ସତ୍ତର

(ଅସ୍ତିତ୍ୱର) ଉତ୍ପତ୍ତି ହେଲା କିପରି ? ଯଦି ଏହି ଜଗତ୍ ସତ୍ ଅର୍ଥାତ୍ ଅସ୍ତିତ୍ୱଯୁକ୍ତ ହୁଏ, ତେବେ ଏହା ଅବଶ୍ୟ କୌଣସିଥିରୁ ଆସିଛି । ଏହି ପ୍ରାଚୀନମାନେ ସହଜରେ ଦେଖି ପାରିଲେ, କୌଣସିଠାରେ ଏଭଳି କିଛି ନାହିଁ, ଯାହା କି ଶୂନ୍ୟରୁ ଉତ୍ପନ୍ନ ହୋଇଛି । ମନୁଷ୍ୟର ହସ୍ତଦ୍ୱାରା ଯେକୌଣସି କାର୍ଯ୍ୟ ହୁଏ, ସେଥିରେ ଉପାଦାନ-କାରଣର ପ୍ରୟୋଜନ ଅଛି । ଅତଏବ ପ୍ରାଚୀନ ହିନ୍ଦୁମାନେ ସ୍ୱଭାବତଃ ହିଁ, ଏହି ଜଗତ ଯେ ଶୂନ୍ୟରୁ ସୃଷ୍ଟ ହୋଇଛି, ଏହି ପ୍ରାଥମିକ ଧାରଣା ତ୍ୟାଗ କଲେ, ପୁଣି ଏହି ଜଗତ୍-ସୃଷ୍ଟିର କାରଣୀଭୂତ ଉପାଦାନ କ'ଣ, ତାହାର ଅନ୍ୱେଷଣରେ ପ୍ରବୃତ୍ତ ହୋଇଥିଲେ । ବାସ୍ତବପକ୍ଷେ ସମଗ୍ର ଜଗତର ଧର୍ମ-ଇତିହାସ—'କେଉଁଥିରୁ ଏହି ସମୁଦାୟର ଉତ୍ପତ୍ତି ହେଲା ?'—ଏହି ପ୍ରଶ୍ନର ଉତ୍ତର ଦେବାର ଚେଷ୍ଟାରେ ଉପାଦାନ-କାରଣର ଅନ୍ୱେଷଣ ମାତ୍ର । ନିମିତ୍ତ-କାରଣ ବା ଈଶ୍ୱରଙ୍କ ବିଷୟ ବ୍ୟତୀତ, ଈଶ୍ୱର ଏହି ଜଗତ୍ ସୃଷ୍ଟି କରିଛନ୍ତି କି ନାହିଁ, ଏହି ପ୍ରଶ୍ନ ବ୍ୟତୀତ—ଚିରକାଳ ଏହି ମହାପ୍ରଶ୍ନ ଜିଜ୍ଞାସିତ ହୋଇ ଆସୁଅଛି—ଈଶ୍ୱର କି ଉପାଦାନରେ ଏହି ଜଗତ୍ ସୃଷ୍ଟି କଲେ । ଏହି ପ୍ରଶ୍ନର ଉତ୍ତର ଉପରେ ହିଁ ବିଭିନ୍ନ ଦର୍ଶନ ନିର୍ଭର କରୁଛି ।

ଗୋଟିଏ ସିଦ୍ଧାନ୍ତ ଏହି ଯେ, ଏହି ଉପାଦାନ ଏବଂ ଈଶ୍ୱର ଏବଂ ଆତ୍ମା, ଏହି ତିନୋଟିଯାକ ନିତ୍ୟ ବସ୍ତୁ—ସେଗୁଡ଼ିକ ଯେପରି କି ତିନୋଟି ସମାନ୍ତରାଳ ରେଖାଭଳି ଅନନ୍ତକାଳ ଧରି ପାଖାପାଖି ଚାଲିଛନ୍ତି—ସେଗୁଡ଼ିକ ମଧ୍ୟରେ ପ୍ରକୃତି ଓ ଆତ୍ମାକୁ ସେମାନେ ଅସ୍ୱତନ୍ତ୍ରତତ୍ତ୍ୱ ଏବଂ ଈଶ୍ୱରଙ୍କୁ ସ୍ୱତନ୍ତ୍ରତତ୍ତ୍ୱ ବା ପୁରୁଷ କହନ୍ତି । ପ୍ରତ୍ୟେକ ଜଡ଼ ପରମାଣୁ ଭଳି ପ୍ରତ୍ୟେକ ଆତ୍ମା ଈଶ୍ୱରେଚ୍ଛାର ସମ୍ପୂର୍ଣ୍ଣ ଅଧୀନ । ଯେତେବେଳେ କପିଳ ସାଙ୍ଖ୍ୟ ମନୋବିଜ୍ଞାନ ପ୍ରଚାର କଲେ, ସେତେବେଳେ ପୂର୍ବରୁ ଏହିସବୁ ଓ ଅନ୍ୟାନ୍ୟ ଅନେକ ପ୍ରକାର ଧର୍ମସମ୍ବନ୍ଧୀୟ ଧାରଣା ବିଦ୍ୟମାନ ଥିଲା । ଏହି ମନୋବିଜ୍ଞାନ ମତରେ ବିଷୟାନୁଭୂତିର ପ୍ରଣାଳୀ ଏହି—ପ୍ରଥମତଃ ବାହାରର ବସ୍ତୁରୁ ଘାତ ବା ଇଙ୍ଗିତ ପ୍ରଦତ୍ତ ହୁଏ, ତାହା ଇନ୍ଦ୍ରିୟସମୂହର ଦେହସ୍ଥିତ ଦ୍ୱାରଗୁଡ଼ିକୁ ଉତ୍ତେଜିତ କରେ । ଯେପରି ପ୍ରଥମେ ଚକ୍ଷୁ ପ୍ରଭୃତି ଇନ୍ଦ୍ରିୟଦ୍ୱାରରେ ବାହ୍ୟ ବିଷୟର ଆଘାତ ଲାଗେ, ଚକ୍ଷୁ ପ୍ରଭୃତିର ଦ୍ୱାର ବା ଯନ୍ତ୍ରରୁ ତତ୍ତଦିନ୍ଦ୍ରିୟରେ (ସ୍ନାୟୁକେନ୍ଦ୍ରରେ), ଇନ୍ଦ୍ରିୟ-ସମୂହରୁ ମନରେ, ମନରୁ ବୁଦ୍ଧିରେ ଏବଂ ବୁଦ୍ଧିରୁ ଏପରି ଏକ ପଦାର୍ଥରେ ଯାଇ ପହଞ୍ଚିଲା, ଯାହା ଏକ ତତ୍ତ୍ୱ-ସ୍ୱରୂପ—ତାହାକୁ ସେମାନେ 'ଆତ୍ମା' କହନ୍ତି । ଆଧୁନିକ ଶରୀର-ବିଧାନଶାସ୍ତ୍ର ଆଲୋଚନା କଲେ ମଧ୍ୟ ଆମେ ଦେଖିବାକୁ ପାଉ, ସର୍ବପ୍ରକାର ବିଷୟାନୁଭୂତି ନିମନ୍ତେ ବିଭିନ୍ନ କେନ୍ଦ୍ର ଅଛି, ଏହା ସେମାନେ ଆବିଷ୍କାର କରିଛନ୍ତି । ପ୍ରଥମତଃ ନିମ୍ନଶ୍ରେଣୀର କେନ୍ଦ୍ରସମୂହ, ଦ୍ୱିତୀୟତଃ ଉଚ୍ଚଶ୍ରେଣୀର କେନ୍ଦ୍ରସମୂହ ଏବଂ ଏ ଦୁଇଟି ସଙ୍ଗେ ମନ ଓ ବୁଦ୍ଧିର କାର୍ଯ୍ୟ ସହିତ ଠିକ୍ ମିଳେ, କିନ୍ତୁ ସେମାନେ ଏପରି କୌଣସି କେନ୍ଦ୍ର ପାଇନାହାନ୍ତି, ଯାହା ଅନ୍ୟ ସବୁ କେନ୍ଦ୍ରକୁ ନିୟମିତ କରୁଛି, ସୁତରାଂ କିଏ ଏହି ସମସ୍ତ କେନ୍ଦ୍ରଗୁଡ଼ିକର ଏକତ୍ୱ-ବିଧାନ କରୁଛି, ଶାରୀର-ବିଧାନଶାସ୍ତ୍ର ତାହାର ଉତ୍ତର ଦେବାକୁ ଅକ୍ଷମ । କେଉଁଠି ଏବଂ କିପରି ଏହି କେନ୍ଦ୍ରଗୁଡ଼ିକ ମିଳିତ ହୁଅନ୍ତି ? ମସ୍ତିଷ୍କକେନ୍ଦ୍ରସମୂହ ସମସ୍ତେ ହିଁ ପୃଥକ୍

ପୃଥକ୍, ଆଉ ଏପରି କୌଣସି ଗୋଟିଏ କେନ୍ଦ୍ର ନାହିଁ, ଯାହା ଅନ୍ୟସବୁ କେନ୍ଦ୍ରଗୁଡ଼ିକୁ ନିୟମିତ କରୁଛି । ଅତଏବ ଏପର୍ଯ୍ୟନ୍ତ ଏ ବିଷୟରେ ସାଙ୍ଖ୍ୟ ମନୋବିଜ୍ଞାନର କୌଣସି ପ୍ରତିବାଦୀ ନାହିଁ । ଗୋଟିଏ ସମ୍ପୂର୍ଣ୍ଣ ଧାରଣା କରିବା ପାଇଁ ଏପରି ଏକତ୍ୱବିର ପ୍ରୟୋଜନ ଯାହା ଉପରେ ବିଷୟାନୁଭୂତିଗୁଡ଼ିକ ପ୍ରତିବିମ୍ବିତ ହେବ । ସେପରି କିଛି ନ ରହିଲେ ମୁଁ ଆପଣଙ୍କର ବା ସେହି ଛବିଖଣ୍ଡିକର ବା ଅନ୍ୟ କୌଣସି ବସ୍ତୁର କୌଣସି ଜ୍ଞାନଲାଭ କରିପାରିବି ନାହିଁ । ଯଦି ଆମମାନଙ୍କ ଭିତରେ ଏହି ଏକତ୍ୱବିଧାୟକ କିଛି ନ ରହନ୍ତା, ତେବେ ଆମେ ହୁଏତ କେବଳ ଦେଖିବାକୁ ଲାଗିଲୁ, କିଛିକ୍ଷଣ ପରେ ଶୁଣିବାକୁ ଲାଗିଲୁ, କିଛିକ୍ଷଣ ପରେ ସ୍ପର୍ଶାନୁଭବ କରିବାକୁ ଲାଗିଲୁ ଏବଂ ଏପରି ହୁଅନ୍ତା ଯେ, ଜଣେ କଥା କହୁଛି ଶୁଣୁଛୁ, କିନ୍ତୁ ତା'କୁ ଆଦୌ ଦେଖିପାରୁ ନାହୁଁ, କାରଣ କେନ୍ଦ୍ରସମୂହ ଭିନ୍ନ ଭିନ୍ନ ।

ଏହି ଦେହ ଜଡ଼ ପରମାଣୁଦ୍ୱାରା ଗଠିତ ଓ ଏହା ଜଡ଼ ଏବଂ ଅଚେତନ । ଯାହାକୁ ସୂକ୍ଷ୍ମଶରୀର କୁହାଯାଏ, ତାହା ମଧ୍ୟ ତଦ୍ରୂପ । ସାଙ୍ଖ୍ୟମତରେ ସୂକ୍ଷ୍ମଶରୀର ଅତିସୂକ୍ଷ୍ମ ପରମାଣୁଗଠିତ ଗୋଟାଏ କ୍ଷୁଦ୍ର ଶରୀର, ତାହାର ପରମାଣୁଗୁଡ଼ିକ ଏତେ ସୂକ୍ଷ୍ମ ଯେ, କୌଣସି ଅଣୁବୀକ୍ଷଣ ଯନ୍ତ୍ରଦ୍ୱାରା ମଧ୍ୟ ସେଗୁଡ଼ିକୁ ଦେଖିହୁଏ ନାହିଁ । ଏହି ସୂକ୍ଷ୍ମ ଦେହର ପ୍ରୟୋଜନ କଅଣ ? ତାହା ଆମେ ଯାହାକୁ ମନ କହୁଁ, ତାହାର ଆଧାରସ୍ୱରୂପ । ଯେପରି ଏହି ସ୍ଥୂଳ ଶରୀର ସ୍ଥୂଳତର ଶକ୍ତିସମୂହର ଆଧାର, ସେହିପରି ସୂକ୍ଷ୍ମଶରୀର, ଚିନ୍ତା ଓ ତାହାର ନାନାବିଧ ବିକାରସ୍ୱରୂପ ସୂକ୍ଷ୍ମତର ଶକ୍ତିସମୂହର ଆଧାର । ପ୍ରଥମତଃ ଏହି ସ୍ଥୂଳ ଶରୀର—ଏହା ସ୍ଥୂଳ ଜଡ଼ ଓ ସ୍ଥୂଳ ଶକ୍ତିମୟ । ଶକ୍ତି ଜଡ଼ ବ୍ୟତୀତ ରହିପାରେ ନାହିଁ, କାରଣ ତାହା କେବଳ ଜଡ଼ ଭିତର ଦେଇ ନିଜକୁ ପ୍ରକାଶ କରିପାରେ । ଅତଏବ ସ୍ଥୂଳତର ଶକ୍ତିସମୂହ ଏହି ସ୍ଥୂଳ ଶରୀରର ମଧ୍ୟଦେଇ କାର୍ଯ୍ୟ କରିପାରେ ଓ ଅବଶେଷରେ ସେଗୁଡ଼ିକ ସୂକ୍ଷ୍ମତର ରୂପ ଧାରଣ କରେ । ଯେଉଁ ଶକ୍ତି ସ୍ଥୂଳଭାବରେ କାର୍ଯ୍ୟ କରେ, ତାହା ହିଁ ସୂକ୍ଷ୍ମତର ରୂପରେ କାର୍ଯ୍ୟ କରିଥାଏ ଓ ଚିନ୍ତାରୂପେ ପରିଣତ ହୁଏ । ସେଗୁଡ଼ିକ ମଧ୍ୟରେ କୌଣସି ପ୍ରକାର ବାସ୍ତବ ଭେଦ ନାହିଁ—ଏକମାତ୍ର ବସ୍ତୁର ଗୋଟିଏ ସ୍ଥୂଳ ଓ ଅନ୍ୟଟି ସୂକ୍ଷ୍ମପ୍ରକାଶ ମାତ୍ର, ସୂକ୍ଷ୍ମଶରୀର ଓ ସ୍ଥୂଳ ଶରୀର ମଧ୍ୟରେ ଉପାଦାନଗତ କୌଣସି ଭେଦ ନାହିଁ । ସୂକ୍ଷ୍ମଶରୀର ମଧ୍ୟ ଜଡ଼, ତେବେ ଏହା ଖୁବ୍ ସୂକ୍ଷ୍ମ ଜଡ଼ ।

ଏହି ସମସ୍ତ ଶକ୍ତି କେଉଁଠାରୁ ଆସେ ? ବେଦାନ୍ତଦର୍ଶନ ମତରେ ପ୍ରକୃତି ଦୁଇଟି ବସ୍ତୁରେ ଗଠିତ, ଗୋଟିକୁ ସେମାନେ ଆକାଶ କହନ୍ତି, ତାହା ଅତି ସୂକ୍ଷ୍ମ ଜଡ଼, ପୁଣି ଅନ୍ୟଟିକୁ ସେମାନେ ପ୍ରାଣ କହନ୍ତି । ଆପଣମାନେ ପୃଥିବୀ, ବାୟୁ ବା ଅନ୍ୟ ଯାହା କିଛି ଦେଖନ୍ତି, ଶୁଣନ୍ତି ବା ସ୍ପର୍ଶଦ୍ୱାରା ଅନୁଭବ କରନ୍ତି, ସେସବୁ ହେଉଛି ଜଡ଼ ଓ ସେସବୁ ହେଉଛି ଆକାଶର ହିଁ ବିଭିନ୍ନ ରୂପମାତ୍ର । ତାହା ପ୍ରାଣ ବା ସର୍ବବ୍ୟାପୀ ଶକ୍ତିର ପ୍ରେରଣାରେ କେତେବେଳେ ସୂକ୍ଷ୍ମରୁ ସୂକ୍ଷ୍ମତର ହୁଏ, କେତେବେଳେ ସ୍ଥୂଳରୁ ସ୍ଥୂଳତର ହୁଏ । ଆକାଶ ଭଳି ପ୍ରାଣ ମଧ୍ୟ ସର୍ବବ୍ୟାପୀ, ସର୍ବବସ୍ତୁରେ ବ୍ୟାପ୍ତ । ଆକାଶ ଯେପରି ଜଳ ଏବଂ ଜଗତରେ

ଆଉ ଯାହା କିଛି ଅଛି, ସେସବୁ ବିରଫଖଣ୍ଡ ଭଳି; ସେହିଗୁଡ଼ିକ ଜଳରୁ ଉତ୍ପନ୍ନ ହୋଇ ଜଳରେ ଭାସେ ଓ ପ୍ରାଣ ହିଁ ସେହି ଶକ୍ତି, ଯାହା ଆକାଶକୁ ଏହି ବିଭିନ୍ନ ରୂପରେ ପରିଣତ କରିଥାଏ ।

ଏହି ଦେହଯନ୍ତ୍ର—ପୈଶିକଗତି, ଅର୍ଥାତ୍ ଭ୍ରମଣ, ଉପବେଶନ, ବାକ୍ୟକଥନ ପ୍ରଭୃତି ରୂପେ, ପ୍ରାଣର ସ୍ଥୂଳ ପ୍ରକାଶ ନିମନ୍ତେ ଆକାଶରୁ ନିର୍ମିତ ହୋଇଛି । ସୂକ୍ଷ୍ମଶରୀର ମଧ୍ୟ ପ୍ରାଣର ଚିନ୍ତାରୂପକ ସୂକ୍ଷ୍ମ ଅଭିବ୍ୟକ୍ତି ପାଇଁ ଆକାଶରୁ—ଆକାଶର ସୂକ୍ଷ୍ମତର ରୂପରୁ ନିର୍ମିତ ହୋଇଛି । ଅତଏବ ପ୍ରଥମେ ଏହି ସ୍ଥୂଳଶରୀର, ତାହା ପରେ ସୂକ୍ଷ୍ମଶରୀର, ତାହା ପରେ ଜୀବ ବା ଆତ୍ମା—ଯାହା ମାନବର ଯଥାର୍ଥ ସ୍ୱରୂପ । ଯେଉଁପରି ଆମର ନଖ, ବର୍ଷକରେ ଶହେଥର କାଟି ଫିଙ୍ଗି ଦିଆଯାଇପାରେ, କିନ୍ତୁ ତାହା ଆମ ଶରୀରର ଅଂଶସ୍ୱରୂପ, ତହିଁରୁ ପୃଥକ୍ ନୁହେଁ, ସେହିପରି ଆମ ଶରୀର ଦୁଇଟି ନୁହେଁ । ମନୁଷ୍ୟର ଯେ ଗୋଟିଏ ସ୍ଥୂଳ ଶରୀର ଓ ଗୋଟିଏ ସୂକ୍ଷ୍ମ ଶରୀର ଅଛି, ତାହା ନୁହେଁ; ଶରୀର ଗୋଟିଏ ମାତ୍ର, ତେବେ ସୂକ୍ଷ୍ମ ଆକାରରେ ତାହା ଅପେକ୍ଷାକୃତ ଦୀର୍ଘକାଳ ରହେ, ଆଉ ସ୍ଥୂଳଶରୀରଟି ଶୀଘ୍ର ନଷ୍ଟ ହୋଇଯାଏ । ଯେପରି ମୁଁ ବର୍ଷକ ମଧ୍ୟରେ ଶହେଥର ଏହି ନଖ କାଟି ଫିଙ୍ଗି ଦେଇପାରେ; ସେହିପରି ଗୋଟିଏ ଯୁଗରେ ମୁଁ ଲକ୍ଷ ଲକ୍ଷ ସ୍ଥୂଳଶରୀର ତ୍ୟାଗ କରିପାରେ; କିନ୍ତୁ ସୂକ୍ଷ୍ମଶରୀର ରହିଯିବ । ଦ୍ୱୈତବାଦୀମାନଙ୍କ ମତରେ ଏହି ଜୀବ, ଅର୍ଥାତ୍ ମନୁଷ୍ୟର ଯଥାର୍ଥ ସ୍ୱରୂପ ଯାହା, ତାହା ଅଣୁ ଅର୍ଥାତ୍ ଅତିସୂକ୍ଷ୍ମ ।

ଏପର୍ଯ୍ୟନ୍ତ ଆମେ ଦେଖିଲେ ଯେ, ମନୁଷ୍ୟର ପ୍ରଥମତଃ ଏହି ସ୍ଥୂଳ ଶରୀର ଅଛି, ଯାହା ଅତିଶୀଘ୍ର ଧ୍ୱଂସପ୍ରାପ୍ତ ହୁଏ । ତାହାପରେ ସୂକ୍ଷ୍ମଶରୀର—ଯାହା ଯୁଗ-ଯୁଗାନ୍ତ ଧରି ବିଦ୍ୟମାନ ରହେ, ତାହାପରେ ଜୀବାତ୍ମା । ବେଦାନ୍ତଦର୍ଶନ ମତରେ, ଈଶ୍ୱର ଯେପରି ନିତ୍ୟ ଏହି ଜୀବ ମଧ୍ୟ ତଦ୍ରୂପ ନିତ୍ୟ, ପୁଣି ପ୍ରକୃତି ମଧ୍ୟ ନିତ୍ୟ, ତେବେ ତାହା ପ୍ରବାହରୂପେ ନିତ୍ୟ । ପ୍ରକୃତିର ଉପାଦାନସ୍ୱରୂପ ଆକାଶ ଓ ପ୍ରାଣ ନିତ୍ୟ; କିନ୍ତୁ ଅନନ୍ତ କାଳ ଧରି ତାହା ବିଭିନ୍ନାକାରରେ ପରିବର୍ତ୍ତିତ ହେଉଛି । ଜଡ଼ ଓ ଶକ୍ତି ନିତ୍ୟ, କିନ୍ତୁ ସେଗୁଡ଼ିକର ସମବାୟସମୂହ ସର୍ବଦା ପରିବର୍ତ୍ତନଶୀଳ । ଆକାଶ ବା ପ୍ରାଣ, କୌଣସିଟିରୁ ଜୀବ ନିର୍ମିତ ନୁହେଁ, ତାହା ଅଜଡ଼, ଅତଏବ ଚିରକାଳ ତାହା ରହିବ । ତାହା ପ୍ରାଣ ଓ ଆକାଶର କୌଣସି ପ୍ରକାର ସଂଯୋଗର ଫଳସ୍ୱରୂପ ନୁହେଁ, ଆଉ ଯାହା ସଂଯୋଗର ଫଳ ନୁହେଁ, ତାହା କେବେ ନଷ୍ଟ ହେବ ନାହିଁ; କାରଣ, ବିନାଶର ଅର୍ଥ ସଂଯୋଗର ବିଶ୍ଳେଷଣ । ଯେ କୌଣସି ବସ୍ତୁ ଯୌଗିକ ନୁହେଁ, ତାହା କେବେ ନଷ୍ଟ ହୋଇପାରେ ନାହିଁ । ସ୍ଥୂଳ ଶରୀର ଆକାଶ ଓ ପ୍ରାଣର ନାନା ପ୍ରକାର ସଂଯୋଗର ଫଳ, ସୁତରାଂ ତାହା ବିଶ୍ଳିଷ୍ଟ ହୋଇଯିବ, ସୂକ୍ଷ୍ମଶରୀର ମଧ୍ୟ ଦୀର୍ଘକାଳ ପରେ ବିଶ୍ଳିଷ୍ଟ ହୋଇଯିବ; କିନ୍ତୁ ଜୀବ ଅଯୌଗିକ ପଦାର୍ଥ, ସୁତରାଂ ତାହା କେବେହେଲେ ଧ୍ୱଂସପ୍ରାପ୍ତ ହେବ ନାହିଁ । ପୂର୍ବୋକ୍ତ କାରଣରୁ ଆମେ କହି ପାରିବା ନାହିଁ ଯେ ଜୀବ କେଉଁ କାଳରେ ଜାତ ହୋଇଥିଲା । କୌଣସି ଅଯୌଗିକ ପଦାର୍ଥର ଜନ୍ମ ହୋଇ ନ ପାରେ; କେବଳ ଯାହା ଯୌଗିକ, ତାହାର ହିଁ ଜନ୍ମ ହୋଇପାରେ ।

ଲକ୍ଷ ଲକ୍ଷ ପ୍ରକାର ଆକାରରେ ମିଶ୍ରିତ ଏହି ସମଗ୍ର ପ୍ରକୃତି ଈଶ୍ୱରଙ୍କ ଇଚ୍ଛାର ଅଧୀନ । ଈଶ୍ୱର ସର୍ବବ୍ୟାପୀ, ସର୍ବଜ୍ଞ ଓ ନିରାକାର ଏବଂ ସେ ଦିବାରାତ୍ରି ଏହି ପ୍ରକୃତିକୁ ପରିଚାଳିତ କରୁଛନ୍ତି । ସମଗ୍ର ପ୍ରକୃତି ତାହାଙ୍କର ଶାସନାଧୀନ ରହିଛି । କୌଣସି ପ୍ରାଣୀର ସ୍ୱାଧୀନତା ନାହିଁ । ତାହା ରହିପାରେ ନାହିଁ । ସେ ହିଁ ଏକମାତ୍ର ଶାସ୍ତା, ଏହା ହେଉଛି ଦ୍ୱୈତବେଦାନ୍ତର ଉପଦେଶ ।

ତାହାପରେ ଏହି ପ୍ରଶ୍ନ ଉଠେ ଯେ, ଯଦି ଈଶ୍ୱର ଏହି ଜଗତର ଶାସ୍ତା ହୁଅନ୍ତି, ତେବେ ସେ ଏଭଳି ଏକ କୁତ୍ସିତ ଜଗତ ସୃଷ୍ଟି କଲେ କାହିଁକି ? କାହିଁକି ଆମେ ଏତେ କଷ୍ଟ ପାଇବା ? ଏହାର ଉତ୍ତର ଏଭଳି ଦିଆ ହୋଇଥାଏ ଯେ, ଏଥିରେ ଈଶ୍ୱରଙ୍କର କୌଣସି ଦୋଷ ନାହିଁ । ଆମେ ଆମ ନିଜ ଦୋଷରୁ ହିଁ କଷ୍ଟ ପାଇଥାଉ । ଆମେ ଯେପରି ବୀଜ ବପନ କରୁ, ସେହିପରି ଶସ୍ୟ ହିଁ ପାଇଥାଉ । ଈଶ୍ୱର ଆମକୁ ଶାସ୍ତି ଦେବା ପାଇଁ କିଛି କରନ୍ତି ନାହିଁ । ଯଦି କୌଣସି ବ୍ୟକ୍ତି ଦରିଦ୍ର, ଅନ୍ଧ କିମ୍ବା ଖଞ୍ଜ ହୋଇ ଜନ୍ମଗ୍ରହଣ କରେ, ବୁଝିବାକୁ ହେବ ସେ ଜନ୍ମିବା ପୂର୍ବରୁ ଏଭଳି କିଛି କରିଥିଲା, ଯାହା ଏହି ଫଳ ପ୍ରସବ କରିଛି । ଚିରକାଳ ଧରି ଜୀବ ବିଦ୍ୟମାନ ଅଛନ୍ତି, ସେ କେବେହେଲେ ହେଲେ ସୃଷ୍ଟ ହୁଅନ୍ତି ନାହିଁ ଏବଂ ସେ ଚିରକାଳ ଧରି ନାନା କାର୍ଯ୍ୟ କରିଆସୁଛନ୍ତି । ପୁଣି ଆମେ ଯେକୌଣସି କାର୍ଯ୍ୟ କରୁ, ତାହାର ଫଳ ଭୋଗ କରିବାକୁ ହୁଏ । ଯଦି ଶୁଭ କର୍ମ କରିବା ତେବେ ଆମେ ସୁଖ ଲାଭ କରିବା, ଅଶୁଭ କର୍ମ କଲେ ଦୁଃଖ ଭୋଗ କରିବାକୁ ହେବ । ଜୀବ ସ୍ୱରୂପତଃ ଶୁଦ୍ଧସ୍ୱଭାବ, ତେବେ ଦ୍ୱୈତବାଦୀ କହନ୍ତି, ଅଜ୍ଞାନ ତାହାର ସ୍ୱରୂପକୁ ଆବୃତ କରିଛି । ଯେପରି ଅସତ୍ କର୍ମଦ୍ୱାରା ସେ ଆପଣାକୁ ଅଜ୍ଞାନଦ୍ୱାରା ଆବୃତ କରିଛି, ସେହିପରି ଶୁଭ କର୍ମଦ୍ୱାରା ସେ ନିଜ ସ୍ୱରୂପକୁ ପୁନର୍ବାର ଜାଣିପାରିବ । ଜୀବ ଯେପରି ନିତ୍ୟ, ସେହିପରି ଶୁଦ୍ଧ, ପ୍ରତ୍ୟେକ ଜୀବର ସ୍ୱରୂପ ଶୁଦ୍ଧ । ଯେତେବେଳେ ଶୁଭ କର୍ମଦ୍ୱାରା ତାହାର ସମୁଦାୟ ପାପ ଓ ଅଶୁଭ କର୍ମ ଧୌତ ହୋଇଯାଏ, ସେତେବେଳେ ଜୀବ ପୁଣି ଶୁଦ୍ଧ ହୁଏ; ଏବଂ ଯେତେବେଳେ ସେ ଶୁଦ୍ଧ ହୁଏ, ସେତେବେଳେ ସେ ମୃତ୍ୟୁପରେ ଦେବଯାନ ପଥରେ ସ୍ୱର୍ଗକୁ ବା ଦେବଲୋକକୁ ଗମନ କରେ । ଯଦି ସେ ସାଧାରଣ ପ୍ରକାରର ଭଲ ଲୋକ ହୋଇଥାଏ, ତେବେ ସେ ପିତୃ-ଲୋକକୁ ଗମନ କରେ ।

ସ୍ଥୂଳ ଦେହର ପତନ ହେଲେ ବାକ୍-ଇନ୍ଦ୍ରିୟ ମନରେ ପ୍ରବେଶ କରେ । ବାକ୍ୟ ବ୍ୟତୀତ ଚିନ୍ତା କରିହୁଏ ନାହିଁ, ଯେଉଁଠାରେ ବାକ୍ୟ, ସେଠାରେ ଚିନ୍ତା ଅବଶ୍ୟ ବିଦ୍ୟମାନ । ପୁଣି ପ୍ରାଣରେ ମନ ଲୟ ହୁଏ ଏବଂ ଜୀବଠାରେ ପ୍ରାଣ ଲୟପ୍ରାପ୍ତ ହୁଏ । ଯେତେବେଳେ ଜୀବ ଦେହ ତ୍ୟାଗ କରି ତାହାର ଅତୀତ ଜୀବନର କର୍ମର ଫଳ ସ୍ୱରୂପ ଯେଉଁ ପୁରସ୍କାର ବା ଶାସ୍ତି ଉପଯୁକ୍ତ, ସେହି ଅବସ୍ଥାକୁ ଗମନ କରେ । ଦେବଲୋକର ଅର୍ଥ ଦେବତା-ମାନଙ୍କର ବାସସ୍ଥାନ । ଦେବ ଶବ୍ଦର ଅର୍ଥ ଉଜ୍ଜ୍ୱଳ ବା ପ୍ରକାଶସ୍ୱଭାବ—ଖ୍ରୀଷ୍ଟିୟାନ ଓ ମୁସଲମାନମାନେ ଏଞ୍ଜେଲ୍ (Angel) ବୋଲି ଯାହାକୁ କହନ୍ତି ଦେବ କହିଲେ ତାହା ହିଁ ବୁଝାଏ । ଏମାନଙ୍କ ମତରେ—ଦାନ୍ତେ ତାଙ୍କର ଡିଭାଇନ୍ କମେଡ଼ି (Divine

Comedy)ରେ ଯେପରି ନାନାବିଧ ସ୍ୱର୍ଗଲୋକର ବର୍ଣ୍ଣନା କରିଛନ୍ତି, ବେଦେତାଂଶରେ ସେହିପରି ନାନା ସ୍ୱର୍ଗଲୋକ ଅଛି, ଯଥା ପିତୃଲୋକ, ଦେବଲୋକ, ଚନ୍ଦ୍ରଲୋକ, ବିଦ୍ୟୁଲ୍ଲୋକ, ସର୍ବଶ୍ରେଷ୍ଠ ବ୍ରହ୍ମଲୋକ—ବ୍ରହ୍ମାଙ୍କର ସ୍ଥାନ । ବ୍ରହ୍ମଲୋକ ବ୍ୟତୀତ ଅନ୍ୟାନ୍ୟ ସ୍ଥାନରୁ ଜୀବ ଇହଲୋକକୁ ଫେରି ଆସି ପୁଣି ନର-ଜନ୍ମ ଗ୍ରହଣ କରେ, କିନ୍ତୁ ଯେ ବ୍ରହ୍ମଲୋକପ୍ରାପ୍ତ ହୁଅନ୍ତି, ସେ ସେଠାରେ ଅନନ୍ତ କାଳଧରି ବାସ କରନ୍ତି । ଯେଉଁ ସମସ୍ତ ଶ୍ରେଷ୍ଠ ମାନବ ସମ୍ପୂର୍ଣ୍ଣ ନିଃସ୍ୱାର୍ଥ ଓ ସମ୍ପୂର୍ଣ୍ଣ ପବିତ୍ର ହୋଇଛନ୍ତି, ଯେଉଁମାନେ ସମସ୍ତ ବାସନା ତ୍ୟାଗ କରିଛନ୍ତି, ଯେଉଁମାନେ ଈଶ୍ୱରଙ୍କ ଉପାସନା ଓ ତଦୀୟ ପ୍ରେମରେ ନିମଗ୍ନ ହେବା ବ୍ୟତୀତ ଅନ୍ୟକିଛି କରିବାକୁ ଚାହାନ୍ତି ନାହିଁ, ସେହିମାନଙ୍କର ଏହି ଶ୍ରେଷ୍ଠ ଗତି ହୁଏ । ଏମାନଙ୍କ ଅପେକ୍ଷା କିଞ୍ଚିତ୍ ନିମ୍ନସ୍ତରର ଦ୍ୱିତୀୟ ଶ୍ରେଣୀର ଆଉ ଏକଦଳ ଲୋକ ଅଛନ୍ତି, ସେମାନେ ଶୁଭ କର୍ମ କରନ୍ତି ସତ, କିନ୍ତୁ ସେଥିପାଇଁ ପୁରସ୍କାରର ଆକାଙ୍କ୍ଷୀ, ସେମାନେ ସେହି ଶୁଭ କର୍ମର ଫଳସ୍ୱରୂପ ସ୍ୱର୍ଗକୁ ଯିବାକୁ ଚାହାନ୍ତି, ସେମାନଙ୍କର ମୃତ୍ୟୁ ପରେ ସେମାନଙ୍କର ଜୀବ ଚନ୍ଦ୍ର-ଲୋକକୁ ଯାଇ ସ୍ୱର୍ଗସୁଖ ଭୋଗ କରିଥାଏ । ସେଠାରେ ସେ ଜଣେ ଦେବତା ହୁଅନ୍ତି, ଦେବଗଣ ଅମର ନୁହନ୍ତି, ସେମାନଙ୍କୁ ମଧ୍ୟ ମରିବାକୁ ହୁଏ । ସ୍ୱର୍ଗରେ ମଧ୍ୟ ସମସ୍ତେ ମରିବେ । ମୃତ୍ୟୁଶୂନ୍ୟ ସ୍ଥାନ କେବଳ ବ୍ରହ୍ମଲୋକ, କେବଳ ସେହିଠାରେ ଜନ୍ମ ନାହିଁ କି ମୃତ୍ୟୁ ମଧ୍ୟ ନାହିଁ । ପୁରାଣରେ ଦୈତ୍ୟମାନଙ୍କର ଉଲ୍ଲେଖ ଦେଖିବାକୁ ମିଳେ, ସେମାନେ ସମୟ ସମୟରେ ଦେବତାମାନଙ୍କର ବିରୋଧ କରନ୍ତି । ସବୁ ଦେଶର ପୁରାଣରେ ଏହି ଦେବ-ଦୈତ୍ୟଙ୍କର ସଂଗ୍ରାମ ଦେଖିବାକୁ ମିଳେ । ସମୟେ ସମୟେ ଦୈତ୍ୟମାନେ ଦେବତା-ମାନଙ୍କ ଉପରେ ଜୟଲାଭ କରିଥାଆନ୍ତି । ସକଳ ଦେଶର ପୁରାଣରେ ଏହା ଦେଖିବାକୁ ମିଳେ ଯେ, ଦେବତାମାନେ ମାନବ-ଜାତିର ସୁନ୍ଦରୀ ଦୁହିତାପ୍ରିୟ । ଦେବତାରୂପରେ ଜୀବ କେବଳ ତାଙ୍କର ଅତୀତ କର୍ମର ଫଳ ଭୋଗ କରନ୍ତି, କିନ୍ତୁ କୌଣସି ନୂତନ କର୍ମ କରନ୍ତି ନାହିଁ । କର୍ମ ଅର୍ଥରେ ଯେଉଁ ସକଳ କାର୍ଯ୍ୟ ଫଳ ପ୍ରସବ କରିବ, ତାହା ବୁଝାଇଥାଏ, ପୁଣି ଫଳଗୁଡ଼ିକୁ ମଧ୍ୟ ବୁଝାଇଥାଏ । ମନୁଷ୍ୟର ଯେତେବେଳେ ମୃତ୍ୟୁ ହୁଏ ଓ ସେ ଦେବ-ଦେହ ପାଏ, ସେତେବେଳେ ସେ କେବଳ ସୁଖ ଭୋଗ କରେ, କୌଣସି ନୂତନ କର୍ମ କରେ ନାହିଁ । ସେ ତାହାର ଅତୀତ ଶୁଭ କର୍ମର ପୁରସ୍କାର ଭୋଗ କରେ ମାତ୍ର, କିନ୍ତୁ ଯେତେବେଳେ ସେହି ଶୁଭ କର୍ମର ଫଳ ଶେଷ ହୋଇଯାଏ, ସେତେବେଳେ ତାହାର ଅନ୍ୟ କର୍ମଫଳ ପ୍ରସବୋନ୍ମୁଖ ହୁଏ ।

ବେଦରେ ନରକର କୌଣସି ଉଲ୍ଲେଖ ନାହିଁ, କିନ୍ତୁ ପରବର୍ତ୍ତୀ କାଳରେ ପୁରାଣ-କାରମାନେ—ଆମର ପରବର୍ତ୍ତୀ କାଳର ଶାସ୍ତ୍ରକାରମାନେ—ଭାବିଥିଲେ ଯେ, ନରକ ନ ରହିଲେ କୌଣସି ଧର୍ମ ସମ୍ପୂର୍ଣ୍ଣ ହୋଇପାରିବ ନାହିଁ, ସୁତରାଂ ସେମାନେ ନାନାବିଧ ନରକର କଳ୍ପନା କଲେ । ଦାନ୍ତେ ତାଙ୍କର 'ନରକ' (Inferno)ରେ ଯେତେ ପ୍ରକାର ଶାସ୍ତି କଳ୍ପନା କରିଥିଲେ, ସେମାନେ ସେତେ ପ୍ରକାର, ଏପରିକି, ତା'ଠାରୁ ମଧ୍ୟ ଅଧିକ ପ୍ରକାର ନରକର କଳ୍ପନା କରିଥିଲେ । ତେବେ ଆମମାନଙ୍କର ଶାସ୍ତ୍ର ଦୟା କରି କହନ୍ତି,

ଏହି ଶାସ୍ତି କିଛି କାଳଲାଗି ମାତ୍ର । ସେହି ଅବସ୍ଥାରେ ଅଶୁଭ କର୍ମର ଫଳଭୋଗ ହୋଇ କ୍ଷୟ ହୋଇଯାଏ; ସେତେବେଳେ ଜୀବାତ୍ମାଗଣ ପୁନର୍ବାର ପୃଥିବୀକୁ ଆସି ଆଉଥରେ ଉନ୍ନତି କରିବାକୁ ଅବସର ଲାଭ କରନ୍ତି । ଏହି ମାନବଦେହରେ ହିଁ ଉନ୍ନତି-ସାଧନର ବିଶେଷ ସୁଯୋଗ ଥାଏ । ଏହି ମାନବଦେହକୁ କର୍ମଦେହ କହନ୍ତି, ଏହି ମାନବଦେହରେ ହିଁ ଆମେ ଆମମାନଙ୍କର ଭବିଷ୍ୟତ ଭାଗ୍ୟ ସ୍ଥିର କରିଥାଉଁ । ଆମେମାନେ ଗୋଟିଏ ବୃହତ୍ ବୃତ୍ତାକାରରେ ଭ୍ରମଣ କରିଥାଉଁ, ଏବଂ ମାନବଦେହ ସେହି ବୃତ୍ତ ମଧ୍ୟରେ ଗୋଟିଏ ବିନ୍ଦୁ, ଯେଉଁଠାରେ ଆମମାନଙ୍କର ଭବିଷ୍ୟତ ନିର୍ଦ୍ଧାରିତ ହୁଏ । ଏହି କାରଣରୁ ଅନ୍ୟାନ୍ୟ ସବୁ ପ୍ରକାର ଦେହ ଅପେକ୍ଷା ମାନବଦେହ ହିଁ ଶ୍ରେଷ୍ଠତମ ବୋଲି ନିର୍ଦ୍ଦିଷ୍ଟ ହୋଇଥାଏ । ମାନବ ଦେବତାମାନଙ୍କଠାରୁ ମଧ୍ୟ ଶ୍ରେଷ୍ଠତର । ଦେବତାମାନେ ମଧ୍ୟ ମନୁଷ୍ୟ-ଜନ୍ମ ଗ୍ରହଣ କରିଥାଆନ୍ତି । ଏପର୍ଯ୍ୟନ୍ତ ଦ୍ୱୈତବେଦାନ୍ତର ଆଲୋଚନା ହେଲା ।

ତାହା ପରେ ବେଦାନ୍ତ-ଦର୍ଶନର ଆଉ ଏକ ଉଚ୍ଚତର ଭାବ ଅଛି—ଯେଉଁ ଦୃଷ୍ଟିରୁ ଏହି ସିଦ୍ଧାନ୍ତଗୁଡ଼ିକ ସମ୍ପୂର୍ଣ୍ଣ ପରିଣତ ନୁହେଁ । ଯଦି କହନ୍ତି ଈଶ୍ୱର ଅନନ୍ତ, ଜୀବାତ୍ମା ମଧ୍ୟ ଅନନ୍ତ ଏବଂ ପ୍ରକୃତି ମଧ୍ୟ ଅନନ୍ତ, ତେବେ ଏହିଭଳି ଅନନ୍ତର ସଂଖ୍ୟା ଆପଣ ଯେତେଇଚ୍ଛା ବଢ଼ାଇପାରନ୍ତି, କିନ୍ତୁ ଏହିପରି ଅନେକଗୁଡ଼ିଏ ଅନନ୍ତର କଳ୍ପନା କରିବା ଯୁକ୍ତିବିରୁଦ୍ଧ; କାରଣ ଏହି 'ଅନନ୍ତ'ଗୁଡ଼ିକ ପରସ୍ପର ପରସ୍ପରକୁ ସସୀମ କରିଦେବ, ପ୍ରକୃତ ପକ୍ଷରେ ଅନନ୍ତ ବୋଲି କିଛି ରହିବ ନାହିଁ । ଅତଏବ ଏମାନଙ୍କର ସିଦ୍ଧାନ୍ତ ଏହି ଯେ, ଈଶ୍ୱର ହିଁ ଜଗତର ନିମିତ୍ତ ଓ ଉପାଦାନ କାରଣ, ସେ ନିଜ ଭିତରୁ ଏହି ଜଗତ୍ ବାହାର କରିଛନ୍ତି । ଏହାର ଅର୍ଥ କ'ଣ ଈଶ୍ୱର ଏହି କାନ୍ଥ, ଏହି ଟେବୁଲ, ଏହି ପଶୁ, ଏହି ହତ୍ୟାକାରୀ ଏବଂ ଜଗତ୍ ଅନ୍ତର୍ଗତ ସବୁ ପ୍ରକାର ମନ୍ଦ ଜିନିଷ ହୋଇଛନ୍ତି ? ଈଶ୍ୱର ଶୁଦ୍ଧସ୍ୱରୂପ; ସେ କି ପ୍ରକାରେ ଏହି ସବୁ ମନ୍ଦ ଜିନିଷ ହେଲେ ? ନା, ସେ ତାହା ଆଦୌ ହୋଇ ନାହାନ୍ତି । ଈଶ୍ୱର ଅପରିଣାମୀ । ଏହି ସକଳ ପରିଣାମ ପ୍ରକୃତିଗତ ମାତ୍ର—ଯେପରିକି ମୁଁ ଅପରିଣାମୀ ଆତ୍ମା, ଅଥଚ ମୋର ଦେହ ରହିଛି । ଗୋଟିଏ ଅର୍ଥରେ ଏହି ଦେହ ମୋଠାରୁ ପୃଥକ୍ ନୁହେଁ, କିନ୍ତୁ ମୁଁ—ଯଥାର୍ଥ 'ମୁଁ' କେବେହେଲେ ଦେହ ନୁହେଁ । ମୁଁ କେତେବେଳେ ବାଳକ, କେତେବେଳେ ଯୁବକ, କେତେବେଳେ ବା ବୃଦ୍ଧ ହୋଇଛି । କିନ୍ତୁ ତହିଁରେ ମୋ ଆତ୍ମାର କିଛି ହେଲେ ପରିବର୍ତ୍ତନ ହୁଏ ନାହିଁ । ତାହା ସେହି ଯେଉଁ ଆତ୍ମା, ସେହି ଆତ୍ମା ହିଁ ରହେ । ଏହିଭଳି ପ୍ରକୃତି ଏବଂ ଅନନ୍ତ ଆତ୍ମା-ସମନ୍ୱିତ ଏହି ଜଗତ୍ ଯେପରିକି ଈଶ୍ୱରଙ୍କ ଅନନ୍ତ ଶରୀରସ୍ୱରୂପ । ସେ ଏହାର ସର୍ବାଂଶରେ ଓତଃପ୍ରୋତଭାବରେ ରହିଛନ୍ତି । ସେ ହେଉଛନ୍ତି ଏକମାତ୍ର ଅପରିଣାମୀ, କିନ୍ତୁ ପ୍ରକୃତି ପରିଣାମୀ ଏବଂ ଆତ୍ମାଗଣ ମଧ୍ୟ ପରିଣାମୀ । ପ୍ରକୃତିର କିପରି ପରିଣାମ ହୁଏ ? ପ୍ରକୃତିର ରୂପ ବା ଆକାର କ୍ରମାଗତ ପରିବର୍ତ୍ତିତ ହୁଏ, ତାହା ନୂତନ ନୂତନ ଆକାର ଗ୍ରହଣ କରେ; କିନ୍ତୁ ଆତ୍ମା ଏହିପ୍ରକାର ପରିଣାମପ୍ରାପ୍ତ ହୁଅନ୍ତି ନାହିଁ । ସେମାନଙ୍କର କେବଳ ଜ୍ଞାନର ସଙ୍କୋଚ ଓ ବିକାଶ ହୁଏ । ପ୍ରତ୍ୟେକ ଆତ୍ମା ଅଶୁଭ କର୍ମଦ୍ୱାରା ସଙ୍କୋଚପ୍ରାପ୍ତ ହୁଏ । ଯେଉଁ ସକଳ କାର୍ଯ୍ୟଦ୍ୱାରା

ଆତ୍ମାର ସ୍ୱାଭାବିକ ଜ୍ଞାନ ଓ ପବିତ୍ରତା ସଙ୍କୁଚିତ ହୁଏ, ସେଗୁଡ଼ିକୁ ହିଁ ଅଶୁଭ କର୍ମ କୁହାଯାଏ । ଯେଉଁ ସକଳ କର୍ମ ପୁଣି ଆତ୍ମାର ସ୍ୱାଭାବିକ ମହିମା ପ୍ରକାଶ କରାଏ, ସେଗୁଡ଼ିକୁ ଶୁଭ କର୍ମ କହନ୍ତି । ସକଳ ଆତ୍ମା ଶୁଦ୍ଧସ୍ୱଭାବ ଥିଲେ, କିନ୍ତୁ ସେମାନଙ୍କର ନିଜର କାର୍ଯ୍ୟଦ୍ୱାରା ସେମାନେ ସଙ୍କୋଚପ୍ରାପ୍ତ ହେଲେ । ତଥାପି ଈଶ୍ୱରଙ୍କ କୃପାରେ ଓ ଶୁଭ କର୍ମର ଅନୁଷ୍ଠାନ-ଦ୍ୱାରା ସେମାନେ ପୁଣି ବିକାଶପ୍ରାପ୍ତ ହେବେ ଓ ପୁନରାୟ ଶୁଦ୍ଧସ୍ୱରୂପ ହେବେ । ପ୍ରତ୍ୟେକ ଜୀବାତ୍ମାର ମୁକ୍ତିଲାଭ ନିମନ୍ତେ ସମାନ ସୁଯୋଗ ଓ ସମ୍ଭାବନା ଅଛି ଏବଂ ସମସ୍ତ ହେଲେ ସମସ୍ତେ ଶୁଦ୍ଧସ୍ୱରୂପ ହୋଇ ପ୍ରକୃତିର ବନ୍ଧନରୁ ମୁକ୍ତ ହେବେ । କିନ୍ତୁ ତେବେ ସୁଦ୍ଧା ଜଗତ୍ ଲୋପ ପାଇବ ନାହିଁ, କାରଣ ତାହା ଅନନ୍ତ । ଏହା ହିଁ ବେଦାନ୍ତର ଦ୍ୱିତୀୟ ପ୍ରକାର ସିଦ୍ଧାନ୍ତ । ପ୍ରଥମୋକ୍ତଟିକୁ ଦ୍ୱୈତବେଦାନ୍ତ କହନ୍ତି ଓ ଦ୍ୱିତୀୟୋକ୍ତଟି— ଯେଉଁ ମତରେ ଈଶ୍ୱର, ଆତ୍ମା ଓ ପ୍ରକୃତି ଅଛନ୍ତି, ପୁଣି ଆତ୍ମା ଓ ପ୍ରକୃତି ଈଶ୍ୱରଙ୍କର ଦେହସ୍ୱରୂପ ଓ ଏ ତିନିହେଁ ମିଶି ଏକ—ଏହାକୁ ବିଶିଷ୍ଟାଦ୍ୱୈତ ବେଦାନ୍ତ କହନ୍ତି ଏବଂ ଏ ମତାବଲମ୍ବୀମାନଙ୍କୁ ବିଶିଷ୍ଟାଦ୍ୱୈତୀ ବା ବିଶିଷ୍ଟାଦ୍ୱୈତବାଦୀ କୁହାଯାଏ ।

ସର୍ବଶେଷ ଓ ସର୍ବଶ୍ରେଷ୍ଠ ମତ ଅଦ୍ୱୈତବାଦ । ଏହି ମତରେ ମଧ୍ୟ ଈଶ୍ୱର ହିଁ ଏହି ଜଗତର ନିମିତ୍ତ ଓ ଉପାଦାନ କାରଣ ଉଭୟ । ସୁତରାଂ ଈଶ୍ୱର ଏହି ସମଗ୍ର ଜଗତ୍ ହୋଇଛନ୍ତି । ବିଶିଷ୍ଟାଦ୍ୱୈତବାଦୀଙ୍କର ଏହି ସିଦ୍ଧାନ୍ତ ଯେ, ଈଶ୍ୱର ଆତ୍ମାସ୍ୱରୂପ, ଆଉ ଜଗତ୍ ଯେପରି ତାଙ୍କର ଦେହସ୍ୱରୂପ ଓ ସେହି ଦେହର ପରିଣାମ ଘଟେ ତାହା ଅଦ୍ୱୈତବାଦୀ ସ୍ୱୀକାର କରନ୍ତି ନାହିଁ । ସେ କହନ୍ତି, ତେବେ ଆଉ ଈଶ୍ୱରଙ୍କୁ ଏହି ଜଗତର ଉପାଦାନ-କାରଣ କହିବାର କି ପ୍ରୟୋଜନ ? ଉପାଦାନ-କାରଣର ଅର୍ଥ ଏହି ଯେ କାରଣଟି କାର୍ଯ୍ୟର ରୂପ ଧାରଣ କରିଛି । କାର୍ଯ୍ୟ କାରଣର ରୂପାନ୍ତର ଛଡ଼ା ଅନ୍ୟ କିଛି ନୁହେଁ । ଯେଉଁଠାରେ କାର୍ଯ୍ୟ ଦେଖାଯାଏ, ସେଠାରେ ବୁଝିବାକୁ ହେବ ଯେ କାରଣ ହିଁ ରୂପାନ୍ତରିତ ହୋଇ ଅବସ୍ଥାନ କରିଛି । ଜଗତ୍ ଯଦି କାର୍ଯ୍ୟ ହୁଏ ଓ ଈଶ୍ୱର ଯଦି କାରଣ ହୁଅନ୍ତି, ତେବେ ଏହି ଜଗତ୍ ଅବଶ୍ୟ ଈଶ୍ୱରଙ୍କର ରୂପାନ୍ତର ମାତ୍ର । ଯଦି କୁହାଯାଏ, ଜଗତ୍ ହେଉଛି ଈଶ୍ୱରଙ୍କର ଶରୀର ଏବଂ ସେହି ଦେହ ସଙ୍କୋଚପ୍ରାପ୍ତ ହୋଇ ସୂକ୍ଷ୍ମାକାର ଧାରଣ କରି କାରଣ ହୁଏ ଓ ପରେ ପୁଣି ସେହି କାରଣରୁ ଜଗତର ବିକାଶ ଘଟେ, ସେଥିରେ ଅଦ୍ୱୈତବାଦୀ କହନ୍ତି, ଈଶ୍ୱର ସ୍ୱୟଂ ଏହି ଜଗତ୍ ହୋଇଛନ୍ତି । ଏହି ସ୍ଥଳରେ ଗୋଟିଏ ଅତି ସୂକ୍ଷ୍ମ ପ୍ରଶ୍ନ ଉଠେ । ଯଦି ଈଶ୍ୱର ଏହି ଜଗତ୍ ହୋଇଥାଆନ୍ତି, ତାହାହେଲେ ସବୁ ତ ଈଶ୍ୱର । ଅବଶ୍ୟ ସବୁ ହିଁ ଈଶ୍ୱର । ଆମର ଦେହ ଈଶ୍ୱର, ଆମର ମନ ମଧ୍ୟ ଈଶ୍ୱର, ଆମର ଆତ୍ମା ମଧ୍ୟ ଈଶ୍ୱର । ତେବେ ଏତେ ଜୀବ ଆସିଲେ କେଉଁଠାରୁ ? ଈଶ୍ୱର କିଅଣ ଲକ୍ଷ ଲକ୍ଷ ଜୀବ ରୂପରେ ବିଭକ୍ତ ହୋଇଛନ୍ତି ? ସେହି ଅନନ୍ତ ଶକ୍ତି, ସେହି ଅନନ୍ତ ପଦାର୍ଥ, ଜଗତର ସେହି ଏକ ସତ୍ତା କିପରି ବିଭକ୍ତ ହୋଇପାରନ୍ତି ? ଅନନ୍ତକୁ ବିଭାଗ କରିବା ଅସମ୍ଭବ, ତେବେ କିପରି ସେହି ଶୁଦ୍ଧସତ୍ତା (ସତ୍‌ସ୍ୱରୂପ) ଏହି ଜଗତ୍ ହୋଇଛନ୍ତି ? ଯଦି ସେ ଜଗତ୍ ହୋଇଥାଆନ୍ତି, ତେବେ ସେ ପରିଣାମୀ ଏବଂ ପରିଣାମୀ ହେଲେ ସେ

ପ୍ରକୃତିର ଅନ୍ତର୍ଗତ, ପୁଣି ଯାହା କିଛି ପ୍ରକୃତିର ଅନ୍ତର୍ଗତ ତାହାର ହିଁ ଜନ୍ମ-ମରଣ ଅଛି । ଯଦି ଈଶ୍ୱର ପରିଣାମୀ ହୁଅନ୍ତି, ତେବେ ତାହାଙ୍କର ମଧ୍ୟ ଦିନେ ମୃତ୍ୟୁ ହେବ । ଏହି କଥାଟି ମନେ ରଖନ୍ତୁ । ଆଉ ଗୋଟିଏ ପ୍ରଶ୍ନ ହେଉଛି, ଈଶ୍ୱରଙ୍କର କେତେ ଅଂଶ ଏହି ଜଗତ୍‌ରେ ପରିଣତ ହୋଇଛି ? ଯଦି କହନ୍ତି ଈଶ୍ୱରଙ୍କର 'କ' ଅଂଶ ଜଗତ୍ ହୋଇଛି, ତେବେ ବର୍ତ୍ତମାନ ଈଶ୍ୱର = ଈଶ୍ୱର-'କ' । ଅତଏବ ସୃଷ୍ଟି ହେବା ଆଗରୁ ସେ ଯେଉଁ ଈଶ୍ୱର ଥିଲେ, ଏବେ ଆଉ ତାହା ନୁହନ୍ତି । କାରଣ ଏହାଙ୍କର ସେହି ଅଂଶଟି ଜଗତ୍ ହୋଇ-ଯାଇଛି । ଏଥିରେ ଅଦ୍ୱୈତବାଦୀଙ୍କର ଉତ୍ତର ଏହି ଯେ, ଏହି ଜଗତର ବାସ୍ତବିକ ସତ୍ତା ନାହିଁ, ଯାହା ଅଛି ତାହା ପ୍ରତୀୟମାନ ହେଉଛି ମାତ୍ର । ଏହି ଦେବତା, ସ୍ୱର୍ଗ, ଜନ୍ମମୃତ୍ୟୁ, ଅନନ୍ତସଂଖ୍ୟକ ଆତ୍ମା ଆସୁଛନ୍ତି ଯାଉଛନ୍ତି—ଏ ସମସ୍ତ କେବଳ ସ୍ୱପ୍ନ ମାତ୍ର, ସମୁଦାୟ ହିଁ ଏକ ଅନନ୍ତସ୍ୱରୂପ । ଗୋଟିଏ ମାତ୍ର ସୂର୍ଯ୍ୟ ବିବିଧ ଜଳବିନ୍ଦୁରେ ପ୍ରତିବିମ୍ବିତ ହୋଇ ନାନା ରୂପରେ ଦେଖା ଯାଇଥାଆନ୍ତି । ଲକ୍ଷ ଲକ୍ଷ ଜଳକଣାରେ ସୂର୍ଯ୍ୟଙ୍କର ଲକ୍ଷ ଲକ୍ଷ ପ୍ରତିବିମ୍ବ ପଡ଼େ ଓ ପ୍ରତ୍ୟେକ ଜଳକଣାରେ ସୂର୍ଯ୍ୟଙ୍କର ସମ୍ପୂର୍ଣ୍ଣ ପ୍ରତିମୂର୍ତ୍ତି ରହିଥାଏ, କିନ୍ତୁ ସୂର୍ଯ୍ୟ ପ୍ରକୃତପକ୍ଷରେ ଗୋଟିଏ । ଏହି ସମସ୍ତ ଜୀବମାନଙ୍କ ସମ୍ବନ୍ଧରେ ମଧ୍ୟ ସେହି କଥା, ସେମାନେ ସେହି ଏକମାତ୍ର ଅନନ୍ତ ପୁରୁଷଙ୍କର ପ୍ରତିବିମ୍ବ ମାତ୍ର । ସ୍ୱପ୍ନ କେତେବେଳେ ସତ୍ୟ ବ୍ୟତୀତ ରହିପାରେ ନାହିଁ ଏବଂ ସତ୍ୟ—ସେହି ଏକ ଅନନ୍ତ ସତ୍ତା । ଶରୀର ମନ ବା ଆତ୍ମାଭାବରେ ଗ୍ରହଣ କଲେ ଆପଣ ସ୍ୱପ୍ନମାତ୍ର, କିନ୍ତୁ ଆପଣଙ୍କର ଯଥାର୍ଥ ସ୍ୱରୂପ ଅଖଣ୍ଡ ସଚ୍ଚିଦାନନ୍ଦ । ଅଦ୍ୱୈତବାଦୀମାନେ ଏହା ହିଁ କହନ୍ତି । ଏହିସବୁ ଜନ୍ମ, ପୁନର୍ଜନ୍ମ, ଏହି ଆସିବା ଯିବା—ଏସବୁ ସେହି ସ୍ୱପ୍ନର ଅଂଶମାତ୍ର । ଆପଣ ଅନନ୍ତସ୍ୱରୂପ । ଆପଣ ପୁଣି ଯିବେ କୁଆଡ଼େ ? ସୂର୍ଯ୍ୟ, ଚନ୍ଦ୍ର ଏବଂ ସମଗ୍ର ବ୍ରହ୍ମାଣ୍ଡ ଆପଣଙ୍କର ଯଥାର୍ଥ ସ୍ୱରୂପ ନିକଟରେ ଏକ ବିନ୍ଦୁମାତ୍ର । ଆପଣଙ୍କର ପୁଣି ଜନ୍ମ ବା ମରଣ ହେବ କିପରି ? ଆତ୍ମା କେବେହେଲେ ଜନ୍ମନ୍ତି ନାହିଁ, କେତେବେଳେ ମଧ୍ୟ ମରନ୍ତି ନାହିଁ । ଆତ୍ମାର କୌଣସି କାଳରେ ପିତାମାତା, ଶତ୍ରୁମିତ୍ର ବୋଲି କେହି ନ ଥିଲେ । କାରଣ ଆତ୍ମା ଅଖଣ୍ଡ ସଚ୍ଚିଦାନନ୍ଦସ୍ୱରୂପ ।

ଅଦ୍ୱୈତବେଦାନ୍ତ ମତରେ ମାନବର ଚରମ ଲକ୍ଷ୍ୟ କଅଣ ? ଏହି ଜ୍ଞାନଲାଭ କରିବା ଏବଂ ଜଗତ୍ସହିତ ଏକତ୍ୱଭାବ ପ୍ରାପ୍ତ ହେବା । ଯେଉଁମାନେ ଏହି ଅବସ୍ଥା ଲାଭ କରନ୍ତି, ସେମାନଙ୍କ ପକ୍ଷରେ ସମୁଦାୟ ସ୍ୱର୍ଗ, ଏପରି କି ବ୍ରହ୍ମଲୋକ ପର୍ଯ୍ୟନ୍ତ ନଷ୍ଟ ହୋଇ-ଯାଏ, ଏହି ସମସ୍ତ ସ୍ୱପ୍ନ ଭାଙ୍ଗିଯାଏ ଏବଂ ସେମାନେ ନିଜକୁ ଜଗତର ନିତ୍ୟ ଈଶ୍ୱରରୂପେ ଦେଖିପାରନ୍ତି । ସେମାନେ ସେମାନଙ୍କର ଯଥାର୍ଥ 'ମୁଁ'ତ୍ୱ ଲାଭ କରନ୍ତି—ଆମେମାନେ ଏବେ ଯେଉଁ କ୍ଷୁଦ୍ର ଅଂଶକୁ ଏତେ ବଡ଼ ଜିନିଷ ବୋଲି ମନେ କରୁଛୁ ତାହା ଏହାର ବହୁ ଦୂରରେ ଅବସ୍ଥିତ । 'ମୁଁ'ତ୍ୱ ନଷ୍ଟ ହେବ ନାହିଁ—ଅନନ୍ତ ଓ ସନାତନ 'ମୁଁ'ତ୍ୱ ଲାଭ ହେବ । କ୍ଷୁଦ୍ର କ୍ଷୁଦ୍ର ବସ୍ତୁରେ ସୁଖବୋଧ ଆଉ ରହିବ ନାହିଁ । ଆମେମାନେ ବର୍ତ୍ତମାନ ଏହି କ୍ଷୁଦ୍ର ଦେହରେ ଏହି କ୍ଷୁଦ୍ର 'ମୁଁ'କୁ ନେଇ ସୁଖ ପାଇଥାଉ । ଯେତେବେଳେ ସମଗ୍ର ବ୍ରହ୍ମାଣ୍ଡ ଆମମାନଙ୍କର ନିଜର ଦେହରୂପେ ବୋଧ ହେବ, ସେତେବେଳେ ଆମେମାନେ

କେତେ ଅଧିକ ସୁଖ ପାଇବା ? ଏହି ପୃଥକ୍ ପୃଥକ୍ ଦେହରେ ଯଦି ଏତେ ସୁଖ ଥାଏ, ତେବେ ଯେତେବେଳେ ସକଳ ଦେହ ଏକ ହୋଇଯିବ, ସେତେବେଳେ ଆହୁରି କେତେ ଅଧିକ ସୁଖ ! ଯେଉଁ ବ୍ୟକ୍ତି ଏହା ସାକ୍ଷାତ୍ କରେ, ସେ ହିଁ ମୁକ୍ତିଲାଭ କରେ, ସେ ଏହି ସ୍ୱପ୍ନ ଅତିକ୍ରମ କରି ଦୂରକୁ ଚାଲିଯାଏ ସେ ନିଜର ଯଥାର୍ଥ ସ୍ୱରୂପ ଜାଣିପାରେ । ଏହା ହିଁ ଅଦ୍ୱୈତ ବେଦାନ୍ତର ଉପଦେଶ ।

ବେଦାନ୍ତଦର୍ଶନ ଗୋଟି ଗୋଟି କରି ଏହି ତିନୋଟି ସୋପାନ ଅବଲମ୍ବନରେ ଅଗ୍ରସର ହୋଇଛି ଏବଂ ଆମେମାନେ ଏହି ତୃତୀୟ ସୋପାନ ଅତିକ୍ରମ କରି ଆଉ ଅଗ୍ରସର ହୋଇପାରିବା ନାହିଁ, କାରଣ ଆମେ ଏକତ୍ୱକୁ ଅତିକ୍ରମ କରିପାରିବା ନାହିଁ । ଯାହାଙ୍କ-ଠାରୁ ଜଗତ୍ ଉତ୍ପନ୍ନ ହୋଇଛି, ସେ ହିଁ ପୂର୍ଣ୍ଣ; ଏକ ସ୍ୱରୂପର ଧାରଣାକୁ ଆମେ ଅତିକ୍ରମ କରିପାରିବା ନାହିଁ । ସମସ୍ତେ ଏହି ଅଦ୍ୱୈତବାଦ ଗ୍ରହଣ କରିପାରନ୍ତି ନାହିଁ, ସେମାନଙ୍କ ପକ୍ଷରେ ଏହା କଠିନ ମତବାଦ । ପ୍ରଥମତଃ ବୁଦ୍ଧି-ବିଚାରଦ୍ୱାରା ବୁଝିବା ଏକ କଠିନ କାର୍ଯ୍ୟ । ଏହା ବୁଝିବାକୁ ତୀକ୍ଷ୍ଣତମ ବୁଦ୍ଧିର ପ୍ରୟୋଜନ; ଅକୁତୋଭୟ ବିଚାରଶକ୍ତିର ପ୍ରୟୋଜନ । ଦ୍ୱିତୀୟତଃ ଏହା ଅଧିକାଂଶ ବ୍ୟକ୍ତିଙ୍କ ପକ୍ଷରେ ଉପଯୋଗୀ ନୁହେଁ ।

ଏହି ତିନୋଟି ସୋପାନ ମଧ୍ୟରୁ ପ୍ରଥମ ସୋପାନରୁ ଆରମ୍ଭ କରିବା ଭଲ । ଏହି ପ୍ରଥମ ସୋପାନ ସମ୍ବନ୍ଧରେ ଚିନ୍ତା କରି ତାହା ଭଲ ଭାବରେ ବୁଝିଲେ ଦ୍ୱିତୀୟଟି ଆପେ ଖୋଲିଯିବ । ଗୋଟିଏ ଜାତି ଯେପରି ଉନ୍ନତି-ସୋପାନରେ ଧୀରେ ଧୀରେ ଅଗ୍ରସର ହୁଏ, ଜଣେ ବ୍ୟକ୍ତିକୁ ମଧ୍ୟ ସେହିପରି କରିବାକୁ ପଡ଼େ । ଧର୍ମ-ଜ୍ଞାନର ଉଚ୍ଚତମ ଚୂଡ଼ା ଆରୋହଣ କରିବା ପାଇଁ ମାନବଜାତିକୁ ଯେଉଁ ସମସ୍ତ ସୋପାନ ଅବଲମ୍ବନ କରିବାକୁ ପଡ଼ିଛି, ପ୍ରତ୍ୟେକ ବ୍ୟକ୍ତିକୁ ମଧ୍ୟ ତାହା ହିଁ ଅବଲମ୍ବନ କରିବାକୁ ପଡ଼ିବ । ପ୍ରଭେଦ ଏତିକି ଯେ, ସମଗ୍ର ମାନବ-ଜାତିକୁ ଗୋଟିଏ ସୋପାନରୁ ଆଉ ଗୋଟିଏ ସୋପାନ ଆରୋହଣ କରିବାକୁ ଲକ୍ଷ ଲକ୍ଷ ବର୍ଷ ଲାଗିଛି, କିନ୍ତୁ ଜଣେ ବ୍ୟକ୍ତିଙ୍କ ପକ୍ଷରେ କେତେକ ବର୍ଷ ମଧ୍ୟରେ ମାନବଜାତିର ସମଗ୍ର ଜୀବନ ଯାପନ କରିବା ସମ୍ଭବ । ସେମାନେ ଆହୁରି ଶୀଘ୍ର—ହୁଏତ ଛଅମାସ ମଧ୍ୟରେ ତାହା ଶେଷ କରିପାରନ୍ତି, କିନ୍ତୁ ଆମ ପ୍ରତ୍ୟେକଙ୍କୁ ଏହି ସୋପାନଗୁଡ଼ିକ ମଧ୍ୟଦେଇ ଯିବାକୁ ପଡ଼ିବ । ଆପଣମାନଙ୍କ ମଧ୍ୟରେ ଯେଉଁମାନେ ଅଦ୍ୱୈତବାଦୀ, ସେମାନେ ଯେତେବେଳେ ଘୋର ଦ୍ୱୈତବାଦୀ ଥିଲେ, ନିଜ ଜୀବନର ସେହି ସମୟର କଥା ଆଲୋଚନା କରିବେ । ଆପଣମାନେ ଯେତେବେଳେ ଆପଣମାନଙ୍କୁ ଦେହ ଓ ମନ ବୋଲି ଭାବନ୍ତି, ସେତେବେଳେ ଏହି ସ୍ୱପ୍ନକୁ ସମଗ୍ର ଭାବରେ ନେବାକୁ ପଡ଼ିବ । ଗୋଟିଏ ଭାବ ଗ୍ରହଣ କଲେ ସମୁଦାୟଟିକୁ ନେବାକୁ ପଡ଼ିବ । ଯେଉଁ ବ୍ୟକ୍ତି କହେ, ଏହି ଜଗତ୍ ରହିଛି; କିନ୍ତୁ ଈଶ୍ୱର ନାହାନ୍ତି, ସେ ନିର୍ବୋଧ । କାରଣ, ଯଦି ଜଗତ୍ ଥାଏ ତେବେ ଜଗତର ଗୋଟିଏ କାରଣ ମଧ୍ୟ ଥିବ, ଆଉ ସେହି କାରଣର ନାମ ହେଉଛି ଈଶ୍ୱର । ଏହା ଅବଶ୍ୟ ଜାଣିବା କଥା ଯେ, କାର୍ଯ୍ୟ ଥିଲେ ତାହାର କାରଣ ମଧ୍ୟ ଅଛି । ଯେତେ-ବେଳେ ଏହି ଜଗତ୍ ଅନ୍ତର୍ହିତ ହେବ, ସେତେବେଳେ ଈଶ୍ୱର ମଧ୍ୟ ଅନ୍ତର୍ହିତ ହେବେ ।

ଆପଣ ଯେତେବେଳେ ଈଶ୍ୱରଙ୍କ ସହିତ ନିଜର ଏକତ୍ୱ ଅନୁଭବ କରିବେ, ସେତେବେଳେ ଆପଣଙ୍କ ପକ୍ଷରେ ଆଉ ଏହି ଜଗତ୍ ରହିବ ନାହିଁ; କିନ୍ତୁ ଯେତେଦିନ ପର୍ଯ୍ୟନ୍ତ ଏହି ସ୍ୱପ୍ନ ରହିଛି, ସେତେଦିନ ଆମେ ନିଜକୁ ଜନ୍ମ-ମୃତ୍ୟୁଶୀଳ ଭାବରେ ଦେଖିବାକୁ ବାଧ୍ୟ; କିନ୍ତୁ ଯେତେବେଳେ 'ଆମେ ଦେହ' ଏହି ସ୍ୱପ୍ନ ଅନ୍ତର୍ହିତ ହୁଏ, ତହିଁ ସଙ୍ଗେ ସଙ୍ଗେ 'ଆମେ ଜନ୍ମିଛୁ ଓ ମରୁଛୁ' ଏ ସ୍ୱପ୍ନ ମଧ୍ୟ ଅନ୍ତର୍ହିତ ହେବ। ପୁଣି 'ଗୋଟାଏ ଜଗତ୍ ଅଛି' ଏହି ସ୍ୱପ୍ନ ମଧ୍ୟ ଚାଲିଯିବ। ବର୍ତ୍ତମାନ ଯାହାକୁ ଆମେ ଏହି ଜଗତ୍ ବୋଲି ଦେଖୁଛୁ, ତାହା ଆମ ନିକଟରେ ଈଶ୍ୱର ବୋଲି ପ୍ରତିଭାତ ହେବ ଏବଂ ଯେଉଁ ଈଶ୍ୱରଙ୍କୁ ଏତେ ଦିନ ବହିର୍ଦ୍ଦେଶରେ ଅବସ୍ଥିତ ବୋଲି ଜାଣିଥିଲୁ, ସେ ଆମମାନଙ୍କର ଆତ୍ମାର ଅନ୍ତରାତ୍ମାରୂପେ ପ୍ରତୀତ ହେବେ। ଅଦ୍ୱୈତବାଦର ଶେଷ କଥା 'ତତ୍ତ୍ୱମସି'—ତାହା ହିଁ ତୁମେ।

# ଧର୍ମ କଅଣ ?

ରେଲଲାଇନ ଉପରେ ଏକ ପ୍ରକାଣ୍ଡ ଇଞ୍ଜିନ ଶବ୍ଦ କରି ଚାଲିଛି । ଗୋଟିଏ କ୍ଷୁଦ୍ର କୀଟ ଲାଇନରେ ଚାଲୁଥିଲା, ଗାଡ଼ି ଆସୁଛି ଜାଣିପାରି ସେ ଆସ୍ତେ ଆସ୍ତେ ରେଲ ଲାଇନ ଉପରୁ ଘୁଞ୍ଚିଯାଇ ନିଜର ପ୍ରାଣ ରକ୍ଷା କଲା । ଯଦିଓ ଏହି କ୍ଷୁଦ୍ର ନଗଣ୍ୟ କୀଟଟି ଯେକୌଣସି ମୁହୂର୍ତ୍ତରେ ଗାଡ଼ିତଳେ ଚାପା ପଡ଼ି ନିଷ୍ପେଷିତ ହୋଇଯାଇପାରେ, ତଥାପି ସେ ଗୋଟିଏ ଜୀବ—ଏକ ଜୀବନ୍ତ ବସ୍ତୁ । କିନ୍ତୁ ସେହି ବୃହତ୍ ଓ ପ୍ରକାଣ୍ଡ ଇଞ୍ଜିନ ଏକ ଯନ୍ତ୍ରମାତ୍ର । ଆପଣମାନେ କହିବେ—ଗୋଟିକର ଜୀବନ ଅଛି ଏବଂ ଆଉ ଗୋଟିଏ ଜୀବନହୀନ ଜଡ଼-ମାତ୍ର— ଯାହାର ଶକ୍ତି, ଗତି ଓ ବେଗ ଯେତେ ପ୍ରବଳ ହେଉନା କାହିଁକି, ତାହା ପ୍ରାଣହୀନ ଜଡ଼ ଯନ୍ତ୍ର ବ୍ୟତୀତ ଅନ୍ୟ କିଛି ନୁହେଁ । ଅନ୍ୟ ପକ୍ଷରେ, ଏହି କ୍ଷୁଦ୍ର କୀଟଟି ଯେ ରେଲ-ଲାଇନ ଉପର ଦେଇ ଚାଲୁଥିଲା ଏବଂ ଇଞ୍ଜିନର ସ୍ପର୍ଶମାତ୍ରେ ଯାହାର ନିଶ୍ଚିତ ମୃତ୍ୟୁ ହୋଇ ଥାଆନ୍ତା, ତାହା ଏହି ପ୍ରକାଣ୍ଡ ଇଞ୍ଜିନ ତୁଳନାରେ ମହିମାସମ୍ପନ୍ନ । କୀଟଟି ସେହି ଅନନ୍ତ ଈଶ୍ୱରଙ୍କର ଏକ କ୍ଷୁଦ୍ର ଅଂଶମାତ୍ର ଏବଂ—ସେଥିପାଇଁ ସେହି ଶକ୍ତିଶାଳୀ ଇଞ୍ଜିନ ଅପେକ୍ଷା ମହତ୍ । ତାହାର ଏପରି ମହତ୍ତ୍ୱର କାରଣ କଅଣ ? ଆମେ ଜଡ଼ ଓ ପ୍ରାଣୀ ମଧ୍ୟରେ ପାର୍ଥକ୍ୟ କିପରି ବୁଝିପାରିବା ? ଯନ୍ତ୍ରର ନିର୍ମାତା ଯନ୍ତ୍ରଟିକୁ ଯେଉଁ ରୂପେ ପରିଚାଳିତ କରିବାକୁ ଇଚ୍ଛା କରି ନିର୍ମାଣ କରିଥିବେ, ଯନ୍ତ୍ର ସେତିକି କାର୍ଯ୍ୟ ସମ୍ପାଦନ କରିବ । ଯନ୍ତ୍ରର କାର୍ଯ୍ୟ ଜୀବନ୍ତ ପ୍ରାଣୀର କାର୍ଯ୍ୟ ପରି ନୁହେଁ । ତେବେ ଜୀବନ୍ତ ଓ ପ୍ରାଣହୀନ ମଧ୍ୟରେ ପ୍ରଭେଦ କିପରି ବୁଝା-ଯାଇପାରେ ? ଜୀବିତ ପ୍ରାଣୀର ସ୍ୱାଧୀନତା ଅଛି, ଜ୍ଞାନ ଅଛି; କିନ୍ତୁ ଅଜୀବ ଜଡ଼ବସ୍ତୁ କେତେ-ଗୁଡ଼ିଏ ନିୟମର ଗଣ୍ଡି ମଧ୍ୟରେ ବନ୍ଧା ଏବଂ ସେଥିରୁ ତା'ର ମୁକ୍ତିର ସମ୍ଭାବନା ନାହିଁ, କାରଣ ତା'ର ଜ୍ଞାନ ନାହିଁ । ଯେଉଁ ସ୍ୱାଧୀନତା ରହିଥିବାରୁ ଯନ୍ତ୍ରଠାରୁ ଆମମାନଙ୍କର ବିଶେଷତ୍ୱ ରହିଛି—ସେହି ମୁକ୍ତିଲାଭ ଲାଗି ଆମେମାନେ ସମସ୍ତେ ଚେଷ୍ଟା କରୁଛୁ । ଅଧିକତର ମୁକ୍ତ ହେବା ହିଁ ଆମମାନଙ୍କର ସମସ୍ତ ଚେଷ୍ଟାର ଉଦ୍ଦେଶ୍ୟ, କାରଣ କେବଳ ପୂର୍ଣ୍ଣ ମୁକ୍ତିରେ ହିଁ ପୂର୍ଣ୍ଣତ୍ୱ ଲାଭ ହୋଇପାରେ । ଆମେମାନେ ଜାଣୁ ବା ନ ଜାଣୁ, ମୁକ୍ତିଲାଭ କରିବାର ଏହି ଚେଷ୍ଟା ହିଁ ସବୁ ପ୍ରକାର ଉପାସନା-ପ୍ରଣାଳୀର ମୂଳ କଥା ।

ଜଗତରେ ଯେତେ ପ୍ରକାର ଉପାସନା-ପ୍ରଣାଳୀ ପ୍ରଚଳିତ ଅଛି, ସେଗୁଡ଼ିକୁ ବିଶ୍ଳେଷଣ କଲେ ଆମେ ଦେଖିବା ଯେ ଅତି ଅସଭ୍ୟ ଜାତିମାନେ ଭୂତ, ପ୍ରେତ ଓ ପୂର୍ବପୁରୁଷମାନଙ୍କର ଆତ୍ମାର ଉପାସନା କରିଥାଆନ୍ତି । ସର୍ପପୂଜା, ପୂର୍ବପୁରୁଷମାନଙ୍କର ଆତ୍ମାଉପାସନା ଏବଂ ଉପଦେବତାମାନଙ୍କର ଉପାସନା—ଏଗୁଡ଼ିକ ଲୋକେ କାହିଁକି କରନ୍ତି? କାରଣ ଲୋକମାନେ ଅନୁଭବ କରନ୍ତି ଯେ, ଏହି ଦେବଗଣ ଓ ପୂର୍ବପୁରୁଷମାନେ କୌଣସି ଅଜ୍ଞାତ ଉପାୟରେ ସେମାନଙ୍କଠାରୁ ବଡ଼ ଏବଂ ଅଧିକ ଶକ୍ତିଶାଳୀ ହୋଇ ସେମାନଙ୍କର

ସ୍ୱାଧୀନତାକୁ ସୀମିତ କରୁଛନ୍ତି । ସୁତରାଂ ଅସଭ୍ୟ ଜାତିମାନେ ଏହି ଦେବତା ଓ ପୂର୍ବ-ପୁରୁଷମାନଙ୍କୁ ସେମାନଙ୍କ ପ୍ରତି ପ୍ରସନ୍ନ ରଖିବାକୁ ଚେଷ୍ଟା କରନ୍ତି, ଯେପରିକି ସେହି ଦେବ-ଦେବୀ ଓ ପୂର୍ବପୁରୁଷମାନେ ସେମାନଙ୍କୁ ଆଉ ଉତ୍ପୀଡ଼ନ ନ କରନ୍ତି । ଅନ୍ୟ ଭାଷାରେ କହିଲେ—ଯାହାଦ୍ୱାରା ସେମାନେ ଅଧିକ ସ୍ୱାଧୀନତା ଲାଭ କରିପାରନ୍ତି । ସେମାନେ ଏହି-ସବୁ ଦେବତା ଓ ପୂର୍ବପୁରୁଷଙ୍କର ପୂଜା କରି ସେମାନଙ୍କର କୃପାଲାଭ କରିବାକୁ ଇଚ୍ଛୁକ । ଯେଉଁସବୁ ବସ୍ତୁ ମଣିଷ ନିଜର ପୁରୁଷକାର ସାହାଯ୍ୟରେ ଲାଭ କରିବା ଉଚିତ, ସେମାନେ ସେଗୁଡ଼ିକୁ ଈଶ୍ୱରଙ୍କର ବରରୂପେ ପାଇବା ପାଇଁ ଆକାଙ୍କ୍ଷା କରନ୍ତି । ମୋଟ ଉପରେ ଏହିସବୁ ଉପାସନା-ପ୍ରଣାଳୀ ଆଲୋଚନା କଲେ ଏହି ଉପଲବ୍ଧି ହୁଏ ଯେ, ସମଗ୍ର ଜଗତ ଏକ ଅଦ୍ଭୁତ ବ୍ୟାପାର ଆଶା କରୁଛି । ଏହି ଆଶା ଆମମାନଙ୍କୁ କେବେହେଲେ ଛାଡ଼ି ଯାଏ ନାହିଁ ଏବଂ ଆମେମାନେ ଏହି ଆଶାଠାରୁ ଦୂରରେ ରହିବାକୁ ଯେତେ ଚେଷ୍ଟା କଲେ ହେଁ ଆମେମାନେ ସମସ୍ତେ ଏହି ଅଦ୍ଭୁତ ଓ ଅସାଧାରଣ ବ୍ୟାପାରଗୁଡ଼ିକ ଆଡ଼କୁ ଛୁଟି ଚାଲିଛୁ । ଅବିରାମ ଜୀବନର ଅର୍ଥ ଓ ରହସ୍ୟର ଅନୁସନ୍ଧାନ ଛଡ଼ା 'ମନ' କହିଲେ ଆମେ କ'ଣ ବୁଝୁ ? ଅଶିକ୍ଷିତ ଲୋକମାନେ ଏହି ଅଦ୍ଭୁତ ବସ୍ତୁର ଅନୁସନ୍ଧାନରେ ବ୍ୟସ୍ତ ବୋଲି ଆମେ କହିପାରୁ । କିନ୍ତୁ ସେମାନେ ଏପରି ଅନୁସନ୍ଧାନରେ କାହିଁକି ବ୍ୟସ୍ତ ହୁଅନ୍ତି, ଏହି ପ୍ରଶ୍ନକୁ ମଧ୍ୟ ଆମେ ଏଡ଼ାଇ ଯାଇପାରୁ ନାହିଁ । ଇହୁଦୀମାନେ ଅଲୌକିକ ଘଟଣାମାନ ଦେଖିବାକୁ ଆକାଙ୍କ୍ଷା କରୁଥିଲେ । ସେମାନଙ୍କ ପରି ସମଗ୍ର ଜଗତ ହଜାର ହଜାର ବର୍ଷ ଧରି ଏହିପରି ଅଲୌକିକ ବସ୍ତୁ ଦେଖିବା ପାଇଁ ଆକାଙ୍କ୍ଷା କରି ଆସୁଛି । ପୁଣି ଦେଖନ୍ତୁ—ଜଗତରେ ପ୍ରତ୍ୟେକଙ୍କ ମଧ୍ୟରେ ଏକ ଅସନ୍ତୋଷ ଭାବ ଦେଖିବାକୁ ମିଳେ । ଆମେମାନେ ଏକ ଆଦର୍ଶ ଗ୍ରହଣ କରୁ । କିନ୍ତୁ ଏହି ଆଦର୍ଶ ଆଡ଼କୁ ଶୀଘ୍ର ଅଗ୍ରସର ହୋଇ ଅଧାବାଟ ପହଞ୍ଚୁ ନ ପହଞ୍ଚୁଣୁ ନୂତନ ଆଉ ଏକ ଆଦର୍ଶ ଗ୍ରହଣ କରିଥାଉ । ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ଆଡ଼କୁ ଅଗ୍ରସର ହେବାକୁ କଠିନ ପରିଶ୍ରମ କରୁ, କିନ୍ତୁ ତାପରେ ବୁଝୁ—ଏହି ଆଦର୍ଶରେ ଆମର କୌଣସି ପ୍ରୟୋଜନ ନାହିଁ । ବାରମ୍ବାର ଆମମାନଙ୍କର ଏହି ପ୍ରକାର ଅସନ୍ତୋଷ ଆସୁଛି । ଯଦି ଏହିଭଳି ଆମର କେବଳ ଅସନ୍ତୋଷ ହିଁ ବଢ଼ିଚାଲେ ତେବେ ଆମର ମନର ଅବସ୍ଥା କ'ଣ ହେବ ? ଏହି ସାର୍ବଜନୀନ ଅସନ୍ତୋଷର ଅର୍ଥ କ'ଣ ? ଏହାର ଅର୍ଥ ହେଲା—ମୁକ୍ତି ହିଁ ମନୁଷ୍ୟର ଚିରନ୍ତନ ଲକ୍ଷ୍ୟ । ଯେତେଦିନ ମନୁଷ୍ୟ ମୁକ୍ତିଲାଭ ନ କରିଛି ସେତେଦିନ ସେ ମୁକ୍ତିଲାଭର ଅନ୍ୱେଷଣ କରିବ ହିଁ କରିବ । ତାହାର ସମଗ୍ର ଜୀବନ ହିଁ ଏହି ମୁକ୍ତିଲାଭର ଚେଷ୍ଟା ମାତ୍ର । ଶିଶୁ ଜନ୍ମିବା ପରେ ନିୟମର ବିରୋଧରେ ବିଦ୍ରୋହ କରେ । ଶିଶୁର ପ୍ରଥମ ଶବ୍ଦସ୍ଫୁରଣ ହେଲା କ୍ରନ୍ଦନ । ସେ ଯେଉଁ ବନ୍ଧନ ମଧ୍ୟରେ ନିଜକୁ ଦେଖେ ତାହାର ପ୍ରତିବାଦ କରି ସେ କାନ୍ଦେ । ମୁକ୍ତିର ଏହି ଆକାଙ୍କ୍ଷା ମଧ୍ୟରୁ ଏହି ଧାରଣା ଜନ୍ମେ ଯେ, ଏପରି ଏକ ପୁରୁଷ ଅଛନ୍ତି ଯେ ସମ୍ପୂର୍ଣ୍ଣ ମୁକ୍ତସ୍ୱଭାବ । ତେଣୁ ଈଶ୍ୱରଧାରଣା ହିଁ ମନୁଷ୍ୟ-ପ୍ରକୃତିର ମୂଳ ଉପାଦାନ । ବେଦାନ୍ତର ସଚ୍ଚିଦାନନ୍ଦ ହିଁ ମନୁଷ୍ୟ-ମନର ଈଶ୍ୱର-ସମ୍ବନ୍ଧୀୟ ସର୍ବୋଚ୍ଚ ଧାରଣା । ଈଶ୍ୱର ଚିଦ୍‌ଘନ ଓ ସ୍ୱଭାବତଃ ଆନନ୍ଦଘନ । ଆମେମାନେ ଅନେକ

ଦିନ ଧରି ଅନ୍ତରର ଏହି ବାଣୀକୁ ଚାପି ରଖିବାକୁ ଚେଷ୍ଟା କରି ଆସିଛୁ, ନିୟମ ବା ବିଧିକୁ ଅନୁସରଣ କରି ମାନବୀୟ ପ୍ରକୃତିର ସ୍ଫୂର୍ତ୍ତିରେ ବାଧା ଦେବାର ପ୍ରୟାସ କରିଆସିଛୁ । କିନ୍ତୁ ପ୍ରକୃତିର ନିୟମ ବିରୋଧରେ ବିଦ୍ରୋହ କରିବାର ସହଜାତ ପ୍ରବୃତ୍ତି ଆମମାନଙ୍କ ମଧ୍ୟରେ ଅଛି । ଆମେମାନେ ଏହାର ଅର୍ଥ ନ ବୁଝିପାରୁ, କିନ୍ତୁ ଆମର ଅଜ୍ଞାତସାରରେ ଆମମାନଙ୍କର ମାନବୀୟ ଭାବ ସହିତ ଆଧ୍ୟାତ୍ମିକ ଭାବର, ନିମ୍ନସ୍ତରର ମନ ସହିତ ଉଚ୍ଚତର ମନର ସଂଗ୍ରାମ ଚାଲିଛି । ଏହି ସଂଗ୍ରାମ ନିଜର ପୃଥକ୍ ଅସ୍ତିତ୍ୱ—ଯାହାକୁ ଆମେମାନେ ଆମମାନଙ୍କର 'ମୁଁ'ତ୍ୱ ବା ବ୍ୟକ୍ତିତ୍ୱ କହୁ, ତାକୁ ରକ୍ଷା କରିବାର ଏହା ଏକ ପ୍ରଚେଷ୍ଟା ।

ଏପରିକି ନରକ ମଧ୍ୟ ଏହି ଅଦ୍ଭୁତ ସତ୍ୟ ପ୍ରକାଶ କରେ ଯେ, ଆମେମାନେ ଜନ୍ମରୁ ବିଦ୍ରୋହୀ ଏବଂ ପ୍ରକୃତି ବିରୋଧରେ ଜୀବନରେ ପ୍ରଥମ ସତ୍ୟ ବା ଜୀବନୀଶକ୍ତିର ଚିହ୍ନ ହେଲା ଆମେ ବିଦ୍ରୋହ କରିବା ଏବଂ କହିବା—'କୌଣସି ନିୟମ ମାନି ଆମେମାନେ ଚଳିବୁ ନାହିଁ । ଯେତେଦିନ ଆମେମାନେ ପ୍ରକୃତିର ନିୟମ ମାନି ଚଳୁ, ସେତେଦିନ ଆମେମାନେ ଯନ୍ତ୍ରବତ୍, ସେତେଦିନ ଜଗତ-ପ୍ରବାହ ନିଜ ଗତିରେ ଚାଲିଥାଏ ଏବଂ ତାହାର ଶୃଙ୍ଖଳ ଆମେମାନେ ଭାଙ୍ଗିପାରୁ ନାହିଁ । ନିୟମ ହିଁ ମଣିଷର ପ୍ରକୃତିଗତ ହୋଇଥାଏ । ଯେତେବେଳେ ଆମେମାନେ ପ୍ରକୃତିର ଏହି ବନ୍ଧନ ଭାଙ୍ଗି ମୁକ୍ତ ହେବାକୁ ଚେଷ୍ଟା କରୁ, ସେତିକିବେଳେ ହିଁ ଉଚ୍ଚସ୍ତରୀୟ ଜୀବନର ପ୍ରଥମ ଇଙ୍ଗିତ ବା ଚିହ୍ନ ଦେଖିବାକୁ ମିଳେ । 'ମୁକ୍ତି, ଅହୋ ମୁକ୍ତି ! ମୁକ୍ତି, ଅହୋ ମୁକ୍ତି !'—ଆତ୍ମାର ଅନ୍ତସ୍ଥଳରୁ ଏହି ସଙ୍ଗୀତ ଅହରହ ଉତ୍ଥିତ ହେଉଅଛି । ବନ୍ଧନ—ହାୟ ! ପ୍ରକୃତିର ଶୃଙ୍ଖଳରେ ବଦ୍ଧ ହୋଇ ଏହା ହିଁ ଜୀବନର ଅଦୃଷ୍ଟ ବା ପରିଣାମ ବୋଲି ମନେ ହୁଏ ।

ଅତିପ୍ରାକୃତ ଶକ୍ତିଲାଭ ପାଇଁ ସର୍ପ, ଭୂତ, ପ୍ରେତ ଆଦିର ଉପାସନା ଏବଂ ବିଭିନ୍ନ ଧର୍ମମତ ଓ ସାଧନା-ପ୍ରଣାଳୀ ରହିବାର ଆବଶ୍ୟକତା କ'ଣ ? ବସ୍ତୁର ସତ୍ତା ଅଛି ବା ଜୀବନ ଅଛି—ଏକଥା ଆମେ କାହିଁକି କହୁଁ ? ଏହିସବୁ ଅନୁସନ୍ଧାନ ମଧ୍ୟରେ ଜୀବନକୁ ବୁଝିବାର ଏବଂ ସତ୍ତାର ବ୍ୟାଖ୍ୟା କରିବାର ଚେଷ୍ଟା ମଧ୍ୟରେ ନିଶ୍ଚୟ କୌଣସି ଅର୍ଥ ଅଛି । ଏହା ଅର୍ଥହୀନ ଓ ବୃଥା ହୋଇ ନ ପାରେ । ଏସବୁ ପ୍ରଶ୍ନରେ ଅଛି ମଣିଷର ମୁକ୍ତିଲାଭ ପାଇଁ ନିରନ୍ତର ଚେଷ୍ଟା । ଯେଉଁ ବିଦ୍ୟାକୁ ଆମେ ବର୍ତ୍ତମାନ ବିଜ୍ଞାନ ନାମରେ ଅଭିହିତ କରୁ, ତାହା ହଜାର ହଜାର ବର୍ଷ ହେବ ମଣିଷର ମୁକ୍ତିଲାଭ ଲାଗି ଚେଷ୍ଟା କରି ଆସୁଛି । ମଣିଷ ଏହି ମୁକ୍ତି ହିଁ ଚାହେଁ, କିନ୍ତୁ ପ୍ରକୃତି ଭିତରେ ମୁକ୍ତି ନାହିଁ । ପ୍ରକୃତି କେବଳ ନିୟମ । କିନ୍ତୁ ତଥାପି ମୁକ୍ତିର ଚେଷ୍ଟା ଚାଲିଛି । କେବଳ ଏତିକି ନୁହେଁ, ସୂର୍ଯ୍ୟଠାରୁ ପରମାଣୁ ପର୍ଯ୍ୟନ୍ତ ସମୁଦାୟ ପ୍ରକୃତି ନିୟମାଧୀନ । ଏପରିକି ମଣିଷର ମଧ୍ୟ ସ୍ୱାଧୀନତା ନାହିଁ । କିନ୍ତୁ ଆମେମାନେ ଏ କଥା ବିଶ୍ୱାସ କରିପାରୁ ନାହିଁ । ଆମେମାନେ ମୂଳରୁ ପ୍ରକୃତିର ନିୟମାବଳୀ ବିଷୟରେ ଆଲୋଚନା କରି ଆସୁଅଛୁ; କିନ୍ତୁ ଆମେମାନେ ତାହାକୁ ବିଶ୍ୱାସ କରିପାରୁନାହିଁ । କେବଳ ଏତିକି ନୁହେଁ—ମଣିଷ ଯେ ନିୟମର ଅଧୀନ, ଏହା ମଧ୍ୟ ମାନିନେବାକୁ ଆମେ ବାଧ୍ୟ ନୋହୁଁ । ଆମମାନଙ୍କର ଆତ୍ମାର ଅନ୍ତଃସ୍ଥଳରୁ ସର୍ବଦା 'ମୁକ୍ତି, ମୁକ୍ତି' ଧ୍ୱନି ଉଠୁଛି ।

ଈଶ୍ୱରଙ୍କୁ ନିତ୍ୟମୁକ୍ତ ସତ୍ତ୍ୱରୂପେ ଧାରଣା କରି ମଣିଷ ଅନନ୍ତକାଳ ପାଇଁ ଏହି ବନ୍ଧନ ମଧ୍ୟରେ ଶାନ୍ତି ପାଇ ନ ପାରେ । ମଣିଷକୁ ଉଚ୍ଚରୁ ଉଚ୍ଚତର ପଥ ଦେଇ ଅଗ୍ରସର ହେବାକୁ ହେବ ଏବଂ ଏହି ଚେଷ୍ଟା ଯଦି ତା'ର ନିଜ ପାଇଁ ନ ହୁଅନ୍ତା, ତେବେ ସେ ଏହାକୁ ଏକ କଠୋର ବ୍ୟାପାର ବୋଲି ମନେ କରନ୍ତା । ମଣିଷ ନିଜ ଆଡ଼କୁ ଚାହିଁ କହିଥାଏ, 'ମୁଁ ଜନ୍ମଠାରୁ କ୍ରୀତଦାସ, ମୁଁ ବଦ୍ଧ; କିନ୍ତୁ ଏହା ହେଲେହେଁ ଏପରି ଜଣେ ପୁରୁଷ ଅଛନ୍ତି ଯେ ପ୍ରକୃତିର ନିୟମରେ ବଦ୍ଧ ନୁହନ୍ତି । ସେ ନିତ୍ୟ ମୁକ୍ତ ଓ ପ୍ରକୃତିର ପ୍ରଭୁ ।

ସୁତରାଂ ବନ୍ଧନର ଧାରଣା ଯେପରି ମଣିଷ ମନର ମୂଳ ଅଂଶ ଏବଂ ଅଚ୍ଛେଦ୍ୟ, ଈଶ୍ୱର-ଧାରଣା ମଧ୍ୟ ସେହିପରି ମନୁଷ୍ୟର ପ୍ରକୃତିଗତ ଓ ଅଚ୍ଛେଦ୍ୟ । ମୁକ୍ତିର ଭାବରୁ ହିଁ ଉଭୟଙ୍କର ଉଦ୍ଭବ । ଏହି ମୁକ୍ତିର ଭାବ ନ ଥିଲେ ଉଦ୍ଭିଦର ମଧ୍ୟ ଜୀବନୀଶକ୍ତି ରହିପାରେ ନାହିଁ । ଉଦ୍ଭିଦ ଅଥବା କୀଟ ଭିତରେ ଏହି ଜୀବନୀଶକ୍ତିକୁ ବ୍ୟଷ୍ଟିଗତ ଧାରଣାର ସ୍ତରରେ ଉନ୍ନୀତ ହେବାର ଚେଷ୍ଟା କରିବାକୁ ହେବ । ଅଜ୍ଞାତସାରରେ ଏହି ମୁକ୍ତିର ଚେଷ୍ଟା ହିଁ ସେମାନଙ୍କ ମଧ୍ୟରେ କାର୍ଯ୍ୟ କରୁଛି । ଉଦ୍ଭିଦ ତାହାର ବୈଚିତ୍ର୍ୟ, ନୀତି ଓ ରୂପ ରକ୍ଷା କରିବା ପାଇଁ ଜୀବନ ଧାରଣ କରୁଛି—ପ୍ରକୃତିକୁ ରକ୍ଷା କରିବା ପାଇଁ ନୁହେଁ । ପ୍ରକୃତି ଉନ୍ନତିର ପ୍ରତ୍ୟେକଟି ସୋପାନକୁ ନିୟନ୍ତ୍ରିତ କରୁଛି, ଏପରି ଧାରଣା କଲେ ମୁକ୍ତି ବା ସ୍ୱାଧୀନତାର ଭାବଟି ଛାଡ଼ିଦେବାକୁ ହୁଏ । ଜଡ଼ ଜଗତର ଭାବ ଆଗେଇ ଚାଲିଛି ଏବଂ ତାହା ସଙ୍ଗେ ସଙ୍ଗେ ମୁକ୍ତିର ଧାରଣା ମଧ୍ୟ ଆଗେଇ ଚାଲିଛି । ତଥାପି କ୍ରମାଗତ ସଂଗ୍ରାମ ଚାଲିଛି । ଆମେମାନେ ବିଭିନ୍ନ ମତବାଦ ଓ ସଂପ୍ରଦାୟମାନଙ୍କ ମଧ୍ୟରେ ବିବାଦର କଥା ଶୁଣିଛୁ । ଏହି ମତବାଦ ଓ ସଂପ୍ରଦାୟଗୁଡ଼ିକ ନ୍ୟାୟସଙ୍ଗତ ଓ ସ୍ୱାଭାବିକ । ଏମାନେ ନିଶ୍ଚୟ ରହିବେ । ଶୃଙ୍ଖଳ ଯେତେ ଦୀର୍ଘ ହେଉଛି, ଦ୍ୱନ୍ଦ୍ୱ ମଧ୍ୟ ସ୍ୱାଭାବିକ ଭାବରେ ସେତେ ବଢ଼ୁଛି । କିନ୍ତୁ ଯଦି ଆମେମାନେ ଜାଣିବୁ ଯେ, ଆମେମାନେ ସମସ୍ତେ ସେହି ଗୋଟିଏ ଲକ୍ଷ୍ୟରେ ପହଞ୍ଚିବାର ଚେଷ୍ଟା କରୁଛୁ—ତାହାହେଲେ ବିବାଦର ଆଉ ପ୍ରୟୋଜନ ରହିବ ନାହିଁ ।

ମୁକ୍ତି ବା ସ୍ୱାଧୀନତାର ମୂର୍ତ୍ତି ବିଗ୍ରହ—ପ୍ରକୃତିର ପ୍ରଭୁଙ୍କୁ ଆମେ 'ଈଶ୍ୱର' ବୋଲି କହିଥାଉଁ । ଆପଣମାନେ ତାହାଙ୍କୁ ଅସ୍ୱୀକାର କରି ନ ପାରନ୍ତି । ତାହାର କାରଣ ମୁକ୍ତିର ଭାବ ଛାଡ଼ି ଆପଣମାନେ ଗୋଟିଏ ମୁହୂର୍ତ୍ତ ଚାଲିବୁଲି ବା ଜୀବନଧାରଣ କରିପାରିବେନାହିଁ । ଯଦି ଆପଣମାନେ ନିଜକୁ ସ୍ୱାଧୀନ ବୋଲି ବିଶ୍ୱାସ ନ କରିଥାଆନ୍ତେ, ତେବେ ଏଠାକୁ କିଅଣ ଆସିଥାଆନ୍ତେ ? ସମ୍ଭବତଃ ପ୍ରାଣୀତତ୍ତ୍ୱବିତ୍‌ମାନେ ଏପ୍ରକାର ମୁକ୍ତ ହେବାର ଅବିରାମ ଚେଷ୍ଟାର କୌଣସି ଏକ ବ୍ୟାଖ୍ୟା ଦେବେ—ଏବଂ ଦେଇଥାଆନ୍ତି ମଧ୍ୟ । ଆପଣ ଏସବୁ କଥା ମାନି ନେଇପାରନ୍ତି । କିନ୍ତୁ ଆମ ଭିତରେ ମୁକ୍ତିର ଭାବଟି ରହିଯାଉଛି । 'ଆପଣମାନେ ପ୍ରକୃତିର ଅଧୀନ'—ଏହି ଭାବଟି ଯେପରି ଆପଣମାନେ ଅତିକ୍ରମ କରିପାରନ୍ତି ନାହିଁ । ଏହା ଯେପରି ସତ୍ୟ ସେହିପରି ଏହି ମୁକ୍ତିର ଭାବଟି ମଧ୍ୟ ସତ୍ୟ ।

ବନ୍ଧନ ଓ ମୁକ୍ତି, ଆଲୋକ ଓ ଛାୟା ଏବଂ ଭଲ ଓ ମନ୍ଦ—ଏହି ଦ୍ୱନ୍ଦ୍ୱ ନିଶ୍ଚୟ ରହିବ । ଯେଉଁଠାରେ କୌଣସି ପ୍ରକାର ବନ୍ଧନ ଅଛି, ତାହା ପଛରେ ଯେ ମୁକ୍ତି ଗୁପ୍ତ

ଭାବରେ ରହିଛି ଏକଥା ବୁଝିବାକୁ ହେବ । ଗୋଟିଏ ସତ୍ୟ ହେଲେ ଅନ୍ୟଟି ମଧ୍ୟ ସତ୍ୟ ହେବ ! ଏହି ମୁକ୍ତିର ଧାରଣା ନିଶ୍ଚୟ ରହିବ । ଆମେମାନେ ଅଶିକ୍ଷିତ ବ୍ୟକ୍ତି ଭିତରେ ବନ୍ଧନର ଧାରଣା ଦେଖିବାକୁ ପାଉଁ ଏବଂ ଏହି ଧାରଣାକୁ ମୁକ୍ତିର ଚେଷ୍ଟା ବୋଲି ବୁଝି ନ ପାରିଲେ ସୁଦ୍ଧା ଏହି ମୁକ୍ତିର ଭାବ ତା' ଭିତରେ ରହିଅଛି । ଅଶିକ୍ଷିତ ବର୍ବର ମଣିଷର ମନରେ ପାପ ଓ ଅପବିତ୍ରତାର ବନ୍ଧନର ଚେତନା ଅତି ଅଳ୍ପ, କାରଣ ତାହାର ପ୍ରକୃତି ପଶୁ ଅପେକ୍ଷା ଅଧିକ ଉନ୍ନତ ନୁହେଁ । ସେ ଦୈହିକ ବନ୍ଧନ ଏବଂ ଦେହ-ସମ୍ଭୋଗର ଅଭାବ ବିରୋଧରେ ସଂଗ୍ରାମ କରେ । କିନ୍ତୁ ଏହି ନିମ୍ନତର ଚେତନାରୁ କ୍ରମେ ମାନସିକ ବା ନୈତିକ ବନ୍ଧନର ଉଚ୍ଚତର ଧାରଣା ଓ ଆଧ୍ୟାତ୍ମିକ ମୁକ୍ତିର ଆକାଂକ୍ଷା ଜାଗ୍ରତ ହୁଏ ଏବଂ ବିକାଶ ଲାଭ କରେ । ତେଣୁ ସେହି ଈଶ୍ୱରୀୟ ଭାବ ଅଜ୍ଞାନାବରଣ ଦେଇ କ୍ଷୀଣଭାବରେ ପ୍ରକାଶ ପାଉଛି ବୋଲି ଆମେମାନେ ଏଠାରେ ଦେଖିବାକୁ ପାଉଁ । ପ୍ରଥମତଃ ଏହି ଆବରଣ ଅତିଶୟ ଘନ ଥାଏ ଏବଂ ସେହି ଦିବ୍ୟଜ୍ୟୋତି ପ୍ରାୟ ଆଚ୍ଛାଦିତ ଥାଏ; କିନ୍ତୁ ସେହି ଜ୍ୟୋତି, ସେହି ମୁକ୍ତି ଓ ପୂର୍ଣ୍ଣତାର ଉଜ୍ଜ୍ୱଳ-ଅଗ୍ନି ସର୍ବଦା ପବିତ୍ର ଓ ଅନିର୍ବାଣ ରହିଛି । ମଣିଷ ଏହି ଦିବ୍ୟ ଜ୍ୟୋତିଙ୍କୁ ବିଶ୍ୱର ନିୟନ୍ତା ଏକମାତ୍ର ମୁକ୍ତପୁରୁଷଙ୍କର ପ୍ରତୀକ ବୋଲି ଧାରଣା କରେ । ସେ ସେତେବେଳେ ମଧ୍ୟ ଜାଣେ ନାହିଁ ଯେ, ସମଗ୍ର ବିଶ୍ୱ ଏକ ଅଖଣ୍ଡ ବସ୍ତୁ—ପ୍ରଭେଦ କେବଳ ପରିମାଣର ତାରତମ୍ୟରେ, ଧାରଣାର ତାରତମ୍ୟରେ ।

ସମଗ୍ର ପ୍ରକୃତି ହିଁ ଈଶ୍ୱରଙ୍କର ଉପାସନା-ସ୍ୱରୂପ । ଯେଉଁଠାରେ ଜୀବନ ଅଛି, ସେଠାରେ ଏହି ମୁକ୍ତିର ଅନୁସନ୍ଧାନ ଅଛି ଏବଂ ଏହି ମୁକ୍ତି ହିଁ ଈଶ୍ୱର-ସ୍ୱରୂପ । ଏହି ମୁକ୍ତି ଦ୍ୱାରା ହିଁ ସମଗ୍ର ପ୍ରକୃତି ଉପରେ ଆଧିପତ୍ୟ ଲାଭ କରିବା ନିଶ୍ଚିତ ଏବଂ ଜ୍ଞାନ ବ୍ୟତୀତ ଏହି ମୁକ୍ତି ଅସମ୍ଭବ । ଆମେମାନେ ଯେତେ ଯେତେ ଜ୍ଞାନୀ ହେଉ, ସେତିକି ପ୍ରକୃତି ଉପରେ ଆଧିପତ୍ୟ ଲାଭ କରିପାରୁ । ପ୍ରକୃତିକୁ ବଶ କରିପାରିଲେ ହିଁ ଆମ୍ଭେମାନେ ଶକ୍ତିସମ୍ପନ୍ନ ହେଉ । ଯଦି ଏପରି କୌଣସି ପୁରୁଷ ଥାଆନ୍ତି ଯେ ସମ୍ପୂର୍ଣ୍ଣ ମୁକ୍ତ ଓ ପ୍ରକୃତିର ପ୍ରଭୁ, ତେବେ ତାଙ୍କର ନିଶ୍ଚୟ ପ୍ରକୃତି ସମ୍ବନ୍ଧୀୟ ପୂର୍ଣ୍ଣ ଜ୍ଞାନ ଥିବ, ସେ ନିଶ୍ଚୟ ସର୍ବବ୍ୟାପୀ ଓ ସର୍ବଜ୍ଞ ହେବେ । ମୁକ୍ତି ସାଙ୍ଗରେ ଏଗୁଡ଼ିକ ନିଶ୍ଚୟ ରହିବ ଏବଂ ଯେଉଁ ବ୍ୟକ୍ତି ଏହା ଲାଭ କରିଛନ୍ତି ସେ ହିଁ ପ୍ରକୃତିକୁ ଅତିକ୍ରମ କରିଯାଇପାରନ୍ତି ।

ବେଦାନ୍ତରେ ଈଶ୍ୱରଙ୍କ ସମ୍ବନ୍ଧରେ ଯେଉଁ ତତ୍ତ୍ୱ ଅଛି ସେସବୁର ମୂଳରେ ଅଛି ପୂର୍ଣ୍ଣ ମୁକ୍ତି । ଧର୍ମର ଉଚ୍ଚତମ ଧାରଣା ହେଲ ଏହି ମୁକ୍ତିରୁ ପ୍ରାପ୍ୟ ଆନନ୍ଦ ଓ ନିତ୍ୟ ଶାନ୍ତି । ଏହା ସମ୍ପୂର୍ଣ୍ଣ ମୁକ୍ତ ଅବସ୍ଥା—ଯେଉଁଠାରେ କାହାର କୌଣସି ବନ୍ଧନ ରହିପାରେ ନାହିଁ, ଯେଉଁଠାରେ ପ୍ରକୃତି ନାହିଁ, ପରିବର୍ତ୍ତନ ନାହିଁ । ଏପରି ମଧ୍ୟ କିଛି ନାହିଁ, ଯାହାକି ତହିଁରୁ କୌଣସି ପରିଣାମ ଉତ୍ପନ୍ନ କରିପାରିବ । ଏହି ଗୋଟିଏ ମୁକ୍ତି ଆପଣମାନଙ୍କ ଭିତରେ, ମୋ ଭିତରେ ରହିଛି ଏବଂ ଏହା ହିଁ ଏକମାତ୍ର ଯଥାର୍ଥ ମୁକ୍ତି ।

ଈଶ୍ୱର ସର୍ବଦା ହିଁ ନିଜ ମହିମାମୟ ଅପରିଣାମୀ ସ୍ୱରୂପ ଉପରେ ପ୍ରତିଷ୍ଠିତ ରହିଅଛନ୍ତି । ଆପଣ ଓ ମୁଁ ତାହାଙ୍କ ସହିତ ମିଳିତ ହେବାର ଚେଷ୍ଟା କରୁଛୁ । କିନ୍ତୁ ପୁଣି

ଅନ୍ୟ ଏକ ଦିଗରେ ବନ୍ଧନର କାରଣୀଭୂତ ପ୍ରକୃତି ପ୍ରାତ୍ୟହିକ ଜୀବନର କ୍ଷୁଦ୍ର କ୍ଷୁଦ୍ର ବ୍ୟାପାର—ଧନ, ମାନ, ଯଶ, ମାନବୀୟ ପ୍ରେମ ଏବଂ ଏହିସବୁ ପରିଣାମୀ ପ୍ରାକୃତିକବିଷୟ-ଗୁଡ଼ିକ ଉପରେ ନିର୍ଭର କରି ରହିଅଛି । କିନ୍ତୁ ଯେତେବେଳେ ପ୍ରକୃତି ପ୍ରକାଶ ପାଉଛି, ଏହାର ପ୍ରକାଶ ସେତେବେଳେ କାହା ଉପରେ ନିର୍ଭର କରୁଛି ? ଈଶ୍ୱରଙ୍କର ପ୍ରକାଶରେ ପ୍ରକୃତିର ପ୍ରକାଶ ହେଉଛି —ସୂର୍ଯ୍ୟ, ଚନ୍ଦ୍ର, ତାରାର ପ୍ରକାଶରେ ନୁହେଁ । ଯେତେବେଳେ କୌଣସି ବସ୍ତୁ ପ୍ରକାଶ ପାଏ—ଏହା ଆମର ଚେତନା ହେଉ ବା ସୂର୍ଯ୍ୟର ଆଲୋକ ହେଉ —ଏହା ସେହି । ସେ ପ୍ରକାଶ ପାଉଛନ୍ତି ବୋଲି ସବୁକିଛି ପ୍ରକାଶ ପାଉଛି ।

ଆମେମାନେ ଦେଖିଲୁ ଈଶ୍ୱର ସ୍ୱତଃସିଦ୍ଧ । ସେ ବ୍ୟକ୍ତି ନୁହନ୍ତି ଅଥଚ ସର୍ବଜ୍ଞ । ପ୍ରକୃତିର ଜ୍ଞାତା ଓ କର୍ତ୍ତା ଏବଂ ସମସ୍ତଙ୍କର ପ୍ରଭୁ । ସବୁ ଉପାସନାର ମୂଳରେ ଅଛନ୍ତି ସେ । ଆମେମାନେ ବୁଝିପାରୁ ବା ନ ପାରୁ ତାଙ୍କର ହିଁ ଉପାସନା ହେଉଛି । କେବଳ ତାହା ନୁହେଁ, ଆଉ ଅଳ୍ପ ଆଗକୁ ଯାଇ ମୁଁ କହିବାକୁ ଚାହେଁ—ଯେଉଁସବୁ ବିଷୟକୁ ଆମେ ମନ୍ଦ ବୋଲି କହୁ, ଯାହାସବୁ ଦେଖି ଆମେ ଆଶ୍ଚର୍ଯ୍ୟ ହେଉ, ତାହା ମଧ୍ୟ ଈଶ୍ୱରଙ୍କର ଉପାସନା, ତାହା ମଧ୍ୟ ମୁକ୍ତିର ଗୋଟିଏ ଦିଗ ମାତ୍ର । କେବଳ ସେତିକି ନୁହେଁ ଏବଂ ଆପଣମାନେ ମୋର କଥା ଶୁଣି ଭୟ କରିପାରନ୍ତି, କିନ୍ତୁ ମୁଁ କହିବି ଯେ, ଆପଣମାନେ ଯେତେବେଳେ କୌଣସି ମନ୍ଦ କାମ କରୁଛନ୍ତି, ସେଭଳି କାମ କରିବାର ପ୍ରବୃତ୍ତି ପଛରେ ମଧ୍ୟ ସେହି ମୁକ୍ତି ନିହିତ ଅଛି । ଏହି ପ୍ରେରଣା ହୁଏତ ଭୁଲ ବାଟରେ ଚାଲିଛି, କିନ୍ତୁ ସେଠାରେ ଏହି ମୁକ୍ତିର ପ୍ରେରଣା ହିଁ ରହିଛି । ମୁକ୍ତିର ପ୍ରେରଣା ପଛରେ ନ ଥିଲେ କୌଣସିପ୍ରକାର ଜୀବନ ବା କୌଣସି ପ୍ରକାର ପ୍ରେରଣା ରହିପାରିବ ନାହିଁ । ବିଶ୍ୱର ସ୍ପନ୍ଦନ ମଧ୍ୟରେ ଏହି ମୁକ୍ତି ପ୍ରାଣବନ୍ତ । ସମସ୍ତଙ୍କର ହୃଦୟରେ ଯଦି ଏକତ୍ୱ ନ ଥାନ୍ତା, ତେବେ ଆମେମାନେ ବହୁତ୍ୱର ଧାରଣା କରିପାରି ନ ଥାନ୍ତୁ । ଉପନିଷଦ୍‌ରେ ଈଶ୍ୱରଙ୍କ ସମ୍ବନ୍ଧରେ ଧାରଣା ଏହି ପ୍ରକାର । ସମୟ ସମୟରେ ଏହି ଧାରଣା ଆହୁରି ଉଚ୍ଚତର ସ୍ତରକୁ ଉଠିଛି ଏବଂ ଆମମାନଙ୍କ ଆଗରେ ଏପରି ଏକ ଆଦର୍ଶ ସ୍ଥାପନ କରିଛି ଯେ, ତାହା ଦେଖି ଆମେମାନେ ପ୍ରଥମେ ସ୍ତମ୍ଭିତ ହେଉ । ସେହି ଆଦର୍ଶ ହେଲା—ସ୍ୱରୂପତଃ ଆମେମାନେ ଭଗବାନଙ୍କ ସହିତ ଅଭିନ୍ନ । ଯେ ପ୍ରଜାପତି ଦେହରେ ବିଚିତ୍ର ବର୍ଣ୍ଣ ଏବଂ ବିକାଶୋନ୍ମୁଖ ଗୋଲାପକଢ଼ି, ସେ ହିଁ ଶକ୍ତିରୂପରେ ଗୁଟିକା ଓ ପ୍ରଜାପତି ମଧ୍ୟରେ ବିରାଜମାନ । ଯେ ଆମମାନଙ୍କୁ ଜୀବନ ଦେଇଛନ୍ତି, ସେ ହିଁ ଆମମାନଙ୍କ ମଧ୍ୟରେ ଶକ୍ତିରୂପେ ବିରାଜମାନ କରୁଛନ୍ତି । ତାଙ୍କର ତେଜରୁ ଜୀବନର ଆବିର୍ଭାବ ଏବଂ ଭୀଷଣ ମୃତ୍ୟୁ ମଧ୍ୟ ତାଙ୍କର ଶକ୍ତି । ତାଙ୍କର ଛାୟା ହେଉଛି ମୃତ୍ୟୁ, ପୁଣି ତାଙ୍କର ଛାୟା ହିଁ ଅମୃତତ୍ୱ । ଆଉ ଏକ ଉଚ୍ଚତର ଧାରଣାର କଥା କହିବି—ଯାହା କିଛି ଭୟାବହ, ତା'ଠାରୁ ଆମେମାନେ ବ୍ୟାଧ କର୍ତ୍ତୃକ ଅନୁସୃତ ଶଶକ ପରି ପଳାୟନ କରୁଅଛୁ ଏବଂ ସେମାନଙ୍କ ପରି ମୁଣ୍ଡ ଲୁଚାଇ ନିଜକୁ ନିରାପଦ ଭାବୁଛୁ । ସମଗ୍ର ଜଗତରେ ଯାହା ଭୟାବହ, ତାହାଠାରୁ ପଳାଇବାର ଚେଷ୍ଟା କରୁଛୁ । ଥରେ ମୁଁ କାଶୀରେ ଗୋଟିଏ ରାସ୍ତାରେ ଯାଉଥିଲି । ସେ ରାସ୍ତାର ଗୋଟିଏ

ପାଖରେ ଥିଲା ଏକ ବଡ଼ ପୋଖରୀ ଓ ଅନ୍ୟ ପାଖରେ ଥିଲା ଏକ ଉଚ୍ଚ ପାଚେରୀ । ତଳେ କେତେଗୁଡ଼ିଏ ମାଙ୍କଡ଼ ଥିଲେ । କାଶୀର ମାଙ୍କଡ଼ଗୁଡ଼ିକ ଦୀର୍ଘକାୟ ଏବଂ ଅନେକସମୟରେ ଅଶିଷ୍ଟ । ବର୍ତ୍ତମାନ ଏହି ମାଙ୍କଡ଼ମାନଙ୍କର ମୁଣ୍ଡରେ ଗୋଟିଏ ଖିଆଲ ଆସିଲା ଯେ, ସେମାନେ ମୋତେ ସେ ବାଟଦେଇ ଯିବାକୁ ଦେବେ ନାହିଁ । ତେଣୁ ସେମାନେ ଭୟଙ୍କର ଚିତ୍କାର କରିବାକୁ ଲାଗିଲେ ଏବଂ ମୋ ପାଖକୁ ଆସି ମୋ ଗୋଡ଼ ଧରିଲେ । ସେମାନେ ମୋର ଆହୁରି ପାଖକୁ ଆସିବାରୁ ମୁଁ ଦୌଡ଼ିବାକୁ ଲାଗିଲି । କିନ୍ତୁ ଯେତେ ଦୌଡ଼ିଲି, ସେମାନେ ସେତେ ପାଖକୁ ଆସିଲେ ଏବଂ କାମୁଡ଼ିବାକୁ ଲାଗିଲେ । ମାଙ୍କଡ଼ମାନଙ୍କ କବଳରୁ ରକ୍ଷା ପାଇବା ଅସମ୍ଭବ ବୋଧ ହେଲା । ଏହି ସମୟରେ ଜଣେ ଅପରିଚିତ ଲୋକ ହଠାତ୍ ପାଟିକରି ମୋତେ କହିଲେ, "ମାଙ୍କଡ଼ମାନଙ୍କର ସମ୍ମୁଖୀନ ହୁଅନ୍ତୁ !" ମୁଁ ପଛକୁ ଫେରି ସେମାନଙ୍କ ଆଡ଼କୁ ମୁହଁକରି ଛିଡ଼ାହେଲି, ଅମନି ଆପେ ଆପେ ସେମାନେ ପଛକୁ ପଳାଇଗଲେ । ଜୀବନରେ ଏହି ପ୍ରକାର ଶିକ୍ଷା ଲାଭ କରିବାକୁ ହେବ, ଯାହା କିଛି ଭୟଙ୍କର ତାହାର ସମ୍ମୁଖୀନ ହେବାକୁ ପଡ଼ିବ ଏବଂ ସାହସର ସହିତ ତାହାକୁ ଅବରୋଧ କରିବାକୁ ହେବ । ଜୀବନର ଦୁଃଖକଷ୍ଟକୁ ଭୟ ନ କରି ସାହସର ସହିତ ସମ୍ମୁଖୀନ ହେଲେ ମାଙ୍କଡ଼ମାନଙ୍କ ପରି ସେମାନେ ଦୂରକୁ ଚାଲିଯିବେ । ଯଦି ଆମମାନଙ୍କୁ କେବେ ମୁକ୍ତି ବା ସ୍ୱାଧୀନତା ଅର୍ଜନ କରିବାକୁ ହୁଏ, ତେବେ ପ୍ରକୃତିକୁ ଜୟ କରି ଏହା ଲାଭ କରିବାକୁ ହେବ— ପ୍ରକୃତିଠାରୁ ଦୂରକୁ ଚାଲିଯାଇ ନୁହେଁ । କାପୁରୁଷମାନେ କେବେହେଲେ ଜୟଲାଭ କରିପାରନ୍ତି ନାହିଁ । ଯଦି ଆମେମାନେ ଚାହୁଁ ଯେ ଭୟ, କଷ୍ଟ ଓ ଅଜ୍ଞାନ ଆମମାନଙ୍କ ସମ୍ମୁଖରୁ ଦୂରେଇ ଯାଉ, ତେବେ ଆମମାନଙ୍କୁ ଏହିଗୁଡ଼ିକ ସହିତ ସଂଗ୍ରାମ କରିବାକୁ ହେବ ।

ମୃତ୍ୟୁ କ'ଣ ? ଭୟ କାହାକୁ କହନ୍ତି ? ଏସବୁ ମଧ୍ୟରେ କ'ଣ ଭଗବାନଙ୍କର ମୁଖ ଦେଖାଯାଏ ନାହିଁ ? ଦୁଃଖ, କଷ୍ଟ ଓ ଭୟଠାରୁ ଦୂରକୁ ପଳାଇଯାଅ, ଦେଖିବ, ସେମାନେ ତୁମକୁ ପୁଣି ଗୋଡ଼ାଇବେ । ଏଗୁଡ଼ିକର ସମ୍ମୁଖୀନ ହୁଅ, ତାହାହେଲେ ସେମାନେ ପଳାଇବେ । ସମସ୍ତ ଜଗତ ସୁଖ ଓ ଆରାମର ଉପାସକ, ଯାହା ଦୁଃଖଦାୟକ ତାହାକୁ ଉପାସନା କରିବାକୁ ଖୁବ୍ କମ୍ ଲୋକ ସାହସ କରନ୍ତି । ସୁଖ ଓ ଦୁଃଖ ଉଭୟକୁ ଅତିକ୍ରମ କରିବା ହିଁ ମୁକ୍ତିର ଭାବ । ମନୁଷ୍ୟ ଏହି ଦ୍ୱାର ଅତିକ୍ରମ ନ କଲେ ମୁକ୍ତ ହୋଇପାରିବ ନାହିଁ । ଆମମାନଙ୍କୁ ଏ ସମସ୍ତର ସମ୍ମୁଖୀନ ହେବାକୁ ହେବ । ଆମେମାନେ ଈଶ୍ୱରଙ୍କର ଉପାସନା କରିବାକୁ ଚେଷ୍ଟା କରୁ, କିନ୍ତୁ ଆମମାନଙ୍କର ଦେହ—ପ୍ରକୃତି, ଭଗବାନ ଓ ଆମମାନଙ୍କ ଭିତରେ ଆସି—ଆମର ଦୃଷ୍ଟିକୁ ଅନ୍ଧ କରିଛି । ଆମମାନଙ୍କୁ ବଜ୍ର, ଲଜ୍ଜା, ଦୁଃଖ, ଦୁର୍ବିପାକ ଓ ପାପତାପ ମଧ୍ୟରେ ତାଙ୍କୁ ଉପାସନା କରିବାକୁ ଓ ଭଲ ପାଇବାକୁ ଶିକ୍ଷା କରିବାକୁ ହେବ । ସମଗ୍ର ଜଗତ ପୁଣ୍ୟର ଈଶ୍ୱରଙ୍କୁ ଚିରକାଳ ପ୍ରଚାର କରିଆସିଛି । କିନ୍ତୁ ମୁଁ ଏକାଧାରରେ ପୁଣ୍ୟ ଓ ପାପର ଈଶ୍ୱରଙ୍କୁ ପ୍ରଚାର କରେ । ଯଦି ସାହସ ଅଛି, ଏହି ଈଶ୍ୱରଙ୍କୁ ଗ୍ରହଣ କର । ଏହି ଈଶ୍ୱର ହିଁ ମୁକ୍ତିର ଏକମାତ୍ର ପଥ—ତାହାହେଲେ

ସେହି ଏକତ୍ୱରୂପ ଚରମ ସତ୍ୟରେ ଉପନୀତ ହୋଇପାରିବ । ଆମେମାନେ ଏହି ମୁକ୍ତିର ନିଦ୍ଦିଷ୍ଟ ପରେ କାହିଁ? ନିମ୍ନର ପକ୍ଷୀ ନିକଟବର୍ତ୍ତୀ ହେଉ, ସେତେ ଆମେମାନେ ଈଶ୍ୱରଙ୍କର ଶରଣାଗତ ହେଉ, ସେତେ ଆମମାନଙ୍କର ଦୁଃଖ କଷ୍ଟ ଚାଲିଯାଏ । ସେତେବେଳେ ଆମେମାନେ ସ୍ୱର୍ଗ ଓ ନରକର ଦ୍ୱାରଦୁଇଟିକୁ ପୃଥକ୍ ଭାବେ ଦେଖୁ ନାହିଁ । ସେତେବେଳେ ମଣିଷ ମଣିଷ ମଧ୍ୟରେ ଭେଦଭାବ ଦେଖି ଆମେ କହିବୁ ନାହିଁ—ମୁଁ ଜଗତର ଯେକୌଣସି ପ୍ରାଣୀଠାରୁ ଶ୍ରେଷ୍ଠ । ଯେତେଦିନ ପର୍ଯ୍ୟନ୍ତ ଆମେମାନେ ସେହି ପ୍ରଭୁଙ୍କୁ ସର୍ବତ୍ର ନ ଦେଖିବୁ ସେତେ ଦିନ ପର୍ଯ୍ୟନ୍ତ ଏହି ଦୁଃଖକଷ୍ଟ ଆମମାନଙ୍କୁ ଘେରି ରହିବ ଏବଂ ଆମେମାନେ ସେହି ଭେଦଭାବ ଦେଖୁଥିବୁ । ଏହାର କାରଣ ହେଲା—ସେହି ଭଗବାନ ବା ସେହି ଆତ୍ମା ମଧ୍ୟରେ ଆମେମାନେ ସମସ୍ତେ ଅଭିନ୍ନ । ଯେତେଦିନ ଆମେମାନେ ଈଶ୍ୱରଙ୍କୁ ସର୍ବତ୍ର ଦର୍ଶନ ନ କରିବୁ, ସେତେଦିନ ପର୍ଯ୍ୟନ୍ତ ଏହି ଏକତ୍ୱାନୁଭୂତି ଆସିବ ନାହିଁ ।

ଗୋଟିଏ ବୃକ୍ଷରେ ସୁନ୍ଦର ପକ୍ଷଯୁକ୍ତ ନିତ୍ୟସଖାସ୍ୱରୂପ ଦୁଇଟି ପକ୍ଷୀ ରହିଛନ୍ତି*—ସେଥିରୁ ଗୋଟିଏ ବୃକ୍ଷର ଅଗ୍ରଭାଗରେ ଓ ଅନ୍ୟଟି ନିମ୍ନଦେଶରେ । ନିମ୍ନରେ ଥିବା ସୁନ୍ଦର ପକ୍ଷୀଟି ବୃକ୍ଷର ସୁସ୍ୱାଦୁ ଓ କଟୁ ଫଳଗୁଡ଼ିକ ଭକ୍ଷଣ କରୁଛି । ଥରେ ଗୋଟିଏ ସ୍ୱାଦୁଫଳ ପାଇଲେ ପର ମୁହୂର୍ତ୍ତରେ ପୁଣି କଟୁଫଳଟିଏ ଭକ୍ଷଣ କରୁଛି । ସେଉଁ ମୁହୂର୍ତ୍ତରେ ପକ୍ଷୀଟି କଟୁଫଳ ଖାଉଛି ତାହାର ଦୁଃଖ ହେଉଛି । ଅଳ୍ପ ସମୟ ପରେ ପୁଣି ଯେତେବେଳେ ଫଳଟିଏ ଖାଉଛି ଏବଂ ତାହା କଟୁ ଲାଗୁଛି ସେତେବେଳେ ସେ ଉପରକୁ ଚାହିଁ ଦେଖୁଛି ଯେ ଉପର ପକ୍ଷୀଟି କଟୁ ବା ସ୍ୱାଦୁ କୌଣସି ଫଳ ଖାଉନାହିଁ, ସେ ନିଜର ମହିମାରେ ମଗ୍ନ ହୋଇ ଧୀରସ୍ଥିରଭାବେ ବସିଛି । ତା'ପରେ ତଳସ୍ଥ ଡାଳେ ଥିବା ପକ୍ଷୀଟି ସବୁ କଥା ଭୁଲି ପୁଣି ସ୍ୱାଦୁ ଓ କଟୁ ଫଳଗୁଡ଼ିକ ଖାଇବାକୁ ଲାଗିଲା । ଶେଷରେ ଏକ ଅତିଶୟ କଟୁ ଫଳ ଖାଇଲା ଏବଂ କିଛିକ୍ଷଣ ଧରି ଉପରେ ଥିବା ସେହି ମହିମାମୟ ପକ୍ଷୀ ଆଡ଼କୁ ଚାହିଁ ରହିଲା । ଅବଶେଷରେ ଏହି ଉପର ପକ୍ଷୀ ଆଡ଼କୁ ଅଗ୍ରସର ହୋଇ ଯେତେବେଳେ ତାହାର ନିକଟବର୍ତ୍ତୀ ହେଲା ସେତେବେଳେ ଉପର ପକ୍ଷୀର ଅଙ୍ଗଜ୍ୟୋତି ଆସି ତାହାର ଶରୀରରେ ଲାଗିଲା ଏବଂ ତାହାକୁ ଆଚ୍ଛନ୍ନ କଲା । ସେତେବେଳେ ସେ ଦେଖିଲା ଯେ ସେ ନିଜେ ସେହି ଉପର ପକ୍ଷୀ ପାଲଟି ଯାଇଛି; ସେ ଶାନ୍ତ, ମହିମାମୟ ଓ ମୁକ୍ତ ହୋଇ ଯାଇଛି—ବୃକ୍ଷରେ ଆଉ ଦୁଇଟି ପକ୍ଷୀ ନାହିଁ, ଗୋଟିଏ ପକ୍ଷୀ ରହିଅଛି । ତଳର ପକ୍ଷୀ ଉପର ପକ୍ଷୀଟିର ଛାୟାମାତ୍ର । ତେଣୁ ପ୍ରକୃତପକ୍ଷରେ ଆମେମାନେ ଈଶ୍ୱରଙ୍କଠାରୁ ଅଭିନ୍ନ, କିନ୍ତୁ ଯେପରି ଏକମାତ୍ର ସୂର୍ଯ୍ୟ ଲକ୍ଷ ଲକ୍ଷ ଶିଶିରବିନ୍ଦୁରେ ପ୍ରତିବିମ୍ବିତ ହୋଇ ଲକ୍ଷ ଲକ୍ଷ କ୍ଷୁଦ୍ର ସୂର୍ଯ୍ୟରୂପେ ପ୍ରତୀତ ହୁଅନ୍ତି, ସେହିପରି ଈଶ୍ୱର ହିଁ ବହୁ ଜୀବାତ୍ମାରୂପେ ପ୍ରତିଭାତ ହୁଅନ୍ତି । ଯଦି ଆମେମାନେ ଆମମାନଙ୍କର ପ୍ରକୃତ ବ୍ରହ୍ମସ୍ୱରୂପରୁ ଅଭିନ୍ନ ହେବାକୁ ଚାହୁଁ, ତେବେ ପ୍ରତିବିମ୍ବ ଦୂର ହେବା ଆବଶ୍ୟକ । ଏହି ବିଶ୍ୱପ୍ରପଞ୍ଚ କେବେହେଲେ ଆମମାନଙ୍କର ତୃପ୍ତିର ସୀମାରେଖା ହୋଇପାରିବ ନାହିଁ । ସେଥିପାଇଁ କୃପଣ ଧନ ଉପରେ ଧନ ସଞ୍ଚୟ

* ମୁଣ୍ଡକ ଉପ., ୩।୧।୧; ଶ୍ୱେତାଶ୍ୱ. ଉପ., ୪।୬

କରିଥିଲେ । ଦସ୍ୟୁ ଅପହରଣ କରେ, ପାପୀ ପାପାଚରଣ କରେ, ତୁମେମାନେ ଦର୍ଶନ-ଶାସ୍ତ୍ର ଶିକ୍ଷା କର । ସମସ୍ତଙ୍କର ଗୋଟିଏ ଉଦ୍ଦେଶ୍ୟ । ମୁକ୍ତିଲାଭ କରିବା ବ୍ୟତୀତ ଜୀବନର ଆଉ କୌଣସି ଉଦ୍ଦେଶ୍ୟ ନାହିଁ । ଜ୍ଞାତସାରରେ ହେଉ ବା ଅଜ୍ଞାତସାରରେ ହେଉ, ସମସ୍ତେ ପୂର୍ଣ୍ଣତାଲାଭ ର ଚେଷ୍ଟା କରୁଛନ୍ତି । ପ୍ରତ୍ୟେକ ହିଁ ଏହି ପୂର୍ଣ୍ଣତା ଲାଭ କରିବେ ।

ଯେଉଁ ବ୍ୟକ୍ତି ପାପତାପ ମଧ୍ୟରେ ଅନ୍ଧକାରରେ ଘୂରି ବୁଲୁଛି, ସିଏ ନରକର ପଥ ବାଛି ନେଇଛି ସେ ମଧ୍ୟ ପୂର୍ଣ୍ଣତାଲାଭ କରିବ, କିନ୍ତୁ ତାର କିଛି ବିଳମ୍ବ ହେବ । ଆମେମାନେ ତାହାକୁ କେବେ ଉଦ୍ଧାର କରିପାରିବୁ ନାହିଁ, ଏହି ପଥରେ ଗତିକରି ସେ ଯେତେବେଳେ କେତେକ କଠୋର ଆଘାତ ପାଇବ, ସେତେବେଳେ ଭଗବାନଙ୍କ ଆଡ଼କୁ ଫେରିବ । ଶେଷରେ ସେ ଧର୍ମ, ପବିତ୍ରତା, ନିଃସ୍ୱାର୍ଥପରତା ଏବଂ ଆଧ୍ୟାତ୍ମିକତାର ବାଟ ଖୋଜି ପାଇବ । ସମସ୍ତେ ଅଜ୍ଞାତସାରରେ ଯାହା କରୁଛନ୍ତି, ତାହା ଆମେମାନେ ଜ୍ଞାତସାରରେ କରୁଅଛୁ । ସେଣ୍ଟପଲ ଏହି ଭାବଟି ପ୍ରକାଶ କରି କହିଛନ୍ତି, "ତୁମେମାନେ ଯେଉଁ ଈଶ୍ୱରଙ୍କୁ ଅଜ୍ଞାତସାରରେ ଉପାସନା କରୁଛ, ତାଙ୍କୁ ହିଁ ମୁଁ ତୁମମାନଙ୍କ ନିକଟରେ ଘୋଷଣା କରୁଛି ।" ସମଗ୍ର ଜଗତକୁ ଏହି ଶିକ୍ଷା ଲାଭ କରିବାକୁ ହେବ । ଜୀବନରେ ଏହି ଏକମାତ୍ର ଲକ୍ଷ୍ୟରେ ପହଞ୍ଚିବା ପାଇଁ ସାହାଯ୍ୟ ନ କଲେ ଦର୍ଶନଶାସ୍ତ୍ର ଓ ପ୍ରକୃତି ସମ୍ବନ୍ଧରେ ଏହିସବୁ ମତବାଦ ପୋଷଣ କରି କ'ଣ ହେବ ? ଆମେମାନେ ଯେପରି ବିଭିନ୍ନ ବସ୍ତୁରେ ଭେଦଜ୍ଞାନ ଭୁଲି ସର୍ବତ୍ର ସମଦର୍ଶୀ ହେଉ । ମଣିଷ ନିଜକୁ ସକଳ ବସ୍ତୁରେ ଦେଖିବାକୁ ଶିଖୁ । ଆମେମାନେ ଯେପରି ଈଶ୍ୱରଙ୍କ ବିଷୟରେ କ୍ଷୁଦ୍ର ସଙ୍କୀର୍ଣ୍ଣ ଧାରଣା ନେଇ ଧର୍ମମତ ବା ସମ୍ପ୍ରଦାୟସମୂହର ଉପାସକ ନ ହେଉ ଏବଂ ଜଗତର ସବୁଠାରେ ତାହାଙ୍କୁ ଦର୍ଶନ କରୁ । ଆପଣମାନେ ଯଦି ବ୍ରହ୍ମଜ୍ଞ ହୁଅନ୍ତି, ତେବେ ନିଜର ହୃଦୟରେ ଯାହାଙ୍କୁ ଉପାସନା କରୁଛନ୍ତି, ତାହାଙ୍କୁ ସର୍ବତ୍ର ଉପାସନା କରିପାରିବେ ।

ପ୍ରଥମତଃ ଏସବୁ ସଙ୍କୀର୍ଣ୍ଣ ଧାରଣା ତ୍ୟାଗ କରନ୍ତୁ ଏବଂ ସମସ୍ତଙ୍କ ମଧ୍ୟରେ ସେହି ଈଶ୍ୱରଙ୍କୁ ଦର୍ଶନ କରନ୍ତୁ । ଯେଉଁ ଈଶ୍ୱର ସମସ୍ତଙ୍କ ହାତରେ କାର୍ଯ୍ୟ କରୁଛନ୍ତି, ସମସ୍ତଙ୍କର ପାଦରେ ଚାଲୁଛନ୍ତି, ସମସ୍ତଙ୍କର ପାଟିରେ ଖାଉଛନ୍ତି, ସେ ପ୍ରତ୍ୟେକ ଜୀବରେ ବାସ କରନ୍ତି ଏବଂ ପ୍ରତ୍ୟେକର ମନରେ ମନନ କରନ୍ତି । ସେ ଆପଣା ସ୍ୱୟଂ ପ୍ରମାଣିତ—ଆମର ନିକଟରୁ ନିକଟତର । ଏହାକୁ ଜାଣିବା ହିଁ ଧର୍ମ—ଏହାକୁ ଜାଣିବା ହିଁ ବିଶ୍ୱାସ । ପ୍ରଭୁ କୃପା କରି ଆମମାନଙ୍କୁ ଏହି ବିଶ୍ୱାସ ପ୍ରଦାନ କରନ୍ତୁ । ଆମେମାନେ ଯେତେବେଳେ ସମଗ୍ର ଜଗତର ଏହି ଅଖଣ୍ଡତ୍ୱ ଅନୁଭବ କରିବା, ସେତେବେଳେ ଅମୃତତ୍ୱ ଲାଭ କରିବା । ପ୍ରାକୃତିକ ଦୃଷ୍ଟିରେ ଦେଖିଲେ ମଧ୍ୟ ଆମେମାନେ ଅମର, ସମଗ୍ର ଜଗତ ସହିତ ଏକ । ଏ ଜଗତରେ ଜଣେ ବଞ୍ଚିନା ଯାଏ ମୁଁ ତା' ମଧ୍ୟରେ ବଞ୍ଚିଛି । ମୁଁ ଏହି ସଙ୍କୀର୍ଣ୍ଣ କ୍ଷୁଦ୍ର ବ୍ୟଷ୍ଟି ଜୀବ ନୁହେଁ, ମୁଁ ସମଷ୍ଟିସ୍ୱରୂପ । ଅତୀତରେ ଯେତେ ପ୍ରାଣୀ ଜାତ ହୋଇଥିଲେ, ମୁଁ ସେ ସମସ୍ତଙ୍କର ଜୀବନସ୍ୱରୂପ । ମୁଁ ବୁଦ୍ଧ, ଯିଶୁ ଓ ମହମ୍ମଦଙ୍କର ଆତ୍ମା । ମୁଁ ସବୁ ଧର୍ମ-ପ୍ରଚାରକଙ୍କର ଆତ୍ମା । ଯେଉଁସବୁ ଦସ୍ୟୁ ଅପହରଣ କରିଛନ୍ତି, ଯେଉଁସବୁ ହତ୍ୟାକାରୀଙ୍କର

ଫାଶୀ ହୋଇଛୁ ମୁଁ ତାଙ୍କର ସ୍ୱରୂପ । ମୁଁ ସର୍ବମୟ । ଅତଏବ ଉଠ—ଏହା ହିଁ ଶ୍ରେଷ୍ଠ ପୂଜା । ତୁମେ ସମଗ୍ର ଜଗତ ସହିତ ଅଭିନ୍ନ । ଏହା ହିଁ ପ୍ରକୃତ ବିନୟ । ହାତଗୋଡ଼ ଯୋଡ଼ ଯେ କହେ, "ମୁଁ ପାପୀ, ମୁଁ ପାପୀ"—ଏହା ବିନୟ ନୁହେଁ । ଯେତେବେଳେ ଏହି ଭେଦର ଆବରଣ ଛିଣ୍ଡିଯାଏ, ସେତେବେଳେ ବୁଝିବାକୁ ହେବ ଯେ, ତୁମର ସର୍ବୋଚ୍ଚ କ୍ରମବିକାଶ ହୋଇଛି । ସମଗ୍ର ଜଗତର ଏହି ଅଖଣ୍ଡତ୍ୱ—ଏକତ୍ୱଭାବ ହିଁ ଶ୍ରେଷ୍ଠ ଧର୍ମମତ । ମୁଁ ଅମୁକ ବ୍ୟକ୍ତିବିଶେଷ—ଏହା ଏକ ସଙ୍କୀର୍ଣ୍ଣ ଭାବ । ପ୍ରକୃତ 'ମୁଁ' ପକ୍ଷରେ ଏହା ସତ୍ୟ ନୁହେଁ । ମୁଁ ସର୍ବମୟ—ଏହି ଭାବ ଉପରେ ଦଣ୍ଡାୟମାନ ହୁଅ ଏବଂ ସେହି ପୁରୁଷୋତ୍ତମଙ୍କୁ ସର୍ବତୋଭାବେ ସବୁବେଳେ ଉପାସନା କର । କାରଣ ଈଶ୍ୱର ଚୈତନ୍ୟସ୍ୱରୂପ ଏବଂ ତାହାଙ୍କୁ ସତ୍ୟ ଓ ଚୈତନ୍ୟ ରୂପରେ ଉପାସନା କରିବାକୁ ହେବ । ଉପାସନାର ନିମ୍ନତର ପ୍ରଣାଳୀ ଅବଲମ୍ବନ କରିବାଦ୍ୱାରା ମନୁଷ୍ୟର ଜଡ଼ ବିଷୟକ ଚିନ୍ତାଗୁଡ଼ିକ ଆଧ୍ୟାତ୍ମିକ ଉପାସନାରେ ପରିବର୍ତ୍ତିତ ହୁଏ ଏବଂ ଶେଷରେ ସେହି ଅଖଣ୍ଡ ଅନନ୍ତ ଈଶ୍ୱର ଚୈତନ୍ୟ ଭିତର ଦେଇ ଉପାସିତ ହୁଅନ୍ତି । ଯାହା କିଛି ସାନ୍ତ ତାହା ଜଡ଼ । ଚୈତନ୍ୟ କେବଳ ଅନନ୍ତ । ଈଶ୍ୱର ଚୈତନ୍ୟସ୍ୱରୂପ ବୋଲି ମନୁଷ୍ୟ ମଧ୍ୟ ଚୈତନ୍ୟସ୍ୱରୂପ । ତେଣୁ ଅନନ୍ତ ଏବଂ କେବଳ ଅନନ୍ତ ହିଁ ଅନନ୍ତର ଉପାସନା ପାଇଁ ସମର୍ଥ । ଆମେମାନେ ସେହି ଅନନ୍ତର ଉପାସନା କରିବୁ—ଏହା ହିଁ ସର୍ବୋଚ୍ଚ ଆଧ୍ୟାତ୍ମିକ ଉପାସନା । ଏସବୁ ଭାବର ମହତ୍ତ୍ୱ ଉପଲବ୍ଧି କରିବା କେଡ଼େ କଠିନ ! ମୁଁ ଯେତେବେଳେ କେବଳ କଳ୍ପନାର ସାହାଯ୍ୟରେ ମତାମତ ପୋଷଣ କରେ, କଥା କହେ, ଦାର୍ଶନିକ ବିଚାର କରେ ଏବଂ ପର ମୁହୂର୍ତ୍ତରେ କୌଣସି ପ୍ରତିକୂଳ ଘଟଣା ଘଟିଲେ କ୍ରୁଦ୍ଧ ହୁଏ, ସେତେବେଳେ ମୁଁ ଭୁଲିଯାଏ ଯେ ଏହି ବିଶ୍ୱବ୍ରହ୍ମାଣ୍ଡରେ କ୍ଷୁଦ୍ର ମୁଁ ଛଡ଼ା ଆଉ କିଛି ଅଛି; ସେତେବେଳେ କହିବାକୁ ଭୁଲିଯାଏ ଯେ, ମୁଁ ଚୈତନ୍ୟସ୍ୱରୂପ, ମୋ ନିକଟରେ ଏ ଅକିଞ୍ଚିତକର ଜଗତ ବା କଅଣ ? ମୁଁ ଚୈତନ୍ୟସ୍ୱରୂପ । ମୁଁ ଭୁଲିଯାଏ ଯେ ଏହିସବୁ ମୋର ହିଁ ଖେଳ । ଈଶ୍ୱରଙ୍କୁ ଭୁଲିଯାଏ—ଭୁଲିଯାଏ ମୁକ୍ତିର କଥା ।

ଏହି ମୁକ୍ତିର ପଥ ଦୁରଧିଗମ୍ୟ, କଠିନ ଓ କ୍ଷୁରଧାର ପରି ଅତି ତୀକ୍ଷ୍ଣ । ଏହାକୁ ଅତିକ୍ରମ କରିବା କଷ୍ଟକର ।* ଋଷିମାନେ ଏ ବିଷୟରେ ବାରମ୍ବାର କହିଛନ୍ତି । ଏସବୁ ସତ୍ତ୍ୱେ ତୁମକୁ ଏହିସବୁ ଦୁର୍ବଳତା ଓ ବିଫଳତା ଯେପରି ଆବଦ୍ଧ ନ କରେ ।

ଉପନିଷଦ୍‌ର ବାଣୀ ହେଲା—"ଉତ୍ତିଷ୍ଠତ, ଜାଗ୍ରତ, ପ୍ରାପ୍ୟ ବରାନ୍ ନିବୋଧତ ।" ଉଠ, ଜାଗ୍ରତ ହୁଅ, ଯେତେଦିନ ପର୍ଯ୍ୟନ୍ତ ଲକ୍ଷ୍ୟସ୍ଥଳରେ ନ ପହଞ୍ଚିଛ, ସେତେଦିନ ପର୍ଯ୍ୟନ୍ତ ଚେଷ୍ଟାକରି ଚାଲ । ଯଦିଓ ଏହି ପଥ କ୍ଷୁରଧାର ପରି ଦୁର୍ଗମ, ଦୁରତିକ୍ରମ୍ୟ, ଦୀର୍ଘ ଓ କଠିନ—ତଥାପି ଏହାକୁ ଆମେମାନେ ନିଶ୍ଚୟ ଅତିକ୍ରମ କରିବୁ । ମନୁଷ୍ୟ ସାଧନାଦ୍ୱାରା ଦେବାସୁରମାନଙ୍କର ପ୍ରଭୁ ହୁଏ । ଆମମାନଙ୍କର ଦୁଃଖ ପାଇଁ ଆମମାନଙ୍କ ବ୍ୟତୀତ ଅନ୍ୟ

---

* କ୍ଷୁରସ୍ୟ ଧାରା ନିଶିତା ଦୁରତ୍ୟୟା ଦୁର୍ଗମ୍ ପଥସ୍ତତ୍ କବୟୋ ବଦନ୍ତି ।
—କଠ ଉପ., ୧।୩।୧୪

କେହି ବାସ୍ଥାଁ ନୁହେଁ । ତୁମେ କଅଣ ଭାବୁଛ ଯେ, ଯଦି ଜଣେ ଅମୃତର ସନ୍ଧାନ ପାଏ ତେବେ ସେ ଅମୃତ ପରିବର୍ତ୍ତେ ବିଷ ପାନ କରିବ ? ଅମୃତ ଅଛି ଏବଂ ଯେ ଏହାକୁ ପାଇବାର ଚେଷ୍ଟା କରେ ସେ ନିଶ୍ଚୟ ପାଇବ । ସ୍ୱୟଂ ଭଗବାନ କହିଛନ୍ତି—"ସକଳ ଧର୍ମାଧର୍ମ ପରିତ୍ୟାଗ କରି ତୁମେ ଏକମାତ୍ର ମୋର ଶରଣାପନ୍ନ ହୁଅ । ମୁଁ ତୁମକୁ ଏହି ଭବସାଗରର ପରପାରକୁ ନେଇଯିବି । ଭୟ କର ନାହିଁ ।"[୧]

ଏହି ବାଣୀ ଜଗତର ସବୁ ଧର୍ମଶାସ୍ତ୍ରରେ ଆମେମାନେ ଶୁଣିବାକୁ ପାଉ । ଏହି ଏକମାତ୍ର ବାଣୀ ଆମକୁ ଶିକ୍ଷା ଦିଏ—"ସ୍ୱର୍ଗ ଯେପରି ମର୍ତ୍ତ୍ୟ ସେହିପରି । ସବୁ ତୁମର ରାଜତ୍ୱ, ତୁମର ଶକ୍ତି, ତୁମର ମହିମା । ତୁମର ଇଚ୍ଛା ପୂରଣ ହେଉ ।"[୨] ଏହା ଏକ କଠିନ କଥା—ପ୍ରକୃତରେ କଠିନ କଥା । ମୁଁ ନିଜେ କହେ—"ହେ ପ୍ରଭୁ, ମୁଁ ବର୍ତ୍ତମାନ ଆପଣଙ୍କର ଶରଣ ପଶିବି, ପ୍ରେମମୟ ସେହି ଚରଣରେ ମୋର ସମସ୍ତ ସମର୍ପଣ କରିବି; ତୁମର ବେଦୀରେ ଯାହା କିଛି ପୁଣ୍ୟ ଯାହା କିଛି ସତ୍ୟ ସବୁ ସ୍ଥାପନ କରିବି । ମୋର ପାପତାପ ଭଲମନ୍ଦ ସବୁ ତୁମର ଚରଣରେ ସମର୍ପଣ କରିବି । ତୁମେ ସବୁ ଗ୍ରହଣ କର । ମୁଁ ତୁମକୁ କେବେ ଭୁଲିବି ନାହିଁ ।" ଗୋଟିଏ ମୁହୂର୍ତ୍ତରେ କହେ—ତୁମର ଇଚ୍ଛା ପୂରଣ ହେଉ; କିନ୍ତୁ ପରମୁହୂର୍ତ୍ତରେ ଆଉ ଗୋଟିଏ କିଛି ଆସି ଉପସ୍ଥିତ ହୋଇଯାଏ ମୋତେ ପରୀକ୍ଷା କରିବା ପାଇଁ, ସେତେବେଳେ ମୁଁ କ୍ରୋଧରେ ଜର୍ଜରିପଡ଼େ । ସବୁ ଧର୍ମର ଲକ୍ଷ୍ୟ ଏକ । କିନ୍ତୁ ଧର୍ମପ୍ରଚାରକମାନେ କେବଳ ବିଭିନ୍ନ ଭାଷା ବ୍ୟବହାର କରିଥାନ୍ତି । ଯେଉଁ ମିଛ 'ମୁଁ' ଅଛି ତାହାକୁ ମାରିଦିଅ, ତେବେ ସତ୍ୟ 'ମୁଁ' ବିରାଜମାନ କରିବ । ହିବ୍ରୁ ଶାସ୍ତ୍ର କହେ, "ତୁମର ପ୍ରଭୁ ମୁଁ ଈର୍ଷାପରାୟଣ ଈଶ୍ୱର; ମୋ ସମ୍ମୁଖରେ ତୁମମାନଙ୍କର ଅନ୍ୟ ଦେବତାମାନଙ୍କ ଉପାସନା କରିବା ଚଳିବ ନାହିଁ ।"[୩] ସେଠାରେ ଏକମାତ୍ର ଈଶ୍ୱର ହିଁ ରାଜତ୍ୱ କରିବେ । ଆମମାନଙ୍କୁ କହିବାକୁ ହେବ, "ନାହଂ ନାହଂ, ତୁହୁଁ ତୁହୁଁ"—ମୁଁ ନୁହେଁ, ତୁମେ । ସେତେବେଳେ ସେହି ପ୍ରଭୁଙ୍କ ବ୍ୟତୀତ ଆମମାନଙ୍କୁ ସର୍ବସ୍ୱ ତ୍ୟାଗ କରିବାକୁ ହେବ । କେବଳ ସେ ହିଁ ରାଜତ୍ୱ କରିବେ । ଯଦିଓ ଆମେମାନେ କଠୋର ସାଧନା କରୁ, ତଥାପି ପର ମୁହୂର୍ତ୍ତରେ ଆମମାନଙ୍କ ପଦସ୍ଖଳନ ହୁଏ ଏବଂ ସେତେବେଳେ ଆମେମାନେ ଜଗଜ୍ଜନନୀଙ୍କର କୃପା ଭିକ୍ଷା କରୁ; କାରଣ ଆମେ ବୁଝିପାରୁ ଯେ, ଜଗଜ୍ଜନନୀଙ୍କର ସହାୟତା ବ୍ୟତୀତ ଆମେମାନେ ଛିଡ଼ା ହୋଇପାରିବୁ ନାହିଁ । ଜୀବନ ଅନନ୍ତ; ଏହାର ଗୋଟିଏ ଅଧ୍ୟାୟ ହେଲା, "ତୁମର ଇଚ୍ଛା ପୂର୍ଣ୍ଣ ହେଉ" । କିନ୍ତୁ ଜୀବନ-ଗ୍ରନ୍ଥର ସବୁ ଅଧ୍ୟାୟର ମର୍ମ ଗ୍ରହଣ କରି ନ ପାରିଲେ ସମଗ୍ର ଜୀବନ ଉପଲବ୍ଧି କରି ହୁଏ ନାହିଁ । "ତୁମର ଇଚ୍ଛା ପୂର୍ଣ୍ଣ ହେଉ"—ପ୍ରତି ମୁହୂର୍ତ୍ତରେ ବିଶ୍ୱାସଘାତକ ମନ ଏହି ଭାବର ବିରୁଦ୍ଧାଚରଣ କରେ । ତେଣୁ କଞ୍ଚା 'ମୁଁ'କୁ ଜୟ କରିବାକୁ ହେଲେ ବାରମ୍ବାର

---

[୧] ସର୍ବଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ । —ଗୀତା, ୧୮।୬୬

[୨] Lord's Prayer, N.T. Mathew, VI, 10

[୩] O.T. Exodus, XX, 5

ଏହି କଥା କହିବାକୁ ହେବ । ଆମେମାନେ ବିଶ୍ୱାସଘାତକତାର ସେବା କରିବୁ ଏବଂ ତା' ସାଙ୍ଗରେ ପରିତ୍ରାଣ ବି ପାଇବୁ—ଏକଥା କେବେ ହୋଇପାରିବ ନାହିଁ । ବିଶ୍ୱାସଘାତକ ବ୍ୟତୀତ ସମସ୍ତେ ପରିତ୍ରାଣ ପାଇବେ । ଯେତେବେଳେ ଆମେମାନେ ଆମମାନଙ୍କର ସତ୍ୟ 'ମୁଁ'ର କଥା ଅମାନ୍ୟ କରୁ, ସେତେବେଳେ ଆମେମାନେ ନିଜ ବିରୋଧରେ ଏବଂ ଜଗଜ୍ଜନନୀଙ୍କର ମହିମା ବିରୋଧରେ ବିଶ୍ୱାସଘାତକତା କରୁ ବୋଲି ନିନ୍ଦିତ ହେଉଁ । ଯାହା ଘଟୁ ନା କାହିଁକି ଆମମାନଙ୍କର ଦେହ ଓ ମନ ସେହି ମହାନ୍ ଇଚ୍ଛାମୟୀଙ୍କର ସମ୍ମୁଖରେ ନିଜକୁ ସମର୍ପଣ କରିବେ । ହିନ୍ଦୁ ଦାର୍ଶନିକମାନେ ଯାହା କହିଛନ୍ତି ଯେ, ଯେଉଁ ଲୋକ "ତୁମର ଇଚ୍ଛା ପୂରଣ ହେଉ" ଦୁଇଥର କହେ ସେ ପାପ କରେ—ଏହା ଠିକ୍ କଥା । "ତୁମର ଇଚ୍ଛା ପୂରଣ ହେଉ"—ଏହାଠାରୁ ଆଉ ବେଶୀ କହିବାର ପ୍ରୟୋଜନ କଅଣ ? ଏହାକୁ ଦୁଇଥର କହିବା କଅଣ ଆବଶ୍ୟକ ? ଯାହା ଭଲ, ତାହା ସେପରି ରହିବ । ଯେତେବେଳେ ଥରେ କହିଛ ସେତେବେଳେ ଏ କଥା ଆଉ ଫେରାଇ ନେଇପାରିବ ନାହିଁ । "ସ୍ୱର୍ଗ ପରି ମର୍ତ୍ତ୍ୟରେ ମଧ୍ୟ ତୁମର ଇଚ୍ଛା ପୂର୍ଣ୍ଣ ହେଉ । କାରଣ ସବୁ ରାଜ୍ୟ ତୁମର, ସବୁ ମହିମା, ସବୁ ଶକ୍ତି ଚିରଦିନ ପାଇଁ ତୁମର ।"

## ଧର୍ମର ପ୍ରୟୋଜନ

[ ଲଣ୍ଡନରେ ପ୍ରଦତ୍ତ ବକ୍ତୃତା ]

ମାନବଜାତିର ଭାଗ୍ୟଗଠନ ପାଇଁ ଯେତେଗୁଡ଼ିଏ ଶକ୍ତି କାର୍ଯ୍ୟ କରିଛି ଏବଂ ବର୍ତ୍ତମାନ କାର୍ଯ୍ୟ କରୁଛି, ସେସମସ୍ତ ମଧ୍ୟରେ ଧର୍ମରୂପେ ଅଭିବ୍ୟକ୍ତ ଶକ୍ତି ଅପେକ୍ଷା ଅନ୍ୟ କୌଣସି ଶକ୍ତି ନିଶ୍ଚିତଭାବରେ ଅଧିକ ପ୍ରଭାବଶାଳୀ ନୁହେଁ । ସବୁପ୍ରକାର ସାମାଜିକ ପ୍ରତିଷ୍ଠାନର ପଛରେ କେଉଁଠି ନା କେଉଁଠି ସେହି ଅପୂର୍ବ ଶକ୍ତିର କାର୍ଯ୍ୟକାରିତା ବିଦ୍ୟମାନ ଏବଂ ସବୁ ବ୍ୟକ୍ତି-ମାନଙ୍କ ମଧ୍ୟରେ ଏହିତିର ମହତ୍ତମ ପ୍ରେରଣା ଏହି ଶକ୍ତିରୁ ହିଁ ସୃଷ୍ଟ । ଆମେମାନେ ସମସ୍ତେ ସ୍ପଷ୍ଟଭାବରେ ଜାଣୁ ଯେ ଅଗଣିତ କ୍ଷେତ୍ରରେ ଧର୍ମର ବନ୍ଧନ ଜାତି, ଜଳବାୟୁ ଏପରି କି ବଂଶର ବନ୍ଧନ ଅପେକ୍ଷା ମଧ୍ୟ ଦୃଢ଼ତର । ଏହା ମଧ୍ୟ ସୁବିଦିତ ସତ୍ୟ ଯେ, ଯେଉଁମାନେ ଗୋଟିଏ ଈଶ୍ୱରଙ୍କର ଉପାସକ, ଏକ ଧର୍ମରେ ବିଶ୍ୱାସୀ, ସେମାନେ ନିଜର ବଂଶଜାତ ଲୋକ, ଏପରିକି ନିଜର ଭାଇମାନଙ୍କ ଅପେକ୍ଷା ଅଧିକ ଦୃଢ଼ତାର ସହିତ ନିଷ୍ଠାପର ଭାବେ ପରସ୍ପରଙ୍କୁ ସାହାଯ୍ୟ କରିଛନ୍ତି । ଧର୍ମର ଉତ୍ସ ଆବିଷ୍କାର କରିବା ପାଇଁ ବହୁତ ଚେଷ୍ଟା ହୋଇଛି । ଯେଉଁସବୁ ପ୍ରାଚୀନ ଧର୍ମ ବର୍ତ୍ତମାନ ପର୍ଯ୍ୟନ୍ତ ତିଷ୍ଠି ରହିଛି, ସେମାନେ ଦାବୀ କରନ୍ତି ଯେ ସେମାନେ ସମସ୍ତେ ଅତିପ୍ରାକୃତ, ସେମାନେ ମଣିଷର ମସ୍ତିଷ୍କରୁ ଉଦ୍ଭୂତ ନୁହନ୍ତି । ବାହାରୁ କୌଣସି ସ୍ଥାନରୁ ଧର୍ମଗୁଡ଼ିକ ଆସିଛି ।

ଆଧୁନିକ ପଣ୍ଡିତ-ସମାଜରେ ଏ ବିଷୟରେ ସ୍ୱୀକୃତ ଦୁଇଟି ମତବାଦ ଦେଖାଯାଏ

—(୧) ଧର୍ମର ଆଧ୍ୟାତ୍ମିକ ତତ୍ତ୍ୱ (୨) ଅନନ୍ତ ଈଶ୍ୱରଙ୍କର କ୍ରମବିକାଶ । ଗୋଟିଏ ପକ୍ଷ କହନ୍ତି, ପିତୃପୁରୁଷଙ୍କର ଉପାସନାରୁ ଧର୍ମର ଧାରଣା ଆରମ୍ଭ ହୋଇଛି, ଅନ୍ୟ ପକ୍ଷ କହନ୍ତି, ପ୍ରାକୃତିକ ଶକ୍ତିଗୁଡ଼ିକରେ ମାନବଧର୍ମର ଆରୋପ ହେବା ଫଳରେ ଧର୍ମର ସୃଷ୍ଟି ହେଲା । ମଣିଷ ତାହାର ମୃତ ଆତ୍ମୀୟସ୍ୱଜନଙ୍କର ସ୍ମୃତିରକ୍ଷା କରିବାକୁ ଚାହେଁ ଏବଂ ଭାବେ ଯେ ମୃତ ବ୍ୟକ୍ତିର ଦେହ ନଷ୍ଟ ହେଲେ ମଧ୍ୟ ସେ ଜୀବିତ ଥାଏ ଏବଂ ସେଥିପାଇଁ ସେ ସେମାନଙ୍କ ଉଦ୍ଦେଶ୍ୟରେ ଖାଦ୍ୟପଦାର୍ଥ ଉତ୍ସର୍ଗ କରି ସେମାନଙ୍କର ପୂଜା କରିବାକୁ ଇଚ୍ଛା କରେ । ଏହି ଧାରଣାର ପରିଣତି ହିଁ ଆମ ନିକଟରେ ଧର୍ମ ନାମରେ ଅଭିହିତ ହୋଇଛି ।

ମିଶର, ବାବିଲୋନ ଓ ଚୀନ ଦେଶର ଅଧିବାସୀମାନେ ଏବଂ ଆମେରିକା ଓ ଅନ୍ୟାନ୍ୟ ଦେଶର ବହୁ ଜାତିମାନଙ୍କର ପ୍ରାଚୀନ ଧର୍ମଗୁଡ଼ିକୁ ଆଲୋଚନା କଲେ ସ୍ପଷ୍ଟ ଦେଖିବାକୁ ମିଳେ ଯେ, ପିତୃପୁରୁଷମାନଙ୍କର ପୂଜାରୁ ହିଁ ଧର୍ମର ଆରମ୍ଭ । ପ୍ରାଚୀନ ମିଶର-ବାସୀମାନଙ୍କର ଆତ୍ମା ସମ୍ବନ୍ଧରେ ସର୍ବପ୍ରଥମେ ଧାରଣା ଥିଲା ଯେ, ପ୍ରତ୍ୟେକ ଦେହରେ ତଦନୁରୂପ ଅନ୍ୟ ଏକ ଦ୍ୱିତୀୟ ଚେତନ-ସତ୍ତା ଅଛି । ପ୍ରତ୍ୟେକ ମନୁଷ୍ୟ ଦେହରେ ପ୍ରାୟ ତାହାର ପରି ଆଉ ଗୋଟିଏ ସତ୍ତା ଥାଏ । ମନୁଷ୍ୟର ମୃତ୍ୟୁ ହେଲେ ଏହି ଦ୍ୱିତୀୟ ସତ୍ତା ଦେହ ଛାଡ଼ିଯାଏ, କିନ୍ତୁ ସେତେବେଳେ ସେ ବଞ୍ଚିଥାଏ । ଯେତେଦିନ ମୃତଦେହ ଅତୁଟ ଅବସ୍ଥାରେ ଥାଏ, ସେତେଦିନ ଏହି ଦ୍ୱିତୀୟ ସତ୍ତା ବିଦ୍ୟମାନ ରହିପାରେ । ସେଥିପାଇଁ ଏହି ଦେହକୁ ଅକ୍ଷତ ରଖିବା ପାଇଁ ମିଶରର ଲୋକେ ଏତେ ଆଗ୍ରହ ଦେଖାନ୍ତି । ଏଥିପାଇଁ ସେମାନେ ସୁବୃହତ୍ ପିରାମିଡ୍‌ମାନ ନିର୍ମାଣ କରି ସେଥିରେ ମୃତ ଦେହକୁ ସୁରକ୍ଷା କରୁଥିଲେ; କାରଣ ସେମାନଙ୍କର ଧାରଣା ଥିଲା ମୃତଦେହର କୌଣସି ଅଂଶ ନଷ୍ଟ ହେଲେ 'ଦ୍ୱିତୀୟ' ସତ୍ତାର ଅନୁରୂପ ଅଂଶଟି ନଷ୍ଟ ହୋଇଯିବ । ଏହିଗୁଡ଼ିକ ସ୍ପଷ୍ଟଭାବେ ପିତୃପୁରୁଷମାନଙ୍କର ଉପାସନା । ପ୍ରାଚୀନ ବାବିଲୋନର ଅଧିବାସୀମାନଙ୍କ ମଧ୍ୟରେ ଏହି ଦ୍ୱିତୀୟ ଜୀବସତ୍ତାର ଧାରଣା ସାମାନ୍ୟ ପରିବର୍ତ୍ତିତ ରୂପରେ ପ୍ରଚଳିତ ଥିଲା । ମୃତ୍ୟୁ ପରେ ଦ୍ୱିତୀୟ ଜୀବସତ୍ତାର ସ୍ନେହବୋଧ ନଷ୍ଟ ହୋଇଯାଏ—ଏହା ବାବିଲୋନ ଅଧିବାସୀଙ୍କର ମତ ଥିଲା । ସେମାନଙ୍କ ମତ ଅନୁସାରେ ଦ୍ୱିତୀୟ ଜୀବସତ୍ତା ତାର ଖାଦ୍ୟ, ପାନୀୟ ଏବଂ ବିଭିନ୍ନ ସାହାଯ୍ୟ ପାଇଁ ବଞ୍ଚିଥିବା ମନୁଷ୍ୟମାନଙ୍କୁ ଭୟ ଦେଖାଏ । ଏପରିକି ସେ ନିଜର ସ୍ତ୍ରୀ ଏବଂ ସନ୍ତାନ ସନ୍ତତିଙ୍କ ପ୍ରତି ସ୍ନେହ ମମତା ପାସୋରି ପକାଏ । ପ୍ରାଚୀନ ହିନ୍ଦୁମାନଙ୍କ ମଧ୍ୟରେ ଏହି ପ୍ରକାର ପୂର୍ବପୁରୁଷ-ପୂଜାର ନିଦର୍ଶନ ଦେଖିବାକୁ ମିଳେ । ଚୀନ ଜାତି ମଧ୍ୟରେ ଏହି ପିତୃଗଣଙ୍କର ପୂଜା ସେମାନଙ୍କ ଧର୍ମର ମୂଳଭିତ୍ତି ବୋଲି କୁହାଯାଇପାରେ ଏବଂ ଏବେ ମଧ୍ୟ ଏହି ବିଶ୍ୱାସ ଏହି ବିରାଟ ଦେଶରେ ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ପର୍ଯ୍ୟନ୍ତ ପ୍ରଚଳିତ ଅଛି । କହିବାକୁ ଗଲେ ପ୍ରକୃତ ପକ୍ଷରେ ଏକମାତ୍ର ପିତୃ-ଉପାସନା ସମଗ୍ର ଚୀନ ଦେଶରେ ଧର୍ମରୂପେ ବିସ୍ତୃତି ଲାଭ କରିଛି । ସୁତରାଂ ଗୋଟିଏ ଦିଗରୁ ଦେଖିବାକୁ ଗଲେ ଯେଉଁମାନେ ଏହି ମତବାଦରେ ବିଶ୍ୱାସ କରନ୍ତି ଯେ, ଧର୍ମର ଉତ୍ପତ୍ତି ପିତୃପୁରୁଷଙ୍କର ଉପାସନାରୁ ହୋଇଛି, ସେମାନଙ୍କର ଧାରଣା ଉତ୍ତମରୂପେ ସମର୍ଥିତ ହୋଇଥିଲା ପରି ମନେ ହୁଏ ।

ଅନ୍ୟ ପକ୍ଷରେ ଏପରି ଅନେକ ମନୀଷୀ ଅଛନ୍ତି, ଯେଉଁମାନେ ପ୍ରାଚୀନ ଆର୍ଯ୍ୟ-ସାହିତ୍ୟରୁ ନିଦର୍ଶନ ଦେଇ କହନ୍ତି ଯେ ପ୍ରକୃତିର ଉପାସନାରୁ ହିଁ ଧର୍ମର ଉତ୍ପତ୍ତି । ଯଦିଓ ଭାରତବର୍ଷରେ ସର୍ବତ୍ର ପୂର୍ବପୁରୁଷଙ୍କର ପୂଜାର ପ୍ରମାଣ ମିଳେ, ତଥାପି ପ୍ରାଚୀନତମ ଶାସ୍ତ୍ରରେ ତାହାର କୌଣସି ଚିହ୍ନ ଖୋଜିଲେ ମିଳେ ନାହିଁ । ଆର୍ଯ୍ୟମାନଙ୍କର ପ୍ରାଚୀନତମ ଶାସ୍ତ୍ର ଋକ୍‌ବେଦସଂହିତାରେ ଆମେମାନେ ଏହାର କୌଣସି ନିଦର୍ଶନ ପାଉ ନାହିଁ । ଋକ୍‌ବେଦରେ ପ୍ରକୃତିର ଉପାସନା ହିଁ ଦେଖିବାକୁ ମିଳେ ବୋଲି ଆଧୁନିକ ପଣ୍ଡିତମାନଙ୍କର ମତ । ସେଠାରେ ଯେପରି ମାନବର ମନ ବହିର୍ଜଗତର ଅନ୍ତରାଳରେ ଥିବା ସୂକ୍ଷ୍ମତମ ସତ୍ତାର ଆଭାସ ପାଇବା ପାଇଁ ଚେଷ୍ଟା କରୁଥିବାର ମନେ ହୁଏ । ଉଷା, ସନ୍ଧ୍ୟା, ଝଞ୍ଜା ଇତ୍ୟାଦି ପ୍ରକୃତିର ଅଦ୍ଭୁତ ବିଶାଳ ଶକ୍ତିସମୂହ ଓ ସୌନ୍ଦର୍ଯ୍ୟ ମାନବମନକୁ ଆକର୍ଷଣ କରେ । ସେହି ମାନବମନ ପ୍ରକୃତିର ଅନ୍ତରାଳକୁ ଯାଇ ସେଠାରେ ଯାହା ଅଛି, ତାହାର କିଛିଟା ପରିଚୟ ପାଇବା ପାଇଁ ଆକାଙ୍‌କ୍ଷା କରେ । ଏହି ପ୍ରଚେଷ୍ଟାରେ ସେମାନେ ପ୍ରାକୃତିକ ଶକ୍ତି-ଗୁଡ଼ିକୁ ଆତ୍ମା ଓ ଶରୀର ଆଦି ମାନବୀୟ ଗୁଣରାଶିରେ ଭୂଷିତ କରନ୍ତି । ଏହିଗୁଡ଼ିକ କେତେବେଳେ ତାହାର ଧାରଣାରେ ସୌନ୍ଦର୍ଯ୍ୟମଣ୍ଡିତ, କେତେବେଳେ ବା ଇନ୍ଦ୍ରିୟର ଅତୀତ । ଏହିସବୁ ପ୍ରଚେଷ୍ଟାଦ୍ୱାରା ଏହି ପ୍ରାକୃତିକ ଅଭିବ୍ୟକ୍ତିଗୁଡ଼ିକ ମାନବଧର୍ମୀ ହେଉ ବା ନ ହେଉ ତାହା ନିକଟରେ ଏହା ନିଛକ ଭାବମୟ ବସ୍ତୁ । ପ୍ରାଚୀନ ଗ୍ରୀକ୍‌ମାନଙ୍କର ମଧ୍ୟ ଏହି ପ୍ରକାର ଧାରଣା ଦେଖିବାକୁ ମିଳେ । ସେମାନଙ୍କର ପୁରାଣଗୁଡ଼ିକ ଏହି ଭାବମୟ ପ୍ରକୃତିର ଉପାସନାରେ ପୂର୍ଣ୍ଣ । ପ୍ରାଚୀନ ଜର୍ମାନ ଏବଂ ସ୍କାଣ୍ଡିନେଭିଆ ଓ ଅନ୍ୟାନ୍ୟ ଆର୍ଯ୍ୟ ଜାତିମାନଙ୍କ ମଧ୍ୟରେ ଏହିପରି ଧାରଣା ଦେଖିବାକୁ ମିଳେ । ସୁତରାଂ ଏହି ଦୃଷ୍ଟିରୁ ସୁଦୃଢ଼ ପ୍ରମାଣ ଉପସ୍ଥାପିତ କରି କୁହାଯାଇଛି ଯେ, ପ୍ରାକୃତିକ ଶକ୍ତିଗୁଡ଼ିକୁ ଚେତନ ବ୍ୟକ୍ତିରୂପେ କଳ୍ପନା କରାଯିବାରୁ ଧର୍ମର ଉତ୍ପତ୍ତି ହୋଇଛି ।

ଏହି ଦୁଇଟି ମତ ପରସ୍ପର-ବିରୋଧୀ ମନେହେଲେ ହେଁ ଏମାନଙ୍କର ସାମଞ୍ଜସ୍ୟ ରକ୍ଷା କରିବାକୁ ଅନ୍ୟ ଏକ ତୃତୀୟ ଭିତ୍ତି ଅବଲମ୍ବନ କରାଯାଇପାରେ । ମୋର ମନେ ହୁଏ ଏହା ହିଁ ଧର୍ମର ପ୍ରକୃତ ଉତ୍ସ ଏବଂ ଏହାକୁ ମୁଁ "ଇନ୍ଦ୍ରିୟର ସୀମା ଅତିକ୍ରମ କରିବାର ଚେଷ୍ଟା" ବୋଲି କହିବାକୁ ଇଚ୍ଛା କରେ । ଗୋଟିଏ ଦିଗରେ ମନୁଷ୍ୟ ତାର ପିତୃପୁରୁଷ-ମାନଙ୍କର ଆତ୍ମାର ବା ପ୍ରେତାତ୍ମାର ଅନୁସନ୍ଧାନ କରେ, ଅର୍ଥାତ୍ ଶରୀର ନାଶ ହେବା ପରେ କଣ ଅବଶିଷ୍ଟ ରହେ, ତାର ସନ୍ଧାନ ପାଇବାକୁ ଚେଷ୍ଟା କରେ । ଅନ୍ୟ ଦିଗରେ ଏହି ବିକାଶଶୀଳ ଜଟିଳ ଜଗତ ଅନ୍ତରାଳରେ ଯେଉଁ ଶକ୍ତିର କିମ୍ବା ଖେଳୁଛି, ତାହାର ସ୍ୱରୂପ ଜାଣିବାକୁ ଚେଷ୍ଟା କରେ । ଏହି ଉଭୟ ଚେଷ୍ଟା ମଧ୍ୟରେ ମନୁଷ୍ୟ ଯେଉଁ ଉପାୟ ଅବଲମ୍ବନ କରୁ ନା କାହିଁକି, ସେ ପ୍ରତ୍ୟେକ କ୍ଷେତ୍ରରେ ଇନ୍ଦ୍ରିୟର ସୀମା ଅତିକ୍ରମ କରିବାକୁ ଚାହେଁ । ଇନ୍ଦ୍ରିୟର ସୀମା ମଧ୍ୟରେ ସେ ସନ୍ତୁଷ୍ଟ ରହିପାରେ ନାହିଁ—ଅତୀନ୍ଦ୍ରିୟ ଅବସ୍ଥାକୁ ଯିବାକୁ ଚାହେଁ ।

ଏହି ବିଷୟର ବ୍ୟାଖ୍ୟା ମଧ୍ୟ ଏତେ ରହସ୍ୟପୂର୍ଣ୍ଣ ହେବାର ପ୍ରୟୋଜନ ନାହିଁ ।

ଧର୍ମର ପ୍ରଥମ ଆଲୋକ ସ୍ୱପ୍ନ ଭିତର ଦେଇ ଆସେ—ଏହା ଅତି ସ୍ୱାଭାବିକ ମନେ ହୁଏ । ମନୁଷ୍ୟ ଅମରତ୍ୱର ଧାରଣା ସ୍ୱପ୍ନ ମାଧ୍ୟମରେ ସହଜରେ ପାଇପାରେ । ତେବେ ଏହି ସ୍ୱପ୍ନ କିଣ ଏକ ଆଶ୍ଚର୍ଯ୍ୟ ଅବସ୍ଥା ନୁହେଁ । ଆମେମାନେ ଜାଣୁ, ଶିଶୁ ଏବଂ ଅଶିକ୍ଷିତ ଲୋକମାନେ ଜାଗ୍ରତ ଓ ସ୍ୱପ୍ନାବସ୍ଥା ମଧ୍ୟରେ ଖୁବ୍ କମ୍ ତଫାତ୍ ଅନୁଭବ କରନ୍ତି । ସ୍ୱପ୍ନ ଅବସ୍ଥାରେ ଦେହ ଯେତେବେଳେ ମୃତବତ୍ ପଡ଼ିରହେ, ସେତେବେଳେ ମନ ସକ୍ରିୟ ହୋଇ ତାର ଜଟିଳ କାମମାନ କରି ଚାଲିଥାଏ—ଏହି ତଥ୍ୟ ବ୍ୟକ୍ତିର ଅମରତ୍ୱ ସମ୍ବନ୍ଧରେ ଆମକୁ ଯେଉଁ ସହଜ ପ୍ରମାଣ ଦିଏ ତାହାଠାରୁ ଆଉ ସ୍ୱାଭାବିକ ଯୁକ୍ତି କଣ ଥାଇପାରେ ? ଅତଏବ ମନୁଷ୍ୟ ଯଦି ହଠାତ୍ ସିଦ୍ଧାନ୍ତ କରେ ଯେ ଏହି ଦେହ, ସବୁଦିନ ପାଇଁ ନଷ୍ଟ ହୋଇଗଲେ ମଧ୍ୟ ପୂର୍ବପରି ତାର କ୍ରିୟା ଚାଲିଥିବ, ଏଥିରେ ଆଶ୍ଚର୍ଯ୍ୟ ହେବାର କଅଣ ଅଛି ? ମୋ ମତରେ ଅଲୌକିକ-ତତ୍ତ୍ୱ ସମ୍ବନ୍ଧରେ ଏହି ବ୍ୟାଖ୍ୟାଟି ଅଧିକତର ସ୍ୱାଭାବିକ ଏବଂ ସ୍ୱପ୍ନାବସ୍ଥାର ଧାରଣା ଅବଲମ୍ବନ କରି ମାନବ-ମନ କ୍ରମଶଃ ଉଚ୍ଚତର ତତ୍ତ୍ୱରେ ଉପନୀତ ହୁଏ । ଅବଶ୍ୟ ଏହା ମଧ୍ୟ ସତ୍ୟ ଯେ, ଅନେକ ଲୋକ ବୁଝିଛନ୍ତି— ଜାଗ୍ରତ ଅବସ୍ଥାରେ ଏହି ସ୍ୱପ୍ନ ସତ୍ୟ ବୋଲି ମନେ ହୁଏ ନାହିଁ ଏବଂ ସ୍ୱପ୍ନ ଅବସ୍ଥାରେ ଯେଉଁ ନୂତନ ଅଭିଜ୍ଞତା ଲାଭ ହୁଏ ତାହା ମଧ୍ୟ ସତ୍ୟ ନୁହେଁ—ସ୍ୱପ୍ନ ଅବସ୍ଥାରେ ସେ ଜାଗ୍ରତ ଅବସ୍ଥାର ଅଭିଜ୍ଞତାଗୁଡ଼ିକୁ କେବଳ ପୁନରାବୃତ୍ତି କରିଥାଏ ।

କିନ୍ତୁ ଏଥି ମଧ୍ୟରେ ମାନବମନରେ ସତ୍ୟାନୁସନ୍ଧିତ୍ସା ଅଙ୍କୁରିତ ହୋଇଯାଇଛି ଏବଂ ତାହାର ଗତି ଅନ୍ତର୍ମୁଖୀ ହୋଇଚାଲିଛି । ମନୁଷ୍ୟ ବର୍ତ୍ତମାନ ତାର ମନର ବିଭିନ୍ନ ଅବସ୍ଥା-ଗୁଡ଼ିକୁ ଆହୁରି ଗମ୍ଭୀରଭାବରେ ନିରୀକ୍ଷଣ କରିବାକୁ ଲାଗିଲା ଏବଂ ଜାଗରଣ ଓ ସ୍ୱପ୍ନର ଅବସ୍ଥା ଅପେକ୍ଷା ଉଚ୍ଚତର ଏକ ଅବସ୍ଥା ଆବିଷ୍କାର କଲା । ଭାବାବେଶ ବା ଭଗବତ୍‌ପ୍ରେରଣା ନାମରେ ପରିଚିତ ଏହି ଅବସ୍ଥାଟିର କଥା ପୃଥିବୀର ସବୁ ସୁପ୍ରତିଷ୍ଠିତ ଧର୍ମରେ ଆମେମାନେ ଦେଖୁ । ସବୁ ସୁପ୍ରତିଷ୍ଠିତ ଧର୍ମ ଘୋଷଣା କରନ୍ତି ଯେ ସେମାନଙ୍କର ପ୍ରତିଷ୍ଠାତା ଅବତାର ମହାପୁରୁଷ ବା ଈଶ୍ୱରଦୂତମାନେ ମନର ଏପରି ଉଚ୍ଚତର ଅବସ୍ଥାରେ ପହଞ୍ଚିଥିଲେ, ଯାହା ନିଦ୍ରା ଓ ଜାଗରଣଠାରୁ ଭିନ୍ନ । ସେଠାରେ ସେମାନେ ଅଧ୍ୟାତ୍ମଜଗତ ନାମରେ ପରିଚିତ ଏକ ପ୍ରକାର ଅବସ୍ଥା ସହିତ ସମ୍ବନ୍ଧାନ୍ୱିତ ଅଭିନବ ସତ୍ୟସମୂହର ସାକ୍ଷାତ୍ କରିଥିଲେ; ଆମେମାନେ ଜାଗ୍ରତ ଅବସ୍ଥାରେ ପାରିପାର୍ଶ୍ୱିକ ଅବସ୍ଥାସମୂହ ଯେଉଁପରି ଅନୁଭବ କରୁ, ସେମାନେ ପୂର୍ବୋକ୍ତ ଅବସ୍ଥାରେ ପହଞ୍ଚି ସେଗୁଡ଼ିକୁ ଆହୁରି ସ୍ପଷ୍ଟତରଭାବେ ଉପଲବ୍ଧି କରନ୍ତି ।

ଉଦାହରଣସ୍ୱରୂପ ବ୍ରାହ୍ମଣମାନଙ୍କର ଧର୍ମକୁ ନିଆଯାଉ । ବେଦଗୁଡ଼ିକ ଋଷିମାନଙ୍କ-ଦ୍ୱାରା ଉଚ୍ଚାରିତ ବୋଲି କୁହାଯାଏ । ଏହି ଋଷିମାନେ କେତେକ ସତ୍ୟର ଦ୍ରଷ୍ଟା ଓ ମହାପୁରୁଷ ଥିଲେ । ସଂସ୍କୃତରେ ଋଷି ଶବ୍ଦର ଅର୍ଥ ମନ୍ତ୍ରଦ୍ରଷ୍ଟା ଅର୍ଥାତ୍ ବୈଦିକ ସୂକ୍ତସମୂହର ବା ଚିନ୍ତାରାଶିର ପ୍ରତ୍ୟକ୍ଷ ଦ୍ରଷ୍ଟା । ଋଷିମାନେ କହନ୍ତି, ସେମାନେ କେତେକ ସତ୍ୟ ଅନୁଭବ କରିଛନ୍ତି । ଏହାକୁ 'ପ୍ରତ୍ୟକ୍ଷ' ମଧ୍ୟ କୁହାଯାଇପାରେ, ଯଦି 'ଅତୀନ୍ଦ୍ରିୟ'

ସମ୍ପର୍କରେ ପ୍ରତ୍ୟକ୍ଷ ଶବ୍ଦଟିକୁ ବ୍ୟବହାର କରାଯାଏ । ଏହି ସତ୍ୟସମୂହ ସେମାନେ ଲିପିବଦ୍ଧ କରିଯାଇଛନ୍ତି । ଏହି ସତ୍ୟକୁ ଇହୁଦି ଏବଂ ଖ୍ରୀଷ୍ଟାନମାନଙ୍କ ମଧ୍ୟରେ ଘୋଷଣା କରାଯାଇଛି ।

ବୌଦ୍ଧ-ମତାବଲମ୍ବୀ 'ହୀନଯାନ' ସମ୍ପ୍ରଦାୟ ବିଷୟରେ ମଧ୍ୟ ଏଠାରେ ଉଲ୍ଲେଖ କରାଯାଇପାରେ । ଏଠାରେ ପଚରା ଯାଇପାରେ ଯେ, ଏମାନେ ଯେତେବେଳେ ଆତ୍ମା ଓ ଈଶ୍ୱର ବିଶ୍ୱାସ କରନ୍ତି ନାହିଁ, ସେତେବେଳେ ଏମାନଙ୍କର ଧର୍ମ କିପରି ଅତୀନ୍ଦ୍ରିୟ ଅବସ୍ଥାରୁ ଉଦ୍‌ଭୂତ ହୋଇପାରେ ? ଉତ୍ତରରେ ଏହା କୁହାଯାଇପାରେ ଯେ ବୌଦ୍ଧମାନେ ଏକ ଶାଶ୍ୱତ ନୈତିକ ବିଧାନରେ ବିଶ୍ୱାସ କରନ୍ତି ଏବଂ ସେହି ନୀତି-ବିଧାନ ଆମେ ଯେଉଁ ଅର୍ଥରେ 'ଯୁକ୍ତି' ବୁଝିଥାଉ ସେଥିରୁ ଉତ୍ପନ୍ନ ହୋଇନାହିଁ । ବରଂ ଅତୀନ୍ଦ୍ରିୟ ଅବସ୍ଥାରେ ପହଞ୍ଚି ବୁଦ୍ଧଦେବ ଏହାକୁ ପ୍ରତ୍ୟକ୍ଷ ଉପଲବ୍ଧି ଓ ଆବିଷ୍କାର କରିଥିଲେ । ଆପଣମାନଙ୍କ ମଧ୍ୟରେ ଯେଉଁମାନେ ବୁଦ୍ଧଦେବଙ୍କ ଜୀବନୀ ପଢ଼ିଛନ୍ତି, ଏପରିକି 'ଏସିଆର ଆଲୋକ' (The Light of Asia) ପୁସ୍ତକର ଅତି ସଂକ୍ଷିପ୍ତ ବିବରଣୀ ବି ପାଠ କରିଛନ୍ତି, ସେମାନଙ୍କର ମନେଥିବ ଯେ ବୁଦ୍ଧଦେବ ବୋଧିବୃକ୍ଷ ମୂଳରେ ଧ୍ୟାନସ୍ଥ ହୋଇ ଅତୀନ୍ଦ୍ରିୟ ଅବସ୍ଥାରେ ପହଞ୍ଚିଥିଲେ । ତାଙ୍କର ସମସ୍ତ ଉପଦେଶ ଏହି ଅବସ୍ଥାରୁ ହିଁ ଆସିଥିଲା—ବୁଦ୍ଧି-ବୃତ୍ତିର ଗବେଷଣାରୁ ନୁହେଁ ।

ଅତଏବ ସବୁ ଧର୍ମ ଗୋଟିଏ ଆଶ୍ଚର୍ଯ୍ୟ ବାଣୀ ଘୋଷଣା କରିଛନ୍ତି । ତାହା ହେଲା, ମାନବର ମନ କୌଣସି କୌଣସି ସମୟରେ ଯେ କେବଳ ଇନ୍ଦ୍ରିୟର ସୀମା ଅତିକ୍ରମ କରେ ତାହା ନୁହେଁ, ବରଂ ବିଚାରଶକ୍ତି ମଧ୍ୟ ଅତିକ୍ରମ କରିଯାଏ । ସେତେବେଳେ ଏହି ମନ ଏପରି ସବୁ ତଥ୍ୟ ପ୍ରତ୍ୟକ୍ଷ କରେ, ଯାହାକି ସେ କୌଣସି କାଳେ ଏପରିକି ଯୁକ୍ତିଦ୍ୱାରା ମଧ୍ୟ ଧାରଣା କରିପାରନ୍ତା ନାହିଁ । ଏହି ତଥ୍ୟଗୁଡ଼ିକ ଜଗତର ସବୁ ଧର୍ମର ମୂଳଭିତ୍ତି । ଅବଶ୍ୟ ଏହି ତଥ୍ୟଗୁଡ଼ିକ ବିଷୟରେ ଆପତ୍ତି ଉଠାଇବାର ଏବଂ ଯୁକ୍ତିର କଷଟି ପଥରରେ ପରୀକ୍ଷା କରିବାର ଅଧିକାର ଆମମାନଙ୍କର ଅଛି, ତଥାପି ଜଗତର ସବୁ ପ୍ରଚଳିତ ଧର୍ମରେ ଦାବୀ କରାହୁଏ ଯେ, ମଣିଷ ମନର ଏପରି ଏକ ଅଦ୍ଭୁତ ଶକ୍ତି ଅଛି, ଯାହା ବଳରେ ସେ, ଇନ୍ଦ୍ରିୟ ଓ ବିଚାରଶକ୍ତିର ସୀମା ଅତିକ୍ରମ କରିପାରେ; ଅଧିକନ୍ତୁ ସେମାନେ ଏହି ଶକ୍ତିକୁ ଗୋଟିଏ ବାସ୍ତବ ସତ୍ୟ ବୋଲି ଦାବୀ କରନ୍ତି ।

ସବୁ ଧର୍ମଦ୍ୱାରା ସ୍ୱୀକୃତ ଏହି ତତ୍ତ୍ୱଗୁଡ଼ିକ କେତେ ପରିମାଣରେ ସତ୍ୟ ତାହା ବିଚାର ନ କରି ମଧ୍ୟ ଆମେମାନେ ସେଗୁଡ଼ିକ ମଧ୍ୟରେ ଏକ ସାଧାରଣ ବିଶେଷତ୍ୱ ଦେଖିବାକୁ ପାଉ । ଉଦାହରଣସ୍ୱରୂପ, ପଦାର୍ଥବିଜ୍ଞାନଦ୍ୱାରା ଆବିଷ୍କାର କରାଯାଇଥିବା ସ୍ଥୂଳତତ୍ତ୍ୱଟି ତୁଳନାରେ ଧର୍ମରେ ଆବିଷ୍କୃତ ହୋଇଥିବା ତତ୍ତ୍ୱଟି ଅତି ସୂକ୍ଷ୍ମ । ଯେଉଁ ଧର୍ମଗୁଡ଼ିକ ଏକ ଉନ୍ନତ ପ୍ରଣାଳୀ ଉପରେ ପ୍ରତିଷ୍ଠିତ, ସେଗୁଡ଼ିକ ଅତି ସୂକ୍ଷ୍ମତମ ତତ୍ତ୍ୱଗୁଡ଼ିକୁ ସ୍ୱୀକାର କରନ୍ତି; ଅନେକଙ୍କ ମତରେ, ହୁଏତ ଏହି ତତ୍ତ୍ୱ ଏକ ନିରପେକ୍ଷ ସୂକ୍ଷ୍ମ ସତ୍ତା ବା ସର୍ବବ୍ୟାପୀ ପୁରୁଷ ଅଥବା ଈଶ୍ୱରନାମଧେୟ ସ୍ୱତନ୍ତ୍ର ବ୍ୟକ୍ତିବିଶେଷ ବା ଏକ ନୈତିକ ବିଧି । ଅନ୍ୟମାନଙ୍କ

ମତରେ ଏହା ହୁଏତ ସବୁ ସତ୍ତାର ଅନ୍ତର୍ନିହିତ ସାର ସତ୍ୟ । ଏପରକି ଆଧୁନିକ ଯୁଗରେ ମନର ଅତୀନ୍ଦ୍ରିୟ ଅବସ୍ଥା ଉପରେ ନିର୍ଭର ନ କରି ଧର୍ମମତ ପ୍ରଚାର କରିବାର ଯେଉଁ ଚେଷ୍ଟା କରାହୋଇଛି, ସେଥିରେ ମଧ୍ୟ ପ୍ରାଚୀନ କାଳରୁ ସ୍ୱୀକୃତ ପୁରାତନ ସୂକ୍ଷ୍ମଭାବଗୁଡ଼ିକୁ ଗ୍ରହଣ କରାଯାଇଛି ଏବଂ ଏଗୁଡ଼ିକୁ ନୀତି-ବିଧାନ (Moral Law] ଆଦର୍ଶଗତ ଐକ୍ୟ (Ideal unity) ପ୍ରଭୃତି ନୂତନ ନାମରେ ନାମିତ କରାହୋଇଛି । ଏହାଦ୍ୱାରା ପ୍ରମାଣିତ କରାଯାଇଛି ଯେ ଏହି ସୂକ୍ଷ୍ମତତ୍ତ୍ୱଗୁଡ଼ିକ ଇନ୍ଦ୍ରିୟର ଗ୍ରହଣୀୟ ନୁହେଁ । ଆମମାନଙ୍କ ମଧ୍ୟରେ କେହି ଏପର୍ଯ୍ୟନ୍ତ ଏକ ଆଦର୍ଶ ମଣିଷ ଦେଖିନାହିଁ, ତଥାପି ଆମମାନଙ୍କୁ ଏଥିରେ ବିଶ୍ୱାସ କରିବାକୁ କୁହାଯାଇଛି । ଆମମାନଙ୍କ ମଧ୍ୟରେ କେହି ଏପର୍ଯ୍ୟନ୍ତ ଏକ ପରିପୂର୍ଣ୍ଣ ଆଦର୍ଶ ମନୁଷ୍ୟ ଦେଖିନାହିଁ, କିନ୍ତୁ ସେହି ଆଦର୍ଶ ବ୍ୟତୀତ ଆମେମାନେ ଉନ୍ନତି ଲାଭ କରିପାରିବା ନାହିଁ । ବିଭିନ୍ନ ଧର୍ମମାନଙ୍କ ମଧ୍ୟରେ ଏହି ଗୋଟିଏ ସତ୍ୟ ସ୍ପଷ୍ଟ ହେଉଅଛି ଯେ, ଏକ ସୂକ୍ଷ୍ମ ଅଖଣ୍ଡ ସତ୍ତା ଅଛି । ଏହା କେତେବେଳେ ଆମମାନଙ୍କ ନିକଟରେ ବ୍ୟକ୍ତିବିଶେଷରୂପେ, କେତେବେଳେ ନୀତିବାଦରୂପେ, କେତେବେଳେ ନିରାକାର ସତ୍ତାରୂପେ ଅଥବା କେତେ-ବେଳେ ସବୁଥିର ସାରବସ୍ତୁରୂପେ ଉପସ୍ଥାପିତ କରାହୁଏ । ଆମେମାନେ ସର୍ବଦା ସେହି ଆଦର୍ଶ ଅନୁସରଣ କରି ଉନ୍ନତି କରିବାକୁ ଚେଷ୍ଟା କରୁଛୁ । ସେ ଯେପରି ହେଉ ବା ଯେଉଁଠାରେ ଥାଉ, ପ୍ରତ୍ୟେକ ମନୁଷ୍ୟର ଅନନ୍ତ ଶକ୍ତି ବିଷୟରେ ତାହାର ଗୋଟିଏ ନିଜସ୍ୱ ଆଦର୍ଶ ଅଛି—ଅସୀମ ଆନନ୍ଦ ବିଷୟରେ ପ୍ରତ୍ୟେକର ଗୋଟିଏ ଆଦର୍ଶ ଅଛି । ଆମମାନଙ୍କ ଚାରିପାଖରେ ଯେଉଁ କାର୍ଯ୍ୟମାନ ସମ୍ପାଦିତ ହେଉଛି, ସର୍ବତ୍ର ଯେଉଁ କର୍ମଚଞ୍ଚଳତା ପ୍ରକାଶିତ ହେଉଛି, ସେଗୁଡ଼ିକ ମଧ୍ୟରୁ ଅଧିକାଂଶର ମୂଳ ଉତ୍ସ ହେଲା ସେହି ଅନନ୍ତ ଶକ୍ତି ଅର୍ଜନ ପାଇଁ ବା ଅସୀମ ଆନନ୍ଦ ଲାଭ ପାଇଁ ପ୍ରଚେଷ୍ଟା । କିନ୍ତୁ ଅଳ୍ପସଂଖ୍ୟକ ଲୋକ ବୁଝିପାରନ୍ତି ଯେ ଯଦିଓ ସେମାନେ ଅନନ୍ତ ଶକ୍ତିଲାଭ ପାଇଁ ସବୁବେଳେ ଚେଷ୍ଟା କରୁଛନ୍ତି, ତଥାପି ସେହି ଶକ୍ତି ଇନ୍ଦ୍ରିୟ ମାଧ୍ୟମରେ ଲାଭ କରାଯାଇପାରେ ନାହିଁ । ସେମାନେ ଅବିଳମ୍ବେ ବୁଝିପାରନ୍ତି ଯେ ଇନ୍ଦ୍ରିୟଦ୍ୱାରା ସେହି ଅନନ୍ତ ସୁଖ ଲାଭ କରାଯାଇପାରିବ ନାହିଁ । ଅନ୍ୟ ଦିଗରୁ ଏପରି କୁହାଯାଇପାରେ ଯେ, ଇନ୍ଦ୍ରିୟସମୂହ ଓ ଦେହ ଏତେ ସୀମାବଦ୍ଧ ଯେ ତାହା ଅସୀମକୁ ପ୍ରକାଶ କରିପାରେ ନାହିଁ । ଅସୀମକୁ ସସୀମର ମଧ୍ୟଦେଇ ପ୍ରକାଶ କରିବା ଅସମ୍ଭବ । ତେଣୁ ମନୁଷ୍ୟ ଅସୀମକୁ ସସୀମ ମାଧ୍ୟମରେ ପ୍ରକାଶ କରିବାର ଚେଷ୍ଟା ତ୍ୟାଗ କରିବାକୁ ଶିଖେ । ଏହି ତ୍ୟାଗ, ଏହି ଚେଷ୍ଟା ନୀତିଶାସ୍ତ୍ରର ମୂଳ ଭିତ୍ତି । ତ୍ୟାଗର ଭିତ୍ତି ଉପରେ ହିଁ ନୀତିଶାସ୍ତ୍ର ପ୍ରତିଷ୍ଠିତ । କୌଣସି ସମୟରେ ଏପରି ନୀତି ପ୍ରଚାରିତ ହୋଇନାହିଁ, ଯାହାର ମୂଳଭିତ୍ତି ତ୍ୟାଗ ନୁହେଁ ।

ନାହଂ ନାହଂ, ତୁହୁଁ ତୁହୁଁ—ନୀତିଶାସ୍ତ୍ରର ଏହା ହିଁ ଚିରନ୍ତନ ବାଣୀ । ନୀତିଶାସ୍ତ୍ରର ଉପଦେଶ ହେଲା 'ପରାର୍ଥ'—'ସ୍ୱାର୍ଥ ନୁହେଁ' । ନୀତିଶାସ୍ତ୍ର କହେ ଯେ ସେହି ଅନନ୍ତ ଶକ୍ତି ବା ଅନନ୍ତ ସୁଖକୁ ଇନ୍ଦ୍ରିୟ ମଧ୍ୟ ଦେଇ ଲାଭ କରିବା ପାଇଁ ସଚେଷ୍ଟ ମନୁଷ୍ୟ ନିଜର ସ୍ୱାତନ୍ତ୍ର୍ୟ ସମ୍ବନ୍ଧରେ ଯେଉଁ ଏକ ମିଥ୍ୟା ଧାରଣା ଜାବୁଡ଼ି ଧରିଥାଏ, ତାହା ତାକୁ ପରିତ୍ୟାଗ

କରିବାକୁ ହେବ । ନିଜକୁ ସବୁଠାରୁ ପଛରେ ରଖି ଅନ୍ୟକୁ ପ୍ରାଧାନ୍ୟ ଦେବାକୁ ହେବ । ଇନ୍ଦ୍ରିୟମାନେ କହନ୍ତି "ଆମମାନଙ୍କର ପ୍ରଥମ ସ୍ଥାନ ହେବ", ନୀତିଶାସ୍ତ୍ର କହେ, "ନା, ମୁଁ ସର୍ବଶେଷରେ ରହିବି" । ସୁତରାଂ ସମସ୍ତ ନୀତିଶାସ୍ତ୍ର ସ୍ୱାର୍ଥରକ୍ଷା ଉପରେ ନୁହେଁ, ବରଂ ତ୍ୟାଗ ଓ ଜଡ଼ଜଗତର ସ୍ୱାର୍ଥବିଲୋପ ଉପରେ ପ୍ରତିଷ୍ଠିତ । ଏହି ଜଡ଼ଜଗତରେ କେବେ-ହେଲେ ସେହି ଅନନ୍ତର ପୂର୍ଣ୍ଣ ଅଭିବ୍ୟକ୍ତି ହେବ ନାହିଁ—ଏହା ଅସମ୍ଭବ ବା କଳ୍ପନାକୁ ମଧ୍ୟ ଆସି ନ ପାରେ ।

ତେଣୁ ମନୁଷ୍ୟକୁ ଜଡ଼ ଜଗତ ତ୍ୟାଗ କରି ସେହି ଅନନ୍ତଙ୍କର ଗଭୀରତର ପ୍ରକାଶର ଅନ୍ୱେଷଣ କରି ଆହୁରି ଉଚ୍ଚତର ଭାବଭୂମିକୁ ଉଠିବାକୁ ହେବ । ଏହିଭାବରେ ବିଭିନ୍ନ ନୈତିକ ବିଧିର ରଚନା ହୋଇଛି । କିନ୍ତୁ ସମସ୍ତ ବିଧିପଛରେ ଗୋଟିଏ ମୂଳ ଆଦର୍ଶ—ଚିରନ୍ତନ ଆତ୍ମତ୍ୟାଗ । ଅହଙ୍କାରର ପୂର୍ଣ୍ଣ ବିନାଶ ହିଁ ନୀତିଶାସ୍ତ୍ରର ଆଦର୍ଶ । ଯଦି ମନୁଷ୍ୟକୁ ତାହାର ନିଜ ବ୍ୟକ୍ତିତ୍ୱର ଚିନ୍ତା କରିବାକୁ ମନା କରାଯାଏ, ତେବେ ସେ ଶିହରି ଉଠିବ । ବୋଧହୁଏ ସେମାନେ ନିଜର ବ୍ୟକ୍ତିତ୍ୱ ହରାଇବାର ଭୟ କରନ୍ତି । କିନ୍ତୁ ସେହି ଲୋକମାନେ ପୁଣି ପ୍ରଚାର କରନ୍ତି ଯେ ନୀତିଶାସ୍ତ୍ରର ଉଚ୍ଚତମ ଆଦର୍ଶଗୁଡ଼ିକ ଯଥାର୍ଥ । ସେମାନେ କେବେ ଥରେ ଭାବି ଦେଖନ୍ତି ନାହିଁ ଯେ, ସବୁ ନୀତିଶାସ୍ତ୍ରର ଆଧାର, ଲକ୍ଷ୍ୟ ଏବଂ ଅନ୍ତର୍ନିହିତ ଭାବ ହେଲା 'ଅହଂର ବିନାଶ'—ତାହାର ବୃଦ୍ଧି ନୁହେଁ ।

ହିତବାଦର ଆଦର୍ଶ ମନୁଷ୍ୟର ନୈତିକ ସମ୍ବନ୍ଧ ବ୍ୟାଖ୍ୟା କରିପାରିବ ନାହିଁ । ଏହାର ପ୍ରଥମ କାରଣ ହେଲା—ପ୍ରୟୋଜନର ବିଚାର ନେଇ କୌଣସି ନୈତିକ ନିୟମ ଆବିଷ୍କାର କରାଯାଏ ନାହିଁ । ଅଲୌକିକ ଅନୁମୋଦନ ବା ମୁଁ ଯାହାକୁ ଅତିଚେତନ ଅନୁଭୂତି କହିବାକୁ ପସନ୍ଦ କରେ, ତାହା ବ୍ୟତୀତ କୌଣସି ନୀତିଶାସ୍ତ୍ର ଗଢ଼ି ଉଠିପାରେ ନାହିଁ । ଅନନ୍ତ ଅଭିମୁଖରେ ଅଭିଯାନ ବ୍ୟତୀତ କୌଣସି ଆଦର୍ଶ ତିଷ୍ଠି ନ ପାରେ । ଯେ କୌଣସି ନୀତିଶାସ୍ତ୍ର ମଣିଷକୁ ତାହାର ନିଜ ସମାଜର ଗଣ୍ଡି ମଧ୍ୟରେ ଆବଦ୍ଧ ରଖିବାକୁ ଇଚ୍ଛାକରେ, ତାହା ସମଗ୍ର ମାନବଜାତି ପାଇଁ ପ୍ରଯୋଜ୍ୟ ନୈତିକ ବିଧିକୁ ବ୍ୟାଖ୍ୟା କରିବାକୁ ଅକ୍ଷମ । ହିତବାଦୀମାନେ ଅନନ୍ତକୁ ପାଇବାର ସାଧନା ଓ ଅତୀନ୍ଦ୍ରିୟ ବସ୍ତୁ ଲାଭ କରିବାର ଆଶା ତ୍ୟାଗ କରିବାକୁ କହନ୍ତି । ସେମାନଙ୍କ ମତରେ ଏହା ଅସାଧ୍ୟ ଓ ଅଯୌକ୍ତିକ । ପୁନଶ୍ଚ ସେମାନେ ଆମମାନଙ୍କୁ ନୀତି ଅବଲମ୍ବନ ଓ ସମାଜର କଲ୍ୟାଣ ସାଧନ କରିବାକୁ ମଧ୍ୟ କହନ୍ତି । ଆମେମାନେ କାହିଁକି କଲ୍ୟାଣ ସାଧନ କରିବୁ ? ଉପକାର କରିବା ତ ଏକ ଗୌଣ କର୍ମ । ଆମମାନଙ୍କର ଗୋଟିଏ ଆଦର୍ଶ ରହିବା ଆବଶ୍ୟକ । ନୀତିଶାସ୍ତ୍ର ତ ଆମର ଲକ୍ଷ୍ୟ ନୁହେଁ—ଏହା ଆମର ଉଦ୍ଦେଶ୍ୟ ସାଧନ ପାଇଁ ଏକ ଉପାୟ ମାତ୍ର । ଲକ୍ଷ୍ୟ ନ ଥାଇ ଆମେମାନେ ନୀତିପରାୟଣ କାହିଁକି ହେବୁ ? ମୁଁ ଅନ୍ୟର ଅନିଷ୍ଟ ନ କରି ଉପକାର କାହିଁକି କରିବି ? ସୁଖ ଯଦି ଜୀବନର ଉଦ୍ଦେଶ୍ୟ ହୁଏ, ତେବେ ମୁଁ କାହିଁକି ନିଜକୁ ସୁଖୀ ଏବଂ ଅନ୍ୟମାନଙ୍କୁ ଦୁଃଖୀ କରିବି ନାହିଁ ? ମୋତେ କିଏ ବାଧା ଦେବ ? ଦ୍ୱିତୀୟତଃ ହିତବାଦର ଭିତ୍ତି ଅତି ସଂକୀର୍ଣ୍ଣ । ଯେଉଁସବୁ ସାମାଜିକ ରୀତିନୀତି ଓ କାର୍ଯ୍ୟଧାରା ପ୍ରଚଳିତ,

ସେଗୁଡ଼ିକ ସମାଜର ବର୍ତ୍ତମାନ ଅବସ୍ଥାରୁ ଗୃହୀତ ହୋଇଛି । କିନ୍ତୁ ହିତବାଦୀମାନଙ୍କର ସମାଜକୁ ଚିରନ୍ତନ ବୋଲି କଳ୍ପନା କରିବାର କି ଅଧିକାର ଅଛି ? ଅନେକ ଯୁଗ ପୂର୍ବରୁ ସମାଜର ଅସ୍ତିତ୍ୱ ନ ଥିଲା ଏବଂ ସମ୍ଭବତଃ ଅନେକ ଯୁଗ ପରେ ଏହା ରହିବ ନାହିଁ । ସମ୍ଭବତଃ ଉଚ୍ଚତର କ୍ରମବିକାଶ ପଥରେ ଅଗ୍ରସର ହେବା ପାଇଁ ଏହି ସମାଜବ୍ୟବସ୍ଥା ଏକ ସୋପାନ ମାତ୍ର । କିନ୍ତୁ କେବଳ ସମାଜ-ବ୍ୟବସ୍ଥାରୁ ଗୃହୀତ କୌଣସି ବିଧି ଚିରନ୍ତନ ହୋଇ ନ ପାରେ ଏବଂ ସମଗ୍ର ମାନବପ୍ରକୃତି ପାଇଁ ଏହା ପର୍ଯ୍ୟାପ୍ତ ହେବ ନାହିଁ । ତେଣୁ ହିତବାଦ-ସମ୍ଭୂତ ମତଗୁଡ଼ିକ ଖୁବ୍ ହେଲେ ବର୍ତ୍ତମାନ ସାମାଜିକ ଅବସ୍ଥାରେ କାର୍ଯ୍ୟକାରୀ ହୋଇପାରେ । ଏହାର ବାହାରେ ସେହି ମତଗୁଡ଼ିକର କୌଣସି ମୂଲ୍ୟ ନାହିଁ । କିନ୍ତୁ ଧର୍ମ ଓ ଆଧ୍ୟାତ୍ମିକତାରୁ ଉଦ୍ଭୂତ ଚରିତ୍ରନୀତି ଓ ନୈତିକ ବିଧିର କାର୍ଯ୍ୟକ୍ଷେତ୍ର ବା ପରିଧି ମନୁଷ୍ୟ-ଜାତିର ସମସ୍ତ ଦିଗରେ ପରିବ୍ୟାପ୍ତ । ଏହା ବ୍ୟଷ୍ଟି ସମ୍ପର୍କରେ ପ୍ରଯୁକ୍ତ ହେଲେହେଁ ସମଷ୍ଟି-ସହିତ ମଧ୍ୟ ସମ୍ପୃକ୍ତ । ସମାଜ ମଧ୍ୟ ଏହାର ଅନ୍ତର୍ଭୁକ୍ତ । କାରଣ, ସମାଜ ମଧ୍ୟ ବ୍ୟଷ୍ଟି-ସମୂହର ସମଷ୍ଟି ବ୍ୟତୀତ ଅନ୍ୟ କିଛି ନୁହେଁ । ଯେହେତୁ ଏହି ନୈତିକ ବିଧି ବ୍ୟଷ୍ଟି ଓ ତାହାର ଅନନ୍ତ ସମ୍ପର୍କଗୁଡ଼ିକ କ୍ଷେତ୍ରରେ ପ୍ରଯୋଜ୍ୟ, ତେଣୁ ସମାଜ ଯେକୌଣସି ସମୟରେ ଯେକୌଣସି ଅବସ୍ଥାରେ ଥାଉନା କାହିଁକି ଏହା ସମଗ୍ର ସାମାଜିକ କ୍ଷେତ୍ରରେ ପ୍ରଯୋଜ୍ୟ ହେବ । ଏହିସବୁ କାରଣରୁ ଦେଖାଯାଏ ଯେ ମାନବଜାତି ପକ୍ଷରେ ଆଧ୍ୟାତ୍ମି-କତାର ପ୍ରୟୋଜନ ସର୍ବଦା ରହିଛି । ଜଡ଼ ଯେତେ ସୁଖକର ହେଉନା କାହିଁକି, ମନୁଷ୍ୟ ସର୍ବଦା ଜଡ଼ର ଚିନ୍ତା କରିପାରିବ ନାହିଁ ।

ଲୋକମାନେ କହନ୍ତି, ଆଧ୍ୟାତ୍ମିକ ବିଷୟରେ ବେଶୀ ମନଯୋଗ ଦେଲେ ଆମମାନଙ୍କର ବ୍ୟାବହାରିକ ଜୀବନରେ ପ୍ରମାଦ ଘଟିବ । ପୂର୍ବକାଳରେ ଚୈନିକ ଋଷି କନ୍‌ଫୁସିୟସ୍‌ଙ୍କ ସମୟରେ କୁହାଯାଉଥିଲା—"ଆଗେ ଇହଲୋକର ସୁବ୍ୟବସ୍ଥା କରିବାକୁ ହେବ; ଇହଲୋକର ବ୍ୟବସ୍ଥା ହୋଇଗଲେ ପରଲୋକର କଥା ଭାବିବ ।" ଆମେମାନେ ଇହଜଗତର କାର୍ଯ୍ୟରେ ତତ୍ପର ହେବୁ—ଏହା ବେଶ୍ ସୁନ୍ଦର କଥା । କିନ୍ତୁ ଏହା ମଧ୍ୟ ଦେଖିବାର କଥା ଯେ, ଯଦି ଆଧ୍ୟାତ୍ମିକ ବିଷୟରେ ଅତ୍ୟଧିକ ମନଯୋଗ ହେତୁ ବ୍ୟାବ-ହାରିକ ଜୀବନରେ କିଞ୍ଚିତ୍ କ୍ଷତି ହୁଏ, ତାହାହେଲେ ତଥାକଥିତ ବାସ୍ତବ ଜୀବନ ପ୍ରତି ଅତ୍ୟଧିକ ମନୋନିବେଶ ଫଳରୁ ଆମମାନଙ୍କର ଇହଲୋକ ଓ ପରଲୋକ ଉଭୟର କ୍ଷତି ହୋଇଥାଏ । ଏହି ଭାବରେ ଚାଲିଲେ ମନୁଷ୍ୟ ଜଡ଼ବାଦୀ ହୋଇଯାଏ, କାରଣ ମନୁଷ୍ୟର ଲକ୍ଷ୍ୟ ପ୍ରକୃତି ନୁହେଁ । ତାହାର ଲକ୍ଷ୍ୟ ପ୍ରକୃତି ଅପେକ୍ଷା ଆହୁରି ଏକ ଉଚ୍ଚତର ବିଷୟ ।

ଯେଉଁପର୍ଯ୍ୟନ୍ତ ମନୁଷ୍ୟ ପ୍ରକୃତିକୁ ଅତିକ୍ରମ କରିବା ନିମିତ୍ତ ସଂଗ୍ରାମ କରୁଥାଏ, ସେତେବେଳ ପର୍ଯ୍ୟନ୍ତ ତାକୁ ଯଥାର୍ଥ ମନୁଷ୍ୟ କୁହାଯାଇପାରେ । ଏହି ପ୍ରକୃତିର ଦୁଇଟି ରୂପ—ଅନ୍ତଃପ୍ରକୃତି ଓ ବହିଃପ୍ରକୃତି । ଯେଉଁ ନିୟମଗୁଡ଼ିକ ଆମର ବାହ୍ୟ ଏବଂ ଶରୀର ଭିତରେ ଜଡ଼ କଣିକାଗୁଡ଼ିକୁ ନିୟନ୍ତ୍ରିତ କରନ୍ତି, କେବଳ ସେହିଗୁଡ଼ିକ ହିଁ ପ୍ରକୃତିର

ଅନ୍ତର୍ଭୁକ୍ତ ନୁହେଁ, ପରନ୍ତୁ ସୂକ୍ଷ୍ମତର ଅନ୍ତଃପ୍ରକୃତି ମଧ୍ୟ ଏହାର ଅନ୍ତର୍ଭୁକ୍ତ । ବସ୍ତୁତଃ ଏହି ସୂକ୍ଷ୍ମତର ପ୍ରକୃତି ହିଁ ବହିଃଜଗତର ନିୟାମକ ଶକ୍ତି । ବହିଃପ୍ରକୃତିକୁ ଜୟ କରିବା ଖୁବ୍ ଭଲ ଓ ବଡ଼ କଥା । କିନ୍ତୁ ଅନ୍ତଃପ୍ରକୃତିକୁ ଜୟ କରିବା ଆହୁରି ମହତ୍ତର । ଯେଉଁସବୁ ନିୟମ ଅନୁସାରେ ଗ୍ରହନକ୍ଷତ୍ରାଦି ପରିଚାଳିତ ହୁଅନ୍ତି, ସେଗୁଡ଼ିକୁ ଜାଣିବା ଅତି ଉତ୍ତମ କଥା—କିନ୍ତୁ ଯେଉଁସବୁ ନିୟମ ଅନୁସାରେ ମନୁଷ୍ୟର କାମନା, ମନୋବୃତ୍ତି ଓ ଇଚ୍ଛା-ଗୁଡ଼ିକ ନିୟନ୍ତ୍ରିତ ହୁଅନ୍ତି, ସେଗୁଡ଼ିକ ସମ୍ବନ୍ଧରେ ଜ୍ଞାତ ହେବା ଆମମାନଙ୍କ ପକ୍ଷରେ ଅନନ୍ତଗୁଣରେ ମହତ୍ତର ଓ ଉତ୍କୃଷ୍ଟ । ଅନ୍ତର୍ମାନବର ଏହି ବିଜୟ, ମାନବମନର ଯେଉଁ ସବୁ ସୂକ୍ଷ୍ମ କ୍ରିୟାଶକ୍ତି କାର୍ଯ୍ୟ କରୁଛି, ସେଗୁଡ଼ିକର ରହସ୍ୟ ସମ୍ପର୍କରେ ଜ୍ଞାତ ହେବା—ଏହିସବୁ ସମ୍ପୂର୍ଣ୍ଣ ରୂପେ ଧର୍ମର ହିଁ ଅନ୍ତର୍ଗତ । ସାଧାରଣ ମାନବପ୍ରକୃତି ବଡ଼ ବଡ଼ ପ୍ରାକୃତିକ ଘଟଣା ଦେଖିବାକୁ ଚାହେଁ । ସାଧାରଣ ମନୁଷ୍ୟ ସୂକ୍ଷ୍ମ ବିଷୟ ଧାରଣା କରିପାରେ ନାହିଁ । କୌଣସି ସିଂହ ସହସ୍ର ମେଷ-ଶାବକ ହତ୍ୟା କରିଥିଲେ ସାଧାରଣ ଲୋକେ ତାର ପ୍ରଶଂସା କରନ୍ତି । ସେମାନେ ମୃତ୍ୟୁମୁଖରେ ପଡ଼ିଥିବା ସହସ୍ର ମେଷ-ଶାବକଙ୍କ କଥା ଭାବନ୍ତି ନାହିଁ । ଶାରୀରିକ ଶକ୍ତିର ପ୍ରକାଶ ହିଁ ସେମାନଙ୍କୁ ଆନନ୍ଦ ଦିଏ । ସାଧାରଣ ମାନବର ମନର ଧାରଣା ଏହିପରି । ସେମାନେ ବାହାର ଜଗତର ବିଷୟ ବୁଝି ସେଥିରୁ ଆନନ୍ଦ ପାଆନ୍ତି । କିନ୍ତୁ ପ୍ରତ୍ୟେକ ସମାଜରେ କେତେକ ଲୋକ ଅଛନ୍ତି, ଯାହାଙ୍କର ଆନନ୍ଦ ଇନ୍ଦ୍ରିୟଗ୍ରାହ୍ୟ ବସ୍ତୁ ମଧ୍ୟରେ ନ ଥାଇ ଅତୀନ୍ଦ୍ରିୟ ରାଜ୍ୟରେ ଥାଏ । ସେମାନେ ମଝିରେ ମଝିରେ ଜଡ଼ବସ୍ତୁ ଅପେକ୍ଷା ଉଚ୍ଚତର କିଛିର ଆଭାସ ପାଆନ୍ତି ଏବଂ ଏହା ପାଇବା ପାଇଁ ଚେଷ୍ଟା ମଧ୍ୟ କରନ୍ତି, ବିଭିନ୍ନ ଜାତିର ଇତିହାସ ପୁଙ୍ଖାନୁପୁଙ୍ଖ ଭାବରେ ପାଠକଲେ ଦେଖାଯାଏ ଯେ, ଏହିପରି ସୂକ୍ଷ୍ମଦର୍ଶୀ ଲୋକମାନଙ୍କର ସଂଖ୍ୟା ବୃଦ୍ଧି ପାଇଲେ ଜାତିର ଉନ୍ନତି ହୁଏ, ଅନ୍ତରର ଅନୁସନ୍ଧାନ ବନ୍ଦ ହେଲେ ଜାତିର ପତନ ହୁଏ । ହିତବାଦୀମାନେ ଏହି ଅନୁସନ୍ଧାନକୁ ବୃଥା କହିଲେ ଯାଏ ଆସେ ନାହିଁ । ପ୍ରତ୍ୟେକ ଜାତିର ମୂଳ ଉତ୍ସ ହେଲା ତାର ଆଧ୍ୟାତ୍ମି-କତା । ଯେତେବେଳେ ଜାତିର ଧର୍ମ ଦୁର୍ବଳ ହୁଏ ଏବଂ ଜଡ଼ବାଦ ତାର ସ୍ଥାନ ଅଧିକାର କରେ, ସେତେବେଳେ ସେହି ଜାତିର ଧ୍ୱଂସ ଆରମ୍ଭ ହୁଏ ।

ଧର୍ମରୁ ଆମେମାନେ ଯେଉଁ ତଥ୍ୟ ଓ ତତ୍ତ୍ୱ ଶିକ୍ଷା କରିପାରୁ ଏବଂ ଯେଉଁ ସାନ୍ତ୍ୱନା ପାଇପାରୁ, ସେଗୁଡ଼ିକୁ ଛାଡ଼ିଦେଲେ ମଧ୍ୟ ଧର୍ମ ଏକ ବିଜ୍ଞାନ ବା ଗବେଷଣାର ବସ୍ତୁ ହିସାବରେ ମାନବମନର ଶ୍ରେଷ୍ଠ ଓ ସର୍ବାଧିକ କଲ୍ୟାଣକର ଅନୁଶୀଳନର ବିଷୟ । ଅନନ୍ତର ଅନୁସନ୍ଧାନ, ଅନନ୍ତକୁ ଧାରଣା କରିବାର ସାଧନା, ଇନ୍ଦ୍ରିୟର ସୀମା ଅତିକ୍ରମ କରି ଜଡ଼ର ସୀମା ବାହାରକୁ ଯାଇପାରିବା ଲାଗି ଆଧ୍ୟାତ୍ମିକ ମାନବର କ୍ରମବିକାଶ-ସାଧନାର ଯେଉଁ ପ୍ରଚେଷ୍ଟା ତାହା ଅନନ୍ତକୁ ନିଜର ସତ୍ତାରେ ଏକୀଭୂତ କରିବାର ନିରନ୍ତର ପ୍ରୟାସ—ଏହି ସଂଗ୍ରାମ ହିଁ ମନୁଷ୍ୟର ସର୍ବୋଚ୍ଚ ଗୌରବ ଓ ମହତ୍ତ୍ୱର ବିକାଶ । କେହି କେହି ଭୋଜନରେ ସର୍ବାଧିକ ଆନନ୍ଦ ପାଆନ୍ତି । ସେମାନେ ଏଥିରେ ଆନନ୍ଦ ପାଇବା ଉଚିତ ନୁହେଁ ବୋଲି ଆମର କହିବାର ଅଧିକାର ନାହିଁ । କେହି କେହି ସାମାନ୍ୟ କିଛି

ପାଇଗଲେ ଅତ୍ୟନ୍ତ ସୁଖ ବୋଧକରନ୍ତି—ସେମାନଙ୍କ ପକ୍ଷେ ଏପରି ବୋଧକରିବା ଅନୁଚିତ ବୋଲି କହିବା ଆମର ଅଧିକାର ନାହିଁ । ସେହିଭଳି ଯେଉଁ ବ୍ୟକ୍ତି ଧର୍ମଚିନ୍ତାରୁ ସର୍ବୋଚ୍ଚ ଆନନ୍ଦ ପାଉଛି, ତାହାକୁ ବାଧା ଦେବା ପାଇଁ ସେମାନଙ୍କର କୌଣସି ଅଧିକାର ନାହିଁ । ଯେଉଁ ପ୍ରାଣୀ ଯେତେ ନିମ୍ନ ସ୍ତରରେ ଥିବ ସେ ଇନ୍ଦ୍ରିୟରୁ ସେତେ ସୁଖ ପାଇବ । ଶୃଗାଳ କୁକୁରାଦି ଆଗ୍ରହର ସହିତ ଯେତେ ଭୋଜନ କରିପାରନ୍ତି ଖୁବ୍ କମ୍ ଲୋକ ସେପ୍ରକାର ଭୋଜନ କରିପାରିବେ । କିନ୍ତୁ ଶୃଗାଳ-କୁକୁରଙ୍କର ସୁଖାନୁଭୂତି ସେମାନଙ୍କ ଇନ୍ଦ୍ରିୟଗୁଡ଼ିକ ମଧ୍ୟରେ କେନ୍ଦ୍ରୀଭୂତ ହୋଇ ରହିଛି । ସବୁ ଜାତି ମଧ୍ୟରେ ଦେଖାଯାଏ ଯେ ଯେଉଁମାନେ ନିକୃଷ୍ଟ ଶ୍ରେଣୀର ଲୋକ, ସେମାନେ ଇନ୍ଦ୍ରିୟ ସାହାଯ୍ୟରେ ସୁଖଭୋଗ କରନ୍ତି ଏବଂ ଯେଉଁମାନେ ଶିକ୍ଷିତ ଓ ସଂସ୍କୃତିସମ୍ପନ୍ନ ଲୋକ ସେମାନେ ଚିନ୍ତା, ଦର୍ଶନ, ବିଜ୍ଞାନ ଓ ଶିଳ୍ପ କଳାରେ ସେହି ସୁଖ ପାଇଥାନ୍ତି । କିନ୍ତୁ ଆଧ୍ୟାତ୍ମିକ ରାଜ୍ୟ ଏହାଠାରୁ ଉଚ୍ଚତର । ଆଧ୍ୟାତ୍ମିକ ରାଜ୍ୟର ପରିସର ଅନନ୍ତ, ତେଣୁ ଏହା ସର୍ବୋଚ୍ଚ । ଯେଉଁମାନେ ଏହି ରାଜ୍ୟ ସମ୍ବନ୍ଧରେ ସମ୍ୟକ୍ ଧାରଣା କରିପାରନ୍ତି ସେମାନେ ଏକ ସ୍ତରରେ ସର୍ବୋତ୍କୃଷ୍ଟ ସୁଖ ଲାଭ କରନ୍ତି । ତେଣୁ ହିତବାଦୀମାନଙ୍କର ମତ ଅନୁସାରେ "ମଣିଷକୁ ସୁଖର ସନ୍ଧାନ କରିବାକୁ ହେବ" —ଏହା ମାନି ନିଆହେଲେ ମଧ୍ୟ ମନୁଷ୍ୟ ପକ୍ଷରେ ଧର୍ମଚିନ୍ତା ଅନୁଶୀଳନ କରିବା ଉଚିତ; କାରଣ ଧର୍ମାନୁଶୀଳନରେ ହିଁ ଉଚ୍ଚତମ ସୁଖ ନିହିତ । ତେଣୁ ମୋ ମତରେ ଧର୍ମାନୁଶୀଳନ ଏକାନ୍ତ ପ୍ରୟୋଜନ, କାରଣ, ଏହା ଧର୍ମାନୁଶୀଳନ କରିବାର ଫଳରୁ ହିଁ ବୁଝାଯାଏ । ମନୁଷ୍ୟର ମନକୁ ଗତିଶୀଳ କରିବାକୁ ହେଲେ ଧର୍ମ ଏକ ଶ୍ରେଷ୍ଠ ନିୟାମକ ଶକ୍ତି । ଧର୍ମ ଆମମାନଙ୍କ ମଧ୍ୟରେ ଯେଉଁ ପରିମାଣରେ ଶକ୍ତି ସଞ୍ଚାର କରେ, ଅନ୍ୟ କୌଣସି ଆଦର୍ଶ ତାହା କରିପାରେ ନାହିଁ । ମାନବଜାତିର ଇତିହାସରୁ ଏହା ସ୍ପଷ୍ଟ ଜଣାଯାଏ ଯେ, ଅତୀତରେ ଏହା ହିଁ ସମ୍ଭବ ହୋଇଛି ଏବଂ ଧର୍ମର ଶକ୍ତି ଏପର୍ଯ୍ୟନ୍ତ ମଧ୍ୟ ଶେଷ ହୋଇନାହିଁ । କେବଳ ହିତବାଦ ଅବଲମ୍ବନଦ୍ୱାରା ମନୁଷ୍ୟ ଯେ ବେଶୀ ସତ୍ ଓ ନୀତିପରାୟଣ ହୋଇ-ପାରେ, ତାହା ମୁଁ ଅସ୍ୱୀକାର କରିବ ନାହିଁ । ଏହି ଜଗତରେ ଅନେକ ମହାପୁରୁଷ ହିତବାଦ ଅନୁସରଣ କରି ସମ୍ପୂର୍ଣ୍ଣ ନିର୍ଦ୍ଦୋଷ ନୀତିପରାୟଣ ଏବଂ ସରଳ ହୋଇଛନ୍ତି; କିନ୍ତୁ ଯେଉଁ ମହାମାନବମାନେ ବିଶ୍ୱବ୍ୟାପୀ ଆନ୍ଦୋଳନର ସ୍ରଷ୍ଟା, ଯେଉଁମାନେ ଜଗତରେ ଚୁମ୍ବକ ଶକ୍ତି ପରି ଶକ୍ତି ସଞ୍ଚାର କରନ୍ତି, ଯେଉଁମାନଙ୍କର ଶକ୍ତି ଶତ ସହସ୍ର ବ୍ୟକ୍ତିଙ୍କ ମଧ୍ୟରେ କାର୍ଯ୍ୟ କରେ, ଯେଉଁମାନଙ୍କର ଜୀବନ ଅନ୍ୟମାନଙ୍କ ଜୀବନରେ ଆଧ୍ୟାତ୍ମିକ ଅଗ୍ନି ଜାଳି ଦିଏ, ଏହିପରି ମହାପୁରୁଷମାନଙ୍କ ମଧ୍ୟରେ ଆମେମାନେ ସବୁବେଳେ ଅଧ୍ୟାତ୍ମ ଶକ୍ତିର ପ୍ରେରଣା ଦେଖିବାକୁ ପାଉଁ । ସେମାନଙ୍କର ଏହି ପ୍ରେରଣାଶକ୍ତି ଧର୍ମରୁ ଆସିଥାଏ । ଯେଉଁ ଅନନ୍ତ ଶକ୍ତିରେ ମନୁଷ୍ୟର ଜନ୍ମଗତ ଅଧିକାର, ଯେଉଁ ଶକ୍ତି ମନୁଷ୍ୟର ପ୍ରକୃତିଗତ, ତାହାର ଉପଲବ୍ଧି ପାଇଁ ଧର୍ମ ହିଁ ସର୍ବାପେକ୍ଷା ଅଧିକ ପ୍ରେରଣା ଦିଏ । ଚରିତ୍ରଗଠନ ପାଇଁ ସତ୍ ଓ ମହତ୍ କାର୍ଯ୍ୟ ସମ୍ପାଦନ ପାଇଁ ନିଜର ଓ ଅନ୍ୟର ଜୀବନରେ ଶକ୍ତିସ୍ଥାପନ ପାଇଁ, ଧର୍ମ ହିଁ ସର୍ବୋଚ୍ଚ ପ୍ରେରଣା-ଶକ୍ତି । ତେଣୁ ସେହି ଦୃଷ୍ଟିକୋଣରୁ ଧର୍ମର ଅନୁଶୀଳନ କରିବା ଉଚିତ ।

ପୂର୍ବ ଅପେକ୍ଷା ଅଧିକ ଉଦାର ଭିତ୍ତିରେ ଧର୍ମର ଅନୁଶୀଳନ ଆବଶ୍ୟକ । ସବୁ ପ୍ରକାର ସଙ୍କୀର୍ଣ୍ଣ, ଅନୁଦାର ଓ ବିବଦମାନ ଧର୍ମଭାବ ଦୂର କରିବାକୁ ହେବ । ସବୁ ପ୍ରକାର ସାଂପ୍ରଦାୟିକ, ସ୍ୱଜାତୀୟ ବା ସ୍ୱଗୋଷ୍ଠୀୟ ଭାବ ପରିତ୍ୟାଗ କରିବାକୁ ହେବ । ପ୍ରତ୍ୟେକ ଜାତି ଓ ଗୋଷ୍ଠୀର ନିଜସ୍ୱ ଈଶ୍ୱର ରହିବେ ଏବଂ ଅନ୍ୟମାନଙ୍କର ଈଶ୍ୱର ମିଥ୍ୟା—ଏହି ପ୍ରକାର ଧାରଣା କୁସଂସ୍କାର, ଏହା ଅତୀତର ଗର୍ଭରେ ବିଲୀନ ହେବା ଉଚିତ । ଏ ପ୍ରକାର ଧାରଣା ବର୍ଜନୀୟ ।

ମନୁଷ୍ୟର ମନ ଯେତେ ବିସ୍ତାରିତ ହୁଏ, ତାହାର ଆଧ୍ୟାତ୍ମିକ ଉନ୍ନତି ସେତେ ପ୍ରସାର ଲାଭ କରେ । ଏପରି ଏକ ସମୟ ଆସିଛି, ଯେଉଁ ସମୟରେ ମନୁଷ୍ୟର ଚିନ୍ତାଗୁଡ଼ିକ ଲିପିବଦ୍ଧ ହେଉ ନ ହେଉଣୁ ପୃଥିବୀର ଚାରିଆଡ଼େ ବିଛୁରିତ ହୋଇ ପଡ଼ୁଛି । ବର୍ତ୍ତମାନ କେବଳ ଯାନ୍ତ୍ରିକ ଉପାୟରେ ଆମେ ଜଗତର ସଂସ୍ପର୍ଶରେ ଆସିଛୁ । ସୁତରାଂ ଜଗତର ଧର୍ମସମୂହକୁ ଗୋଟିଏ ଦିଗରେ ଯେପରି ସାର୍ବଜନୀନ, ଅନ୍ୟ ଦିଗରେ ସେହିପରି ଉଦାର ହେବାକୁ ହେବ ।

ଜଗତରେ ଯାହା କିଛି ସତ୍ୟ ଓ ମହତ୍, ସେସମସ୍ତ ଭବିଷ୍ୟତ ଧର୍ମାଦର୍ଶ ମଧ୍ୟରେ ଅନ୍ତର୍ଭୁକ୍ତ ହେବା ଆବଶ୍ୟକ, ଏଥିରେ ଭବିଷ୍ୟତ ଉନ୍ନତିର ଅନନ୍ତ ସୁଯୋଗ ନିହିତ । ଅତୀତରେ ଯାହା କିଛି ଭଲ, ତାହା ସୁରକ୍ଷିତ ରଖିବାକୁ ହେବ ଏବଂ ପୂର୍ବରୁ ସଞ୍ଚିତ କରାଯାଇଥିବା ଧର୍ମଭଣ୍ଡାର ସହିତ ଭାବସଂଯୋଗ ପାଇଁ ଦ୍ୱାର ଉନ୍ମୁକ୍ତ ରଖିବାକୁ ହେବ । ପ୍ରତ୍ୟେକ ଧର୍ମ ଅନ୍ୟ ଧର୍ମକୁ ସ୍ୱୀକାର କରିବା ଆବଶ୍ୟକ । ଈଶ୍ୱରଙ୍କ ବିଷୟରେ ଅନ୍ୟର କୌଣସି ବିଶେଷ ଧାରଣାକୁ ଭିନ୍ନ ମନେ କରି ନିନ୍ଦା କରିବା ଉଚିତ ନୁହେଁ । ମୋ ଜୀବନରେ ମୁଁ ଏପରି ଧାର୍ମିକ ଓ ବୁଦ୍ଧିମାନ ଲୋକ ଦେଖିଛି, ଯେଉଁମାନେ ଆମମାନଙ୍କ ଅପେକ୍ଷା ଈଶ୍ୱରଙ୍କୁ ଭଲରୂପେ ବୁଝିଥିଲେ ମଧ୍ୟ ଆମେମାନେ ଯେଉଁରୂପେ ଈଶ୍ୱର ବିଶ୍ୱାସ କରୁ ସେଥିରେ ସେମାନଙ୍କର ବିଶ୍ୱାସ ନାହିଁ । ଭଗବାନଙ୍କର ସାକାର ଓ ନିରାକାର ରୂପ, ଅସୀମ ସତ୍ତା, ନୀତିବାଦ ବା ଆଦର୍ଶ ମନୁଷ୍ୟ, ଇତ୍ୟାଦି ଯେତେ ମତବାଦ ଅଛି—ଏସମସ୍ତ ଧର୍ମ ମଧ୍ୟରେ ଅନ୍ତର୍ଭୁକ୍ତ ହେବା ଆବଶ୍ୟକ । ସବୁଧର୍ମ ଯେତେବେଳେ ଏହି ଉଦାରତା ଲାଭ କରିବେ ସେତେବେଳେ ସେମାନଙ୍କର ହିତକାରିଣୀ ଶକ୍ତି ଶତଗୁଣ ବୃଦ୍ଧିପ୍ରାପ୍ତ ହେବ । ସବୁ ଧର୍ମ ମଧ୍ୟରେ ପ୍ରଚଣ୍ଡ ଶକ୍ତି ରହିଥିଲେ ମଧ୍ୟ ସେଗୁଡ଼ିକ କେବଳ ସଙ୍କୀର୍ଣ୍ଣତା ଓ ଅନୁଦାରତା ଯୋଗୁ ମଙ୍ଗଳ ଅପେକ୍ଷା ଅଧିକ ଅମଙ୍ଗଳ କରିଛନ୍ତି ।

ବହୁ ସଂପ୍ରଦାୟ ଓ ସମାଜ ପ୍ରାୟ ଏକପ୍ରକାର ଆଦର୍ଶ ଅନୁସରଣ କରୁଥିଲେ ମଧ୍ୟ ସେମାନେ ପରସ୍ପର ସହିତ ବିବାଦ କରୁଥିବା ବର୍ତ୍ତମାନ ମଧ୍ୟ ଆମେମାନେ ଦେଖିବାକୁ ପାଉଛୁ । କାରଣ ଗୋଟିଏ ସଂପ୍ରଦାୟ ଅନ୍ୟ ସଂପ୍ରଦାୟ ପରି ନିଜର ମତ ବା ଆଦର୍ଶଗୁଡ଼ିକୁ ଉପସ୍ଥାପିତ କରିବାକୁ ଚାହେଁ ନାହିଁ । ଏଥିପାଇଁ ଧର୍ମଗୁଡ଼ିକୁ ଉଦାର ହେବାକୁ ହେବ । ଧର୍ମଗୁଡ଼ିକୁ ସଂପୂର୍ଣ୍ଣ ବିକାଶ ଲାଭ କରିବାକୁ ହେଲେ ଧର୍ମଭାବଗୁଡ଼ିକ ସାର୍ବଜନୀନ, ବିଶାଳ ଓ ଅନନ୍ତ ହେବା ଆବଶ୍ୟକ । କାରଣ ଧର୍ମର ଶକ୍ତି ବର୍ତ୍ତମାନ ପୃଥିବୀରେ ଆତ୍ମପ୍ରକାଶ କରିବାକୁ

ଆରମ୍ଭ କରିଛି । ଧର୍ମଭାବ ପୃଥିବୀରୁ ତିରୋହିତ ହେଉଛି—କେବେ କେବେ ଏପରି ଶୁଣିବାକୁ ମିଳେ । କିନ୍ତୁ ମୋର ମନେ ହୁଏ ଧର୍ମଭାବଗୁଡ଼ିକ ବର୍ତ୍ତମାନ ପୃଥିବୀରେ ବିକଶିତ ହେବାକୁ ଆରମ୍ଭ କରିଛି । ସଙ୍କୀର୍ଣ୍ଣତାମୁକ୍ତ ଓ ଆବିଳତାଶୂନ୍ୟ ହୋଇ ଧର୍ମର ପ୍ରଭାବ ମାନବ-ଜୀବନର ପ୍ରତିସ୍ତରରେ ପ୍ରବେଶ କରିବାକୁ ଆରମ୍ଭ କରିଛି । ଯେତେଦିନ ପର୍ଯ୍ୟନ୍ତ ଧର୍ମ ମୁଷ୍ଟିମେୟ 'ଈଶ୍ୱର-ନିର୍ଦ୍ଦିଷ୍ଟ' ବ୍ୟକ୍ତି ବା ପୁରୋହିତକୁଳର ହାତରେ ଥିଲା, ସେତେଦିନ ପର୍ଯ୍ୟନ୍ତ ଏହା ମନ୍ଦିର, ଗୀର୍ଜା, ଗ୍ରନ୍ଥ, ମତବାଦ ଓ ଆଚାର-ଅନୁଷ୍ଠାନ ମଧ୍ୟରେ ନିବଦ୍ଧ ଥିଲା । କିନ୍ତୁ ଯେତେବେଳେ ଆମେମାନେ ଧର୍ମର ଯଥାର୍ଥ ଆଧ୍ୟାତ୍ମିକ ଓ ସାର୍ବଜନୀନ ଧାରଣାରେ ଉପନୀତ ହେବୁ, କେବଳ ସେତେବେଳେ ଏହା ପ୍ରକୃତ ଓ ଜୀବନ୍ତ ହେବ—ଏହା ଆମ-ମାନଙ୍କର ସ୍ୱଭାବରେ ପରିଣତ ହେବ, ଆମର ପ୍ରତ୍ୟେକ ଗତିବିଧିରେ ପ୍ରାଣବନ୍ତ ହେବ, ସମାଜର ପ୍ରତ୍ୟେକ ଶିରା-ପ୍ରଶିରାରେ ପ୍ରବେଶ କରିବ ଏବଂ ପୂର୍ବାପେକ୍ଷା ଅନନ୍ତଗୁଣ କଲ୍ୟାଣ-କାରିଣୀ ଶକ୍ତିରେ ପରିଣତ ହେବ ।

ପୃଥିବୀର ବିଭିନ୍ନ ଧର୍ମର ଉତ୍ଥାନ-ପତନର ପ୍ରଶ୍ନ ଯେତେବେଳେ ଏକ ସଙ୍ଗେ ଗ୍ରଥିତ, ସେତେବେଳେ ଏମାନଙ୍କର ପ୍ରୟୋଜନ ପାରସ୍ପରିକ ଶ୍ରଦ୍ଧା ଓ ମର୍ଯ୍ୟାଦାରୁ ଉଦ୍‌ଭୂତ ସୌଭ୍ରାତ୍ର; କିନ୍ତୁ ଦୁର୍ଭାଗ୍ୟବଶତଃ ବର୍ତ୍ତମାନ ପ୍ରଚଳିତ ଅନେକ ଧର୍ମ ଯେଉଁଭାବରେ ଅନ୍ୟ ଧର୍ମ ପ୍ରତି ବିନୀତ ସାନୁଗ୍ରହ ଓ କୃପଣୋଚିତ ସଦିଚ୍ଛା ପ୍ରକାଶ କରନ୍ତି ତାହା ଉଚିତ ନୁହେ । ସର୍ବୋପରି ଦୁଇ ପ୍ରକାର ବିଶେଷ ମତବାଦ ମଧ୍ୟରେ ଏ ପ୍ରକାର ଭ୍ରାତୃଭାବ ସ୍ଥାପନ କରିବା ଅତ୍ୟନ୍ତ ଆବଶ୍ୟକ ହୋଇପଡ଼ିଛି । ଏମାନଙ୍କ ମଧ୍ୟରୁ ପ୍ରଥମ ଦଳର ଧର୍ମର ବିଭିନ୍ନ ବିକାଶ ମନସ୍ତତ୍ତ୍ୱର ଆଲୋଚନାରୁ ହିଁ ଉଦ୍‌ଭୂତ ହୁଏ; ଦୁରଦୃଷ୍ଟବଶତଃ ଏବେ ମଧ୍ୟ ଏମାନେ କହନ୍ତି ଯେ, ସେମାନଙ୍କର ଧର୍ମ ହିଁ ଏକମାତ୍ର 'ଧର୍ମ' ନାମକରଣର ଯୋଗ୍ୟ । ଅନ୍ୟ ଦଳେ ଅଛନ୍ତି, ସେମାନେ ନିଜର ପାଦକୁ ମାଟିରେ ରଖି ମସ୍ତିଷ୍କକୁ ସ୍ୱର୍ଗର ରହସ୍ୟ ଉଦ୍‌ଘାଟନ କରିବାରେ ଲଗାଇ ଥାଆନ୍ତି—ବର୍ତ୍ତମାନ ମୁଁ ତଥାକଥିତ ଜଡ଼ବାଦୀ ବୈଜ୍ଞାନିକମାନଙ୍କ କଥା ହିଁ କହୁଛି ।

ସମନ୍ୱୟ ଆଣିବାକୁ ହେଲେ ଉଭୟ ଦଳକୁ କିଛି କିଛି ତ୍ୟାଗ ସ୍ୱୀକାର କରିବାକୁ ହେବ । ସମୟ ସମୟରେ ଏହି ତ୍ୟାଗର ମାତ୍ରା ଅଧିକ ପ୍ରୟୋଜନ ହୋଇପାରେ—ଯାହାକି ଯନ୍ତ୍ରଣାଦାୟକ ମଧ୍ୟ ହୋଇପାରେ । କିନ୍ତୁ ଏହି ତ୍ୟାଗ ଫଳରେ ପ୍ରତ୍ୟେକ ଦଳ ନିଜକୁ ଏକ ଉନ୍ନତତର ସ୍ତରକୁ ଉନ୍ନୀତ କରି ସତ୍ୟରେ ଅଧିକତର ପ୍ରତିଷ୍ଠିତ ହେବାର ଦେଖିବାକୁ ପାଇବେ । ଏହାର ପରିଣାମସ୍ୱରୂପ ଯେଉଁ ଜ୍ଞାନକୁ ଦେଶ ଓ କାଳ ମଧ୍ୟରେ ପରିଚ୍ଛିନ୍ନ ରଖାଯାଇଛି, ତାହା ପରସ୍ପର ମିଳିତ ହୋଇ ଦେଶ ଓ କାଳାତୀତ ଏପରି ଏକ ସତ୍ତା ସହିତ ଏକୀଭୂତ ହେବେ, ଯେଉଁଠାକୁ ମନ ଓ ଇନ୍ଦ୍ରିୟଗୁଡ଼ିକ ଯିବା ପାଇଁ ଅକ୍ଷମ, ଯାହା ସର୍ବାତୀତ, ଅନନ୍ତ ଓ 'ଏକମେବାଦ୍ୱିତୀୟମ୍' ।

# ଯୁକ୍ତି ଓ ଧର୍ମ

[ଇଂଲଣ୍ଡରେ ପ୍ରଦତ୍ତ ବକ୍ତୃତା]

ମହର୍ଷି ନାରଦ ମହର୍ଷି ସନତ୍କୁମାରଙ୍କ ପାଖକୁ ସତ୍ୟଲାଭ ପାଇଁ ଆସିଥିଲେ । ସନତ୍କୁମାର ତାଙ୍କୁ ପଚାରିଲେ, "ଆପଣ ଏପର୍ଯ୍ୟନ୍ତ କେଉଁ କେଉଁ ବିଷୟମାନ ଅଧ୍ୟୟନ କରିଛନ୍ତି ?" ନାରଦ କହିଲେ, "ମୁଁ ବେଦ, ଜ୍ୟୋତିଷଶାସ୍ତ୍ର ଇତ୍ୟାଦି ଅନେକ ବିଷୟ ଅଧ୍ୟୟନ କରିଛି, କିନ୍ତୁ କୌଣସିଥିରେ ତୃପ୍ତ ହୋଇପାରି ନାହିଁ ।" ଏହିପରି ଦୁଇ ଋଷିଙ୍କ ମଧ୍ୟରେ କଥାବାର୍ତ୍ତା ଚାଲିଲା । ପ୍ରସଙ୍ଗକ୍ରମେ ସନତ୍କୁମାର କହିଲେ, "ବେଦ, ଜ୍ୟୋତିଷ-ଶାସ୍ତ୍ର ଓ ଦର୍ଶନଶାସ୍ତ୍ର ସମ୍ବନ୍ଧୀୟ ଜ୍ଞାନ ଗୌଣ ଅଟେ; ବିଜ୍ଞାନ ମଧ୍ୟ ଗୌଣ । ଯେଉଁ ଜ୍ଞାନ ଦ୍ୱାରା ଆମମାନଙ୍କର ବ୍ରହ୍ମ-ଉପଲବ୍ଧି ହୁଏ, ତାହା ହିଁ ଚରମ ଜ୍ଞାନ—ସର୍ବୋଚ୍ଚ ଜ୍ଞାନ ।" ପ୍ରତ୍ୟେକ ଧର୍ମରେ ଏହି ପ୍ରକାର ଧାରଣା ଦେଖାଯାଏ ଏବଂ ଏଇଥିପାଇଁ ସର୍ବୋଚ୍ଚ ଜ୍ଞାନ ବୋଲି ଧର୍ମର ଦାବି ଚିରନ୍ତନ । ବିଜ୍ଞାନ ଆମମାନଙ୍କର ଜୀବନର ଏକ ଅଂଶ ସହିତ ଜଡ଼ିତ । କିନ୍ତୁ ଧର୍ମ ଆମମାନଙ୍କ ନିକଟକୁ ଯେଉଁ ଜ୍ଞାନ ଆଣିଦିଏ, ତାହା ଚିରନ୍ତନ; ଏହା ଯେଉଁ ସତ୍ୟ ପ୍ରଚାର କରେ ସେହି ସତ୍ୟପରି ଏହି ଜ୍ଞାନ ମଧ୍ୟ ସୀମାହୀନ । କିନ୍ତୁ ଦୁର୍ଭାଗ୍ୟର କଥା, ଧର୍ମ ତାର ଶ୍ରେଷ୍ଠତ୍ୱର ଦାବି ସତ୍ତ୍ୱେ ସର୍ବଦା ଜାଗତିକ ଜ୍ଞାନକୁ ବାରମ୍ବାର ଉପେକ୍ଷା କରିଛି । କେବଳ ତାହା ନୁହେଁ, ଜାଗତିକ ଜ୍ଞାନଦ୍ୱାରା ଏହା ନ୍ୟାୟସଙ୍ଗତ ବୋଲି ସମର୍ଥିତ ହେବାକୁ ମଧ୍ୟ ଧର୍ମ ଅସ୍ୱୀକାର କରିଥାଏ । ଏହାଫଳରେ ଜଗତରେ ସର୍ବତ୍ର ଧର୍ମଜ୍ଞାନ ଓ ଜାଗତିକ ଜ୍ଞାନ ମଧ୍ୟରେ ବିରୋଧ ଲାଗି ରହିଛି । ଗୋଟିଏ ପକ୍ଷର ଆଚାର୍ଯ୍ୟ ବିଭିନ୍ନ ଶାସ୍ତ୍ରମାନଙ୍କର ଅଭ୍ରାନ୍ତ ପ୍ରମାଣଗୁଡ଼ିକୁ ପଥ-ନିର୍ଦ୍ଦେଶକରୂପେ ଦାବି କରିଛନ୍ତି ଏବଂ ଜାଗତିକ ଜ୍ଞାନର ଏହି ବିଷୟରେ ଯାହା କହିବାର ଅଛି, ତାହା ଶୁଣିବାକୁ ଚାହିଁ ନାହାନ୍ତି । ଅନ୍ୟ ପକ୍ଷ ଯୁକ୍ତିରୂପକ ଶାଣିତ ଅସ୍ତ୍ରଦ୍ୱାରା ଧର୍ମ ଯାହା କିଛି କହିବାକୁ ଚାହେଁ, ତାହାକୁ ଖଣ୍ଡ ଖଣ୍ଡ କରି କାଟିବାକୁ ଚାହିଁଛନ୍ତି । ପ୍ରତ୍ୟେକ ଦେଶରେ ଏପରି ସଂଗ୍ରାମ ଚାଲି ଆସିଛି ଏବଂ ଏପର୍ଯ୍ୟନ୍ତ ମଧ୍ୟ ଚାଲିଅଛି । ଧର୍ମ ବାରମ୍ବାର ପରାଜିତ ଓ ପ୍ରାୟ ବିନଷ୍ଟ ହୋଇଅଛି । ମାନବର-ଇତିହାସରେ 'ଯୁକ୍ତି-ଦେବତାଙ୍କ ଉପାସନା' ଯେ କେବଳ ଫରାସୀ ବିପ୍ଳବ ସମୟରେ ଆତ୍ମପ୍ରକାଶ କରିଛି ତାହା ନୁହେଁ—ଏହା ପୂର୍ବରୁ ଥିଲା ଏବଂ ଫରାସୀ ବିପ୍ଳବ ଏହାର ପୁନରାଭିନୟ ମାତ୍ର । କିନ୍ତୁ ବର୍ତ୍ତମାନ ଯୁଗରେ ଏହା ଅତିମାତ୍ରାରେ ବଢ଼ିଯାଇଛି । ଜଡ଼-ବିଜ୍ଞାନଗୁଡ଼ିକ ପୂର୍ବାପେକ୍ଷା ବର୍ତ୍ତମାନ ଏଥିପାଇଁ ଅଧିକ ପ୍ରସ୍ତୁତ । କିନ୍ତୁ ଧର୍ମର ପ୍ରସ୍ତୁତି ସେହି ତୁଳନାରେ କମିଯାଇଛି ଓ ତାର ଭିତ୍ତିଗୁଡ଼ିକ ଶିଥିଳ ହୋଇପଡ଼ିଛି । କିନ୍ତୁ ବର୍ତ୍ତମାନର ମନୁଷ୍ୟ ପ୍ରକାଶ୍ୟରେ ଯାହା କହୁନା କାହିଁକି, ତାହାର ଅନ୍ତରର ନିଭୃତ ହୃଦେଶରେ ଏ ପ୍ରକାର ଏକ ଅନୁଭୂତି ଜାଗ୍ରତ ହୋଇଛି ଯେ, ସେ ଆଉ କିଛି ବିଶ୍ୱାସ

କରିପାରୁ ନାହିଁ । ଆଧୁନିକ ମାନବ ଜାଣୁଛି ଯେ, ତାକୁ ପୁରୋହିତସମ୍ପ୍ରଦାୟ କୌଣସି କଥା କହୁଛନ୍ତି ବୋଲି ବା ଶାସ୍ତ୍ରରେ କୌଣସି କଥା ଲେଖାହୋଇଛି ବୋଲି ବା ତାହାର ବନ୍ଧୁବାନ୍ଧବ କୌଣସି କଥା ଶୁଣୁଛନ୍ତି ବୋଲି ସେ ତାହା ବିଶ୍ୱାସ କରିବ—ଏକଥା ତାହା ପକ୍ଷରେ ସମ୍ଭବ ନୁହେଁ । ଅବଶ୍ୟ ଏପରି କେତେକ ଲୋକ ଅଛନ୍ତି, ଯେଉଁମାନେ ସାଧାରଣ ଲୋକପ୍ରିୟ ବିଶ୍ୱାସରେ ସମ୍ମତ ବୋଲି ମନେ ହୁଅନ୍ତି, କିନ୍ତୁ ଏହିମାନେ ବିଷୟ ସମ୍ବନ୍ଧରେ ଚିନ୍ତା ନ କରି ଏ ପ୍ରକାର ସମ୍ମତି ଜଣାଇଥିବାର ଦେଖାଯାଏ । ଏହିମାନେ ବିଶ୍ୱାସ କରୁଥିବା ଭାବଟିକୁ 'ଚିନ୍ତାହୀନ ଅନବଧାନତା' କହିଲେ ଚଳେ । ଏହି ସଂଗ୍ରାମ ବେଶୀ ଦିନ ଚାଲିପାରିବ ନାହିଁ ଏବଂ ଯଦି ଚାଲିବ ତେବେ ଧର୍ମର ସମସ୍ତ ଅଟ୍ଟାଳିକା ଭାଙ୍ଗି ଖଣ୍ଡ ଖଣ୍ଡ ହୋଇଯିବ ।

ପ୍ରଶ୍ନ ହେଲା, ଏଥିରୁ ମୁକ୍ତି ପାଇବାର କିଛି ଉପାୟ ଅଛି କି ? ଆହୁରି ସ୍ପଷ୍ଟଭାବରେ କହିବାକୁ ଗଲେ ଅନ୍ୟାନ୍ୟ ବିଜ୍ଞାନଗୁଡ଼ିକ ସେମାନଙ୍କର ଆବିଷ୍କାରର ସାହାଯ୍ୟ ନେଇ ଯେପରି ଯୁକ୍ତି ବାଢ଼ି ନିଜକୁ ସମର୍ଥନ କରୁଛନ୍ତି ଧର୍ମ କିଣ ଆତ୍ମସମର୍ଥନ ପାଇଁ ସେମାନଙ୍କର ସାହାଯ୍ୟ ନେବ ? ବାହାର ଜଗତରେ ବିଜ୍ଞାନ ଓ ଜ୍ଞାନ-କ୍ଷେତ୍ରରେ ତତ୍ତ୍ୱ ଅନୁସନ୍ଧାନ ପାଇଁ ଯେଉଁ ପଦ୍ଧତି ଅବଲମ୍ବନ କରାଯାଏ, ଧର୍ମ-ବିଜ୍ଞାନ କ୍ଷେତ୍ରରେ କଅଣ ସେହି ପ୍ରକାରର ପଦ୍ଧତି ଅବଲମ୍ବନ କରାହେବ ? ମୋ ମତରେ ତାହା ହିଁ ହେବା ଉଚିତ । ଯେତେ ଶୀଘ୍ର ତାହା ହେବ ସେତେ ମଙ୍ଗଳ ବୋଲି ମୁଁ ମନେ କରେ । ଏହିପରି ଅନୁସନ୍ଧାନ କରିବା ଫଳରେ ଯଦି କୌଣସି ଧର୍ମ ବିନଷ୍ଟ ହୋଇଯାଏ, ତେବେ ବୁଝିବାକୁ ହେବ ଯେ ସେ ଧର୍ମ ଥିଲା ଅନାବଶ୍ୟକ ଓ ଏକ କୁସଂସ୍କାରମାତ୍ର । ଯେତେ ଶୀଘ୍ର ତାହା ଲୋପ ପାଏ ସେତେ ମଙ୍ଗଳ । ମୋର ବିଶ୍ୱାସ ଯେ ଏପ୍ରକାର ଧର୍ମର ବିନାଶଦ୍ୱାରା ସର୍ବାଧିକ କଲ୍ୟାଣ ହେବ । ଏ ପ୍ରକାର ଅନୁସନ୍ଧାନ ଫଳରେ ଧର୍ମ ମଧ୍ୟରେ ଯେଉଁ ଖରାପ ଜିନିଷ ଥିବ, ତାହା ନିଃସନ୍ଦେହରେ ଦୂରୀଭୂତ ହେବ ଏବଂ ଧର୍ମର ସାର ଜିନିଷମାନ ବିଜୟ-ଗୌରବ ନେଇ ଦଣ୍ଡାୟମାନ ହେବେ । ପଦାର୍ଥବିଜ୍ଞାନ ଓ ରସାୟନବିଜ୍ଞାନର ସିଦ୍ଧାନ୍ତଗୁଡ଼ିକ ଯେତେଦୂର ବିଜ୍ଞାନସମ୍ମତ, ଧର୍ମ ଯେ ସେତିକି ବିଜ୍ଞାନସମ୍ମତ ହେବ ତାହା ନୁହେଁ, ବରଂ ତାହାଠାରୁ ଅଧିକ ହେବ, କାରଣ ଜଡ଼ବିଜ୍ଞାନର ସତ୍ୟସମୂହ ସପକ୍ଷରେ ସାକ୍ଷ୍ୟ ଦେବାକୁ ଆଭ୍ୟନ୍ତରୀଣ ଆଦେଶ ବା ନିର୍ଦ୍ଦେଶ ବୋଲି କିଛି ନାହିଁ, ଯାହା ଧର୍ମର ଅଛି ।

ଯେଉଁ ବ୍ୟକ୍ତି ଧର୍ମାନ୍ତର୍ଗତ କୌଣସି ଯୁକ୍ତିସଙ୍ଗତ ତତ୍ତ୍ୱ ଅନୁସନ୍ଧାନର ଉପଯୋଗିତା ଅସ୍ୱୀକାର କରନ୍ତି, ସେମାନେ ଆତ୍ମବିରୋଧୀ କାର୍ଯ୍ୟ କରନ୍ତି ବୋଲି ମୋର ମନେ ହୁଏ । ଉଦାହରଣସ୍ୱରୂପ, ଖ୍ରୀଷ୍ଟିଆନମାନେ ନିଜର ଧର୍ମକୁ ଏକମାତ୍ର ସତ୍ୟ ଧର୍ମ ବୋଲି ଦାବି କରନ୍ତି । ଏହାର କାରଣ, ଏହି ଧର୍ମ ଅମୁକ ବ୍ୟକ୍ତିମାନଙ୍କ ନିକଟରେ ପ୍ରକାଶିତ ହୋଇଛି । ମୁସଲମାନମାନଙ୍କର ମଧ୍ୟ ସେହିପ୍ରକାର ଦାବି । ସେମାନେ କହନ୍ତି—ତାଙ୍କର ଧର୍ମ ଏହି ଏହି ବ୍ୟକ୍ତିଙ୍କ ନିକଟରେ ପ୍ରତ୍ୟାଦିଷ୍ଟ ହୋଇଥିବାରୁ ଏହା ଏକମାତ୍ର ସତ୍ୟ । କିନ୍ତୁ ଖ୍ରୀଷ୍ଟିୟାନ-ମାନେ ମୁସଲମାନମାନଙ୍କୁ କହନ୍ତି, "ତୁମମାନଙ୍କର ମତଶାସ୍ତ୍ରରେ କେତେକ ବିଷୟ ଠିକ୍

ବୋଲି ମନେ ହୁଏ ନାହିଁ । ଗୋଟିଏ ଉଦାହରଣ ଦିଆଯାଉ । ଦେଖ ମୁସଲମାନ ଭାଇ, ତୁମ ଶାସ୍ତ୍ର କହେ—କାଫେର୍‌କୁ ଜବରଦସ୍ତି ମୁସଲମାନ କରାଯାଇପାରେ; ସେ ଯଦି ମୁସଲମାନ ଧର୍ମରେ ଦୀକ୍ଷିତ ହେବାକୁ ନ ଚାହେଁ, ତେବେ ତାହାକୁ ହତ୍ୟା କରାଯାଇପାରେ । ଏହିପରି କାଫେର୍‌କୁ ଯେଉଁ ମୁସଲମାନ ହତ୍ୟା କରେ, ସେ ଯେତେ ଗର୍ହିତ କର୍ମ ଏବଂ ପାପ କରିଥିଲେ ମଧ୍ୟ ତାହାର ସ୍ୱର୍ଗଲାଭ ନିଶ୍ଚୟ ହେବ ।" ମୁସଲମାନମାନେ ଏହାର ବିଦ୍ରୂପାତ୍ମକ ଉତ୍ତର ଦେଇ କହନ୍ତି—"ଏହା ଶାସ୍ତ୍ରର ଆଦେଶ ହୋଇଥିବାରୁ ଆମର ଏପ୍ରକାର କରିବା ହିଁ ସଙ୍ଗତ । ଏହା ନ କରିବା ହିଁ ଆମ ପକ୍ଷରେ ଅନ୍ୟାୟ ।" ଖ୍ରୀଷ୍ଟିୟାନମାନେ କହନ୍ତି "ଆମ ଶାସ୍ତ୍ର କିନ୍ତୁ ଏ ପ୍ରକାର କହେ ନାହିଁ ।" ମୁସଲମାନମାନେ ତାର ଉତ୍ତରରେ କହନ୍ତି, "ସେକଥା ଆମେ ଜାଣୁ ନାହିଁ । ତୁମର ଶାସ୍ତ୍ରର ନିୟମ ମାନିବାକୁ ଆମେ ବାଧ୍ୟ ନୋହୁଁ, ଆମ ଶାସ୍ତ୍ର କହେ—ସବୁ କାଫେର୍‌ଙ୍କୁ ହତ୍ୟା କର । କେଉଁଟା ଭୁଲ କେଉଁଟି ଠିକ୍ ତୁମେ କିପରି ଜାଣିଲ ? ଆମ ଶାସ୍ତ୍ରରେ ଯାହା ଲେଖାଅଛି ତାହା ହିଁ ନିଶ୍ଚୟ ଠିକ୍ । ତୁମ ଶାସ୍ତ୍ରରେ ହତ୍ୟା କରିବାକୁ ମନା କରାଯିବାଟା ଭୁଲ । ଭାଇ ଖ୍ରୀଷ୍ଟିୟାନ ! ତୁମେ ତ ପୁଣି କୁହ ଯେ ଜିହୋବା ଇହୁଦୀଙ୍କୁ ଯାହା କହିଛନ୍ତି, ତାହା ହିଁ ଯଥାର୍ଥ କର୍ତ୍ତବ୍ୟ ଏବଂ ସେ ଯେଉଁ କଥା କରିବାକୁ ମନା କରିଛନ୍ତି ତାହା କରିବା ଅନ୍ୟାୟ । ଆମେ ସେହି କଥା ହିଁ କହୁଁ । ଆମ ଶାସ୍ତ୍ରରେ ଆଲ୍ଲା କେତେକ ବିଷୟକୁ କର୍ତ୍ତବ୍ୟ ଓ କେତେକ ବିଷୟକୁ କର୍ତ୍ତବ୍ୟ ନୁହେଁ ବୋଲି ନିର୍ଦ୍ଦିଷ୍ଟ କରି ଦେଇଛନ୍ତି—ନ୍ୟାୟ ଅନ୍ୟାୟ ନିର୍ଣ୍ଣୟ କରିବାର ତାହା ହିଁ ଚୂଡ଼ାନ୍ତ ପ୍ରମାଣ ।" ଖ୍ରୀଷ୍ଟିୟାନମାନେ କିନ୍ତୁ ଏଥିରେ ଖୁସି ନୁହନ୍ତି । ସେମାନେ 'ଶୈଳୋପଦେଶ' (Sermon on the Mount) ସହିତ କୋରାନ୍‌ର ନୀତିଗୁଡ଼ିକୁ ତୁଳନା କରିବାରେ ବ୍ୟସ୍ତ । ତେବେ ଏହାର ମୀମାଂସା କେଉଁଠି ? ଏହା କୌଣସି ଗ୍ରନ୍ଥଦ୍ୱାରା ହୋଇପାରିବ ନାହିଁ । କାରଣ ପରସ୍ପର-ବିବଦମାନ ଗ୍ରନ୍ଥ କେବେ ବିଚାରକ ହୋଇପାରିବେ ନାହିଁ । କାର୍ଯ୍ୟତଃ ଗ୍ରନ୍ଥ ଅପେକ୍ଷା ଅଧିକତର ବିଶ୍ୱଜନୀନ କିଛି ଏପରି ସତ୍ତା ରହିଛି ବୋଲି ଆମକୁ ସ୍ୱୀକାର କରିବାକୁ ହେବ । ଆମକୁ ସ୍ୱୀକାର କରିବାକୁ ହେବ ଯେ, ଗୋଟିଏ କିଛି ଅଛି ଯାହା ବିଶ୍ୱର ସବୁ ନୀତିଶାସ୍ତ୍ର ଅପେକ୍ଷା ଉଚ୍ଚତର, ଯାହା ବିଭିନ୍ନ ଜାତିର ଅନୁପ୍ରେରଣାତ୍ମକ ଶକ୍ତିଗୁଡ଼ିକୁ ତୁଳନାତ୍ମକ ଭାବରେ ବିଚାର କରିପାରିବ । ଆମେମାନେ ଦୃଢ଼କଣ୍ଠରେ, ସ୍ପଷ୍ଟଭାବରେ ପ୍ରକାଶ କରୁ ବା ନ କରୁ, ଏହା ପରିଷ୍କାର ବୁଝାଯାଉଛି ଯେ ବିଚାର କରିବା ପାଇଁ ଆମେମାନେ ଯୁକ୍ତିର ଦ୍ୱାରସ୍ଥ ହେଉଁ ।

ବର୍ତ୍ତମାନ ପ୍ରଶ୍ନ ଉଠୁଛି—ଯୁକ୍ତି ଏହି ଅନୁପ୍ରେରଣାଗୁଡ଼ିକୁ ପରସ୍ପର ସହିତ ତୁଳନା କରି ବିଚାର କରିବାକୁ ସମର୍ଥ କି ନୁହେଁ; ଯେଉଁଠାରେ ଆଚାର୍ଯ୍ୟ ଓ ଆଚାର୍ଯ୍ୟଙ୍କ ମଧ୍ୟରେ ବିରୋଧ ରହିଛି, ସେଠାରେ ଯୁକ୍ତି ନିଜର ପ୍ରଭାବ ଅକ୍ଷୁଣ୍ଣ ରଖିପାରିବ କି ନାହିଁ ଏବଂ ଧର୍ମ ସମ୍ବନ୍ଧୀୟ ସବୁ ବିଷୟ ତାହାର ବୁଝିବାର ସାମର୍ଥ୍ୟ ଅଛି କି ନାହିଁ ? ଯଦି ଏହା ନ ଥାଏ, ତେବେ ଯେଉଁ ପ୍ରବଳ ବିରୋଧ ଆଚାର୍ଯ୍ୟ ଆଚାର୍ଯ୍ୟଙ୍କ ମଧ୍ୟରେ ଏବଂ ଶାସ୍ତ୍ର ଶାସ୍ତ୍ର ମଧ୍ୟରେ ଯୁଗ ଯୁଗ ଧରି ରହିଆସିଛି, ତାହାର ମୀମାଂସା ସମ୍ଭବ ନୁହେଁ । କାରଣସ୍ୱରୂପ ଏହାର

ଏ ପ୍ରକାର ଅର୍ଥ କରାଯାଇପାରେ ଯେ ସବୁ ଧର୍ମ ମିଥ୍ୟା ଏବଂ ଅନ୍ତମାନଙ୍କରେ ପରସ୍ପର-ବିରୋଧୀ ଓ ସେଗୁଡ଼ିକ ମଧ୍ୟରେ ମିଳର କୌଣସି ସ୍ଥାୟୀ ମାନ ନାହିଁ । ଧର୍ମର ପ୍ରମାଣ ମନୁଷ୍ୟର ପ୍ରକୃତିଗତ ସତ୍ୟ ଉପରେ ନିର୍ଭର କରେ—କୌଣସି ଗ୍ରନ୍ଥ ଉପରେ ନୁହେଁ । ଗ୍ରନ୍ଥଗୁଡ଼ିକ ମନୁଷ୍ୟ-ପ୍ରକୃତିର ବହିଃପ୍ରକାଶ, ତାହାର ପରିଣାମ ମାତ୍ର । ମନୁଷ୍ୟ ଗ୍ରନ୍ଥଗୁଡ଼ିକର ସ୍ରଷ୍ଟା । କୌଣସି ଗ୍ରନ୍ଥ ମନୁଷ୍ୟକୁ ଗଢ଼ିଥିବା ଏପର୍ଯ୍ୟନ୍ତ ଦେଖା ଯାଇ ନାହିଁ । ସେହିପରି ଯୁକ୍ତି ମଧ୍ୟ ମନୁଷ୍ୟ-ପ୍ରକୃତିର ଏକ ବିକାଶ । ଏହି ମନୁଷ୍ୟ-ପ୍ରକୃତି ନିକଟରେ ଆମମାନଙ୍କୁ ଆବେଦନ ଜଣାଇବାକୁ ହେବ । କିନ୍ତୁ ଯୁକ୍ତି ହିଁ ମନୁଷ୍ୟ-ପ୍ରକୃତି ସହିତ ଅଙ୍ଗାଙ୍ଗୀ ଜଡ଼ିତ । ତେଣୁ ଯେପର୍ଯ୍ୟନ୍ତ ତାହା ମାନବ-ପ୍ରକୃତିର ଅନୁଗାମୀ ହୋଇ ରହିବ, ସେପର୍ଯ୍ୟନ୍ତ ତାହାର ଆଶ୍ରୟ ନେବା ଉଚିତ । ଯୁକ୍ତି କହିଲେ ମୁଁ କଅଣ ବୁଝାଇବାକୁ ଚାହୁଁଛି ? ବର୍ତ୍ତମାନ ଯୁଗରେ ପ୍ରତ୍ୟେକ ନରନାରୀ ଯାହା କରିବାକୁ ଚାହାଁନ୍ତି ମୁଁ ତାହା ହିଁ କହୁଛି—ଜାଗତିକ ଜ୍ଞାନର ଆବିଷ୍କାରଗୁଡ଼ିକୁ ଧର୍ମ ଉପରେ ପ୍ରୟୋଗ କରିବାକୁ ମୁଁ କହୁଛି । ଯୁକ୍ତିର ପ୍ରଥମ ନିୟମ ହେଲା—ବିଶେଷ ଜ୍ଞାନକୁ ସାଧାରଣ ଜ୍ଞାନଦ୍ୱାରା ବ୍ୟାଖ୍ୟା କରିବା ଏବଂ ସାଧାରଣ ଜ୍ଞାନକୁ ବ୍ୟାପକ ସାଧାରଣ ଜ୍ଞାନଦ୍ୱାରା ବ୍ୟାଖ୍ୟା କରିବା । ଯେତେବେଳ ପର୍ଯ୍ୟନ୍ତ ବିଶ୍ୱଜନୀନତାରେ ଆମେମାନେ ନ ପହଞ୍ଚିଛୁ, ସେତେବେଳ ପର୍ଯ୍ୟନ୍ତ ଏହି ଭାବରେ ଚାଲିବାକୁ ହେବ । ଉଦାହରଣସ୍ୱରୂପ, ନିୟମ କହିଲେ କଣ ବୁଝାଏ ସେ ଧାରଣା ଆମର ଅଛି । କିଛି ଘଟିଲେ ଆମେ ଯଦି ବିଶ୍ୱାସ କରୁ ଯେ ଏହା ନିୟମ ଅନୁସାରେ ଘଟିଛି, ତେବେ ଆମେ ସନ୍ତୁଷ୍ଟ ହେଉ—ଏହା ହିଁ ଆମ ନିକଟରେ କାର୍ଯ୍ୟଟି ସମ୍ବନ୍ଧରେ ଏକ ବ୍ୟାଖ୍ୟା । ଏହି ବ୍ୟାଖ୍ୟାର ଅର୍ଥ ହେଲା, ଆମେ ବୁଝିବାକୁ ଚାହୁଁ ଯେ ପ୍ରଥମେ କାର୍ଯ୍ୟଟି ଦେଖି ଆମେମାନେ ଅତୃପ୍ତ ଥିଲୁ, ବର୍ତ୍ତମାନ ପ୍ରମାଣ ମିଳିଲା ଯେ ଏ ପ୍ରକାର ସହସ୍ର ସହସ୍ର କାର୍ଯ୍ୟ ହୋଇଥାଏ ଏବଂ ବର୍ତ୍ତମାନର କାର୍ଯ୍ୟଟି ସାଧାରଣ କାର୍ଯ୍ୟମାନଙ୍କ ମଧ୍ୟରେ ଏକ ବିଶେଷ କାର୍ଯ୍ୟ ମାତ୍ର । ଏହାକୁ ଆମେ ନିୟମ କହୁ । ଗଛରୁ ଗୋଟିଏ ଆତ ପଡ଼ିବାର ଦେଖି ନିଉଟନଙ୍କ ମନରେ ଏକ ଚଞ୍ଚଳତା ଖେଳି ଯାଇଥିଲା । କିନ୍ତୁ ସେ ଯେତେବେଳେ ଦେଖିଲେ ଯେ ସବୁ ଆତ ଏହିପରି ପଡ଼େ ଓ ଏହା ପୃଥିବୀର ମାଧ୍ୟାକର୍ଷଣ ଶକ୍ତି ଯୋଗୁ ଘଟୁଛି, ସେତେବେଳେ ସେ ସନ୍ତୁଷ୍ଟ ହେଲେ । ମନୁଷ୍ୟର ଜ୍ଞାନ ଲାଭ କରିବାର ଏହା ଏକ ନିୟମ । ମୁଁ ଜଣେ ମଣିଷକୁ ରାସ୍ତାରେ ଦେଖିଲି । ମନୁଷ୍ୟ ସମ୍ବନ୍ଧରେ ଥିବା ମୋର ବୃହତ୍ତର ଧାରଣାକୁ ନେଇ ତାହାର ତୁଳନା କଲି ଏବଂ ସେହି ବସ୍ତୁକୁ ମନୁଷ୍ୟ ବୋଲି ଜାଣିଲି । ପ୍ରକୃତ ପକ୍ଷରେ କୌଣସି ଏକ ବିଶେଷ ଜିନିଷକୁ ବୁଝିବାକୁ ହେଲେ ତାହାକୁ ସାଧାରଣ ଜିନିଷ ସହିତ ତୁଳନା କରି ଦେଖିବାକୁ ହୁଏ । ସାଧାରଣକୁ ବୃହତ୍ତର ସହିତ ଏବଂ ସର୍ବଶେଷରେ ସବୁ କିଛି ବିଶ୍ୱଜନୀନତା ସହିତ ତୁଳନା କରି ଦେଖିବାକୁ ହେବ । ଅସ୍ତିତ୍ୱର ଧାରଣା ଆମର ସର୍ବଶେଷ ଧାରଣା—ସର୍ବାଧିକ ବିଶ୍ୱଜନୀନ ଧାରଣା । ଅସ୍ତିତ୍ୱ ହିଁ ବିଶ୍ୱଜନୀନ-ବୋଧର ଚୂଡ଼ାନ୍ତ ।

ଆମେମାନେ ସମସ୍ତେ ମନୁଷ୍ୟ । ଏହାର ଅର୍ଥ ହେଲା ଯେ ମନୁଷ୍ୟ ଜାତି ସମ୍ବନ୍ଧରେ ଯେଉଁ ସାଧାରଣ ଧାରଣା ଅଛି, ଆମେମାନେ ତାହାର ଯେପରିକି ଅଂଶବିଶେଷ ।

ମନୁଷ୍ୟ, ବଲେଇ ଏବଂ କୁକୁର – ସମସ୍ତେ ପ୍ରାଣୀ । ମନୁଷ୍ୟ, କୁକୁର ଓ ବଲେଇ— ଏହିମାନେ ପ୍ରାଣୀ ବୋଲି ଆମର ଯେଉଁ ବୃହତ୍ତର ଓ ବ୍ୟାପକ ସାଧାରଣ ଜ୍ଞାନ ଅଛି, ଏମାନେ ତାହାର ଅଂଶ-ବିଶେଷ । କିନ୍ତୁ ମନୁଷ୍ୟ, ବଲେଇ, କୁକୁର, ଲତା ଓ ବୃକ୍ଷ – ଏମାନେ 'ଜୀବନ' ନାମକ ବ୍ୟାପକ ଧାରଣାର ଅନ୍ତର୍ଭୁକ୍ତ । ସମସ୍ତ ଜୀବ ଏବଂ ସମସ୍ତ ବସ୍ତୁକୁ ଅସ୍ତିତ୍ୱରୂପକ ଏକ ଧାରଣାର ଅନ୍ତର୍ଭୁକ୍ତ କରାଯାଇଥାଏ । ଆମେମାନେ ସମସ୍ତେ ଏହି ସାଧାରଣ ଧାରଣାର ଅନ୍ତର୍ଭୁକ୍ତ । ଏହି ପ୍ରକାର ବ୍ୟାଖ୍ୟାର ଅର୍ଥ କୌଣସି ବିଶେଷ ଜ୍ଞାନକୁ ସାଧାରଣ ଜ୍ଞାନର ଅନ୍ତର୍ଭୁକ୍ତ କରିବା ଏବଂ ଅଧିକତର ସମଧର୍ମୀ ବିଷୟର ସନ୍ଧାନ କରିବାକୁ ବୁଝାଏ । ମନ ଯେପରି ତାର ଭଣ୍ଡାରଘରେ ଏହିପରି ଅସଂଖ୍ୟ ସାଧାରଣ ଜ୍ଞାନ ସଞ୍ଚୟ କରି ରଖିଛି । ମନ ଭିତରେ ଯେପରି ଅନେକଗୁଡ଼ିଏ କୋଠରି ଅଛି ଏବଂ ସେଥିରେ ପୃଥକ୍ ପୃଥକ୍ ଭାବରେ ଏହିସବୁ ଧାରଣାକୁ ସୁସଜ୍ଜିତ କରି ରଖା ଯାଇଛି । ଯେତେବେଳେ ଆମେମାନେ ନୂତନ ଜିନିଷ ଦେଖୁ, ମନ ତତ୍‌କ୍ଷଣାତ୍ ଏହି କୋଠରିମାନଙ୍କ ମଧ୍ୟରୁ କୌଣସି ଗୋଟିକରୁ ଅନୁରୂପ ଗୋଟିଏ ଜିନିଷ ବାହାର କରିବାକୁ ଚେଷ୍ଟା କରେ । କୌଣସି କୋଠରିରୁ ଅନୁରୂପ ଜିନିଷଟିଏ ଖୋଜି ପାଇଲେ ନୂତନ ଜିନିଷଟି ସେହି ପ୍ରକୋଷ୍ଠରେ ରଖି ଦିଆଯାଏ । ଆମେମାନେ ସେଥିରେ ସନ୍ତୁଷ୍ଟ ହେଉ ଏବଂ ନୂତନ ଜିନିଷଟି ସମ୍ବନ୍ଧରେ ଜ୍ଞାନଲାଭ ହେଲା ବୋଲି ଭାବୁ । ଜ୍ଞାନ କହିଲେ ଏହା ହିଁ ବୁଝାଏ— ଏହାଠାରୁ ଅଧିକ କିଛି ନୁହେଁ । ମନରେ ଥିବା କୋଠରିମାନଙ୍କ ମଧ୍ୟରେ ଅନୁରୂପ ଜିନିଷ ଦେଖିବାକୁ ନ ମିଳିଲେ, ଆମମାନଙ୍କର ତୃପ୍ତି ଆସେ ନାହିଁ । ଏଥିପାଇଁ ମନ ଭିତରେ ପୂର୍ବରୁ ଏ ପର୍ଯ୍ୟନ୍ତ ଯେତେ ଶ୍ରେଣୀବିଭାଗ ହୋଇଛି, ସେଥିମଧ୍ୟରୁ ଆମର ଆବଶ୍ୟକ ବିଭାଗଟି ଖୋଜି ବାହାର କରିବା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ହୁଏ । କାର୍ଯ୍ୟତଃ ଜ୍ଞାନ କହିଲେ ଶ୍ରେଣୀବିଭାଗକୁ ବୁଝାଏ । ଏହା ପୂର୍ବରୁ ମଧ୍ୟ କୁହାଯାଇଛି । କିନ୍ତୁ ଏହା ବ୍ୟତୀତ ଜ୍ଞାନର ଦ୍ୱିତୀୟ ବ୍ୟାଖ୍ୟା ହେଉଛି—କୌଣସି ବସ୍ତୁର ବ୍ୟାଖ୍ୟା ତାହାର ମଧ୍ୟରୁ ଆସିବା ଆବଶ୍ୟକ, ବାହାରୁ ନୁହେଁ । ଖଣ୍ଡେ ପଥର ଆକାଶକୁ ଫୋପାଡ଼ିଲେ ତାହା ପୁଣି ତଳେ ପଡ଼ିଯାଏ କାହିଁକି ? କେତେକ ଲୋକ ବିଶ୍ୱାସ କରନ୍ତି ଯେ ପଥରଟିକୁ ଗୋଟିଏ ଦୈତ୍ୟ ତଳକୁ ଟାଣିଆଣେ । ଏହିଭଳି ବହୁତ ଘଟଣା ବାସ୍ତବିକ ପ୍ରାକୃତିକ ଘଟଣା ହେଲେ ମଧ୍ୟ ଲୋକଙ୍କର ବିଶ୍ୱାସ ଥିଲା ଯେ, ସେଗୁଡ଼ିକ ପଛରେ ଏକ ଅଲୌକିକ ଶକ୍ତିର ପ୍ରଭାବ ରହିଛି । ଶୂନ୍ୟକୁ ଫୋପଡ଼ାଯିବା ପଥରଟିକୁ ଏକ ଦୈତ୍ୟ ତଳକୁ ଟାଣି ଆଣିବା ବ୍ୟାଖ୍ୟାଟି ପଥର ଭିତରୁ ଆସେ ନାହିଁ—ଆସେ ବାହାରୁ । ମାଧ୍ୟାକର୍ଷଣ ପ୍ରଭାବରୁ ପଥରଟି ତଳେ ପଡ଼ିଯାଏ— ଏହି କଥାଟି ପଥରର ସ୍ୱଭାବଗତ ଗୁଣ ଓ ଏପ୍ରକାର ବ୍ୟାଖ୍ୟା ବସ୍ତୁର ଅଭ୍ୟନ୍ତରରୁ ଆସିଛି । ଆଧୁନିକ ଚିନ୍ତା-ଜଗତରେ ଏ ପ୍ରକାର ବ୍ୟାଖ୍ୟା କରିବାର ପ୍ରବୃତ୍ତି ବର୍ତ୍ତମାନ ସର୍ବତ୍ର ଦେଖାଯାଏ । ବିଜ୍ଞାନ କହିଲେ ବସ୍ତୁର ବ୍ୟାଖ୍ୟା ତାହାର ପ୍ରକୃତି ମଧ୍ୟରେ ରହିଛି ବୋଲି ବୁଝାଯାଏ । ବିଶ୍ୱର ଘଟଣାବଳୀମାନଙ୍କର ବ୍ୟାଖ୍ୟା ପାଇଁ ବାହାରର କୌଣସି ବ୍ୟକ୍ତି ବା ବସ୍ତୁର ସାହାଯ୍ୟ ନେବାର ପ୍ରୟୋଜନ ହୁଏ ନାହିଁ । ରସାୟନିକ ପରିବର୍ତ୍ତନର ବ୍ୟାଖ୍ୟା

କରିବା ପାଇଁ କୌଣସି ରସାୟନବିଦ୍ ଭୂତ, ପ୍ରେତ ବା ଦାନବର ସାହାଯ୍ୟ ଲୋଡ଼ନ୍ତି ନାହିଁ । କୌଣସି ପଦାର୍ଥବିଦ୍ ବା ଅନ୍ୟ କୌଣସି ବୈଜ୍ଞାନିକ ତାଙ୍କର ନିଜ ବିଷୟବସ୍ତୁର ବ୍ୟାଖ୍ୟା କରିବା ପାଇଁ ଏହିସବୁ ଦୈତ୍ୟଦାନବମାନଙ୍କର ଉପସ୍ଥାପନା କରନ୍ତି ନାହିଁ । ବିଜ୍ଞାନର ଏହା ହିଁ ପ୍ରଣାଳୀ ଏବଂ ଏହାକୁ ମୁଁ ଧର୍ମ ଉପରେ ପ୍ରୟୋଗ କରିବାକୁ ଚାହେଁ । ଧର୍ମଗୁଡ଼ିକ ମଧ୍ୟରେ ଏହାର ଅଭାବ ରହିଛି ଏବଂ ସେଥିପାଇଁ ସେମାନେ ଭାଗ ଭାଗ ହୋଇ ଯାଉଛନ୍ତି । ପ୍ରତ୍ୟେକ ବିଜ୍ଞାନ ଅଭ୍ୟନ୍ତରରୁ ଅର୍ଥାତ୍ ବସ୍ତୁର ପ୍ରକୃତି ମଧ୍ୟରୁ ବ୍ୟାଖ୍ୟା ଚାହେଁ । ଧର୍ମଗୁଡ଼ିକ ଏ ପ୍ରକାର ବ୍ୟାଖ୍ୟା ଦେଇପାରନ୍ତି ନାହିଁ । ପ୍ରାଚୀନ କାଳରୁ ଗୋଟିଏ ମତ ଅଛି ଯେ ଈଶ୍ୱର ଏକ ବ୍ୟକ୍ତି-ବିଶେଷ ଏବଂ ସେ ବିଶ୍ୱଠାରୁ ଏକ ପୃଥକ୍ ସତ୍ତା । ଏହି ମତ ସପକ୍ଷରେ ଯୁକ୍ତି କରାଯାଏ ଯେ ବିଶ୍ୱଠାରୁ ପୃଥକ୍ ଅତିପ୍ରାକୃତିକ ଜଣେ ଈଶ୍ୱରଙ୍କର ପ୍ରୟୋଜନ ଅଛି । ଏହି ଈଶ୍ୱର ଇଚ୍ଛା ମାତ୍ରେ ବିଶ୍ୱ ସୃଷ୍ଟି କରିଥିଲେ ଏବଂ ଧର୍ମ ବିଶ୍ୱାସ କରେ ଯେ, ସେହି ଈଶ୍ୱର ହିଁ ବିଶ୍ୱର ନିୟନ୍ତା । ଏହିସବୁ ଯୁକ୍ତି ବ୍ୟତୀତ ଈଶ୍ୱରଙ୍କୁ ସର୍ବ-ଶକ୍ତିମାନ ଓ ସମସ୍ତଙ୍କ ପ୍ରତି କରୁଣାମୟ ବୋଲି ବର୍ଣ୍ଣନା କରାଯାଉଛି । କିନ୍ତୁ ସଙ୍ଗେ ସଙ୍ଗେ ଜଗତର ବୈଷମ୍ୟ ମଧ୍ୟ ରହିଛି, ଆମେ ଦେଖିବାକୁ ପାଉ । ଦାର୍ଶନିକମାନେ ଏସବୁ କଥା ନେଇ ଆଦୌ ଚିନ୍ତା କରନ୍ତି ନାହିଁ । ସେମାନଙ୍କ ମତରେ ଏପରି ଯୁକ୍ତି ପଛରେ ଅଜ୍ଞତା ରହିଛି । ଏହି ବ୍ୟାଖ୍ୟା ବାହାରୁ ଆସିଛି—ଭିତରୁ ଆସିନାହିଁ । ବିଶ୍ୱ-ସୃଷ୍ଟିର କାରଣ କ'ଣ ? କୌଣସି ଏକ ବ୍ୟକ୍ତି ବାହାରେ ରହି ଏହି ବିଶ୍ୱକୁ କ'ଣ ପରିଚାଳନା କରୁଛି ? ଶୂନ୍ୟକୁ ଉତ୍କ୍ଷିପ୍ତ ପ୍ରସ୍ତରଖଣ୍ଡିକ ତଳେ ପଡ଼ିବା ଘଟଣାକୁ ଏହିପରି ବ୍ୟାଖ୍ୟା କଲେ ତାହା ଯେପରି ଉପଯୁକ୍ତ ବୋଲି ଧରାଯାଏ ନାହିଁ, ଧର୍ମକୁ ମଧ୍ୟ ସେହିପରି ବ୍ୟାଖ୍ୟା କରିବା ଠିକ୍ ନୁହେଁ । ଧର୍ମର ଉପଯୁକ୍ତ ବ୍ୟାଖ୍ୟା ନ ହେବାରୁ ତାହା ଭାଙ୍ଗି ଖଣ୍ଡ ଖଣ୍ଡ ହୋଇଯାଉଛି ।

ପ୍ରତ୍ୟେକ ବସ୍ତୁର ବ୍ୟାଖ୍ୟା ତାହାର ଅନ୍ତରରୁ ଆସେ । ଆଧୁନିକ ବିବର୍ତ୍ତନବାଦ ମଧ୍ୟ ଏ ପ୍ରକାର ଧାରଣା ସହିତ ସଶ୍ଳିଷ୍ଟ । ଉଭୟ ଏକ ମୂଳତତ୍ତ୍ୱର ଅଭିବ୍ୟକ୍ତି । ବସ୍ତୁର ସ୍ୱଭାବ ପୁନଃପ୍ରକାଶିତ ହୁଏ—ଏହା ହିଁ ବିବର୍ତ୍ତନବାଦର ସରଳ ଅର୍ଥ । କାରଣର ଅବସ୍ଥାନ୍ତର ହିଁ କାର୍ଯ୍ୟ ଏବଂ କାର୍ଯ୍ୟର ସମ୍ଭାବନା କାରଣ ଭିତରେ ଥାଏ । ସମଗ୍ର ବିଶ୍ୱ ତାହାର ମୂଳ ସତ୍ତାର ଅଭିବ୍ୟକ୍ତି ମାତ୍ର । ଏହା ଶୂନ୍ୟରୁ ସୃଷ୍ଟ ହୋଇନାହିଁ । ପ୍ରତ୍ୟେକକାର୍ଯ୍ୟ ତାହାର ପୂର୍ବବର୍ତ୍ତୀ କୌଣସି କାରଣର ପୁନରଭିବ୍ୟକ୍ତି, ବିଭିନ୍ନ ପରିସ୍ଥିତିରେ କେବଳ ତାହାର ଅବସ୍ଥାନ୍ତର ଘଟିଥାଏ । ସମଗ୍ର ବିଶ୍ୱରେ ଏହା ହିଁ ଘଟୁଛି । କାର୍ଯ୍ୟତଃ ସବୁପ୍ରକାର ପରିବର୍ତ୍ତନର କାରଣ ଖୋଜିବା ପାଇଁ ବିଶ୍ୱର ବାହାରକୁ ହାତ ବଢ଼ାଇବାର ପ୍ରୟୋଜନ ନାହିଁ । ବିଶ୍ୱ ଭିତରେ ହିଁ ସେହି କାରଣ ବିଦ୍ୟମାନ । ବିଶ୍ୱ ବାହାରେ କାରଣର ଅନ୍ୱେଷଣ ଧର୍ମକୁ ଭୂମିସାତ୍ କରିଛି । କେତେକ ଧର୍ମ ବିଶ୍ୱାତିରିକ୍ତ ଜଣେ ଈଶ୍ୱରଙ୍କୁ ଧରି ରଖିଥିଲେ ଏବଂ କାହାରି କାହାରି ନିକଟରେ ଈଶ୍ୱର ଏକ ବଡ଼ ମଣିଷ ବ୍ୟତୀତ ଅନ୍ୟ କିଛି ନୁହନ୍ତି । ଏ ପ୍ରକାର ଧାରଣାଗୁଡ଼ିକ ବର୍ତ୍ତମାନ ଆଉ ତିଷ୍ଠିପାରୁ ନାହିଁ । ମନେ ହେଉଛି ଏ ପ୍ରକାର ଧାରଣାଗୁଡ଼ିକୁ ଜୋର୍ କରି ଟାଣିଆଣି ଭୂପତିତ କରାଯାଉଛି । ଧର୍ମକୁ ଭୂମିସାତ୍ କରା-

ହେଉଛି କହିଲେ ମୁଁ ଏହା ବୁଝେ ।

ଏହି ଦୁଇଟି ମୂଳତତ୍ତ୍ୱକୁ ସନ୍ତୁଷ୍ଟ କରିଭଳି ଧର୍ମ ଆଇପାରେ କି ? ମୋର ମନେ ହେଉଛି—ଆଇପାରେ । ସର୍ବପ୍ରଥମେ ସାମାନ୍ୟ କାରଣର ମୂଳତତ୍ତ୍ୱଗୁଡ଼ିକୁ ତୃପ୍ତ କରିବାକୁ ହେବ । ଏହା ସଙ୍ଗେ ସଙ୍ଗେ ବିବର୍ତ୍ତନବାଦର ତତ୍ତ୍ୱଗୁଡ଼ିକୁ ମଧ୍ୟ ସନ୍ତୁଷ୍ଟ କରିବାକୁ ହେବ । ଆମମାନଙ୍କୁ ଏପରି ଏକ ଚରମ ସାମାନ୍ୟ କାରଣରେ ଉପସ୍ଥିତ ହେବାକୁ ପଡ଼ିବ ଯାହା କେବଳ ଯେ ଅଧିକ ବ୍ୟାପକ ହେବ ତାହା ନୁହେଁ—ବରଂ ସେହି ସାମାନ୍ୟ କାରଣରୁ ଯେପରି ସମଗ୍ର ବିଶ୍ୱର ଉଦ୍‌ଭବ ମଧ୍ୟ ହେବ । ଏହାକୁ ନିମ୍ନତମ କାର୍ଯ୍ୟ ସହିତ ସମପ୍ରକୃତିଯୁକ୍ତ ହେବାକୁ ହେବ । ଯାହା କାରଣ, ଯାହା ସର୍ବୋଚ୍ଚ, ଯାହା ଚରମ—ଯାହା ଆଦିକାରଣ, ତାହାକୁ ପରମ୍ପରାଗତ କେତେ-ଗୁଡ଼ିଏ ଅଭିବ୍ୟକ୍ତିରୁ ନାତି ଦୂରତମ, ନିମ୍ନତମ କାର୍ଯ୍ୟ ସହିତ ମଧ୍ୟ ଅଭେଦ୍ୟ ହେବାକୁ ହେବ । ବେଦାନ୍ତର ବ୍ରହ୍ମ ହିଁ ଏହି ସର୍ତ୍ତ ପୂରଣ କରନ୍ତି । କାରଣ, ସାମାନ୍ୟୀକରଣ କରୁ କରୁ ଆମେମାନେ ଯେଉଁଠାରେ ଶେଷରେ ପହଞ୍ଚୁ ତାହା ହିଁ ବ୍ରହ୍ମ । ଏହି ବ୍ରହ୍ମ ନିର୍ଗୁଣ, ଅସ୍ତିତ୍ୱ ଜ୍ଞାନ ଓ ଆନନ୍ଦର ଚରମ ଅବସ୍ଥା (ସଚ୍ଚିଦାନନ୍ଦସ୍ୱରୂପ) । ଆମେମାନେ ଦେଖିଛୁ ମନୁଷ୍ୟର ମନ ଯେଉଁ ଚରମ ସାମାନ୍ୟୀକରଣରେ ପହଞ୍ଚିପାରେ ତାହା ହିଁ 'ଅସ୍ତିତ୍ୱ', ସତ୍ । ଜ୍ଞାନ-ଚିତ୍ କହିଲେ ଆମମାନଙ୍କର ଯେଉଁ ଜ୍ଞାନ ଅଛି ତାହା ନୁହେଁ । ଏହା ସେହି ଜ୍ଞାନର ନିର୍ଯ୍ୟାସ ବା ସୂକ୍ଷ୍ମତମ ଅବସ୍ଥା; ଏହା ହିଁ କ୍ରମ-ଅଭିବ୍ୟକ୍ତି ମାଧ୍ୟମରେ ମନୁଷ୍ୟ ବା ଅପର ପ୍ରାଣୀ ମଧ୍ୟରେ ଜ୍ଞାନରୂପେ ଫୁଟିଉଠେ । ବିଶ୍ୱର ଅନ୍ତରାଳରେ ଯେଉଁ ଚରମ ସତ୍ତା ରହିଅଛି, ଏପରିକି ଚେତନା ପଛରେ ଯାହା ରହିଛି, ଯଦି କେହି ଆପତ୍ତି ନ କରନ୍ତି—ତେବେ ମୁଁ କହିବି ଯେ ଏହା ହିଁ ଜ୍ଞାନର ସୂକ୍ଷ୍ମସତ୍ତା । 'ଚିତ୍' ବା ବିଶ୍ୱର ବସ୍ତୁସକଳର ସତ୍ତାଗତ ଏକତ୍ୱ କହିଲେ ଯାହା ବୁଝାଏ, ଏହା ହିଁ ସେହି ଜ୍ଞାନ । ମୋର ମନେହୁଏ, ଆଧୁନିକ ବିଜ୍ଞାନ ଯାହା ପ୍ରମାଣ କରି ଚାଲିଛି ତାହା ଏପରି—ଆମେମାନେ ଏକ, ଏହା ମାନସିକ ବା ଶାରୀରିକ ବା ଆଧ୍ୟାତ୍ମିକ ଇତ୍ୟାଦି ସବୁଦିଗରୁ ସମାନ । ଶରୀର ଦିଗରୁ ଆମେମାନେ ଅଲଗା, ଏକଥା କହିବା ଭୁଲ । ତର୍କ ଦୃଷ୍ଟିରୁ କୁହାଯାଇପାରେ ଆମେମାନେ ଜଡ଼ବାଦୀ । ସେ କ୍ଷେତ୍ରରେ ଆମମାନଙ୍କୁ ଏହି ସିଦ୍ଧାନ୍ତରେ ଉପନୀତ ହେବାକୁ ହେବ ଯେ ସମଗ୍ର ବିଶ୍ୱ ଏକ ଜଡ଼-ସମୁଦ୍ର ଛଡ଼ା ଆଉ କିଛି ନୁହେଁ ଏବଂ ସେହି ଜଡ଼-ସମୁଦ୍ରରେ ତୁମେ ଓ ମୁଁ ଯେପରି କି ଛୋଟ ଛୋଟ ଘୂର୍ଣ୍ଣି ମାତ୍ର । କେତେକ ଜଡ଼ ପଦାର୍ଥ ପ୍ରତ୍ୟେକ ଘୂର୍ଣ୍ଣିର ସ୍ଥାନକୁ ଆସି ଘୂର୍ଣ୍ଣିରେ ପରିଣତ ହୁଏ । ପୁଣି ଜଡ଼ପଦାର୍ଥରୂପେ ବାହାରି ଯାଏ । ଆମର ଶରୀରରେ ଯେଉଁ ଜଡ଼ପଦାର୍ଥ ଅଛି, କେତେକ ବର୍ଷ ପୂର୍ବେ ତାହା ହୁଏତ ତୁମର ଶରୀରରେ ଥିଲା ବା ସୂର୍ଯ୍ୟ ଦେହରେ ଥିଲା ବା ଅନ୍ୟ କୌଣସି ଗ୍ରହରେ ଥିଲା—ଏକ ଅବିରାମ ଗତିଶୀଳ ଅବସ୍ଥାରେ ଥିଲା । ତୁମର ଦେହ ଓ ମୋର ଦେହ ଏ କଥାର ଅର୍ଥ କଣ ? ସବୁ ଦେହ ଏକ । ଚିନ୍ତା-ଜଗତରେ ମଧ୍ୟ ସେହିପରି । ଚିନ୍ତାର ଏକ ଅସୀମପ୍ରସାରି ସମୁଦ୍ର ରହିଛି । ତୁମ ମନ, ମୋ ମନ ସେହି ସମୁଦ୍ରରେ ଗୋଟିଏ ଗୋଟିଏ ଘୂର୍ଣ୍ଣିବିଶେଷ । ତୁମେ କଣ ଏ ବିଷୟରେ ବର୍ତ୍ତି-

ମାନ ପ୍ରତ୍ୟକ୍ଷ କରିପାରୁନାହିଁ ଯେ ତୁମ ଚିନ୍ତା ମୋ ମନରେ ଏବଂ ମୋ ଚିନ୍ତା ତୁମ ମନରେ କିପରି ପ୍ରବେଶ କରୁଛି । ଆମମାନଙ୍କର ସମସ୍ତ ଜୀବନ ଗୋଟିଏ । ଆମେମାନେ ମଧ୍ୟ ଏକ । ଏପରିକି ଚିନ୍ତା ଦିଗରୁ ମଧ୍ୟ ଏକ । ସାମାନ୍ୟୀକରଣ ଦିଗରେ ଆହୁରି ଅଗ୍ରସର ହେଲେ ଜଡ଼ ବସ୍ତୁ ଓ ଚିନ୍ତାର ସୂକ୍ଷ୍ମସତ୍ତା ଆତ୍ମାକୁ ଆମେ ପାଉ । ଏହି ଆତ୍ମା ବା ଏକତ୍ୱ ମଧ୍ୟରୁ ସମସ୍ତ ଅଭିବ୍ୟକ୍ତ ହେଉଛି । ସତ୍ତାର ଦୃଷ୍ଟିରୁ ଆମେମାନେ ସର୍ବୋତୋଭାବେ ଏକ —ଶରୀର ଓ ମନ ଦିଗରୁ ଏବଂ ବିଶ୍ୱାସ ଥିଲେ ଆତ୍ମା ଦିଗରୁ ମଧ୍ୟ ଆମେ ଏକ । ଆଧୁନିକ ବିଜ୍ଞାନ ଏହି କଥା ପ୍ରତିଦିନ ପ୍ରମାଣ କରୁଛି । ଗର୍ବିତ ମନୁଷ୍ୟକୁ କୁହାଯାଏ—ତୁମେ ଯାହା, ଗୋଟିଏ କ୍ଷୁଦ୍ର ପୋକ ମଧ୍ୟ ତାହା; ତୁମେ ଓ ତାହା ମଧ୍ୟରେ ଯେ ଏକ ବିରାଟ ପାର୍ଥକ୍ୟ ଅଛି, ତାହା ଭାବ ନାହିଁ । ତୁମେ ଓ ସେହି ପୋକଟି ଏକ । ପୂର୍ବ ଜନ୍ମରେ ତୁମେ ମଧ୍ୟ ଏହିପରି ଗୋଟିଏ ପୋକ ଥିଲ; ପୋକଟିର କ୍ରମୋନ୍ନତି ହୋଇ କ୍ରମେ ତାହା ମନୁଷ୍ୟରେ ପରିଣତ ହୋଇଛି—ଯେଉଁ ମନୁଷ୍ୟତ୍ୱର ଗର୍ବରେ ତୁମେ ଏତେ ଗର୍ବିତ । ବସ୍ତୁର ଏକତ୍ୱରୂପକ ଏହି ଅପୂର୍ବ ତଥ୍ୟଟି—ଯାହାକିଛିର ଅସ୍ତିତ୍ୱ ଅଛି, ତାହା ସହିତ ଆମମାନଙ୍କୁ ଏକ କରିଦିଏ । ଏହି ତଥ୍ୟଟି ଏକ ମହାନ୍ ଶିକ୍ଷାର ବିଷୟ । ଏହାର କାରଣ ହେଲା—ଆମମାନଙ୍କ ମଧ୍ୟରୁ ଅଧିକାଂଶ ଲୋକ ଉଚ୍ଚତର ଜୀବନ ସଙ୍ଗେ ନିଜକୁ ଏକ କରିପାରିଲେ ଖୁସୀ ହୁଅନ୍ତି; କିନ୍ତୁ ନୀଚତର ଜୀବନ ସାଙ୍ଗରେ ନିଜେ ସମାନ ବୋଲି ଭାବିବାକୁ ଚାହାଁନ୍ତି ନାହିଁ । ମନୁଷ୍ୟର ଏପରି ନିର୍ବୋଧତା ଦେଖାଯାଏ ଯେ, ଯଦି କାହାର ପୂର୍ବପୁରୁଷ ପଶୁତୁଲ୍ୟ, ଦସ୍ୟୁ ବା ଦସ୍ୟୁ-ସରଦାର ହୋଇ ମଧ୍ୟ ସମାଜରେ ପୂଜା ପାଇଥାନ୍ତି, ତେବେ ସେମାନଙ୍କ ସହିତ ଆମେ ନିଜକୁ ଏକ କହି ସେମାନଙ୍କର ବଂଶଧର ବୋଲି ପ୍ରମାଣ କରିବାକୁ, ସେମାନଙ୍କ ସହିତ କୌଣସି ସମ୍ପର୍କ ଖୋଜି ବାହାର କରିବାକୁ ତତ୍ପର ହୋଇପଡ଼ୁ । କିନ୍ତୁ ଆମର ପୂର୍ବପୁରୁଷ ଯଦି ଦରିଦ୍ର, ଭଦ୍ର ଓ ସତ୍ ହୋଇଥାନ୍ତି, ଆମେମାନେ କେହି ସେମାନଙ୍କର ବଂଶଧର ବୋଲି ପରିଚୟ ଦେବାକୁ ଚାହୁଁ ନାହିଁ । କିନ୍ତୁ ବର୍ତ୍ତମାନ ଆମର ଦୃଷ୍ଟିର ସୀମା ବଢ଼ିଯାଇଛି ଏବଂ ସତ୍ୟ କ୍ରମେ ଅଧିକରୁ ଅଧିକତର ପ୍ରକାଶିତ ହେଉଛି । ଏଥିରେ ଧର୍ମର ଯଥେଷ୍ଟ ଲାଭ ହେଉଛି । ମୁଁ ଯେଉଁ ବିଷୟରେ ବକ୍ତୃତା ଦେଉଛି ସେହି ଅଦ୍ୱୈତତତ୍ତ୍ୱ ଏହି କଥା ହିଁ କୁହେ । ବିଶ୍ୱର ମୂଳ ସତ୍ତା ବ୍ରହ୍ମ; ସେସବୁ ଜୀବାତ୍ମାଙ୍କର ସ୍ୱରୂପ । ସେ ହେଉଛନ୍ତି ତୁମ ଜୀବନର ପରମ ଧନ । ସେତିକି କହିଲେ ଯଥେଷ୍ଟ ନୁହେଁ । ତୁମେ ହିଁ ସେହି ବ୍ରହ୍ମ—'ତତ୍ତ୍ୱମସି' । ବିଶ୍ୱ ସହିତ ତୁମେ ଏକୀଭୂତ । ଯେଉଁ ବ୍ୟକ୍ତି ଯେଉଁ ମୁହୂର୍ତ୍ତିରୁ ଅନ୍ୟଠାରୁ ନିଜକୁ ଟିକିଏ ପାର୍ଥକ୍ୟ କରି ଦେଖେ, ସେହି ସମୟରୁ ସେ ଦୁଃଖୀ ହୁଏ । କିନ୍ତୁ ଯେଉଁ ବ୍ୟକ୍ତି ଏକତ୍ୱ-ବୋଧ ସମ୍ବନ୍ଧରେ ସଚେତନ, ଯେ ନିଜକୁ ବିଶ୍ୱ ସହିତ ଏକ ବୋଲି ଜାଣେ, ସେହି ବ୍ୟକ୍ତି ସୁଖର ଅଧିକାରୀ ।

କାର୍ଯ୍ୟତଃ ଦେଖାଯାଏ, ଉଚ୍ଚତମ ସାମାନ୍ୟୀକରଣ ଓ ବିବର୍ତ୍ତନବାଦ ବେଦାନ୍ତରେ ଅଛି ବୋଲି ବେଦାନ୍ତ ଧର୍ମ ବୈଜ୍ଞାନିକ ଜଗତର ଦାବୀ ପୂରଣ କରିପାରୁଛି । ଯେ

କୌଣସି ବସ୍ତୁର ବ୍ୟାଖ୍ୟା ଯେ ସେହି ବସ୍ତୁର ଭିତରୁ ଆସେ, ସେହି କଥା ବେଦାନ୍ତ ଭଲ ରୂପେ ବୁଝାଇ ଦିଏ । ବ୍ରହ୍ମ ଅଥବା ବେଦାନ୍ତୋକ୍ତ ଭଗବାନଙ୍କ ବାହାରେ ତଦତିରିକ୍ତ କୌଣସି ସତ୍ତା ନାହିଁ । ବେଦାନ୍ତ କହେ ମୂଳତଃ ସବୁ ହିଁ ସେହି ବ୍ରହ୍ମ; ବିଶ୍ୱ ମଧ୍ୟରେ ସେ ହିଁ ରହିଛନ୍ତି; ସେ ହିଁ ବିଶ୍ୱ । "ତୁମେ ହିଁ ନର, ତୁମେ ହିଁ ନାରୀ, ଯୌବନ-ମଦ-ଦୃପ୍ତ ବିଚରଣକାରୀ ଯୁବକ ତୁମେ, ସ୍ଖଳିତ-ପଦ ବୃଦ୍ଧ ମଧ୍ୟ ତୁମେ ।" (ଶ୍ୱେତାଶ୍ୱ. ଉପ., ୪ । ୩) । ଆମେମାନେ ତାଙ୍କୁ ହିଁ ଦେଖୁଁ, ତାଙ୍କୁ ହିଁ ଅନୁଭବ କରୁ । ତାଙ୍କର ମଧ୍ୟରେ ହିଁ ଆମେମାନେ ବଞ୍ଚିଛୁ ଓ ବିଚରଣ କରୁଛୁ; ତାଙ୍କର ଅସ୍ତିତ୍ୱ ହିଁ ଆମମାନଙ୍କର ଅସ୍ତିତ୍ୱ । ନିଉ ଟେଷ୍ଟାମେଣ୍ଟ ମଧ୍ୟରେ ଏ ପ୍ରକାର ଭାବ ଦେଖିବାକୁ ମିଳେ । ସେହି ଗୋଟିଏ ଭାବ —ଭଗବାନ ବିଶ୍ୱରେ ଓତଃପ୍ରୋତ । ସେ ହିଁ ବସ୍ତୁର ମୂଳ ସତ୍ତା, ବସ୍ତୁର ହୃଦୟସ୍ୱରୂପ, ପ୍ରାଣସ୍ୱରୂପ । ବିଶ୍ୱ ଭିତରେ ସେ ଯେପରିକି ନିଜକୁ ଅଭିବ୍ୟକ୍ତ କରନ୍ତି । ସେହି ଅସୀମ ସଚ୍ଚିଦାନନ୍ଦ-ସାଗର ମଧ୍ୟରେ ଆମେମାନେ ବାସ କରୁଛୁ; ତୁମେ ଓ ମୁଁ ଯେପରି ସେହି ସାଗରର କ୍ଷୁଦ୍ର ଅଂଶ, କ୍ଷୁଦ୍ର ବିନ୍ଦୁ, କ୍ଷୁଦ୍ର ପ୍ରଣାଳୀ, କ୍ଷୁଦ୍ର ଅଭିବ୍ୟକ୍ତି । ବସ୍ତୁ ଦୃଷ୍ଟିରୁ ମନୁଷ୍ୟ ମନୁଷ୍ୟ ମଧ୍ୟରେ, ଦେବତା ମନୁଷ୍ୟ ମଧ୍ୟରେ, ମନୁଷ୍ୟ ପ୍ରାଣୀ ମଧ୍ୟରେ, ପ୍ରାଣୀ ଉଦ୍ଭିଦ ମଧ୍ୟରେ, ଉଦ୍ଭିଦ ପଥର ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ । କାରଣ ସର୍ବୋଚ୍ଚ ଦେବଦୂତଠାରୁ ଆରମ୍ଭ କରି ସର୍ବନିମ୍ନ ଧୂଳିକଣା ପର୍ଯ୍ୟନ୍ତ ସବୁ ସେହି ସୀମାହୀନ ସାଗରର ଅଭିବ୍ୟକ୍ତି । ପ୍ରକାଶର ତାରତମ୍ୟରେ ହିଁ କେବଳ ତଫାତ୍ ଦେଖାଯାଏ । ମୋ-ଠାରେ ପ୍ରକାଶ ଖୁବ୍ କମ୍ ଏବଂ ତୁମଠାରେ ହୁଏତ ତା'ଠାରୁ ଅଳ୍ପ ବେଶୀ । କିନ୍ତୁ ଆମ ଦୁଇଜଣଙ୍କ ମଧ୍ୟରେ ଥିବା ବସ୍ତୁ ସମାନ । ତୁମେ ଓ ମୁଁ ଉଭୟ ସେହି ଅନନ୍ତ ଅସ୍ତିତ୍ୱ-ସାଗରରେ ଅବସ୍ଥିତ—ଏହାର ଦୁଇଟି କ୍ଷୁଦ୍ର ଅଂଶ, କ୍ଷୁଦ୍ର ନିର୍ଗମ ପଥ ବା କ୍ଷୁଦ୍ର ପ୍ରକାଶ ମାତ୍ର । ତେଣୁ ଈଶ୍ୱର ହିଁ ତୁମର ସ୍ୱରୂପ, ମୋର ମଧ୍ୟ । ଜନ୍ମଠାରୁ ତୁମେ ସ୍ୱରୂପତଃ ଈଶ୍ୱର ଓ ମୁଁ ମଧ୍ୟ ତାହା । ତୁମେ ହୁଏତ ପବିତ୍ରତାର ମୂର୍ତ୍ତି ଦେବଦୂତ ଏବଂ ମୁଁ ହୁଏତ ମହାଦୁଷ୍କୃତକାରୀ ଦାନବ । ଏହା ସତ୍ତ୍ୱେ ସେହି ସଚ୍ଚିଦାନନ୍ଦ-ସାଗରରେ ତୁମର ଓ ମୋର ଜନ୍ମଗତ ଅଧିକାର ଅଛି । ତୁମେ ଆଜି ନିଜକୁ ଅନେକ ପରିମାଣରେ ଅଭିବ୍ୟକ୍ତ କରିଛ, କିନ୍ତୁ ଅପେକ୍ଷା କର, ମୁଁ ତାହା ଅପେକ୍ଷା ଅଧିକ ଅଭିବ୍ୟକ୍ତ କରିପାରିବି । କାରଣ ମୋ ମଧ୍ୟରେ ସବୁକିଛିର ସମ୍ଭାବନା ରହିଛି । ଏଥିପାଇଁ ବୁଝାଇବାକୁ କୌଣସି ସ୍ୱତନ୍ତ୍ର ବ୍ୟାଖ୍ୟାର ଆବଶ୍ୟକତା ନାହିଁ ବା କାହାଠାରୁ କିଛି ମାଗିବାକୁ ପଡ଼ିବ ନାହିଁ । ସମଗ୍ର ବିଶ୍ୱର ସମଷ୍ଟି ହେଲେ ସ୍ୱୟଂ ଈଶ୍ୱର । ପ୍ରଶ୍ନ ହୋଇପାରେ, ଈଶ୍ୱର କଅଣ ତାହାହେଲେ ଜଡ଼ ପଦାର୍ଥ ? ନା, ଈଶ୍ୱର ନିଶ୍ଚିତ ଭାବେ ଜଡ଼ ନୁହନ୍ତି । କାରଣ ଆମର ପଞ୍ଚେନ୍ଦ୍ରିୟ ମଧ୍ୟଦେଇ ଆମେ ଭଗବାନଙ୍କୁ ଯେଉଁ ଭାବରେ ଅନୁଭବ କରୁ, ତାହା ହିଁ ଜଡ଼ ପଦାର୍ଥ । ବୁଦ୍ଧି ମାଧ୍ୟମରେ ଭଗବାନଙ୍କୁ ଯେଉଁ ପ୍ରକାର ଅନୁଭବ କରୁ ତାହା ହିଁ ମନ । ଆତ୍ମା ମଧ୍ୟ ଦେଇ ଈଶ୍ୱର ଆତ୍ମାରୂପେ ଦୃଷ୍ଟ ହୁଅନ୍ତି । ସେ ଜଡ଼ ପଦାର୍ଥ ନୁହନ୍ତି, କିନ୍ତୁ ଜଡ଼ ମଧ୍ୟରେ ଯେଉଁ ସତ୍ୟ ପଦାର୍ଥ ରହିଛି ତାହା ହିଁ ସେ । ଉଦାହରଣସ୍ୱରୂପ ଏକ ଚେୟାର୍ କଥା

ଧରାଯାଉ । ଏହା ମଧ୍ୟରେ ଯାହା ସତ୍ୟ ବସ୍ତୁ, ତାହା ହିଁ ଭଗବାନ । ଏହି ଚେୟାର୍‌ଟିକୁ ଚେୟାର୍‌ରୂପେ ଫୁଟାଇବା ପାଇଁ ଦୁଇଟି ବସ୍ତୁ ଦରକାର । ବାହାରେ କିଛି ଜିନିଷ ଥିଲି, ତାହାକୁ ଆମର ଇନ୍ଦ୍ରିୟ ସଂଗ୍ରହ କଲା ଏବଂ ଆମର ମନ ତାହା ସଙ୍ଗରେ ଆଉ କିଛି ଯୋଗ କଲା ଏବଂ ଏହି ଦୁଇଟିର ମିଶ୍ରଣରେ ଚୌକିର ଉତ୍ପତ୍ତି ହେଲା । ଇନ୍ଦ୍ରିୟ ଏବଂ ବୁଦ୍ଧି-ନିରପେକ୍ଷ ଯେଉଁ ସତ୍ତା ଚିରବିଦ୍ୟମାନ ତାହା ହିଁ ସ୍ୱୟଂ ଭଗବାନ । ଆମମାନଙ୍କର ଇନ୍ଦ୍ରିୟଗୁଡ଼ିକ ତାଙ୍କୁ ନେଇ ଚୌକି, ଟେବୁଲ, ଘର, ବାଡ଼ି, ଚନ୍ଦ୍ର, ସୂର୍ଯ୍ୟ ଓ ନକ୍ଷତ୍ର ପ୍ରଭୃତିକୁ ଦର୍ଶନ କରୁଛି । ପ୍ରଶ୍ନ ହୋଇପାରେ—ଯଦି ଏହା ଘଟୁଛି, ତେବେ ଆମେ ସମସ୍ତେ ଗୋଟିଏ ପ୍ରକାର ଚୌକି ଦେଖୁଛେ କିପରି ? ଭଗବାନ ବା ସଚ୍ଚିଦାନନ୍ଦଙ୍କୁ ନେଇ ଏହି ସବୁ ବିଭିନ୍ନ ବସ୍ତୁକୁ ଗୋଟିଏ ପ୍ରକାର ଅଙ୍କନ କରି ଚାଲିଛୁ କାହିଁକି ? ସମସ୍ତେ ଯେ ଏକ ପ୍ରକାର ଅଙ୍କନ କରୁଛନ୍ତି—ଏହା ମଧ୍ୟ ଠିକ୍ ନୁହେଁ । ତେବେ ଯେଉଁମାନେ ଏକ ପ୍ରକାର ଦର୍ଶନ କରୁଛନ୍ତି, ସେମାନେ ସମସ୍ତେ ସତ୍ତାର ଗୋଟିଏ ସ୍ତରରେ ଅଛନ୍ତି ଏବଂ ସେଥିପାଇଁ ସେମାନେ ପରସ୍ପରକୁ ଏବଂ ସେମାନଙ୍କର ଚିତ୍ରଗୁଡ଼ିକୁ ଏକପ୍ରକାର ଦେଖି-ପାରୁଛନ୍ତି । ତୁମ ଓ ମୋ ମଧ୍ୟରେ ଲକ୍ଷ ଲକ୍ଷ ପ୍ରାଣୀ ଥାଇପାରନ୍ତି, ଯେଉଁମାନେ ଏହି ଭାବରେ ଭଗବାନଙ୍କୁ ଆମପରି ଦର୍ଶନ କରନ୍ତି ନାହିଁ । ଆମେମାନେ ଏହି ପ୍ରାଣୀମାନଙ୍କୁ ଓ ଏହାଙ୍କର ଚିତ୍ରିତ ଜଗତକୁ ଦେଖିପାରୁ ନାହିଁ । ଆଧୁନିକ ପଦାର୍ଥ-ବିଜ୍ଞାନର ଗବେଷଣା-ଗୁଡ଼ିକରୁ ଆମେମାନେ କ୍ରମଶଃ ଏ ବିଷୟରେ ଅଧିକ ପ୍ରମାଣ ପାଉଛୁ । ବସ୍ତୁର ସୂକ୍ଷ୍ମତମ ସତ୍ତା ସତ୍ୟ, ଯାହା ସ୍ଥୂଳ ତାହା ଦୃଶ୍ୟ ମାତ୍ର । ସେ ଯାହା ହେଉ, ଆମେମାନେ ଦେଖିବାକୁ ପାଉଛୁ ଯେ ଆଧୁନିକ ଯୁକ୍ତି ସମ୍ମୁଖରେ ଯଦି କୌଣସି ଧର୍ମଭାବ ଦଣ୍ଡାୟମାନ ହୋଇ ପାରୁଛି, ତେବେ ସେ ହେଲା ଅଦ୍ୱୈତବାଦ । କାରଣ ଏହିଠାରେ ଆଧୁନିକ ଯୁକ୍ତିର ଦୁଇଟି ଦାବୀ ପୂରଣ ହୁଏ, ଏହା ହିଁ ହେଉଛି ସର୍ବୋଚ୍ଚ ସାମାନ୍ୟୀକରଣ । ଏହି ସାମାନ୍ୟୀକରଣ ବ୍ୟକ୍ତିର ଊର୍ଦ୍ଧ୍ୱରେ ଅବସ୍ଥିତ ଏବଂ ଏହା ପ୍ରତ୍ୟେକ ଜୀବ ପକ୍ଷରେ ସାଧାରଣ । ଯେଉଁ ସାମାନ୍ୟୀକରଣ ସାକାର ଈଶ୍ୱରଙ୍କଠାରେ ଶେଷ ହୁଏ, ତାହା ବିଶ୍ୱ-ଜନୀନ ହୋଇପାରେ ନାହିଁ । ଏହାର କାରଣ ହେଲା, ସାକାର ଈଶ୍ୱରଙ୍କର ଧାରଣା କରିବାକୁ ଗଲେ ପ୍ରଥମେ ତାଙ୍କୁ ସର୍ବତୋଭାବେ ଦୟାମୟ ମଙ୍ଗଳମୟ ଇତ୍ୟାଦି କହିବାକୁ ହୁଏ । କିନ୍ତୁ ଏହି ଜଗତ ଭଲ ଓ ମନ୍ଦ ଉଭୟର ମିଶ୍ରଣରେ ଗଠିତ । ଏହାର କିଛି ଅଂଶ ଭଲ ହେଲେ, କିଛିଟା ମନ୍ଦ । ଏହି ଜଗତରୁ କିଛି ବାଦ୍ ଦେଇ ବାକି ଅଂଶକୁ ସାକାର ଈଶ୍ୱରରୂପେ ଆମେମାନେ ସାମାନ୍ୟୀକରଣ କରୁ । ସାକାର ଈଶ୍ୱରଙ୍କର ଅମୁକ ଅମୁକ ରୂପ କହିବାବେଳେ ସେ ଅମୁକ ଅମୁକ ରୂପ ନୁହନ୍ତି ବୋଲି କହିବାକୁ ହୁଏ । ଆହୁରି ମଧ୍ୟ ଦେଖିବ ଯେ ସାକାର ଈଶ୍ୱରଙ୍କ ସହିତ ସବୁବେଳେ ଗୋଟିଏ ସାକାର ସଇତାନ ମଧ୍ୟ ଆସି ପହଞ୍ଚିବେ । ଏଥିରୁ ପରିଷ୍କାର ବୁଝାଯାଏ, ସାକାର ଈଶ୍ୱରଙ୍କ ଧାରଣାରୁ ଯଥାର୍ଥ ସାମାନ୍ୟୀକରଣ ହୁଏ ନାହିଁ । ଆମକୁ ଆହୁରି ଆଗେଇ ଯିବାକୁ ହେବ ଏବଂ ଶେଷରେ ନିରାକାର ବ୍ରହ୍ମରେ ପହଞ୍ଚିବାକୁ ହେବ । ନିରାକାର ବ୍ରହ୍ମରେ ସୁଖ, ଦୁଃଖ

ସବୁ ନେଇ ବିଶ୍ୱ ରହିଅଛି । କାରଣ ବିଶ୍ୱରେ ଯାହା କିଛି ବର୍ତ୍ତମାନ ବିଦ୍ୟମାନ, ସେହି ସବୁ ଈଶ୍ୱରଙ୍କର ସେହି ନିରାକାର ସ୍ୱରୂପରୁ ହିଁ ଆସିଅଛି । ପ୍ରଶ୍ନ ଉଠେ—ଅମଙ୍ଗଳ ପ୍ରଭୃତି ସବୁ କିଛି ଯାହାଙ୍କ ଉପରେ ଆମେମାନେ ଆରୋପ କରୁଛୁ, ସେ କି ପ୍ରକାର ଈଶ୍ୱର ହୋଇପାରନ୍ତି ? କଥା ହେଲା—ଭଲ ମନ୍ଦ ଦୁଇଟି ଗୋଟିଏ ଜିନିଷର ବିଭିନ୍ନ ଦିଗ, ବିଭିନ୍ନ ପ୍ରକାଶ । ଭଲ ଓ ମନ୍ଦ ଯେ ଦୁଇଟି ପୃଥକ୍ ସତ୍ତା—ଏହି ଭୁଲ ଧାରଣା ଆଦିମ କାଳରୁ ରହି ଆସିଅଛି । ନ୍ୟାୟ ଓ ଅନ୍ୟାୟ ଦୁଇଟି ସମ୍ପୂର୍ଣ୍ଣ ପୃଥକ୍ ଜିନିଷ, ଏମାନେ ପରସ୍ପରସହିତ ସମ୍ପର୍କିତ ନୁହନ୍ତି ଏବଂ ଭଲ ଓ ମନ୍ଦ ଦୁଇଟି ଚିର ବିଚ୍ଛେଦ୍ୟ, ଚିର ବିଚ୍ଛିନ୍ନ ପଦାର୍ଥ—ଏହି ଧାରଣାଗୁଡ଼ିକ ଆମମାନଙ୍କର ଏହି ଜଗତରେ ଦୁର୍ଭୋଗର କାରଣ । ଯଦି କୌଣସି ଲୋକ ମୋତେ ସବୁବେଳେ ଭଲ ବା ସବୁବେଳେ ମନ୍ଦ ଥିବା କୌଣସି ଜିନିଷ ଦେଖାଇ ଦେଇପାରନ୍ତା ତେବେ ମୁଁ ଖୁସି ହୁଅନ୍ତି । ଆମମାନଙ୍କ ଜୀବନରେ ଯେଉଁ ଘଟଣା ଘଟେ, ସେଥିମଧ୍ୟରୁ କେତେକ ମଙ୍ଗଳ-ମୟ ଏବଂ ଅନ୍ୟ କେତେକ ଅମଙ୍ଗଳମୟ—ଏହା ଯେ କୌଣସି ଲୋକ କହିଦେଇ-ପାରେ । ଆଜି ଯାହା ମନ୍ଦ, କାଲି ତାହା ଭଲ ହୋଇପାରେ । ମୋ ପକ୍ଷରେ ଯାହା କଲ୍ୟାଣକର, ତାହା ତୁମ ପକ୍ଷରେ ଅକଲ୍ୟାଣକର ହୋଇପାରେ । ଶେଷ କଥା ବା ସିଦ୍ଧାନ୍ତ ହେଲା—ଜଗତରେ ଅନ୍ୟାନ୍ୟ ଜିନିଷ ପରି ଭଲମନ୍ଦ ଭିତରେ ମଧ୍ୟ ବିବର୍ତ୍ତନ ଅଛି । କଅଣ ଗୋଟିଏ ବସ୍ତୁ ଅଛି ଯାହାକୁ କ୍ରମବିବର୍ତ୍ତନ ପଥରେ ଗୋଟିଏ ଅବସ୍ଥାରେ ଆମେ ଭଲ କହୁ ଏବଂ ଅନ୍ୟ ଏକ ଅବସ୍ଥାରେ ଏହାକୁ ମନ୍ଦ କହୁ । ଗୋଟିଏ ଝଡ଼ ହେଲା । ଏହି ଝଡ଼ରେ ମୋର ଜଣେ ବନ୍ଧୁ ମୃତ୍ୟୁମୁଖରେ ପଡ଼ିଲେ । ତେଣୁ ମୁଁ ଏହି ଝଡ଼କୁ ଅକଲ୍ୟାଣକର ଆଖ୍ୟା ଦେଲି । କିନ୍ତୁ ସେହି ଝଡ଼ ବାୟୁରେ ଥିବା ଅନେକ ଦୂଷିତ ଜୀବାଣୁ ନଷ୍ଟ କରି ହଜାର ହଜାର ଲୋକଙ୍କ ପ୍ରାଣ ବଞ୍ଚାଇଲା । ତେଣୁ ଏହି ଝଡ଼କୁ ଅନ୍ୟମାନେ ଭଲ ବୋଲି କହୁଥିବାବେଳେ ମୁଁ ଖରାପ କହିଲି । କାର୍ଯ୍ୟତଃ ଭଲ ଓ ମନ୍ଦ ଆପେକ୍ଷିକ ଜଗତ ଓ ତାହାର ଘଟଣାବଳୀର ଅନ୍ତର୍ଗତ । ଯେଉଁ ନିରାକାର ବ୍ରହ୍ମର କଥା କୁହାଯାଉଛି, ସେ ଆପେକ୍ଷିକ ଈଶ୍ୱର ନୁହନ୍ତି । ତେଣୁ ତାହାଙ୍କୁ ଭଲ କିମ୍ବା ମନ୍ଦ କୌଣସି ଆଖ୍ୟା ଦିଆଯାଇପାରିବ ନାହିଁ । ଭଲ ବା ମନ୍ଦ କୌଣସିରୁ ଗୋଟିଏ ହୋଇ ନ ଥିବାରୁ ସେ ଏହି ଭଲ-ମନ୍ଦର ବାହାରେ । କିନ୍ତୁ ତାଙ୍କର ଅଭିବ୍ୟକ୍ତି ଦୃଷ୍ଟିରୁ ମନ୍ଦ ଅପେକ୍ଷା ଭଲ ତାଙ୍କର ସ୍ୱରୂପର ଅଧିକ ନିକଟବର୍ତ୍ତୀ ।

ଏହି ପ୍ରକାର ନିରାକାର ସତ୍ତା ବା ନିର୍ଗୁଣ ଈଶ୍ୱରଙ୍କୁ ବିଶ୍ୱାସ କଲେ ଆମର ଲାଭ କ'ଣ? ଏଥିରୁ କି ଫଳ ବା ଆମେ ପାଇବୁ ? ଧର୍ମ କ'ଣ ମାନବଜୀବନର ଅଙ୍ଗରୂପେ, ସାନ୍ତ୍ୱନାର ସ୍ଥଳରୂପେ ବା ଆମମାନଙ୍କର ସହାୟକରୂପେ ରହିପାରିବ ? ମନୁଷ୍ୟର ସାକାର ଈଶ୍ୱରଙ୍କ ନିକଟରେ ସାହାଯ୍ୟ ପ୍ରାର୍ଥନା କରିବାରେ ଯେଉଁ ଆକୃତି ରହିଛି, ତାହା କଅଣ ଗ୍ଳାନିସିବ ? ଏଗୁଡ଼ିକ ସବୁ ରହିବ । ସାକାର ଈଶ୍ୱର ରହିବେ । କିନ୍ତୁ ରହିବେ ଏକ ଦୃଢ଼ତର ଭିତ୍ତି ଉପରେ । ନିରାକାର ବ୍ରହ୍ମଙ୍କଦ୍ୱାରା ତାଙ୍କର ଦୃଢ଼ତା

ପ୍ରତିଷ୍ଠିତ ହେବ । ଆମେ ଜାଣୁ ନିରାକାର ଈଶ୍ୱରଙ୍କୁ ବାଦ୍ ଦେଇ ସାକାର ଈଶ୍ୱର ରହି-ପାରିବେ ନାହିଁ । ଆମେ ଯଦି କହିବାକୁ ଚାହୁଁ ଯେ ସୃଷ୍ଟିରୁ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ଏକ ଈଶ୍ୱର ଅଛନ୍ତି ଏବଂ ସେ ଇଚ୍ଛାମାତ୍ରେ ଶୂନ୍ୟରୁ ଏହି ବିଶ୍ୱ ସୃଷ୍ଟି କରିଛନ୍ତି, ତେବେ ସେ କଥା ପ୍ରମାଣ କରାଯାଇପାରିବ ନାହିଁ । ଏଭଳି ଯୁକ୍ତି ସମ୍ପୂର୍ଣ୍ଣ ଅଚଳ । କିନ୍ତୁ ନିରାକାରର ଭାବ ଧାରଣା କରିପାରିଲେ ସେଠାରେ ସାକାରର ଭାବ ମଧ୍ୟ ସ୍ଥାନ ପାଇବ। ସେହି ଏକ ନିରାକାର ସତ୍ତାକୁ ବିଭିନ୍ନଭାବେ ଦେଖିଲେ ଯାହା ମନେ ହୁଏ, ବିଚିତ୍ର ବିଚାର ଏହି ବିଶ୍ୱ-ବ୍ରହ୍ମାଣ୍ଡ ଠିକ୍ ସେଇଆ । ପଞ୍ଚେନ୍ଦ୍ରିୟଦ୍ୱାରା ଯେତେବେଳେ ତାଙ୍କୁ ଦେଖୁ, ସେତେ-ବେଳେ ତାଙ୍କୁ ଜଡ଼-ଜଗତ ବୋଲି କହୁ । ଏପରି ଯଦି କୌଣସି ପ୍ରାଣୀ ଥାଆନ୍ତା, ଯାହାର ପାଞ୍ଚଟାରୁ ଅଧିକ ଇନ୍ଦ୍ରିୟ ଥାଆନ୍ତା, ତେବେ ଏହି ଜଗତକୁ ସେ ଅନ୍ୟପ୍ରକାରେ ଦେଖନ୍ତା । ଆମ ଭିତରୁ କାହାର ବି ଯଦି ଗୋଟିଏ ଅଧିକା ଇନ୍ଦ୍ରିୟ ହୁଅନ୍ତା, ଯଦ୍ଦ୍ୱାରା କି ସେ ବିଦ୍ୟୁତ୍‌ଶକ୍ତିକୁ ପ୍ରତ୍ୟକ୍ଷ କରିପାରନ୍ତା, ତେବେ ଏହି ବିଶ୍ୱକୁ ସେ ପୁଣି ଅନ୍ୟ ରୂପରେ ଦେଖିବାକୁ ଆରମ୍ଭ କରନ୍ତା—ସେହି ଏକ ଅଦ୍ୱୈତସ୍ୱ ବ୍ରହ୍ମର ବହୁରୂପ । ତାହା ବିଭିନ୍ନଭାବରେ ଦେଖିବା ଫଳରେ ହିଁ ବିଭିନ୍ନ ଜଗତର ଧାରଣାଗୁଡ଼ିକ ଉଦ୍‌ଭୂତ ହୁଏ । ମନୁଷ୍ୟବୁଦ୍ଧିରେ ସେହି ନିରାକାର ସତ୍ତା ସମ୍ବନ୍ଧରେ ଯେଉଁ ସର୍ବୋଚ୍ଚ ଧାରଣା ଆସିପାରିବା ସମ୍ଭବ, ତାହା ହିଁ ହେଲା ସାକାର ଈଶ୍ୱର । ତେଣୁ ସେହି ଦୃଷ୍ଟିରୁ ଏହି ଚଉକିଟି, ଏହି ଜଗତଟି ଯେତେଦୂର ସତ୍ୟ, ସାକାର ଈଶ୍ୱର ମଧ୍ୟ ସେତିକି ସତ୍ୟ, ତା'ଠାରୁ ବେଶୀ ନୁହେଁ । ଏହା ଚରମ ସତ୍ୟ ନୁହେଁ । ନିରାକାର ବ୍ରହ୍ମ ହିଁ ସାକାର ଈଶ୍ୱର । ଅତଏବ ସାକାର ଈଶ୍ୱର ସତ୍ୟ । ଯେପରି ମନୁଷ୍ୟ ହିସାବରେ ମୁଁ ଏକ ସଙ୍ଗେ ସତ୍ୟ ଓ ଅସତ୍ୟ ଉଭୟ । ତୁମେ ମୋତେ ଯେଉଁ ଭାବରେ ଦେଖୁଛ ମୁଁ ଯେ ତାହା ହିଁ, ଏକଥା ସତ୍ୟ ନୁହେଁ । ଏକଥା ତୁମେ ନିଜେ ପରୀକ୍ଷା କରି ଦେଖିପାର । ତୁମେ ମୋତେ ଯାହା ବୋଲି ମନେ କର ମୁଁ ତାହା ନୁହେଁ । ବିଚାର କରି ଦେଖିଲେ ଏ ବିଷୟରେ ତୁମେ ତୃପ୍ତ ହୋଇପାରିବ । କାରଣ ଆଲୋକର ବିଭିନ୍ନ ସ୍ପନ୍ଦନ, ବାୟୁମଣ୍ଡଳର ଅବସ୍ଥା, ମୋ ଭିତରର ଯାବତୀୟ ଗତି—ଏହିସବୁଗୁଡ଼ିକର ଏକତ୍ର ମିଳନ ଫଳରେ ମୁଁ ଯେପରି ଦେଖାଯାଉଛି ତୁମେ ମୋତେ ସେହିରୂପେ ହିଁ ଦେଖୁଅଛ । ଏହି ଅବସ୍ଥାଗୁଡ଼ିକର ମାଧ୍ୟମରେ କୌଣସି ଗୋଟିକର ପରିବର୍ତ୍ତନ ଘଟିଲେ ମୁଁ ପୁଣି ଆଉ ଏକ ରୂପେ ଦେଖାଯିବି । ତୁମେ ଆଲୋକର ବିଭିନ୍ନ ଅବସ୍ଥାରେ ଜଣେ ମନୁଷ୍ୟର ଆଲୋକଚିତ୍ର ନେଇ ଏହି କଥାର ଯଥାର୍ଥତା ନିରୂପଣ କରିପାର । ତେଣୁ ତୁମର ଇନ୍ଦ୍ରିୟ ମଧ୍ୟ ଦେଇ ମୋର ରୂପ ଯେପରି ଦେଖାଯାଉଛି 'ମୁଁ' କହିଲେ ତାହା ହିଁ ବୁଝାଏ । ଏସବୁ ସତ୍ତ୍ୱେ ମୋ ମଧ୍ୟରେ ଏପରି କଣ ଗୋଟିଏ ଜିନିଷ ଅଛି, ଯାହା ଅପରିବର୍ତ୍ତନୀୟ ଏବଂ ଯାହାକୁ ଅବଲମ୍ବନ କରି ମୋର ଅସ୍ତିତ୍ୱର ବିଭିନ୍ନ ଅବସ୍ଥାଗୁଡ଼ିକ ପ୍ରକାଶ ପାଉଅଛି ? ଏହି ଜିନିଷଟି ହେଲା ନୈର୍ବ୍ୟକ୍ତିକ 'ମୁଁ'—ଯାହାକୁ ଅବଲମ୍ବନ କରି ହଜାର ହଜାର ଭିନ୍ନ ଭିନ୍ନ ବ୍ୟକ୍ତିତ୍ୱ-ସମ୍ପନ୍ନ 'ମୁଁ' ଫୁଟିଉଠୁଛି । ମୁଁ ଶିଶୁ ଥିଲି, ମୁଁ ଯୁବକ ହୋଇଥିଲି, ମୋର କ୍ରମେ କ୍ରମେ

ବୟସ ବଢ଼ି ଚାଲିଛି । ମୋ ଜୀବନରେ ପ୍ରତ୍ୟେକ ଦିନ ମୋର ଦେହ ଓ ଚିନ୍ତାରେ ପରିବର୍ତ୍ତନ ଘଟୁଛି । ଏହିସବୁ ପରିବର୍ତ୍ତନ ସତ୍ତ୍ୱେ ସେଗୁଡ଼ିକର ସମଷ୍ଟିର ପରିମାଣ ଚିରଦିନ ପାଇଁ ସ୍ଥିରୀକୃତ । ତାହା ହିଁ ନୈର୍ବ୍ୟକ୍ତିକ 'ମୁଁ' ଏବଂ ଅନ୍ୟାନ୍ୟ ଅଭିବ୍ୟକ୍ତିଗୁଡ଼ିକ ଏହି ମୁଁର ଅଂଶ ମାତ୍ର ।

ଗୋଟିଏ ଦିଗରୁ ଏହି ବିଶ୍ୱର ସମଷ୍ଟିଫଳ ଅପରିବର୍ତ୍ତନୀୟ ବୋଲି ଆମେମାନେ ଜାଣୁ । କିନ୍ତୁ ଏହି ବିଶ୍ୱ ସହ ସଂଶ୍ଳିଷ୍ଟ ସବୁ ଜିନିଷର ଗତି ଅଛି । ସବୁ ଜିନିଷ ଅବିରାମ ସ୍ପନ୍ଦନଶୀଳ ଅବସ୍ଥାରେ ରହିଅଛି । ସବୁକିଛି ପରିବର୍ତ୍ତନଶୀଳ ଓ ଗତିଶୀଳ । ସଙ୍ଗେ ସଙ୍ଗେ ଦେଖାଯାଏ ଯେ ଏହି ବିଶ୍ୱ ସ୍ଥିର, କାରଣ ଗତି ଶବ୍ଦଟି ଏକ ଆପେକ୍ଷିକ ଶବ୍ଦ । ଚୌକିଟି ସ୍ଥିର, ମୁଁ ଚଳପ୍ରଚଳ କରୁଛି—ଅର୍ଥାତ୍ ମୋର ଗତି ଚୌକି ସହିତ ଆପେକ୍ଷିକ । ଗତିସୃଷ୍ଟି କରିବାକୁ ହେଲେ ଦୁଇଟି ଜିନିଷର ପ୍ରୟୋଜନ ହୁଏ । ସମଗ୍ର ବିଶ୍ୱକୁ ଯଦି ଏକ ବୋଲି ଧରାଯାଏ, ତେବେ ସେଠାରେ ଗତିର ସ୍ଥାନ ନାହିଁ । ବିଶ୍ୱ ଯଦି ଗତିଶୀଳ ହେବ, ତେବେ ଏହି ଗତି ନିର୍ଦ୍ଧାରଣ କରିବାକୁ କାହା ସହିତ ତୁଳନା କରିବ ? ତେଣୁ ଚରମ ସତ୍ୟ ଅପରିବର୍ତ୍ତନୀୟ ଓ ଅବିଚଳ । ଯାହାକିଛି ଗତିଶୀଳ ପରିବର୍ତ୍ତନଶୀଳ ତାହା କେବଳ ଆପେକ୍ଷିକ ଓ ସୀମାବଦ୍ଧ ଜଗତରେ ଥାଏ । ସମଷ୍ଟି-ସତ୍ତା ନୈର୍ବ୍ୟକ୍ତିକ । ଯାହା ନିକଟରେ ଆମେ ନତଜାନୁ ହୋଇ ପ୍ରାର୍ଥନା କରୁ, ସେ ହିଁ ଭଗବାନ । ସାକାର ଈଶ୍ୱର, ସ୍ରଷ୍ଟା ବା ବିଶ୍ୱ-ନିୟନ୍ତାଙ୍କଠାରୁ ଆରମ୍ଭ କରି ନିମ୍ନତମ ଅଣୁ ପର୍ଯ୍ୟନ୍ତ ବିଭିନ୍ନ ବ୍ୟକ୍ତିତ୍ୱର ବିକାଶ ଏହି ନୈର୍ବ୍ୟକ୍ତିକ ସତ୍ତାର ଅନ୍ତର୍ଗତ । ଯଥେଷ୍ଟ ଯୁକ୍ତି ଦେଖାଇ ଏହିପରି ସାକାର ଈଶ୍ୱରଙ୍କୁ ପ୍ରତିପନ୍ନ କରାଯାଏ । ଏବଂବିଧ ସାକାର ଈଶ୍ୱରଙ୍କୁ ନିରାକାର ବ୍ରହ୍ମଙ୍କର ସର୍ବୋଚ୍ଚ ଅଭିବ୍ୟକ୍ତି ବୋଲି ମଧ୍ୟ ବ୍ୟାଖ୍ୟାକରାଯାଏ । ତୁମେ ଆମେ ହେଲେ ଅତିନିମ୍ନସ୍ତରର ପ୍ରକାଶ । ଆମେ ଯେତେଦୂର ଧାରଣା କରିପାରୁ ତାହାର ସର୍ବୋଚ୍ଚ ପ୍ରକାଶ ହେଲି ଏହି ସାକାର ଈଶ୍ୱର । ଆଉ ମଧ୍ୟ, ତୁମେ ବା ମୁଁ କେହିହେଲେ ବି ସେହି ସାକାର ଈଶ୍ୱର ହୋଇ-ପାରିବା ନାହିଁ । ବେଦାନ୍ତ ଯେତେବେଳେ କହନ୍ତି—"ତୁମେ ଆଉ ମୁଁ ହେଉଛୁ ବ୍ରହ୍ମ" —ସେତେବେଳେ ସେହି ବ୍ରହ୍ମ କେବେ ସାକାର ଈଶ୍ୱରଙ୍କୁ ବୁଝାଏ ନାହିଁ । ଗୋଟିଏ ଉଦାହରଣ ଦିଏ —ଗଦାଏ କାଦୁଅ ନେଇ ଗୋଟାଏ ପ୍ରକାଣ୍ଡ ହାତୀ ନିର୍ମାଣ କରାଗଲା । ପୁଣି ସେହି କାଦୁଅର ସାମାନ୍ୟ ଅଂଶ ନେଇ ଗୋଟାଏ ମାଟିର ମୂଷା ମଧ୍ୟ ତିଆରି କରାଗଲା । ଏହି ମାଟିର ମୂଷାଟି କ'ଣ ସେହି ମାଟିର ହାତୀ ହୋଇପାରିବ ? କିନ୍ତୁ ସେ ଦୁଇଟିକୁ ପୁଣି ପାଣିରେ ପକାଇ ଦିଅ —ଦେଖିବ ଦୁଇଟିଯାକ ପୁନର୍ବାର କାଦୁଅ ହୋଇଗଲେ । କାଦୁଅ ବା ମାଟି ହିସାବରେ ଦୁଇଟିଯାକ ଏକ । କିନ୍ତୁ ମୂଷା ଓ ହାତୀ ଭାବରେ ଦୁହିଁଙ୍କ ଭିତରେ ଚିରଦିନ ପାର୍ଥକ୍ୟ ରହିବ । ଅସୀମ ଓ ନିରାକାର ବ୍ରହ୍ମ ସତେ କି ଏହି ଉଦାହରଣର ମାଟି-ସ୍ୱରୂପ । ସ୍ୱରୂପ ଦୃଷ୍ଟିରୁ ଦେଖିଲେ ଆମେ ଓ ବିଶ୍ୱନିୟନ୍ତା ଏକ, କିନ୍ତୁ ତାର ଅଭିବ୍ୟକ୍ତି ରୂପରେ, ମନୁଷ୍ୟ ହିସାବରେ ଆମେ ତାଙ୍କର ଚିରଦାସ, ତାଙ୍କର ପୂଜକ । ଫଳତଃ ଦେଖା-ଯାଉଛି ଯେ, ସାକାର ଈଶ୍ୱରଙ୍କର ଅସ୍ତିତ୍ୱ ରହିଛି ଏବଂ ଏହି ଆପେକ୍ଷିକ ଜଗତରେ ସବୁ

କିଛିର ମଧ୍ୟ ଅସ୍ତିତ୍ୱ ରହିଛି । ଧର୍ମକୁ ମଧ୍ୟ ଦୃଢ଼ତର ଭିତ୍ତି ଉପରେ ପ୍ରତିଷ୍ଠା କରାଯାଇଛି । ତେଣୁ ସାକାର ଈଶ୍ୱରଙ୍କୁ ଜାଣିବାକୁ ହେଲେ ପ୍ରଥମେ ନିରାକାର ସତ୍ତାଙ୍କୁ ଜାଣିବା ପ୍ରୟୋଜନ ।

ଆମେ ଦେଖିଛୁ ଯେ ତର୍କଯୁକ୍ତିର ନିୟମ ଅନୁସାରେ 'ସାମାନ୍ୟ'ର ମାଧ୍ୟମରେ ଆମେ 'ବିଶେଷ'କୁ ଜାଣିପାରୁ । ତା'ହେଲେ ଯେ ସାମାନ୍ୟୀକରଣର ଚରମ, ସେହି ନୈର୍ବ୍ୟକ୍ତିକ ସତ୍ତା ବା ନିରାକାର ବ୍ରହ୍ମ ମାଧ୍ୟମରେ ହିଁ କେବଳ ମନୁଷ୍ୟଠାରୁ ଈଶ୍ୱରଙ୍କ ପର୍ଯ୍ୟନ୍ତ ସବୁ ବିଶେଷକୁ ହିଁ ଜଣାଯାଇପାରେ । ସେହି ଦୃଷ୍ଟିରୁ ପ୍ରାର୍ଥନାର ଆବଶ୍ୟକତା ମଧ୍ୟ ପ୍ରମାଣିତ ହୋଇପାରିବ । ତାର ଅର୍ଥ ମଧ୍ୟ ଆହୁରି ପରିଷ୍କାର ହୋଇଉଠିବ । ପ୍ରାର୍ଥନାର ନିମ୍ନସ୍ତରରେ ମନସ୍କାମନା ପୂରଣ ନିମିତ୍ତ କେବଳ 'ଦିଅ, ଦିଅ' ଭାବ ଆମର ଥାଏ । ପ୍ରାର୍ଥନା ସମ୍ବନ୍ଧରେ ଅର୍ଥହୀନ ଧାରଣାଗୁଡ଼ିକୁ ବିଦାୟ ଦେବାକୁ ହେବ । ଯୁକ୍ତିମୂଳକ ଧର୍ମରେ ଈଶ୍ୱରଙ୍କ ପାଖରେ କୌଣସି କିଛି ପାଇଁ ପ୍ରାର୍ଥନା କରିବାକୁ କୁହାଯାଏ ନାହିଁ । କେବଳ ବିଭିନ୍ନ ଦେବଦେବୀଙ୍କ ନିକଟରେ କାମ୍ୟ ବସ୍ତୁ ଲାଗି ପ୍ରାର୍ଥନା କରାଯାଏ । ଏହା ମଧ୍ୟ ଖୁବ୍ ସ୍ୱାଭାବିକ କଥା । ରୋମାନ୍ କାଥଲିକମାନେ ସାଧୁସନ୍ଥଙ୍କ ପାଖରେ ପ୍ରାର୍ଥନା କରନ୍ତି । ଏହା ଖୁବ୍ ଭଲ । କିନ୍ତୁ ଭଗବାନଙ୍କ ନିକଟରେ ପ୍ରାର୍ଥନା କରିବାର କିଛି ଅର୍ଥ ନାହିଁ । ଶ୍ୱାସପ୍ରଶ୍ୱାସ ନେବା ଲାଗି, ଅସରାଏ ବର୍ଷା ହେବା ଲାଗି, କିମ୍ବା ବଗିଚାରେ ପନିପରିବା ଫଳାଇବା ନିମିତ୍ତ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କରିବା ଖୁବ୍ ଅସ୍ୱାଭାବିକ । ଈଶ୍ୱରଙ୍କ ତୁଳନାରେ ଯେଉଁମାନେ ଆମମାନଙ୍କ ଭଳି କ୍ଷୁଦ୍ର ଜୀବ, ସେହି ସାଧୁସନ୍ଥମାନେ ଅବଶ୍ୟ ଆମକୁ ସାହାଯ୍ୟ କରିପାରନ୍ତି । କିନ୍ତୁ ବିଶ୍ୱନିୟନ୍ତାଙ୍କ ନିକଟରେ ଆମର ସେହିସବୁ କ୍ଷୁଦ୍ର କ୍ଷୁଦ୍ର ପ୍ରୟୋଜନଗୁଡ଼ିକର ପରିପୂରଣ ଲାଗି ଅଳି କରିବା—ପିଲାଦିନର କଥା, "ହେ ଈଶ୍ୱର ମୋର ମୁଣ୍ଡବ୍ୟଥା ଭଲ କରିଦିଅ"—ଭଳି ଅତି ହାସ୍ୟକର କଥା । ଜଗତରେ ଏହିଭଳି ଲକ୍ଷ ଲକ୍ଷ ବ୍ୟକ୍ତି ଦେହତ୍ୟାଗ କରିଛନ୍ତି—ଯେଉଁମାନଙ୍କର ଆତ୍ମା ଏବେ ମଧ୍ୟ ବିଦ୍ୟମାନ । ସେମାନେ ଦେବତା ବା ଦେବଦୂତ ହୋଇ ଯାଇଛନ୍ତି । ସେମାନେ ଆମକୁ ସାହାଯ୍ୟ କରନ୍ତୁ । କିନ୍ତୁ ଏଥିପାଇଁ ଭଗବାନଙ୍କୁ କାହିଁକି ବୃଥାରେ ବ୍ୟସ୍ତ କରିବା ? ଏହା ନିଶ୍ଚୟ ଠିକ୍ ନୁହେଁ । ତାଙ୍କ ପାଖରୁ କିଛି ଚାହିଁବାକୁ ବସିଲେ, ନିଶ୍ଚୟ ଆହୁରି କିଛି ଉଚ୍ଚତର ବସ୍ତୁ ଚାହିଁବାକୁ ହେବ । ଗଙ୍ଗାକୂଳରେ ବାସ କରି ଯେ ଜଳ ଲାଗି ଗୋଟିଏ କୂପ ଖନନ କରେ, ସେ ତ ମୂର୍ଖ ! ହୀରାଖଣି ପାଖରେ ବାସ କରି ଯେ ଖଣ୍ଡିଏ କାଚ ପାଇଁ ମାଟି ଖୋଳୁଥାଏ, ସେ ମୂର୍ଖ ଛଡ଼ା ଆଉ କଅଣ ହୋଇପାରେ ?

କରୁଣାମୟ, ପ୍ରେମମୟ ଈଶ୍ୱରଙ୍କ ନିକଟରେ ଆମେ ଯଦି ଜାଗତିକ ବସ୍ତୁ ମାଗିବାକୁ ଯାଉ, ତେବେ ଆମେ ନିର୍ବୋଧ ଛଡ଼ା ଆଉ କଅଣ ? ସେଥିଲାଗି ଆମେ ଯଦି ତାଙ୍କୁ ସତରେ କିଛି ମାଗିବାକୁ ଚାହୁଁ ତେବେ ଜ୍ଞାନ, ଭକ୍ତି, ପ୍ରେମ, ବୈରାଗ୍ୟ ଇତ୍ୟାଦି ପ୍ରାର୍ଥନା କରିବୁ । କିନ୍ତୁ ଯେତେଦିନ ଆମର ଦୁର୍ବଳତା ରହିଛି, ଯେତେଦିନ "ତୁମେ ପ୍ରଭୁ, ମୁଁ ଦାସ"—ଏହି ଭାବ ନେଇ ତାଙ୍କ ଉପରେ ନିର୍ଭର କରିବାର ଆକାଙ୍କ୍ଷା ଆମର

ଅଛୁ, ସେତେବେଳେ ଆମର ଏହି ନିମ୍ନସ୍ତରର ପ୍ରାର୍ଥନା ମଧ୍ୟ ରହିବ ଏବଂ ସାକାର ଈଶ୍ୱରଙ୍କ ଉପାସନାର ଭାବ ମଧ୍ୟ ରହିବ । କିନ୍ତୁ ଯେଉଁମାନେ ଆଧ୍ୟାତ୍ମିକତାରେ ଅନେକ ଉନ୍ନତ ହୋଇଛନ୍ତି, ସେମାନେ ଏହିସବୁ ଶ୍ରେଷ୍ଠ ଶ୍ରେଷ୍ଠ ପ୍ରାର୍ଥନା କରନ୍ତି ନାହିଁ । ସେମାନେ ନିଜ ଲାଗି କିଛି ଗୁହିଁବା ବା ନିଜର କୌଣସି ପ୍ରୟୋଜନ କଥା ପ୍ରାୟ ଭୁଲିଯାନ୍ତି । "ମୁଁ ନୁହେଁ ସଖା, ତୁମେ !"—ଏହି ଭାବର ପ୍ରାଧାନ୍ୟ ସେମାନଙ୍କ ମଧ୍ୟରେ ଥାଏ । ଏହିମାନେ ନିରାକାର ଉପାସନାର ଯୋଗ୍ୟ ବ୍ୟକ୍ତି । ନିରାକାର ଉପାସନାର ଅର୍ଥ କଅଣ ? ତାର ଅର୍ଥ ଏପରି ଦାସଭାବ ନୁହେଁ—"ହେ ପ୍ରଭୁ ! ମୁଁ ଅତି ଅକିଞ୍ଚନ ! ମୋତେ କୃପା କର !" ଇଂରେଜୀ ଭାଷାରେ ଅନୂଦିତ ସେହି ପ୍ରାଚୀନ ପାର୍ସି କବିତାଟି ତ ଆପଣମାନେ ଜାଣିଛନ୍ତି ! —"ମୁଁ ମୋର ପ୍ରିୟତମଙ୍କୁ ଦେଖିବାକୁ ଆସିଥିଲି । ଆସି ଦେଖିଲି ଯେ ଘରର ଦ୍ୱାର ରୁଦ୍ଧ । ଦ୍ୱାରରେ କରାଘାତ କରିବାରୁ ଭିତରୁ କେହି କହିଲେ—ତୁମେ କିଏ ? ମୁଁ କହିଲି—ମୁଁ ଅମୁକ । ଦ୍ୱାର ଖୋଲିଲା ନାହିଁ । ଦ୍ୱିତୀୟ ଥର ଆସି କରାଘାତ କଲି । ସେହି ପ୍ରଶ୍ନଟି ପୁଣି ହେଲା । ମୁଁ ମଧ୍ୟ ସେହି ଏକା ଉତ୍ତର ଦେଲି । ସେଥର ମଧ୍ୟ ଦ୍ୱାର ଖୋଲିଲା ନାହିଁ । ତୃତୀୟ ଥର ଆସିଲି । ସେହି ଏକା ପ୍ରଶ୍ନଟି ପୁଣି ଥରେ ହେଲା । ଏଥର ମୁଁ କହିଲି—ପ୍ରିୟତମ ! ମୁଁ ହେଉଛି ତୁମେ ! ସେତିକିବେଳେ ସାଙ୍ଗେ ସାଙ୍ଗେ ଦ୍ୱାର ଖୋଲିଗଲା ।" ସତ୍ୟ ମାଧ୍ୟମରେ ନିରାକାର ବ୍ରହ୍ମଙ୍କର ଉପାସନା କରିବାକୁ ହୁଏ ? ସତ୍ୟ କଣ ? ମୁଁ ହେଉଛି ସେ । ମୁଁ 'ତୁମେ' ନୁହଁ—ଏକଥା କହିଲେ ମିଥ୍ୟା କୁହାଗଲା । ତୁମଠାରୁ ମୁଁ ପୃଥକ୍—ଏ କଥା ଭଲି ମିଥ୍ୟା, ଭୟଙ୍କର ମିଥ୍ୟା ଆଉ କିଛି ନାହିଁ । ଏହି ବିଶ୍ୱ ସହିତ ମୁଁ ଏକ—ଜନ୍ମଠାରୁ ହିଁ ଏକ । ବିଶ୍ୱ ସହିତ ମୁଁ ଯେ ଏକ, ତାହା ମୋର ଇନ୍ଦ୍ରିୟ ନିକଟରେ ସ୍ୱତଃସିଦ୍ଧ । ମୋର ଚାରି ପାଖରେ ଯେଉଁ ବାୟୁ ରହିଛି—ତା' ସହିତ ମୁଁ ଏକ । ତାପ ସଙ୍ଗରେ ଏକ । ଆଲୋକ ସହିତ ଏକ । ଯାହାଙ୍କୁ ବିଶ୍ୱ ବୋଲି କୁହାଯାଏ, ଯାହାଙ୍କୁ ଅଜ୍ଞାନବଶତଃ ବିଶ୍ୱ ବୋଲି ମନେହୁଏ, ସେହି ସର୍ବବ୍ୟାପୀ ବିଶ୍ୱ-ଦେବତାଙ୍କ ସଙ୍ଗରେ ମୁଁ ଅନନ୍ତକାଳ ନିମିତ୍ତ ଏକ । କାରଣ, ହୃଦୟରେ ଯେ ଚିରନ୍ତନ କର୍ତ୍ତା, ପ୍ରତ୍ୟେକଙ୍କ ହୃଦୟାଭ୍ୟନ୍ତରରେ ଯେ କହନ୍ତି—"ମୁଁ ଅଛି", ଯେ ହେଉଛନ୍ତି ମୃତ୍ୟୁହୀନ, ଚିରଜାଗ୍ରତ, ଅମର, ଯାହାଙ୍କ ମହିମାର ବିନାଶ ନାହିଁ, ଯାହାଙ୍କ ଶକ୍ତି ଚିର-ଅବ୍ୟର୍ଥ, ସେ ହେଉଛନ୍ତି ଏହି ବିଶ୍ୱ-ଦେବତା । ଆଉ କେହି ନୁହନ୍ତି । ତାଙ୍କ ସହିତ ମୁଁ ଏକ ।

ଏହା ହିଁ ନିରାକାର-ଉପାସନାର ସାର । ଏହି ଉପାସନାରେ କି ଫଳ ହୁଏ ? ଏଥିରେ ମନୁଷ୍ୟର ସାରାଜୀବନ ପରିବର୍ତ୍ତିତ ହୋଇଯାଏ । ଆମ ଜୀବନରେ ଯେଉଁ ଶକ୍ତିର ଏକାନ୍ତ ପ୍ରୟୋଜନ ରହିଛି, ଏହା ହିଁ ସେହି ଶକ୍ତି, କାରଣ ଆମେ ଯାହାକୁ ପାପ କହୁ, ଦୁଃଖ କହୁ, ତା'ର ଗୋଟିଏ ମାତ୍ର କାରଣ ରହିଛି । ଆମର ଦୁର୍ବଳତା ହେଲା ସେହି କାରଣ । ଦୁର୍ବଳତା ସଙ୍ଗରେ ଆସେ ଅଜ୍ଞାନ ଏବଂ ଅଜ୍ଞାନ ସହିତ ଆସେ ଦୁଃଖ । ନିରାକାରଙ୍କ ଉପାସନା ଆମକୁ ଶକ୍ତିମାନ କରି ତୋଳିବ । ଆମେ ସେତେବେଳେ ଦୁଃଖକୁ ଓ ହୀନତାର ଉଗ୍ରତାକୁ ହସି ଉଡ଼େଇ ଦେବୁ । ହିଂସ୍ର ବ୍ୟାଘ୍ର ସେତେବେଳେ ତାର

ବ୍ୟାଘ୍ର-ସ୍ୱରୂପର ମଣ୍ଡାନ୍ତରେ ଆମ ନିଜର ଆତ୍ମାକୁ ହିଁ ଉଦ୍‌ଘାଟିତ କରି ଦେଖାଇ ଦେବ । ନିରାକାର-ଉପାସନାର ଫଳ ଏହା ହିଁ ହେବ । ଭଗବାନଙ୍କ ସହିତ ଯାହାର ଆତ୍ମା ଏକ ହୋଇ ଯାଇଛି, ସେ ହିଁ ଶକ୍ତିମାନ୍ । ତା'ଛଡ଼ା ଆଉ କେହି ଶକ୍ତିମାନ୍ ନୁହନ୍ତି । ନାଜେ-ରେଥ୍‌ର ଯୀଶୁଙ୍କର ଯେଉଁ ଶକ୍ତିର କଥା ତୁମମାନଙ୍କ ବାଇବେଲ୍‌ରେ ଅଛି, ଯେଉଁ ଶକ୍ତି ବଳରେ ସେ ତାଙ୍କର ବିଶ୍ୱାସଘାତକକୁ ଉପେକ୍ଷା କରିପାରିଥିଲେ—ତାଙ୍କୁ ଯେଉଁମାନେ ହତ୍ୟା କରିବାକୁ ଚାହିଁଥିଲେ, ସେମାନଙ୍କୁ ମଧ୍ୟ ସେ ଆଶୀର୍ବାଦ କରିଥିଲେ—ସେହି ଶକ୍ତି ସେ କେଉଁଠାରୁ ପାଇଲେ ?—ଏ ସମ୍ବନ୍ଧରେ ଚିନ୍ତା କରିଛ କି ? ଏହି ଶକ୍ତି ସେ ପାଇଥିଲେ ଏହି ବୋଧରୁ, ତା' ହେଉଛି—"ମୁଁ ଓ ମୋର ପିତା ଏକ ।" ଏହି ଶକ୍ତିର କାରଣ ମଧ୍ୟ ଏହି ପ୍ରାର୍ଥନା—"ପିତା ମୁଁ ଯେପରି ତୁମ ସହିତ ଏକ, ସେହିପରି ଏମାନଙ୍କୁ ସମସ୍ତଙ୍କୁ ମୋ ସହିତ ଏକ କରିଦିଅ ।" ଏହା ହିଁ ନିରାକାର ବ୍ରହ୍ମଙ୍କର ଉପାସନା । ବିଶ୍ୱ ସହିତ ଏକ ହୋଇଯାଅ । ଈଶ୍ୱରଙ୍କ ସଙ୍ଗେ ଏକ ହୋଇଯାଅ । ପୁନଶ୍ଚ ଏହି ନିରାକାର ବ୍ରହ୍ମଙ୍କର କୌଣସି ବାହ୍ୟ ପ୍ରକାଶର ବା କୌଣସି ପ୍ରମାଣର ପ୍ରୟୋଜନ ହୁଏ ନାହିଁ । ଇନ୍ଦ୍ରିୟ ଅପେକ୍ଷା, ନିଜ ନିଜ ଚିନ୍ତା ଅପେକ୍ଷା ସେ ଆମର ଅତ୍ତୁରି ନିକଟରେ । ସେ ଅଛନ୍ତି ବୋଲି ହିଁ ତାଙ୍କ ମାଧ୍ୟମରେ ଆମେ ଦେଖୁ ଓ ଚିନ୍ତା କରୁ । କୌଣସି କିଛି ଦେଖିବା ପୂର୍ବରୁ ତାଙ୍କୁ ହିଁ ଦେଖିବାକୁ ହେବ । ଏହି କାନ୍ଥଟିକୁ ଦେଖିବାକୁ ହେଲେ ମଧ୍ୟ ଆଗେ ତାଙ୍କୁ ଦେଖିବାକୁ ହୁଏ, ତା'ପରେ କାନ୍ଥଟିକୁ ଦେଖାଯାଏ । କାରଣ, ଚିରକାଳ ସବୁକିଛିର କର୍ତ୍ତା ହିଁ ସେ । କିଏ କାହାକୁ ଦେଖୁଛି ? ସେ ଆମ ଅନ୍ତରର ଅନ୍ତରତମ ପ୍ରଦେଶରେ ରହିଛନ୍ତି । ଦେହ ଓ ମନର ପରିବର୍ତ୍ତନ ହୁଏ । ସୁଖଦୁଃଖ, ଭଲମନ୍ଦ ଆସେ—ପୁଣି ଚାଲିଯାଏ । ଦିନ, ମାସ ଓ ବର୍ଷଗୁଡ଼ିକ ଆବର୍ତ୍ତିତ ହୋଇ ଚାଲିଛନ୍ତି । ଜୀବନ ମଧ୍ୟ ଆସେ ଓ ଚାଲିଯାଏ । କିନ୍ତୁ ତାଙ୍କର ମୃତ୍ୟୁ ନାହିଁ । "ମୁଁ ଅଛି, ମୁଁ ଅଛି"—ଏହି ଗୋଟିଏ ସ୍ୱର ଚିରନ୍ତନ ଓ ଅପରିବର୍ତ୍ତନୀୟ ! ତାଙ୍କର ଭିତରେ, ତାଙ୍କର ମାଧ୍ୟମରେ ହିଁ ଆମେସବୁ ଜାଣିଥାଉଁ । ତାଙ୍କର ଭିତରେ, ତାଙ୍କର ମାଧ୍ୟମରେ ଆମେ ସବୁ କିଛି ଦେଖୁ, ଅନୁଭବ କରୁ, ଚିନ୍ତା କରୁ, ବଞ୍ଚିଥାଉଁ । ତାଙ୍କର ମଧ୍ୟରେ ଓ ତାଙ୍କର ମାଧ୍ୟମରେ ଆମର ଅସ୍ତିତ୍ୱ । ପୁଣି ଯେଉଁ 'ମୁଁ'କୁ ଭୁଲ କରି ଆମେ ଶ୍ରେଷ୍ଠ 'ମୁଁ', ସୀମିତ 'ମୁଁ' ବୋଲି ଭାବୁ, ତାହା କେବଳ ମୋର 'ମୁଁ' ନୁହେଁ—ତାହା ତୁମମାନଙ୍କର ମଧ୍ୟ 'ମୁଁ', ପ୍ରାଣୀ-ମାନଙ୍କର, ଦେବଦୂତମାନଙ୍କର, ଏପରିକି ହୀନତମ ଜୀବର ମଧ୍ୟ ସେହି 'ମୁଁ' । ସେହି 'ମୁଁ ଅଛି'-ବୋଧଟି ଘାତକ ଭିତରେ ଯେପରି, ସାଧୁ ମଧ୍ୟରେ ବି ଠିକ୍ ସେହିପରି, ଧନୀ ମଧ୍ୟରେ ଯେଉଁପରି, ଦରିଦ୍ର ମଧ୍ୟରେ ବି ସେହିପରି । ନରନାରୀ, ମନୁଷ୍ୟ ଓ ଅନ୍ୟାନ୍ୟ ପ୍ରାଣୀ, ସବୁରି ମଧ୍ୟରେ ଏହି ବୋଧ ଏକ । ସର୍ବନିମ୍ନ ଜୀବକୋଷରୁ ସର୍ବୋଚ୍ଚ ଦେବଦୂତ ପର୍ଯ୍ୟନ୍ତ ପ୍ରତ୍ୟେକର ଅନ୍ତରରେ ହିଁ ସେ ବାସ କରୁଛନ୍ତି ଏବଂ ଚିରଦିନ ଘୋଷଣା କରୁଛନ୍ତି —"ମୁଁ ହେଉଛି ସେହି—ସୋଽହମ୍ ସୋଽହମ୍" । ଅନ୍ତରରେ ଚିରବିଦ୍ୟମାନ ଏହି ବାଣୀ ହୃଦୟଙ୍ଗମ ହେଲେ ଆମର ବୋଧଗମ୍ୟ ହୋଇଯିବ ଏବଂ ଆମେ ଏହାର ଶିକ୍ଷା ଗ୍ରହଣ

କରିବୁ, ସେତେବେଳେ ଦେଖିବୁ—ସମଗ୍ର ବିଶ୍ୱର ରହସ୍ୟ ପ୍ରକଟିତ ହୋଇପଡ଼ୁଛି । ଦେଖିବୁ, ପ୍ରକୃତି ଆମ ନିକଟରେ ରହସ୍ୟର ଦ୍ୱାର ଖୋଲି ଦେଉଛି । ଜାଣିବାର ଆଉ ସେପରି କିଛି ବାକି ନାହିଁ । ଆମେ ଦେଖିବୁ, ସମସ୍ତ ଧର୍ମ ଯେଉଁ ସତ୍ୟର ସନ୍ଧାନରେ ରତ, ଯେଉଁ ସତ୍ୟର ତୁଳନାରେ ଜଡ଼ବିଜ୍ଞାନର ସମସ୍ତ ଜ୍ଞାନ ଗୌଣ ମାତ୍ର, ଆମେ ସେହି ସତ୍ୟର ସନ୍ଧାନ ପାଇଅଛୁ । ଏହା ହିଁ ଏକ ମାତ୍ର ସତ୍ୟ ଜ୍ଞାନ, ଯାହା ଆମମାନଙ୍କୁ ବିଶ୍ୱର ଏହି ବିଶ୍ୱଜନୀନ ଈଶ୍ୱରଙ୍କ ସହିତ ଏକୀଭୂତ କରିଦିଏ ।

# ବିଶ୍ୱଜନୀନ ଧର୍ମର ଆଦର୍ଶ

## (କେଉଁ ଭାବରେ ଏହା ବିଭିନ୍ନ ପ୍ରକାର ମନୁଷ୍ୟଙ୍କୁ ଆକର୍ଷଣ କରିବ)

[ ଇଂଲଣ୍ଡରେ ପ୍ରଦତ୍ତ ବକ୍ତୃତା ]

ଆମର ଇନ୍ଦ୍ରିୟସମୂହ ଯେ କୌଣସି ବସ୍ତୁକୁ ଗ୍ରହଣ କରନ୍ତୁ ନା କାହିଁକି, ଅଥବା, ଆମର ମନ ଯେ କୌଣସି ବିଷୟ କଳ୍ପନା କରୁନା କାହିଁକି, ସର୍ବତ୍ର ଆମେ ଦୁଇଟି ଶକ୍ତିର କ୍ରିୟା ଓ ପ୍ରତିକ୍ରିୟା ଦେଖିବାକୁ ପାଉ । ତାହା ହେଲ—ଗୋଟିଏ ଅନ୍ୟଟି ବିରୋଧରେ କାର୍ଯ୍ୟ କରୁଛି ଏବଂ ଆମର ଚତୁର୍ଦ୍ଦିଗରେ ଜଟିଳ ଘଟଣାବଳି ଓ ଆମର ଅନୁଭୂତ ମାନସିକ ଭାବ-ପରମ୍ପରାର ଅବିଶ୍ରାନ୍ତ ଲୀଳାବିଳାସ ସଂଘଟନ କରୁଅଛି । ବହିର୍ଜଗତରେ ଏହି ବିପରୀତ ଶକ୍ତିଦ୍ୱୟ ଆକର୍ଷଣ ଓ ବିକର୍ଷଣ ରୂପରେ, ଅଥବା କେନ୍ଦ୍ରାନୁଗ ଓ କେନ୍ଦ୍ରାତିଗ ଶକ୍ତିରୂପରେ, ଏବଂ ଅନ୍ତର୍ଜଗତରେ ରାଗ, ଦ୍ୱେଷ ଓ ଶୁଭାଶୁଭରୂପେ ପ୍ରକାଶିତ ହେଉଅଛି । କେତେଗୁଡ଼ିଏ ଜିନିଷ ପ୍ରତି ଆମମାନଙ୍କର ବିଦ୍ୱେଷ ଏବଂ ଆଉ କେତେକ ବିଷୟ ପ୍ରତି ଆମର ଆକର୍ଷଣ ରହିଅଛି । ଆମେ କାହା କାହା ପ୍ରତି ଆକୃଷ୍ଟ ହେଉ—ପୁଣି କାହା କାହାଠାରୁ ଦୂରରେ ରହିବାକୁ ଚାହୁଁ । ଆମ ଜୀବନରେ ଅନେକ ସମୟରେ ଏପରି ମଧ ଘଟେ ଯେ ବିନା କାରଣରେ କେହି କେହି ଲୋକ ଆମକୁ ଆକୃଷ୍ଟ କରିଥାଆନ୍ତି—ଏବଂ ସେପରି କିଛି କାରଣ ନଥାଇ ମଧ କାହା କାହା ପ୍ରତି ଆମର ମନ ବିଦ୍ୱେଷରେ ଭରିଯାଏ । ଏହି ବିଷୟଟି ସମସ୍ତଙ୍କ ନିକଟରେ ପ୍ରତ୍ୟକ୍ଷସିଦ୍ଧ । ପୁଣି, ଏହି ଶକ୍ତିର କାର୍ଯ୍ୟକ୍ଷେତ୍ର ଯେତିକି ଉଚ୍ଚରେ ହେବ, ଏହି ବିରୁଦ୍ଧ ଶକ୍ତିଦ୍ୱୟର ପ୍ରଭାବ ସେତିକି ତୀବ୍ର ଓ ସ୍ପଷ୍ଟ ହୋଇ ଦେଖାଦେବ । ଧର୍ମ ହିଁ ମାନବର ଚିନ୍ତା ଓ ଜୀବନର ସର୍ବୋଚ୍ଚ ସ୍ତର ଏବଂ ଆମେ ଦେଖିବାକୁ ପାଉ ଯେ, ଧର୍ମଜଗତରେ ହିଁ ଏହି ଶକ୍ତିଦୁଇଟିର କ୍ରିୟା ସର୍ବାପେକ୍ଷା ପରିସ୍ଫୁଟ ହୋଇଅଛି । ମନୁଷ୍ୟ ଯେତେ ପ୍ରକାର ପ୍ରେମର ଆସ୍ୱାଦ ପାଇଅଛି, ତାହା ମଧ୍ୟରେ ତୀବ୍ରତମ ପ୍ରେମଲଭ ଧର୍ମରୁ ହିଁ ମିଳିଅଛି; ଏବଂ ମନୁଷ୍ୟ

ଯେତେ ପ୍ରକାର ପୈଶାଚିକ ଘୃଣାର ପରିଚୟ ପାଇଅଛୁ, ତାହାର ଉଦ୍‌ଭବ ମଧ୍ୟ ସେହି ଧର୍ମରୁ ହିଁ ଘଟିଅଛି । ଏ ଜଗତ୍ କୌଣସି ସମୟରେ ଯେଉଁ ମହତ୍ତମ ଶାନ୍ତିବାଣୀ ଶ୍ରବଣ କରିଅଛି, ତାହା ଧର୍ମରାଜ୍ୟର ଲୋକଙ୍କ ମୁଖରୁ ହିଁ ନିଃସୃତ ହୋଇଅଛି; ଏବଂ ଏ ଜଗତ୍ କୌଣସି ସମୟରେ ଯେଉଁ ତୀବ୍ରତମ ନିନ୍ଦା ଓ ଅଭିଶାପ ଶ୍ରବଣ କରିଅଛି, ତାହା ମଧ୍ୟ ଏହି ଧର୍ମରାଜ୍ୟର ଲୋକଙ୍କ ମୁଖରେ ଉଚ୍ଚାରିତ ହୋଇଅଛି । କୌଣସି ଧର୍ମର ଉଦ୍ଦେଶ୍ୟ ଯେତେ ଉଚ୍ଚତର ଏବଂ ଏହାର କାର୍ଯ୍ୟପ୍ରଣାଳୀ ଯେତେ ସୁବିନ୍ୟସ୍ତ, ତାହାର କ୍ରିୟାଶୀଳତା ସେତିକି ଆଶ୍ଚର୍ଯ୍ୟ । ଧର୍ମପ୍ରେରଣାରେ ମନୁଷ୍ୟ ଏ ଜଗତରେ ଯେଉଁ ରକ୍ତର ବନ୍ୟା ପ୍ରବାହିତ କରିଅଛି, ମନୁଷ୍ୟ-ହୃଦୟର ଅନ୍ୟ କୌଣସି ପ୍ରେରଣାରେ ତାହା ଘଟିନାହିଁ । ପୁଣି, ଏହି ଧର୍ମ-ପ୍ରେରଣାରେ ଯେତେ ଚିକିତ୍ସାଳୟ ଏବଂ ଆତୁରାଶ୍ରମ ପ୍ରତିଷ୍ଠିତ ହୋଇଅଛି, ଅନ୍ୟ କୌଣସିଥିରେ ସେତେ ହୋଇ ନାହିଁ । ଧର୍ମ-ପ୍ରେରଣା ସଦୃଶ ମନୁଷ୍ୟ-ହୃଦୟର ଅନ୍ୟ କୌଣସି ବୃତ୍ତି ତାଙ୍କୁ, କେବଳ ମାନବଜାତି ପାଇଁ ନୁହେଁ, ନିମ୍ନତମ ପ୍ରାଣୀମାନଙ୍କ ନିମିତ୍ତ ମଧ୍ୟ ଏତେ ଯତ୍ନଶୀଳ ହେବାକୁ ପ୍ରବର୍ତ୍ତାଇ ପାରନ୍ତା ନାହିଁ । ଧର୍ମର ପ୍ରଭାବରେ ପୁଣି ମନୁଷ୍ୟ ଯେତେ ନିଷ୍ଠୁର ହୁଏ, ଏମିତି ଆଉ କେଉଁଥିରେ ହୁଏ ନାହିଁ । ପୁଣି, ଧର୍ମ ପ୍ରଭାବରେ ମନୁଷ୍ୟ ଯେତେ କୋମଳ ହୁଏ, ଏପରି ଆଉ କେଉଁଥିରେ ହୋଇ-ପାରେ ନାହିଁ । ଅତୀତରେ ଏପରି କେତେ ଘଟିଛି ଏବଂ ଭବିଷ୍ୟତରେ ମଧ୍ୟ ସମ୍ଭବତଃ ଏପରି ପୁଣି କେତେ ଘଟିବ । ତଥାପି ବିଭିନ୍ନ ଜାତି ଓ ଧର୍ମର ସଂଘର୍ଷରୁ ଉତ୍ଥିତ ଏହି ଦ୍ୱନ୍ଦ୍ୱ-କୋଳାହଳ, ଏହି ବାଦବିସମ୍ବାଦ, ଏହି ହିଂସାଦ୍ୱେଷ ମଧ୍ୟରୁ ସମୟ ସମୟରେ ଏପରି ସବୁ ଶକ୍ତିଶାଳୀ ଗମ୍ଭୀର କଣ୍ଠ ଉତ୍ଥିତ ହୋଇଛି, ଯାହାକି ଏହି ସମୁଦାୟ କୋଳାହଳକୁ ନୀରବ କରି, ସତେକି ସୁମେରୁଠାରୁ କୁମେରୁ ପର୍ଯ୍ୟନ୍ତ ସମସ୍ତଙ୍କୁ ନିଜର ବାଣୀ ଶୁଣିବାକୁ ବାଧ୍ୟ କରିଛି ଏବଂ ସମଗ୍ର ବିଶ୍ୱରେ ଶାନ୍ତି ଓ ମିଳନର ବାଣୀ ଘୋଷଣା କରିଛି । ଆହା, ଜଗତରେ ଭଲା କେବେ ଏହି ଶାନ୍ତି ଓ ସମନ୍ୱୟ ପ୍ରତିଷ୍ଠିତ ହେବ !

ଧର୍ମରାଜ୍ୟର ଏହି ପ୍ରବଳ ବାଦବିସମ୍ବାଦ ସ୍ତରରେ ଗୋଟିଏ ଅବିଚ୍ଛିନ୍ନ ସମନ୍ୱୟ ବିରାଜିତ ହେବା କ'ଣ କେବେ ସମ୍ଭବ ହୋଇ ପାରିବ ନାହିଁ ? ବର୍ତ୍ତମାନ ଶତାବ୍ଦୀର ଶେଷ ଭାଗରେ ଏହି ମିଳନର ପ୍ରଶ୍ନ ନେଇ ଜଗତରେ ଗୋଟାଏ ଚହଲ ପଡ଼ି ଯାଇଛି । ସମାଜରେ ଏହି ସମସ୍ୟା-ପୂରଣର ନାନାରୂପ ପ୍ରସ୍ତାବ ଉଠିଅଛି ଏବଂ ସେଗୁଡ଼ିକୁ କାର୍ଯ୍ୟରେ ପରିଣତ କରିବାର ନାନାବିଧ ଚେଷ୍ଟା ଚାଲିଅଛି । କିନ୍ତୁ ଏହା ଯେ କେତେଦୂର କଠିନ, ତାହା ଆମେ ସମସ୍ତେ ଜାଣୁ । ଜୀବନ-ସଂଗ୍ରାମର ଭୀଷଣତା ଲାଘବ କରିବା—ମନୁଷ୍ୟ ମଧ୍ୟରେ ଯେଉଁ ପ୍ରବଳ ସ୍ନାୟବିକ ଉତ୍ତେଜନା ରହିଅଛି—ତାହା ମନ୍ଦୀଭୂତ କରିବା ଆଦି ବିଷୟମାନ ମନୁଷ୍ୟ ପକ୍ଷରେ ଅସମ୍ଭବ ବୋଲି ମନେ ହେଉଛି । ଜୀବନର ଯାହା ବାହ୍ୟ, ସ୍ଥୂଳ ଏବଂ ବହିରଂଶ ମାତ୍ର, ସେହି ବହିର୍ଜଗତରେ ସାମ୍ୟ ଓ ଶାନ୍ତିବିଧାନ କରିବା ହିଁ ଯଦି ଏତେ କଠିନ ହୁଏ, ତେବେ ମନୁଷ୍ୟର ଅନ୍ତର୍ଜଗତରେ ସାମ୍ୟ ଓ ଶାନ୍ତିବିଧାନ କରିବା ତଦପେକ୍ଷା ସହସ୍ରଗୁଣ କଠିନ । ମୁଁ ଆପଣମାନଙ୍କୁ ବାକ୍ୟଜାଲ ଭିତରୁ କିଛିକ୍ଷଣ ଲାଗି ବାହାରକୁ

ଆସିବାକୁ ଅନୁରୋଧ କରୁଅଛୁ । ଆମେ ସମସ୍ତେ ବାଲ୍ୟକାଳରୁ ପ୍ରେମ, ଶାନ୍ତି, ମୈତ୍ରୀ, ସାମ୍ୟ ଓ ସାର୍ବଜନୀନ ଭ୍ରାତୃଭାବ ପ୍ରଭୃତି ଅନେକ କଥା ଶୁଣି ଆସିଛୁ । କିନ୍ତୁ ସେଗୁଡ଼ିକ ଆମ ନିକଟରେ କେତେକ ନିରର୍ଥକ ଶବ୍ଦମାତ୍ରରୂପରେ ପରିଣତ ହୋଇ ଯାଇଛି । ଆମେ ସେଗୁଡ଼ିକୁ ଶୁକପକ୍ଷୀ ସଦୃଶ କେବଳ ରଟି ଥାଉ ଏବଂ ଏହା ହିଁ ଆମର ସ୍ୱଭାବ ହୋଇ ରହି-ଯାଇଛି । ଆମେ ଏପରି ନ କରି ରହିପାରୁନାହିଁ । ଯେଉଁ ମହାପୁରୁଷଗଣ ପ୍ରଥମେ ସେମାନଙ୍କ ହୃଦୟରେ ଏହି ମହାନ୍ ତତ୍ତ୍ୱଗୁଡ଼ିକୁ ଉପଲବ୍ଧି କରିଥିଲେ, ସେହିମାନେ ହିଁ ପ୍ରଥମେ ଏହି ଶବ୍ଦଗୁଡ଼ିକୁ ସୃଷ୍ଟି କରିଛନ୍ତି । ସେତେବେଳେ ଅନେକେ ଏହିଗୁଡ଼ିକର ଅର୍ଥ ବୁଝିଥିଲେ । ପରେ ଅଜ୍ଞ ଲୋକମାନେ ଏହି ଶବ୍ଦଗୁଡ଼ିକୁ ନେଇ ପିଲାଖେଳ ଖେଳୁଛନ୍ତି । ଅବଶେଷରେ ଧର୍ମ ଜିନିଷଟିକୁ କେବଳ ମାତ୍ର କଥାର ମାରପେଞ୍ଚ ଭିତରେ ରଖାଯାଇଛି । ଏହାକୁ ଯେ ଜୀବନରେ ପରିଣତ କରାଯିବା ଉଚିତ, ତାହା ସେମାନେ ଭୁଲି ଯାଇଛନ୍ତି । ଏହା ବର୍ତ୍ତମାନ 'ପୈତୃକ ଧର୍ମ' 'ଜାତୀୟ ଧର୍ମ', 'ଦେଶୀୟ ଧର୍ମ' ଇତ୍ୟାଦିରେ ପରିଣତ ହୋଇଅଛି । ଶେଷରେ କୌଣସି ଧର୍ମାବଲମ୍ବୀ ହେବାଟା ସ୍ୱଦେଶପ୍ରେମର ଗୋଟିଏ ଅଙ୍ଗ ହୋଇ ଠିଆ ହୋଇଛି ଏବଂ କହିଲେ ଅତ୍ୟୁକ୍ତି ହେବ ନାହିଁ ଯେ, ଏହି ସ୍ୱଦେଶପ୍ରେମ ଜିନିଷଟି ସର୍ବଦା ହିଁ ଏକଦେଶୀ । ବିଭିନ୍ନ ଧର୍ମ ମଧ୍ୟରେ ସାମଞ୍ଜସ୍ୟବିଧାନ କରିବା କଷ୍ଟକର କଥା; ତଥାପି ଆମେମାନେ ଏହି ଧର୍ମ-ସମନ୍ୱୟ ସମସ୍ୟାର ଆଲୋଚନା କରିବା ।

ଆମେ ଦେଖିବାକୁ ପାଉ ଯେ, ପ୍ରତ୍ୟେକ ଧର୍ମର ତିନୋଟି ବିଭାଗ ରହିଛି । ମୁଁ ଅବଶ୍ୟ ପ୍ରସିଦ୍ଧ ଓ ସର୍ବଜନପରିଚିତ ଧର୍ମଗୁଡ଼ିକର କଥା ହିଁ କହୁଛି । ପ୍ରଥମତଃ ଦାର୍ଶନିକ ଭାଗ—ଯେଉଁଥିରେ ସେହି ଧର୍ମର ସମଗ୍ର ବିଷୟବସ୍ତୁ ଅର୍ଥାତ୍ ଏହାର ମୂଳତତ୍ତ୍ୱ, ଉଦ୍ଦେଶ୍ୟ ଓ ତାହାକୁ ଲାଭ କରିବାର ଉପାୟ ନିହିତ । ଦ୍ୱିତୀୟତଃ ପୌରାଣିକ ଭାଗ—ଅର୍ଥାତ୍ ଦର୍ଶନକୁ ସ୍ଥୂଳ ରୂପ ପ୍ରଦାନ । ଏଥିରେ ସାଧାରଣ ବା ଅପ୍ରାକୃତ ପୁରୁଷମାନଙ୍କର ଜୀବନର ଉପାଖ୍ୟାନ ଆଦି ଲିପିବଦ୍ଧ ହୋଇଥାଏ । ଏଥିରେ ସୂକ୍ଷ୍ମ ଦାର୍ଶନିକ ତତ୍ତ୍ୱଗୁଡ଼ିକ ସାଧାରଣ ବା ଅପ୍ରାକୃତ ପୁରୁଷମାନଙ୍କର ଅଳ୍ପ-ବିସ୍ତର କାଳ୍ପନିକ ଜୀବନର ଦୃଷ୍ଟାନ୍ତଦ୍ୱାରା ସ୍ଥୂଳ ଭାବେ ବିବୃତ ହୋଇଥାଏ । ତୃତୀୟତଃ ଆନୁଷ୍ଠାନିକ ଭାଗ—ଏହା ଧର୍ମର ଆହୁରି ସ୍ଥୂଳଭାଗ । ଏଥିରେ ପୂଜାପଦ୍ଧତି, ଆଚାର ଅନୁଷ୍ଠାନ, ବିବିଧ ଅଙ୍ଗନ୍ୟାସ, ପୁଷ୍ପ, ଧୂପ, ଦୀପ, ନୈବେଦ୍ୟାଦି ନାନାପ୍ରକାର ଇନ୍ଦ୍ରିୟଗ୍ରାହ୍ୟ ବସ୍ତୁର ପ୍ରୟୋଗ ରହିଥାଏ । ଆନୁଷ୍ଠାନିକ ଧର୍ମ ଏହିସବୁକୁ ନେଇ ଗଠିତ । ଆପଣମାନେ ଦେଖିବାକୁ ପାଇବେ ସମୁଦାୟ ବିଖ୍ୟାତ ଧର୍ମ-ଗୁଡ଼ିକର ଏହି ତିନୋଟି ଭାଗ ରହିଛି । କୌଣସି ଧର୍ମ ହୁଏତ ଦାର୍ଶନିକ ଭାଗ ଉପରେ ବେଶୀ ଜୋର୍ ଦିଏ, କୌଣସି ଧର୍ମ ଅନ୍ୟ କିଛିଟି ଉପରେ । ବର୍ତ୍ତମାନ ଏହି ପ୍ରଥମ ଅର୍ଥାତ୍ ଦାର୍ଶନିକ ଭାଗଟିର କଥା ଧରାଯାଉ ।

ସାର୍ବଜନୀନ ଦର୍ଶନ ବୋଲି କିଛି ଅଛି କି ? ବର୍ତ୍ତମାନ ପର୍ଯ୍ୟନ୍ତ ତ କିଛି ହୋଇ ନାହିଁ । ପ୍ରତ୍ୟେକ ଧର୍ମ ତାର ନିଜ ନିଜ ମତବାଦ ଉପସ୍ଥାପିତ କରି ସେହିଗୁଡ଼ିକୁ ଏକମାତ୍ର ସତ୍ୟ ବୋଲି ବିଶ୍ୱାସ କରିବାକୁ ଜିଦ୍ କରେ । କେବଳ ମାତ୍ର ଏତିକି କରି କ୍ଷାନ୍ତ ହୁଏ

ନାହିଁ । ପରନ୍ତୁ ସେହି ଧର୍ମାବଲମ୍ବୀ ମନେ କରେ—ଏହି ମତରେ ଯେ ବିଶ୍ୱାସ ନ କରେ ପରଲୋକରେ ତାର ଗତି ଭୟାବହ ହେବ । କେହି କେହି ପୁଣି ଅନ୍ୟଙ୍କୁ ନିଜ ମତ ଭିତରକୁ ଆଣିବା ଲାଗି ବାଧ୍ୟ କରିବାକୁ ତରବାରି ପର୍ଯ୍ୟନ୍ତ ବ୍ୟବହାର କରନ୍ତି । ଏ କଥା ଯେ ସେମାନେ ଦୁର୍ମତିବଶତଃ କରନ୍ତି, ତା' ନୁହେଁ—ଧର୍ମୋନ୍ମାଦ ନାମକ ବିକୃତ ମସ୍ତିଷ୍କର ବଶବର୍ତ୍ତୀ ହୋଇ ସେହି ତାଡ଼ନାରେ ସେମାନେ ଏପରି ନୃଶଂସ କାର୍ଯ୍ୟ କରିଥାଆନ୍ତି । ଏହି ଧର୍ମାନ୍ଧମାନେ ଖୁବ୍ ଅକପଟ, ମାନବଜାତି ମଧ୍ୟରେ ସର୍ବାପେକ୍ଷା ବେଶୀ ଅକପଟ । କିନ୍ତୁ ସେମାନେ ଜଗତର ଅନ୍ୟାନ୍ୟ ପାଗଳମାନଙ୍କ ପରି ସମ୍ପୂର୍ଣ୍ଣ କାଣ୍ଡଜ୍ଞାନବିବର୍ଜିତ । ଅନ୍ୟାନ୍ୟ ମାରାତ୍ମକ ବ୍ୟାଧି ସଦୃଶ ଏହି ଧର୍ମୋନ୍ମାଦ ମଧ୍ୟ ଏକ ଭୟଙ୍କର ବ୍ୟାଧି । ମଣିଷର ଯେତେପ୍ରକାର କୁପ୍ରବୃତ୍ତି ରହିଛି, ଏହି ଧର୍ମାନ୍ଧତା ସେଗୁଡ଼ିକ ସବୁକୁ ଉଦ୍‌ବୁଦ୍ଧ କରି ଦେଇଥାଏ । ଏହାଦ୍ୱାରା କ୍ରୋଧ ପ୍ରଜ୍ୱଳିତ ହୁଏ, ସ୍ନାୟୁମଣ୍ଡଳୀ ଅତିଶୟ ଚଞ୍ଚଳ ହୁଏ ଏବଂ ମନୁଷ୍ୟ ବ୍ୟାଘ୍ର ସଦୃଶ ହିଂସ୍ର ହୋଇଉଠେ ।

ବିଭିନ୍ନ ଧର୍ମର ପୁରାଣଗୁଡ଼ିକ ଭିତରେ କଣ କିଛି ସାଦୃଶ୍ୟ ଅଛି ? ପୌରାଣିକ ଦୃଷ୍ଟିରେ ଏପରି କୌଣସି ଐକ୍ୟ, ଏପରି କୌଣସି ଐତିହ୍ୟଗତ ସାର୍ବଭୌମିକତା ଅଛି କି, ଯାହା ସକଳ ଧର୍ମ ଗ୍ରହଣ କରିପାରେ ? ନାହିଁ ନିଶ୍ଚୟ । ସକଳ ଧର୍ମର ନିଜ ନିଜର ପୁରାଣ ରହିଛି । ଯଦିଓ ପ୍ରତ୍ୟେକେ କହନ୍ତି, "ଆମର ପୁରାଣୋକ୍ତ ଗଳ୍ପଗୁଡ଼ିକ କେବଳ ଉପକଥା ମାତ୍ର ନୁହେଁ ।" ଏହି ବିଷୟଟିକୁ ଉଦାହରଣ ଦେଇ ବୁଝିବାର ଚେଷ୍ଟା କରାଯାଉ । ମୁଁ କେବଳ ଦୃଷ୍ଟାନ୍ତଦ୍ୱାରା ବିଷୟଟିକୁ ବୁଝାଇବାକୁ ଚାହୁଁଛି । କୌଣସି ଧର୍ମକୁ ସମାଲୋଚନା କରିବା ମୋର ଉଦ୍ଦେଶ୍ୟ ନୁହେଁ । ଖ୍ରୀଷ୍ଟାନମାନେ ବିଶ୍ୱାସ କରନ୍ତି ଯେ, ଈଶ୍ୱର ଗୋଟିଏ ବାଜପକ୍ଷୀରୂପ ଧାରଣ କରି ପୃଥିବୀରେ ଅବତୀର୍ଣ୍ଣ ହୋଇଥିଲେ । ସେମାନଙ୍କ ମତରେ ଏହା "ପୌରାଣିକ ଗଳ୍ପ ମାତ୍ର ନୁହେଁ—ଖାଣ୍ଟି ଐତିହାସିକ ସତ୍ୟ ଅଟେ ।" ହିନ୍ଦୁମାନେ ଏଣେ ଗାଈ ଭିତରେ ଭଗବତୀଙ୍କ ଆବିର୍ଭାବକୁ ବିଶ୍ୱାସ କରନ୍ତି । ଖ୍ରୀଷ୍ଟାନମାନେ କହନ୍ତି—ଏଭଳି ବିଶ୍ୱାସର କୌଣସି ଐତିହାସିକ ଭିତ୍ତି ନାହିଁ । ଏହା କେବଳ ପୌରାଣିକ ଗଳ୍ପ, କୁସଂସ୍କାର ମାତ୍ର । ଇହୁଦୀଗଣ ଭାବନ୍ତି—ଯଦି ଗୋଟିଏ ବାକ୍‌ସରେ ବା ସିନ୍ଦୁକର ଦୁଇପାର୍ଶ୍ୱରେ ଦୁଇଟି ଦେବଦୂତଙ୍କ ମୂର୍ତ୍ତି ସ୍ଥାପନ କରାଯାଏ, ତେବେ ଏହାକୁ ମନ୍ଦିରର ଅଭ୍ୟନ୍ତରରେ ପବିତ୍ରତମ ସ୍ଥାନରେ ସ୍ଥାପନ କରାଯିବା ଉଚିତ । ଏହା କୁଆଡ଼େ ଜିହୋବାଙ୍କ ଦୃଷ୍ଟିରେ ପରମ ପବିତ୍ର । କିନ୍ତୁ ମୂର୍ତ୍ତିଟି ଯଦି କୌଣସି ସୁନ୍ଦର ନର ବା ନାରୀ ଆକାରରେ ଗଠିତ ହୁଏ, ତା'ହେଲେ ସେମାନେ କହନ୍ତି, "ଏହା ଗୋଟିଏ ବୀଭତ୍ସ ପିତୁଳା ମାତ୍ର । ଏହାକୁ ଭାଙ୍ଗିଦିଅ ।" ତା'ହେଲେ ପୌରାଣିକ ଦିଗରୁ ଏହି ତ ଆମର ମେଳ ବା ସାମଞ୍ଜସ୍ୟ ! ଯଦି ଜଣେ ଲୋକ ଠିଆ ହୋଇ କହେ, "ଆମର ଈଶ୍ୱରପ୍ରେରିତ ମହାପୁରୁଷମାନେ ଏହିସବୁ ଅତ୍ୟାଶ୍ଚର୍ଯ୍ୟ କାର୍ଯ୍ୟମାନ କରିଯାଇଛନ୍ତି" ତେବେ ଅନ୍ୟ ସମସ୍ତେ ସଙ୍ଗେ ସଙ୍ଗେ କହି ଉଠିବେ—"ଏହା କେବଳ କୁସଂସ୍କାର ମାତ୍ର ।" ଏତିକି କହି ସେମାନେ ସଙ୍ଗେ ସଙ୍ଗେ

ପୁଣି ମଧ୍ୟ କହିବେ ଯେ, ସେମାନଙ୍କର ଈଶଦୂତଗଣ ଏହା ଅପେକ୍ଷା ବି ଅଧିକ ଆଶ୍ଚର୍ଯ୍ୟ-ଜନକ କାର୍ଯ୍ୟ କରିଥିଲେ ଏବଂ ସେମାନେ ସେଗୁଡ଼ିକୁ ଐତିହାସିକ ସତ୍ୟ ବୋଲି ମଧ୍ୟ ଦାବୀ କରନ୍ତି । ମୁଁ ଯେତେଦୂର ଦେଖିଛି, ଏହି ପୃଥିବୀରେ ଏପରି କେହି ନାହିଁ, ଯେ ଏହିସବୁ ଲୋକଙ୍କ ମସ୍ତିଷ୍କ ଭିତରେ ଇତିହାସ ଓ ପୁରାଣ ମଧ୍ୟରେ ଏହି ଯେଉଁ ସୂକ୍ଷ୍ମ ପାର୍ଥକ୍ୟଟି ରହିଛି, ତା'ର ଯାଥାର୍ଥ୍ୟ ଉପଲବ୍‌ଧି କରିପାରିଛନ୍ତି । ଏହି ପ୍ରକାର ଗଳ୍ପସବୁ ଯେଉଁ ଧର୍ମର ହେଉ ନା କାହିଁକି, ତାହା ପ୍ରକୃତ ପକ୍ଷରେ ପୁରାଣର ପର୍ଯ୍ୟାୟଭୁକ୍ତ, ଯଦିଓ କେବେ କେବେ ହୁଏତ ଏଗୁଡ଼ିକ ମଧ୍ୟରେ ସାମାନ୍ୟ ଐତିହାସିକ ସତ୍ୟ ଥାଇପାରେ ।

ତା'ପରେ ଅନୁଷ୍ଠାନଗୁଡ଼ିକର କଥା—ସମ୍ପ୍ରଦାୟବିଶେଷର ହୁଏତ କୌଣସି ବିଶେଷ ପ୍ରକାର ଅନୁଷ୍ଠାନପଦ୍ଧତି ଅଛି ଏବଂ ସେମାନେ ଏହାକୁ ହିଁ ପବିତ୍ର ଏବଂ ଅପର ସମ୍ପ୍ରଦାୟର ଅନୁଷ୍ଠାନଗୁଡ଼ିକୁ ଘୋର କୁସଂସ୍କାର ବୋଲି ମନେକରନ୍ତି । ଯଦି ଗୋଟିଏ ସମ୍ପ୍ରଦାୟ କୌଣସି ବିଶେଷ ପ୍ରକାର ପ୍ରତୀକର ଉପାସନା କରେ, ତେବେ ଅପର ସମ୍ପ୍ରଦାୟ ମନ୍ତବ୍ୟ ଦିଅନ୍ତି—"ଓଃ ! କି ଜଘନ୍ୟ !" ଗୋଟିଏ ସାଧାରଣ ପ୍ରତୀକର କଥା ଧରାଯାଉ—ଲିଙ୍ଗ-ଉପାସନାରେ ବ୍ୟବହୃତ ପ୍ରତୀକ ନିଶ୍ଚୟ ପୁଂ-ଚିହ୍ନ । କିନ୍ତୁ କ୍ରମଶଃ ଏହାର ଏହି ସାମାନ୍ୟ ଦିଗଟି ଲୋକେ ଭୁଲି ଯାଇଛନ୍ତି ଏବଂ ବର୍ତ୍ତମାନ ଏହା ଈଶ୍ୱରଙ୍କ ସର୍ଜନାର ପ୍ରତୀକରୂପେ ଗୃହୀତ ହୋଇଅଛି । ଯେଉଁସବୁ ଜାତି ଏହାକୁ ପ୍ରତୀକରୂପେ ଗ୍ରହଣ କରିଛନ୍ତି, ସେମାନେ କେବେ ମଧ୍ୟ ଏହାକୁ ପୁଂ-ଚିହ୍ନରୂପେ ଚିନ୍ତା କରନ୍ତି ନାହିଁ । ଏହା ମଧ୍ୟ ଅନ୍ୟାନ୍ୟ ପ୍ରତୀକ ସଦୃଶ ଗୋଟିଏ ପ୍ରତୀକ—ଏହି ପର୍ଯ୍ୟନ୍ତ; କିନ୍ତୁ ଅପର ଜାତି ବା ସମ୍ପ୍ରଦାୟର ଜଣେ ଲୋକ ଏଥିରେ ପୁଂ-ଚିହ୍ନ ବ୍ୟତୀତ ଆଉ କିଛି ଦେଖିପାରେ ନାହିଁ । ସୁତରାଂ ସେ ଏହାର ନିନ୍ଦାବାଦ ଆରମ୍ଭ କରେ; ପୁଣି ସେ ହୁଏତ ସେତେବେଳେ ଏପରି କିଛି କରିଦିଏ, ଯାହା କି ତଥାକଥିତ ଲିଙ୍ଗ-ଉପାସକମାନଙ୍କ ଦୃଷ୍ଟିରେ ଅତ୍ୟନ୍ତ ବୀଭତ୍ସ ମନେହୁଏ । ଦୃଷ୍ଟାନ୍ତସ୍ୱରୂପ, ଏହି ଦୁଇଟି କଥା ଧରାଯାଉ—ଲିଙ୍ଗୋପାସନା ଓ ସାକ୍ରାମେଣ୍ଟ ନାମକ ଖ୍ରୀଷ୍ଟୀୟ ଅନୁଷ୍ଠାନ । ଖ୍ରିଷ୍ଟିୟାନମାନଙ୍କ ନିକଟରେ ଲିଙ୍ଗୋପାସନାରେ ବ୍ୟବହୃତ ପ୍ରତୀକଟି ଅତି କୁତ୍ସିତ ଏବଂ ହିନ୍ଦୁମାନଙ୍କ ନିକଟରେ ଖ୍ରୀଷ୍ଟୀୟାନଙ୍କର ସାକ୍ରାମେଣ୍ଟ ବୀଭତ୍ସ ବୋଲି ମନେହୁଏ । ସେମାନେ କହନ୍ତି ଯେ କୌଣସି ମନୁଷ୍ୟର ସଦ୍‌ଗୁଣାବଳୀ ପାଇବା ଆଶାରେ ତାକୁ ହତ୍ୟାକରି ତାର ମାଂସ ଭକ୍ଷଣ କରିବା ଓ ରକ୍ତପାନ କରିବା ତ ନରଖାଦକମାନଙ୍କର ବୃତ୍ତିମାତ୍ର । କୌଣସି କୌଣସି ବର୍ବର ଜାତି ଏହିଭଳି କରିଥାନ୍ତି । ଯଦି କୌଣସି ଲୋକ ଖୁବ୍ ବୀର ହୁଏ, ତା'ହେଲେ ସେମାନେ ତାକୁ ହତ୍ୟା କରି ତା'ର ହୃତ୍‌ପିଣ୍ଡ ଭକ୍ଷଣ କରନ୍ତି । କାରଣ ସେମାନେ ମନେକରନ୍ତି ଯେ, ଏହାଦ୍ୱାରା ସେମାନେ ସେହି ବ୍ୟକ୍ତିର ସାହସ ଓ ବୀରତ୍ୱ ପ୍ରଭୃତି ଗୁଣାବଳୀ ଲାଭ କରିବେ । ସାର୍ ଜନ୍ ଲବକ୍‌ଙ୍କ ପରି ଭକ୍ତିମାନ୍ ଖ୍ରୀଷ୍ଟାନ୍ ମଧ୍ୟ ଏକଥା ସ୍ୱୀକାର କରନ୍ତି ଏବଂ କହନ୍ତି ଯେ, ବର୍ବର ଜାତିମାନଙ୍କର ଏହି ଧାରଣାରୁ ଖ୍ରୀଷ୍ଟାନ୍ ଅନୁଷ୍ଠାନଟିର ଉଦ୍ଭବ ହୋଇଛି । ଖ୍ରୀଷ୍ଟାନ୍‌ମାନେ ଅବଶ୍ୟ ଏହାର ଉଦ୍ଭବ ସମ୍ବନ୍ଧରେ ଏହି ମତ ସ୍ୱୀକାର କରନ୍ତି ନାହିଁ; ଏବଂ

ଏଭଳି ଅନୁଷ୍ଠାନରୁ କି ପ୍ରକାର ଆଶ୍ୱାସ ମିଳିପାରେ, ତାହା ମଧ୍ୟ ସେମାନଙ୍କ ମୁଣ୍ଡରେ ପଶେ ନାହିଁ । ଏହା ଗୋଟିଏ ପବିତ୍ର ଘଟଣାର ପ୍ରତୀକ—ଏତିକି ମାତ୍ର ଜାଣି ସେମାନେ ସନ୍ତୁଷ୍ଟ । ସୁତରାଂ ଆନୁଷ୍ଠାନିକ ଭାବରେ ମଧ୍ୟ ଏପରି କୌଣସି ସାଧାରଣ ପ୍ରତୀକ ନାହିଁ, ଯାହା କି ସକଳ ଧର୍ମମତରେ, ସମସ୍ତଙ୍କ ପକ୍ଷରେ, ସ୍ୱୀକାର୍ଯ୍ୟ ଓ ଗ୍ରହଣୀୟ ହୋଇପାରେ । ତା'ହେଲେ କିଛିମାତ୍ର ସାର୍ବଭୌମିକତା କେଉଁଠାରେ ରହିଲା ? ତା'ହେଲେ ଧର୍ମର କୌଣସି ପ୍ରକାର ସାର୍ବଭୌମ ରୂପ ଗଢ଼ି ତୋଳିବା ପୁଣି କିପରି ଭାବରେ ସମ୍ଭବ ହେବ ? ବାସ୍ତବିକ କିନ୍ତୁ ତାହା ପୂର୍ବରୁ ହିଁ ରହିଅଛି । ବର୍ତ୍ତମାନ ତାହା କ'ଣ ଦେଖାଯାଉ ।

ଆମେ ସମସ୍ତେ ସାର୍ବଜନୀନ ଭ୍ରାତୃଭାବର କଥା ଶୁଣିଥାଉଁ ଏବଂ ବିଭିନ୍ନ ସଂପ୍ରଦାୟ ଏହାର ବିଶେଷ ପ୍ରଚାରରେ କିଭଳି ଉତ୍ସାହୀ, ତାହା ମଧ୍ୟ ଦେଖିଥାଉ । ମୋର ଗୋଟିଏ ପୁରାତନ ଗଳ୍ପ ମନେପଡ଼ୁଛି । ଭାରତବର୍ଷରେ ମଦ୍ୟପାନ ଅତି ମନ୍ଦ କାର୍ଯ୍ୟ ବୋଲି ବିବେଚିତ ହୋଇଥାଏ । ଦୁଇଟି ଭାଇ ଥିଲେ । ସେମାନେ ରାତିରେ ଲୁଚେଇ କରି ମଦ ପିଇବାକୁ ଇଚ୍ଛା କଲେ । ପାଖ ଘରେ ସେମାନଙ୍କର କକା ନିଦରେ ଶୋଇଥିଲେ । ସେ ଥିଲେ ଖୁବ୍ ନିଷ୍ଠାବାନ୍ ଲୋକ । ସେଥିଯୋଗୁଁ ମଦ ପିଇବା ପୂର୍ବରୁ ସେମାନେ ପରସ୍ପର କଥାବାର୍ତ୍ତା ହେଲେ, "ଆମକୁ ଖୁବ୍ ଚୁପ୍‌ଚାପ୍ କାମ ସାରିବାକୁ ହେବ, ନୋହେଲେ କକା ଉଠି ପଡ଼ିବେ ।" ତା'ପରେ ସେମାନେ ମଦ ପିଇ ପିଇ ପରସ୍ପରକୁ ଚୁପ୍ କରାଇବା ଲାଗି ଚିତ୍କାର ଆରମ୍ଭ କଲେ, "ଆବେ, ତୁ ଚୁପ୍ କର, କକାଙ୍କ ନିଦ ଭାଙ୍ଗିଯିବ ।" ସେମାନଙ୍କର କଣ୍ଠସ୍ୱର ପରସ୍ପରଠାରୁ ଅଧିକ ହେବାରୁ ସେହି କୋଲାହଳରେ କକାଙ୍କ ନିଦ ଭାଙ୍ଗିଗଲା । ସେ ଏ ଘରକୁ ଆସି ସବୁ କଥା ଜାଣିପାରିଲେ । ଆମେସବୁ ଏହି ମାତାଲମାନଙ୍କ ପରି ଚିତ୍କାର କରୁ, "ସାର୍ବଜନୀନ ଭ୍ରାତୃଭାବ ! ଆମେ ସମସ୍ତେ ସମାନ । ଅତଏବ ଆସ ଆମେ ଗୋଟିଏ ଦଳ ଗଢ଼ିବା ।" କିନ୍ତୁ ଯେତେବେଳେ ତୁମେ ସତକୁ ସତ ଦଳଟିଏ ଗଢ଼ିଦେବ, ସେତେବେଳେ ତୁମେ ଫଳତଃ ସାମ୍ୟଭାବର ବିରୋଧରେ ଠିଆ ହେବ ଏବଂ ସେତେବେଳେ ଆଉ ସାମ୍ୟ ବୋଲି କିଛି ରହିବ ନାହିଁ । ମୁସଲମାନଗଣ 'ସାର୍ବଜନୀନ ଭ୍ରାତୃଭାବ' ବୋଲି ଚିତ୍କାର କରନ୍ତି । କିନ୍ତୁ ବାସ୍ତବରେ କାର୍ଯ୍ୟକ୍ଷେତ୍ରରେ କେତେଦୂର ସେକଥା ପାଳନ କରିଥାଆନ୍ତି ? ଶେଷରେ ଏହା ହିଁ ହୁଏ ଯେ ଯେଉଁମାନେ ମୁସଲମାନ ନୁହନ୍ତି, ସେମାନଙ୍କୁ ଆଉ ଏହି ଭ୍ରାତୃସଙ୍ଘ ଭିତରକୁ ନିଆଯାଏ ନାହିଁ । ବରଂ ସେମାନଙ୍କର ବେକ କଟା ହେବାର ସମ୍ଭାବନା ଅଧିକ । ଖ୍ରୀଷ୍ଟାନ୍‌ମାନେ ସାର୍ବଜନୀନ ଭ୍ରାତୃଭାବର କଥା କହନ୍ତି । କିନ୍ତୁ ଯେ ଖ୍ରୀଷ୍ଟାନ୍ ନୁହେଁ, ତା'ପାଇଁ ତା'ର ମଲାପରେ ଏମିତି ଗୋଟିଏ ଜାଗାର ବ୍ୟବସ୍ଥା କରିଦେଇଛନ୍ତି ଯେ ଯେଉଁଠାରେ ସେ ଚିରନରକ-ଯନ୍ତ୍ରଣାରେ ପଡ଼ି ସଢ଼ୁଥିବ ।

ଏହି ଭାବରେ ଆମେ 'ସାର୍ବଜନୀନ ଭାତୃଭାବ' ଓ ସାମ୍ୟର ଅନୁସନ୍ଧାନରେ ସାରା ପୃଥିବୀ ଘୂରି ବୁଲୁଛୁ । ଯେତେବେଳେ ତୁମେ କେଉଁଠାରେ ଏହି ଭାବର କଥା

ଶୁଣିବ, ସେତେବେଳେ ମୋର ଅନୁରୋଧ, ତୁମେ ଟିକିଏ ଧୀର ଆଉ ସତର୍କ ରହିବ । କାରଣ, ଏହିସବୁ କଥାବାର୍ତ୍ତାର ଅନ୍ତରାଳରେ ପ୍ରାୟ ହିଁ ଘୋର ସ୍ୱାର୍ଥପରତା ଲୁଚି ରହିଥାଏ । କଥାରେ କହନ୍ତି—ଶରତ୍କାଳରେ କେବେ କେବେ ଆକାଶରେ ବଜ୍ର-ନିର୍ଘୋଷକାରୀ ମେଘ ଦେଖାଗଲେ ମଧ୍ୟ କେବଳ ଗର୍ଜନ ଯାହା ସିନା ଶୁଣାଯାଏ, କିନ୍ତୁ ବିନ୍ଦୁଏ ମଧ୍ୟ ବୃଷ୍ଟିପାତ ହୁଏ ନାହିଁ । ଅପର ପକ୍ଷରେ ବର୍ଷାକାଳରେ ମେଘମାନେ ନୀରବ ଥାଇ ମଧ୍ୟ ପୃଥିବୀକୁ ଜଳପ୍ଲାବିତ କରିଥାଆନ୍ତି । ସେହିଭଳି ଯେଉଁମାନେ ପ୍ରକୃତ କର୍ମୀ ଏବଂ ଅନ୍ତରରେ ବାସ୍ତବିକ ସମସ୍ତଙ୍କ ପ୍ରତି ପ୍ରେମ ଅନୁଭବ କରନ୍ତି, ସେମାନେ ମୁହଁରେ ଲମ୍ବାଚଉଡ଼ା କଥା କହନ୍ତି ନାହିଁ । ଭ୍ରାତୃଭାବର ପ୍ରଚାର ପାଇଁ ଦଳ ଗଠନ କରନ୍ତି ନାହିଁ । କିନ୍ତୁ ସେମାନଙ୍କର କ୍ରିୟାକଳାପ, ସେମାନଙ୍କର ଗତିବିଧି ଓ ସେମାନଙ୍କର ସାରାଟି ଜୀବନ ଲକ୍ଷ୍ୟ କଲେ, ଏହା ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ, ସେମାନଙ୍କର ଅନ୍ତର ବାସ୍ତବିକ ମାନବଜାତି ପ୍ରତି ପ୍ରେମଭାବରେ ପରିପୂର୍ଣ୍ଣ । ସେମାନେ ସମସ୍ତଙ୍କୁ ସ୍ନେହ କରନ୍ତି, ସମସ୍ତଙ୍କ ବ୍ୟଥାରେ ବ୍ୟଥିତ ହୁଅନ୍ତି । ସେମାନେ କଥା ନ କହି କାର୍ଯ୍ୟରେ ଦେଖାନ୍ତି । ଆଦର୍ଶାନୁଯାୟୀ ଜୀବନଯାପନ କରନ୍ତି । ସାରା ଦୁନିଆରେ ଲମ୍ବାଚଉଡ଼ା କଥାର ମାତ୍ରା ଖୁବ୍ ବେଶୀ । ଆମେ ଚାହୁଁ—କଥା କମ୍ ଏବଂ ଯଥାର୍ଥ କାର୍ଯ୍ୟ ବେଶୀ ହେଉ ।

ବର୍ତ୍ତମାନ ଆମେ ଦେଖିଲୁ ଯେ ଧର୍ମର ସାର୍ବଭୌମିକତାର ବାସ୍ତବ ରୂପ ବୋଲି କିଛି ଖୋଜି ବାହାର କରିବା ଖୁବ୍ କଠିନ । ତଥାପି ଆମେ ଜାଣୁ ଏହା ଅଛି । ଆମେ ସମସ୍ତେ ମନୁଷ୍ୟ, କିନ୍ତୁ ଆମେ ସମସ୍ତେ କଅଣ ସମାନ ? କେବେ ହେଲେ ନୁହେଁ । କିଏ କହେ ଆମେ ସମସ୍ତେ ସମାନ ? କେବଳ ବାତୁଳ ହିଁ ଏପରି କହିପାରେ, ଆମର ବୁଦ୍ଧିବୃତ୍ତି ଆମର ଶକ୍ତି, ଆମର ଶରୀର କ'ଣ ସବୁ ସମାନ ? ଜଣେ ବ୍ୟକ୍ତି ଅନ୍ୟ ଜଣକ ଅପେକ୍ଷା ବଳଶାଳୀ; ଜଣକର ବୁଦ୍ଧିବୃତ୍ତି ଅନ୍ୟଜଣଙ୍କଠାରୁ ବେଶୀ । ଯଦି ଆମେ ସମସ୍ତେ ସମାନ ହେଉ, ତେବେ ଏହି ଅସାମଞ୍ଜସ୍ୟ କାହିଁକି ? ଏହା କିଏ କଲା ? ଆମେ ନିଜେ । ଆମ ପରସ୍ପରଙ୍କ ମଧ୍ୟରେ କ୍ଷମତାର ତାରତମ୍ୟ, ବିଦ୍ୟାବୁଦ୍ଧିର ତାରତମ୍ୟ ଏବଂ ଶାରୀରିକ ବଳର ତାରତମ୍ୟ ଅଛି ବୋଲି ଆମ ପରସ୍ପରଙ୍କ ଭିତରେ ନିଶ୍ଚୟ ପାର୍ଥକ୍ୟ ରହିବାକୁ ବାଧ୍ୟ; ତଥାପି ଆମେ ଜାଣୁ, ଏହି ସାମ୍ୟବାଦ ଆମ ସମସ୍ତଙ୍କର ହୃଦୟକୁ ସ୍ପର୍ଶ କରିଥାଏ । ଆମେ ସମସ୍ତେ ମନୁଷ୍ୟ ସତ, କିନ୍ତୁ ଆମ ମଧ୍ୟରେ କେତେକ ପୁରୁଷ, କେତେକ ନାରୀ; କେହି କୃଷ୍ଣକାୟ, କେହି ପୁଣି ଶ୍ୱେତକାୟ; କିନ୍ତୁ ସମସ୍ତେ ମନୁଷ୍ୟ, ସମସ୍ତେ ହିଁ ଏକମନୁଷ୍ୟ ଜାତିର ଅନ୍ତର୍ଭୁକ୍ତ । ଆମ ମୁହଁର ଚେହେରା ନାନା ରକମର; ମୁଁ ଠିକ୍ ଏକା ରକମର ଦୁଇଟି ମୁହଁ ଦେଖି ନାହିଁ । ତଥାପି ଆମେ ସମସ୍ତେ ଏକ ମାନବଜାତିର ଅନ୍ତର୍ଭୁକ୍ତ । ଏହି ସାଧାରଣ ମନୁଷ୍ୟତ୍ୱର ସ୍ୱରୂପଟି କଅଣ ? ମୁଁ କୌଣସି ଗୌରାଙ୍ଗ ବା କୃଷ୍ଣାଙ୍ଗ ନର ବା ନାରୀକୁ ଦେଖିଲି । ତା' ସଙ୍ଗେ ସଙ୍ଗେ ଏହା ମଧ୍ୟ ଜାଣିଲି ଯେ ସମସ୍ତଙ୍କ ମୁହଁରେ ଗୋଟିଏ ଭାବମୟ ସାଧାରଣ ମନୁଷ୍ୟତ୍ୱର ରୂପ ରହିଛି । ଯେତେବେଳେ ମୁଁ ତାକୁ (ସେହି

ଭାବମୟ ସାଧାରଣ ମନୁଷ୍ୟତ୍ୱର ସ୍ୱରୂପକୁ) ଧରିବାକୁ ଚେଷ୍ଟା କରେ, ତାକୁ ଇନ୍ଦ୍ରିୟ-ଗୋଚର କରିବାକୁ ଚାହେଁ, ଯେତେବେଳେ ତାକୁ ବାହାରେ ପ୍ରତ୍ୟକ୍ଷ କରିବାକୁ ଯାଏ, ସେତେବେଳେ ହୁଏତ ମୁଁ ଏହା ଦେଖିବାକୁ ନ ପାଇପାରେ । କିନ୍ତୁ ଯଦି କୌଣସି ବସ୍ତୁର ଅସ୍ତିତ୍ୱ ସମ୍ବନ୍ଧରେ ମୋର ନିଶ୍ଚିତ ଜ୍ଞାନ ଥାଏ, ତେବେ ଆମମାନଙ୍କ ଭିତରେ ମନୁଷ୍ୟତ୍ୱରୂପ ଏହି ସାଧାରଣ ଭାବ ହିଁ ହେଉଛି ସେହି ବସ୍ତୁ । ନିଜ ମନ ମଧ୍ୟରେ ଏହି ମାନବତ୍ୱରୂପ ସାଧାରଣ ଭାବଟି ଅଛି ବୋଲି, ତାହାର ଅବଲମ୍ବନରେ ମୁଁ ତୁମକୁ ନର ବା ନାରୀ ରୂପେ ଜାଣିପାରେ । ସାର୍ବଜନୀନ ଧର୍ମ ସମ୍ବନ୍ଧରେ ମଧ୍ୟ ସେହି କଥା । ଏହା ଈଶ୍ୱରଙ୍କ ଧାରଣା ଅବଲମ୍ବନରେ ପୃଥିବୀର ଯାବତୀୟ ଧର୍ମସମୂହ ଭିତରେ ଅନୁସ୍ୟୂତ ରହିଅଛି । ଏହା ଅନନ୍ତ କାଳ ଧରି ବର୍ତ୍ତମାନ ଅଛି ଏବଂ ନିଶ୍ଚିତ ଭାବେ ରହିବ ମଧ୍ୟ । ଶ୍ରୀଭଗବାନ କହିଛନ୍ତି—"ମୟି ସର୍ବମିଦଂ ପ୍ରୋତଂ ସୂତ୍ରେ ମଣିଗଣା ଇବ ।" ମୁଁ ମଣିଗଣଙ୍କ ଭିତରେ ସୂତ୍ରରୂପେ ବିଦ୍ୟମାନ ରହିଅଛି । ଏହି ଗୋଟିଏ ଗୋଟିଏ ମଣିକୁ ଗୋଟିଏ ଗୋଟିଏ ଧର୍ମମତ ବା ତଦନ୍ତର୍ଗତ ସଂପ୍ରଦାୟବିଶେଷ ବୋଲି ମଧ୍ୟ କୁହାଯାଇପାରେ । ପୃଥକ୍ ପୃଥକ୍ ମଣିଗୁଡ଼ିକୁ ଏହିଭଳି ଗୋଟିଏ ଗୋଟିଏ ଧର୍ମମତ ଏବଂ ସ୍ୱୟଂ ପ୍ରଭୁ ହିଁ ସୂତ୍ରରୂପରେ ସେହିସବୁ ମଧ୍ୟରେ ବିଦ୍ୟମାନ । ତେବେ ଅଧିକାଂଶ ଲୋକ ହିଁ ଏ ସମ୍ବନ୍ଧରେ ସଂପୂର୍ଣ୍ଣ ଅଜ୍ଞ ।

ବହୁ ମଧ୍ୟରେ ଏକତ୍ୱ ହିଁ ହେଲା ସୃଷ୍ଟିର ନିୟମ । ଆମେ ସମସ୍ତ ମନୁଷ୍ୟ, ଅଥଚ ଆମେ ସମସ୍ତେ ପରସ୍ପରଠାରୁ ପୃଥକ୍ । ମନୁଷ୍ୟଜାତିର ଅଂଶ ହିସାବରେ ମୁଁ ଓ ତୁମେ ଏକ । କିନ୍ତୁ ଯେତେବେଳେ ମୁଁ ଅମୁକ, ସେତେବେଳେ ମୁଁ ତୁମଠାରୁ ପୃଥକ୍ । ପୁରୁଷ ହିସାବରେ ତୁମେ ନାରୀଠାରୁ ଭିନ୍ନ । କିନ୍ତୁ ମନୁଷ୍ୟ ହିସାବରେ ନର ଓ ନାରୀ ଏକ । ମନୁଷ୍ୟ ହିସାବରେ ତୁମେ ଜୀବଜନ୍ତୁଙ୍କଠାରୁ ପୃଥକ୍ । କିନ୍ତୁ ପ୍ରାଣୀ ହିସାବରେ ସ୍ତ୍ରୀ, ପୁରୁଷ, ଜୀବଜନ୍ତୁ ଓ ଉଦ୍ଭିଦ ସମସ୍ତେ ସମାନ ଏବଂ ସତ୍ତା ହିସାବରେ ତୁମେ ବିରାଟ ବିଶ୍ୱ ସହିତ ଏକ । ସେହି ବିରାଟ ସତ୍ତା ହିଁ ଭଗବାନ, ସେ ହିଁ ଏହି ବୈଚିତ୍ର୍ୟମୟ ଜଗତ-ପ୍ରପଞ୍ଚର ଚରମ ଏକତ୍ୱ । ତାଙ୍କର ଭିତରେ ଆମେ ସମସ୍ତେ ହିଁ ଏକ ହେଲେ ମଧ୍ୟ ବ୍ୟକ୍ତପ୍ରପଞ୍ଚ ରୂପରେ ଏହି ଭେଦଗୁଡ଼ିକ ଅବଶ୍ୟ ଚିରକାଳ ବିଦ୍ୟମାନ ରହିବ । ବାହ୍ୟ ପରିସ୍ଥିତିରେ ଆମର କାର୍ଯ୍ୟକଳାପ ଓ ବଳବୀର୍ଯ୍ୟ ଯେପରି ଭାବରେ ପ୍ରକାଶ ପାଇବ, ସେହି ସଙ୍ଗରେ ଏହି ଭେଦ ସର୍ବଦା ହିଁ ବିଦ୍ୟମାନ ରହିବ । ସୁତରାଂ ଦେଖାଯାଉଛି ଯେ, ସାର୍ବଜନୀନ ଧର୍ମର ଅର୍ଥ ଯଦି ଏହା ହିଁ ହୁଏ ଯେ କେତେଗୁଡ଼ିଏ ବିଶେଷ ମତ ଜଗତର ସମସ୍ତ ଲୋକ ବିଶ୍ୱାସ କରିବେ, ତା'ହେଲେ ତାହା ସଂପୂର୍ଣ୍ଣ ଅସମ୍ଭବ । ଏହା କେବେହେଲେ ହୋଇ ନ ପାରେ । ଏପରି ସମୟ କେବେହେଲେ ଆସିବ ନାହିଁ, ଯେତେବେଳେ କି ସବୁଲୋକଙ୍କ ମୁହଁ ଏକାଭଳି ହେବ । ପୁନଶ୍ଚ ଯଦି ଆମେ ଆଶା କରୁ ଯେ ସମସ୍ତ ଜଗତ ଗୋଟିଏ ପୌରାଣିକ ତତ୍ତ୍ୱରେ ବିଶ୍ୱାସୀ ହେବ, ତାହା ମଧ୍ୟ ଅସମ୍ଭବ । ତାହା କେବେହେଁ ହୋଇ ନ ପାରେ । ସମସ୍ତ ଜଗତରେ କେବେହେଲେ ଗୋଟିଏ ପ୍ରକାର ଅନୁଷ୍ଠାନପଦ୍ଧତି ପ୍ରଚଳିତ ହୋଇ ନ

ପାରେ । ଏଭଳି ଘଟଣା କୌଣସି କାଳରେ କେବେହେଲେ ହୋଇପାରେ ନାହିଁ । ଯଦି କେବେ ବି ହୁଏ, ତେବେ ସୃଷ୍ଟି ଲୋପ ପାଇବ, କାରଣ ବୈଚିତ୍ର୍ୟ ହିଁ ଜୀବନର ମୂଳଭିତ୍ତି । ଆକୃତିବିଶିଷ୍ଟ ଜୀବରୂପରେ ଆମେ କିପରି ସୃଷ୍ଟ ହେଲୁ ? ଏହି ବୈଚିତ୍ର୍ୟ ଭିତରୁ । ସଂପୂର୍ଣ୍ଣ ସାମ୍ୟଭାବ ହୋଇଗଲେ ଆମମାନଙ୍କର ବିନାଶ ଅବଶ୍ୟମ୍ଭାବୀ । ସମଭାବରେ ଓ ସଂପୂର୍ଣ୍ଣରୂପେ ତାପ ବିକିରଣ କରିବା ହିଁ ଉତ୍ତାପର ଧର୍ମ । ବର୍ତ୍ତମାନ, ମନେକରନ୍ତୁ, ଏହି ଘରର ଉତ୍ତାପରାଶି ସେହି ଭାବରେ ବିକୀର୍ଣ୍ଣ ହୋଇଗଲା । ତା'ହେଲେ କାର୍ଯ୍ୟତଃ ସେଠାରେ ଉତ୍ତାପ ବୋଲି ପରେ ଆଉ କିଛି ରହିବ ନାହିଁ । ଏହି ଜଗତରେ କେଉଁଥି ଲାଗି ଗତି ସମ୍ଭବ ହେଉଅଛି ? ସମତାଚ୍ୟୁତି ଏହାର କାରଣ । ଯେତେବେଳେ ଏହି ଜଗତର ଧ୍ୱଂସ ହେବ, ସେତିକିବେଳେ ହିଁ କେବଳ ସାମ୍ୟରୂପକ ଐକ୍ୟ ଆସିପାରେ । ଅନ୍ୟଥା, ଏଭଳି ହେବା ଅସମ୍ଭବ । କେବଳ ସେତିକି ନୁହେଁ—ଏପରି ହେବା ମଧ୍ୟ ବିପଜ୍ଜନକ । ଆମେ ସମସ୍ତେ ହିଁ ଗୋଟିଏ ପ୍ରକାର ଚିନ୍ତା କରିବା, ଏଭଳି ଇଚ୍ଛା କରିବା ଉଚିତ ନୁହେଁ । ତା'ହେଲେ, ଚିନ୍ତା କରିବା ଲାଗି କିଛି ରହିବ ନାହିଁ । ସେତେବେଳେ ମିଉଜିଅମରେ ଅବସ୍ଥିତ ମିଶରୀୟ ମମିଗୁଡ଼ିକ (mummies) ପରି ଆମେ ସମସ୍ତେ ଏକା ଭଳି ହୋଇଯିବା ଏବଂ ପରସ୍ପର ଆଡ଼କୁ ନୀରବରେ ଚାହିଁ ରହିବା । ଆମ ମନରେ ଭାବିବା ଭଳି କଥା ଆଉ ଉଠିବ ନାହିଁ । ଏହି ପାର୍ଥକ୍ୟ, ଏହି ବୈଷମ୍ୟ ଓ ଆମ ପରସ୍ପରଙ୍କ ଭିତରେ ଏହି ସାମ୍ୟର ଅଭାବ ହିଁ ଆମମାନଙ୍କ ଉନ୍ନତିର ପ୍ରକୃତ ଉତ୍ସ । ଏହା ହିଁ ଆମମାନଙ୍କର ଯାବତୀୟ ଚିନ୍ତାର ପ୍ରସୂତି । ଚିରକାଳ ଏହା ଏହିପରି ଭାବରେ ହିଁ ଚାଲିବ ।

ସାର୍ବଭୌମ ଧର୍ମର ଆଦର୍ଶ କହିଲେ ତେବେ ଆମେ କଅଣ ବୁଝୁ ? ମୁଁ ଏପରି କୌଣସି ସାର୍ବଭୌମ ଦାର୍ଶନିକ ତତ୍ତ୍ୱ, କୌଣସି ସାର୍ବଭୌମ ପୌରାଣିକ ତତ୍ତ୍ୱ, ଅଥବା କୌଣସି ସାର୍ବଭୌମ ଆନୁଷ୍ଠାନିକ ପଦ୍ଧତିର କଥା କହୁ ନାହିଁ, ଯାହାକି ସମସ୍ତେ ମାନି ଚଳିବେ । କାରଣ, ମୁଁ ଜାଣେ ଯେ, ନାନା ଚକ୍ରରେ ଗଠିତ, ଅତିଜଟିଳ ଓ ଅତିବିସ୍ମୟାବହ ଏହି ଜଗତରୂପ ଦୁର୍ବୋଧ୍ୟ ଓ ବିଶାଳ ଯନ୍ତ୍ରଟି ବରାବର ଏହି ଭାବରେ ହିଁ ଚାଲିଥିବ । ଆମେ ତା'ହେଲେ କଅଣ କରିପାରୁ ? ଆମେ ଏହାକୁ ସୁଚାରୁ ରୂପେ ଚାଲିବାକୁ ସାହାଯ୍ୟ କରିପାରୁ । ଏହାର ଘର୍ଷଣ କମାଇ ଦେଇପାରୁ । ଏହାର ଚକଗୁଡ଼ିକୁ ତେଲସିକ୍ତ ଓ ମସୃଣ ରଖିପାରୁ । କିପରିଭାବରେ ଏହା ଆମେ କରିପାରିବା ? ବୈଷମ୍ୟର ସ୍ୱାଭାବିକ ପ୍ରୟୋଜନୀୟତାକୁ ସ୍ୱୀକାର କରିବାଦ୍ୱାରା ନିଶ୍ଚୟ । ଆମକୁ ଆମର ସ୍ୱଭାବବଶତଃ ଯେଉଁପରି ଏକତ୍ୱ ସ୍ୱୀକାର କରିବାକୁ ହୁଏ, ସେହିପରି ବୈଷମ୍ୟକୁ ମଧ୍ୟ ଅବଶ୍ୟ ସ୍ୱୀକାର କରିବାକୁ ହେବ । ଆମକୁ ଶିକ୍ଷା କରିବାକୁ ହେବ ଯେ ଗୋଟିଏ ମାତ୍ର ସତ୍ୟ ଲକ୍ଷେ ରୂପରେ ମଧ୍ୟ ପ୍ରକାଶିତ ହୋଇପାରେ ଏବଂ ପ୍ରତ୍ୟେକ ଭାବଟି ହିଁ ତାର ନିର୍ଦ୍ଦିଷ୍ଟ ସୀମା ମଧ୍ୟରେ ଯଥାର୍ଥ । ଆମକୁ ଶିକ୍ଷା କରିବାକୁ ହେବ, କିପରି କୌଣସି ବିଷୟକୁ ବିଭିନ୍ନ ଦିଗରୁ ବିଭିନ୍ନ ରୂପରେ ଦେଖାଯାଇପାରେ; ଅଥଚ ବସ୍ତୁଟି ସେହି ଗୋଟିଏ ହୋଇ ରହିଥାଏ । ସୂର୍ଯ୍ୟଙ୍କ କଥା ଧରାଯାଉ । ମନେ କରାଯାଉ,

ଜଣେ ବ୍ୟକ୍ତି ଭୂପୃଷ୍ଠରୁ ସୂର୍ଯ୍ୟୋଦୟ ଦେଖୁଛି । ସେ ପ୍ରଥମେ ଗୋଟିଏ ବୃହତ୍ ଗୋଲାକୃତି ବସ୍ତୁ ଦେଖିବାକୁ ପାଇବ । ତା'ପରେ ମନେକର, ସେ ଗୋଟିଏ କ୍ୟାମେରା ନେଇ ସୂର୍ଯ୍ୟଙ୍କ ଅଭିମୁଖରେ ଯାତ୍ରା କରି, ଯେପର୍ଯ୍ୟନ୍ତ ସୂର୍ଯ୍ୟରେ ନ ପହଞ୍ଚିଛି, ସେପର୍ଯ୍ୟନ୍ତ ପୁନଃ ପୁନଃ ସୂର୍ଯ୍ୟଙ୍କ ପ୍ରତିଛବି ନେବାକୁ ଲାଗିଲା । ତା'ହେଲେ ଗୋଟିଏ ସ୍ଥାନରୁ ଗୃହୀତ ପ୍ରତିକୃତି ଅନ୍ୟ ଗୋଟିଏ ସ୍ଥାନରୁ ଗୃହୀତ ପ୍ରତିକୃତିଠାରୁ ନିଶ୍ଚୟ ଭିନ୍ନ ହେବ । ଯେତେବେଳେ ସେ ଫେରି ଆସିବ, ସେତେବେଳେ ମନେ ହେବ, ବାସ୍ତବିକ ସେ ଯେପରି କେତେଗୁଡ଼ିଏ ଭିନ୍ନ ଭିନ୍ନ ସୂର୍ଯ୍ୟର ପ୍ରତିକୃତି ନେଇ ଆସିଛି । ଆମେ କିନ୍ତୁ ଜାଣୁ ଯେ, ସେହି ବ୍ୟକ୍ତି ତା'ର ଗନ୍ତବ୍ୟ ପଥର ବିଭିନ୍ନ ସ୍ଥଳରୁ ସେହି ଗୋଟିଏ ସୂର୍ଯ୍ୟର ବହୁ ପ୍ରତିକୃତି ନେଇ ଆସିଛି । ଭଗବାନଙ୍କ ସମ୍ବନ୍ଧରେ ମଧ୍ୟ ଠିକ୍ ଏହି ପ୍ରକାର ଘଟିଥାଏ । ଉତ୍କୃଷ୍ଟ କିମ୍ବା ନିକୃଷ୍ଟ ଦର୍ଶନର ମଧ୍ୟଦେଇ ହେଉ, କିମ୍ବା ସୂକ୍ଷ୍ମତମ ଅଥବା ସ୍ଥୂଳତମ ପୌରାଣିକ ଆଖ୍ୟାୟିକାର ଭିତର ଦେଇ ହେଉ, ସୁସଂସ୍କୃତ କ୍ରିୟାକାଣ୍ଡ ଅଥବା ଜଘନ୍ୟ ଭୂତୋପାସନା ଭିତର ଦେଇ ହେଉ, ପ୍ରତ୍ୟେକ ସମ୍ପ୍ରଦାୟ, ପ୍ରତ୍ୟେକ ବ୍ୟକ୍ତି, ପ୍ରତ୍ୟେକ ଜାତି, ପ୍ରତ୍ୟେକ ଧର୍ମ ଜ୍ଞାତସାରରେ ବା ଅଜ୍ଞାତ-ସାରରେ ଉର୍ଦ୍ଧ୍ୱଗାମୀ ହୋଇ ଭଗବାନଙ୍କ ଆଡ଼କୁ ଅଗ୍ରସର ହେବାକୁ ଚେଷ୍ଟା କରୁଛି । ମନୁଷ୍ୟ ସତ୍ୟର ଯେତେପ୍ରକାର ଅନୁଭୂତି ଲାଭ କରୁନା କାହିଁକି, ତା'ର ପ୍ରତ୍ୟେକଟି ଭଗବାନଙ୍କ ଦର୍ଶନ ଛଡ଼ା ଆଉ କିଛି ନୁହେଁ । ମନେକର, ଆମେ ସମସ୍ତେ ପାତ୍ର ନେଇ ଗୋଟିଏ ଜଳାଶୟରୁ ଜଳ ଆଣିବାକୁ ଗଲୁ । କାହା ହାତରେ ଗାଡ଼ିଆ, କାହା ହାତରେ କଳସୀ, କାହା ହାତରେ ହୁଏତ ବାଲ୍‌ଟି ଇତ୍ୟାଦି ରହିଛି ଏବଂ ଆମେ ନିଜ ନିଜ ପାତ୍ରଗୁଡ଼ିକୁ ଜଳରେ ପୂର୍ଣ୍ଣ କରିଦେଲୁ । ସେତେବେଳେ ବିଭିନ୍ନ ପାତ୍ରର ଜଳ ସ୍ୱଭାବତଃ ହିଁ ଆମ ନିଜ ନିଜ ପାତ୍ରର ଆକାର ଧାରଣ କରିବ । ଯେ ଗାଡ଼ିଆଟିଏ ଆଣିଛି, ତା'ର ଜଳ ଗାଡ଼ିଆଟିଏ ପରି । ଯେ କଳସୀଟିଏ ଆଣିଛି, ତା'ର ଜଳ କଳସୀଟିଏ ପରି ଆକାର ଧରିଛି । ଏହିପରି ଏହା ସମସ୍ତଙ୍କ ପକ୍ଷରେ ଭିନ୍ନ ଭିନ୍ନ । କିନ୍ତୁ ପ୍ରତ୍ୟେକ ପାତ୍ରରେ ଜଳ ବ୍ୟତୀତ ଆଉ କିଛି ନାହିଁ । ଧର୍ମ ସମ୍ବନ୍ଧରେ ମଧ୍ୟ ଠିକ୍ ସେହି କଥା । ଆମର ମନ-ଗୁଡ଼ିକ ଏହି ପାତ୍ର ସଦୃଶ । ଆମେ ପ୍ରତ୍ୟେକେ ଭଗବାନଙ୍କୁ ଲାଭ କରିବା ପାଇଁ ଚେଷ୍ଟା କରୁଛୁ । ଯେଉଁ ଜଳଦ୍ୱାରା ପାତ୍ରଗୁଡ଼ିକ ପୂର୍ଣ୍ଣ ରହିଛି, ଭଗବାନ ହେଉଛନ୍ତି ସେହି ଜଳସ୍ୱରୂପ ଏବଂ ପ୍ରତ୍ୟେକ ପାତ୍ର ପକ୍ଷରେ ଭଗବତ୍‌ଦର୍ଶନ ସେହି ସେହି ପାତ୍ରାନୁଯାୟୀ ହୋଇଥାଏ । ତଥାପି ସେ ସର୍ବତ୍ର ଏକ । ସେହି ଏକ ଭଗବାନ ଘଟେ ଘଟେ ବିରାଜମାନ କରୁଛନ୍ତି । ଆମେ ସାର୍ବଭୌମିକତ୍ୱର ଏହି ଏକମାତ୍ର ବାସ୍ତବ ପରିଚୟ ପାଇପାରୁ ।

ଏପର୍ଯ୍ୟନ୍ତ ଯାହା କୁହାଗଲା, ମତବାଦ ହିସାବରେ ତାହା ବେଶ୍; କିନ୍ତୁ କାର୍ଯ୍ୟ-କ୍ଷେତ୍ରରେ ବିଭିନ୍ନ ଧର୍ମ ମଧ୍ୟରେ ବାସ୍ତବ ସାମଞ୍ଜସ୍ୟ ସ୍ଥାପନ କରିବା ପାଇଁ କୌଣସି ଉପାୟ ଅଛି କି ? ଆମେ ଦେଖିବାକୁ ପାଉ, 'ସବୁ ଧର୍ମମତ ହିଁ ସତ୍ୟ'—ଏକଥା ବହୁ ପ୍ରାଚୀନ

କାଳରୁ ମନୁଷ୍ୟ ସ୍ୱୀକାର କରିଆସିଛି । ଭାରତବର୍ଷରେ, ଆଲେକଜାଣ୍ଡ୍ରିଆରେ, ଇଉରୋପରେ, ଚୀନରେ, ଜାପାନ, ତିବ୍ବତ ଏପରିକି ଆମେରିକାରେ ଗୋଟିଏ ସର୍ବବାଦୀସମ୍ମତ ଧର୍ମମତ ଗଠନ କରି ସବୁ ଧର୍ମକୁ ଏକ ପ୍ରେମସୂତ୍ରରେ ଗ୍ରଥିତ କରିବାର ଶତଶତ ଚେଷ୍ଟା ହୋଇଯାଇଛି । ସେମାନଙ୍କର ସେହିସବୁ ଚେଷ୍ଟା ବ୍ୟର୍ଥ ହୋଇଯାଇଛି । କାରଣ ସେମାନେ କୌଣସି କାର୍ଯ୍ୟକାରୀ ପ୍ରଣାଳୀ ଅବଲମ୍ବନ କରି ନାହାନ୍ତି । ପୃଥିବୀର ସକଳ-ଧର୍ମ ହିଁ ସତ୍ୟ, ଏକଥା ଅନେକେ ସ୍ୱୀକାର କରିଛନ୍ତି । କିନ୍ତୁ ସେମାନଙ୍କର ଏକୀକରଣର ଏପରି କୌଣସି କାର୍ଯ୍ୟକାରୀ ଉପାୟ ସେମାନେ ଦେଖାଇ ଦେଇପାରି ନାହାନ୍ତି; ଯାହାଦ୍ୱାରା କି ଏହି ସମନ୍ୱୟ ମଧ୍ୟରେ ବି ସକଳ ଧର୍ମ ନିଜ ନିଜର ସ୍ୱାତନ୍ତ୍ର୍ୟ ବଜାୟ ରଖିପାରିବେ । ସେହି ଉପାୟ ହିଁ ଯଥାର୍ଥ କାର୍ଯ୍ୟକାରୀ, ଯାହା ବ୍ୟକ୍ତିଗତ ଧର୍ମମତର ସ୍ୱାତନ୍ତ୍ର୍ୟ ନଷ୍ଟ ନ କରି ପ୍ରତ୍ୟେକ ବ୍ୟକ୍ତିକୁ ଅନ୍ୟ ସମସ୍ତଙ୍କ ସହିତ ମିଳିତ ହେବାର ପଥ ଦେଖାଇ ଦେଇପାରେ । କିନ୍ତୁ ଏଯାବତ୍ ଯେଉଁସବୁ ଉପାୟରେ ଧର୍ମଜଗତରେ ସାମଞ୍ଜସ୍ୟ-ବିଧାନର ଚେଷ୍ଟା କରାଯାଇଛି, ସେଥିରେ ବିଭିନ୍ନ ଧର୍ମମତ ସତ୍ୟ ବୋଲି ଗ୍ରହଣ କରିବା ସିଦ୍ଧାନ୍ତ ହେଲେ ମଧ୍ୟ କାର୍ଯ୍ୟକ୍ଷେତ୍ରରେ କେତୋଟି ମତବିଶେଷ ଭିତରେ ଏହାକୁ ଆବଦ୍ଧ କରି ରଖିବାର ଚେଷ୍ଟା କରାଯାଇଛି ଏବଂ ସେହି ହେତୁ ଅନ୍ୟ କେତେଗୁଡ଼ିଏ ପରସ୍ପର-ବିବଦମାନ ଈର୍ଷାପରାୟଣ ଓ ଆତ୍ମପ୍ରତିଷ୍ଠାରେ ରତ ଦଳଗୁଡ଼ିକର ମଧ୍ୟ ସୃଷ୍ଟି ହୋଇଅଛି ।

ମୋର ମଧ୍ୟ ନିଜର ଗୋଟିଏ କ୍ଷୁଦ୍ର କାର୍ଯ୍ୟ-ପ୍ରଣାଳୀ ରହିଛି । ଜାଣେନା—ଏହା କାର୍ଯ୍ୟକାରୀ ହେବ କି ନାହିଁ । କିନ୍ତୁ ମୁଁ ଏହା ବିଚାର କରି ଦେଖିବା ଲାଗି ଆପଣ-ମାନଙ୍କ ନିକଟରେ ଉପସ୍ଥାପିତ କରୁଅଛି । ମୋର କାର୍ଯ୍ୟପ୍ରଣାଳୀଟି କଅଣ ? ମାନବ-ଜାତିକୁ ମୁଁ ପ୍ରଥମେ ଏହି ନୀତିଟି ମାନି ନେବାକୁ ଅନୁରୋଧ କରୁଛି "କିଛି ନଷ୍ଟ କର ନାହିଁ ।" ଧ୍ୱଂସବାଦୀ ସଂସ୍କାରକଗଣ ଜଗତର କୌଣସି ଉପକାର କରିପାରନ୍ତି ନାହିଁ । କୌଣସି କିଛି ସମ୍ପୂର୍ଣ୍ଣ ଭାଙ୍ଗିଦିଅ ନାହିଁ, ସମ୍ପୂର୍ଣ୍ଣ ଧୂଳିସାତ୍ କରିଦିଅ ନାହିଁ; ବରଂ ଗଠନ କର । ଯଦି ପାର ସାହାଯ୍ୟ କର । ଯଦି ନ ପାର, ହାତ ଗୋଡ ବାନ୍ଧି ଚୁପ୍‌କରି ଠିଆ ହୋଇ ରହ ଏବଂ ଯାହା ଯେପରି ଚାଲିଛି, ତାକୁ ଚାଲିବାକୁ ଦିଅ । ଯଦି ସାହାଯ୍ୟ କରି ନ ପାର, ତେବେ କାହାର ଅନିଷ୍ଟ କର ନାହିଁ । ଯେତେବେଳ ଯାଏ ମନୁଷ୍ୟ ଅକପଟ ଥାଏ, ସେତେବେଳ ପର୍ଯ୍ୟନ୍ତ ତାର ବିଶ୍ୱାସ ବିରୋଧରେ ଗୋଟିଏ କଥା ମଧ୍ୟ କୁହ ନାହିଁ । ଦ୍ୱିତୀୟତଃ ସେ ଯେଉଁଠାରେ ରହିଛି, ତାକୁ ସେଠାରୁ ଉପରକୁ ଉଠାଇ-ବାର ଚେଷ୍ଟା କର । ଯଦି ଏହା ହିଁ ସତ୍ୟ ହୁଏ ଯେ ଭଗବାନ ହିଁ ସକଳଧର୍ମର କେନ୍ଦ୍ର-ସ୍ୱରୂପ ଏବଂ ଆମେ ପ୍ରତ୍ୟେକେ ହିଁ ଯେପରି ଗୋଟିଏ ବୃତ୍ତର ବିଭିନ୍ନ ବ୍ୟାସାର୍ଦ୍ଧ ଦେଇ ସେହି କେନ୍ଦ୍ର ଆଡ଼କୁ ଅଗ୍ରସର ହେଉଅଛୁ, ତାହାହେଲେ ଆମେ ସମସ୍ତେ ନିଶ୍ଚୟ କେନ୍ଦ୍ରରେ ପହଞ୍ଚିବା ଏବଂ ଯେଉଁ କେନ୍ଦ୍ରରେ ସବୁ ବ୍ୟାସାର୍ଦ୍ଧତକ ମିଳିତ ହୁଅନ୍ତି, ସେହି କେନ୍ଦ୍ରରେ ପହଞ୍ଚିଲା ପରେ ଆମର ସମସ୍ତ ବୈଷମ୍ୟ ନିଶ୍ଚିତ ଭାବରେ ତିରୋହିତ

ହୋଇଥିବ । କିନ୍ତୁ ଯେପର୍ଯ୍ୟନ୍ତ ଆମେ ସେଠାରେ ନ ପହଞ୍ଚୁଛୁ, ସେପର୍ଯ୍ୟନ୍ତ ବୈଷମ୍ୟ ଅବଶ୍ୟ ରହିବ । ଏହିସବୁ ବ୍ୟାସାର୍ଦ୍ଧ କେନ୍ଦ୍ରରେ ଯାଇ ସମ୍ମିଳିତ ହୁଅନ୍ତି । ଜଣେ ତାର ସ୍ୱଭାବ ଅନୁଯାୟୀ ଗୋଟିଏ ବ୍ୟାସାର୍ଦ୍ଧ ଦେଇ ଯାଉଛି । ଆଉ ଜଣେ ଭିନ୍ନ ଗୋଟିଏ ବ୍ୟାସାର୍ଦ୍ଧ ଦେଇ ମଧ୍ୟ ଯାଉଅଛି ଏବଂ ଆମେ ସମସ୍ତେ ଯଦି ନିଜ ନିଜର ବ୍ୟାସାର୍ଦ୍ଧ ଧରି ଅଗ୍ରସର ହେଉ, ତା'ହେଲେ ଅବଶ୍ୟ ସେହି ଗୋଟିଏ କେନ୍ଦ୍ରରେ ପହଞ୍ଚିବା । ଏପରି ମଧ୍ୟ ପ୍ରବାଦ ଅଛି ଯେ "ସବୁ ରାସ୍ତା ଶେଷରେ ଯାଇ ରୋମ୍ ନଗରୀରେ ପହଞ୍ଚିବ ।" ପ୍ରତ୍ୟେକେ ତାଙ୍କର ନିଜ ନିଜ ପ୍ରକୃତି ଅନୁଯାୟୀ ବର୍ଦ୍ଧିତ ଓ ପରିପୁଷ୍ଟ ହେଉଥାନ୍ତି । ପ୍ରତ୍ୟେକେ ହିଁ ଉପଯୁକ୍ତ ସମୟରେ ଚରମ ସତ୍ୟ ଉପଲବ୍ଧି କରିବେ । କାରଣ ଶେଷରେ ଦେଖାଯାଏ ଯେ ମନୁଷ୍ୟ ନିଜେ ହିଁ ନିଜର ଶିକ୍ଷା ବିଧାନ କରୁଛି । ତୁମେ ଆମେ କ'ଣ କରିପାରିବା ? ତୁମେ କ'ଣ ମନେକର ଯେ ତୁମେ ଗୋଟିଏ ଶିଶୁକୁ କିଛି ଶିଖାଇପାରିବ ? ପାରିବ ନାହିଁ । ଶିଶୁ ତାର ସ୍ୱୟଂ ସ୍ୱୟଂ ଶିକ୍ଷା ଲାଭ କରେ । ତୁମର କର୍ତ୍ତବ୍ୟ ହେଲା—ସୁଯୋଗ ବିଧାନ କରିବା, ବାଧା ଦୂର କରିବା । ଗୋଟିଏ ଗଛ ବଢ଼ୁଛି । ତୁମେ କ'ଣ ଗଛଟିକୁ ବଢ଼ାଇପାର? ତୁମର କର୍ତ୍ତବ୍ୟ ହେଲା ଗଛଟିର ଚତୁଃପାର୍ଶ୍ୱରେ ବାଡ଼ ଦେବା, ଯେପରିକି ଗୋରୁ ଛେଳି ତାକୁ ଖାଇ ନ ଯିବେ । ବାସ୍, ଏହିଠାରେ ହିଁ ତୁମର କର୍ତ୍ତବ୍ୟ ଶେଷ ବୋଲି ଜାଣିବ । ଗଛ ନିଜେ ନିଜେ ବଢ଼େ । ମନୁଷ୍ୟର ଆଧ୍ୟାତ୍ମିକ ଉନ୍ନତି ସମ୍ବନ୍ଧରେ ମଧ୍ୟ ଠିକ୍ ସେହି କଥା । କେହି ତୁମକୁ ଶିକ୍ଷା ଦେଇପାରିବ ନାହିଁ । କେହି ତୁମକୁ ଆଧ୍ୟାତ୍ମିକ ମନୁଷ୍ୟ କରି ଦେଇ-ପାରିବ ନାହିଁ । ତୁମକୁ ନିଜେ ନିଜର ଶିକ୍ଷା ଲାଭ କରିବାକୁ ହେବ । ତୁମର ଉନ୍ନତି ତୁମ ନିଜ ଭିତରୁ ହିଁ ହେବ ।

ବାହାରର ଶିକ୍ଷାଦାତା କ'ଣ କରିପାରିବେ ? ସେ କେବଳ ଅନ୍ତରାୟଗୁଡ଼ିକୁ କିଛି ପରିମାଣରେ ଦୂର କରିପାରନ୍ତି । ଏହିଠାରେ ହିଁ ତାଙ୍କର କର୍ତ୍ତବ୍ୟ ଶେଷ । ଅତଏବ ଯଦି ପାରୁଛ ସହାୟତା କର; କିନ୍ତୁ ବିନଷ୍ଟ କର ନାହିଁ । ତୁମେ କାହାକୁ ଆଧ୍ୟାତ୍ମିକ ଶକ୍ତି-ସମ୍ପନ୍ନ କରିପାର—ଏ ଧାରଣା ମୂଳରୁ ହିଁ ପରିତ୍ୟାଗ କର । ଏହା ଅସମ୍ଭବ । ତୁମର ନିଜ ଆତ୍ମା ବ୍ୟତୀତ ତୁମର ଅନ୍ୟ କେହି ଶିକ୍ଷାଦାତା ନାହାନ୍ତି—ଏହା ସ୍ୱୀକାର କର । ସେଥିରେ ଭଲ ଫଳ କଣ ହେବ ? ସମାଜରେ ଆମେ ନାନାବିଧ ସ୍ୱଭାବର ଲୋକ ଦେଖୁ । ସଂସାରରେ ସହସ୍ର ସହସ୍ର ପ୍ରକାର ମନ ଓ ସଂସ୍କାରବିଶିଷ୍ଟ ଲୋକ ରହିଛନ୍ତି । ସେମାନଙ୍କର ସମ୍ପୂର୍ଣ୍ଣ ସାମାନ୍ୟୀକରଣ ଅସମ୍ଭବ । କିନ୍ତୁ ଆପାତତଃ ଆମର ସୁବିଧାନୁସାରେ ସେମାନଙ୍କୁ ଚାରିଶ୍ରେଣୀରେ ବିଭକ୍ତ କରାଯାଇପାରେ । ପ୍ରଥମତଃ ଉଦ୍ୟମଶୀଳ କର୍ମଠ ବ୍ୟକ୍ତି, ସେ କର୍ମ କରିବାକୁ ଚାହାଁନ୍ତି । ତାଙ୍କର ପେଶୀ ଓ ସ୍ନାୟୁମଣ୍ଡଳୀରେ ବିପୁଳ ଶକ୍ତି ରହିଅଛି । ତାଙ୍କର ଉଦ୍ଦେଶ୍ୟ ହେଲା—କାର୍ଯ୍ୟ କରିବା—ହାସପାତାଲ ନିର୍ମାଣ କରିବା, ସତ୍‌କାର୍ଯ୍ୟ କରିବା, ରାସ୍ତା ପ୍ରସ୍ତୁତ କରିବା, କାର୍ଯ୍ୟପ୍ରଣାଳୀ ସ୍ଥିର କରିବା ଓ ପ୍ରତିଷ୍ଠାନ ଗଠନ କରିବା । ଦ୍ୱିତୀୟତଃ ଭାବୁକ ଲୋକ, ସେ ଶିବ ଓ ସୁନ୍ଦରଙ୍କୁ ଅତ୍ୟଧିକ ଭଲ ପାଆନ୍ତି । ସେ ସୌନ୍ଦର୍ଯ୍ୟର ଚିନ୍ତା କରିବାକୁ, ପ୍ରକୃତିର ମନୋରମ ଦିଗଟି ଉପଭୋଗ କରିବାକୁ ଏବଂ ପ୍ରେମ ଓ

ପ୍ରେମମୟ ଭଗବାନଙ୍କ ପୂଜା କରିବାକୁ ଭଲପାଆନ୍ତି । ସେ ପୃଥିବୀର ସବୁ ସମୟର ଯାବତୀୟ ମହାପୁରୁଷ, ଧର୍ମଗୁରୁ ଓ ଭଗବାନଙ୍କ ଅବତାରମାନଙ୍କୁ ସର୍ବାନ୍ତଃକରଣରେ ଭଲପାଆନ୍ତି । ଖ୍ରୀଷ୍ଟ ଓ ବୁଦ୍ଧ ଯେ ବାସ୍ତବରେ ବିଦ୍ୟମାନ ଥିଲେ, ଏକଥା ଯୁକ୍ତି ଦ୍ୱାରା ପ୍ରମାଣିତ ହୋଇପାରେ କି ନାହିଁ ସେକଥା ସେ ଆଦୌ ଗ୍ରାହ୍ୟ କରନ୍ତି ନାହିଁ । ଖ୍ରୀଷ୍ଟଙ୍କ ପ୍ରଦତ୍ତ 'ଶୈଳୋପଦେଶ' (Sermon on the Mount) କେବେ ପ୍ରଚାରିତ ହୋଇଥିଲା ଅବା ଶ୍ରୀକୃଷ୍ଣ ଠିକ୍ କେଉଁ ମୁହୂର୍ତ୍ତରେ ଜନ୍ମଗ୍ରହଣ କରିଥିଲେ, ତାହା ଜାଣିବାକୁ ସେ ବିଶେଷ ଆବଶ୍ୟକ ମନେକରନ୍ତି ନାହିଁ । ତାଙ୍କ ନିକଟରେ ସେମାନଙ୍କର ବ୍ୟକ୍ତିତ୍ୱ, ସେମାନଙ୍କର ମନୋହର ମୂର୍ତ୍ତିଗୁଡ଼ିକ ସମଧିକ ଆଦରଣୀୟ । ଏହା ହିଁ ତାଙ୍କର ଆଦର୍ଶ ପ୍ରେମିକର ପ୍ରକୃତ—ଭାବୁକର ସ୍ୱଭାବ ହିଁ ଏହି ପ୍ରକାର । ତୃତୀୟତଃ ଅତୀନ୍ଦ୍ରିୟବାଦୀ ଯୋଗୀ—ସେ ନିଜକୁ ବିଶ୍ଳେଷଣ କରିବାକୁ, ମାନବମନର କ୍ରିୟାସମୂହ ଜାଣିବାକୁ ଅନ୍ତରରେ କି କି ଶକ୍ତି କାର୍ଯ୍ୟ କରୁଛି ଏବଂ କେଉଁ ଭାବରେ ସେଗୁଡ଼ିକୁ ଜଣାଯାଏ, ପରିଚାଳିତ କରାଯାଏ ଓ ବଶୀଭୂତ କରାଯାଏ, ଏହି ସମସ୍ତ ସେ ଜାଣିବାକୁ ଚାହାଁନ୍ତି । ଏହା ହିଁ ଏହି ଯୋଗୀ (Mystic)ର ମନର ସ୍ୱଭାବ । ଚତୁର୍ଥତଃ ଦାର୍ଶନିକ, ସେ ପ୍ରତ୍ୟେକଟି ବିଷୟକୁ ମାପି ଦେଖିବାକୁ ଚାହାଁନ୍ତି ଏବଂ ମାନବୀୟ ଦର୍ଶନ ପକ୍ଷରେ ଯେତେଦୂର ଯିବା ସମ୍ଭବ, ତାହାର ବି ଊର୍ଦ୍ଧ୍ୱକୁ ସେ ନିଜ ବୁଦ୍ଧିକୁ ନେଇଯିବାକୁ ଚାହାଁନ୍ତି ।

ବର୍ତ୍ତମାନ କଥା ହେଉଛି, ଯଦି କୌଣସି ଧର୍ମକୁ ସର୍ବାପେକ୍ଷା ବେଶୀ ଲୋକଙ୍କର ଉପଯୋଗୀ ହେବାକୁ ହୁଏ, ତା'ହେଲେ ବିଭିନ୍ନ ଲୋକଙ୍କ ମନର ଉପଯୋଗୀ ଖାଦ୍ୟ ଯୋଗାଇବାର କ୍ଷମତା ତାର ଥିବା ଉଚିତ ଏବଂ ଯେଉଁ ଧର୍ମରେ ଏହି କ୍ଷମତାର ଅଭାବ, ସେହି ଧର୍ମର ଅନ୍ତର୍ଗତ ସମ୍ପ୍ରଦାୟଗୁଡ଼ିକ ସମସ୍ତେ ଏକଦେଶଦର୍ଶୀ ହୋଇପଡ଼ନ୍ତି । ମନେକର —ତୁମେ ଏପରି କୌଣସି ସମ୍ପ୍ରଦାୟ ନିକଟକୁ ଗଲ, ଯେଉଁମାନେ କି ଭକ୍ତି ଓ ଭାବୁକତା ପ୍ରଚାର କରନ୍ତି, କୀର୍ତ୍ତନ ଭଜନ କରନ୍ତି, କାନ୍ଦନ୍ତି ଓ ପ୍ରେମ ପ୍ରଚାର କରନ୍ତି । କିନ୍ତୁ ଯଦି ଆପଣ କହିଲେ—"ବନ୍ଧୁ ! ଆପଣ ଯାହା କହୁଛନ୍ତି, ସବୁ ଠିକ୍ । କିନ୍ତୁ ମୁଁ ଚାହେଁ ଏହା ଅପେକ୍ଷା ଆହୁରି କିଛି ଶକ୍ତିପ୍ରଦ ଜିନିଷ, ମୁଁ ଚାହେଁ ଟିକିଏ ବୁଦ୍ଧିର ପ୍ରୟୋଗ, ଟିକିଏ ଦାର୍ଶନିକତା । ମୁଁ ଆହୁରି ମଧ୍ୟ ବିଚାରପୂର୍ବକ ବିଷୟଗୁଡ଼ିକୁ କ୍ରମାନ୍ୱୟରେ ବୁଝିବାକୁ ଚାହେଁ ।" ସେମାନେ ଏହା ଶୁଣି ତତ୍‌କ୍ଷଣାତ୍ କହିବେ—"ଦୂର ହୁଅ"—ଏବଂ କେବଳ ଯେ ସେମାନେ ତୁମକୁ ସେଠାରୁ ଦୂରେଇ ଯିବାକୁ କହିବେ ତା' ନୁହେ—ବରଂ ଯଦି ସୁଯୋଗ ପାଇବେ, ତେବେ ତୁମକୁ ଇହଧାମରୁ ମଧ୍ୟ ବିଦାୟ ଦେଇଦେବାକୁ ପଶ୍ଚାତ୍‌ପଦ ହେବେ ନାହିଁ । ଫଳରେ ଏହା ହିଁ ହୁଏ ଯେ ସେହି ସମ୍ପ୍ରଦାୟ କେବଳ ଭାବପ୍ରବଣ ଭକ୍ତ-ମାନଙ୍କୁ ସାହାଯ୍ୟ କରିପାରନ୍ତି । ସେମାନେ ଅନ୍ୟକୁ ସାହାଯ୍ୟ ତ କରିପାରନ୍ତି ନାହିଁ—ବରଂ ଅନ୍ୟକୁ ବିନଷ୍ଟ କରିବାକୁ ଚେଷ୍ଟା କରନ୍ତି ଏବଂ ଏହି ବ୍ୟାପାରର ସର୍ବାପେକ୍ଷା ନୀତି-ବିଗର୍ହିତ ଦିଗଟି ହେଉଛି—ସାହାଯ୍ୟର କଥା ଦୂରେ ଥାଉ, ଅନ୍ୟ କେହି ଯେ ଅକପଟ ହୋଇପାରେ, ଏହା ମଧ୍ୟ ସେମାନେ ବିଶ୍ୱାସ କରନ୍ତି ନାହିଁ । ଅନ୍ୟ ଦିଗରେ ପୁଣି ଅଛି,

ଦାର୍ଶନିକମାନଙ୍କର ସମ୍ପ୍ରଦାୟ । ସେମାନେ ଭାରତ ଓ ପ୍ରାଚ୍ୟ ଜ୍ଞାନର ବଡ଼ାଇ କରନ୍ତି ଏବଂ ମନସ୍ତତ୍ତ୍ୱବିଷୟକ ଖୁବ୍ ଲମ୍ବାଚଉଡ଼ା ବହୁ ଆଡ଼ମ୍ବରପୂର୍ଣ୍ଣ ଶବ୍ଦ ବ୍ୟବହାର କରନ୍ତି । କିନ୍ତୁ ଯଦି ମୋ ଭଳି ଜଣେ ସାଧାରଣ ଲୋକ ଯାଇ ସେମାନଙ୍କୁ କହେ—"ମୋତେ ଧାର୍ମିକ ହେବା ପାଇଁ କିଛି ଉପଦେଶ ଦେଇପାରିବେ କି ?" ତାହେଲେ ସେମାନେ ପ୍ରଥମେ ହିଁ ଟିକିଏ ମୁରୁକି ହସି କହିବେ—"ଆହେ ! ତୁମେ ବୁଦ୍ଧିବୃତ୍ତିରେ ବର୍ତ୍ତମାନ ମଧ୍ୟ ଆମଠାରୁ ଖୁବ୍ ନିମ୍ନରେ ରହିଛ । ତୁମେ ଆଧ୍ୟାତ୍ମିକତାର କ'ଣ ବୁଝିବ ?" ସେମାନେ ଖୁବ୍ ଉଚ୍ଚଦରର ଦାର୍ଶନିକ । ସେମାନେ ତୁମକୁ କେବଳ ବାହାରିଯିବାର ଦରଜା ଦେଖାଇ ଦେଇପାରିବେ । ଆଉ ଗୋଟିଏ ଦଳ ଅଛନ୍ତି, ସେମାନେ ହେଲେ 'ଯୋଗମାର୍ଗୀ' (Mystic) । ସେମାନେ ଜୀବର ବିଭିନ୍ନ ଅବସ୍ଥା, ମନର ବିଭିନ୍ନ ସ୍ତର, ମାନସିକ ସିଦ୍ଧିର କ୍ଷମତା ଇତ୍ୟାଦି ବିଷୟରେ ନାନା କଥା ତୁମକୁ କହିବେ ଏବଂ ତୁମେ ଯଦି ସାଧାରଣ ଲୋକଙ୍କ ପରି ସେମାନଙ୍କୁ ପୁଛ, "ମୋତେ ଏପରି କିଛି ସଦୁପଦେଶ ଦିଅନ୍ତୁ ଯାହାକୁ କି ମୁଁ କାର୍ଯ୍ୟରେ ପରିଣତ କରିପାରିବି, ମୁଁ ଏତେ କଳ୍ପନାପ୍ରିୟ ନୁହେଁ । ମୋର ଉପଯୋଗୀ ମୋତେ କିଛି ଦେଇପାରିବେ କି ?" ସେମାନେ ହସି କରି କହିବେ, "ନିର୍ବୋଧଟା କଅଣ କହୁଛି ଶୁଣ ! ବୋକା, କିଛି ଜାଣେ ନାହିଁ । ତାର ଜୀବନଟା ବୃଥା ।" ପୃଥିବୀରେ ସର୍ବତ୍ର ଏହିପରି ଚାଲିଛି । ମୁଁ ଏହିସବୁ ବିଭିନ୍ନ ସମ୍ପ୍ରଦାୟର ସର୍ବାପେକ୍ଷା ଧର୍ମଧ୍ୱଜୀମାନଙ୍କୁ ଗୋଟିଏ ଘରେ ପୂରାଇ ସେମାନଙ୍କର ସୁନ୍ଦର ବିଦ୍ରୂପବ୍ୟଞ୍ଜକ ହାସ୍ୟାତ୍ମକ ଗୋଟିଏ ଫଟୋ ଉଠାଇବାକୁ ଚାହେଁ ।

ଏହା ହିଁ ଧର୍ମର ସମସାମୟିକ ଅବସ୍ଥା । ଏହା ହିଁ ବର୍ତ୍ତମାନର ପରିସ୍ଥିତି । ମୁଁ ଏପରି ଗୋଟିଏ ଧର୍ମର ପ୍ରଚାର କରିବାକୁ ଚାହେଁ, ଯାହା ସବୁପ୍ରକାର ମନର ଉପଯୋଗୀ ହେବ । ଅର୍ଥାତ୍ ଏହା ସମାନ ଭାବରେ ଦର୍ଶନମୂଳକ, ସମାନ ଭାବରେ ଭକ୍ତିପ୍ରବଣ, ସମାନ ଭାବେ ମରମୀ ଏବଂ କର୍ମପ୍ରେରଣାମୟ ହେବ । ଯଦି କଲେଜରୁ ପଦାର୍ଥବିଜ୍ଞାନର ଅଧ୍ୟାପକଗଣ ଆସନ୍ତି, ସେମାନେ ଯୁକ୍ତିବିଚାର ପସନ୍ଦ କରିବେ । ସେମାନେ ଯେତେ ପାରିବେ ବିଚାର କରନ୍ତୁ । ଶେଷରେ ସେମାନେ ଏପରି ଗୋଟିଏ ସ୍ଥାନରେ ପହଞ୍ଚିବେ, ଯେଉଁଠାରେ ସେମାନଙ୍କର ମନେହେବ ଯେ ଯୁକ୍ତି-ବିଚାରର ଧାରା ଅକ୍ଷୁଣ୍ଣ ରଖି ସେମାନେ ଆଉ ଅଗ୍ରସର ହୋଇପାରିବେ ନାହିଁ । ସେମାନେ କହିବେ—"ଈଶ୍ୱର, ମୁକ୍ତି ପ୍ରଭୃତି ଭାବଗୁଡ଼ିକ କୁସଂସ୍କାର ମାତ୍ର । ଏଗୁଡ଼ିକୁ ଛାଡ଼ିଦିଅ ।" ମୁଁ କହେ—"ହେ ଦାର୍ଶନିକପ୍ରବର ! ତୁମର ଏହି ପଞ୍ଚଭୌତିକ ଦେହ ଯେ ଆହୁରି ବଡ଼ କୁସଂସ୍କାର, ଏହିଟିକୁ ପରିତ୍ୟାଗ କର । ଆହାର କରିବା ଲାଗି ଆଉ ଘରକୁ ଯାଅ ନାହିଁ କିବା ଅଧ୍ୟାପନା କରିବା ଲାଗି ଆଉ ଦର୍ଶନ-ବିଜ୍ଞାନ କ୍ଲାସକୁ ଯାଅ ନାହିଁ । ଶରୀର ତ୍ୟାଗ କର ଏବଂ ଯଦି ନ ପାର ତେବେ ଜୀବନଭିକ୍ଷା ଚାହିଁ ଚୁପ୍ କରି ବସ ।" କାରଣ, ଯେଉଁ ଦର୍ଶନ ଆମମାନଙ୍କୁ ଜଗତର ଏକତ୍ୱ ଓ ବିଶ୍ୱମୟ ଗୋଟିଏ ମାତ୍ର ସତ୍ତାର ଅସ୍ତିତ୍ୱ ଶିକ୍ଷା ଦିଏ, ସେହି ତତ୍ତ୍ୱକୁ ଉପଲବ୍ଧି କରିବାର ଉପାୟ ଦେଖାଇବାର ସାମର୍ଥ୍ୟ ଧର୍ମର ଥିବା ନିତାନ୍ତ ଆବଶ୍ୟକ ।

ସେହିଭଳି ଯଦି କେହି 'ମରମୀ' ଯୋଗୀ ଆସନ୍ତି, ଆମେ ତାଙ୍କୁ ସାଦରେ ଅଭ୍ୟର୍ଥନା କରି ବୈଜ୍ଞାନିକ ଭାବରେ ମନସ୍ତତ୍ତ୍ୱ ବିଶ୍ଳେଷଣ କରି ସବୁ କଥା ଠିକ୍ ଭାବରେ ଦେଖାଇ ଦେବା ଲାଗି ସର୍ବଦା ପ୍ରସ୍ତୁତ ରହିବୁ । ଯଦି ଭକ୍ତ ଲୋକ ଆସନ୍ତି, ତେବେ ଆମେ ତାଙ୍କ ସହିତ ଏକାଠି ବସି ଭଗବାନଙ୍କ ନାମରେ ହସିବୁ ଆଉ କାନ୍ଦିବୁ । ଆମେ "ପ୍ରେମର ପିଆଲା ପାନ କରି ମତ୍ତ ହୋଇଯିବୁ ।" ଯଦି ଜଣେ ଉଦ୍ୟମଶୀଳ କର୍ମୀ ଆସନ୍ତି, ଆମେମାନେ ତାଙ୍କ ସହିତ ଯଥାସାଧ୍ୟ କର୍ମ କରିବୁ । ଏହି ପ୍ରକାର ସମନ୍ୱୟ ହିଁ ସାର୍ବଭୌମ ଧର୍ମର ନିକଟତମ ଆଦର୍ଶ ହେବ । ଭଗବାନଙ୍କ ଇଚ୍ଛାରେ ଯଦି ସବୁ ଲୋକଙ୍କ ମନରେ ଏହି ଜ୍ଞାନ, ଭକ୍ତିଯୋଗ ଓ କର୍ମର ପ୍ରତ୍ୟେକଟି ଭାବ ପୂର୍ଣ୍ଣମାତ୍ରାରେ ଅଥଚ ସମାନ ଭାବରେ ବିଦ୍ୟମାନ ଥାଆନ୍ତା, ତେବେ କେତେ ଭଲ ହୁଅନ୍ତା ! ଏହା ହିଁ ଆଦର୍ଶ, ଏହା ହିଁ ଆମର ପୂର୍ଣ୍ଣମାନବର ଆଦର୍ଶ । ଯେଉଁମାନଙ୍କର ଚରିତ୍ରରେ ଏହି ଭାବଗୁଡ଼ିକର ଗୋଟିଏ ବା ଦୁଇଟି ପ୍ରସ୍ଫୁଟିତ ହୋଇଛି, ମୁଁ ସେମାନଙ୍କୁ ଏକଦେଶଦର୍ଶୀ ବୋଲି କହେ ଏବଂ ସମସ୍ତ ଜଗତ ହିଁ ସେହିଭଳି ଏକଦେଶଦର୍ଶୀ ମନୁଷ୍ୟରେ ପରିପୂର୍ଣ୍ଣ ଏବଂ ସେମାନେ କେବଳ ସେହି ରାସ୍ତାଟି ହିଁ ଜାଣନ୍ତି, ଯେଉଁଥିରେ ସେମାନେ ନିଜେ ଚଲାବୁଲା କରନ୍ତି । ଏତଦ୍‌ବ୍ୟତୀତ ଆଉ ଯାହା କିଛି ଅଛି, ସେସବୁ ସେମାନଙ୍କ ନିକଟରେ ବିପଜ୍ଜନକ ଓ ଜଘନ୍ୟ । ଏହି ଚାରୋଟି ଦିଗରେ ସାମଞ୍ଜସ୍ୟର ସହିତ ବିକାଶଲାଭ କରିବା ହିଁ ମୋର ପ୍ରସ୍ତାବିତ ଧର୍ମର ଆଦର୍ଶ ଏବଂ ଭାରତବର୍ଷରେ ଆମେ ଯାହାକୁ 'ଯୋଗ' ବୋଲି କହୁ, ତାହାଦ୍ୱାରା ହିଁ ଏହି ଆଦର୍ଶ ଧର୍ମ ଲାଭ କରାଯାଏ । କର୍ମୀ ଦୃଷ୍ଟିରେ ଏହାର ଅର୍ଥ ବ୍ୟକ୍ତି ସହିତ ସମଗ୍ର ଜାତିର ଅଭେଦ ଭାବ । 'ମରମୀ'ର ଦୃଷ୍ଟିରେ ଏହାର ଅର୍ଥ ଜୀବାତ୍ମା ଓ ପରମାତ୍ମାର ଏକତ୍ୱ ସାଧନ । ଭକ୍ତ ନିକଟରେ ଏହାର ଅର୍ଥ ନିଜ ସହିତ ପ୍ରେମମୟ ଭଗବାନଙ୍କର ମିଳନ ଏବଂ ଜ୍ଞାନୀ ନିକଟରେ ଏହାର ଅର୍ଥ ନିଖିଳ ସତ୍ତାର ଐକ୍ୟ-ବୋଧ । 'ଯୋଗ' ଶବ୍ଦରେ ଏହା ହିଁ ବୁଝାଯାଏ । ଏହା ଗୋଟିଏ ସଂସ୍କୃତ ଶବ୍ଦ ଏବଂ ସଂସ୍କୃତରେ ଏହି ଚାରିପ୍ରକାର ଯୋଗର ଭିନ୍ନ ଭିନ୍ନ ନାମ ରହିଛି । ଯେ ଏହିପ୍ରକାର ଯୋଗ-ସାଧନରେ ବ୍ରତୀ, ସେ ହେଉଛନ୍ତି 'ଯୋଗୀ' । ଯେ କର୍ମ ମଧ୍ୟ ଦେଇ ଏହି ଯୋଗ ସାଧନ କରନ୍ତି, ତାଙ୍କୁ କର୍ମଯୋଗୀ କୁହାଯାଏ । ଯେ ପ୍ରେମ ମଧ୍ୟ ଦେଇ ଏହି ଯୋଗ ସାଧନ କରନ୍ତି ତାଙ୍କୁ କୁହାଯାଏ ଭକ୍ତିଯୋଗୀ । ଧ୍ୟାନଧାରଣା ଭିତର ଦେଇ ଯେ ସାଧନ କରନ୍ତି, ତାଙ୍କୁ 'ରାଜଯୋଗୀ' କୁହାଯାଏ ଏବଂ ଯେ ଜ୍ଞାନ ବିଚାର କରି ଏହି ଯୋଗ ସାଧନ କରନ୍ତି ତାଙ୍କୁ ଜ୍ଞାନଯୋଗୀ କୁହାଯାଏ । ଅତଏବ 'ଯୋଗୀ' କହିଲେ ଏ ସମସ୍ତଙ୍କୁ ବୁଝାଇଥାଏ ।

ବର୍ତ୍ତମାନ ପ୍ରଥମେ 'ରାଜଯୋଗ'ର କଥା ଧରାଯାଉ । ଏହି ରାଜଯୋଗ—ଏହି ମନଃ-ସଂଯୋଗର ବ୍ୟାପାରଟି ପ୍ରକୃତରେ କଅଣ ? ଇଂଲଣ୍ଡରେ ଆପଣମାନେ 'ଯୋଗ' କଥାଟି ସହିତ ଭୂତପ୍ରେତ ପ୍ରଭୃତି ନାନା ପ୍ରକାର କିମ୍ଭୂତକିମାକାର ଧାରଣା ମିଶାଇ ମନରେ ରଖିଛନ୍ତି । ଅତଏବ ପ୍ରଥମେ ହିଁ ଆପଣମାନଙ୍କୁ ଏହା କହି ରଖିବା ମୋର କର୍ତ୍ତବ୍ୟ

ବୋଲି ମନେ କରୁଛ ଯେ, ଯୋଗ ସହିତ ଏହାର କୌଣସି ମାତ୍ର ସମ୍ବନ୍ଧ ନାହିଁ । ଏହିଗୁଡ଼ିକ ଭିତରେ ଯେଉଁ ଯୋଗରେ ତୁମକୁ ଯୁକ୍ତିବିଚାର ପରିତ୍ୟାଗ କରିବା ଲାଗି, ଅନ୍ୟଦ୍ୱାରା ପ୍ରଭାବିତ ହେବା ଲାଗି ଅଥବା ପୁରୋହିତକୁଳ ଯେକୌଣସି ପର୍ଯ୍ୟାୟର ହୁଅନ୍ତୁ ନା କାହିଁକି ସେମାନଙ୍କ ହାତରେ ତୁମର ବିଚାରଶକ୍ତିକୁ ସମର୍ପଣ କରିବା ଲାଗି କେହି ବାଧ୍ୟ କରେ ନାହିଁ । କୌଣସି ଯୋଗ କହେ ନାହିଁ ଯେ ତୁମକୁ କୌଣସି ଅତିମାନୁଷ ଈଶଦୂତଙ୍କ ନିକଟରେ ସମ୍ପୂର୍ଣ୍ଣ ଆନୁଗତ୍ୟ ସ୍ୱୀକାର କରିବାକୁ ହେବ । ପ୍ରତିଟି ଯୋଗ ବରଂ ସ୍ଥିର ଭାବେ ନିର୍ଦ୍ଦେଶ ଦିଏ ଯେ, ତୁମେ ତୁମର ବିଚାରଶକ୍ତିକୁ ଦୃଢ଼ ଭାବେ ଧର—ଏବଂ ସେହିଥିରେ ଲାଗି ରୁହ । ଆମେ ସବୁ ପ୍ରାଣୀଙ୍କ ମଧ୍ୟରେ ଜ୍ଞାନଲାଭର ତିନିପ୍ରକାର ଉପାୟ ଦେଖିବାକୁ ପାଉ । ପ୍ରଥମ ହେଲା ସହଜାତ ଜ୍ଞାନ, ଯାହାକି ଜୀବଜନ୍ତୁଙ୍କ ଭିତରେ ବିଶେଷ ପରିସ୍ଫୁଟ ଭାବରେ ଦେଖିବାକୁ ମିଳେ । ଏହା ଜ୍ଞାନଲାଭର ସର୍ବନିମ୍ନ ଉପାୟ । ଦ୍ୱିତୀୟ ଉପାୟଟି କ'ଣ ? ତାହା ହେଲା ବିଚାରଶକ୍ତି । ମନୁଷ୍ୟ ମଧ୍ୟରେ ହିଁ ଏହାର ସମଧିକ ବିକାଶ ଦେଖିବାକୁ ମିଳେ । ପ୍ରଥମତଃ ସହଜାତ ଜ୍ଞାନ ଗୋଟିଏ ଅସମ୍ପୂର୍ଣ୍ଣ ଉପାୟ । ଜୀବଜନ୍ତୁମାନଙ୍କର କାର୍ଯ୍ୟକ୍ଷେତ୍ର ଅତି ସଙ୍କୀର୍ଣ୍ଣ ଏବଂ ଏହି ସଙ୍କୀର୍ଣ୍ଣ କ୍ଷେତ୍ରରେ ହିଁ ସହଜାତ ଜ୍ଞାନ କାର୍ଯ୍ୟ କରେ । ମନୁଷ୍ୟ କ୍ଷେତ୍ରରେ ଦେଖାଯାଏ, ଏହି ସହଜାତ ଜ୍ଞାନ ବହୁଳ ଭାବେ ବିଚାରଶକ୍ତିରେ ପରିଣତ ହୋଇଅଛି । ସଙ୍ଗେ ସଙ୍ଗେ କାର୍ଯ୍ୟକ୍ଷେତ୍ରର ପରିସର ମଧ୍ୟ ବଢ଼ି ଯାଇଛି । ତଥାପି, ଏହି ବିଚାରଶକ୍ତିର ମଧ୍ୟ ଯଥେଷ୍ଟ ଅପ୍ରାଚୁର୍ଯ୍ୟ ରହିଅଛି । ବିଚାରଶକ୍ତି କିଛି ଦୂର ପର୍ଯ୍ୟନ୍ତ ମାତ୍ର ଅଗ୍ରସର ହୋଇପାରେ, ତା'ପରେ ସେ ଚୁପ୍ ହୋଇଯାଏ, ଆଉ ଅଗ୍ରସର ହୋଇପାରେ ନାହିଁ ଏବଂ ତୁମେ ଯଦି ଏହାକୁ ବେଶୀ ଦୂର ଚଳାଇବାକୁ ଚେଷ୍ଟା କର, ତେବେ ତାହା ଫଳରେ ଏକ ଦୁରପନେୟ ବିଶୃଙ୍ଖଳା ଉପସ୍ଥିତ ହୁଏ । ଯୁକ୍ତି ନିଜେ ହିଁ ଅଯୁକ୍ତିରେ ପରିଣତ ହୁଏ; ଯୁକ୍ତି ସେତେବେଳେ ଚକ୍ର ଆକାରରେ ଘୂରିଥାଏ । ଦୃଷ୍ଟାନ୍ତ ସ୍ୱରୂପ, ଆମ ପ୍ରତ୍ୟକ୍ଷର ମୂଳୀଭୂତ କାରଣ ଜଡ଼ ଓ ଶକ୍ତିର କଥା ଧରିଯାଉ । ଜଡ଼ କ'ଣ ? ଯାହା ଉପରେ ଶକ୍ତି କ୍ରିୟା କରେ । ଶକ୍ତି କ'ଣ ? ଯାହା ଜଡ଼ ଉପରେ କ୍ରିୟା କରେ । ଏହିସବୁ କଥାରେ ଗୋଳମାଳଟା କେଉଁଠି, ତାହା ଆପଣମାନେ ନିଶ୍ଚୟ ବୁଝିପାରିଛନ୍ତି । ନ୍ୟାୟଶାସ୍ତ୍ରବିଦ୍‌ଗଣ ଏହାକୁ ଅନ୍ୟୋନ୍ୟାଶ୍ରୟ ଦୋଷ ବୋଲି କହିଥାଆନ୍ତି । ଗୋଟିକର ( ଅର୍ଥାତ୍ ଜଡ଼ର ) ଧାରଣା ପାଇଁ ଅପରଟି (ଅର୍ଥାତ୍ ଶକ୍ତି) ଉପରେ ନିର୍ଭର କରିବାକୁ ହେଉଛି । ପୁଣି ଅପରଟିର (ଶକ୍ତିର) ଧାରଣା ନିମିତ୍ତ ପ୍ରଥମଟି (ଜଡ଼) ଉପରେ ନିର୍ଭର କରିବାକୁ ହେଉଛି । ସୁତରାଂ ଆପଣମାନେ ଯୁକ୍ତି ସମ୍ମୁଖରେ ଏକ ପ୍ରବଳ ବାଧା ଦେଖିବାକୁ ପାଉଛନ୍ତି । ଏହାକୁ ଅତିକ୍ରମ କରି ଯୁକ୍ତି ଆଉ ଅଗ୍ରସର ହୋଇପାରେ ନାହିଁ । ତଥାପି ଏହି ବାଧାର ଅପର ପ୍ରାନ୍ତରେ ଯେଉଁ 'ଅନନ୍ତ'ର ରାଜ୍ୟ ରହିଛି, ସେଠାରେ ପହଞ୍ଚିବା ଲାଗି ଯୁକ୍ତି ସର୍ବଦା ବ୍ୟସ୍ତ । ଆମର ପଞ୍ଚେନ୍ଦ୍ରିୟଗ୍ରାହ୍ୟ ଓ ମନର ବିଷୟୀଭୂତ ଏହି ଜଗତ, ଏହି ନିଖିଳ ବିଶ୍ୱ ଆମର ବୁଦ୍ଧିଭୂମିର ଉପରେ ପ୍ରତିଫଳିତ ସେହି ଅନନ୍ତର ଏକ କଣିକାମାତ୍ର ଏବଂ ବୁଦ୍ଧିରୂପକ ଜାଲଦ୍ୱାରା ବେଷ୍ଟିତ ଏହି

କ୍ଷୁଦ୍ର ଗଣ୍ଡି ଭିତରେ ଆମର ବିଚାରଶକ୍ତି କାର୍ଯ୍ୟ କରେ—ତାହା ବାହାରକୁ ଆଉ ଯାଇପାରେ ନାହିଁ । ସୁତରାଂ ଏହାର ବାହାରକୁ ଯିବା ଲାଗି ଆମର ଅନ୍ୟ କୌଣସି ଉପାୟର ପ୍ରୟୋଜନ ରହିଛି—ତାହାକୁ ପ୍ରଜ୍ଞା ବା ଅତି-ଇନ୍ଦ୍ରିୟବୋଧ ବୋଲି କୁହାଯାଇପାରେ । ଅତଏବ ସହଜାତ ଜ୍ଞାନ, ବିଚାରଶକ୍ତି, ଅତୀନ୍ଦ୍ରିୟବୋଧ ଏହି ତିନୋଟି ହେଲା ଜ୍ଞାନଲାଭର ଉପାୟ । ପଶୁଠାରେ ସହଜାତ ଜ୍ଞାନ, ମନୁଷ୍ୟଠାରେ ବିଚାରଶକ୍ତି ଓ ଦେବମାନବଙ୍କଠାରେ ଅତୀନ୍ଦ୍ରିୟବୋଧ ଦେଖିବାକୁ ମିଳେ । କିନ୍ତୁ ସବୁ ମନୁଷ୍ୟଙ୍କ ଭିତରେ ହିଁ ଏହି ତିନୋଟି ଶକ୍ତିର ବୀଜ ଅଳ୍ପବହୁତ ପରିସ୍ଫୁଟ ହେବାର ଦେଖାଯାଏ । ଏହିସବୁ ମାନସିକ ଶକ୍ତିର ବିକାଶ କରିବାକୁ ହେଲେ ଏହାର ବୀଜଗୁଡ଼ିକ ଅବଶ୍ୟ ମାନବ ମନରେ ଥିବା ଉଚିତ ଏବଂ ଏହା ମଧ୍ୟ ସ୍ମରଣ ରଖିବା କର୍ତ୍ତବ୍ୟ ଯେ, ଗୋଟିଏ ଶକ୍ତି ଅପରଟିର ବିକଶିତ ଅବସ୍ଥା ମାତ୍ର । ସୁତରାଂ ସେମାନେ ପରସ୍ପର-ବିରୋଧୀ ନୁହନ୍ତି । ବିଚାରଶକ୍ତି ହିଁ ପରିସ୍ଫୁଟ ହୋଇ ଅତୀନ୍ଦ୍ରିୟବୋଧରେ ପରିଣତ ହୁଏ । ସୁତରାଂ ଅତୀନ୍ଦ୍ରିୟବୋଧ ବିଚାରଶକ୍ତିର ପରିପନ୍ଥୀ ନୁହେଁ, ପରନ୍ତୁ ତାହାର ପରିପୂରକ । ଯେଉଁସବୁ ସ୍ଥଳରେ ବିଚାରଶକ୍ତି ପହଞ୍ଚିପାରେ ନାହିଁ, ଅତୀନ୍ଦ୍ରିୟବୋଧ ସେଗୁଡ଼ିକୁ ମଧ୍ୟ ଉଦ୍ଭାସିତ କରେ ଏବଂ ସେଗୁଡ଼ିକ ବୁଦ୍ଧିର ବିରୋଧୀ ହୁଅନ୍ତି ନାହିଁ । ବାର୍ଦ୍ଧକ୍ୟ ବାଲକତ୍ୱର ବିରୋଧୀ ନୁହେଁ, ପରନ୍ତୁ ତାର ପରିଣତି । ଅତଏବ, ତୁମମାନଙ୍କୁ ସର୍ବଦା ମନେ ରଖିବାକୁ ହେବ ଯେ ନିମ୍ନ ଶ୍ରେଣୀର ଜ୍ଞାନୋପାୟକୁ ଉଚ୍ଚଶ୍ରେଣୀର ଉପାୟ ବୋଲି ଭୁଲ କରିବା-ରୂପକ ଭୟଙ୍କର ବିପଦର ସମ୍ଭାବନା ରହିଅଛି । ଅନେକ ସମୟରେ ସହଜାତ ଜ୍ଞାନକୁ ଅତୀନ୍ଦ୍ରିୟବୋଧ ବୋଲି ଜଗତରେ ଚଳେଇ ଦିଆଯାଏ ଏବଂ ସଙ୍ଗେ ସଙ୍ଗେ ଭବିଷ୍ୟଦ୍ ବକ୍ତା ସାଜିବାର ସମସ୍ତ ପ୍ରକାର ମିଥ୍ୟା ଦାବୀ ଆସି ଉପସ୍ଥିତ ହୁଏ । ଜଣେ ନିର୍ବୋଧ ଅଥବା ଅର୍ଦ୍ଧୋନ୍ମାଦ ବ୍ୟକ୍ତି ମନେକରେ ଯେ, ତାର ମସ୍ତିଷ୍କରେ ଯେଉଁସବୁ ପାଗଳାମୀ ଚାଲିଛି, ସେଗୁଡ଼ିକ ମଧ୍ୟ ଅତୀନ୍ଦ୍ରିୟ ଜ୍ଞାନ ଏବଂ ସେ ଚାହେଁ ଯେ ଲୋକେ ତାର ଅନୁସରଣ କରନ୍ତୁ । ଜଗତରେ ସର୍ବାପେକ୍ଷା ପରସ୍ପରବିରୋଧୀ ଯେତେପ୍ରକାର ଅସମ୍ବନ୍ଧ ପ୍ରଳାପବାକ୍ୟ ପ୍ରଚାରିତ ହୋଇଛି, ତାହା ବିକୃତମସ୍ତିଷ୍କ କେତେଗୁଡ଼ିଏ ଉନ୍ମାଦଙ୍କର ସହଜାତ ଜ୍ଞାନାନୁଯାୟୀ ପ୍ରଳାପବାକ୍ୟକୁ ଅତୀନ୍ଦ୍ରିୟବୋଧର ଭାଷା ବୋଲି ଚଳେଇଦେବାର ଚେଷ୍ଟା ବ୍ୟତୀତ ଆଉ କିଛି ନୁହେଁ ।

ପ୍ରକୃତ ଶିକ୍ଷାର ପ୍ରଥମ ଲକ୍ଷଣ ଏହା ହିଁ ହେବା ଉଚିତ ଯେ, ଏହା କେବେହେଲେ ଯୁକ୍ତିବିରୋଧୀ ହେବ ନାହିଁ ଏବଂ ଆପଣମାନେ ଦେଖିବାକୁ ପାଇବେ ଯେ, ଉପରେ କୁହାଯାଇଥିବା ସବୁପ୍ରକାର ଯୋଗ ଏହି ଭିତ୍ତି ଉପରେ ହିଁ ପ୍ରତିଷ୍ଠିତ । ପ୍ରଥମେ ରାଜଯୋଗର କଥା ଧରାଯାଉ । ରାଜଯୋଗ ହେଲା ମନସ୍ତତ୍ତ୍ୱ-ବିଷୟକ ଯୋଗ—ମନୋବୃତ୍ତିର ସହାୟତା ଅବଲମ୍ବନରେ ପରମାତ୍ମା-ଯୋଗରେ ପହଞ୍ଚିବାର ଉପାୟ । ବିଷୟଟି ଖୁବ୍ ବଡ଼ । ତେଣୁ ମୁଁ ବର୍ତ୍ତମାନ ଏହି 'ଯୋଗ'ର ମୂଳ ଭାବଟି ଆପଣମାନଙ୍କ ନିକଟରେ ବ୍ୟକ୍ତ କରୁଛି । ଜ୍ଞାନଲାଭ କରିବା ପାଇଁ ଆମର ଗୋଟିଏ ମାତ୍ର ଉପାୟ ଅଛି । ନିମ୍ନତମ ମନୁଷ୍ୟଠୁ

ସର୍ବୋଚ୍ଚ 'ଯୋଗୀ'ଙ୍କ ପର୍ଯ୍ୟନ୍ତ ସମସ୍ତଙ୍କୁ ହିଁ ସେହି ଗୋଟିଏ ଉପାୟ ଅବଲମ୍ବନ କରିବାକୁ ହୁଏ । ଏକାଗ୍ରତା ହିଁ ଏହି ଉପାୟ । ରସାୟନବିତ୍ ଯେତେବେଳେ ତାଙ୍କର ପରୀକ୍ଷାଗାରରେ କାର୍ଯ୍ୟ କରନ୍ତି, ସେତେବେଳେ ସେ ତାଙ୍କ ମନର ସମସ୍ତ ଶକ୍ତିକୁ ସଂହତ କରନ୍ତି, ତାକୁ ଏକକେନ୍ଦ୍ରିକ କରନ୍ତି ଏବଂ ସେହି ଶକ୍ତିକୁ ପଦାର୍ଥବିଶେଷ ଉପରେ ପ୍ରୟୋଗ କରନ୍ତି । ସେତେବେଳେ ଏହି ପଦାର୍ଥର ସଙ୍ଗଠକ ଭୂତବର୍ଗ ପରସ୍ପର ବିଚ୍ଛିନ୍ନ ହୋଇଯାଆନ୍ତି ଏବଂ ଏହି ଭାବରେ ସେ ତାଙ୍କର ଜ୍ଞାନଲାଭ କରନ୍ତି । ଜ୍ୟୋତିର୍ବିଦ୍ ମଧ୍ୟ ତାଙ୍କର ସମୁଦାୟ ମନଃଶକ୍ତିକୁ ସଂହତ କରି ତାକୁ ଏକକେନ୍ଦ୍ରିକ କରନ୍ତି । ତା'ପରେ ତାଙ୍କର ଦୂରବୀକ୍ଷଣ ଯନ୍ତ୍ରର ମଧ୍ୟ ଦେଇ ଏହି ଶକ୍ତିକୁ ବସ୍ତୁ ଉପରେ ପ୍ରୟୋଗ କରନ୍ତି । ସେତେବେଳେ ନକ୍ଷତ୍ରନିଚୟ ଓ ଜ୍ୟୋତିଷ୍କମଣ୍ଡଳ ଘୂରିଘୂରି ତାଙ୍କ ନିକଟକୁ ଆସନ୍ତି ଏବଂ ନିଜ ନିଜର ରହସ୍ୟ ତାଙ୍କ ନିକଟରେ ଉଦ୍‌ଘାଟିତ କରନ୍ତି । ଅଧ୍ୟାପନାରତ ଆଚାର୍ଯ୍ୟଙ୍କ କଥା କୁହ ଅଥବା ପାଠନିରତ ଛାତ୍ରଙ୍କ କଥା କୁହ, ଯେଉଁଠାରେ କୌଣସି ବ୍ୟକ୍ତି କୌଣସି ବିଷୟ ଜାଣିବା ପାଇଁ ଚେଷ୍ଟା କରିଛନ୍ତି, ପ୍ରତ୍ୟେକ ପକ୍ଷରେ ସେହି ଗୋଟିଏ କଥା ହିଁ ଘଟିଥାଏ । ଆପଣମାନେ ମୋ କଥା ଶୁଣୁଛନ୍ତି । ଏହା ଯଦି ଆପଣଙ୍କୁ ଭଲ ଲାଗେ, ତେବେ ଆପଣମାନଙ୍କ ମନ ଏହା ପ୍ରତି ଏକାଗ୍ର ହେବ । ସେତେବେଳେ ଯଦି ଗୋଟିଏ ଘଣ୍ଟା ବାଜେ, ଆପଣମାନେ ତାହା ଶୁଣିପାରିବେ ନାହିଁ । କାରଣ ଆପଣମାନଙ୍କ ମନ ସେତେବେଳେ ଅନ୍ୟ ବିଷୟରେ ଏକାଗ୍ର ରହିଛି । ଆପଣମାନେ ମନକୁ ଯେତେ ବେଶୀ ଏକାଗ୍ର କରିବାରେ ସକ୍ଷମ ହେବେ, ସେତିକି ଅଧିକ ମୋର କଥାଗୁଡ଼ିକୁ ଭଲ ବୁଝିପାରିବେ ଏବଂ ମୁଁ ମଧ୍ୟ ମୋର ପ୍ରେମ ଓ ଶକ୍ତିସମୂହକୁ ଯେତେ ଏକାଗ୍ର କରିବି ସେତେ ମୋର ବକ୍ତବ୍ୟ ବିଷୟଟିକୁ ଆପଣମାନଙ୍କୁ ଭଲ କରି ବୁଝାଇବାରେ ସକ୍ଷମ ହେବି । ଏହି ଏକାଗ୍ରତା ଯେତେ ଅଧିକ ହେବ, ମନୁଷ୍ୟ ସେତିକି ଅଧିକ ଜ୍ଞାନ ଲାଭ କରିବ, କାରଣ ଏହା ହିଁ ଜ୍ଞାନଲାଭର ଏକମାତ୍ର ଉପାୟ । ଏପରିକି, ମୋଚିଟିଏ, ଯାହାକୁ ତୁମେମାନେ ଅତି ନୀଚ ବୋଲି ମନେକରିଥାଅ, ସେ ମଧ୍ୟ ଯଦି ଟିକିଏ ବେଶୀ ମନଃସଂଯୋଗ କରେ, ତା'ହେଲେ ସେ ତା'ର ଜୋତାଗୁଡ଼ିକୁ ଆହୁରି ଭଲ କରି ପାଲିସ୍ କରିବ । ପାଚକ ଏକାଗ୍ର ହେଲେ ସେ ଖାଦ୍ୟ ଆହୁରି ଭଲକରି ରନ୍ଧନ କରିବ । ଅର୍ଥୋପାର୍ଜନ ହେଉ, ଅଥବା ଭଗବଦାରାଧନା ହେଉ—ଯେଉଁ କାର୍ଯ୍ୟରେ ମନର ଏକାଗ୍ରତା ଯେତେ ଅଧିକ ହେବ, କାର୍ଯ୍ୟଟି ସେତିକି ସୁଚାରୁରୂପେ ସମ୍ପନ୍ନ ହେବ । କେବଳ ଏହି ଭାବରେ ଡାକିଲେ ବା ଏହି ଭାବରେ କରାଘାତ କଲେ ପ୍ରକୃତିର ଭଣ୍ଡାରର ଦ୍ୱାର ଉଦ୍‌ଘାଟିତ ହୋଇଯାଏ ଏବଂ ଜଗତ ଆଲୋକବନ୍ୟାରେ ପ୍ଲାବିତ ହୋଇଯାଏ । ଏହା ହିଁ—ଏହି ଏକାଗ୍ରତାଶକ୍ତି ହିଁ ଜ୍ଞାନଭଣ୍ଡାରରେ ପ୍ରବେଶ କରିବାର ଏକମାତ୍ର ଉପାୟ । ରାଜଯୋଗରେ ପ୍ରାୟ ଏହି ବିଷୟ ହିଁ ଆଲୋଚିତ ହୋଇଅଛି । ଆମର ବର୍ତ୍ତମାନ ଶାରୀରିକ ଅବସ୍ଥାରେ ଆମେ ସବୁ ଏତେ ବିକ୍ଷୁବ୍ଧ ରହିଛୁ ଯେ ଆମର ମନ ଶତ ଶତ ବିଷୟରେ ତାର ଶକ୍ତି ବୃଥା କ୍ଷୟ କରୁଛି । ଯେତେବେଳେ ଆମେ ବାଜେ ଚିନ୍ତା ବନ୍ଦ କରି ଜ୍ଞାନଲାଭ ନିମିତ୍ତ କୌଣସି ବିଷୟରେ ମନ ସ୍ଥିର କରିବାକୁ ଚେଷ୍ଟା କରୁ,

ସେତେବେଳେ ହିଁ ଶତସହସ୍ର ଅବାଞ୍ଛିତ ଆଲୋଡ଼ନ ଆମ ମସ୍ତିଷ୍କରେ ଦ୍ରୁତ ଉତ୍ଥିତ ହୋଇ, ଶତସହସ୍ର ଚିନ୍ତା ଯୁଗପତ୍ ମନରେ ଉଦିତ ହୋଇ ଏହାକୁ ଚଞ୍ଚଳ କରିପକାଏ। କିପରି ଭାବରେ ଏଗୁଡ଼ିକୁ ନିବାରଣ କରି ମନକୁ ସ୍ୱବଶକୁ ଆଣି ହେବ, ତାହା ହିଁ ରାଜଯୋଗର ଏକମାତ୍ର ଆଲୋଚ୍ୟ ବିଷୟ।

ବର୍ତ୍ତମାନ କର୍ମଯୋଗର ଅର୍ଥାତ୍ କର୍ମ ମଧ୍ୟ ଦେଇ ଭଗବାନ-ଲାଭର କଥା ଧରାଯାଉ। ସଂସାରରେ ଏପରି ଅନେକ ଲୋକ ଦେଖିବାକୁ ମିଳନ୍ତି, ଯେଉଁମାନେ କୌଣସି ନା କୌଣସି ପ୍ରକାର କାର୍ଯ୍ୟ କରିବାକୁ ଯେପରି ଜନ୍ମଗ୍ରହଣ କରିଛନ୍ତି। ସେମାନଙ୍କର ମନ କେବଳ ଚିନ୍ତାର ରାଜ୍ୟରେ ଏକାଗ୍ର ହୋଇ ରହିପାରେ ନାହିଁ। ସେମାନେ କେବଳ କାର୍ଯ୍ୟ ହିଁ ବୁଝନ୍ତି—ଯାହା ସେମାନଙ୍କ ଆଖିକୁ ଦେଖାଯାଏ ଏବଂ ହାତଦ୍ୱାରା କରାଯାଏ। ଏ ପ୍ରକାର ଲୋକ ପାଇଁ ଗୋଟିଏ ସୁଶୃଙ୍ଖଳ ବ୍ୟବସ୍ଥା ରହିବା ଦରକାର। ଆମେ ପ୍ରତ୍ୟେକେ କୌଣସି ନା କୌଣସି କର୍ମ କରୁଛୁ; କିନ୍ତୁ ଆମମାନଙ୍କ ମଧ୍ୟରେ ବେଶୀ ଭାଗ ଲୋକ ତାଙ୍କର ଅଧିକାଂଶ ଶକ୍ତିର ଅପବ୍ୟବହାର କରିଥାଆନ୍ତି। କାରଣ ଆମେମାନେ କର୍ମର ରହସ୍ୟ ଜାଣି ନାହୁଁ। କର୍ମଯୋଗ ଏହି ରହସ୍ୟଟି ବୁଝାଇଦିଏ ଏବଂ କେଉଁଠାରେ କେଉଁ ଭାବରେ କାର୍ଯ୍ୟ କରିବାକୁ ହେବ, ଉପସ୍ଥିତ କର୍ମରେ କେଉଁ ଭାବରେ ଆମର ସମସ୍ତ ଶକ୍ତିକୁ ନିୟୋଗ କଲେ ସର୍ବାପେକ୍ଷା ଅଧିକ ଫଳଲାଭ ହେବ, ତାହା ଶିକ୍ଷା ଦିଏ। କିନ୍ତୁ ଏହି ରହସ୍ୟ-ଶିକ୍ଷାର ସଙ୍ଗେ ସଙ୍ଗେ କର୍ମ ବିରୋଧରେ—"ଏହା ଦୁଃଖଜନକ", ଏତିକି କହି ଯେଉଁ ପ୍ରବଳ ଆପତ୍ତି ଉତ୍ଥାପନ କରାଯାଏ, ଆମମାନଙ୍କୁ ତାହା ମଧ୍ୟ ବିଚାର କରିବାକୁ ହେବ। ସବୁ ଦୁଃଖକଷ୍ଟ ଆସେ ଆସକ୍ତି ଭିତରୁ। ମୁଁ କାର୍ଯ୍ୟ କରିବାକୁ ଚାହେଁ—ମୁଁ କୌଣସି ଲୋକର ଉପକାର କରିବାକୁ ଚାହେଁ—ଏବଂ ଶତକଡ଼ା ନବେଟି ସ୍ଥଳରେ ହିଁ ଦେଖାଯାଏ ଯେ ମୁଁ ଯାହାକୁ ସାହାଯ୍ୟ କରିଛି, ସେହି ବ୍ୟକ୍ତି ସମସ୍ତ ଉପକାର ଭୁଲିଯାଇ ମୋର ଶତ୍ରୁତା କରୁଛି। ଫଳରେ ମୋତେ କଷ୍ଟ ପାଇବାକୁ ହୁଏ। ଏବଂବିଧ ଘଟଣା ଫଳରେ ମନୁଷ୍ୟ କର୍ମରୁ ବିରତ ହୁଏ ଏବଂ ଦୁଃଖକଷ୍ଟର ଭୟ ହିଁ ମାନବର କର୍ମ ଓ ଉଦ୍ୟମର ବହୁ ଅଂଶ ନଷ୍ଟ କରିଦିଏ। କାହାକୁ ସାହାଯ୍ୟ କରାହୋଇଛି ଏବଂ କେଉଁ ପ୍ରୟୋଜନରେ ସାହାଯ୍ୟ କରାଯାଇଛି, ଇତ୍ୟାଦି ବିଷୟ ପ୍ରତି ଲକ୍ଷ୍ୟ ନ ରଖି ଅନାସକ୍ତ ଭାବରେ କେବଳ କର୍ତ୍ତବ୍ୟବୋଧରେ କର୍ମ କରିବାକୁ ହୁଏ। କର୍ମଯୋଗ ତାହା ହିଁ ଶିକ୍ଷାଦିଏ। କର୍ମଯୋଗୀ କର୍ମ କରେ, କାରଣ ଏହା ତାର ସ୍ୱଭାବ। ସେ ପ୍ରାଣେ ପ୍ରାଣେ ବୋଧ କରେ ଯେ, ଏହା କରିବା ତା' ପକ୍ଷରେ କଲ୍ୟାଣଜନକ। ଏହା ବ୍ୟତୀତ ତାର ଅନ୍ୟ କୌଣସି ଉଦ୍ଦେଶ୍ୟ ନ ଥାଏ। ସେ ଜଗତରେ ସର୍ବଦା ଦାତାର ଆସନ ଗ୍ରହଣ କରେ, କେତେବେଳେ କିଛି ପ୍ରତ୍ୟାଶା କରେ ନାହିଁ। ସେ ଜ୍ଞାତସାରରେ ଦାନ କରିଯାଏ; କିନ୍ତୁ ପ୍ରତିଦାନସ୍ୱରୂପ କିଛି ହେଲେ ଚାହେଁ ନାହିଁ। ସୁତରାଂ ସେ ଦୁଃଖର ହାତରୁ ରକ୍ଷା ପାଏ। ଯେତେବେଳେ ଦୁଃଖ ଆମମାନଙ୍କୁ ଗ୍ରାସ କରେ, ସେତେବେଳେ ବୁଝିବାକୁ ହେବ, ଏହା **'ଆସକ୍ତିର ପ୍ରତିକ୍ରିୟା ମାତ୍ର।'**

ଅତଃପର ଭାବପ୍ରବଣ ବା ପ୍ରେମିକ ଲୋକମାନଙ୍କ ପାଇଁ ଭକ୍ତିଯୋଗ । ଭଗବାନଙ୍କୁ ଭକ୍ତି ଭଲ ପାଇବାକୁ ଚାହେଁ । ସେ ଧର୍ମର ଅଙ୍ଗରୂପେ ନାନା କ୍ରିୟାକଳାପ ଏବଂ ପୁଷ୍ପ, ଗନ୍ଧ, ସୁରମ୍ୟ ମନ୍ଦିର, ମୂର୍ତ୍ତି ପ୍ରଭୃତି ନାନାବିଧ ଦ୍ରବ୍ୟ ଉପରେ ନିର୍ଭର କରେ ଏବଂ ସାଧନାରେ ସେଗୁଡ଼ିକୁ ପ୍ରୟୋଗ କରେ । ଆପଣମାନେ କଅଣ କହିବାକୁ ଚାହାନ୍ତି ଯେ ସେମାନେ ଭୁଲ କରନ୍ତି ? ମୁଁ ଆପଣମାନଙ୍କୁ ଗୋଟିଏ ସତ୍ୟ କଥା କହିବାକୁ ଚାହେଁ । ତାହା ଆପଣମାନେ, ବିଶେଷତଃ ଏହି ଦେଶରେ, ମନେ ରଖିବା ଉଚିତ । ଯେଉଁସବୁ ଧର୍ମ-ସଂପ୍ରଦାୟ ଅନୁଷ୍ଠାନ ଓ ପୌରାଣିକ-ତତ୍ତ୍ୱ-ସମ୍ପଦରେ ସମୃଦ୍ଧ, ସେହିମାନଙ୍କ ଭିତରେ ହିଁ ଜଗତର ଶ୍ରେଷ୍ଠ ଆଧ୍ୟାତ୍ମିକଶକ୍ତିସମ୍ପନ୍ନ ମହାପୁରୁଷଗଣ ଜନ୍ମଗ୍ରହଣ କରିଛନ୍ତି । ଏବଂ ଯେଉଁସବୁ ସଂପ୍ରଦାୟ କୌଣସି ପ୍ରତୀକ ବା ଅନୁଷ୍ଠାନ-ବିଶେଷର ସହାୟତା ବ୍ୟତୀତ ଈଶ୍ୱରପ୍ରାପ୍ତି ଲାଗି ଚେଷ୍ଟା କରିଛନ୍ତି, ସେମାନେ ଧର୍ମର ଯାହା କିଛି ସୁନ୍ଦର ଓ ମହାନ୍ ସେସମସ୍ତକୁ ନିର୍ମମଭାବେ ପଦଦଳିତ କରିଛନ୍ତି । ଖୁବ୍ ଭଲକରି ଦେଖିଲେ ବୁଝାପଡ଼ିବ ଯେ, ସେମାନଙ୍କର ସେହି ଧର୍ମ କେବଳ ଗୋଟାଏ ଉନ୍ମତ୍ତତା ଏବଂ ଅତ୍ୟନ୍ତ ଶୁଷ୍କ । ଏହି ଜଗତର ଇତିହାସ ତାର ଜ୍ୱଳନ୍ତ ସାକ୍ଷ୍ୟ ପ୍ରଦାନ କରିଥାଏ । ସୁତରାଂ ଏହିସବୁ ଅନୁଷ୍ଠାନ ଓ ପୁରାଣାଦିକୁ ନିନ୍ଦା କର ନାହିଁ । ଯେଉଁ ଲୋକମାନେ ଏହିସବୁ ନେଇ ରହିବାକୁ ଚାହାନ୍ତି—ସେମାନେ ଏସବୁ ନେଇ ରହନ୍ତୁ । ତୁମେମାନେ ଅଯଥା ବିଦ୍ରୂପର ହସ ହସି କୁହ ନାହିଁ ଯେ, "ସେମାନେ ମୂର୍ଖ, ଏହିସବୁ ନେଇ ସେମାନେ ଥାଆନ୍ତୁ ।" ଏହା କେବେ ଠିକ୍ ନୁହେଁ । ମୁଁ ଜୀବନରେ ଯେଉଁସବୁ ଆଧ୍ୟାତ୍ମିକ ଶକ୍ତିସମ୍ପନ୍ନ ଶ୍ରେଷ୍ଠ ମହାପୁରୁଷମାନଙ୍କୁ ଦର୍ଶନ କରିଛି, ସେମାନେ ସମସ୍ତେ ଏହିସବୁ ଅନୁଷ୍ଠାନ-ପାଳନ ମଧ୍ୟ ଦେଇ ଅଗ୍ରସର ହୋଇଛନ୍ତି । ମୁଁ ନିଜକୁ ସେମାନଙ୍କ ପଦତଳେ ବସିବାର ଯୋଗ୍ୟ ବୋଲି ମନେ କରିନାହିଁ, ତେବେ କିପରି ମୁଁ ସେମାନଙ୍କୁ ସମାଲୋଚନା କରିପାରିବି ? ଏହି ସମୁଦାୟ ଭାବ ମନୁଷ୍ୟମନରେ କିଭଳି କାର୍ଯ୍ୟ କରେ ଏବଂ ସେମାନଙ୍କ ଭିତରୁ କେଉଁଟି ମୋର ଗ୍ରାହ୍ୟ, କେଉଁଟି ମୋର ତ୍ୟାଜ୍ୟ, ସେକଥା ମୁଁ ବା କିପରି ଜାଣିବି ? ଆମେ ଉଚିତ ଅନୁଚିତ ବିଚାର ନ କରି ପୃଥିବୀର ସମସ୍ତ ଜିନିଷର ସମାଲୋଚନା କରିଥାଉ । ଲୋକେ ଏହିସବୁ ସୁନ୍ଦର ସୁନ୍ଦର ଉଦ୍ଦୀପନାପୂର୍ଣ୍ଣ ପୁରାଣମାନ ଯେତେ ଇଚ୍ଛା ଗ୍ରହଣ କରନ୍ତୁ । କାରଣ ଆପଣମାନଙ୍କର ସର୍ବଦା ମନେ ରଖିବା ଉଚିତ ଯେ, ଭାବପ୍ରବଣ ଲୋକମାନେ ସତ୍ୟର କେତେଗୁଡ଼ିଏ ନୀରସ ସଂଜ୍ଞା ମାତ୍ର ନେଇ ରହିବାକୁ ଆଦୌ ପସନ୍ଦ କରନ୍ତି ନାହିଁ । ଭଗବାନ ସେମାନଙ୍କ ନିକଟରେ 'ଧରିଛୁଆଁ'ର ବସ୍ତୁ । ସେ ହେଉଛନ୍ତି ଏକମାତ୍ର ସତ୍ୟ ବସ୍ତୁ । ସେମାନେ ଭଗବାନଙ୍କୁ ଅନୁଭବ କରନ୍ତି—ତାଙ୍କର କଥା ଶୁଣନ୍ତି—ତାଙ୍କୁ ଦେଖନ୍ତି ଆଉ ଭଲ ପାଆନ୍ତି । ସେମାନେ ସେମାନଙ୍କର ଭଗବାନଙ୍କୁ ଲାଭ କରନ୍ତୁ । ତୁମେସବୁ ଯୁକ୍ତିବାଦୀମାନେ ଭକ୍ତମାନଙ୍କ ଦୃଷ୍ଟିରେ ସେହିଭଳି ନିର୍ବୋଧ—ଯେପରି କୌଣସି ବ୍ୟକ୍ତି ଗୋଟିଏ ସୁନ୍ଦର ମୂର୍ତ୍ତି ଦେଖିଲେ ତାକୁ ଚୂର୍ଣ୍ଣୀଭୂତ କରି ବୁଝିବାକୁ ଚାହେଁ, ଏହା କେଉଁ ପଦାର୍ଥରେ ନିର୍ମିତ ? 'ଭକ୍ତିଯୋଗ' ସେମାନଙ୍କୁ ସମସ୍ତ ଗୂଢ଼ ଅଭିସନ୍ଧି ଛାଡ଼ି

ପ୍ରେମ କରିବାକୁ ଶିକ୍ଷା ଦିଏ; ଲୋକୈଷଣା, ପୁତ୍ରୈଷଣା, ବିତ୍ତୈଷଣା କିମ୍ବା ଅନ୍ୟ କୌଣସି କାମନାର ପୂରଣ ପାଇଁ ନୁହେଁ; ବରଂ ମଙ୍ଗଳମୟଙ୍କୁ ମଙ୍ଗଳମୟରୂପେ ଏବଂ ଭଗବାନଙ୍କୁ ଭଗବାନ ରୂପେ ପ୍ରେମ କରିବାକୁ ଶିକ୍ଷା ଦିଏ । ପ୍ରେମ ହିଁ ପ୍ରେମର ଶ୍ରେଷ୍ଠ ପ୍ରତିଦାନ ଏବଂ ଭଗବାନ ହିଁ ସେହି ପ୍ରେମସ୍ୱରୂପ । ଏହା ହିଁ ଭକ୍ତିଯୋଗର ଶିକ୍ଷା । ଭକ୍ତିଯୋଗ ସେମାନଙ୍କୁ ଭଗବାନ ସୃଷ୍ଟିକର୍ତ୍ତା, ସର୍ବବ୍ୟାପୀ, ସର୍ବଜ୍ଞ, ସର୍ବଶକ୍ତିମାନ୍, ଶାସ୍ତା ଏବଂ ପିତା ଓ ମାତା ବୋଲି ତାଙ୍କ ପ୍ରତି ହୃଦୟର ସମସ୍ତ ଭକ୍ତିଶ୍ରଦ୍ଧା ଅର୍ପଣ କରିବାକୁ ଶିକ୍ଷା ଦିଏ । ମନୁଷ୍ୟ ତାଙ୍କ ସମ୍ବନ୍ଧରେ ଯେଉଁ ସର୍ବଶ୍ରେଷ୍ଠ ଭାଷା ପ୍ରୟୋଗ କରିପାରେ— ଅଥବା ମନୁଷ୍ୟ ତାଙ୍କ ସମ୍ବନ୍ଧରେ ଯେଉଁ ସର୍ବୋଚ୍ଚ ଧାରଣା କରିପାରେ—ତାହା ହେଉଛି, ସେ ପ୍ରେମର ଈଶ୍ୱର । "ଯେଉଁଠାରେ କୌଣସି ପ୍ରକାର ପ୍ରେମ ରହିଛି—ସେ (ଭଗବାନ) ସେଠାରେ ବିଦ୍ୟମାନ ।" ଯେଉଁଠାରେ ଏତେଟିକିଏ ପ୍ରେମ, ତାହା ହେଉଛି ସେହି, ଈଶ୍ୱର ସେହିଠାରେ ବିରାଜମାନ । ସ୍ୱାମୀ ଯେତେବେଳେ ସ୍ତ୍ରୀକୁ ଚୁମ୍ବନ ଦିଅନ୍ତି, ସେ ଚୁମ୍ବନରେ ସେ ହିଁ ବିଦ୍ୟମାନ । ମାତା ଯେତେବେଳେ ଶିଶୁକୁ ଚୁମ୍ବନ ଦିଅନ୍ତି, ସେଠାରେ ମଧ୍ୟ ସେ ବିଦ୍ୟମାନ । ବନ୍ଧୁମାନଙ୍କ କରମର୍ଦ୍ଦନରେ ସେହି ପ୍ରଭୁ ହିଁ ପ୍ରେମମୟ ଭଗବାନ ରୂପେ ବିରାଜମାନ । ଯେତେବେଳେ କୌଣସି ମହାପୁରୁଷ ମାନବଜାତିକୁ ପ୍ରେମ କରି ସେମାନଙ୍କର କଲ୍ୟାଣ କରିବାକୁ ଇଚ୍ଛା କରନ୍ତି, ସେତେବେଳେ ପ୍ରଭୁ ହିଁ ତାଙ୍କର ଅଶେଷ ପ୍ରେମଭଣ୍ଡାରରୁ ମୁକ୍ତହସ୍ତରେ ପ୍ରେମ ବିତରଣ କରିଥାଆନ୍ତି । ଯେଉଁଠାରେ ହୃଦୟର ବିକାଶ ହୁଏ, ସେହିଠାରେ ତାଙ୍କର ପ୍ରକାଶ ହୋଇଥାଏ । 'ଭକ୍ତିଯୋଗ' ଏହିସବୁ କଥା ହିଁ ଶିକ୍ଷା ଦିଏ ।

ସର୍ବଶେଷରେ ଆମେ ଜ୍ଞାନଯୋଗୀଙ୍କ କଥା ଆଲୋଚନା କରିବା । ସେ ଦାର୍ଶନିକ ଓ ଚିନ୍ତାଶୀଳ । ସେ ଏହି ଦୃଶ୍ୟ ଜଗତର ଆରପାରିକୁ ଯିବାକୁ ଚାହାଁନ୍ତି । ସେ ଏହି ସଂସାରର ତୁଚ୍ଛ ଜିନିଷ ନେଇ ସନ୍ତୁଷ୍ଟ ରହିବାର ଲୋକ ନୁହନ୍ତି । ସେ ଆମର ପାନାହାରାଦି ପ୍ରାତ୍ୟହିକ କାର୍ଯ୍ୟାବଳୀର ଊର୍ଦ୍ଧ୍ୱକୁ ଯିବାକୁ ଚାହାଁନ୍ତି । ସହସ୍ର ସହସ୍ର ପୁସ୍ତକ ମଧ୍ୟ ତାଙ୍କୁ ଶାନ୍ତି ଦେଇପାରେ ନାହିଁ । ଏପରିକି ସମୁଦାୟ ଜଡ଼ବିଜ୍ଞାନ ମଧ୍ୟ ତାଙ୍କୁ ପରିତୃପ୍ତ କରିପାରେ ନାହିଁ । କାରଣ ଜଡ଼ବିଜ୍ଞାନ ଖୁବ୍ ବେଶୀ ହେଲେ, ଏହି କ୍ଷୁଦ୍ର ପୃଥିବୀଟିକୁ ତାଙ୍କର ଜ୍ଞାନଗୋଚରକୁ ମାତ୍ର ଆଣିପାରେ । ଏପରି ଆଉ କଅଣ ଅଛି, ଯାହା ତାଙ୍କର ସନ୍ତୋଷବିଧାନ କରିପାରିବ ? କୋଟି କୋଟି ସୌରଜଗତ ତାଙ୍କୁ ସନ୍ତୁଷ୍ଟ କରିପାରେ ନାହିଁ । ତାଙ୍କ ଦୃଷ୍ଟିରେ ଏହିସବୁ ଦୃଶ୍ୟମାନ ଜଗତଗୁଡ଼ିକ ଅସ୍ତିତ୍ୱ-ସମୁଦ୍ରର କେଇଟୋପା ବିନ୍ଦୁ ମାତ୍ର ! ତାଙ୍କର ଆତ୍ମା ଏହିସବୁର ଊର୍ଦ୍ଧ୍ୱକୁ ଯାଇ ସମସ୍ତ ଅସ୍ତିତ୍ୱର ଯାହା କିଛି ସାର, ସେହି ସତ୍ୟକୁ ସ୍ୱରୂପତଃ ପ୍ରତ୍ୟକ୍ଷ କରି ତାହାଙ୍କୁ ଉପଲବ୍ଧି କରି, ତାହାଙ୍କ ସହିତ ତାଦାତ୍ମ୍ୟ ଲାଭ କରି, ସେହି ବିରାଟ ସତ୍ତା ସହିତ ଅଭିନ୍ନ ହୋଇ ସେହିଥିରେ ହିଁ ବୁଡ଼ିଯିବାକୁ ଚାହେଁ । ଏହା ହିଁ ହେଲା ଜ୍ଞାନୀର ଭାବ । ତାଙ୍କ ମତରେ ଭଗବାନଙ୍କୁ ଜଗତର ପିତା, ମାତା, ସୃଷ୍ଟିକର୍ତ୍ତା, ରକ୍ଷାକର୍ତ୍ତା, ପଥପ୍ରଦର୍ଶକ ଇତ୍ୟାଦି କହି ତାଙ୍କର ସ୍ୱରୂପ ପ୍ରକାଶ କରିବା ଆଦୌ ସମ୍ଭବ ନୁହେଁ । ସେ ଭାବନ୍ତି—ଭଗବାନ ତାଙ୍କର ପ୍ରାଣର ପ୍ରାଣ ଓ ତାଙ୍କ ଆତ୍ମାର ଆତ୍ମା ।

ଭଗବାନ ତାଙ୍କ ନିଜର ହିଁ ଆତ୍ମା । ଭଗବାନଙ୍କ ବ୍ୟତୀତ ଆଉ କୌଣସି ବସ୍ତୁ ହିଁ ନାହିଁ । ତାଙ୍କର ଯାବତୀୟ ନଶ୍ବର ଅଂଶ ବିଚାରର ପ୍ରବଳ ଆଘାତରେ ଚୂର୍ଣ୍ଣବିଚୂର୍ଣ୍ଣ ହୋଇ ଉଡ଼ିଯାଏ । ଅବଶେଷରେ ଯାହା ସତ୍ୟରୂପେ ରହେ, ତାହା ହିଁ ସ୍ୱୟଂ ପରମାତ୍ମା ।

> "ଦ୍ୱା ସୁପର୍ଣ୍ଣା ସଯୁଜା ସଖାୟା ସମାନଂ ବୃକ୍ଷଂ ପରିଷସ୍ୱଜାତେ
> ତୟୋରନ୍ୟଃ ପିପ୍ପଳଂ ସ୍ୱାଦ୍ୱତ୍ତ୍ୟନଶ୍ନନ୍ନନ୍ୟୋଽଭିଚାକଶୀତି ।
> ସମାନେ ବୃକ୍ଷେ ପୁରୁଷୋ ନିମଗ୍ନୋଽନୀଶୟା ଶୋଚତି ମୁହ୍ୟମାନଃ
> ଜୁଷ୍ଟଂ ଯଦା ପଶ୍ୟତ୍ୟନ୍ୟମୀଶମସ୍ୟ ମହିମାନମିତି ବୀତଶୋକଃ ।
> ଯଦା ପଶ୍ୟଃ ପଶ୍ୟତେ ରୁକ୍ମବର୍ଣ୍ଣଂ କର୍ତ୍ତାରମୀଶଂ ପୁରୁଷଂ ବ୍ରହ୍ମଯୋନିମ୍
> ତଦା ବିଦ୍ୱାନ୍ ପୁଣ୍ୟପାପେ ବିଧୂୟ ନିରଞ୍ଜନଃ ପରମଂ ସାମ୍ୟମୁପୈତି ।"*

ଗୋଟିଏ ଗଛରେ ଦୁଇଟି ପକ୍ଷୀ ରହିଛନ୍ତି । ଗୋଟିଏ ଉପରେ ଆଉ ଗୋଟିଏ ତଳେ । ଉପରର ପକ୍ଷୀଟି ସ୍ଥିର, ନିର୍ବାକ୍, ମହାନ୍; ନିଜର ମହିମାରେ ନିଜେ ବିଭୋର । ତଳ ଡାଳର ପକ୍ଷୀଟି କେତେବେଳେ ସୁମିଷ୍ଟ, କେତେବେଳେ ବା ତିକ୍ତ ଫଳ ଖାଉଅଛି । ଗୋଟିଏ ଡାଳରୁ ଆଉ ଗୋଟିଏ ଡାଳକୁ ଡେଇଁ ଯାଉଛି ଏବଂ ପର୍ଯ୍ୟାୟକ୍ରମେ ନିଜକୁ ସୁଖୀ ଆଉ ଦୁଃଖୀ ବୋଧ କରୁଛି । କିଛିକ୍ଷଣ ପରେ ତଳ ପକ୍ଷୀଟି ଗୋଟିଏ ଅତ୍ୟନ୍ତ ପିତାଫଳ ଖାଇଦେଲା । ସଙ୍ଗେ ସଙ୍ଗେ ନିଜକୁ ଧିକ୍କାର କରି ଉପର ଆଡ଼କୁ ଚାହିଁଲା । ତା' ଆଖି ପଡ଼ିଲା ଉପର ପକ୍ଷୀଟି ଉପରେ—ସେହି ଅପୂର୍ବ ସୁନେଲି ରଙ୍ଗର ପରଥିବା ପକ୍ଷୀଟି । ସେ ମିଷ୍ଟ ବା ତିକ୍ତ କୌଣସି ଫଳ ଖାଏ ନାହିଁ ଏବଂ ନିଜକୁ ସୁଖୀ ବା ଦୁଃଖୀ କିଛି ମନେକରେ ନାହିଁ । ପରନ୍ତୁ ପ୍ରଶାନ୍ତ ମନରେ ନିଜ ଭିତରେ ନିଜେ ମଗ୍ନକରି ଥାଏ । ନିଜର ଆତ୍ମା ଛଡ଼ା ଆଉ କିଛି ଦେଖିପାରେ ନାହିଁ । ତଳର ପକ୍ଷୀଟି ଏହିଭଳି ଅବସ୍ଥା ଲାଭ କରିବା ଲାଗି ବ୍ୟଗ୍ର ହୋଇ ଉଠିଲା । କିନ୍ତୁ ଖୁବ୍ ଶୀଘ୍ର ଏହା ଭୁଲିଯାଇ ପୁନଶ୍ଚ ଫଳ ଖାଇବାକୁ ଆରମ୍ଭ କଲା । କ୍ଷଣକାଳ ପରେ ସେ ପୁନଶ୍ଚ ଆଉ ଗୋଟିଏ ଅତି ପିତାଫଳ ଖାଇଦେଲା । ସେଥିରେ ତା' ମନରେ ଅତିଶୟ ଦୁଃଖ ହେଲା ଏବଂ ସେ ପୁନର୍ବାର ଉପର ଆଡ଼କୁ ଚାହିଁଲା ଏବଂ ଉପରର ପକ୍ଷୀ ପାଖକୁ ଯିବାକୁ ଚେଷ୍ଟା କଲା । ପୁନଶ୍ଚ ସେ ଏକଥା ଭୁଲିଗଲା ଏବଂ କିଛିକ୍ଷଣ ପରେ ପୁନର୍ବାର ଉପର ଆଡ଼କୁ ଚାହିଁଲା । ବାରମ୍ବାର ଏହିଭଳି କରି କରି ସେ ଅବଶେଷରେ ସୁନ୍ଦର ପକ୍ଷୀଟିର ଖୁବ୍ ନିକଟକୁ ଆସି ପହଞ୍ଚିଲା ଏବଂ ଅବାକ୍ ହୋଇ ଦେଖିଲା ଯେ, ଅନ୍ୟ ପକ୍ଷୀଟିର ପକ୍ଷ ଦେହରୁ ଜ୍ୟୋତିର ଛଟା ଆସି ତାର ନିଜ ଦେହର ଚତୁର୍ଦ୍ଦିଗରେ ବିଚ୍ଛୁରିତ ହୋଇଛି । ସେ ଗୋଟିଏ ପରିବର୍ତ୍ତନ ଅନୁଭବ କଲା—ଯେପରିକି ସେ ମିଳେଇ ଯାଉଛି ! ସେ ଆହୁରି ନିକଟକୁ ଆସିଲା । ଦେଖିଲା ଯେ ତାର ଚାରିଦିଗରେ ଯାହା କିଛି ଥିଲା, ସବୁ ଅଦୃଶ୍ୟ ହୋଇଯାଇଛି—ଅନ୍ତର୍ହିତ ହୋଇଯାଇଛି । ଅବଶେଷରେ ସେ ଏହି ଅଦ୍ଭୁତ ପରିବର୍ତ୍ତନର ଅର୍ଥ ବୁଝିଲା । ତଳର ପକ୍ଷୀଟି ସତେ କି ଉପର ପକ୍ଷୀଟିର ସ୍ଥୂଳରୂପରେ ପ୍ରତୀୟମାନ ଛାୟା ମାତ୍ର—ପ୍ରତିବିମ୍ବ ମାତ୍ର ଥିଲା । ତା'ର ମନେ ହେଲା—

* ମୁଣ୍ଡକ ଉପନିଷଦ୍—୩।୧।୧-୩, ଶ୍ୱେତାଶ୍ୱତର ଉପ., ୪।୬-୭ ।

ସେ ନିଜେ କଗ୍‌ବର ସ୍ୱରୂପତଃ ସେହି ଉପରର ପକ୍ଷୀ ହିଁ ଥିଲ । ତଳର ଗ୍ଲେଟ ପକ୍ଷୀଟିର ଏହି ମିଷ୍ଟ ଓ ତିକ୍ତ ଫଳ ଖାଇବା ଏବଂ ବାରମ୍ବାର ସୁଖଦୁଃଖ ବୋଧ କରିବା—ଏସବୁ ହିଁ ମିଥ୍ୟା, ଏସବୁ ହିଁ ସ୍ୱପ୍ନ ମାତ୍ର । ସେହି ପ୍ରଶାନ୍ତ, ନିର୍ବାକ, ମହିମାମୟ ଶୋକଦୁଃଖାତୀତ ଉପରର ପକ୍ଷୀଟି ହିଁ ସର୍ବଦା ବିଦ୍ୟମାନ ଥିଲ । ଉପରର ପକ୍ଷୀଟି ଈଶ୍ୱର, ପରମାତ୍ମା, ଜଗତର ପ୍ରଭୁ ଏବଂ ନିମ୍ନର ପକ୍ଷୀଟି ଜୀବାତ୍ମା—ଏହି ଜଗତର ସୁଖଦୁଃଖରୂପକ ମିଷ୍ଟ ଓ ତିକ୍ତ ଫଳଗୁଡ଼ିକର ଭୋକ୍ତା । ମଝେ ମଝେ ଜୀବାତ୍ମା ଉପରେ ପ୍ରବଳ ଆଘାତ ଆସେ । ସେ କିଛି କ୍ଷଣ ପାଇଁ ଫଳଭୋଗ ବନ୍ଦ କରି ସେହି ଅଜ୍ଞାତ ଈଶ୍ୱରଙ୍କ ଆଡ଼କୁ ଅଗ୍ରସର ହୁଏ ଏବଂ ତାହାର ହୃଦୟରେ ସହସା ଜ୍ଞାନ-ଜ୍ୟୋତିର ପ୍ରକାଶ ହୁଏ । ସେ ସେତେବେଳେ ମନେ କରେ—ଏହି ଜଗତ ମିଥ୍ୟା, ଦୃଶ୍ୟଜାଲ ମାତ୍ର । କିନ୍ତୁ ପୁନଶ୍ଚ ଇନ୍ଦ୍ରିୟଗଣ ତାକୁ ବହିର୍ଜଗତକୁ ଟାଣିଆଣନ୍ତି—ଓହ୍ଲାଇ ଆଣନ୍ତି ଏବଂ ସେ ମଧ୍ୟ ପୂର୍ବବତ୍ ଏହି ଜଗତର ଭଲମନ୍ଦ ଫଳ ଭୋଗ କରିଥାଏ । ପୁନଶ୍ଚ ସେ ଆହୁରି ଅତି କଠୋର ଆଘାତ ପ୍ରାପ୍ତ ହୁଏ ଏବଂ ପୁନଶ୍ଚ ତାର ହୃଦୟଦ୍ୱାର ଉନ୍ମୁକ୍ତ ହୋଇ ଦିବ୍ୟଜ୍ଞାନାଲୋକ ପ୍ରବେଶ କରେ । ଏହି ଭାବରେ ଧୀରେ ଧୀରେ ସେ ଭଗବାନଙ୍କ ଆଡ଼କୁ ଅଗ୍ରସର ହୁଏ ଏବଂ ସେ ଯେତିକି ଯେତିକି ତାଙ୍କର ନିକଟବର୍ତ୍ତୀ ହେଉଥାଏ, ସେତିକି ସେତିକି ସେ ଦେଖିବାକୁ ପାଏ ଯେ, ତାର କାଞ୍ଚା 'ମୁଁ' ସ୍ୱତଃ ହିଁ ଲୀନ ହୋଇଯାଉଛି । ଯେତେବେଳେ ସେ ଈଶ୍ୱରଙ୍କର ଖୁବ୍ ନିକଟରେ ଆସି ପହଞ୍ଚେ, ସେତେବେଳେ ଦେଖିବାକୁ ପାଏ ଯେ, ସେ ନିଜେ ହିଁ ସେହି ପରମାତ୍ମା ଏବଂ ଏତିକି ଉପଲବ୍ଧି କରୁ କରୁ ସେ କହିଉଠେ—"ଯାହାଙ୍କୁ ମୁଁ ତୁମମାନଙ୍କ ନିକଟରେ ଜଗତର ଜୀବନ ଏବଂ ଅଣୁପରମାଣୁରେ ଓ ଚନ୍ଦ୍ରସୂର୍ଯ୍ୟଙ୍କଠାରେ ବିଦ୍ୟମାନ ବୋଲି ବର୍ଣ୍ଣନା କରିଅଛି, ସେ ହେଉଛନ୍ତି ଆମମାନଙ୍କର ଏହି ଜୀବନର ଅବଲମ୍ବନ—ଆମମାନଙ୍କ ଆତ୍ମାର ଆତ୍ମା ।" କେବଳ ସେତିକି ନୁହେଁ—'ତୁମେ ହିଁ ସେହି'—'ତତ୍ତ୍ୱମସି' ।

'ଜ୍ଞାନଯୋଗ' ଆମମାନଙ୍କୁ ଏହା ହିଁ ଶିକ୍ଷା ଦିଏ । ଏହା ମନୁଷ୍ୟକୁ କହେ—ତୁମେ ସ୍ୱରୂପତଃ ପରମାତ୍ମା । ଏହା ମନୁଷ୍ୟକୁ ପ୍ରାଣୀଜଗତ ମଧ୍ୟରେ ଯଥାର୍ଥ ଏକତ୍ୱ ଦେଖାଇ ଦିଏ । ଆମର ପ୍ରତ୍ୟେକଙ୍କ ଭିତର ଦେଇ ସ୍ୱୟଂ ପ୍ରଭୁ ହିଁ ଏହି ଜଗତରେ ପ୍ରକାଶ ପାଇ-ଅଛନ୍ତି । ଅତି ସାମାନ୍ୟ ପଦଦଳିତ କୀଟଠାରୁ ଆରମ୍ଭ କରି ଯେଉଁମାନଙ୍କୁ ଆମେ ବିସ୍ମୟର ସହିତ ହୃଦୟର ଭକ୍ତିଶ୍ରଦ୍ଧା ଅର୍ପଣ କରୁ, ସେହିସବୁ ଶ୍ରେଷ୍ଠ ଜୀବ ପର୍ଯ୍ୟନ୍ତ ସମସ୍ତେ ହିଁ ସେହି ଏକ ପରମାତ୍ମାଙ୍କର ପ୍ରକାଶ ମାତ୍ର ।

ଶେଷ କଥା ହେଉଛି, ଏହିସବୁ ବିଭିନ୍ନ ଯୋଗ ଆମକୁ କାର୍ଯ୍ୟରେ ପରିଣତ କରିବାକୁ ହେବ । କେବଳ ସେମାନଙ୍କ ସମ୍ବନ୍ଧରେ କଳ୍ପନା ଜଳ୍ପନା କଲେ ଚାଲିବ ନାହିଁ । "ଶ୍ରୋତବ୍ୟୋ ମନ୍ତବ୍ୟୋ ନିଦଧ୍ୟାସିତବ୍ୟଃ"—ପ୍ରଥମେ ଏଗୁଡ଼ିକ ସମ୍ବନ୍ଧରେ ଶୁଣିବାକୁ ହେବ; ପରେ ଶୁଣିଥିବା ବିଷୟଗୁଡ଼ିକୁ ଚିନ୍ତା କରିବାକୁ ହେବ । ଆମମାନଙ୍କୁ ସେଗୁଡ଼ିକୁ ବେଶ୍ ବିଚାର କରି ବୁଝିବାକୁ ହେବ ଯେପରିକି ଆମ ମନରେ ସେଗୁଡ଼ିକର ଗୋଟିଏ ଛାପ

ପଡ଼ିବ । ଅତଃପର ଯେପର୍ଯ୍ୟନ୍ତ ଆମର ସମଗ୍ର ଜୀବନଟି ତଦ୍‌ଭାବଭାବିତ ହୋଇ ନ ଉଠିଛି —ସେପର୍ଯ୍ୟନ୍ତ ଆମକୁ ସେଗୁଡ଼ିକୁ ଧ୍ୟାନ ଏବଂ ଉପଲବ୍ଧି କରିବାକୁ ହେବ । ସେତେବେଳେ ଆଉ ଧର୍ମ ଜିନିଷଟି କେବଳ କେତେଗୁଡ଼ିଏ ଧାରଣା ବା ମତବାଦର ସମଷ୍ଟି ଅଥବା ବୁଦ୍ଧିର ବ୍ୟାପାର ମାତ୍ର ହୋଇ ରହିବ ନାହିଁ । ସେତେବେଳେ ଏହା ଆମର ଜୀବନ ସହିତ ଏକ ହୋଇଯିବ । ବୁଦ୍ଧିର ଆହ୍ୱାନକୁ ଉତ୍ତର ଦେଇ ଆଜି ଆମେ ଅନେକ ମୂର୍ଖତାକୁ ସତ୍ୟ ବୋଲି ଗ୍ରହଣ କରି ଆସନ୍ତା କାଲି ହୁଏତ ପୁନର୍ବାର ସମ୍ପୂର୍ଣ୍ଣ ମତ ପରିବର୍ତ୍ତନ କରିପାରୁ । କିନ୍ତୁ ଯଥାର୍ଥ ଧର୍ମ କେବେ ହେଲେ ପରିବର୍ତ୍ତିତ ହୁଏ ନାହିଁ । ଧର୍ମ ହେଉଛି—ଅନୁଭୂତିର ବସ୍ତୁ । ଏହା କେବଳ ମୁଖର କଥାମାତ୍ର ନୁହେଁ । କେବଳ କେତେକ ମତବାଦ ବା ଯୁକ୍ତିମୂଳକ କଳ୍ପନା ମାତ୍ର ନୁହେଁ—ତାହା ଯେତେ ସୁନ୍ଦର ମନୋହର କଳ୍ପନା ହେଉ ପଛେ ! ଧର୍ମ ହେଉଛି ଜୀବନରେ ପରିଣତ କରିବାର ବିଷୟ । ଶୁଣିବାର ବା ମାନି ନେବାର ଜିନିଷ ନୁହେଁ । ସମସ୍ତ ମନପ୍ରାଣ ବିଶ୍ୱାସର ବସ୍ତୁ ସହିତ ଏକ ହୋଇଯିବ—ତାହା ହିଁ ଧର୍ମ ।

## ବିଶ୍ୱଜନୀନ ଧର୍ମଲାଭର ଉପାୟ

[ ୨୮-୧-୧୯୦୦ ଖ୍ରୀଷ୍ଟାବ୍ଦରେ କାଲିଫର୍ଣ୍ଣିଆର ପ୍ୟାସାଡେନାସ୍ଥିତ
ଇଉନିଭର୍ସାଲିଷ୍ଟ ଚର୍ଚ୍ଚରେ ପ୍ରଦତ୍ତ ବକ୍ତୃତା ]

ଯେଉଁ ଅନୁସନ୍ଧାନ ଫଳରେ ଆମେମାନେ ଭଗବାନଙ୍କ ନିକଟରୁ ଆଲୋକ ପାଇଥାଉ, ମନୁଷ୍ୟ-ହୃଦୟ ନିକଟରେ ତାହା ଅପେକ୍ଷା ପ୍ରିୟତର ଅନୁସନ୍ଧାନ ଆଉ କିଛି ନାହିଁ । କି ଅତୀତ କି ବର୍ତ୍ତମାନ ସବୁକାଳରେ 'ଆତ୍ମା' 'ଈଶ୍ୱର' ଓ 'ଅଦୃଷ୍ଟ' ସମ୍ବନ୍ଧୀୟ ଆଲୋଚନାରେ ମନୁଷ୍ୟ ଯେତିକି ଶକ୍ତି ନିୟୋଗ କରିଅଛି, ଅନ୍ୟ କୌଣସି ଆଲୋଚନାରେ ସେତେ କରି ନାହିଁ । ଆମେ ଆମର ଦୈନିକ କାର୍ଯ୍ୟକ୍ରମ, ଆମର ଉଚ୍ଚାକାଙ୍‌କ୍ଷା, ଆମର କର୍ତ୍ତବ୍ୟ ପ୍ରଭୃତି ନେଇ ଯେତେ ବୁଡ଼ିକରି ଥାଉ ପଛକେ, ଆମର ସର୍ବାପେକ୍ଷା କଠୋର ଜୀବନସଂଗ୍ରାମ ଭିତରେ ବି କେବେକେବେ ଏପରି ଗୋଟିଏ ବିରାମ-ମୁହୂର୍ତ୍ତ ଆସି ଉପସ୍ଥିତ ହୁଏ, ଯେତେବେଳେ ମନ ହଠାତ୍ ବନ୍ଦ ହୋଇଯାଏ ଏବଂ ଏହି ଜଗତ୍‌ପ୍ରପଞ୍ଚର ଆରପାରିରେ କଅଣ ଅଛି, ତାହା ଜାଣିବା ଲାଗି ଉତ୍ସୁକତା ବଢ଼ିଯାଏ । କେବେ କେବେ ଆମର ମନ ଅତୀନ୍ଦ୍ରିୟ ରାଜ୍ୟର କିଛି କିଛି ଆଭାସ ପାଇଥାଏ ଏବଂ ତା' ଫଳରେ ତାହାର ପ୍ରାପ୍ତି ଲାଗି ଯଥାସାଧ୍ୟ ଚେଷ୍ଟା କରିଥାଏ । ସବୁକାଳରେ, ସବୁଦେଶରେ ଏହିଭଳି ଘଟିଅଛି । ମନୁଷ୍ୟ ଅତୀନ୍ଦ୍ରିୟ ବସ୍ତୁର ଦର୍ଶନ ଲାଭ କରିବାକୁ ଚାହିଁଛି, ନିଜକୁ ବିସ୍ତାର କରିବାକୁ ଚାହିଁଛି—ଏବଂ ଯାହା କିଛି ଆମ ନିକଟରେ ଉନ୍ନତି ବା କ୍ରମାଭିବ୍ୟକ୍ତି ନାମରେ ପରିଚିତ, ତାହା ସବୁକାଳରେ ମାନବଜୀବନର ଚରମ ଗତି । ଏହା ଈଶ୍ୱର-

ନୁସନ୍ଧାନର ତୁଳାଦଣ୍ଡରେ ହିଁ ପରୀକ୍ଷିତ ହୋଇଅଛି ।

ଆମର ସାମାଜିକ ଜୀବନ-ସଂଗ୍ରାମ ଯେପରି ବିଭିନ୍ନ ଜାତିର ବିବିଧ ପ୍ରକାର ସାମାଜିକ ପ୍ରତିଷ୍ଠାନ ମଧ୍ୟରେ ଆତ୍ମପ୍ରକାଶ କରେ, ସେହିପରି ମାନବର ଆଧ୍ୟାତ୍ମିକ ଜୀବନ-ସଂଗ୍ରାମ ମଧ୍ୟ ବିଭିନ୍ନ ଧର୍ମ ଅବଲମ୍ବନରେ ଆତ୍ମପ୍ରକାଶ କରେ । ବିଭିନ୍ନ ସାମାଜିକ ପ୍ରତିଷ୍ଠାନ ଯେପରି ସର୍ବଦା ହିଁ ପରସ୍ପର ସହିତ କଳହ ଓ ସଂଗ୍ରାମ କରନ୍ତି, ସେହିପରି ଏହି ଧର୍ମସଂପ୍ରଦାୟ-ଗୁଡ଼ିକ ମଧ୍ୟ ସର୍ବଦା ପରସ୍ପର ସହିତ କଳହ ଓ ସଂଗ୍ରାମରେ ରତ ଥାଆନ୍ତି । କୌଣସି ଗୋଟିଏ ବିଶେଷ ସମାଜ-ସଂସ୍ଥାର ଅନ୍ତର୍ଭୁକ୍ତ ଲୋକମାନେ ଦାବୀ କରନ୍ତି ଯେ, ଏକମାତ୍ର ସେହିମାନଙ୍କର ହିଁ ବଞ୍ଚି ରହିବାର ଅଧିକାର ଅଛି ଏବଂ ସେମାନେ ଯେତେଦୂର ପାରନ୍ତି ଦୁର୍ବଳଙ୍କ ଉପରେ ଅତ୍ୟାଚାର କରି ସେହି ଅଧିକାର ବଜାୟ ରଖିବାକୁ ଚାହାଁନ୍ତି । ଆମେ ଜାଣୁ, ଏହିଭଳି ଗୋଟିଏ ଭୀଷଣ ସଂଗ୍ରାମ ବର୍ତ୍ତମାନ କାଳରେ ଦକ୍ଷିଣ ଆଫ୍ରିକାରେ ଚାଲିଅଛି । ସେହିପରି ପ୍ରତ୍ୟେକ ଧର୍ମ-ସଂପ୍ରଦାୟ ମଧ୍ୟ ଏହିପରି ଦାବୀ କରି ଆସିଛି ଯେ, କେବଳ ତା'ର ହିଁ ବଞ୍ଚି ରହିବାର ଅଧିକାର ରହିଛି । ତେଣୁ ଆମେ ଦେଖିବାକୁ ପାଉ— ଯଦିଓ ଧର୍ମ ମାନବ-ଜୀବନରେ ଯେତିକି ମଙ୍ଗଳ ବିଧାନ କରିଛି, ଅନ୍ୟ କେହି ସେତିକି ପାରିନାହାନ୍ତି; ତଥାପି ଏହି ଧର୍ମ ପୁଣି ଯେତିକି ବିଭୀଷିକା ସୃଷ୍ଟି କରିଛି, ଆଉ କେହି ସେତେଦୂର କରି ନାହାନ୍ତି । ଧର୍ମ ହିଁ ସର୍ବାପେକ୍ଷା ଅଧିକ ଶାନ୍ତି ଓ ପ୍ରେମ ବିସ୍ତାର କରିଅଛି । ପୁଣି ଧର୍ମ ହିଁ ସର୍ବାପେକ୍ଷା ଭୀଷଣ ଘୃଣା ଓ ବିଦ୍ୱେଷ ସୃଷ୍ଟି କରିଅଛି । ଧର୍ମ ହିଁ ମନୁଷ୍ୟ ଭିତରେ ସର୍ବାପେକ୍ଷା ଅଧିକ ସ୍ପଷ୍ଟରୂପେ ଭ୍ରାତୃଭାବ ପ୍ରତିଷ୍ଠା କରିଅଛି । ପୁଣି ସେହି ଧର୍ମ ହିଁ ମନୁଷ୍ୟ ମନୁଷ୍ୟ ଭିତରେ ସର୍ବାପେକ୍ଷା ମର୍ମାନ୍ତକ ଶତ୍ରୁତା ବା ବିଦ୍ୱେଷ ସୃଷ୍ଟି କରିଅଛି । ଧର୍ମ ହିଁ ମନୁଷ୍ୟ ପାଇଁ—ଏପରିକି ପଶୁମାନଙ୍କ ପାଇଁ ସର୍ବାପେକ୍ଷା ଅଧିକସଂଖ୍ୟକ ଦାତବ୍ୟ ଚିକିତ୍ସାଳୟ ପ୍ରଭୃତି ସ୍ଥାପନ କରିଅଛି । ପୁଣି ସେହି ଧର୍ମ ହିଁ ପୃଥିବୀରେ ସର୍ବାପେକ୍ଷା ଅଧିକ ରକ୍ତବନ୍ୟା ପ୍ରବାହିତ କରିଅଛି । ପୁଣି, ଆମେମାନେ ଏହା ମଧ୍ୟ ଜାଣୁ ଯେ, ସବୁ ସମୟରେ ହିଁ ଫଲ୍‌ଗୁଧାରା ସଦୃଶ ଆଉ ଗୋଟିଏ ଚିନ୍ତାସ୍ରୋତ ମଧ୍ୟ ଚାଲିଛି । ସବୁ ସମୟରେ ହିଁ ବିଭିନ୍ନ ଧର୍ମର ତୁଳନାମୂଳକ ଆଲୋଚନାରେ ରତ ଏଭଳି ଅନେକ ତତ୍ତ୍ୱାନ୍ୱେଷୀ ବା ଦାର୍ଶନିକ ରହିଛନ୍ତି, ଯେଉଁମାନେ ଏହିସବୁ ପରସ୍ପର ବିବଦମାନ ଓ ବିରୁଦ୍ଧମତାବଲମ୍ବୀ ଧର୍ମ-ସଂପ୍ରଦାୟ ଭିତରେ ଶାନ୍ତି ସ୍ଥାପନ କରିବା ନିମିତ୍ତ ସର୍ବଦା ଚେଷ୍ଟା କରି ଆସିଛନ୍ତି ଏବଂ ବର୍ତ୍ତମାନ ମଧ୍ୟ କରୁଛନ୍ତି । କୌଣସି କୌଣସି ଦେଶରେ ଏହି ଚେଷ୍ଟା ସଫଳ ହୋଇଅଛି; କିନ୍ତୁ ସମଗ୍ର ପୃଥିବୀ ଦୃଷ୍ଟିରୁ ଦେଖିବାକୁ ଗଲେ ଏହା ବ୍ୟର୍ଥ ହୋଇଅଛି ।

ଅତି ପ୍ରାଚୀନ କାଳରୁ ଏପରି କେତେକ ଧର୍ମ ପ୍ରଚଳିତ ଅଛି—ଯେଉଁଗୁଡ଼ିକ ଭିତରେ ଏହି ଭାବଟି ଓତଃପ୍ରୋତ ଭାବରେ ବିଦ୍ୟମାନ, ସେସମସ୍ତ ସଂପ୍ରଦାୟ ବଞ୍ଚିରହନ୍ତୁ । କାରଣ ପ୍ରତ୍ୟେକ ସଂପ୍ରଦାୟର କୌଣସି ଗୋଟିଏ ନିଜସ୍ୱ ତାତ୍ପର୍ଯ୍ୟ, କୌଣସି ଗୋଟିଏ ମହାନ୍ ଭାବ ରହିଅଛି । କାର୍ଯ୍ୟତଃ ଏହା ଜଗତର କଲ୍ୟାଣ ନିମିତ୍ତ ଆବଶ୍ୟକ ଏବଂ ଏହାକୁ ପୋଷଣ କରିବା ଉଚିତ । ବର୍ତ୍ତମାନ କାଳରେ ମଧ୍ୟ ଏହି ଧାରଣାଟି ଅଧିପତ୍ୟ ଲାଭ

କରିଅଛୁ ଏବଂ ଏହାକୁ କାର୍ଯ୍ୟରେ ପରିଣତ କରିବା ପାଇଁ ମଧ୍ୟେ ମଧ୍ୟେ ଚେଷ୍ଟା ମଧ୍ୟ ଚାଲିଛି । ଅବଶ୍ୟ ଏହି ସବୁ ଚେଷ୍ଟା ସବୁ ସମୟରେ ଆଶାନୁରୂପ ଫଳପ୍ରସୂ ହୁଏ ନାହିଁ । ଅଥବା ଏହି ସବୁ ଚେଷ୍ଟାର ଯଥାଯୋଗ୍ୟତା ସବୁବେଳେ ଠିକ୍ ରହେ ନାହିଁ । କେବଳ ସେତିକି ନୁହେଁ, ଅତ୍ୟନ୍ତ କ୍ଷୋଭର କଥା ଯେ, ଆମେ ଅନେକ ସମୟରେ ଦୃଶ୍ୟମାନ ଭାବରେ ଆହୁରି ବେଶୀ ଝଗଡ଼ା ବଢ଼ାଇ ଚାଲିଥାଉ ।

ବର୍ତ୍ତମାନ ଧର୍ମୀୟ ମତବାଦର ଅବଲମ୍ବନରେ ଆଲୋଚନା ନ କରି ବିଷୟଟି ସମ୍ବନ୍ଧରେ ସାଧାରଣ ବିଚାରବୁଦ୍ଧି ଅବଲମ୍ବନ କଲେ ପ୍ରଥମେ ଦେଖିବାକୁ ପାଇବା ଯେ, ପୃଥିବୀର ଯାବତୀୟ ପ୍ରଧାନ ପ୍ରଧାନ ଧର୍ମରେ ଗୋଟିଏ ପ୍ରବଳ ଜୀବନୀଶକ୍ତି ରହିଅଛି । କେହି କେହି ହୁଏତ କହିପାରନ୍ତି ଯେ, ସେମାନେ ଏ ବିଷୟରେ କିଛି ଜାଣନ୍ତି ନାହିଁ; କିନ୍ତୁ ଅଜ୍ଞତାର କଥା ଉତ୍ଥାପନ କରି କେହି ନିସ୍ତାର ପାଇପାରିବେ ନାହିଁ । ଯଦି କୌଣସି ବ୍ୟକ୍ତି କହନ୍ତି ଯେ ବହିର୍ଜଗତରେ କ'ଣ ହେଉଛି ନ ହେଉଛି, ମୁଁ କିଛି ଜାଣେ ନାହିଁ । ଅତଏବ ବହିର୍ଜଗତରେ ଯାହାସବୁ ଘଟୁଛି, ସମସ୍ତ ହିଁ ମିଥ୍ୟା—ତା'ହେଲେ ତାକୁ କ୍ଷମା ଦିଆଯାଇପାରିବ ନାହିଁ । ସୁତରାଂ ଆପଣମାନଙ୍କ ମଧ୍ୟରୁ ଯେଉଁମାନେ ସମଗ୍ର ଜଗତରେ ଅଧ୍ୟାତ୍ମ ଚିନ୍ତାର ଗତିବିଧି ଲକ୍ଷ୍ୟ କରନ୍ତି, ସେମାନେ ସମ୍ପୂର୍ଣ୍ଣ ଅବଗତ ଯେ, ପୃଥିବୀର ଗୋଟିଏ ହେଲେ ମୁଖ୍ୟ ଧର୍ମ କେବେହେଲେ ମ୍ଳାନ ହୁଏ ନାହିଁ । କେବଳ ସେତିକି ନୁହେଁ, ଏମାନେ ସମସ୍ତେ ଉନ୍ନତି ଦିଗରେ ଅଗ୍ରସର ହେଉଛନ୍ତି । ଖ୍ରୀଷ୍ଟିଆନଙ୍କ ସଂଖ୍ୟା ବୃଦ୍ଧିପାଉଛି, ମୁସଲମାନମାନଙ୍କ ସଂଖ୍ୟା ବୃଦ୍ଧି ପାଉଛି—ହିନ୍ଦୁମାନେ ବିସ୍ତାର ଲାଭ କରୁଛନ୍ତି ଏବଂ ଇହୁଦୀମାନେ ମଧ୍ୟ ସଂଖ୍ୟାରେ ଅଧିକ ହୋଇଛନ୍ତି ଏବଂ ସଂଖ୍ୟାରେ ସେମାନେ ଦ୍ରୁତ ବର୍ଦ୍ଧିତ ହୋଇ ସମଗ୍ର ପୃଥିବୀରେ ମାଡ଼ି ଚାଲିଛନ୍ତି ଏବଂ ଇହୁଦୀ ଧର୍ମର ଗଣ୍ଡି ଦିନକୁ ଦିନ ବଢ଼ି ଚାଲିଛି ।

ଗୋଟିଏ ମାତ୍ର ଧର୍ମ—ଗୋଟିଏ ପ୍ରଧାନ ପ୍ରାଚୀନ ଧର୍ମ କ୍ରମଶଃ କ୍ଷୟ ପାଇ ଯାଉଛି । ତାହା ପ୍ରାଚୀନ ପାରସିକମାନଙ୍କ ଧର୍ମ—ଜରଥୁଷ୍ଟ୍ର ଧର୍ମ । ମୁସଲମାନମାନଙ୍କ ପାରସ୍ୟ ବିଜୟ ସମୟରେ ପ୍ରାୟ ଏକଲକ୍ଷ ପାରସ୍ୟବାସୀ ଭାରତବର୍ଷକୁ ଆସି ଆଶ୍ରୟ ଗ୍ରହଣ କରିଥିଲେ ଏବଂ ସେମାନଙ୍କ ମଧ୍ୟରୁ କେହି କେହି ପ୍ରାଚୀନ ପାରସ୍ୟ ଦେଶରେ ହିଁ ରହି ଯାଇଥିଲେ । ଯେଉଁମାନେ ପାରସ୍ୟରେ ଥିଲେ, ସେମାନେ କ୍ରମାଗତ ମୁସଲମାନମାନଙ୍କର ନିର୍ଯ୍ୟାତନା ଫଳରେ କ୍ଷୟ ପାଇ ପାଇ ବର୍ତ୍ତମାନ ଖୁବ୍ ବେଶୀ ହେଲେ ଦଶହଜାର ସଂଖ୍ୟାକୁ କମି ଆସିଛନ୍ତି । ଭାରତବର୍ଷରେ ସେମାନଙ୍କର ସଂଖ୍ୟା ପ୍ରାୟ ଅଶୀହଜାର, କିନ୍ତୁ ସେମାନେ ଆଉ ବଢ଼ୁନାହାନ୍ତି । ଅବଶ୍ୟ ମୂଳରୁ ସେମାନଙ୍କର ଗୋଟିଏ ଅସୁବିଧା ରହିଆସିଛି । ସେମାନେ ଆଉ କାହାକୁ ନିଜର ଧର୍ମଭୁକ୍ତ କରନ୍ତି ନାହିଁ । ପୁଣି ଭାରତର ଏହି ମୁଷ୍ଟିମେୟ ସମାଜରେ ବି ସ୍ୱଗୋଷ୍ଠୀୟ ନିକଟ ସମ୍ପର୍କୀୟଙ୍କ ଭିତରେ ବିବାହ ଭଳି ଘୋରତର ଅନିଷ୍ଟକର ପ୍ରଥା ପ୍ରଚଳିତ ଥିବାରୁ ସେମାନେ ବୃଦ୍ଧି ପାଉନାହାନ୍ତି । ଏହି ଗୋଟିଏ ମାତ୍ର ଧର୍ମ ବ୍ୟତୀତ, ଅନ୍ୟ ସବୁ ପ୍ରଧାନ ପ୍ରଧାନ ଧର୍ମ ଏବେ ମଧ୍ୟ ଜୀବିତ ରହିପାରିଛନ୍ତି ଏବଂ

ବିସ୍ତାର ଓ ପୁଷ୍ଟିଲାଭ କରିଛନ୍ତି । ପୁନଶ୍ଚ ଆମ୍ଭମାନଙ୍କର ମନେ ରଖିବା ଉଚିତ ଯେ, ପୃଥିବୀର ସମସ୍ତ ପ୍ରଧାନ ଧର୍ମ ହିଁ ଅତି ପୁରାତନ । ସେମାନଙ୍କ ଭିତରୁ ଗୋଟିଏ ହେଲେ ବର୍ତ୍ତମାନ ଯୁଗରେ ଗଠିତ ହୋଇନାହିଁ ଏବଂ ପୃଥିବୀର ପ୍ରତ୍ୟେକ ଧର୍ମ ହିଁ ଗଙ୍ଗା ଓ ଇଉଫ୍ରେଟିସ ନଦୀ ଦୁଇଟିର ମଧ୍ୟବର୍ତ୍ତୀ ଭୂଖଣ୍ଡରେ ଉତ୍ପତ୍ତିଲାଭ କରିଛି । ଗୋଟିଏ ହେଲେ ପ୍ରଧାନଧର୍ମ ୟୁରୋପ ବା ଆମେରିକାରେ ଉଦ୍‌ଭୂତ ହୋଇ ନାହିଁ, ଗୋଟିଏ ବି ନୁହେଁ । ପ୍ରତ୍ୟେକ ଧର୍ମ ହିଁ ଏସିଆ ମହାଦେଶସମ୍ଭୂତ ଏବଂ ତାହା ମଧ୍ୟ ପୁଣି ପୃଥିବୀର ଏହି ଅଂଶ ଟିକିକ ମଧ୍ୟରେ । "ଯୋଗ୍ୟତମ ବ୍ୟକ୍ତି ବା ବସ୍ତୁ ହିଁ ବଞ୍ଚି ରହିବ"—ଆଧୁନିକ ବୈଜ୍ଞାନିକ-ମାନଙ୍କର ଏହି ମତ ଯଦି ସତ୍ୟ ହୁଏ, ତା'ହେଲେ ଏହିସବୁ ଧର୍ମ ଯେ ବର୍ତ୍ତମାନ ମଧ୍ୟ ବଞ୍ଚି ରହିଛନ୍ତି—ଏଥିରୁ ଏହି ପ୍ରମାଣ ମିଳୁଛି ଯେ, ବର୍ତ୍ତମାନ ମଧ୍ୟ ସେହି ସବୁ ଧର୍ମ କେତେ ଲୋକଙ୍କ ପକ୍ଷରେ ଉପଯୋଗୀ । ସେଗୁଡ଼ିକ ଯେ କାହିଁକି ବଞ୍ଚି ରହିବେ, ତାର କାରଣ ଅଛି । ସେହିସବୁ ଧର୍ମ ବହୁ ଲୋକଙ୍କର ଉପକାର କରୁଅଛି । ମୁସଲମାନମାନଙ୍କୁ ଦେଖ । ସେମାନେ ଦକ୍ଷିଣ ଏସିଆର କେତେକ ସ୍ଥାନରେ କିପରି ବିସ୍ତାରଲାଭ କଲେଣି ଏବଂ ଆଫ୍ରିକା ମହାଦେଶରେ ସେମାନେ ନିଆଁ ଭଳି ବ୍ୟାପି ଯାଉଛନ୍ତି । ବୌଦ୍ଧମାନେ ବି ମଧ୍ୟ-ଏସିଆରେ ବରାବର ବିସ୍ତାରଲାଭ କରୁଛନ୍ତି । ଇହୁଦୀମାନଙ୍କ ଭଳି ହିନ୍ଦୁମାନେ ଅନ୍ୟକୁ ନିଜ ଧର୍ମରେ ଗ୍ରହଣ କରନ୍ତି ନାହିଁ, ତଥାପି ଧୀରେ ଧୀରେ ଅନ୍ୟାନ୍ୟ ଜାତି ହିନ୍ଦୁଧର୍ମ ଭିତରକୁ ଆସି ଯାଉଛନ୍ତି ଏବଂ ହିନ୍ଦୁମାନଙ୍କର ଆଚାର ବ୍ୟବହାର ଗ୍ରହଣ କରି ସେମାନଙ୍କର ସମଶ୍ରେଣୀ-ଭୁକ୍ତ ହୋଇଯାଉଛନ୍ତି । ଖ୍ରୀଷ୍ଟଧର୍ମ ମଧ୍ୟ ଯେପରି ବିସ୍ତୃତି ଲାଭ କରୁଛି, ତାହା ଆପଣମାନେ ସମସ୍ତେ ଜାଣନ୍ତି । ତେବେ ମୋର ଯାହା ମନେହୁଏ, ଚେଷ୍ଟାର ଅନୁରୂପ ଫଳ ହେଉ-ନାହିଁ । ଖ୍ରୀଷ୍ଟାନମାନଙ୍କର ପ୍ରଚାରକାର୍ଯ୍ୟରେ ଗୋଟିଏ ଭୟଙ୍କର ଦୋଷ ରହିଛି ଏବଂ ପାଶ୍ଚାତ୍ୟ ପ୍ରତିଷ୍ଠାନମାତ୍ରେ ଏହି ଦୋଷରେ ଦୁଷ୍ଟ । ଶତକଡ଼ା ନବେଭାଗ ଶକ୍ତି ସେମାନଙ୍କର ପ୍ରତିଷ୍ଠାନ-ଯନ୍ତ୍ରର ପରିଚାଳନାରେ ହିଁ ବ୍ୟୟିତ ହୋଇଯାଏ । କାରଣ ପ୍ରତିଷ୍ଠାନସୁଲଭ ବିଧିବ୍ୟବସ୍ଥା ଖୁବ୍ ବେଶୀ । ପ୍ରଚାର-କାର୍ଯ୍ୟଟି ପ୍ରାଚ୍ୟ ଲୋକମାନେ ହିଁ ବରାବର କରି ଆସିଛନ୍ତି । ପାଶ୍ଚାତ୍ୟ ଲୋକମାନେ ସଂଘବଦ୍ଧଭାବରେ କାର୍ଯ୍ୟ, ସାମାଜିକ ଅନୁଷ୍ଠାନ, ଯୁଦ୍ଧସଜ୍ଜା, ରାଜ୍ୟଶାସନ ପ୍ରଭୃତି ଅତି ସୁନ୍ଦରଭାବେ କରିପାରିବେ; କିନ୍ତୁ ଧର୍ମପ୍ରଚାରକ୍ଷେତ୍ରରେ ସେମାନେ ପ୍ରାଚ୍ୟ ବ୍ୟକ୍ତିମାନଙ୍କ ନିକଟରେ ଠିଆ ହୋଇପାରିବେ ନାହିଁ । କାରଣ, ଏହି ପ୍ରଚାରକାର୍ଯ୍ୟଟି ଚିରଦିନ ଏହି ପ୍ରାଚ୍ୟ ଲୋକମାନେ ହିଁ କରୁଥିଲେ । ତେଣୁ ସେମାନେ ଏଥିରେ ଖୁବ୍ ଅଭିଜ୍ଞ ଏବଂ ସେମାନେ ଅତିରିକ୍ତ ବିଧିବ୍ୟବସ୍ଥାର ମଧ୍ୟ ପକ୍ଷପାତୀ ନୁହନ୍ତି ।

ଅତଏବ ମନୁଷ୍ୟଜାତିର ବର୍ତ୍ତମାନ ଇତିହାସରେ ଏହା ଗୋଟିଏ ପ୍ରତ୍ୟକ୍ଷ ଘଟଣା ଯେ ପୂର୍ବୋକ୍ତ ସମସ୍ତ ପ୍ରଧାନ ପ୍ରଧାନ ଧର୍ମ ହିଁ ବିଦ୍ୟମାନ ରହିଛି ଏବଂ ବିସ୍ତାର ଓ ପୁଷ୍ଟିଲାଭ କରୁଛି । ଏହି ଘଟଣାର ନିଶ୍ଚୟ ଗୋଟିଏ ଅର୍ଥ ଅଛି ଏବଂ ସେହି ସର୍ବଜ୍ଞ ପରମକାରୁଣିକ ସୃଷ୍ଟିକର୍ତ୍ତାଙ୍କର ଯଦି ଏହା ହିଁ ଇଚ୍ଛା ହୁଏ ଯେ, ଏମାନଙ୍କର ଗୋଟିଏ ମାତ୍ର ଧର୍ମ ଥାଉ ଏବଂ ଅବଶିଷ୍ଟ ଧର୍ମଗୁଡ଼ିକ ବିନଷ୍ଟ ହେଉ, ତା'ହେଲେ ଏକଥା ବହୁ ପୂର୍ବରୁ ଘଟି ଯାଆନ୍ତାଣି ।

ଯଦି ଏହିସବୁ ଧର୍ମ ମଧ୍ୟରେ ଗୋଟିଏ ମାତ୍ର ଧର୍ମ ହିଁ ସତ୍ୟ ଏବଂ ଅନ୍ୟଗୁଡ଼ିକ ମିଥ୍ୟା ହୁଅନ୍ତା, ତା'ହେଲେ ଏହି ସତ୍ୟ ଧର୍ମ ହିଁ ଏତେଦିନ ମଧ୍ୟରେ ସମଗ୍ର ପୃଥିବୀରେ ପରିବ୍ୟାପ୍ତ ହୋଇ ଯାଇଥାଆନ୍ତା । ବସ୍ତୁତଃ ତାହା ହୋଇ ନାହିଁ । ଏଥିରୁ କୌଣସିଟି ସମସ୍ତ ପୃଥିବୀ ଅଧିକାର କରିନାହିଁ । ସବୁ ଧର୍ମ ହିଁ ଗୋଟିଏ ସମୟରେ ଉନ୍ନତିର ଦିଗକୁ ଓ ଅନ୍ୟ ସମୟରେ ଅବନତିର ଦିଗକୁ ଯାଇଥାଏ । ଆଉ ମଧ୍ୟ ଭାବି ଦେଖ, ତୁମମାନଙ୍କ ଦେଶରେ ଛଅକୋଟି ଲୋକ ଅଛନ୍ତି । କିନ୍ତୁ ତା' ଭିତରୁ ପ୍ରାୟ ଦୁଇକୋଟି ଦଶଲକ୍ଷ ଲୋକ କୌଣସି ନା କୌଣସି ପ୍ରକାର ଧର୍ମର ଅନ୍ତର୍ଭୁକ୍ତ । ତେଣୁ ସବୁ ସମୟରେ ଯେ ଧର୍ମର ଉନ୍ନତି ହୋଇଥାଏ, ତା' ନୁହେଁ । ସମ୍ଭବତଃ ସବୁ ଦେଶରେ ଗଣନା କଲେ ଦେଖିବାକୁ ପାଇବା, ଧର୍ମଗୁଡ଼ିକର କେବେ କେବେ ଉନ୍ନତି, ପୁଣି କେବେ କେବେ ଅବନତି ହୋଇଛି । ସମ୍ପ୍ରଦାୟର ସଂଖ୍ୟା ମଧ୍ୟ ସର୍ବଦା ବଢ଼ି ଚାଲିଛି । ଧର୍ମସମ୍ପ୍ରଦାୟବିଶେଷର ଏହି ଦାବୀ ଯଦି ସତ୍ୟ ହୁଅନ୍ତା ଯେ, ସମୁଦାୟ ସତ୍ୟ ତାଙ୍କର ଧର୍ମ ଭିତରେ ହିଁ ନିହିତ ଏବଂ ଈଶ୍ୱର ସେହି ନିଖିଳ ସତ୍ୟ କୌଣସି ଗ୍ରନ୍ଥବିଶେଷରେ ନିବଦ୍ଧ କରି ସେହିମାନଙ୍କୁ ହିଁ ଦେଇଅଛନ୍ତି—ତେବେ ଜଗତରେ ଏତେ ସମ୍ପ୍ରଦାୟ ହେଲା କିପରି ? ପଚାଶଟି ବର୍ଷ ଯାଉ ନ ଯାଉଣୁ ଗୋଟିଏ ପୁସ୍ତକକୁ ଭିତ୍ତି କରି କୋଡ଼ିଏଟି ନୂତନ ସମ୍ପ୍ରଦାୟ ଗଢ଼ିଉଠେ । ଈଶ୍ୱର ଯଦି କେତୋଟି ପୁସ୍ତକରେ ସମଗ୍ର ସତ୍ୟକୁ ନିବଦ୍ଧ କରିଥାନ୍ତେ, ତା'ହେଲେ ଝଗଡ଼ା କରିବା ଲାଗି ସେ କେବେହେଲେ ସେଗୁଡ଼ିକୁ ଆମକୁ ଦେଇ ନ ଥାନ୍ତେ, କିନ୍ତୁ ଘଟଣା ଆସି ସେହିଠାରେ ପହଞ୍ଚିଛି । କାହିଁକି ଏପରି ହୁଏ ? ଯଦି ଈଶ୍ୱର ସତକୁ ସତ ଧର୍ମବିଷୟକ ସମସ୍ତ ସତ୍ୟ ଗୋଟିଏ ପୁସ୍ତକରେ ନିବଦ୍ଧ କରି ଆମକୁ ଦିଅନ୍ତି, ତାହାହେଲେ ବି କୌଣସି ଉଦ୍ଦେଶ୍ୟ ସିଦ୍ଧ ହୁଅନ୍ତା ନାହିଁ । କାରଣ କେହି ବି ସେ ଗ୍ରନ୍ଥ ବୁଝିପାରନ୍ତେ ନାହିଁ । ଦୃଷ୍ଟାନ୍ତ ସ୍ୱରୂପ ବାଇବେଲ୍ ଓ ଖ୍ରୀଷ୍ଟାନମାନଙ୍କ ମଧ୍ୟରେ ପ୍ରଚଳିତ ଯାବତୀୟ ସମ୍ପ୍ରଦାୟର କଥା ଧରିଯାଉ । ପ୍ରତ୍ୟେକ ସମ୍ପ୍ରଦାୟ ଏହି ଗୋଟିଏ ଗ୍ରନ୍ଥ ତାଙ୍କ ନିଜ ମତାନୁଯାୟୀ ବ୍ୟାଖ୍ୟା କରି କହନ୍ତି ଯେ, କେବଳ ସେହିମାନେ ହିଁ ଏହାକୁ ଠିକ୍ ବୁଝିଛନ୍ତି ଓ ଆଉ ଅନ୍ୟ ସମସ୍ତେ ଭ୍ରାନ୍ତ । ପ୍ରତ୍ୟେକ ଧର୍ମ ସମ୍ବନ୍ଧରେ ହିଁ ଏହି ଗୋଟିଏ କଥା । ମୁସଲମାନ ଓ ବୌଦ୍ଧମାନଙ୍କ ମଧ୍ୟରେ ଅନେକ ସମ୍ପ୍ରଦାୟ ଅଛନ୍ତି । ହିନ୍ଦୁମାନଙ୍କ ମଧ୍ୟରେ ତ ଶତ ଶତ ! ବର୍ତ୍ତମାନ ମୁଁ ଯେଉଁସବୁ ଘଟଣା ଆପଣମାନଙ୍କ ନିକଟରେ ଉପସ୍ଥାପିତ କରୁଅଛି, ଏଗୁଡ଼ିକର ଉଦ୍ଦେଶ୍ୟ ହେଲା—ମୁଁ ଦେଖାଇବାକୁ ଚାହୁଁଛି ଯେ, ଧର୍ମ ବିଷୟରେ ଯେତେଥର ସମୁଦାୟ ମନୁଷ୍ୟ-ଜାତିକୁ ଗୋଟିଏ ପ୍ରକାର ଚିନ୍ତା ଭିତର ଦେଇ ନେଇଯିବାର ଚେଷ୍ଟା କରାଯାଇଛି, ସେତେଥର ଏହା ବିଫଳ ହୋଇଅଛି ଏବଂ ଭବିଷ୍ୟତରେ ମଧ୍ୟ ତାହା ହିଁ ହେବ । ଏପରି କି ବର୍ତ୍ତମାନ କାଳରେ ମଧ୍ୟ ନୂତନ ପ୍ରବର୍ତ୍ତକମାନେ ଦେଖିବାକୁ ପାଆନ୍ତି ଯେ, ସେ ତାଙ୍କର ଅନୁବର୍ତ୍ତୀମାନଙ୍କ ନିକଟରୁ କୋଡ଼ିଏ ମାଇଲ ଦୂରକୁ ଯାଉ ନ ଯାଉଣୁ ସେମାନେ କୋଡ଼ିଏଟି ଦଳ ଗଠନ କରି ସାରିଲେଣି । ଆପଣମାନେ ଦେଖନ୍ତୁ, ସବୁ ସମୟରେ ଏହା ହିଁ ଘଟୁଛି । ଏହା ଧ୍ରୁବ ସତ୍ୟ ଯେ, ସବୁ ଲୋକ ଗୋଟିଏ ପ୍ରକାର ଭାବ ଗ୍ରହଣ କରିପାରିବେ

ନାହିଁ ଏବଂ ମୁଁ ଏଥିପାଇଁ ଭଗବାନଙ୍କୁ ଧନ୍ୟବାଦ ଜଣାଉଛି । ମୁଁ କୌଣସି ସମ୍ପ୍ରଦାୟର ବିରୋଧୀ ନୁହେଁ; ବରଂ ନାନା ସମ୍ପ୍ରଦାୟ ରହିଛି ବୋଲି ମୁଁ ଖୁସି ଏବଂ ମୋର ବିଶେଷ ଇଚ୍ଛା, ସେମାନଙ୍କର ସଂଖ୍ୟା ଦିନକୁ ଦିନ ବଢ଼ି ଚାଲୁ । ଏହାର କାରଣ କ'ଣ ? ଏହାର ଏତିକି ମାତ୍ର କାରଣ ହେଲା—ଯଦି ଆପଣ, ମୁଁ ଏବଂ ଏଠାରେ ଉପସ୍ଥିତ ଅନ୍ୟମାନେ ଠିକ୍ ଗୋଟିଏ ପ୍ରକାର ଭାବରାଶି ଚିନ୍ତା କରୁ, ତା'ହେଲେ ଆମର ଆଉ ଚିନ୍ତା କରିବାର ବିଷୟ କିଛି ରହିବ ନାହିଁ । ଦୁଇ ବା ତତୋଽଧିକ ଶକ୍ତିର ସଂଘର୍ଷ ଘଟିଲେ ହିଁ ଗତି ସମ୍ଭବ, ଏହା ସମସ୍ତେ ଜାଣନ୍ତି । ସେହିପରି, ଚିନ୍ତାର ଘାତ-ପ୍ରତିଘାତରୁ ଚିନ୍ତାର ବୈଚିତ୍ର୍ୟ ଭିତରୁ ନୂତନ ଚିନ୍ତାର ଉଦ୍ଭବ ହୁଏ । ବର୍ତ୍ତମାନ, ଆମେ ସମସ୍ତେ ଯଦି ଗୋଟିଏ ପ୍ରକାର ଚିନ୍ତା କରନ୍ତୁ, ତା'ହେଲେ ଆମେମାନେ ଯାଦୁଘରର ସେହି ମିଶରଦେଶୀୟ 'ମମି' (mummies)ରେ ପରିଣତ ହୋଇ, କେବଳ ସେହିମାନଙ୍କ ସଦୃଶ ପରସ୍ପରର ମୁହଁକୁ ଚାହିଁ ରହିଥାନ୍ତୁ; ଏତିକି ଛଡ଼ା ଆଉ କିଛି ହୁଅନ୍ତା ନାହିଁ । ବେଗବତୀ ଜୀବନ୍ତ ନଦୀରେ ହିଁ ଘୂର୍ଣ୍ଣାବର୍ତ୍ତ ଥାଏ । ବଦ୍ଧ ଓ ସ୍ରୋତହୀନ ଜଳରେ ଆବର୍ତ୍ତ ହୁଏ ନାହିଁ । ଯେତେବେଳେ ଧର୍ମଗୁଡ଼ିକ ବିନଷ୍ଟ ହୋଇଯିବ, ସେତେବେଳେ ଆଉ ସମ୍ପ୍ରଦାୟଗୁଡ଼ିକ ମଧ୍ୟ ରହିବ ନାହିଁ । ସେତେବେଳେ ବିରାଜିତ ହେବ ଶ୍ମଶାନର ପୂର୍ଣ୍ଣ ଶାନ୍ତି ଓ ସାମ୍ୟ । କିନ୍ତୁ ଯେତେଦିନ ପର୍ଯ୍ୟନ୍ତ ମନୁଷ୍ୟ ଚିନ୍ତା କରିବ, ସେତେଦିନ ଯାଏ ସମ୍ପ୍ରଦାୟ ମଧ୍ୟ ରହିବ । ବୈଷମ୍ୟ ହିଁ ଜୀବନର ଚିହ୍ନ ଏବଂ ବୈଷମ୍ୟ ରହିବ ହିଁ ରହିବ । ମୁଁ ପ୍ରାର୍ଥନା କରୁଛି ଯେ, ସମ୍ପ୍ରଦାୟ-ଗୁଡ଼ିକର ସଂଖ୍ୟା ବଢ଼ି ବଢ଼ି ଅବଶେଷରେ ଜଗତରେ ଯେତେ ମନୁଷ୍ୟ ଅଛନ୍ତି, ସେତିକି ଯାଏ ସମ୍ପ୍ରଦାୟ ଗଠିତ ହେଉ, ଯେପରିକି, ଧର୍ମରାଜ୍ୟରେ ପ୍ରତ୍ୟେକେ ତାଙ୍କ ନିଜ ପଥରେ ତାଙ୍କ ବ୍ୟକ୍ତିଗତ ଚିନ୍ତା-ପ୍ରଣାଳୀ ଅନୁସାରେ ଚାଲିପାରନ୍ତି ।

କିନ୍ତୁ ଏହି ଧାରା ଚିରକାଳ ଧରି ବିଦ୍ୟମାନ ରହି ଆସିଛି । ଆମେମାନେ ପ୍ରତ୍ୟେକେ ନିଜ ନିଜ ଭାବରେ ଚିନ୍ତା କରୁ । କିନ୍ତୁ ଏହି ସ୍ୱାଭାବିକ ଧାରା ବରାବର ହିଁ ବାଧାପ୍ରାପ୍ତ ହୋଇଛି ଏବଂ ବର୍ତ୍ତମାନ ମଧ୍ୟ ହେଉଛି । ଏଥିପାଇଁ ସାକ୍ଷାତ୍‌ଭାବରେ ତରବାରି ବ୍ୟବହୃତ ନ ହେଲେ ମଧ୍ୟ ଅନ୍ୟ ଉପାୟ ଗ୍ରହଣ କରାଯାଇଥାଏ । ନିଉୟର୍କର ଜଣେ ଶ୍ରେଷ୍ଠ ପ୍ରଚାରକ କ'ଣ କହିଛନ୍ତି ଶୁଣନ୍ତୁ । ସେ ପ୍ରଚାର କରିଛନ୍ତି ଯେ, ଫିଲିପିନ୍‌ମାନଙ୍କୁ ଯୁଦ୍ଧରେ ଜୟ କରିବାକୁ ହେବ । କାରଣ ସେମାନଙ୍କୁ ଖ୍ରୀଷ୍ଟଧର୍ମ ଶିକ୍ଷାଦେବାର ଏହା ହିଁ ଏକମାତ୍ର ଉପାୟ; ସେମାନେ ଏହାପୂର୍ବରୁ କ୍ୟାଥଲିକ୍ ସମ୍ପ୍ରଦାୟଭୁକ୍ତ ହୋଇଛନ୍ତି । କିନ୍ତୁ ଉକ୍ତ ପ୍ରଚାରକ ସେମାନଙ୍କୁ ପ୍ରେସ୍‌ବିଟେରିୟାନ୍ କରିବାକୁ ଚାହାଁନ୍ତି ଏବଂ ଏଥିଲାଗି ସେ ଏହି ରକ୍ତପାତ-ଜନିତ ଘୋର ପାପରାଶି ସ୍ୱଜାତିଙ୍କ ସ୍କନ୍ଧରେ ଚାପି ଦେବା ଲାଗି ଉଦ୍ୟତ ରହିଛନ୍ତି । କି ଭୟଙ୍କର ! ପୁନଶ୍ଚ ଏହି ବ୍ୟକ୍ତି କୁଆଡ଼େ ତାଙ୍କ ଦେଶର ଅନ୍ୟତମ ଶ୍ରେଷ୍ଠ ଧର୍ମ-ପ୍ରଚାରକ ଏବଂ ବିଦ୍ୟାଜ୍ଞାନାଦିରେ ଶୀର୍ଷସ୍ଥାନୀୟ । ଯେତେବେଳେ ଏହିଭଳି ଜଣେ ବ୍ୟକ୍ତି ସମସ୍ତଙ୍କ ସମ୍ମୁଖରେ ଦଣ୍ଡାୟମାନ ହୋଇ ଏହି ପ୍ରକାର କଦର୍ଯ୍ୟ ପ୍ରଳାପବାକ୍ୟ ଉଦ୍‌ଗୀରଣ କରିବାକୁ ଲଜ୍ଜାବୋଧ କରୁନାହାନ୍ତି, ସେତେବେଳେ ଜଗତର ଅବସ୍ଥାଟା ଥରେ ଭାବି ଦେଖନ୍ତୁ !

ବିଶେଷତଃ ଯେତେବେଳେ ତାଙ୍କର ଶ୍ରୋତୃବର୍ଗ ପୁଣି ତାଙ୍କୁ ଉତ୍ସାହ ଦେଇ ଚାଲିଛନ୍ତି, ସେତେବେଳେ ଭାବି ଦେଖନ୍ତୁ, ବର୍ତ୍ତମାନ ଜଗତର ସ୍ୱରୂପଟା କଅଣ । ଏହା ହିଁ କଅଣ ସଭ୍ୟତା ? ଏହା ବ୍ୟାଘ୍ର, ନରଖାଦକ ଓ ଅସଭ୍ୟ ବନ୍ୟଜାତିର ସେହି ଚିରଭ୍ୟସ୍ତ ରକ୍ତ-ପିପାସା ବ୍ୟତୀତ ଆଉ କିଛି ନୁହେଁ, କେବଳ ସେହି ହିଂସ୍ରଭାବ ପୁଣି ଏକ ନୂତନ ନାମ ଓ ନୂତନ ଅବସ୍ଥା ଭିତର ଦେଇ ପ୍ରକାଶିତ ହେଉଅଛି । ଏହାଛଡ଼ା ଏହି ମନୋଭାବ ଓ କାର୍ଯ୍ୟକୁ ଆଉ କ'ଣ କୁହାଯାଇପାରେ ? ବର୍ତ୍ତମାନ ସମୟରେ ଯଦି ଘଟଣା ଏହିଭଳି ହୁଏ, ତେବେ ଭାବି ଦେଖନ୍ତୁ, ଯେତେବେଳେ ପ୍ରତ୍ୟେକ ସମ୍ପ୍ରଦାୟ ଅନ୍ୟ ସମ୍ପ୍ରଦାୟଗୁଡ଼ିକୁ ଖଣ୍ଡ ଖଣ୍ଡ କରି କାଟି ଇତସ୍ତତଃ ଫୋପାଡ଼ି ଦେବାକୁ ପ୍ରାଣପଣେ ଚେଷ୍ଟା କରୁଥିଲା, ସେହି ପ୍ରାଚୀନ କାଳର ଜଗତକୁ ସେତେବେଳେ କି ଭୟଙ୍କର ନରକ-ଯନ୍ତ୍ରଣା ଭିତରେ ଦିନ କାଟିବାକୁ ହେଉ ନ ଥିବ ! ଇତିହାସ ଏସବୁର ସାକ୍ଷ୍ୟ ଦେଇ ଆସିଛି । ଆମ ଭିତରେ ଶାର୍ଦ୍ଦୂଳସଦୃଶ ମନୋବୃତ୍ତି ସୁପ୍ତ ରହିଛି, ମାତ୍ର ଏହି ମନୋବୃତ୍ତି ଏକାବେଳକେ ମରିନାହିଁ; ସୁଯୋଗ ଉପସ୍ଥିତ ହେଲାମାତ୍ରେ, ଏହା ଲମ୍ଫ ମାରେ ଏବଂ ପୂର୍ବଭଳି ନିଜ ନଖ ଓ ବିଷଦନ୍ତ ବ୍ୟବହାର କରେ । ତରବାରି ଅପେକ୍ଷା—ଜଡ଼ ପଦାର୍ଥଦ୍ୱାରା ନିର୍ମିତ ଅସ୍ତ୍ରଶସ୍ତ୍ର ଅପେକ୍ଷା ମଧ୍ୟ ଭୀଷଣତର ଅସ୍ତ୍ରଶସ୍ତ୍ର ରହିଛି । ଯେଉଁମାନେ ଠିକ୍ ଆମ ମତାବଲମ୍ବୀ ନୁହନ୍ତି, ସେମାନଙ୍କ ପ୍ରତି ବର୍ତ୍ତମାନ ମଧ୍ୟ ଆମେ ଅବଜ୍ଞା, ସାମାଜିକ ଘୃଣା ଓ ସମାଜରୁ ବହିଷ୍କରଣ ଭଳି ଭୀଷଣ ମର୍ମଭେଦୀ ଅସ୍ତ୍ରସବୁ ପ୍ରୟୋଗ କରିଥାଉଁ । କିନ୍ତୁ କାହିଁକି ଭଲା ସମସ୍ତେ ଠିକ୍ ମୋରି ଭଳି ଚିନ୍ତା କରିବେ ? ମୁଁ ତ ଏ ପ୍ରକାର ଯୁକ୍ତିର କୌଣସି କାରଣ ଦେଖିପାରୁ ନାହିଁ ! ମୁଁ ଯଦି ବିଚାରଶୀଳ ମନୁଷ୍ୟ ହୋଇଥାଏ, ତା'ହେଲେ ସମସ୍ତେ ଯେ ଠିକ୍ ମୋରି ଭାବରେ ଭାବିତ ନୁହନ୍ତି, ଏଥିରେ ମୋର ଆନନ୍ଦିତ ହେବା ଉଚିତ । ମୁଁ ଗୋଟିଏ ଶ୍ମଶାନ ତୁଲ୍ୟ ଦେଶରେ ବାସ କରିବାକୁ ଚାହେଁ ନାହିଁ । ମୁଁ ମନୁଷ୍ୟ ଭଳି ରହିବାକୁ ଚାହେଁ ଏବଂ ମଣିଷଙ୍କ ଭିତରେ ଚଳିବାକୁ ଚାହେଁ । ଚିନ୍ତାଶୀଳ ବ୍ୟକ୍ତିମାତ୍ରେ ମତଭେଦ ରହିବ । କାରଣ ପାର୍ଥକ୍ୟ ହିଁ ଚିନ୍ତାର ପ୍ରଥମ ଲକ୍ଷଣ । ମୁଁ ଯଦି ଚିନ୍ତାଶୀଳ ହୋଇଥାଏ, ତା'ହେଲେ ମୋର ଅବଶ୍ୟ ଏଭଳି ଚିନ୍ତାଶୀଳ ବ୍ୟକ୍ତିଙ୍କ ମଧ୍ୟରେ ବାସ କରିବା ପାଇଁ ଇଚ୍ଛା ହେବା ଉଚିତ, ଯେଉଁଠି ମତପାର୍ଥକ୍ୟ ଅବଶ୍ୟ ରହିବ ।

ତା'ପରେ ହୁଏତ ପ୍ରଶ୍ନ ଉଠିବ, ଏହିସବୁ ବୈଚିତ୍ର୍ୟ କିଭଳି ସତ୍ୟ ହୋଇପାରେ ? କାରଣ ଏହା ଜଣାଶୁଣା କଥା ଯେ କୌଣସି ବସ୍ତୁ ସତ୍ୟ ହେଲେ, ତାର ବିପରୀତ ବସ୍ତୁଟି ମିଥ୍ୟା ହେବ । ଦୁଇଟି ବିରୁଦ୍ଧ ମତ ଏକ ସମୟରେ କିପରି ସତ୍ୟ ହୋଇପାରେ ? ମୁଁ କିନ୍ତୁ ଏହି ପ୍ରଶ୍ନର ଉତ୍ତର ଦେବି । ଆଚ୍ଛା, ମୁଁ ଆପଣମାନଙ୍କୁ ଜିଜ୍ଞାସା କରୁଛି—ପୃଥିବୀର ଧର୍ମଗୁଡ଼ିକ କଅଣ ବାସ୍ତବିକ ଏକାନ୍ତ ପରସ୍ପରବିରୋଧୀ ? ଯେଉଁସବୁ ବାହ୍ୟ ଆଚାରଗୁଡ଼ିକ ଦ୍ୱାରା ବଡ଼ ବଡ଼ ଚିନ୍ତାସମୂହ ଆବୃତ ଥାଏ, ମୁଁ ସେଗୁଡ଼ିକର କଥା କହୁନାହିଁ । ନାନା ଧର୍ମରେ ଯେଉଁସବୁ ବିଭିନ୍ନ ପ୍ରକାର ମନ୍ଦିର, ଭାଷା, କ୍ରିୟାକାଣ୍ଡ, ଶାସ୍ତ୍ର ପ୍ରଭୃତିର ବ୍ୟବହାର ହୋଇଥାଏ—ମୁଁ ସେଗୁଡ଼ିକ ବିଷୟରେ ମଧ୍ୟ କିଛି କହୁନାହିଁ । ମୁଁ ପ୍ରତ୍ୟେକ ଧର୍ମର

ଆଭ୍ୟନ୍ତରୀଣ ପ୍ରାଣବସ୍ତୁର କଥା ହିଁ କହୁଅଛୁ । ପ୍ରତ୍ୟେକ ଧର୍ମ ପଛରେ ଗୋଟିଏ କରି ସାରବସ୍ତୁ ବା ଆତ୍ମା ରହିଅଛି ଏବଂ ଗୋଟିଏ ଧର୍ମର ଆତ୍ମା ଅନ୍ୟ ଧର୍ମର ଆତ୍ମାଠାରୁ ପୃଥକ୍ ହୋଇପାରେ; କିନ୍ତୁ ତା'ବୋଲି ସେମାନେ କଅଣ ଏକାନ୍ତ ବିରୋଧୀ ? ସେମାନେ ପରସ୍ପରକୁ ଖଣ୍ଡନ କରନ୍ତି ନା ଗୋଟିଏ ଅନ୍ୟଟିର ପୂର୍ଣ୍ଣତା ସମ୍ପାଦନ କରେ ? ଏହା ହିଁ ପ୍ରଶ୍ନ । ମୁଁ ଯେତେବେଳେ ନିତାନ୍ତ ପିଲା ଥିଲି, ସେହିଦିନଠାରୁ ମୁଁ ଏ ପ୍ରଶ୍ନଟିର ଆଲୋଚନା ଆରମ୍ଭ କରିଅଛି ଏବଂ ଜୀବନସାରା ମଧ୍ୟ ଏହି କଥାଟି ଆଲୋଚନା କରି ଆସିଛି । ମୋର ସିଦ୍ଧାନ୍ତ ହୁଏତ ଆପଣମାନଙ୍କର କୌଣସି ଉପକାରରେ ଆସିପାରେ, ଏହା ମନେକରି ମୁଁ ଏକଥା ଆପଣମାନଙ୍କ ଆଗରେ ପ୍ରକାଶ କରୁଅଛି । ମୋର ବିଶ୍ୱାସ, ସେଗୁଡ଼ିକ ପରସ୍ପର-ବିରୋଧୀ ନୁହନ୍ତି, ପରସ୍ପରର ପରିପୂରକ । ପ୍ରତ୍ୟେକ ଧର୍ମ ସତେକି ମହାନ୍ ସାର୍ବଭୌମ ସତ୍ୟର ଗୋଟିଏ ଗୋଟିଏ ଅଂଶ ନେଇ ତାକୁ ହିଁ ବାସ୍ତବ ରୂପ ପ୍ରଦାନ କରିବାକୁ ଏବଂ ଆଦର୍ଶରେ ପରିଣତ କରିବାକୁ ସମସ୍ତ ଶକ୍ତି ନିୟୋଜିତ କରି ଆସିଛି । ସୁତରାଂ ଏହା ମିଳନର କଥା—ବର୍ଜନର ନୁହେଁ—ଏହା ହିଁ ବୁଝିବାକୁ ହେବ । ଗୋଟିଏ ଗୋଟିଏ ମହତ୍ ଭାବ ନେଇ ସମ୍ପ୍ରଦାୟମାନ ଗଢ଼ି ଉଠିଛନ୍ତି । ତେଣୁ ଯଥାର୍ଥ ମନୋଭାବ ହେଲା ଏହି ଆଂଶିକ ଧର୍ମାଦର୍ଶଗୁଡ଼ିକୁ ପରସ୍ପର ସହିତ ସଂଯୁକ୍ତ କରିବା । ଏହି ଭାବରେ ହିଁ ମାନବ ଜାତି ଉନ୍ନତି ଦିଗରେ ଅଗ୍ରସର ହୋଇଥାଏ । ମନୁଷ୍ୟ କେବେ ଭ୍ରମରୁ ସତ୍ୟରେ ଉପନୀତ ହୁଏ ନାହିଁ, ପରନ୍ତୁ ସତ୍ୟରୁ ହିଁ ସତ୍ୟତର ଆଡ଼କୁ ଅଗ୍ରସର ହୋଇଥାଏ, ନିମ୍ନତର ସତ୍ୟରୁ ଉଚ୍ଚତର ସତ୍ୟରେ ହିଁ ଆରୂଢ଼ ହୋଇଥାଏ । କିନ୍ତୁ ଭ୍ରମରୁ ଗତି କରି କେହି ସତ୍ୟରେ ପହଞ୍ଚିପାରେ ନାହିଁ । ପୁତ୍ର ହୁଏତ ପିତା ଅପେକ୍ଷା ସମଧିକ ଗୁଣଶାଳୀ ହୋଇପାରନ୍ତି; କିନ୍ତୁ ତା' ବୋଲି ପିତା ଯେ କିଛି ନୁହେଁ, ଏ କଥା ନୁହେଁ । ପୁତ୍ର ଭିତରେ ପିତା ତ ରହିଛନ୍ତି —ଅଧିକନ୍ତୁ ଆଉ କିଛି ମଧ୍ୟ ରହିଛି । ଆପଣଙ୍କର ବର୍ତ୍ତମାନ ଜ୍ଞାନ ଯଦି ଆପଣଙ୍କର ବାଲ୍ୟାବସ୍ଥାର ଜ୍ଞାନଠାରୁ ଅନେକ ବେଶୀ ହୁଏ, ତାହା ହେଲେ କଅଣ ଆପଣ ବର୍ତ୍ତମାନ ସେହି ବାଲ୍ୟାବସ୍ଥାକୁ ଘୃଣା ଦୃଷ୍ଟିରେ ଦେଖିବେ ? ଆପଣ କ'ଣ ସେହି ଅତୀତ ଅବସ୍ଥା ଆଡ଼କୁ ଚାହିଁ, ତାକୁ ଅକିଞ୍ଚିତକର ବୋଲି ଉଡ଼ାଇ ଦେବେ ? ଏକଥା ବୁଝିବା ଉଚିତ ଯେ, ଆପଙ୍କର ସେହି ବାଲ୍ୟକାଳର ଜ୍ଞାନ ହିଁ ଆଉ କିଛି ଅଭିଜ୍ଞତାଦ୍ୱାରା ପୁଷ୍ଟ ହୋଇ ବର୍ତ୍ତମାନ ଅବସ୍ଥାରେ ପରିଣତ ହୋଇଅଛି ।

ପୁଣି ଏହା ମଧ୍ୟ ସମସ୍ତେ ଜାଣନ୍ତି ଯେ, ଗୋଟିଏ ଜିନିଷକୁ ବିଭିନ୍ନ ଦିଗରୁ ଦେଖି ପ୍ରାୟବିରୁଦ୍ଧ ସିଦ୍ଧାନ୍ତରେ ଉପନୀତ ହେବା ସମ୍ଭବ ହୋଇଥାଏ । କିନ୍ତୁ ପ୍ରତ୍ୟେକ ସିଦ୍ଧାନ୍ତ ଗୋଟିଏ ସତ୍ୟର ଆଭାସ ଦେଇଥାଏ । ମନେକରନ୍ତୁ ଜଣେ ବ୍ୟକ୍ତି ସୂର୍ଯ୍ୟଙ୍କ ଆଡ଼କୁ ଅଗ୍ରସର ହେଉଛନ୍ତି । ସେ ଯେପରି ଅଗ୍ରସର ହେଉଛନ୍ତି, ସେହି ଅନୁସାରେ ବିଭିନ୍ନ ସ୍ଥାନରୁ ସୂର୍ଯ୍ୟଙ୍କର ଗୋଟିଏ ଗୋଟିଏ ଫଟୋଗ୍ରାଫ୍ ନେଉଛନ୍ତି । ଯେତେବେଳେ ସେ ବ୍ୟକ୍ତି ଫେରି ଆସିବେ, ସେତେବେଳେ ସେ ସୂର୍ଯ୍ୟଙ୍କର ଅନେକଗୁଡ଼ିଏ ଫଟୋ ଆଣି ଆମ ସମ୍ମୁଖରେ ରଖିବେ । ଆମେ ସେତେବେଳେ ଦେଖିବା ଯେ କୌଣସି ଦୁଇଟି ଫଟୋ ଗୋଟିଏ

ପ୍ରକାରର ନୁହେଁ । କିନ୍ତୁ ଏକଥା କିଏ ଅସ୍ୱୀକାର କରିବ ଯେ, ଏଗୁଡ଼ିକ ସେହି ଗୋଟିଏ ସୂର୍ଯ୍ୟଙ୍କର ଫଟୋ ବୋଲି ? ତଫାତ୍ ହେଉଛି ଗୋଟିଏ ଗୋଟିଏ ଫଟୋ ସେହି ଏକା ସୂର୍ଯ୍ୟଙ୍କର ବିଭିନ୍ନ ସ୍ଥାନରୁ ଗୃହୀତ ହୋଇଛି । ବିଭିନ୍ନ କୋଣରୁ ଆପଣ ଏହି ଗୀର୍ଜାଟିର ମଧ୍ୟ ଚାରୋଟି ଫଟୋ ନେଇ ଦେଖନ୍ତୁ । ସେଗୁଡ଼ିକ କେତେ ପୃଥକ୍ ଦେଖା ନ ଯିବ ? କିନ୍ତୁ ଆପଣ ଜାଣନ୍ତି ଯେ ସେଗୁଡ଼ିକ ସେହି ଗୋଟିଏ ଗୀର୍ଜାର ପ୍ରତିକୃତି । ଏହି ଭାବରେ ଆମେମାନେ ଗୋଟିଏ ସତ୍ୟକୁ ଏପରି ସବୁ ବିଭିନ୍ନ ଦୃଷ୍ଟିକୋଣରୁ ଦେଖୁଛୁ—ଯାହାକି ଆମମାନଙ୍କର ଜନ୍ମ, ଶିକ୍ଷା, ପାରିପାର୍ଶ୍ୱିକ ଅବସ୍ଥା ପ୍ରଭୃତି ଅନୁସାରେ ଭିନ୍ନ ଭିନ୍ନ ହୋଇଥାଏ । ଆମ୍ଭେ ସତ୍ୟକୁ ହିଁ ଦେଖୁଅଛୁ । ତେବେ ଏହି ସମୁଦାୟ ଅବସ୍ଥାଗୁଡ଼ିକ ଭିତର ଦେଇ ସେହି ସତ୍ୟର ଯେତେଟା ଦର୍ଶନ ପାଇବା ସମ୍ଭବ, ସେତିକି ମାତ୍ର ପାଉଅଛୁ । ତାହାକୁ ଆମର ନିଜ ନିଜ ହୃଦୟର ରଙ୍ଗରେ ରଞ୍ଜିତ କରୁଅଛୁ । ଆମର ନିଜ ନିଜ ବୁଦ୍ଧିଦ୍ୱାରା ବୁଝୁଅଛୁ ଏବଂ ନିଜ ନିଜର ମନଦ୍ୱାରା ଧାରଣା କରୁଅଛୁ । ଆମ ସତ୍ୟର କେବଳ ସେତିକି ମାତ୍ର ହିଁ ବୁଝିପାରୁ—ଯେତିକି ସହିତ ଆମର ସମ୍ବନ୍ଧ ରହିଅଛି ଅଥବା ଆମର ଯେତିକି ମାତ୍ର ଗ୍ରହଣ କରିବାର କ୍ଷମତା ରହିଅଛି । ଏହି ହେତୁ ମନୁଷ୍ୟ ମନୁଷ୍ୟ ଭିତରେ ପ୍ରଭେଦ ହୋଇଥାଏ । ଏପରିକି, କେବେ କେବେ ସମ୍ପୂର୍ଣ୍ଣ ବିରୁଦ୍ଧ ମତର ହିଁ ସୃଷ୍ଟି ହୋଇଥାଏ । ଅଥଚ ଆମେ ସମସ୍ତେ ହିଁ ସେହି ଏକ ସାର୍ବଜନୀନ ସତ୍ୟର ଅନ୍ତର୍ଭୁକ୍ତ ।

ଅତଏବ ଆମର ଧାରଣା ହେଲା—ଭଗବାନଙ୍କ ବିଧାନରେ ଏହିସବୁ ଧର୍ମ ବିବିଧ ଶକ୍ତିରୂପେ ବିକଶିତ ହୋଇ ମନୁଷ୍ୟର କଲ୍ୟାଣସାଧନରେ ନିରତ ରହିଛନ୍ତି । ସେଗୁଡ଼ିକ ଭିତରୁ କେହି ଗୋଟିଏ ହେଲେ ବି ମରିବେ ନାହିଁ । ତା' ଭିତରୁ କାହାକୁ ବିନଷ୍ଟ କରାଯାଇପାରିବ ନାହିଁ । ଯେପରି କୌଣସି ପ୍ରାକୃତିକ ଶକ୍ତିକୁ ବିନଷ୍ଟ କରାଯାଇପାରେ ନାହିଁ—ସେହିପରି ଏହି ଆଧ୍ୟାତ୍ମିକ ଶକ୍ତିନିଚୟର କୌଣସି ଗୋଟିକର ମଧ୍ୟ ବିନାଶସାଧନ କରାଯାଇପାରେ ନାହିଁ । ଆପଣମାନେ ଦେଖିଛନ୍ତି—ପ୍ରତ୍ୟେକ ଧର୍ମ ହିଁ ଜୀବିତ ରହିଅଛି । ସମୟ ସମୟରେ ଏହା ହୁଏତ ଉନ୍ନତି ବା ଅବନତି ଦିଗରେ ଅଗ୍ରସର ହୋଇପାରେ । କୌଣସି ସମୟରେ ହୁଏତ ଏହାର ସାଜସଜ୍ଜାରେ ଅନେକ କଥା ହ୍ରାସ ପାଇପାରେ—କେବେ କେବେ ପୁଣି ଏହା ରାଶୀକୃତ ସାଜସଜ୍ଜାରେ ମଣ୍ଡିତ ହୋଇପାରେ । କିନ୍ତୁ ଏହାର ପ୍ରାଣବସ୍ତୁ ସର୍ବଦା ହିଁ ଅବ୍ୟାହତ ରହି ଆସିଛି । ଏହା କେବେ ହେଲେ ବିନଷ୍ଟ ହୋଇପାରେ ନାହିଁ । ପ୍ରତ୍ୟେକ ଧର୍ମର ଯାହା ଅନ୍ତର୍ନିହିତ ଆଦର୍ଶ, ତାହା କେବେ ହେଲେ ନଷ୍ଟ ହୁଏ ନାହିଁ; ସୁତରାଂ ପ୍ରତ୍ୟେକ ଧର୍ମ ହିଁ ସଜ୍ଞାନରେ ଅଗ୍ରଗତି-ପଥରେ ଚାଲିଅଛି ।

ସେହି ସାର୍ବଭୌମ ଧର୍ମ, ଯାହା ସମ୍ବନ୍ଧରେ ସକଳ ଦେଶର ଦାର୍ଶନିକଗଣ ଓ ଅନ୍ୟାନ୍ୟ ବ୍ୟକ୍ତି କେତେ କଳ୍ପନା କରିଛନ୍ତି, ତାହା କିନ୍ତୁ ବହୁ ପୂର୍ବରୁ ବିଦ୍ୟମାନ ରହିଛି । ଏହା ବର୍ତ୍ତମାନ ମଧ୍ୟ ରହିଛି । ସାର୍ବଜନୀନ ଭ୍ରାତୃତ୍ୱ ଯେପରି ପୂର୍ବରୁ ରହିଛି—

ସେହିପରି ସାର୍ବଭୌମ ଧର୍ମ ମଧ୍ୟ ରହିଛି । ଆପଣମାନଙ୍କ ମଧ୍ୟରୁ ଯେଉଁମାନେ ନାନା ଦେଶ ପର୍ଯ୍ୟଟନ କରିଛନ୍ତି, ସେମାନଙ୍କ ମଧ୍ୟରେ କିଏ ଭଲା ପ୍ରତ୍ୟେକ ଜାତି ମଧ୍ୟରେ ନିଜ ନିଜ ଭାଇଭଉଣୀଙ୍କର ପରିଚୟ ପାଇ ନାହାନ୍ତି ? ମୁଁ ତ ପୃଥିବୀର ସର୍ବତ୍ର ସେମାନଙ୍କୁ ଦେଖିଛି, ପାଇଛି । ଭ୍ରାତୃତ୍ୱ ପୂର୍ବରୁ ବିଦ୍ୟମାନ ରହିଛି, କେବଳ ଏପରି କେତେକ ଲୋକ ଅଛନ୍ତି, ଯେଉଁମାନେ ଏହା ଦେଖିବାକୁ ନ ପାଇ, ନୂତନ ଭାବରେ ଭ୍ରାତୃତ୍ୱ ପ୍ରତିଷ୍ଠା ନିମିତ୍ତ ଚିତ୍କାର କରି ବିଶୃଙ୍ଖଳା ସୃଷ୍ଟି କରନ୍ତି । ସାର୍ବଭୌମ ଧର୍ମ ବର୍ତ୍ତମାନ ମଧ୍ୟ ରହିଛି । ପୁରୋହିତଗଣ ଏବଂ ଅନ୍ୟ ଯେଉଁମାନେ ବିଭିନ୍ନ ଧର୍ମ ପ୍ରଚାର କରିବାର ଭାର ସ୍ୱତଃପ୍ରବୃତ୍ତ ହୋଇ ନିଜ ଉପରକୁ ଟେକି ନେଇଛନ୍ତି, ସେମାନେ ଯଦି ଦୟାକରି ଥରକ ପାଇଁ କିଛି କାଳ ଲାଗି ପ୍ରଚାରକାର୍ଯ୍ୟ ବନ୍ଦ ରଖନ୍ତି, ତା'ହେଲେ ଆମେ ଦେଖିବାକୁ ପାଇବା, ଏହି ସାର୍ବଭୌମ ଧର୍ମ ପୂର୍ବରୁ ହିଁ ରହିଛି, ଯଦିଓ ସେମାନେ ବରାବର ଏହାକୁ ପ୍ରତିହତ କରିଅଛନ୍ତି । କାରଣ ଏଥିରେ ହିଁ ସେମାନଙ୍କର ଲାଭ । ଆପଣମାନେ ଦେଖିଥିବେ—ସବୁ ଦେଶରେ ପୁରୋହିତ ମାନେ ଅତି ରକ୍ଷଣଶୀଳ । ତା'ର କାରଣ କ'ଣ ? ଖୁବ୍ କମ୍ ପୁରୋହିତ ଅବଶ୍ୟ ଅଛନ୍ତି, ଯେଉଁମାନେ ଜନସାଧାରଣଙ୍କୁ ପରିଚାଳିତ କରନ୍ତି । ସେମାନଙ୍କ ମଧ୍ୟରୁ ଅଧିକାଂଶ ଜନସାଧାରଣଙ୍କଦ୍ୱାରା ଚାଳିତ ହୋଇଥାଆନ୍ତି, ସେମାନଙ୍କ ଭୃତ୍ୟ ଆଉ କ୍ରୀତଦାସ ହୋଇପଡ଼ନ୍ତି । ଯଦି କେହି କହେ—"ଏହା ଶୁଷ୍କ", ସେମାନେ ବି କହିବେ ଯେ, ହଁ, ଏହା ଶୁଷ୍କ । ଯଦି କେହି କହେ—"ଏହା କଳା", ସେମାନେ ବି କହିବେ ଯେ, ହଁ, ଏହା କଳା । ଯଦି ଜନସାଧାରଣ ଉନ୍ନତ ହୁଅନ୍ତେ, ତା'ହେଲେ ପୁରୋହିତମାନେ ମଧ୍ୟ ଉନ୍ନତ ହେବାକୁ ବାଧ୍ୟ ହୁଅନ୍ତେ । ସେମାନେ ପଛରେ ପଡ଼ି ରହିପାରନ୍ତେ ନାହିଁ । ସୁତରାଂ ପୁରୋହିତମାନଙ୍କୁ ଗାଳିଦେବା ପୂର୍ବରୁ (ପୁରୋହିତମାନଙ୍କୁ ଗାଳି ଦେବା ଆଜିକାଲି ଗୋଟାଏ ରୀତି ହୋଇଗଲଣି) ଆପଣମାନେ ନିଜକୁ ଗାଳି ଦେବା ଉଚିତ୍ । ଆପଣମାନେ କେବଳ ସେହିଭଳି ଜିନିଷ ପାଇପାରିବେ, ଯାହା ପାଇଁ ଆପଣ ଯୋଗ୍ୟ । ଯଦି କୌଣସି ପୁରୋହିତ ନୂତନ ନୂତନ ଉନ୍ନତ ଭାବ ଶିଖାଇ ଆପଣମାନଙ୍କୁ ଉନ୍ନତିପଥରେ ଅଗ୍ରସର କରାଇବାକୁ ଚାହିଁବେ, ତା'ହେଲେ ତାଙ୍କର ଦଶା କ'ଣ ହେବ ? ହୁଏତ ତାଙ୍କର ପୁତ୍ରକନ୍ୟା ଅନାହାରରେ ମରିବେ ଏବଂ ତାଙ୍କୁ ଛିଣ୍ଡାଲୁଗା ପିନ୍ଧି ବୁଲିବାକୁ ପଡ଼ିବ । ଆପଣମାନେ ଯେଉଁସବୁ ଜାଗତିକ ବିଧି ମାନି ଚାଲନ୍ତି, ତାଙ୍କୁ ମଧ୍ୟ ସେହିସବୁ ମାନିବାକୁ ପଡ଼େ । ସେ କହନ୍ତି—ଆପଣମାନେ ଯଦି ଚାଲିଥାଆନ୍ତି ତ ଚାଲନ୍ତୁ, ଆମେ ସମସ୍ତେ ଅଗ୍ରସର ହେବା । ଅବଶ୍ୟ ଏପରି ଖୁବ୍ କମ୍, ଦୁଇ ଚାରିଜଣ ଉଚ୍ଚଭାବର ମନୁଷ୍ୟ ଅଛନ୍ତି, ଯେଉଁମାନେ ଲୋକମତକୁ ଭୟ କରନ୍ତି ନାହିଁ । ସେମାନେ ସତ୍ୟ ଅନୁଭବ କରନ୍ତି ଏବଂ ଏକମାତ୍ର ସତ୍ୟକୁ ହିଁ ସାର ବୋଲି ଜ୍ଞାନ କରନ୍ତି । ସତ୍ୟ ସେମାନଙ୍କୁ ପାଇ ବସିଛି, ଯେପରିକି ସେମାନଙ୍କୁ ଅଧିକାର କରି ନେଇଛି ଏବଂ ସେମାନଙ୍କର ଅଗ୍ରସର ହେବା ବ୍ୟତୀତ ଆଉ ଗତ୍ୟନ୍ତର ନାହିଁ । ସେମାନେ କେବେ ହେଲେ ପଛକୁ ଫେରି ଚାହାଁନ୍ତି ନାହିଁ ଏବଂ ଲୋକମତକୁ ଗ୍ରାହ୍ୟ କରନ୍ତି ନାହିଁ । ସେମାନଙ୍କ ନିକଟରେ ଏକମାତ୍ର ଭଗବାନ ହିଁ ସତ୍ୟ । ସେ ହିଁ ହେଉଛନ୍ତି

ସେମାନଙ୍କର ପଥପ୍ରଦର୍ଶକ ଜ୍ୟୋତି ଏବଂ ସେମାନେ ସେହି ଜ୍ୟୋତିକୁ ହିଁ ଅନୁସରଣ କରନ୍ତି ।

ଏଦେଶରେ (ଆମେରିକାରେ) ମୋର ଜଣେ ମର୍ମନ (Mormon) ଭଦ୍ର-ଲୋକଙ୍କ ସହିତ ସାକ୍ଷାତ୍ ହୋଇଥିଲା । ସେ ମୋତେ ତାଙ୍କ ମତରେ ଏକମତ ହେବା ଲାଗି ଖୁବ୍ ଚେଷ୍ଟା କରିଥିଲେ । ମୁଁ କହିଥିଲି—"ଆପଣଙ୍କ ମତ ଉପରେ ମୋର ବିଶେଷ ଶ୍ରଦ୍ଧା ରହିଛି, କିନ୍ତୁ କେତୋଟି ବିଷୟରେ ଆମେ ଏକମତ ହୋଇପାରୁ ନାହୁଁ । ମୁଁ ସନ୍ନ୍ୟାସୀ-ସମ୍ପ୍ରଦାୟଭୁକ୍ତ ଏବଂ ଆପଣ ବହୁ-ବିବାହର ପକ୍ଷପାତୀ । ଭଲ କଥା; ଆପଣ ଭାରତବର୍ଷରେ ଆପଣଙ୍କ ମତ ପ୍ରଚାର କରିବାକୁ ଯାଉନାହାନ୍ତି କାହିଁକି ?" ଏ କଥାରେ ସେ ବିସ୍ମିତ ହୋଇ କହିଲେ—"ଏ କିପରି କଥା ? ଆପଣ ବିବାହର ଆଦୌ ପକ୍ଷପାତୀ ନୁହନ୍ତି, ଆଉ ମୁଁ ବହୁବିବାହର ପକ୍ଷପାତୀ । ତଥାପି ଆପଣ ମୋତେ ଆପଣଙ୍କ ଦେଶକୁ ମୋର ମତ ପ୍ରଚାର କରିବା ଲାଗି ଯିବାକୁ କହୁଛନ୍ତି !" ମୁଁ କହିଲି—"ହଁ, ମୋର ଦେଶବାସୀଗଣ ସବୁପ୍ରକାର ଧର୍ମମତ ଶୁଣିଆସନ୍ତି, ତାହା ଯେକୌଣସି ଦେଶରୁ ଆସି-ଥାଉ ନା କାହିଁକି । ମୋର ଇଚ୍ଛା ଆପଣ ଭାରତବର୍ଷକୁ ଯାଆନ୍ତୁ । କାରଣ, ପ୍ରଥମତଃ ମୁଁ ସମ୍ପ୍ରଦାୟସମୂହର ଉପକାରିତାରେ ବିଶ୍ୱାସ କରେ । ଦ୍ୱିତୀୟତଃ, ସେଠାରେ ଏପରି ଅନେକ ଲୋକ ଅଛନ୍ତି, ଯେଉଁମାନେ ବର୍ତ୍ତମାନର ସମ୍ପ୍ରଦାୟଗୁଡ଼ିକ ଉପରେ ଆଦୌ ସନ୍ତୁଷ୍ଟ ନୁହନ୍ତି ଏବଂ ଏହି ହେତୁ ସେମାନେ ଧର୍ମର କୌଣସି ଧାର ଧାରନ୍ତି ନାହିଁ । ହୁଏତ ସେମାନଙ୍କ ଭିତରୁ କେହି କେହି ଆପଣଙ୍କ ମତ ଗ୍ରହଣ କରିପାରନ୍ତି ।" ସମ୍ପ୍ରଦାୟର ସଂଖ୍ୟା ଯେତେ ଅଧିକ ହେବ, ଲୋକଙ୍କ ଧର୍ମଭାବ ଲାଭ କରିବାର ସମ୍ଭାବନା ସେତିକି ବେଶୀ ହେବ । ଯେଉଁ ହୋଟେଲରେ ସବୁରକମର ଖାଇବା ଜିନିଷ ମିଳେ, ସେଠାରେ ସମସ୍ତଙ୍କର କ୍ଷୁଧାତୃପ୍ତିର ସମ୍ଭାବନା ଥାଏ । ସୁତରାଂ ମୋର ଇଚ୍ଛା— ସକଳ ଦେଶରେ ସମ୍ପ୍ରଦାୟର ସଂଖ୍ୟା ବଢ଼ିଯାଉ—ଯାହାଦ୍ୱାରା ଆହୁରି ବେଶୀ ଲୋକ ଧର୍ମଜୀବନ-ଲାଭର ସୁବିଧା ପାଇପାରିବେ । ଏଭଳି ମନେକରିବା ଉଚିତ ନୁହେଁ ଯେ, ଲୋକମାନେ ଧର୍ମ ଚାହାଁନ୍ତି ନାହିଁ । ମୁଁ ତାହା ବିଶ୍ୱାସ କରେ ନାହିଁ । ସେମାନଙ୍କର ଯାହା ପ୍ରୟୋଜନ, ପ୍ରଚାରକବୃନ୍ଦ ଠିକ୍ ତାହା ଦେଇପାରନ୍ତି ନାହିଁ । ଯେଉଁ ଲୋକ ନାସ୍ତିକ, ଜଡ଼ବାଦୀ ବା ଏହିଭଳି କିଛି ଗୋଟାଏ ଛାପ ମରା ହୋଇଛି, ତା'ର ମଧ୍ୟ ଯଦି ଏପରି କୌଣସି ଲୋକ ସହିତ ସାକ୍ଷାତ୍ ହୁଏ, ଯେ କି ତାକୁ ଠିକ୍ ତାର ମନୋମତ ଆଦର୍ଶଟି ଦେଖାଇ ଦେଇପାରେ, ତା'ହେଲେ ସେ ହୁଏତ ସମାଜ ମଧ୍ୟରେ ଜଣେ ଶ୍ରେଷ୍ଠ ଆଧ୍ୟାତ୍ମିକ ଅନୁଭୂତିସମ୍ପନ୍ନ ଲୋକ ହୋଇଉଠିବ । ଆମେମାନେ ବରାବର୍ ଯେଉଁଭାବରେ ଖାଇବାରେ ଅଭ୍ୟସ୍ତ, ସେହିଭାବରେ ହିଁ ଖାଇପାରୁ । ଦେଖନ୍ତୁ ନା, ଆମେ ହିନ୍ଦୁମାନେ ହାତରେ ଖାଉ, ତେଣୁ ଆପଣମାନଙ୍କ ଅପେକ୍ଷା ଆମମାନଙ୍କ ଅଙ୍ଗୁଳି-ଗୁଡ଼ିକ ବେଶୀ ତତ୍ପର; ଆପଣମାନେ ଠିକ୍ ଆମଭଳି ଅଙ୍ଗୁଳି ଚଳାଇପାରିବେ ନାହିଁ । କେବଳ ଖାଦ୍ୟ ଦେଇ ଦେଲେ ହେଲା ନାହିଁ, ଆପଣଙ୍କୁ ଏହା ନିଜ ଭାବରେ ହିଁ ଗ୍ରହଣ

କରିବାକୁ ହେବ । ଆପଣଙ୍କୁ କେବଳ କେତେଗୁଡ଼ିଏ ଆଧ୍ୟାତ୍ମିକ ଭାବ ଦେଇଦେଲେ ଚଳିବ ନାହିଁ, ଆପଣଙ୍କ ପରିଚିତ ଧାରାରେ ସେଗୁଡ଼ିକ ଆପଣଙ୍କ ନିକଟକୁ ଆସିବା ପ୍ରୟୋଜନ । ସେଗୁଡ଼ିକୁ ଯଦି ଆପଣଙ୍କ ନିଜ ଭାଷାରେ, ଆପଣଙ୍କ ପ୍ରାଣର ଭାଷାରେ ବ୍ୟକ୍ତ କରାଯାଏ, ତେବେ ଯାଇ ଆପଣଙ୍କର ସନ୍ତୋଷ ହେବ । ଏପରି କେହି ଯେତେବେଳେ ଆସନ୍ତି, ଯେ କି ମୋ ମାତୃଭାଷାରେ କଥା କହନ୍ତି ଏବଂ ମୋର ଭାଷାରେ ଉପଦେଶ ଦିଅନ୍ତି, ମୁଁ ସେତିକବେଳେ ହିଁ ତାହା ବୁଝିପାରେ ଏବଂ ଚିରକାଳ ଲାଗି ତାକୁ ସ୍ୱୀକାର କରିନିଏ । ଏହା ଗୋଟିଏ ମସ୍ତବଡ଼ ବାସ୍ତବ ସତ୍ୟ ।

ଏ କଥାରୁ ଜଣାଯାଉଛି ଯେ କେତେ ବିଭିନ୍ନ ସ୍ତର ଏବଂ ପ୍ରକୃତିର ମଣିଷ-ମନ ରହିଛି ଏବଂ ଧର୍ମଗୁଡ଼ିକ ଉପରେ ମଧ୍ୟ କି ଗୁରୁଦାୟିତ୍ୱ ନ୍ୟସ୍ତ ରହିଛି । କେହି ହୁଏତ ଦୁଇ ତିନୋଟି ମତବାଦ ପ୍ରକାଶ କରି କହି ବସିବେ ଯେ, ତାଙ୍କର ଧର୍ମ ସବୁଲୋକଙ୍କର ଉପଯୋଗୀ ହେବା ଉଚିତ । ସେ ଗୋଟିଏ ଛୋଟିଆ ପିଞ୍ଜରା ହାତରେ ଧରି ଭଗବାନଙ୍କର ଏହି ଜଗତ୍‌ରୂପକ ଚିଡ଼ିଆଖାନାରେ ପ୍ରବେଶ କରି କହିବେ—"ଈଶ୍ୱର, ହାତୀ ଓ ଅନ୍ୟସବୁ ପ୍ରାଣୀଙ୍କୁ ଏହା ଭିତରେ ପ୍ରବେଶ କରିବାକୁ ହେବ । ପ୍ରୟୋଜନ ହେଲେ ହାତୀଟିକୁ ଖଣ୍ଡ ଖଣ୍ଡ କରି କାଟି ତାକୁ ଏହି ପିଞ୍ଜରାରେ ଭର୍ତ୍ତି କରିବାକୁ ହେବ ।" ପୁଣି ହୁଏତ ଏପରି କୌଣସି ସମ୍ପ୍ରଦାୟ ରହିଛନ୍ତି, ଯାହାଙ୍କ ଭିତରେ କେତେଗୁଡ଼ିଏ ଭଲ ଭଲ ଭାବ ରହିଛି । ସେମାନେ କହନ୍ତି—"ସମସ୍ତଙ୍କୁ ହିଁ ଆମ ସମ୍ପ୍ରଦାୟଭୁକ୍ତ ହେବାକୁ ପଡ଼ିବ ।" "କିନ୍ତୁ ସମସ୍ତଙ୍କ ପାଇଁ ତ ସ୍ଥାନ ନାହିଁ ।" "କିଛି ପରୁଆ ନାହିଁ । ସେମାନଙ୍କୁ କାଟିକୁଟି ଯେମିତି ହେଲେ ଏଥି ଭିତରେ ପୂରାଅ । କାରଣ ସେମାନେ ଯଦି ନ ଆସନ୍ତି, ତେବେ ସେମାନେ ନିଶ୍ଚୟ ଉଚ୍ଛନ୍ନ ହୋଇଯିବେ ।"

ମୁଁ ଏପରି କୌଣସି ପ୍ରଚାରକ-ଦଳ ବା ସମ୍ପ୍ରଦାୟ କେଉଁଠାରେ ଦେଖିଲି ନାହିଁ, ଯେଉଁମାନେ ସ୍ଥିର ହୋଇ ଲୋକମାନେ କାହିଁକି ସେମାନଙ୍କ କଥା ଶୁଣୁ ନାହାନ୍ତି ତାର କାରଣ ଭାବି ଦେଖିବାକୁ ତତ୍ପର ହୁଅନ୍ତି । ସେପରି ଚିନ୍ତା ନ କରି ସେମାନେ କେବଳ ଲୋକମାନଙ୍କୁ ଅଭିଶାପ ଦିଅନ୍ତି—ଆଉ କହନ୍ତି ଯେ ଲୋକଗୁଡ଼ାକ ମହାପାଜି, ସେମାନେ ଥରେ ମାତ୍ର ବି ଜିଜ୍ଞାସା କରନ୍ତି ନାହିଁ ଯେ, କାହିଁକି ଲୋକମାନେ ସେମାନଙ୍କ କଥାରେ କର୍ଣ୍ଣପାତ ସୁଦ୍ଧା କରୁ ନାହାନ୍ତି ? କାହିଁକି ସେମାନେ ଲୋକମାନଙ୍କୁ ସତ୍ୟ ଦେଖାଇପାରୁ ନାହାନ୍ତି ? କାହିଁକି ମୁଁ ସେମାନଙ୍କର ବୁଝିବା ଭଳି ଭାଷାରେ କହିପାରୁ ନାହିଁ ? କାହିଁକି ମୁଁ ସେମାନଙ୍କର ଜ୍ଞାନଚକ୍ଷୁ ଉନ୍ମୀଳିତ କରିପାରୁ ନାହିଁ ? ପ୍ରକୃତରେ ଏହି ଧର୍ମପ୍ରଚାରକମାନେ ଆହୁରି ସୁବିବେକୀ ହେବା ଉଚିତ । ଯେତେବେଳେ ସେମାନେ ଦେଖନ୍ତି ଯେ ଲୋକେ ସେମାନଙ୍କ କଥାରେ କର୍ଣ୍ଣପାତ କରୁନାହାନ୍ତି, ସେତେବେଳେ ଯଦି କାହାକୁ ଗାଳିଗୁଲଜ କରିବାକୁ ହୁଏ ତେବେ ନିଜକୁ ହିଁ ଗାଳିଗୁଲଜ କରିବା ଉଚିତ । କିନ୍ତୁ ସବୁବେଳେ ସବୁତକ ଦୋଷ କଅଣ ଲୋକମାନଙ୍କର ? ଧର୍ମପ୍ରଚାରକମାନେ କେବେ ନିଜ ସମ୍ପ୍ରଦାୟର ସୀମାକୁ ବଡ଼ କରି ସକଳ ଲୋକଙ୍କ ଉପଯୋଗୀ କରିବାର ପ୍ରୟାସ କରନ୍ତି

ନାହିଁ । ଅତଏବ ଅଂଶ ସବୁବେଳେ ନିଜକୁ ପୂର୍ଣ୍ଣ ବୋଲି ଦାବୀ କରି ଆସୁଥିବାର ଦେଖାଯାଉଛି । କ୍ଷୁଦ୍ର ସସୀମ ବସ୍ତୁ ନିଜକୁ ଅସୀମ ବୋଲି ସର୍ବଦା ଜାହିର୍ କରି ଆସୁଛି । ଏଭଳି ସଙ୍କୀର୍ଣ୍ଣତା କାହିଁକି ଜଗତରେ ଚାଲି ଆସୁଛି, ତାର କାରଣ ଆମେ ଅତି ସହଜରେ ବୁଝିପାରୁ । ଥରେ ସେହିସବୁ କ୍ଷୁଦ୍ର କ୍ଷୁଦ୍ର ସମ୍ପ୍ରଦାୟଗୁଡ଼ିକର କଥା ଭାବି ଦେଖନ୍ତୁ । ସେଗୁଡ଼ିକ ମାତ୍ର କେତେକ ଶତାବ୍ଦୀ ପୂର୍ବେ ଭ୍ରାନ୍ତ ମାନବ-ମସ୍ତିଷ୍କରୁ ଜାତ ହୋଇଛି । ଅଥଚ ଭଗବାନଙ୍କ ଅନନ୍ତ ସତ୍ୟର ସବୁ କଥା ସେମାନଙ୍କୁ ଜଣାପଡ଼ି ଯାଇଛି ବୋଲି ସେମାନେ ଉଦ୍ଧତ ସ୍ପର୍ଦ୍ଧା କରୁଛନ୍ତି । ପ୍ରଗଲ୍‌ଭତା କେତେଦୂର ହୋଇପାରେ ଦେଖନ୍ତୁ ! ଏଥିରୁ ଆଉ କିଛି ହେଉ ନ ହେଉ, ଏତିକି ଅନ୍ତତଃ ବୁଝାଯାଉଛି ଯେ, ମନୁଷ୍ୟ କେତେ ଦାମ୍ଭିକ ଏବଂ ଏହି ପ୍ରକାର ଦାବୀ ଯେ ବରାବର ବ୍ୟର୍ଥ ହୋଇ ଆସିଛି, ତାହା ଆଦୌ ଆଶ୍ଚର୍ଯ୍ୟଜନକ ନୁହେଁ । ପ୍ରଭୁଙ୍କ କୃପାରୁ ଏହା ଚିରକାଳ ବ୍ୟର୍ଥ ହେବାକୁ ବାଧ୍ୟ । ଏହି ବିଷୟରେ କିନ୍ତୁ ମୁସଲମାନମାନେ ସମସ୍ତଙ୍କୁ ବଳି ପଡ଼ିଥିଲେ । ସେମାନେ ତରବାରି ସାହାଯ୍ୟରେ ପ୍ରତ୍ୟେକ ପଦ ଅଗ୍ରସର ହେଉଥିଲେ । ସେମାନଙ୍କର ଗୋଟିଏ ହାତରେ ଥିଲି ପବିତ୍ର କୋରାନ୍ ଏବଂ ଅନ୍ୟ ହସ୍ତରେ ତରବାରି । ସେମାନଙ୍କର ଡାକ ଥିଲା—"ହୁଏତ କୋରାନ୍ ଗ୍ରହଣ କର, ନଚେତ୍ ମୃତ୍ୟୁକୁ ଆଲିଙ୍ଗନ କର । ଆଉ ଅନ୍ୟ ଉପାୟ ନାହିଁ ।" ଇତିହାସ-ପାଠକମାନେ ଜାଣନ୍ତି, ସେମାନଙ୍କର କି ଅଭୂତପୂର୍ବ ସାଫଲ୍ୟ ଘଟିଥିଲା । ଛଅଶହ ବର୍ଷ ଧରି କେହି ସେମାନଙ୍କର ଗତିରୋଧ କରିପାରିଲେ ନାହିଁ । କିନ୍ତୁ ପରେ ଏପରି ଏକ ସମୟ ଆସିଲା, ଯେତେବେଳେ କି ସେମାନଙ୍କୁ ଅଭିଯାନ ବନ୍ଦ ରଖିବାକୁ ପଡ଼ିଲା । ଆଉ କୌଣସି ଧର୍ମ ମଧ୍ୟ ଯଦି ଏହିପରି ପନ୍ଥା ଅନୁସରଣ କରେ, ତେବେ ତାର ମଧ୍ୟ ସେହି ଗୋଟିଏ ଦଶା ହେବ । ଆମେସବୁ ପ୍ରକୃତରେ ଏହି ଧରଣର ଶିଶୁବୁଦ୍ଧିର ମଣିଷ ସିନା ! ଆମେ ମଣିଷ-ପ୍ରକୃତିର କଥା ସବୁବେଳେ ଭୁଲିଯାଉ । ଆମ ଜୀବନ-ପ୍ରଭାତରେ ଆମେ ମନେ କରୁ ଯେ, ଆମର ଅଦୃଷ୍ଟ ଗୋଟାଏ କିଛି ଅସାଧାରଣ ପ୍ରକାର ହୋଇଥିବ ଏବଂ କୌଣସିମତେ ଏ ବିଷୟରେ ଆମର ସାମାନ୍ୟ ଅବିଶ୍ୱାସ ମଧ୍ୟ ଆସେ ନାହିଁ । କିନ୍ତୁ ଜୀବନ-ସନ୍ଧ୍ୟାରେ ଆମର ଚିନ୍ତା ଅନ୍ୟ ପ୍ରକାର ହୋଇଯାଏ । ଧର୍ମ ସମ୍ବନ୍ଧରେ ମଧ୍ୟ ଠିକ୍ ଏହି କଥା । ପ୍ରଥମାବସ୍ଥାରେ ଯେତେବେଳେ ଧର୍ମସମ୍ପ୍ରଦାୟଗୁଡ଼ିକ ଟିକିଏ ବିସ୍ତୃତି ଲାଭ କରେ, ସେତେବେଳେ ସେମାନେ ମନେ କରନ୍ତି ଯେ, ମାତ୍ର କେତୋଟି ବର୍ଷ ଭିତରେ ସେମାନେ ମଣିଷର ମନ ବଦଳାଇ ଦେଇପାରିବେ । ସେଥିପାଇଁ ସେମାନେ ବଳପୂର୍ବକ ଧର୍ମାନ୍ତରିତ କରିବା ପାଇଁ ଶତସହସ୍ର ଲୋକଙ୍କର ପ୍ରାଣ ବଧ କରିଥାଆନ୍ତି । ପରେ ଯେତେବେଳେ ସେମାନେ ଅକୃତକାର୍ଯ୍ୟ ହୁଅନ୍ତି, ସେତେବେଳେ ସେମାନଙ୍କର ଆଖି ଖୋଲିବାକୁ ଆରମ୍ଭ କରେ । ଦେଖାଯାଏ, ଏଗୁଡ଼ିକ ଯେଉଁ ଉଦ୍ଦେଶ୍ୟ ନେଇ କାର୍ଯ୍ୟକ୍ଷେତ୍ରରେ ଅବତୀର୍ଣ୍ଣ ହୋଇଥିଲେ, ତାହା ବ୍ୟର୍ଥ ହୋଇଛି ଏବଂ ଏହା ହିଁ ଜଗତ ପକ୍ଷରେ ଅଶେଷ କଲ୍ୟାଣ-ଜନକ । ଥରକ ପାଇଁ ଭାବି ଦେଖନ୍ତୁ—ଯଦି ଏହି ମତାନ୍ଧ ସମ୍ପ୍ରଦାୟସମୂହ ଭିତରୁ କୌଣସି ସମ୍ପ୍ରଦାୟ ସମଗ୍ର ପୃଥିବୀ ଉପରେ ବିସ୍ତୃତ ପଡ଼ିଥାନ୍ତେ, ତାହା ହେଲେ ଆଜି

ମନୁଷ୍ୟର କି ଦଶା ହୋଇଥାଆନ୍ତା ? ଭଗବାନଙ୍କୁ ଧନ୍ୟବାଦ ଯେ ସେମାନେ କୃତକାର୍ଯ୍ୟ ହୋଇନାହାନ୍ତି । ତଥାପି, ପ୍ରତ୍ୟେକ ସମ୍ପ୍ରଦାୟ ହେଉଛନ୍ତି ଗୋଟିଏ ଗୋଟିଏ ମହାନ ସତ୍ୟର ପ୍ରତିନିଧି, ପ୍ରତ୍ୟେକ ଧର୍ମ ହିଁ କୌଣସି ଏକ ବିଶେଷ ଉଚ୍ଚାଦର୍ଶର ପ୍ରତିଭୂ—ଏହା ହିଁ ତା'ର ପ୍ରାଣବସ୍ତୁ ।

ଗୋଟିଏ ପୁରାତନ ଗଳ୍ପ ମନେ ପଡ଼ୁଛି । ଗୋଟିଏ ଜନପଦରେ କେତେକ ରାକ୍ଷସୀ ଥିଲେ । ସେମାନେ ମଣିଷ ମାରୁଥିଲେ ଏବଂ ନାନା ପ୍ରକାର ଅନିଷ୍ଟସାଧନ କରୁଥିଲେ । କିନ୍ତୁ ସେମାନଙ୍କୁ କେହି ବଧ କରିପାରୁ ନ ଥିଲେ । ଅବଶେଷରେ ଜଣେ ଖୋଜି ଖୋଜି ଆବିଷ୍କାର କଲା ଯେ, ସେହି ରାକ୍ଷସୀମାନଙ୍କ ପ୍ରାଣ କେତେଗୁଡ଼ିଏ ଚଢ଼େଇଙ୍କ ଭିତରେ ରହିଛି ଏବଂ ଯେତେ ଦିନଯାଏ ଏହି ଚଢ଼େଇଗୁଡ଼ିକ ବଞ୍ଚିଥିବେ, ସେତେ ଦିନଯାଏ କେହି ଏହି ରାକ୍ଷସୀମାନଙ୍କୁ ମାରିପାରିବେ ନାହିଁ । ଆମ ସମସ୍ତଙ୍କର ମଧ୍ୟ ଯେପରି ଏହିଭଳି ଗୋଟିଏ ଗୋଟିଏ ପ୍ରାଣ-ପକ୍ଷୀ ରହିଛି । ସେହି ଚଢ଼େଇଟି ଭିତରେ ଆମର ପ୍ରାଣବସ୍ତୁ ରହିଛି । ଆମ ପ୍ରତ୍ୟେକଙ୍କର ଗୋଟିଏ ଆଦର୍ଶ, ଗୋଟିଏ ଉଦ୍ଦେଶ୍ୟ ରହିଛି । ତାହାକୁ ହିଁ ଆମକୁ ଜୀବନରେ କାର୍ଯ୍ୟରେ ପରିଣତ କରିବାକୁ ହେବ । ପ୍ରତ୍ୟେକ ମଣିଷ ହେଉଛନ୍ତି ଏହିଭଳି ଗୋଟିଏ ଗୋଟିଏ ଆଦର୍ଶ—ଏହିଭଳି ଗୋଟିଏ ଗୋଟିଏ ଉଦ୍ଦେଶ୍ୟର ପ୍ରତିମୂର୍ତ୍ତି । ଆଉ ଯାହା କିଛି ନଷ୍ଟ ହୋଇଯାଉ ପଛେ, ସେହି ଆଦର୍ଶଟି ଯେତେବେଳ-ଯାଏ ଠିକ୍ ଅଛି, ସେତେବେଳଯାଏ ସେହି ଉଦ୍ଦେଶ୍ୟ ଅତୁଟ ରହିଥିବ । ସେତେବେଳ ଯାଏ କୌଣସି ପ୍ରକାରେ ଆପଣଙ୍କର ବିନାଶ ନାହିଁ । ସମ୍ପଦ ଆସିପାରେ, ଯାଇପାରେ; ବିପଦ ମଧ୍ୟ ପର୍ବତ ପ୍ରମାଣେ ଆସି ଆଗରେ ଠିଆ ହୋଇଯାଇପାରେ; କିନ୍ତୁ ଆପଣ ଯଦି ସେହି ଲକ୍ଷ୍ୟ ଅତୁଟ ରଖିପାରନ୍ତି, ତେବେ କିଛିମାତ୍ର ଆପଣଙ୍କର ବିନାଶସାଧନ କରିପାରିବ ନାହିଁ । ଆପଣ ବୃଦ୍ଧ ହୋଇଯାଇପାରନ୍ତି—ଏପରିକି ଶତାୟୁ ମଧ୍ୟ ହୋଇପାରନ୍ତି । କିନ୍ତୁ ଯଦି ସେହି ଉଦ୍ଦେଶ୍ୟ ଆପଣଙ୍କ ମନରେ ଉଜ୍ଜ୍ୱଳ ଓ ସତେଜ ଥାଏ ତେବେ କିଏ ବା ଆପଣଙ୍କୁ ବଧ କରିବାକୁ ସମର୍ଥ ହେବ ? କିନ୍ତୁ ଯେତେବେଳେ ସେହି ଆଦର୍ଶ ଆପଣ ହରାଇ ବସିବେ ଏବଂ ଯଦି ସେହି ଉଦ୍ଦେଶ୍ୟ ବିକୃତ ହୋଇ ପଡ଼ିବ, ସେତେବେଳେ ଆପଣଙ୍କର ଆଉ କୌଣସି ପ୍ରକାରେ ରକ୍ଷା ନାହିଁ । ପୃଥିବୀର ସମସ୍ତ ସମ୍ପଦ, ସମସ୍ତ ଶକ୍ତି ମିଶି ମଧ୍ୟ ଆପଣଙ୍କୁ ରକ୍ଷା କରିପାରିବେ ନାହିଁ । ଜାତି କହିଲେ କଅଣ ବୁଝାଯାଏ ? ବ୍ୟଷ୍ଟିର ସମଷ୍ଟି ହିଁ ତ ଜାତି ! ସୁତରାଂ ପ୍ରତ୍ୟେକ ଜାତିର ଗୋଟିଏ ନିଜସ୍ୱ ଉଦ୍ଦେଶ୍ୟ ରହିଛି । ବିଭିନ୍ନ ଜାତିର ସୁଶୃଙ୍ଖଳ ଅବସ୍ଥିତି ପକ୍ଷରେ ତାହା ବିଶେଷ ଦରକାର । ଯେତେଦିନ କୌଣସି ଜାତି ସେହି ଆଦର୍ଶକୁ ଧରି ରଖିଥିବ, ସେତେଦିନ ପର୍ଯ୍ୟନ୍ତ କୌଣସି ପ୍ରକାରେ ତାର ବିନାଶ ନାହିଁ । କିନ୍ତୁ ଯଦି ଏହି ଜାତି ଉକ୍ତ ଆଦର୍ଶ ପରିତ୍ୟାଗ କରି ଅନ୍ୟ କୌଣସି ଲକ୍ଷ୍ୟ ପ୍ରତି ଧାବିତ ହୁଏ, ତା'ହେଲେ ତାର ଜୀବନ କ୍ଷୀଣ ହୋଇ ଆସେ—ଏବଂ ଏହା ଖୁବ୍ ଅଳ୍ପ କାଳ ଭିତରେ ଅନ୍ତର୍ହିତ ହୋଇଯାଏ ।

ଧର୍ମ ସମ୍ବନ୍ଧରେ ମଧ୍ୟ ଠିକ୍ ଏହି କଥା । ଏହିସବୁ ପୁରାତନ ଧର୍ମ ଯେ ଆଜି ମଧ୍ୟ

ବଞ୍ଚି ରହିଛନ୍ତି, ଏଥିରୁ ଏହା ପ୍ରମାଣିତ ହୁଏ ଯେ, ଏଗୁଡ଼ିକ ନିଶ୍ଚୟ ଯେଉଁ ଉଦ୍ଦେଶ୍ୟ ଅନୁଯାୟୀ ରହିଛନ୍ତି । ଧର୍ମଗୁଡ଼ିକର ସମୁଦାୟ ଭୁଲଭ୍ରାନ୍ତି, ବାଧାବିଘ୍ନ, ବିବାଦ-ବିସମ୍ବାଦ ସତ୍ତ୍ୱେ ଏବଂ ସେଗୁଡ଼ିକ ଉପରେ ନାନାବିଧ ଅନୁଷ୍ଠାନ ଓ ନିର୍ଦ୍ଦିଷ୍ଟ ପ୍ରଣାଳୀର ଆବର୍ଜନାସ୍ତୂପ ସଞ୍ଚିତ ହେଲେ ମଧ୍ୟ ପ୍ରତ୍ୟେକର ପ୍ରାଣକେନ୍ଦ୍ର ଠିକ୍ ରହିଛି । ଏହା ଜୀବନ୍ତ ହୃତ୍ପିଣ୍ଡ ସଦୃଶ ସ୍ପନ୍ଦିତ ହେଉଛି—ଧକ୍ ଧକ୍ କରୁଛି । ଏହି ଧର୍ମଗୁଡ଼ିକ ମଧ୍ୟରେ ଯେଉଁ ଧର୍ମ ଯେଉଁ ମହତ୍ ଉଦ୍ଦେଶ୍ୟ ନେଇ ଆସିଛି, ତାହା ହରାଇ ବସି ନାହିଁ ଏବଂ ସେହି ଉଦ୍ଦେଶ୍ୟ ସମ୍ବନ୍ଧରେ ଆଲୋଚନା କରିବା ବେଶ୍ ଚମତ୍କାରପ୍ରଦ । ଦୃଷ୍ଟାନ୍ତସ୍ୱରୂପ ମୁସଲମାନ ଧର୍ମର କଥା ନିଆଯାଉ । ଖ୍ରୀଷ୍ଟିଆନମାନେ ମୁସଲମାନ ଧର୍ମକୁ ଯେତେ ବେଶୀ ଘୃଣା କରନ୍ତି, ସେପରି ଆଉ କେଉଁ ଧର୍ମକୁ କରନ୍ତି ନାହିଁ । ସେମାନେ ମନେ କରନ୍ତି ଯେ, ଏଭଳି ନିକୃଷ୍ଟ ଧର୍ମ ଆଉ କେବେ ହୋଇନାହିଁ । କିନ୍ତୁ ଦେଖନ୍ତୁ, ଯେତେବେଳେ କେହି ଜଣେ ବ୍ୟକ୍ତି ମୁସଲମାନ ଧର୍ମ ଗ୍ରହଣ କଲା, ସେତେବେଳେ ସମଗ୍ର ଇସଲାମୀ ସମାଜ ତାକୁ ଜାତିବର୍ଣ୍ଣନିର୍ବିଶେଷରେ ଭାଇ ବୋଲି କୋଳେଇ ନେଲା । ଏପରି ଆଉ କେଉଁ ଧର୍ମ ତ କରେ ନାହିଁ ! ଏ ଦେଶରେ କୌଣସି ଲୋହିତ ଭାରତୀୟ ଯଦି ମୁସଲମାନ ହୁଏ, ତା'ହେଲେ ତୁରସ୍କର ସୁଲତାନ ମଧ୍ୟ ତା' ସହିତ ଏକତ୍ର ଭୋଜନ କରିବାକୁ କୁଣ୍ଠିତ ହେବେ ନାହିଁ ଏବଂ ସେ ବୁଦ୍ଧିମାନ ହେଲେ, ଯେକୌଣସି ଉଚ୍ଚପଦ ଲାଭ କରିବାରୁ ବଞ୍ଚିତ ହେବ ନାହିଁ । କିନ୍ତୁ ଏ ଦେଶରେ ମୁଁ ଏପର୍ଯ୍ୟନ୍ତ ଏପରି ଗୋଟିଏ ଗୀର୍ଜା ଦେଖିନାହିଁ—ଯେଉଁଠାରେ ଶ୍ୱେତକାୟ ବ୍ୟକ୍ତି ଓ ନିଗ୍ରୋ ପାଖାପାଖି ଆଣ୍ଠୁକାଡ଼ି ହୋଇ ବସି ପ୍ରାର୍ଥନା କରିପାରନ୍ତି ! ଏହି କଥାଟି ଥରେ ଭାବି ଦେଖନ୍ତୁ ତ ! ଇସଲାମଧର୍ମ ତଦନ୍ତର୍ଗତ ସବୁ ଲୋକଙ୍କୁ ସମାନ ଦୃଷ୍ଟିରେ ଦେଖିଥାଏ । ସୁତରାଂ ଆପଣମାନେ ଦେଖୁଛନ୍ତି, ଏହିଠାରେ ହିଁ ମୁସଲମାନ ଧର୍ମର ବିଶେଷ ମହତ୍ତ୍ୱ । କୋରାନ୍‌ର ଅନେକ ସ୍ଥଳରେ ମାନବଜୀବନ ସମ୍ବନ୍ଧରେ ନିଛକ ପାର୍ଥିବ ଜୀବନ କଥା ଦେଖିବାକୁ ପାଇବେ । ସେଥିରେ ବା କ୍ଷତି କ'ଣ ? ମୁସଲମାନ ଧର୍ମ ଏ ଜଗତରେ ଯେଉଁ ବାର୍ତ୍ତା ପ୍ରଚାର କରିବାକୁ ଆସିଛି, ତାହା ସକଳ ମୁସଲମାନ ଧର୍ମାବଲମ୍ବୀଙ୍କ ମଧ୍ୟରେ କାର୍ଯ୍ୟରେ ପରିଣତ ହୋଇଥିବା ଏହି ଭ୍ରାତୃଭାବ । ଏହା ହିଁ ମୁସଲମାନ ଧର୍ମର ଅତ୍ୟାବଶ୍ୟକ ସାରାଂଶ ଏବଂ ସ୍ୱର୍ଗ, ଜୀବନ ପ୍ରଭୃତି ଅନ୍ୟାନ୍ୟ ବସ୍ତୁ ସମ୍ବନ୍ଧରେ ଯେଉଁ ସମସ୍ତ ଧାରଣା କୋରାନ୍‌ରେ ରହିଛି, ସେଗୁଡ଼ିକ ଯେ ଧର୍ମର ସାରାଂଶ ନୁହେଁ । ଅନ୍ୟ ଧର୍ମରୁ ସେସବୁ କଥା ଆସି ସେ ଧର୍ମରେ ପ୍ରବେଶ କରିଛି ।

ହିନ୍ଦୁ ଧର୍ମ ଭିତରେ ଗୋଟିଏ ବିଶେଷଭାବ ଦେଖିବାକୁ ପାଇବେ—ତାହା ହେଲା ଆଧ୍ୟାତ୍ମିକତା । ଅନ୍ୟ କୌଣସି ଧର୍ମରେ, ପୃଥିବୀର ଅନ୍ୟ କୌଣସି ଧର୍ମପୁସ୍ତକରେ ଈଶ୍ୱରଙ୍କ ସ୍ୱରୂପ ନିର୍ଣ୍ଣୟ କରିବାରେ ଏତେ ଅଧିକ ଶକ୍ତି କ୍ଷୟ ହେବାର ଦେଖିବାକୁ ମିଳେ ନାହିଁ । ସେମାନେ ଏପରି ଭାବରେ ଆତ୍ମାର ସ୍ୱରୂପ ନିର୍ଦ୍ଦେଶ କରିବା ଢଙ୍ଗରେ ଚେଷ୍ଟା କରିଛନ୍ତି, ଯେଉଁଥିରେ କି କୌଣସି ପାର୍ଥିବ ସଂସ୍ପର୍ଶ ତାକୁ କଳୁଷିତ କରି ନ ପାରିବ । ଅଧ୍ୟାତ୍ମ-ତତ୍ତ୍ୱ ଭଗବତ୍ସତ୍ତାର ହିଁ ସମତୁଲ ଏବଂ ଆତ୍ମାକୁ ଆତ୍ମାରୂପେ ବୁଝିବାକୁ ହେଲେ

ଏହାକୁ କେବେହେଲେ ମାନବୀୟ ସୀମା ଭିତରେ ଆବଦ୍ଧ ରଖି ହେବ ନାହିଁ ।

ସେହି ଏକତ୍ୱର ଧାରଣା ଏବଂ ସର୍ବବ୍ୟାପୀ ଈଶ୍ୱରଙ୍କର ଉପଲବ୍ଧି ହିଁ ସର୍ବଦା ସର୍ବତ୍ର ପ୍ରଚ୍ଚରିତ ହୋଇଅଛି । ଈଶ୍ୱର ସ୍ୱର୍ଗରେ ବାସ କରନ୍ତି ଇତ୍ୟାଦି କଥା ହିନ୍ଦୁପାଖରେ ଅସାର ଉକ୍ତି ଛଡ଼ା ଆଉ କିଛି ନୁହେଁ । ଏହା ମନୁଷ୍ୟ କର୍ତ୍ତୃକ ଭଗବାନଙ୍କଠାରେ ମନୁଷ୍ୟ-ଗତ ଗୁଣାବଳୀର ଆରୋପ ମାତ୍ର । ଯଦି ସ୍ୱର୍ଗ ବୋଲି କିଛି ଥାଏ, ତେବେ ତାହା ବର୍ତ୍ତମାନ ଏବଂ ଏଠାରେ ହିଁ ବିଦ୍ୟମାନ । ଅନନ୍ତ କାଳର ମଧ୍ୟବର୍ତ୍ତୀ ଯେକୌଣସି ମୁହୂର୍ତ୍ତ ଅନ୍ୟ ଯେକୌଣସି ମୁହୂର୍ତ୍ତ ସଦୃଶ ଭଲ । ଯେ ଈଶ୍ୱରବିଶ୍ୱାସୀ, ସେ ବର୍ତ୍ତମାନ ହିଁ ତାଙ୍କର ଦର୍ଶନ ଲାଭ କରିପାରନ୍ତି । ମୋ ମତରେ ଗୋଟିଏ କିଛି ପ୍ରତ୍ୟକ୍ଷ ଉପଲବ୍ଧି ଭିତରୁ ହିଁ ଧର୍ମର ଆରମ୍ଭ ହୁଏ । କେତେଗୁଡ଼ିଏ ମତବାଦରେ ବିଶ୍ୱାସୀ ହେବା କିମ୍ବା ବୁଦ୍ଧିଦ୍ୱାରା ଏହା ସ୍ୱୀକାର କରିବା, ଅଥବା ପ୍ରକାଶ୍ୟଭାବରେ ଘୋଷଣା କରିବାଟାକୁ ଧର୍ମ କୁହାଯାଏ ନାହିଁ । ଭଗବାନ ଯଦି ଥାଆନ୍ତି, ତେବେ ଆପଣ ତାଙ୍କୁ ଦେଖିଛନ୍ତି କି ? ଯଦି କୁହନ୍ତି, "ନା", ତେବେ ଆପଣଙ୍କର ସେଥିରେ ବିଶ୍ୱାସ କରିବାର କି ଅଧିକାର ଅଛି ? ଆଉ ଯଦି ଆପଣ-ଙ୍କର ଈଶ୍ୱରଙ୍କ ଅସ୍ତିତ୍ୱ ସମ୍ବନ୍ଧରେ ସନ୍ଦେହ ନଥାଏ, ତେବେ ତାଙ୍କୁ ଦେଖିବା ଲାଗି ପ୍ରାଣପଣେ ଚେଷ୍ଟା କରୁନାହାନ୍ତି କାହିଁକି ? କାହିଁକି ଆପଣ ସଂସାର ତ୍ୟାଗ କରି ଏହି ଗୋଟାଏ ଉଦ୍ଦେଶ୍ୟ ସିଦ୍ଧି ଲାଗି ସମସ୍ତ ଜୀବନ ଅତିବାହିତ କରୁ ନାହାନ୍ତି ? ତ୍ୟାଗ ଏବଂ ଆଧ୍ୟାତ୍ମିକତା—ଏହି ଦୁଇଟି ଭାରତର ମହାନ୍ ଆଦର୍ଶ ଏବଂ ଏହି ଦୁଇଟି ଆଦର୍ଶ ଏପର୍ଯ୍ୟନ୍ତ ମଧ୍ୟ ଉଣା ଅଧିକେ ଧରି ରହିଛି ବୋଲି ଭାରତର ଏତେ ଭୁଲଭ୍ରାନ୍ତିରେ ମଧ୍ୟ ବିଶେଷ କିଛି ଯାଏ ଆସେ ନାହିଁ ।

ଖ୍ରୀଷ୍ଟିଆନମାନଙ୍କର ପ୍ରଚ୍ଚରିତ ମୂଳ ଭାବଟି ହେଉଛି—'ଅବହିତ ହୋଇ ପ୍ରାର୍ଥନା କର । କାରଣ ଭଗବାନଙ୍କ ରାଜ୍ୟ ଅତି ନିକଟରେ ।' ଅର୍ଥାତ୍ ଚିତ୍ତଶୁଦ୍ଧି କରି ପ୍ରସ୍ତୁତ ହୁଅ ଏବଂ ଏହି ଭାବ କେବେହେଲେ ନଷ୍ଟ ହେବ ନାହିଁ । ଆପଣଙ୍କର ବୋଧହୁଏ ମନେଥିବ ଯେ, ଖ୍ରୀଷ୍ଟାନମାନେ ଘୋର ଅନ୍ଧକାର ଯୁଗରେ ମଧ୍ୟ ଅତି କୁସଂସ୍କାରଗ୍ରସ୍ତ ଖ୍ରୀଷ୍ଟାନ ଦେଶ-ସମୂହରେ ଅନ୍ୟଙ୍କୁ ସାହାଯ୍ୟ କରିବା, ହାସପାତାଲ ନିର୍ମାଣ କରିବା ପ୍ରଭୃତି ସତ୍କାର୍ଯ୍ୟ-ଦ୍ୱାରା ସର୍ବଦା ନିଜକୁ ପବିତ୍ର ରଖିବାକୁ ଚେଷ୍ଟା କରି ପ୍ରଭୁଙ୍କ ଆଗମନକୁ ପ୍ରତୀକ୍ଷା କରି ରହିଥାଆନ୍ତି । ଯେତେଦିନଯାଏ ସେମାନେ ଏହି ଲକ୍ଷ୍ୟରେ ସ୍ଥିର ରହିବେ, ସେତେଦିନ ସେମାନଙ୍କର ଧର୍ମ ସଜୀବ ରହିଥିବ ।

ସଂପ୍ରତି ମୋ ମନରେ ଗୋଟିଏ ଆଦର୍ଶର ଛବି ଜାଗ୍ରତ ହୋଇଅଛି । ହୁଏତ ଏହା ସ୍ୱପ୍ନମାତ୍ର । ଜାଣେ ନାହିଁ, ଏହା କେବେ ଜଗତରେ କାର୍ଯ୍ୟରେ ପରିଣତ ହେବ କି ନାହିଁ । କିନ୍ତୁ କଠୋର ବାସ୍ତବତାରେ ଥାଇ ମରିବା ଅପେକ୍ଷା କେବେ କେବେ ସ୍ୱପ୍ନ ଦେଖିବା ମଧ୍ୟ ଭଲ । ସ୍ୱପ୍ନ ମଧ୍ୟରେ ପ୍ରକାଶିତ ହେଲେ ସୁଦ୍ଧା ମହାନ୍ ସତ୍ୟଗୁଡ଼ିକ ଅତି ଉତ୍ତମ । ନିକୃଷ୍ଟ ବାସ୍ତବ ଅପେକ୍ଷା ସେଗୁଡ଼ିକ ଶ୍ରେଷ୍ଠ । ଅତଏବ ଗୋଟିଏ ସ୍ୱପ୍ନ ମଧ୍ୟ ଦେଖାଯାଉ ! କ୍ଷତି କଅଣ ?

ଆପଣମାନେ ଜାଣନ୍ତି ଯେ ମନର ନାନା ସ୍ତର ରହିଛି । ଆପଣ ହୁଏତ ସହଜ-ଜ୍ଞାନରେ ଆସ୍ଥାବାନ ଜଣେ ବସ୍ତୁତାନ୍ତ୍ରିକ ଯୁକ୍ତିବାଦୀ । ଆପଣ ଏହିସବୁ ଆଚାର-ଅନୁଷ୍ଠାନର ଧାର ଧାରନ୍ତି ନାହିଁ । ଆପଣ ଏପରି ସବୁ ପ୍ରତ୍ୟକ୍ଷ ଓ ଅକାଟ୍ୟ ସତ୍ୟ ଚାହାଁନ୍ତି ଯାହା ଯୁକ୍ତିଦ୍ୱାରା ସମର୍ଥିତ ଏବଂ କେବଳ ଏହିଥିରେ ହିଁ ଆପଣ ସନ୍ତୋଷ ଲାଭ କରିପାରିବେ । ପୁଣି ପିଉରିଟାନ୍ ଓ ମୁସଲମାନମାନେ ମଧ୍ୟ ଅଛନ୍ତି—ଯେଉଁମାନେ ସେମାନଙ୍କର ଉପାସନା-ସ୍ଥଳରେ କୌଣସି ପ୍ରକାର ଛବି ବା ମୂର୍ତ୍ତି ରଖିବାକୁ ଦେବେ ନାହିଁ । ବେଶ୍ କଥା, କିନ୍ତୁ ଆଉ ଏକ ପ୍ରକାର ଲୋକ ଅଛନ୍ତି, ଯେଉଁମାନେ କି ଟିକିଏ ବେଶୀ ଶିଳ୍ପକଳା-ପ୍ରିୟ । ଈଶ୍ୱରଲାଭର ସହାୟରୂପେ ସେମାନଙ୍କ ପକ୍ଷରେ ଶିଳ୍ପକଳାର କିଛି ପ୍ରୟୋଜନ ହୁଏତ ରହିଛି । ସେମାନେ ଚାହାଁନ୍ତି ସୁନ୍ଦର ଓ ସୁଠାମ ନାନା ସରଳ ଓ ବକ୍ରରେଖା, ପୁଣି ନାନାବିଧ ବର୍ଣ୍ଣ ଓ ରୂପ । ପୁଣି ସେମାନେ ହୁଏତ ଚାହାଁନ୍ତି—ଧୂପ, ଦୀପାଦି ଅନ୍ୟାନ୍ୟ ପ୍ରତୀକ ଓ ବାହ୍ୟ ଉପକରଣାଦି । ଆପଣମାନେ ଯେପରି ଈଶ୍ୱରଙ୍କୁ ଯୁକ୍ତି-ବିଚାର ମଧ୍ୟ ଦେଇ ବୁଝିପାରନ୍ତି, ସେମାନେ ମଧ୍ୟ ସେହିପରି ତାଙ୍କୁ ଏହିସବୁ ପ୍ରତୀକ ଭିତର ଦେଇ ବୁଝିପାରନ୍ତି । ଆଉ ପ୍ରକାରେ ଭକ୍ତିପ୍ରବଣ ଲୋକ ଅଛନ୍ତି, ଯେଉଁମାନଙ୍କ ପ୍ରାଣ ଭଗବାନଙ୍କ ଲାଗି ବ୍ୟାକୁଳ । ଭଗବାନଙ୍କ ପୂଜା ଏବଂ ସ୍ତବସ୍ତୁତି କରିବା ବ୍ୟତୀତ ସେମାନଙ୍କର ଆଉ କିଛି ଚିନ୍ତା ନ ଥାଏ । ଏମାନଙ୍କ ଛଡ଼ା ପୁଣି ଅଛନ୍ତି ଦାର୍ଶନିକ—ଯେଉଁମାନେ କି ଏସବୁର ବାହାରେ ଠିଆ ହୋଇ ଏମାନଙ୍କୁ ବିଦ୍ରୂପ କରନ୍ତି । ସେହି ଦାର୍ଶନିକମାନେ ମନେ କରନ୍ତି—ଏସବୁ କି ବ୍ୟର୍ଥ ପ୍ରୟାସ ! ଈଶ୍ୱରଙ୍କ ସମ୍ବନ୍ଧରେ କି ସବୁ ଅଦ୍ଭୁତ ଧାରଣା !

ସେମାନେ ପରସ୍ପରକୁ ଉପହାସ କରିପାରନ୍ତି । କିନ୍ତୁ ଏହି ଜଗତରେ ପ୍ରତ୍ୟେକର ହିଁ ଗୋଟିଏ ସ୍ଥାନ ଅଛି । ଏହିସବୁ ବିଭିନ୍ନ ମନ ଓ ଏହିସବୁ ବିବିଧ ଭାବାଦର୍ଶର ପ୍ରୟୋଜନ ରହିଛି । ଯଦି କେବେ କେଉଁ ଆଦର୍ଶ ଧର୍ମ ପ୍ରତିଷ୍ଠାର ସମ୍ଭାବନା ଥାଏ, ତେବେ ତାକୁ ଏଭଳି ଉଦାର ଓ ପ୍ରଶସ୍ତ ହୃଦୟ ହେବାକୁ ପଡ଼ିବ, ଯେଉଁଥିରେ କି ଏହା ଏହିସବୁ ବିଭିନ୍ନ ମନର ଉପଯୋଗୀ ଖାଦ୍ୟ ଯୋଗାଇବାକୁ ସମର୍ଥ ହୋଇ-ପାରୁଥିବ । ଏହି ଧର୍ମ ଜ୍ଞାନୀର ହୃଦୟରେ ଦର୍ଶନ-ସୁଲଭ ଦୃଢ଼ତା ଆଣିଦେଇପାରିବ ଏବଂ ଭକ୍ତର ହୃଦୟକୁ ଭକ୍ତିଭାବରେ ଆପ୍ଲୁତ କରିପାରିବ । ଆନୁଷ୍ଠାନିକ ବ୍ୟକ୍ତିକୁ ଏହି ଧର୍ମ ଉଚ୍ଚତମ ପ୍ରତୀକ-ଉପାସନାଲଭ୍ୟ ସମୁଦାୟ ଭାବରାଶିଦ୍ୱାରା କୃତାର୍ଥ କରିବ ଏବଂ କବି ଯେତେଦୂର ହୃଦୟୋଚ୍ଛ୍ୱାସ ଧାରଣ କରିପାରେ, କିମ୍ବା ଆଉ ଯାହା କିଛି ଗୁଣରାଶି ରହିଛି, ତାହାଦ୍ୱାରା ସେ କବିହୃଦୟକୁ ପରିପୂର୍ଣ୍ଣ କରି ଦେଇପାରିବ । ଏ ପ୍ରକାର ଉଦାର ଧର୍ମର ସୃଷ୍ଟି କରିବାକୁ ହେଲେ, ଆମମାନଙ୍କୁ ଧର୍ମସମୂହର ଅଭ୍ୟୁଦୟକାଳକୁ ଫେରି ଯିବାକୁ ପଡ଼ିବ ଏବଂ ଏଗୁଡ଼ିକୁ ସବୁ ଗ୍ରହଣ କରିବାକୁ ହେବ ।

ଅତଏବ, ଗ୍ରହଣ ହିଁ ଆମମାନଙ୍କର ମୂଳମନ୍ତ୍ର ହେବା ଉଚିତ, ବର୍ଜନ ନୁହେଁ । କେବଳ ପରମତ-ସହିଷ୍ଣୁତା ନୁହେଁ—ଏହା ଅନେକ ସମୟରେ ଈଶ୍ୱର-ନିନ୍ଦାର ହିଁ

ଦୀପାଧାରର ମାତ୍ର । ତେଣୁ ମୁଁ ଏଥିରେ ବିଶ୍ୱାସ କରେ ନାହିଁ । ମୁଁ 'ଗ୍ରହଣ'ରେ ବିଶ୍ୱାସୀ । ମୁଁ କାହିଁକି ପରଧର୍ମସହିଷ୍ଣୁ ହେବି ? ପରଧର୍ମସହିଷ୍ଣୁତାର ମାନେ ଏହି ଯେ, ମୋ ମତରେ ଆପଣ ଅନ୍ୟାୟ କରୁଛନ୍ତି, କିନ୍ତୁ ମୁଁ ଆପଣଙ୍କୁ ବଞ୍ଚି ରହିବାକୁ ବାଧା ଦେଉ ନାହିଁ । ତୁମ ଆମ ଭଳି ଲୋକ କାହାକୁ ଦୟା କରି ବଞ୍ଚିବାକୁ ଦେଉଛୁ—ଏହିଭଳି ମନେ କରିବା କଅଣ ଭଗବନ୍ତ-ବିଧାନରେ ଦୋଷାରୋପ କରିବା ନୁହେଁ ? ଅତୀତରେ ଯେତେକ ଧର୍ମସମ୍ପ୍ରଦାୟ ଥିଲା, ମୁଁ ସବୁଗୁଡ଼ିକୁ ସତ୍ୟ ବୋଲି ମାନିଥାଏ ଏବଂ ସବୁ ଧର୍ମର ଉପାସନାରେ ଯୋଗଦାନ କରିଥାଏ । ପ୍ରତ୍ୟେକ ସମ୍ପ୍ରଦାୟ ଯେଉଁ ଭାବରେ ଈଶ୍ୱରଙ୍କର ଆରାଧନା କରନ୍ତି, ମୁଁ ସେମାନଙ୍କ ସହିତ ଠିକ୍ ସେହି ଭାବରେ ହିଁ ଆରାଧନା କରିଥାଏ । ମୁଁ ମୁସଲମାନମାନଙ୍କ ମସଜିଦ୍‌କୁ ଯିବି, ଖ୍ରୀଷ୍ଟାନମାନଙ୍କ ଗୀର୍ଜାରେ ପ୍ରବେଶ କରି କ୍ରୁଶବିଦ୍ଧ ଈଶାଙ୍କ ସମ୍ମୁଖରେ ନତଜାନୁ ହେବି, ବୌଦ୍ଧମାନଙ୍କ ବିହାରରେ ପ୍ରବେଶ କରି ବୁଦ୍ଧଙ୍କର ଓ ଧର୍ମର ଶରଣ ନେବି ଏବଂ ଅରଣ୍ୟକୁ ଯାଇ ସେହିସବୁ ହିନ୍ଦୁଙ୍କ ପାର୍ଶ୍ୱରେ ଧ୍ୟାନରେ ମଗ୍ନ ହେବି, ଯେଉଁମାନେ କି ସମସ୍ତଙ୍କର ହୃଦୟ-କନ୍ଦର-ଉଦ୍‌ଭାସନକାରୀ ଜ୍ୟୋତିର ଦର୍ଶନରେ ସଚେଷ୍ଟ ।

କେବଳ ସେତିକି ନୁହେଁ, ଭବିଷ୍ୟତରେ ମଧ୍ୟ ଯେଉଁ ସବୁ ଧର୍ମ ଆସିବାର ସମ୍ଭାବନା ରହିଛି—ସେମାନଙ୍କ ଲାଗି ମଧ୍ୟ ମୋର ହୃଦୟ ମୁଁ ଉନ୍ମୁକ୍ତ ରଖିବି । ଈଶ୍ୱରଙ୍କର ବିଧିଶାସ୍ତ୍ର କଅଣ ଶେଷ ହୋଇଯାଇଛି ? କିମ୍ବା ଏହା ଚିରକାଳବ୍ୟାପୀ ଅଭିବ୍ୟକ୍ତିରୂପରେ ଆଜି ମଧ୍ୟ ଆତ୍ମପ୍ରକାଶ କରି ଚାଲିଛି ? ଜଗତର ଆଧ୍ୟାତ୍ମିକ ଅଭିବ୍ୟକ୍ତିଗୁଡ଼ିକର ଏହି ଯେ ଲିପି, ଏହା ଏକ ଅଦ୍ଭୁତ ପୁସ୍ତକ । ବାଇବେଲ, ବେଦ, କୋରାନ୍ ଏବଂ ଅନ୍ୟାନ୍ୟ ଧର୍ମଗ୍ରନ୍ଥସମୂହ ଯେପରି ଏହି ପୁସ୍ତକର ଗୋଟାଏ ଗୋଟାଏ ପୃଷ୍ଠା ଏବଂ ଏହାର ଅସଂଖ୍ୟ ପୃଷ୍ଠା ବର୍ତ୍ତମାନ ମଧ୍ୟ ଅପ୍ରକାଶିତ ରହିଛି । ସେହିସବୁ ଅଭିବ୍ୟକ୍ତି ଲାଗି, ମୁଁ ଏହି ପୁସ୍ତକ ଖୋଲି ରଖିବି । ଆମେମାନେ ବର୍ତ୍ତମାନରେ ଠିଆ ହୋଇ ଭବିଷ୍ୟତର ଅନନ୍ତ ଭାବରାଶି ଗ୍ରହଣ ନିମିତ୍ତ ପ୍ରସ୍ତୁତ ରହିବୁ । ଅତୀତରେ ଯାହାସବୁ ଘଟିଛି, ସେସବୁକୁ ଆମେ ଗ୍ରହଣ କରିବୁ—ବର୍ତ୍ତମାନର ଜ୍ଞାନାଲୋକ ଉପଭୋଗ କରିବୁ—ଏବଂ ଭବିଷ୍ୟତରେ ଯାହା କିଛି ଉପସ୍ଥିତ ହେବ, ତାହା ଗ୍ରହଣ କରିବା ଲାଗି ହୃଦୟର ସମସ୍ତ ବାତାୟନ ଉନ୍ମୁକ୍ତ ରଖିବୁ । ଅତୀତର ଋଷିବୃନ୍ଦଙ୍କୁ ପ୍ରଣାମ, ବର୍ତ୍ତମାନର ମହାପୁରୁଷମାନଙ୍କୁ ପ୍ରଣାମ—ଏବଂ ଯେଉଁମାନେ ଭବିଷ୍ୟତରେ ଆସିବେ, ସେସମସ୍ତଙ୍କୁ ପ୍ରଣାମ !

# ଆତ୍ମା, ଈଶ୍ୱର ଓ ଧର୍ମ

ଅତୀତରେ ସୁଦୀର୍ଘ ଧାର ମଧ୍ୟ ଦେଇ ଶତଶତ ଯୁଗର ଗୋଟିଏ ବାଣୀ ଆମ ନିକଟକୁ ଭାସି ଆସୁଛି—ସେହି ବାଣୀ ହିମାଳୟ ଓ ଅରଣ୍ୟର ମୁନିଋଷିମାନଙ୍କର ବାଣୀ, ସେହି ବାଣୀ ସେମିଟିକ୍ ଜାତିମାନଙ୍କ ନିକଟରେ ମଧ୍ୟ ଆବିର୍ଭୂତ ହୋଇଥିଲା । ବୁଦ୍ଧଦେବ ଓ ଅନ୍ୟାନ୍ୟ ଧର୍ମବୀରମାନଙ୍କ ମଧ୍ୟଦେଇ ପ୍ରକାଶିତ ହୋଇଥିଲା । ସେହି ବାଣୀ ସେହିସବୁ ମନୁଷ୍ୟ ନିକଟରୁ ଆସିଛି, ଯେଉଁମାନେ କି ଏପରି ଏକ ଜ୍ଞାନଜ୍ୟୋତିରେ ଉଦ୍ଭାସିତ ଥିଲେ ଏବଂ ଯାହା ଏହି ପୃଥିବୀର ଆରମ୍ଭରୁ ମନୁଷ୍ୟର ସହଚର ରୂପେ ବିଦ୍ୟମାନ ଥିଲା । ମନୁଷ୍ୟ ଯେଉଁଠାରେ ଥାଉନା କାହିଁକି, ସେହିଠାରେ ହିଁ ଏହା ପ୍ରକାଶ ପାଏ ଏବଂ ଚିରକାଳ ମନୁଷ୍ୟର ସଙ୍ଗେ ସଙ୍ଗେ ଥାଏ । ସେହି ବାଣୀ ବର୍ତ୍ତମାନ ମଧ୍ୟ ଆମ ନିକଟକୁ ଆସୁଛି । ଏହି ବାଣୀ ସେହିସବୁ ପର୍ବତନିଃସୃତ କ୍ଷୁଦ୍ରକାୟା ସ୍ରୋତସ୍ୱିନୀମାନଙ୍କ ଭଳି, ଯେଉଁମାନେ କି ବର୍ତ୍ତମାନ ଅଦୃଶ୍ୟ, କିନ୍ତୁ ହୁଏତ ପୁନର୍ବାର ଖରତର ବେଗରେ ପ୍ରବାହିତ ହୋଇ ପରିଶେଷରେ ଗୋଟିଏ ବିଶାଳ ଶକ୍ତିଶାଳୀ ବନ୍ୟାରେ ପରିଣତ ହୋଇପାରନ୍ତି । ଜଗତର ସମସ୍ତ ଜାତି ଓ ସମ୍ପ୍ରଦାୟର ଈଶ୍ୱରାଦିଷ୍ଟ ଓ ପବିତ୍ରାତ୍ମା ନରନାରୀଙ୍କ ମୁଖରୁ ଯେଉଁ ବାଣୀ-ଗୁଡ଼ିକ ଆମେ ଲାଭ କରିଛୁ, ସେଗୁଡ଼ିକ ନିଜ ନିଜର ଶକ୍ତି ସମ୍ମିଳିତ କରି ଆମମାନଙ୍କୁ ଭେରୀନିନାଦରେ ଅତୀତର ବାଣୀ ହିଁ ଶୁଣାଇଛନ୍ତି । ଆମ କର୍ଣ୍ଣରେ ସେହି ପ୍ରଥମ ବାଣୀଟି ପଡ଼ିଛି—ତୁମମାନଙ୍କର ଓ ସବୁ ଧର୍ମର ଲୋକଙ୍କର ଶାନ୍ତି ହେଉ ! ଏହା ପ୍ରତିଦ୍ୱନ୍ଦ୍ୱିତାର ବାଣୀ ନୁହେଁ—ପରନ୍ତୁ ଐକ୍ୟବଦ୍ଧ ଧର୍ମର କଥା । ଆସନ୍ତୁ, ଆମେ ପ୍ରଥମେ ହିଁ ଏହି ବାଣୀର ତାତ୍ପର୍ଯ୍ୟ ଆଲୋଚନା କରିବା ।

ବର୍ତ୍ତମାନ ଯୁଗର ପ୍ରାରମ୍ଭରେ ଏହି ଭଳି ଆଶଙ୍କା ହୋଇଥିଲା ଯେ, ଧର୍ମର ଧ୍ୱଂସ ଏଥର ଅବଶ୍ୟମ୍ଭାବୀ । ବୈଜ୍ଞାନିକ ଗବେଷଣାର ତୀବ୍ର ଆଘାତରେ ପୁରାତନ କୁସଂସ୍କାର-ଗୁଡ଼ିକ ଚୀନାମାଟିର ବାସନ ଭଳି ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇଯାଇଥିଲା । ଯେଉଁମାନେ ଧର୍ମକୁ କେବଳ ମତବାଦ ଓ ଅର୍ଥଶୂନ୍ୟ ଅନୁଷ୍ଠାନ ବୋଲି ମନେ କରନ୍ତି, ସେମାନେ କିଂକର୍ତ୍ତବ୍ୟ-ବିମୂଢ଼ ହୋଇଗଲେ । ଧରି ରଖିବା ପାଇଁ କିଛି ସେମାନେ ଖୋଜି ପାଇଲେ ନାହିଁ । ଗୋଟିଏ ସମୟରେ ଏହା ଅନିବାର୍ଯ୍ୟ ବୋଲି ମନେ ହୋଇଥିଲା ଯେ, ଜଡ଼ବାଦ ଓ ଅଜ୍ଞେୟବାଦର ଉତ୍ତାଳ ତରଙ୍ଗ ସମ୍ମୁଖର ସକଳ ବସ୍ତୁକୁ ଦ୍ରୁତବେଗରେ ଭସାଇ ନେଇଯିବ । ସେମାନଙ୍କ ଭିତରୁ ଅନେକେ ନିଜର ମନୋଭାବ ପର୍ଯ୍ୟନ୍ତ ପ୍ରକାଶ କରିବାକୁ ସାହସ କଲେ ନାହିଁ । ଅନେକେ ମଧ୍ୟ ଏ ବିଷୟରେ ନିରାଶ ହେଲେ ଏବଂ ଭାବିଲେ ଯେ, ଧର୍ମ ଏଥର ଚିରଦିନ ଲାଗି ପୃଥିବୀପୃଷ୍ଠରୁ ଲୋପ ପାଇଗଲା । କିନ୍ତୁ—ସ୍ରୋତ ପୁଣି ଥରେ ଫେରି ଆସିଛି ଏବଂ ଏହାର ଉଦ୍ଧାରର ଉପାୟ ମଧ୍ୟ ଆସିଛି । ତାହା କଅଣ ? ସେହି ଉପାୟଟି ହେଲା ଧର୍ମସମୂହର ତୁଳନାତ୍ମକ ଆଲୋଚନା । ବିଭିନ୍ନ ଧର୍ମର ଅନୁଶୀଳନରେ ଆମେ ଦେଖିବାକୁ

ପାଉ ଯେ ସେଗୁଡ଼ିକ ମୂଳତଃ ଏକ । ବାଲ୍ୟକାଳରେ ଏହି ନାସ୍ତିକତାର ପ୍ରଭାବ ମୋ ଉପରେ ମଧ୍ୟ ପଡ଼ିଥିଲା ଏବଂ ଏକ ସମୟରେ ଏପରି ମଧ୍ୟ ବୋଧ ହୋଇଥିଲା ଯେ, ମୋତେ ମଧ୍ୟ ଧର୍ମର ସମସ୍ତ ଆଶା ଭରସା ତ୍ୟାଗ କରିବାକୁ ହେବ । କିନ୍ତୁ ଭାଗ୍ୟକ୍ରମେ ମୁଁ ଖ୍ରୀଷ୍ଟାନ, ମୁସଲମାନ, ବୌଦ୍ଧ ପ୍ରଭୃତି ଧର୍ମ ଅଧ୍ୟୟନ କଲି ଏବଂ ଆଶ୍ଚର୍ଯ୍ୟ ହେଲି ଏହା ଭାବି ଯେ, ଆମର ଧର୍ମ ଯେଉଁସବୁ ମୂଳତତ୍ତ୍ୱ ଶିକ୍ଷା ଦିଏ, ଅନ୍ୟାନ୍ୟ ଧର୍ମ ମଧ୍ୟ ଅବିକଳ ସେହିଗୁଡ଼ିକ ଶିକ୍ଷା ଦେଉଛି । ଏଥିରେ ମୋ ମନରେ ଏହି ପ୍ରକାର ଚିନ୍ତାର ଉଦୟ ହେଲା—ସତ୍ୟ କ'ଣ ? ଏହି ଜଗତ କ'ଣ ସତ୍ୟ ? ଉତ୍ତର ପାଇଲି—ହଁ, ସତ୍ୟ । କାହିଁକି ସତ୍ୟ ? କାରଣ, ମୁଁ ଏହା ଦେଖିଛି । ଯେଉଁସବୁ ମନୋହର ସୁଲଳିତ କଣ୍ଠସ୍ୱର ଓ ଯନ୍ତ୍ରସଙ୍ଗୀତ ଆମେମାନେ ବର୍ତ୍ତମାନ ଶୁଣିଲୁ, ସେସବୁ କ'ଣ ସତ୍ୟ ? ହଁ, ସତ୍ୟ; କାରଣ ଆମେ ତାହାକୁ ଶୁଣିଛୁ । ଆମେମାନେ ଜାଣୁ ଯେ, ମନୁଷ୍ୟର ଗୋଟିଏ ଶରୀର ଅଛି, ଦୁଇଟି ଚକ୍ଷୁ ଓ ଦୁଇଟି କର୍ଣ୍ଣ ଅଛି । ଏବଂ ଏହା ସଙ୍ଗେ ସଙ୍ଗେ ତାର ଗୋଟିଏ ଆଧ୍ୟାତ୍ମିକ ପ୍ରକୃତି ମଧ୍ୟ ଅଛି । ତାକୁ ଅବଶ୍ୟ ଆମେ ଦେଖିପାରୁ ନାହିଁ । ଏହି ଆଧ୍ୟାତ୍ମିକ ବୃତ୍ତିର ସାହାଯ୍ୟରେ ହିଁ ସେ ବିଭିନ୍ନ ଧର୍ମର ଅନୁଶୀଳନ ଫଳରେ ବୁଝିପାରେ ଯେ, ଭାରତର ଅରଣ୍ୟରେ ଓ ଖ୍ରୀଷ୍ଟାନମାନଙ୍କ ଦେଶରେ ଯେତେସବୁ ଧର୍ମମତ ପ୍ରଚଳିତ ହୋଇଛି, ସେଗୁଡ଼ିକ ମୂଳତଃ ଏକ । ଏହା ଫଳରେ ଆମେ ଏହି ସତ୍ୟରେ ଉପନୀତ ହେଉ ଯେ, ଧର୍ମ ମାନବ-ମନର ଗୋଟାଏ ସ୍ୱଭାବସିଦ୍ଧ ପ୍ରୟୋଜନ । କୌଣସି ଗୋଟିଏ ଧର୍ମକୁ ସତ୍ୟ ବୋଲି ମାନିବାକୁ ହେଲେ, ଅନ୍ୟ ଧର୍ମଗୁଡ଼ିକୁ ମଧ୍ୟ ସତ୍ୟ ବୋଲି ମାନିବାକୁ ହେବ । ଦୃଷ୍ଟାନ୍ତସ୍ୱରୂପ, ଧରନ୍ତୁ, ମୋର ଛଅଟି ଅଙ୍ଗୁଳି ରହିଛି, କିନ୍ତୁ ଅନ୍ୟ କାହାର ଏମିତି ନାହିଁ । ତା'ହେଲେ, ଆପଣମାନେ ବେଶ୍ ବୁଝିପାରନ୍ତି ଯେ, ଏହା ଅସ୍ୱାଭାବିକ । କେବଳ ଗୋଟିଏ ଧର୍ମ ସତ୍ୟ ଓ ଅନ୍ୟ ଧର୍ମଗୁଡ଼ିକ ମିଥ୍ୟା—ଏହି ବିତଣ୍ଡାର ସମାଧାନରେ ମଧ୍ୟ ଏହି ଗୋଟିଏ ମାତ୍ର ଯୁକ୍ତି ପ୍ରଦର୍ଶିତ ହୋଇପାରେ । ଜଗତରେ ମାତ୍ର ଗୋଟିଏ ଧର୍ମକୁ ଯଦି ସତ୍ୟ ବୋଲି କୁହାଯିବ, ତେବେ ଏହା ଛଅ ଆଙ୍ଗୁଠିବିଶିଷ୍ଟ ହାତସଦୃଶ ଅସ୍ୱାଭାବିକ ହେବ । ସୁତରାଂ ଦେଖାଗଲା ଯେ ଗୋଟିଏ ଧର୍ମ ସତ୍ୟ ହେଲେ ଅନ୍ୟଗୁଡ଼ିକ ମଧ୍ୟ ଅବଶ୍ୟ ସତ୍ୟ ହେବେ । ଗୌଣ ଅଂଶଗୁଡ଼ିକ ସମ୍ବନ୍ଧରେ ପାର୍ଥକ୍ୟ ରହିଲେ ମଧ୍ୟ ମୂଳତଃ ସେଗୁଡ଼ିକ ସବୁ ଏକ । ଯଦି ମୋର ପାଞ୍ଚ ଆଙ୍ଗୁଠି ସତ୍ୟ ହୁଏ, ତେବେ ତଦ୍ଦ୍ୱାରା ପ୍ରମାଣିତ ହୁଏ, ତୁମର ପାଞ୍ଚ ଆଙ୍ଗୁଠି ମଧ୍ୟ ସତ୍ୟ ।

ମନୁଷ୍ୟ ଯେଉଁଠାରେ ଥାଉ, ତାର ଗୋଟିଏ ଧର୍ମ-ବିଶ୍ୱାସ ରହିବ ହିଁ ରହିବ । ସେ ତା'ର ଧର୍ମଭାବକୁ ପରିପୁଷ୍ଟ କରିବ ହିଁ କରିବ । ଜଗତର ବିଭିନ୍ନ ଧର୍ମ ଆଲୋଚନା କରି ଆଉ ଗୋଟିଏ ସତ୍ୟ ଦେଖିବାକୁ ମିଳେ ଯେ ଆତ୍ମା ଓ ଈଶ୍ୱରଙ୍କ ସମ୍ବନ୍ଧରେ ଧାରଣାର ତିନୋଟି ବିଭିନ୍ନ ସ୍ତର ରହିଛି । ପ୍ରଥମତଃ ସବୁ ଧର୍ମ ସ୍ୱୀକାର କରନ୍ତି ଯେ ଏହି ନଶ୍ୱର ଦେହ ଛଡ଼ା (ମନୁଷ୍ୟର) ଆଉ ଗୋଟିଏ ଅଂଶ ବା ଅନ୍ୟ ଗୋଟାଏ କିଛି ରହିଛି—ଯାହା ଶରୀରସଦୃଶ ପରିବର୍ତ୍ତିତ ହୁଏ ନାହିଁ, ତାହା ନିର୍ବିକାର, ଶାଶ୍ୱତ ଓ ଅମୃତ ।

କିନ୍ତୁ ପରବର୍ତ୍ତୀ କେତେକ ଧର୍ମ ମତରେ—ଯଦିଓ ଏହା ସତ୍ୟ ଯେ ଆମର ଗୋଟିଏ ଅଂଶ ଅମର, ତଥାପି କୌଣସି ନା କୌଣସି ସମୟରେ ଏହାର ଆରମ୍ଭ ହୋଇଅଛି । କିନ୍ତୁ ଯାହାର ଆରମ୍ଭ ଅଛି, ତାର ନାଶ ମଧ୍ୟ ଅବଶ୍ୟ ରହିଛି । ଅମର, ଅର୍ଥାତ୍ ଆମ ମୂଳ ସତ୍ତାର କେବେ ହେଲେ ଆରମ୍ଭ ହୋଇ ନାହିଁ, କେବେ ମଧ୍ୟ ଅନ୍ତ ହେବ ନାହିଁ । ଆମ ସମସ୍ତଙ୍କ ଉପରେ, ଏହି ଅନନ୍ତ ସତ୍ତାର ଉପରେ ମଧ୍ୟ 'ଈଶ୍ବର' ପଦବାଚ୍ୟ ଆଉ ଜଣେ ଅନାଦି ପୁରୁଷ ଅଛନ୍ତି, ଯାହାଙ୍କର ଅନ୍ତ ନାହିଁ । ଲୋକେ ଜଗତର ସୃଷ୍ଟି ଓ ମାନବର ଆରମ୍ଭ କଥା କହୁଥାନ୍ତି । କିନ୍ତୁ ଜଗତର 'ଆରମ୍ଭ' କଥାଟିର ଅର୍ଥ କେବଳ ଗୋଟିଏ କଳ୍ପର ଆରମ୍ଭ । ଏହାଦ୍ୱାରା କୌଣସିଠାରେ ସମଗ୍ର ବିଶ୍ବଜଗତର ଆରମ୍ଭ ବୁଝାଯାଏ ନାହିଁ । ସୃଷ୍ଟିର ଯେ ଆରମ୍ଭ ଥାଇପାରେ, ଏହା ଅସମ୍ଭବ । ଆଦି କାଳ ବୋଲି କୌଣସି କିଛିର ଧାରଣା, ଆପଣମାନଙ୍କ ମଧ୍ୟରେ କେହି କରିପାରିବେ ନାହିଁ । ଯାହାର ଆରମ୍ଭ ରହିଛି—ତାର ଶେଷ ମଧ୍ୟ ନିଶ୍ଚିତ ଭାବରେ ରହିଛି । ଭଗବଦ୍ଗୀତା କହନ୍ତି—

"ନ ତ୍ୱେବାହଂ ଜାତୁ ନାସଂ ନ ତ୍ୱଂ ନେମେ ଜନାଧିପାଃ ।
ନ ଚୈବ ନ ଭବିଷ୍ୟାମଃ ସର୍ବେବୟମତଃପରମ୍ ।"[୧]

—ଅର୍ଥାତ୍, ମୁଁ ଯେ ପୂର୍ବେ ନ ଥିଲି, ଏପରି ନୁହେଁ । ତୁମେ ଯେ ନ ଥିଲ, ଏପରି ମଧ୍ୟ ନୁହେଁ । ଏହି ନୃପତିମାନେ ଯେ ନ ଥିଲେ, ତାହା ମଧ୍ୟ ନୁହେଁ ଏବଂ ଆମେ ସମସ୍ତେ ଯେ ପରେ ରହିବା ନାହିଁ, ତାହା ମଧ୍ୟ ନୁହେଁ । ଯେଉଁଠାରେ ସୃଷ୍ଟିର ପ୍ରାରମ୍ଭ କଥାର ଉଲ୍ଲେଖ ଅଛି, ସେଠାରେ କଳ୍ପାରମ୍ଭ କଥା ହିଁ ବୁଝିବାକୁ ହେବ । ଦେହର ମୃତ୍ୟୁ ଅଛି, କିନ୍ତୁ ଆତ୍ମା ଚିର ଅମର ।

ଆତ୍ମାର ଏହି ଧାରଣା ସହିତ ଏହାର ପୂର୍ଣ୍ଣତା ସମ୍ବନ୍ଧରେ ଆଉ କେତେକ ଧାରଣା ଆମେ ଦେଖିବାକୁ ପାଉ । ଆତ୍ମା ସ୍ୱୟଂପୂର୍ଣ୍ଣ । ଇହୁଦୀମାନଙ୍କ ଧର୍ମଗ୍ରନ୍ଥ ଏକଥା ସ୍ୱୀକାର କରେ ଯେ ମନୁଷ୍ୟ ପ୍ରଥମେ ପବିତ୍ର ଥିଲା । ମନୁଷ୍ୟ ନିଜ କର୍ମଦ୍ୱାରା ନିଜକୁ ଅଶୁଦ୍ଧ କରିଅଛି । ତାକୁ ତାର ସେହି ପୁରାତନ ପ୍ରକୃତି ଅର୍ଥାତ୍ ପବିତ୍ର ସ୍ୱଭାବକୁ ପୁନଶ୍ଚ ଫେରିପାଇବାକୁ ହେବ । କେହି କେହି ଏହିସବୁ କଥା ରୂପକ ଆକାରରେ, ଗଳ୍ପ ଛଳରେ ଓ ପ୍ରତୀକ ଅବଲମ୍ବନରେ ବର୍ଣ୍ଣନା କରିଥାନ୍ତି । କିନ୍ତୁ ଆମେମାନେ ଏହି କଥାଗୁଡ଼ିକୁ ବିଶ୍ଳେଷଣ କଲେ ଦେଖିବାକୁ ପାଇବା, ଏମାନେ ସମସ୍ତେ ସେହି ଗୋଟିଏ ଉପଦେଶ ଦେଇଅଛନ୍ତି—ଆତ୍ମା ସ୍ୱଭାବତଃ ପୂର୍ଣ୍ଣ ଏବଂ ମନୁଷ୍ୟକୁ ତାର ସେହି ମୌଳିକ ଶୁଦ୍ଧ ସ୍ୱଭାବ ପୁନର୍ବାର ଲାଭ କରିବାକୁ ହେବ । କେଉଁ ଉପାୟରେ ? ଈଶ୍ବରାନୁଭୂତିଦ୍ୱାରା, ଠିକ୍ ଯେପରି ଇହୁଦୀମାନଙ୍କର ବାଇବେଲ କହେ—"ଈଶ୍ବରଙ୍କ ପୁତ୍ର ମଧ୍ୟଦେଇ ନ ହେଲେ, କେହି ତାହାଙ୍କୁ ଦେଖିପାରିବେ ନାହିଁ ।" ଏଥିରୁ କ'ଣ ବୁଝାଯାଏ ? ଈଶ୍ବରଙ୍କ ଦର୍ଶନ ହିଁ ସକଳ ମାନବଜୀବନର ଉଦ୍ଦେଶ୍ୟ ଓ ଲକ୍ଷ୍ୟ । ପିତାଙ୍କ ସହିତ ଏକ ହେବାର ପୂର୍ବେ ପୁତ୍ରତ୍ୱ ଅବଶ୍ୟ ଆସିବ । ମନେ ରଖିବାକୁ ହେବ, ମନୁଷ୍ୟ ତାର ନିଜ କର୍ମଦୋଷରେ

[୧] ଗୀତା, ୨।୧୨

ତାର ନିଜ ଶୁଦ୍ଧଭାବ ହରାଇ ବସିଛୁ । ଆମେ ଯେଉଁ କଷ୍ଟ ପାଉ, ତାହା ଆମ ନିଜର କର୍ମ ଫଳରୁ । ଏଥିଲାଗି ଭଗବାନ ଦୋଷୀ ନୁହନ୍ତି । ସହଜାତ ଧାରଣା ସହିତ ପୁନର୍ଜନ୍ମବାଦର ଅଚ୍ଛେଦ୍ୟ ସମ୍ବନ୍ଧ । ପାଶ୍ଚାତ୍ୟଗଣଙ୍କ ହସ୍ତରେ ଅଙ୍ଗହାନି ହେବା ପୂର୍ବରୁ ଏହି ମତବାଦଟି ସାର୍ବଜନୀନ ଥିଲା ।

ଆପଣମାନଙ୍କ ମଧ୍ୟରୁ କେହି କେହି ପୁନର୍ଜନ୍ମବାଦ ସମ୍ବନ୍ଧରେ ଶୁଣିଅଛନ୍ତି । କିନ୍ତୁ ଏହାକୁ ସ୍ୱୀକାର କରି ନାହାନ୍ତି । "ମାନବାତ୍ମା ଅନାଦି, ଅନନ୍ତ"—ଏହି ଅପର ମତବାଦଟି ସହିତ ଜନ୍ମାନ୍ତରବାଦର ଧାରଣା ଅଙ୍ଗାଙ୍ଗୀଭାବରେ ଯୁକ୍ତ ଆସିଛି । ଯାହା କୌଣସି ସ୍ଥାନରେ ଆସି ଶେଷ ହୁଏ, ତାହା ଅନାଦି ହୋଇପାରେ ନାହିଁ ଏବଂ ଯାହା କୌଣସି ଏକ ସ୍ଥାନରୁ ଆରମ୍ଭ ହୁଏ, ତାହା ମଧ୍ୟ ଅନନ୍ତ ହୋଇପାରେ ନାହିଁ । ମାନବାତ୍ମାର ଉତ୍ପତ୍ତିରୂପ ଭୟାବହ ଅସମ୍ଭବ ବ୍ୟାପାର ଆମେ ବିଶ୍ୱାସ କରିପାରୁ ନାହିଁ । ଜନ୍ମାନ୍ତରବାଦରେ ଆତ୍ମାର ସ୍ୱାଧୀନତା କଥା ବିଘୋଷିତ ହୁଏ । ମନେକରନ୍ତୁ, ଏହା ସୁନିଶ୍ଚିତରୂପେ ସ୍ୱୀକୃତ ହେଲା ଯେ 'ଆଦି' ବୋଲି ଗୋଟିଏ ଜିନିଷ ଅଛି । ତା'ହେଲେ ମଣିଷ ଭିତରେ ଯେତେ ଅପବିତ୍ରତା ଅଛି, ତାର ଦାୟିତ୍ୱ ଭଗବାନଙ୍କ ଉପରେ ଆସି ପଡ଼ିଯାଏ । ଅସୀମ କରୁଣାମୟ ଜଗତପିତା ତା'ହେଲେ ସଂସାରର ସମୁଦାୟ ପାପ ନିମିତ୍ତ ଦାୟୀ ! ପାପ ଯଦି ଏହି ଭାବରେ ଆସିଥାଏ, ତା'ହେଲେ ଜଣେ ଅନ୍ୟ ଅପେକ୍ଷା ଅଧିକ ଦୁଃଖ କାହିଁକି ଭୋଗ କରିବ ? ଯଦି ଅସୀମ କରୁଣାମୟ ଈଶ୍ୱରଙ୍କ ନିକଟରୁ ସବୁ କିଛି ଆସିଥାଏ, ତେବେ ଏତେ ପକ୍ଷପାତ କାହିଁକି ? କାହିଁକି ଭଲା ଲକ୍ଷ ଲକ୍ଷ ଲୋକ ପଦଦଳିତ ହୁଅନ୍ତି ? ଦୁର୍ଭିକ୍ଷ ସୃଷ୍ଟି ଲାଗି ଯେଉଁମାନେ ଦାୟୀ ନୁହନ୍ତି, ସେମାନେ କାହିଁକି ଭଲା ଅନାହାରରେ ମରନ୍ତି ? ଏହା ପାଇଁ ଦାୟୀ କିଏ ? ଏଥିରେ ମନୁଷ୍ୟର କୌଣସି ହାତ ନ ଥିଲେ, ଭଗବାନଙ୍କୁ ହିଁ ଦାୟୀ କରାଯିବ । ସୁତରାଂ ଏହାର ଉତ୍କୃଷ୍ଟତର ବ୍ୟାଖ୍ୟା ହେଉଛି, କାହାର ଭାଗ୍ୟରେ ଯେଉଁସବୁ ଦୁଃଖଭୋଗ ହୁଏ, ତାହା ଲାଗି ସେ ହିଁ ଦାୟୀ । କୌଣସି ଚକ୍ରକୁ ଯଦି ମୁଁ ଗତିଶୀଳ କରେ, ତାର ଫଳ ଲାଗି ମୁଁ ହିଁ ଦାୟୀ । ମୁଁ ଯଦି ମୋର ଦୁଃଖ ଉତ୍ପନ୍ନ କରିପାରେ, ତେବେ ତାର ନିବୃତ୍ତି ମଧ୍ୟ ମୁଁ ହିଁ କରିପାରେ । ଅତଏବ, ଏହି ନିଷ୍କିତ ସିଦ୍ଧାନ୍ତରେ ଉପନୀତ ହୋଇପାରୁ ଯେ ଆମେମାନେ ସ୍ୱାଧୀନ । ଅଦୃଷ୍ଟ ବୋଲି କୌଣସି କଥା ନାହିଁ । ଆମମାନଙ୍କୁ ବାଧ୍ୟ କରିବାର କିଛି ନାହିଁ । ଆମେ ନିଜେ ଯାହା କରିଛୁ, ଆମେ ନିଜେ ତାର ନିବୃତ୍ତି ମଧ୍ୟ କରିପାରିବୁ ।

ଏହି ମତବାଦ ସମ୍ପର୍କରେ ମୁଁ ଗୋଟିଏ ଯୁକ୍ତି ଦେଉଛି । ଏହା ଟିକିଏ ଜଟିଳ ବୋଲି ଆପଣମାନଙ୍କୁ ଟିକିଏ ଧୈର୍ଯ୍ୟ ଅବଲମ୍ବନପୂର୍ବକ ଶୁଣିବାକୁ ଅନୁରୋଧ କରୁଛି । ଅଭିଜ୍ଞତା ଭିତରୁ ହିଁ ଆମେମାନେ ସର୍ବପ୍ରକାର ଜ୍ଞାନଲାଭ କରିଥାଉ । ଏହା ହିଁ ଏକମାତ୍ର ଉପାୟ । ଯାହାକୁ ଆମେ ଅଭିଜ୍ଞତା ବୋଲି କହୁଛୁ ତାହା ଆମ ଚେତନାର ଜ୍ଞାନଭୂମିରେ ହିଁ ଘଟିଥାଏ । ଉଦାହରଣସ୍ୱରୂପ ଦେଖନ୍ତୁ—ଗୋଟିଏ ଲୋକ ପିଆନୋ ବଜାଉଛି । ସେ ଜ୍ଞାତସାରରେ ପ୍ରତ୍ୟେକ ସ୍ୱରର ଚାବି ଉପରେ ତାର ପ୍ରତିଟି ଅଙ୍ଗୁଳି ରଖିଅଛି ।

ଯେତେବେଳେ ପର୍ଯ୍ୟନ୍ତ ଏହି ଅଙ୍ଗୁଳି ସଞ୍ଚାଳନ ବ୍ୟାପାରଟି ଅଭ୍ୟାସରେ ପରିଣତ ନ ହୋଇଛି, ସେପର୍ଯ୍ୟନ୍ତ ସେ ଏହି ପ୍ରକ୍ରିୟାଟି ବାରମ୍ବାର କରିଥାଏ । ତା'ପରେ ସେ ପ୍ରତ୍ୟେକ ସ୍ୱରଖଣ୍ଡକୁ ବିଶେଷ ଦୃଷ୍ଟି ନ ଦେଇ ମଧ୍ୟ ଗୋଟିଏ ସ୍ୱର ବଜାଇପାରେ । ସେହିଭଳି ଆମ ନିଜ ସମ୍ବନ୍ଧରେ ମଧ୍ୟ ଆମେ ଦେଖିବାକୁ ପାଉ ଯେ, ଅତୀତରେ ଆମେ ସଜ୍ଞାନରେ ଯେଉଁସବୁ କାର୍ଯ୍ୟ କରିଛୁ ତାହାର ଫଳରେ ହିଁ ଆମର ବର୍ତ୍ତମାନ ସଂସ୍କାରସମୂହ ରଚିତ ହୋଇଅଛି । ପ୍ରତ୍ୟେକ ଶିଶୁ କେତେଗୁଡ଼ିଏ ସଂସ୍କାର ନେଇ ଜନ୍ମିଥାଏ । ସେଗୁଡ଼ିକ କେଉଁଠାରୁ ଆସିଲା ? ଜନ୍ମରୁ କୌଣସି ଶିଶୁ ସମ୍ପୂର୍ଣ୍ଣ ସଂସ୍କାରଶୂନ୍ୟ ମନ ନେଇ ଆସେ ନାହିଁ; ଅର୍ଥାତ୍ ତାର ମନ ଅଲେଖା ଧଳା କାଗଜସଦୃଶ ନ ଥାଏ । ପୂର୍ବରୁ ହିଁ ସେ କାଗଜ ଉପରେ ଲେଖା ହୋଇଯାଇଛି । ପ୍ରାଚୀନ ଗ୍ରୀସ୍ ଓ ମିଶରର ଦାର୍ଶନିକମାନେ କହନ୍ତି—କୌଣସି ଶିଶୁ ଶୂନ୍ୟ ମନ ନେଇ ଜନ୍ମେ ନାହିଁ । ଶିଶୁ ମାତ୍ରେ ହିଁ ଅତୀତରେ ସଜ୍ଞାନ କୃତ ଶତ ଶତ କର୍ମର ସଂସ୍କାର ନେଇ ଜଗତକୁ ଆସିଥାଏ । ଏଗୁଡ଼ିକ ସେ ଏ ଜନ୍ମରେ ଅର୍ଜନ କରିନାହିଁ ଏବଂ ଆମେମାନେ ସ୍ୱୀକାର କରିବାକୁ ବାଧ୍ୟ ଯେ, ସେଗୁଡ଼ିକ ସେ ପୂର୍ବଜନ୍ମରେ ଅର୍ଜନ କରିଥିଲା । ଘୋରତର ଜଡ଼ବାଦୀକୁ ମଧ୍ୟ ସ୍ୱୀକାର କରିବାକୁ ହୋଇଛି ଯେ ଏହି ସଂସ୍କାରସମୂହ ପୂର୍ବଜନ୍ମର କର୍ମସମୂହ ଫଳରେ ଉତ୍ପନ୍ନ ହୋଇଥାଏ । ସେମାନେ କେବଳ ଏତିକି ମାତ୍ର ଅଧିକ କଥା କହନ୍ତି ଯେ ଏହା ବଂଶାନୁକ୍ରମେ ସଂକ୍ରମିତ ହୋଇଥାଏ । ଆମର ପିତାମାତା, ପିତାମହ, ପିତାମହୀ, ପ୍ରପିତାମହ, ପ୍ରପିତାମହୀମାନେ ବଂଶାନୁକ୍ରମିକ ନିୟମାନୁସାରେ ଆମମାନଙ୍କ ମଧ୍ୟରେ ବାସ କରୁଛନ୍ତି । କେବଳ ବଂଶପରମ୍ପରା ସ୍ୱୀକାର କଲେ ଯଦି ଏ ସମସ୍ତ ବିଷୟର ବ୍ୟାଖ୍ୟା ହୋଇଯାଇପାରେ, ତା'ହେଲେ ଆଉ ଆତ୍ମା ଉପରେ ବିଶ୍ୱାସ କରିବାର କୌଣସି ପ୍ରୟୋଜନ ନାହିଁ । କାରଣ ଶରୀରକୁ ଅବଲମ୍ବନ କରି ଆଜିକାଲି ସବୁକିଛିର ବ୍ୟାଖ୍ୟା ହୋଇପାରେ । ଜଡ଼ବାଦ ଓ ଅଧ୍ୟାତ୍ମବାଦର ବିଭିନ୍ନ ବିଚାର ଓ ଆଲୋଚନାର ସୂକ୍ଷ୍ମାତି-ସୂକ୍ଷ୍ମ ଦିଗ ପ୍ରତି ଆମେମାନେ ବର୍ତ୍ତମାନ ଦୃଷ୍ଟି ଦେବାକୁ ପ୍ରୟୋଜନ ମନେକରୁ ନାହୁଁ । ଯେଉଁମାନେ ବ୍ୟଷ୍ଟି ଆତ୍ମାରେ ବିଶ୍ୱାସ କରନ୍ତି, ସେମାନଙ୍କ ନିମିତ୍ତ ଏତେଦୂର ପର୍ଯ୍ୟନ୍ତ ଅର୍ଥ ବେଶ୍ ପରିଷ୍କାର ହୋଇଯାଇଛି ।

ଆମେ ଦେଖିଛୁ ଯେ କୌଣସି ଯୁକ୍ତିପୂର୍ଣ୍ଣ ସିଦ୍ଧାନ୍ତରେ ଉପନୀତ ହେବାକୁ ହେଲେ ଆମକୁ ଅବଶ୍ୟ ସ୍ୱୀକାର କରିବାକୁ ହେବ ଯେ ଆମର ପୂର୍ବଜନ୍ମ ଥିଲା । ପୁରାତନ ଓ ଆଧୁନିକ ବିଖ୍ୟାତ ଦାର୍ଶନିକ ଓ ସାଧୁ ମହାପୁରୁଷମାନଙ୍କର ଏହା ହିଁ ବିଶ୍ୱାସ । ଇହୁଦୀମାନେ ମଧ୍ୟ ଏହିଭଳି ମତରେ ବିଶ୍ୱାସ କରୁଥିଲେ । ଭଗବାନ ଯୀଶୁ ମଧ୍ୟ ଏଥିରେ ବିଶ୍ୱାସୀ ଥିଲେ । ବାଇବେଲ୍‌ରେ ସେ କହୁଛନ୍ତି—"ଆବ୍ରାହମ୍ ପୂର୍ବରୁ ମଧ୍ୟ ମୁଁ ବର୍ତ୍ତମାନ ଥିଲି ।" ଏବଂ ଅନ୍ୟତ୍ର ମଧ୍ୟ ଦେଖିବାକୁ ମିଳେ—"ଇଏ ହେଉଛନ୍ତି ସେହି ଇଲାଇଜାସ୍, ଯାହାଙ୍କର ଆଗମନ କରିବାର ଥିଲା ।"

ଯେଉଁ ବିଭିନ୍ନ ଧର୍ମସମୂହ ବିଭିନ୍ନ ଦେଶରେ ବିଭିନ୍ନ ଅବସ୍ଥା ଓ ଆବେଷ୍ଟନୀ ମଧ୍ୟରେ ଉଦ୍‌ଭୂତ ହୋଇଥିଲା, ସେଗୁଡ଼ିକର ଆଦି ଉତ୍ପତ୍ତିସ୍ଥଳ ଏସିଆ ମହାଦେଶ ଏବଂ ଏସିଆବାସୀମାନେ ହିଁ ସେଗୁଡ଼ିକ ବେଶ୍ ଭଲରୂପେ ବୁଝିପାରନ୍ତି । ଏହି ଧର୍ମସମୂହ ଯେତେବେଳେ ଉତ୍ପତ୍ତି-ସ୍ଥଳର ବାହାରେ ପ୍ରଚାରିତ ହେଲା, ସେତେବେଳେ ସେଗୁଡ଼ିକ ଅନେକ ଭ୍ରାନ୍ତ ମତ ସହିତ ମିଶ୍ରିତ ହୋଇପଡ଼ିଲା । ଖ୍ରୀଷ୍ଟାନ୍ ଧର୍ମର ଅତି ଗଭୀର ଓ ଉଦାରଭାବ ଇଉରୋପ ଏବେ ବି ଧରିପାରି ନାହିଁ । କାରଣ, ବାଇବେଲ-ପ୍ରଣେତାମାନଙ୍କର ବ୍ୟବହୃତ ଭାବ, ଚିନ୍ତାଧାରା ଓ ରୂପକସମୂହ ସହିତ ସେମାନେ ସମ୍ପୂର୍ଣ୍ଣ ଅପରିଚିତ ଥିଲେ । ଉଦାହରଣସ୍ୱରୂପ, 'ମାଡ଼ୋନା' (ଖ୍ରୀଷ୍ଟଙ୍କର ଜନନୀ)ଙ୍କ ପ୍ରତିକୃତିଟି କଥା ଧରାଯାଉ । ପ୍ରତ୍ୟେକ ଶିଳ୍ପୀ ମାଡ଼ୋନାଙ୍କୁ ସ୍ୱୀୟ ହୃଦୟଗତ ପୂର୍ବ ଧାରଣାନୁଯାୟୀ ଚିତ୍ରିତ କରିଛନ୍ତି । ମୁଁ ଯୀଶୁଖ୍ରୀଷ୍ଟଙ୍କର ଶେଷ ନୈଶଭୋଜନର ଶତଶତ ଛବି ଦେଖିଛି । ପ୍ରତ୍ୟେକଟିରେ ତାଙ୍କୁ ଗୋଟିଏ ଟେବୁଲ ପାଖରେ ଖାଇବା ପାଇଁ ବସାଯାଇଛି, କିନ୍ତୁ ସେ କେବେହେଲେ ଟେବୁଲ ଉପରେ ଖାଇ ବସୁ ନ ଥିଲେ । ସେ ସମସ୍ତଙ୍କ ସାଙ୍ଗରେ ଚକା ପକାଇ ତଳେ ବସୁଥିଲେ ଏବଂ ଗୋଟିଏ କଂସାରେ ରୁଟି ବୁଡ଼ାଇ ଖାଉଥିଲେ । ଆପଣମାନେ ବର୍ତ୍ତମାନ ଯେଉଁ ରୁଟି ଖାଉଛନ୍ତି—ସେ ରୁଟି ଏଭଳି ନ ଥିଲା । ଗୋଟିଏ ଜାତି ପକ୍ଷରେ ଅନ୍ୟ ଜାତିର ବହୁ ଶତାବ୍ଦୀଯାବତ୍ ଅପରିଚିତ ପ୍ରଥାଗୁଡ଼ିକୁ ବୁଝିବା ବଡ଼ କଠିନ । ଗ୍ରୀକ୍, ରୋମାନ୍ ଓ ଅନ୍ୟାନ୍ୟ ଜାତିଦ୍ୱାରା ସମ୍ପାଦିତ ପରିବର୍ତ୍ତନ ଓ ପରିବର୍ଦ୍ଧନ ପରେ ଇହୁଦୀ ପ୍ରଥାସମୂହ ବୁଝିପାରିବା ଇଉରୋପବାସୀଙ୍କ ପକ୍ଷରେ କେତେ କଠିନ ବ୍ୟାପାର ! ଯେଉଁସବୁ ଅଲୌକିକ ବ୍ୟାପାର ଓ ପୌରାଣିକ ଆଖ୍ୟାୟିକାଦ୍ୱାରା ଯୀଶୁଙ୍କ ଧର୍ମ ପରିବୃତ ରହିଅଛି, ସେଗୁଡ଼ିକ ମଧ୍ୟରୁ ଲୋକେ ଯେ ଏହି ସୁନ୍ଦର ଧର୍ମର ଅତି ସାମାନ୍ୟ ମାତ୍ର ମର୍ମ ହୃଦୟଙ୍ଗମ କରିପାରିଛନ୍ତି ଏବଂ ଏହାକୁ ପରବର୍ତ୍ତୀ କାଳରେ ଗୋଟିଏ ଦୋକାନଦାର ଧର୍ମରେ ପରିଣତ କରିଛନ୍ତି ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।

ବର୍ତ୍ତମାନ ଅସଲ କଥା ଉପରକୁ ଆସିବା । ଆମେ ଦେଖିଲୁ—ସେ ଧର୍ମ ଆତ୍ମାର ଅମରତ୍ୱ ସମ୍ବନ୍ଧରେ କହିଛନ୍ତି ଏବଂ ସଙ୍ଗେ ସଙ୍ଗେ ଏହା ମଧ୍ୟ ଶିକ୍ଷା ଦେଇଛନ୍ତି ଯେ ଆତ୍ମାର ପୂର୍ବ ଜ୍ୟୋତି ହ୍ରାସ ପାଇଛି ଏବଂ ଈଶ୍ୱରାନୁଭୂତିଦ୍ୱାରା ଏହାର ସେହି ଆଦି ବିଶୁଦ୍ଧ ସ୍ୱଭାବର ପୁନରୁଦ୍ଧାର କରିବାକୁ ହେବ । ବର୍ତ୍ତମାନ ଏହିସବୁ ଭିନ୍ନ ଭିନ୍ନ ଧର୍ମରେ ଈଶ୍ୱରଙ୍କ ଧାରଣା କେଉଁଭଳି ? ସର୍ବପ୍ରଥମେ ଈଶ୍ୱରଙ୍କ ସମ୍ବନ୍ଧରେ ଧାରଣା ଥିଲା ଅତି ଅସ୍ପଷ୍ଟ । ଅତି ପ୍ରାଚୀନ ଜାତିମାନେ ବିଭିନ୍ନ ଦେବଦେବୀଙ୍କର ଉପାସନା କରୁଥିଲେ— ସୂର୍ଯ୍ୟ, ପୃଥିବୀ, ଅଗ୍ନି, ଜଳ (ବରୁଣ) ଇତ୍ୟାଦି । ପ୍ରାଚୀନ ଇହୁଦୀ ଧର୍ମରେ ଆମେ ଦେଖିବାକୁ ପାଉ ଯେ ଏହିଭଳି ଅସଂଖ୍ୟ ଦେବତା ନୃଶଂସଭାବେ ପରସ୍ପର ଯୁଦ୍ଧ କରୁଛନ୍ତି । ତା'ପରେ ଦେଖିବାକୁ ପାଉ ଇଲୋହିମ୍ ଦେବତାଙ୍କୁ, ଯାହାଙ୍କୁ ଇହୁଦୀ ଓ ବାବିଲୋନବାସୀ ଉଭୟେ ହିଁ ପୂଜା କରୁଥିଲେ । ପରେ, ଏହା ମଧ୍ୟ ଦେଖିବାକୁ ମିଳିଲା ଯେ ଜଣେ ଭଗବାନଙ୍କୁ ସର୍ବାପେକ୍ଷା ଶ୍ରେଷ୍ଠ ବୋଲି ମାନ୍ୟ କରିବାକୁ ପଡ଼ିଛି । କିନ୍ତୁ ବିଭିନ୍ନ ଜାତିର

ବିଭିନ୍ନ ଧାରଣା ଅନୁଯାୟୀ ଈଶ୍ୱରଙ୍କର ଧାରଣା ମଧ୍ୟ ବିଭିନ୍ନ ଥିଲା । ପ୍ରତ୍ୟେକେ ତାଙ୍କ ଦେବତାଙ୍କୁ ସର୍ବଶ୍ରେଷ୍ଠ ବୋଲି ଦାବୀ କରନ୍ତି ଏବଂ ଯୁଦ୍ଧ କରି ତାହା ପ୍ରମାଣ କରିବାକୁ ଚେଷ୍ଟା କରନ୍ତି । ସେମାନଙ୍କ ଭିତରେ ଯେଉଁ ଜାତି ଯୁଦ୍ଧରେ ଶ୍ରେଷ୍ଠ ହୁଅନ୍ତି, ସେ ଜାତି ଏହି ଭାବରେ ହିଁ ନିଜ ଦେବତାର ଶ୍ରେଷ୍ଠତ୍ୱ ପ୍ରମାଣ କରନ୍ତି । ସେ ସବୁ ଜାତି ପ୍ରାୟଶଃ ଅସଭ୍ୟ ଥିଲେ । କିନ୍ତୁ କ୍ରମଶଃ ଉଚ୍ଚତର ଧାରଣାଗୁଡ଼ିକ ପ୍ରାଚୀନ ଧାରଣାର ସ୍ଥାନ ଅଧିକାର କଲା । ବର୍ତ୍ତମାନ ସେହିସବୁ ପୁରାତନ ଧାରଣା ଆଉ ନାହିଁ । ଯେତିକି ବା ଅଛି, ତାହା ଅସାର ବୋଲି ପରିତ୍ୟକ୍ତ ହୋଇଛି । ପୂର୍ବୋକ୍ତ ସକଳ ଧର୍ମ ହିଁ ଶତଶତ ବର୍ଷର କ୍ରମ-ବିକାଶର ଫଳ । କୌଣସିଟି ଆକାଶରୁ ଖସିପଡ଼ି ନାହିଁ । ପ୍ରତ୍ୟେକକୁ ଅଳ୍ପ ଅଳ୍ପ କରି ଅଗ୍ରସର ହେବାକୁ ପଡ଼ିଥିଲା । ତା'ପରେ ଏକେଶ୍ୱରବାଦର ଧାରଣା ଆସିଲା । ଏହି ମତରେ ଈଶ୍ୱର ଏକ ଏବଂ ସେ ସର୍ବଜ୍ଞ ଓ ସର୍ବଶକ୍ତିମାନ୍ ହୋଇ ବିଶ୍ୱର ବାହାରେ ସ୍ୱର୍ଗରେ ଅବସ୍ଥାନ କରନ୍ତି । ପ୍ରାଚୀନ ଉଦ୍ଭାବକମାନଙ୍କ ସ୍ଥୂଳବୁଦ୍ଧିର ଧାରଣାନୁଯାୟୀ ସେ ଏହି ପ୍ରକାରେ ବର୍ଣ୍ଣିତ ହୋଇଛନ୍ତି । ଯଥା—''ତାଙ୍କର ଦକ୍ଷିଣ ଓ ବାମ ପାର୍ଶ୍ୱଦ୍ୱୟ ରହିଛି ଏବଂ ତାଙ୍କ ହସ୍ତରେ ଗୋଟିଏ ପକ୍ଷୀ ସେ ଧରିଥାନ୍ତି''—ଇତ୍ୟାଦି ଇତ୍ୟାଦି । କିନ୍ତୁ ଗୋଟିଏ ବିଷୟରେ ଆମେ ସ୍ପଷ୍ଟ ଦେଖିବାକୁ ପାଉ ଯେ ଗୋଷ୍ଠୀ-ଦେବତାମାନେ ଚିରକାଳ ଲାଗି ଲୁପ୍ତ ହୋଇ ଯାଇଛନ୍ତି ଏବଂ ସେମାନଙ୍କ ସ୍ଥାନରେ ବିଶ୍ୱବ୍ରହ୍ମାଣ୍ଡର ଏକ ଅଦ୍ୱିତୀୟ ଈଶ୍ୱର ସ୍ୱୀକୃତ ହୋଇଛନ୍ତି । ସେ ହେଉଛନ୍ତି ସର୍ବଦେବେଶ୍ୱର । ଏହି ସ୍ତରରେ ମଧ୍ୟ ସେ ବିଶ୍ୱାତୀତ, ସେ ଦୁରଧିଗମ୍ୟ—କେହି ତାଙ୍କ ନିକଟକୁ ଯାଇପାରନ୍ତି ନାହିଁ । କିନ୍ତୁ ଧୀରେ ଧୀରେ ଏହି ଧାରଣାଟି ମଧ୍ୟ ପରିବର୍ତ୍ତିତ ହୋଇଗଲା ଏବଂ ଠିକ୍ ତାର ପରସ୍ତରରେ ଆମେ ଦେଖିବାକୁ ପାଇଲୁ ଏପରି ଏକ ଈଶ୍ୱର, ଯେ କି ସର୍ବତ୍ର ଓତଃପ୍ରୋତ ହୋଇ ରହିଅଛନ୍ତି ।

ନିଉ ଟେଷ୍ଟାମେଣ୍ଟରେ ଅଛି—''ହେ ଆମମାନଙ୍କର ସ୍ୱର୍ଗବାସୀ ପିତା''—ଏଠାରେ ମଧ୍ୟ ଜଣେ ଭଗବାନଙ୍କ କଥା କୁହାଯାଇଛି, ଯେ କି ମନୁଷ୍ୟଠାରୁ ଦୂରରେ ସ୍ୱର୍ଗରେ ବାସ କରନ୍ତି । ଆମେମାନେ ପୃଥିବୀରେ ବାସ କରୁଛୁ ଏବଂ ସେ ସ୍ୱର୍ଗରେ ବାସ କରୁଛନ୍ତି । ଆଉ ଟିକିଏ ଅଗ୍ରସର ହେଲେ ଆମେ ପୁଣି ଗୋଟିଏ ଶିକ୍ଷା ପାଇବା ଯେ ଈଶ୍ୱର ଚରାଚର ପ୍ରକୃତିରେ ଓତଃପ୍ରୋତଭାବରେ ଅଛନ୍ତି । ସେ ଯେ କେବଳ ସ୍ୱର୍ଗର ଈଶ୍ୱର ତାହା ନୁହେଁ, ସେ ମଧ୍ୟ ପୃଥିବୀର ଈଶ୍ୱର, ସେ ହେଉଛନ୍ତି ଆମର ଅନ୍ତର୍ଯ୍ୟାମୀ ଭଗବାନ । ହିନ୍ଦୁ ଦର୍ଶନ-ଶାସ୍ତ୍ରର ମଧ୍ୟ ଗୋଟିଏ ସ୍ତରରେ ଭଗବାନଙ୍କୁ ଠିକ୍ ଏହି ଭାବରେ ହିଁ ଆମର ଅତି ନିକଟବର୍ତ୍ତୀ କୁହାଯାଇଛି । ହିନ୍ଦୁ ଦର୍ଶନ ଏହି ପର୍ଯ୍ୟନ୍ତ ଯାଇ ଶେଷ ହୋଇଯାଇ ନାହିଁ । ଏହାର ପରେ ମଧ୍ୟ ଅଦ୍ୱୈତର ଗୋଟିଏ ସ୍ତର ରହିଛି । ଏହି ଅବସ୍ଥାରେ ମାନବ ଉପଲବ୍ଧି କରିପାରେ, ଯେଉଁ ଈଶ୍ୱରଙ୍କୁ—ଯେଉଁ ଭଗବାନଙ୍କୁ ସେ ଏତେଦିନ ଧରି ଉପାସନା କରିଆସିଛି—ସେ କେବଳମାତ୍ର ସ୍ୱର୍ଗ ଓ ପୃଥିବୀର ପିତା ନୁହନ୍ତି, ପରନ୍ତୁ ''ମୁଁ ଓ ମୋର ପିତା ଏକ''—ଆତ୍ମସ୍ଥ ହୋଇ ଯେ ଏହା ଉପଲବ୍ଧି କରନ୍ତି, ସେ ସ୍ୱୟଂ ଈଶ୍ୱର; କେବଳ ପ୍ରଭେଦ ଏତିକି ଯେ, ସେ ତାଙ୍କର ଏକ ନିମ୍ନତର ପ୍ରକାଶ । ମୋ

ଭିତରେ ଯାହା କିଛି ଯଥାର୍ଥ ବସ୍ତୁ, ତାହା ହିଁ ହେଉଛନ୍ତି ସେ ଏବଂ ତାଙ୍କ ମଧ୍ୟରେ ଯାହା ସତ୍ୟ, ତାହା ହିଁ ହେଉଛି ମୁଁ । ଏହି ଭାବରେ ହିଁ ଈଶ୍ୱର ଓ ମଣିଷର ମଧ୍ୟବର୍ତ୍ତୀ ପାର୍ଥକ୍ୟ ଦୂରୀଭୂତ ହୋଇଯାଏ । ଏହି ଭାବରେ ଆମେମାନେ ବୁଝିପାରିଲୁ ଯେ ଈଶ୍ୱରଙ୍କୁ କେଉଁ ଭାବରେ ଜାଣିଲେ ସ୍ୱର୍ଗରାଜ୍ୟ ଆମମାନଙ୍କ ଅନ୍ତରରେ ଆବିର୍ଭୂତ ହେବ ।

ପ୍ରଥମ ଅର୍ଥାତ୍ ଦ୍ୱୈତାବସ୍ଥାରେ ମନୁଷ୍ୟ ବୋଧକରେ ଯେ ସେ ଜନ୍, ଜେମସ୍, ବା ଟମ୍ ଇତ୍ୟାଦି ନାମଧେୟ ଗୋଟିଏ କ୍ଷୁଦ୍ର ବ୍ୟକ୍ତିତ୍ୱସମ୍ପନ୍ନ ଆତ୍ମା—ଏବଂ ସେ କହେ ଯେ ସେ ଅନନ୍ତକାଳ ଧରି ଏହି ଜନ୍, ଜେମସ୍ ଓ ଟମ୍ ହୋଇ ରହିଯିବ । କେବେ ହେଲେ ଅନ୍ୟ କିଛି ହେବ ନାହିଁ । କୌଣସି ଖୁଣୀ ଆସାମୀ ଯଦି କହେ—"ମୁଁ ଚିରକାଳ ଖୁଣୀ ହୋଇ ରହିଯିବି" ଏହା ଯେପରି ଠିକ୍ ସେମିତି କଥା । କିନ୍ତୁ କାଳର ପରିବର୍ତ୍ତନରେ ଟମ୍ ଅଦୃଶ୍ୟ ହୋଇ ସେହି ଖାଣ୍ଟି ଆଦିମାନବ 'ଆଦମ୍'କୁ ହିଁ ଫେରିଯାଏ ।

'ପବିତ୍ରାତ୍ମା ବ୍ୟକ୍ତିମାନେ ହିଁ ଧନ୍ୟ, କାରଣ ସେମାନେ ହିଁ ଈଶ୍ୱରଙ୍କୁ ଦର୍ଶନ କରିବେ ।' ଆମେମାନେ କ'ଣ ଈଶ୍ୱରଙ୍କୁ ଦର୍ଶନ କରିପାରିବୁ ? ଅବଶ୍ୟ ପାରିବୁ ନାହିଁ । ଆମେମାନେ କ'ଣ ଈଶ୍ୱରଙ୍କୁ ଜାଣିପାରିବୁ ? ନିଶ୍ଚୟ ନୁହେଁ । ଈଶ୍ୱର ଯଦି ଜ୍ଞାତ ହୁଅନ୍ତି, ତାହାହେଲେ ସେ ଆଉ ଈଶ୍ୱର ହୋଇ ରହି ନ ପାରନ୍ତି । ଜାଣିବା ଅର୍ଥ ସୀମାବଦ୍ଧ କରିବା, କିନ୍ତୁ "ମୁଁ ଓ ମୋର ପିତା ଏକ" । ଆତ୍ମାରେ ହିଁ ମୋର ବାସ୍ତବ ପରିଚୟ ପାଏ । କୌଣସି କୌଣସି ଧର୍ମରେ ଏହିସବୁ ଭାବ ପ୍ରକାଶିତ ହୋଇଅଛି, କୌଣସି କୌଣସି ଧର୍ମରେ ଏହାର ଇଙ୍ଗିତ ମାତ୍ର ରହିଛି, ପୁଣି କୌଣସି କୌଣସି ଧର୍ମରେ ଏହା ସମ୍ପୂର୍ଣ୍ଣ ବର୍ଜିତ ହୋଇଅଛି । ଖ୍ରୀଷ୍ଟଙ୍କ ଧର୍ମ ବର୍ତ୍ତମାନ ଏ ଦେଶରେ ଖୁବ୍ କମ୍ ଲୋକଙ୍କର ବୋଧଗମ୍ୟ । ମୋତେ କ୍ଷମା କରିବେ—ମୁଁ କହିବାକୁ ଚାହେଁ ତାଙ୍କର ଉପଦେଶ ଏଦେଶରେ କୌଣସି କାଳରେ ଉତ୍ତମରୂପେ ବୋଧଗମ୍ୟ ହୋଇପାରି ନାହିଁ ।

ପବିତ୍ରତା ଓ ପୂର୍ଣ୍ଣତାପ୍ରାପ୍ତି ଲାଗି କ୍ରମୋନ୍ନତିର ବିଭିନ୍ନ ସୋପାନର ସବୁଗୁଡ଼ିକ ହିଁ ଅତ୍ୟାବଶ୍ୟକ । ଧର୍ମର ବିଭିନ୍ନ ପଦ୍ଧତିଗୁଡ଼ିକ ମୂଳରୁ ଗୋଟିଏ ରୂପ, ଧାରଣା ବା ଭାବ ଉପରେ ପ୍ରତିଷ୍ଠିତ । ଯୀଶୁ କହିଛନ୍ତି —"ସ୍ୱର୍ଗରାଜ୍ୟ ତୁମମାନଙ୍କ ଅନ୍ତରରେ ବିଦ୍ୟମାନ", ସେ ପୁନଶ୍ଚ କହିଛନ୍ତି—"ଆମ୍ଭମାନଙ୍କ ସ୍ୱର୍ଗସ୍ଥ ପିତା ।" ଆପଣମାନେ କି ଭାବରେ ଏହି ଉପଦେଶ ଦୁଇଟିର ସାମଞ୍ଜସ୍ୟ କରିବେ ? କେବଳ ନିମ୍ନୋକ୍ତରୂପେ ହିଁ ଏହାର ସାମଞ୍ଜସ୍ୟ କରିପାରନ୍ତି । ସେ ଅଶିକ୍ଷିତ ଜନସାଧାରଣଙ୍କ ନିକଟରେ ଅର୍ଥାତ୍ ଧର୍ମ ବିଷୟରେ ଅଜ୍ଞ ଲୋକମାନଙ୍କ ସମ୍ମୁଖରେ ଶେଷୋକ୍ତ ଉପଦେଶ ଦେଇଛନ୍ତି—ସେମାନଙ୍କୁ ସେହିମାନଙ୍କ ଭାଷାରେ ହିଁ ଉପଦେଶ ଦେବାର ପ୍ରୟୋଜନ ଥିଲା । ସାଧାରଣ ଲୋକ ଚାହେଁ, କେତେଗୁଡ଼ିଏ ସହଜବୋଧ୍ୟ ଧାରଣା—ଏପରି କିଛି ଯାହା ଇନ୍ଦ୍ରିୟଦ୍ୱାରା ଅନୁଭବ କରିଯାଏ । କେହି ହୁଏତ ଜଗତରେ ଶ୍ରେଷ୍ଠ ଦାର୍ଶନିକ ହୋଇପାରନ୍ତି, କିନ୍ତୁ ତଥାପି ଧର୍ମ ବିଷୟରେ ସେ ହୁଏତ ଶିଶୁମାତ୍ର । ମନୁଷ୍ୟ ଯେତେବେଳେ ଉଚ୍ଚ ଆଧ୍ୟାତ୍ମିକ ଅବସ୍ଥା ଲାଭ କରେ, ସେତେବେଳେ ବୁଝିପାରେ ଯେ, ସ୍ୱର୍ଗରାଜ୍ୟ ତାର ଅନ୍ତରରେ ହିଁ ରହିଅଛି ।

ତାହା ହିଁ ଯଥାର୍ଥ ମନୋରାଜ୍ୟ—ସ୍ୱର୍ଗରାଜ୍ୟ । ଏହିଭଳି ଆମେ ଦେଖିବାକୁ ପାଇବା ଯେ ପ୍ରତ୍ୟେକ ଧର୍ମରେ ଯେଉଁସବୁ ଆପାତବିରୋଧ ଓ ଜଟିଳତା ପ୍ରତୀତ ହୁଏ, ତାହା କେବଳ ତାର କ୍ରମୋନ୍ନତିର ବିଭିନ୍ନ ସ୍ତରର ସୂଚନା କରିଥାଏ । ସେହି ହେତୁ ଧର୍ମବିଶ୍ୱାସ ସମ୍ବନ୍ଧରେ କାହାକୁ ନିନ୍ଦା କରିବାର ଅଧିକାର ଆମର ନାହିଁ । ଧର୍ମର କ୍ରମବିକାଶପଥରେ ଏପରିସବୁ ସ୍ତରମାନ ରହିଛି, ଯେଉଁଥିରେ ମୂର୍ତ୍ତି ଓ ପ୍ରତୀକ ଆବଶ୍ୟକ ହୋଇଥାଏ । ଜୀବ ଏହି ଅବସ୍ଥାରେ ଏହିଭଳି ଭାଷା ବୁଝିବାକୁ ହିଁ ସମର୍ଥ ।

ଆଉ ଗୋଟିଏ କଥା ଆପଣମାନଙ୍କୁ ଜଣାଇବାକୁ ଚାହେଁ । ଧର୍ମ ଅର୍ଥରେ କୌଣସି ମନଗଢ଼ା ମତ ବା ସିଦ୍ଧାନ୍ତକୁ ମାନି ନେବା ଉଚିତ ନୁହେଁ । ଆପଣମାନେ କ'ଣ ଅଧ୍ୟୟନ କରନ୍ତି, ଅଥବା କେଉଁ ମତବାଦରେ ବିଶ୍ୱାସ କରନ୍ତି, ତାହା ପ୍ରଧାନ ବିଚାର୍ଯ୍ୟ ବିଷୟ ନୁହେଁ, ବରଂ ଆପଣ କ'ଣ ଉପଲବ୍ଧି କରନ୍ତି, ତାହା ହିଁ ଜ୍ଞାତବ୍ୟ । "ପବିତ୍ରାତ୍ମାଗଣ ଧନ୍ୟ, କାରଣ ସେମାନେ ଈଶ୍ୱରଙ୍କୁ ଦର୍ଶନ କରିବେ ।" ଠିକ୍ କଥା, ଏହି ଜୀବନରେ ହିଁ ଦର୍ଶନ ହେବ । ଆଉ ଏହା ହିଁ ତ ମୁକ୍ତି । ଏପରିସବୁ ସମ୍ପ୍ରଦାୟ ରହିଛି, ଯାହା ମତରେ ଶାସ୍ତ୍ରବାକ୍ୟ ଜପ କଲେ ହିଁ ମୁକ୍ତି ମିଳିଯିବ । କିନ୍ତୁ କୌଣସି ମହାପୁରୁଷ ଏପରି ଶିକ୍ଷା ଦେଇ ନାହାନ୍ତି ଯେ ବାହ୍ୟ ଆଚାର ଅନୁଷ୍ଠାନଗୁଡ଼ିକ ମୁକ୍ତିଲାଭ ପକ୍ଷରେ ଅତ୍ୟାବଶ୍ୟକ । ମୁକ୍ତ ହେବାର ଶକ୍ତି ଆମମାନଙ୍କ ଭିତରେ ହିଁ ରହିଛି । ଆମେମାନେ ବ୍ରହ୍ମରେ ହିଁ ଅବସ୍ଥିତ ଏବଂ ବ୍ରହ୍ମ ଭିତରେ ହିଁ ଆମମାନଙ୍କର ସବୁ କ୍ରିୟା ଚାଲିଛି ।[୧]

ମତବାଦ ଓ ସମ୍ପ୍ରଦାୟ ପ୍ରଭୃତିର ପ୍ରୟୋଜନ ରହିଛି । କିନ୍ତୁ ସେସବୁ ଶିଶୁମାନଙ୍କ ଲାଗି । ସେମାନଙ୍କର ପ୍ରୟୋଜନ ସାମୟିକ । ଶାସ୍ତ୍ର କଦାପି ଆଧ୍ୟାତ୍ମିକତାର ଜନ୍ମ ଦେଇ ନାହିଁ, ବରଂ ଆଧ୍ୟାତ୍ମିକତା ହିଁ ଶାସ୍ତ୍ରର ସୃଷ୍ଟି କରିଛି—ଏକଥା ଯେପରି ଆମେ ଭୁଲି ନ ଯାଉ । ଏପର୍ଯ୍ୟନ୍ତ କୌଣସି ଧର୍ମପୁସ୍ତକ ଈଶ୍ୱରଙ୍କୁ ସୃଷ୍ଟି କରିପାରି ନାହିଁ, କିନ୍ତୁ ଈଶ୍ୱର ହିଁ ସକଳ ଉଚ୍ଚତମ ଶାସ୍ତ୍ରର ଉଦ୍ଦୀପକ । ପୁଣି ଏପର୍ଯ୍ୟନ୍ତ କୌଣସି ଧର୍ମପୁସ୍ତକ ଆତ୍ମାକୁ ସୃଷ୍ଟି କରି ନାହିଁ । ଏକଥାଟି ଯେପରି ଆମେ ଭୁଲି ନ ଯାଉ । ସକଳ ଧର୍ମର ଶେଷ ଲକ୍ଷ୍ୟ ହେଲା—ଆତ୍ମାରେ ହିଁ ଈଶ୍ୱରଙ୍କୁ ଦର୍ଶନ କରିବା । ଏହା ହିଁ ଏକମାତ୍ର ସାର୍ବଜନୀନ ଧର୍ମ । ଧର୍ମଗୁଡ଼ିକ ମଧ୍ୟରେ ସାର୍ବଜନୀନ ବୋଲି ଯଦି କିଛି ଥାଏ, ତା' ହେଲେ ଏହି ଈଶ୍ୱରାନୁଭୂତିକୁ ମୁଁ ଏଠାରେ ଏହାର ସ୍ଥଳାଭିଷିକ୍ତ କରିବାକୁ ଚାହେଁ । ଆଦର୍ଶ ଓ ରୀତିନୀତି ଭିନ୍ନ ହୋଇପାରେ; କିନ୍ତୁ ଏହି ଈଶ୍ୱରାନୁଭୂତି ହିଁ କେନ୍ଦ୍ରବିନ୍ଦୁ ସ୍ୱରୂପ । ସହସ୍ର ବ୍ୟାସାର୍ଦ୍ଧ ଥାଇପାରେ—କିନ୍ତୁ ଏମାନେ ଗୋଟିଏ କେନ୍ଦ୍ରରେ ମିଳିତ ହୁଅନ୍ତି ଏବଂ ଏହା ହିଁ ଈଶ୍ୱର-ଦର୍ଶନ । ଏହା ଏହି ଇନ୍ଦ୍ରିୟଗ୍ରାହ୍ୟ ଜଗତର ଅତୀତ ବସ୍ତୁ । ଏହା ଚିରକାଳ ପାନ, ଭୋଜନ, ବୃଥା ବାକ୍ୟବ୍ୟୟ ଏବଂ ଏହି ଛାୟାବତ୍ ମିଥ୍ୟା ଓ ସ୍ୱାର୍ଥପୂର୍ଣ୍ଣ ଜଗତର ବାହାରେ । ସମୁଦାୟ ଗ୍ରନ୍ଥ, ଧର୍ମବିଶ୍ୱାସ ଓ ଜଗତର ସକଳ ପ୍ରକାର ଅସାର ଆଡ଼ମ୍ବରର ଊର୍ଦ୍ଧ୍ୱରେ ଏହି ଗୋଟିଏ

---

୧ । ତଥା ସର୍ବାଣି ଭୂତାନି ମତ୍‌ସ୍ଥାନୀତ୍ୟୁପଧାରୟ—ଗୀତା, ୯।୬

ବସ୍ତୁ ରହିଅଛି ଏବଂ ଏହା ହିଁ ହେଲା ତୁମ ଅନ୍ତରରେ ଈଶ୍ୱରାନୁଭୂତି । ଜଣେ ବ୍ୟକ୍ତି ପୃଥିବୀର ବିଭିନ୍ନ ସଂପ୍ରଦାୟର ମତବାଦରେ ବିଶ୍ୱାସୀ ହୋଇପାରନ୍ତି—ଏପର୍ଯ୍ୟନ୍ତ ଯେତେ ପ୍ରକାର ଧର୍ମପୁସ୍ତକ ପ୍ରଣୀତ ହୋଇଛି, ସେତେକ ସବୁ ସ୍ମରଣରେ ରଖିପାରନ୍ତି ଏବଂ ପୃଥିବୀର ସକଳ ତୀର୍ଥନଦୀର ପବିତ୍ର ବାରିରେ ନିଜକୁ ଅଭିଷିକ୍ତ କରିପାରନ୍ତି; କିନ୍ତୁ ଯଦି ତାଙ୍କର ଈଶ୍ୱରାନୁଭୂତି ନ ହୁଏ, ତେବେ ମୁଁ ତାଙ୍କୁ ଘୋର ନାସ୍ତିକ ବୋଲି ହିଁ କହିବି । ଆଉ ଜଣକ କଥା ଦେଖନ୍ତୁ—ସେ ଯଦି କେବେ ହେଲେ କୌଣସି ଗୀର୍ଜା ବା ମସଜିଦ୍‌ରେ ପ୍ରବେଶ କରି ନ ଥାନ୍ତି, କୌଣସି ଧର୍ମାନୁଷ୍ଠାନ କରି ନ ଥାନ୍ତି, ଅଥଚ ଅନ୍ତରରେ ଈଶ୍ୱରଙ୍କୁ ଅନୁଭବ କରିଥାନ୍ତି ଏବଂ ତା' ଫଳରେ ସେ ଏହି ଜଗତରେ ଅସାର ଆଡ଼ମ୍ବରର ଊର୍ଦ୍ଧ୍ୱକୁ ଉଠିଯାଇଥାନ୍ତି, ତେବେ ସେ ହେଉଛନ୍ତି ପ୍ରକୃତରେ ମହାତ୍ମା, ସେ ହେଉଛନ୍ତି ପ୍ରକୃତରେ ସାଧୁ । ଆପଣମାନେ ଯେକୌଣସି ନାମରେ ତାଙ୍କୁ ଅଭିହିତ କରି-ପାରନ୍ତି, କିନ୍ତୁ ଯେତେବେଳେ ଦେଖିବେ ଯେ କେହି କହୁଛି—"ମୁଁ ହିଁ କେବଳ ଠିକ୍, ମୋ ସଂପ୍ରଦାୟ ହିଁ ଯଥାର୍ଥ ପଥ ପାଇଛି ଏବଂ ଆଉ ସବୁ ଭୁଲ କରୁଛନ୍ତି", ସେତେବେଳେ ଜାଣିବେ ଯେ ତାର ସବୁ ଭୁଲ । ସେ ଜାଣେ ନା ଯେ ଅପର ମତସମୂହର ପ୍ରାମାଣ୍ୟ ଉପରେ ତା' ମତର ସତ୍ୟତା ନିର୍ଭର କରୁଛି । ସମୁଦାୟ ମାନବଜାତି ପ୍ରତି ପ୍ରେମ ଓ ସେବା ହିଁ ଠିକ୍ ଠିକ୍ ଧାର୍ମିକତାର ପ୍ରମାଣ । ଲୋକେ ଭାବର ଉଚ୍ଛ୍ୱାସରେ ଯେ କହିଥାନ୍ତି—"ସବୁ ମଣିଷ ହିଁ ମୋର ଭାଇ"—ମୁଁ ସେକଥା ଲକ୍ଷ୍ୟ କରି ଏ କଥା କହୁ ନାହିଁ । କିନ୍ତୁ ମୁଁ ଏହା ହିଁ କହିବାକୁ ଚାହେଁ ଯେ ସମସ୍ତ ମାନବଜୀବନର ଏକତ୍ୱାନୁଭୂତି ହେବା ଆବଶ୍ୟକ । ସକଳ ସଂପ୍ରଦାୟ ଓ ଧର୍ମବିଶ୍ୱାସ ହିଁ ସେତେବେଳଯାଏ ଅତି ସୁନ୍ଦର, ଏବଂ ଯେତେବେଳ ପର୍ଯ୍ୟନ୍ତ ସେମାନେ ଅପରକୁ ଅସ୍ୱୀକାର ନ କରନ୍ତି, ସେତେବେଳ ପର୍ଯ୍ୟନ୍ତ ସେମାନେ ସକଳ ମାନବସମାଜକୁ ଯଥାର୍ଥ ଧର୍ମ ଦିଗରେ ହିଁ ପରିଚାଳିତ କରୁଥାଆନ୍ତି—ସେପର୍ଯ୍ୟନ୍ତ ମୁଁ ସେଗୁଡ଼ିକୁ ମୋର ବୋଲି ସ୍ୱୀକାର କରିବାକୁ ରାଜି ଅଛି । ମୁଁ ଆହୁରି ମଧ୍ୟ କହିବାକୁ ଚାହେଁ ଯେ କୌଣସି ସଂପ୍ରଦାୟରେ ଜନ୍ମଗ୍ରହଣ କରିବା ଭଲ, କିନ୍ତୁ ଏହାର ଗଣ୍ଡି ଭିତରେ ମରିବା ଭଲ ନୁହେଁ । ଶିଶୁ ହୋଇ ଜନ୍ମଗ୍ରହଣ କରିବା ନିଶ୍ଚୟ ଭଲ, କିନ୍ତୁ ଆମରଣ ଶିଶୁ ହୋଇ ରହିଯିବା ଆଦୌ ଭଲ ନୁହେଁ । ଧର୍ମ-ସଂପ୍ରଦାୟ, ଆଚାର ଅନୁଷ୍ଠାନ, ପ୍ରତୀକାଦି ଶିଶୁମାନଙ୍କ ଲାଗି ଭଲ, କିନ୍ତୁ ଶିଶୁ ଯେତେବେଳେ ବୟଃପ୍ରାପ୍ତ ହେବ, ସେତେ-ବେଳେ ତାକୁ ହୁଏତ ଏହି ଗଣ୍ଡିସମୂହର ବା ନିଜର ଶିଶୁତ୍ୱର ସମ୍ପୂର୍ଣ୍ଣ ବାହାରକୁ ଚାଲିଯିବାକୁ ହେବ । ଚିରକାଳ ପାଇଁ ଶିଶୁ ହୋଇ ରହିବା କୌଣସି ପ୍ରକାରେ ଭଲ ନୁହେଁ । ଏହା ସତେକି ବିଭିନ୍ନ ବୟସର ଓ ଆକାରର ଶରୀରରେ ଗୋଟିଏ ମାପର ଜାମା ପିନ୍ଧାଇବାର ଚେଷ୍ଟାସଦୃଶ ।

ମୁଁ ଜଗତରେ ବିଭିନ୍ନ ସଂପ୍ରଦାୟ ରହିବାଟାକୁ ନିନ୍ଦା କରୁ ନାହିଁ । ଈଶ୍ୱର କରନ୍ତୁ ଆହୁରି ଦୁଇକୋଟି ସଂପ୍ରଦାୟ ହୁଅନ୍ତୁ । ତା'ହେଲେ ପସନ୍ଦାନୁସାରେ ନିଜ ନିଜ ଉପଯୋଗୀ ଧର୍ମମତ ନିର୍ବାଚନର ଅଧିକ ସୁବିଧା ରହିବ । କିନ୍ତୁ ଗୋଟିଏ ମାତ୍ର ଧର୍ମକୁ ଯେତେବେଳେ

କେହି ସମସ୍ତଙ୍କ ଉପରେ ଚପେଇ ଦେବାକୁ ଚାହେଁ, ସେତେବେଳେ ହିଁ ମୋର ଯାହା ଆପତ୍ତି । ଯଦିଓ ସବୁ ଧର୍ମ ପରମାର୍ଥତଃ ଏକ, ତଥାପି ବିଭିନ୍ନ ଜାତିର ବିଭିନ୍ନ ଅବସ୍ଥାରେ ସଞ୍ଜାତ ବିଭିନ୍ନ ଆଚାର ଅନୁଷ୍ଠାନ ରହିବ ହିଁ ରହିବ । ଆମ ପ୍ରତ୍ୟେକର ହିଁ ଗୋଟିଏ ବ୍ୟକ୍ତିଗତ ଧର୍ମ, ଅର୍ଥାତ୍ ବାହ୍ୟ ପ୍ରକାଶର ଦୃଷ୍ଟିରେ ଗୋଟିଏ ନିଜସ୍ୱ ଧର୍ମ ରହିବା ଆବଶ୍ୟକ ।

ବହୁବର୍ଷ ପୂର୍ବେ ମୁଁ ମୋର ଜନ୍ମଭୂମିରେ ଅତୀବ ଶୁଦ୍ଧସ୍ୱଭାବ ଜଣେ ସାଧୁ ମହାତ୍ମାଙ୍କୁ ଦର୍ଶନ କରିବାକୁ ଯାଇଥିଲି । ଆମେ ଆମର ସ୍ୱୟମ୍ଭୂ ବେଦ, ଆପଣମାନଙ୍କର ଧର୍ମଗ୍ରନ୍ଥ ବାଇବେଲ, କୋରାନ୍ ଏବଂ ସବୁ ପ୍ରକାର ସ୍ୱପ୍ରକାଶ ଧର୍ମଗ୍ରନ୍ଥ ସମ୍ବନ୍ଧରେ ଆଲୋଚନା କଲୁ । ଆମ ଆଲୋଚନାର ଶେଷରେ ସେହି ସାଧୁ ମୋତେ ଟେବୁଲ ଉପରୁ ଖଣ୍ଡିଏ ପୁସ୍ତକ ଆଣିବାକୁ ଆଜ୍ଞା କଲେ । ଏହି ପୁସ୍ତକରେ ଅନ୍ୟାନ୍ୟ ବିଷୟ ମଧ୍ୟରେ ସେହି ବର୍ଷର ବର୍ଷଣ-ଫଳାଫଳର ଉଲ୍ଲେଖ ଥିଲା । ସାଧୁ ମହାଶୟ ମୋତେ ତାହା ପାଠ କରିବାକୁ କହିଲେ ଏବଂ ମୁଁ ସେଥିରୁ ବୃଷ୍ଟିପାତର ପରିମାଣ ତାଙ୍କୁ ପଢ଼ି ଶୁଣାଇଲି । ସେତେବେଳେ ସେ କହିଲେ—"ବର୍ତ୍ତମାନ ତୁମେ ଏହି ପୁସ୍ତକଟିକୁ ଚିପୁଡ଼ି ଦେଖ ତ ।" ତାଙ୍କ କଥା ମାନି ମୁଁ ତାହା ହିଁ କଲି । ସେ କହିଲେ—"ବତ୍ସ ! ସେଥିରୁ ବିନ୍ଦୁଏ ଜଳ ଭଲ ନିଗିଡ଼ିଲା ? ଯେତେବେଳେଯାଏ ଜଳ ନ ବାହାରୁଛି, ସେତେବେଳଯାଏ ଏହା କେବଳ ପୁସ୍ତକଖଣ୍ଡିଏ । ସେହିପରି, ଯେତେଦିନ ପର୍ଯ୍ୟନ୍ତ ତୁମର ଧର୍ମ ତୁମକୁ ଈଶ୍ୱର-ଉପଲବ୍ଧି ନ କରାଏ, ସେତେଦିନ ଏହା ବୃଥା ! ଧର୍ମ ଲାଗି ଯେ କେବଳ ଗ୍ରନ୍ଥପାଠ କରନ୍ତି, ତାଙ୍କର ଅବସ୍ଥା ହେଲା ଠିକ୍ ଗୋଟିଏ ଗର୍ଦ୍ଦଭସଦୃଶ । ଗର୍ଦ୍ଦଭ ତା' ପିଠିରେ ଚିନିବସ୍ତା ବହନ କରି ବୁଲେ । ମାତ୍ର ଚିନିର ମଧୁରତ୍ୱ କିଅଣ ତାହା ନିଜେ ବିଚାରି ଜାଣେ ନାହିଁ ।"

ମନୁଷ୍ୟକୁ କିଅଣ ଏହି ଉପଦେଶ ଦେବା ଉଚିତ ଯେ, ସେ ଆଣ୍ଠୁ ମାଡ଼ି ବସି କାନ୍ଦୁ, ଆଉ କହୁ—"ମୁଁ ଅତି ହତଭାଗ୍ୟ ଆଉ ପାପୀ ?" ନା, ତାହା ନ କରି ବରଂ ତାର ଦେବତ୍ୱର କଥା ତାକୁ ସ୍ମରଣ କରାଇଦେବା ଉଚିତ ? ମୁଁ ଗୋଟିଏ ଗଳ୍ପ କହୁଛି । ଶିକାର ଅନ୍ୱେଷଣରେ ଆସି ଗୋଟିଏ ସିଂହୀ ପଲେ ମେଣ୍ଢାଙ୍କୁ ଆକ୍ରମଣ କଲା । ଶିକାର ଧରିବା ଲାଗି ସେ ଯେତେବେଳେ ଝାମ୍ପ ମାରିଲା, ସେତେବେଳେ ତାର ଗୋଟିଏ ଛୁଆ ଜନ୍ମ ହୋଇପଡ଼ିଲା ଏବଂ ସିଂହୀଟି ମଧ୍ୟ ସେଠାରେ ସଙ୍ଗେ ସଙ୍ଗେ ପଡ଼ି ମରିଗଲା । ସିଂହଛୁଆଟି ସେହି ମେଣ୍ଢାମାନଙ୍କ ସଙ୍ଗେ ବଢ଼ିବାକୁ ଲାଗିଲା । ସେ ଘାସ ଖାଇଲା ଏବଂ ମେଣ୍ଢାମାନଙ୍କ ଭଳି ବୋବେଇଲା ମଧ୍ୟ । ସେ ମୋଟେ ଜାଣି ନ ଥିଲା ଯେ ତାର ଜାତି ହେଉଛି ସିଂହ । ଦିନେ ଗୋଟିଏ ସିଂହ ହଠାତ୍ ବିସ୍ମୟରେ ଦେଖିଲା ଯେ ମେଣ୍ଢାପଲରେ ଗୋଟିଏ ସିଂହ ଘାସ ଚରୁଛି ଓ ମେଣ୍ଢାଙ୍କ ଭଳି ମେଁ ମେଁ ହୋଇ ବୋବାଉଛି । ଏହି ସିଂହକୁ ଦେଖିବା ମାତ୍ରେ ମେଣ୍ଢାପଲ ଭୟରେ ଦଉଡ଼ିଲେ ଏବଂ ସେମାନଙ୍କ ଭିତରେ ସେହି ସିଂହଟି ମଧ୍ୟ ଭୟରେ ଦୌଡ଼ିବାକୁ ଲାଗିଲା—କିନ୍ତୁ ସିଂହଟି ସୁଯୋଗ ଖୋଜି ଲାଗିଲା । ଦିନେ

ମେଣ୍ଢାପଲରେ ସେହି ହତଭାଗ୍ୟ ସିଂହଟିକୁ ନିଦରେ ଶୋଇଥିବାର ଦେଖି ତାକୁ ନିଦରୁ ଉଠାଇ ବଣର ସିଂହଟି କହିଲା—"ତୁ ସିଂହ ଅଟୁ ।" ସେ କିନ୍ତୁ କହିଲା—"ନା", ଏତିକି କହି ସେ ମେଣ୍ଢାଟିଏ ଭଳି ବୋବାଇବାକୁ ଲାଗିଲା । କିନ୍ତୁ ଆଗନ୍ତୁକ ସିଂହଟି ତାକୁ ଗୋଟିଏ ହ୍ରଦକୂଳକୁ ନେଇଯାଇ ପାଣି ଭିତରେ ତାର ନିଜ ପ୍ରତିବିମ୍ବଟିକୁ ଦେଖାଇ କହିଲା—"ଦେଖ ତ ! ତୋର ଆକୃତି ମୋ ଭଳି କି ନା !" ସେ ତାର ପ୍ରତିବିମ୍ବ ଦେଖି ସ୍ୱୀକାର କଲା ଯେ ତାର ଆକୃତି ସିଂହସଦୃଶ । ତା'ପରେ ସିଂହଟି ଗର୍ଜନ କଲା ଏବଂ ତାକୁ ମଧ୍ୟ ସେହିଭଳି କରିବାକୁ କହିଲା । ନିଜକୁ ମେଣ୍ଢା ମନେକରୁଥିବା ସିଂହଟି ମଧ୍ୟ ସେହିଭଳି ଚେଷ୍ଟା କରିବାକୁ ଲାଗିଲା ଏବଂ ତା'ଭଳି ଖୁବ୍ ଗମ୍ଭୀର ଗର୍ଜନ କରିବାକୁ ଲାଗିଲା । ବର୍ତ୍ତମାନ ସେ ଆଉ ମେଣ୍ଢା ନୁହେଁ, ସେ ସିଂହ । ବନ୍ଧୁଗଣ ! ମୁଁ ଆପଣମାନଙ୍କୁ ସମସ୍ତଙ୍କୁ କହିବାକୁ ଚାହେଁ ଯେ ଆପଣମାନେ ସମସ୍ତେ ସିଂହସଦୃଶ ପରାକ୍ରମଶାଳୀ । ଯଦି ଆପଣମାନଙ୍କ ଗୃହ ଅନ୍ଧକାରାବୃତ ଥାଏ, ତାହାହେଲେ କଅଣ ଆପଣମାନେ ଛାତିରେ ହାତ ବାଡ଼େଇ "ଅନ୍ଧକାର ଅନ୍ଧକାର" ବୋଲି କାନ୍ଦିବାକୁ ଲାଗିବେ ? ନା—ତା' ନୁହେଁ । ଆଲୋକ ପାଇବାର ଏକମାତ୍ର ଉପାୟ ହେଲା ଆଲୋକ ଜଳାଇବା । ତା'ହେଲେ ଅନ୍ଧକାର ଦୂରୀଭୂତ ହୋଇଯିବ । ଊର୍ଦ୍ଧ୍ୱର ଆଲୋକ ପାଇବାର ଏକମାତ୍ର ଉପାୟ ହେଲା ଅନ୍ତର ମଧ୍ୟରେ ଆଧ୍ୟାତ୍ମିକ ଆଲୋକ ଜଳାଇ ରଖିବା । ତା'ହେଲେ ଯାଇ ପାପ ଓ ଅପବିତ୍ରତାରୂପକ ଅନ୍ଧକାର ଦୂରୀଭୂତ ହୋଇଯିବ । ତୁମର ଉଚ୍ଚ ପ୍ରକୃତିର ବିଷୟ ଚିନ୍ତା କର । ହୀନତା ସମ୍ବନ୍ଧରେ କିଛି ଭାବ ନାହିଁ ।

# ବୈଦକ ଧର୍ମାଦର୍ଶ

ଆମର ସର୍ବାପେକ୍ଷା ପ୍ରୟୋଜନ ଧର୍ମବିଷୟକ ଚର୍ଚ୍ଚା ହେଲ—ଆତ୍ମା, ଈଶ୍ୱର ଏବଂ ଧର୍ମସମ୍ପର୍କୀୟ ଯାହା କିଛି ବିଷୟ । ଆମେ ବେଦର ସଂହିତା ବିଷୟରେ କିଛି ଆଲୋଚନା କରିବା । ସଂହିତାର ଅର୍ଥ ସ୍ତୋତ୍ରସଂଗ୍ରହ—ଏଗୁଡ଼ିକ ହିଁ ପ୍ରାଚୀନତମ ଆର୍ଯ୍ୟସାହିତ୍ୟ । ଯଥାଯଥଭାବେ କହିବାକୁ ଗଲେ, ଏଗୁଡ଼ିକୁ ପୃଥିବୀର ପ୍ରାଚୀନତମ ସାହିତ୍ୟ କହିବାକୁ ହେବ । ଏଗୁଡ଼ିକ ଅପେକ୍ଷା ପ୍ରାଚୀନତର ସାହିତ୍ୟର ନିଦର୍ଶନ ଇତସ୍ତତଃ ବିକ୍ଷିପ୍ତ ଥାଇ-ପାରେ, କିନ୍ତୁ ସେଗୁଡ଼ିକୁ ଠିକ୍ ଠିକ୍ ଗ୍ରନ୍ଥ ବା ସାହିତ୍ୟ ଆଖ୍ୟା ଦିଆଯାଇପାରେ ନାହିଁ । ସଂଗୃହୀତ ଗ୍ରନ୍ଥ ହିସାବରେ ପୃଥିବୀରେ ଏଗୁଡ଼ିକ ପ୍ରାଚୀନତମ ଏବଂ ଏହିଗୁଡ଼ିକରେ ହିଁ ଆର୍ଯ୍ୟଜାତିର ସର୍ବପ୍ରଥମ ମନୋଭାବ, ଆକାଙ୍କ୍ଷା, ରୀତିନୀତି ସମ୍ବନ୍ଧରେ ଯେଉଁସବୁ ପ୍ରଶ୍ନମାନ ଉଠିଛି, ସେସବୁ ଚର୍ଚ୍ଚିତ ହୋଇଅଛି । ପ୍ରଥମେ ହିଁ ଆମେମାନେ ଗୋଟିଏ ଅଦ୍ଭୁତ ଧାରଣା ଦେଖିବାକୁ ପାଉ । ଏହି ସ୍ତୋତ୍ରସମୂହ ବିଭିନ୍ନ ଦେବତାଙ୍କ ଉଦ୍ଦେଶ୍ୟରେ ରଚିତ ସ୍ତୁତି-ଗାନ । 'ଦେବତା' ଶବ୍ଦର ଅର୍ଥ ହେଲ 'ଦ୍ୟୁତିସମ୍ପନ୍ନ' । ସେମାନଙ୍କର ସଂଖ୍ୟା ଅନେକ—ଇନ୍ଦ୍ର, ବରୁଣ, ମିତ୍ର, ପର୍ଜନ୍ୟ ଇତ୍ୟାଦି । ଆମେ ଗୋଟିଏ ପରେ ଗୋଟିଏ ବହୁବିଧ ପୌରାଣିକ ଓ ରୂପକ ମୂର୍ତ୍ତି ଦେଖିବାକୁ ପାଉ । ଦୃଷ୍ଟାନ୍ତସ୍ୱରୂପ, ବଜ୍ରଧର ଇନ୍ଦ୍ର—ମନୁଷ୍ୟ ପାଇଁ ମେଘମାନେ ଜଳବୃଷ୍ଟି କରିବେଲେ ଯେଉଁ ସର୍ପ ବିଘ୍ନ ଉତ୍ପାଦନ କରେ, ତାକୁ ଇନ୍ଦ୍ର ଆଘାତ କରନ୍ତି । ସେ ବଜ୍ର ନିକ୍ଷେପ କରି ସର୍ପକୁ ନିହତ କରନ୍ତି । ତା'ପରେ ମୂଷଳଧାରରେ ବୃଷ୍ଟି ହୁଏ । ସେଥିରେ ସନ୍ତୁଷ୍ଟ ହୋଇ ମନୁଷ୍ୟମାନେ ଇନ୍ଦ୍ରଙ୍କୁ ଯଜ୍ଞାହୁତି ଦ୍ୱାରା ଆରାଧନା କରନ୍ତି । ସେମାନେ ଯଜ୍ଞକୁଣ୍ଡରେ ଅଗ୍ନି ସ୍ଥାପନ କରି ସେଠାରେ ପଶୁବଧ କରନ୍ତି ଏବଂ ଶଳାକା ଉପରେ ଏହାକୁ ପକ୍ୱ କରି ଇନ୍ଦ୍ରଙ୍କୁ ନିବେଦନ କରନ୍ତି । ଏହି ପ୍ରାଚୀନ ଆର୍ଯ୍ୟମାନଙ୍କର ଥିଲ 'ସୋମଲତା' ନାମକ ଏକ ସର୍ବଜନପ୍ରିୟ ଔଷଧି । ଏହି ଜିନିଷଟି ଯେ ପ୍ରକୃତରେ କଣ ତାହା ବର୍ତ୍ତମାନ କେହି ନିରୂପଣ କରିପାରୁ ନାହାନ୍ତି । ଏହା ବୋଧ ହୁଏ ସମ୍ପୂର୍ଣ୍ଣ ଲୋପ ପାଇଯାଇଛି । କିନ୍ତୁ ଗ୍ରନ୍ଥପାଠରେ ଆମେ ଜାଣିପାରୁ—ଏହା ନିଷ୍ପେଷଣ କଲେ, ଦୁଗ୍ଧବତ୍ ଏକପ୍ରକାର ରସ ତହିଁରୁ ବାହାରେ । ଜଣାଯାଏ ଯେ ସୋମରସ ମାଦକଦ୍ରବ୍ୟ । ଆର୍ଯ୍ୟମାନେ ଏହି ସୋମରସକୁ ଇନ୍ଦ୍ର ଓ ଅନ୍ୟାନ୍ୟ ଦେବତା-ମାନଙ୍କ ଉଦ୍ଦେଶ୍ୟରେ ନିବେଦନ କରୁଥିଲେ ଏବଂ ନିଜେ ମଧ୍ୟ ପାନ କରୁଥିଲେ । କେବେ କେବେ ପୁଣି ଆରାଧକମାନଙ୍କ ସମେତ ଦେବତାମାନେ ମଧ୍ୟ ବେଶୀ ମାତ୍ରାରେ ଏହି ମାଦକ ପାନୀୟଟିର ବ୍ୟବହାର କରୁଥିଲେ । ଦେବରାଜ ଇନ୍ଦ୍ର ମଧ୍ୟ କେବେ କେବେ ସୋମରସ ପାନ କରି ମତ୍ତ ହୋଇପଡ଼ୁଥିଲେ । ଏହି ଗ୍ରନ୍ଥରେ ଏହା ମଧ୍ୟ ଲେଖାଯାଇଛି । ଥରେ ଇନ୍ଦ୍ର ଏତେ ଅଧିକ ସୋମରସ ପାନ କରିଥିଲେ ଯେ ସେ ଅସଂଲଗ୍ନ କଥା କହି

ବାତୁଳତା ପ୍ରକାଶ କଲେ । ବରୁଣ ଦେବତାଙ୍କର ମଧ୍ୟ ସେହି ଗୋଟିଏ ଗତି । ସେ ପୁଣି ଆଉ ଜଣେ ଶକ୍ତିଶାଳୀ ଦେବତା ଏବଂ ସେ ଇନ୍ଦ୍ରଙ୍କ ଭଳି ତାଙ୍କର ଉପାସକବୃନ୍ଦଙ୍କୁ ରକ୍ଷା କରନ୍ତି । ଉପାସକବୃନ୍ଦ ମଧ୍ୟ ତାଙ୍କୁ ସୋମରସ ଆହୁତି ଦେଇ ତାଙ୍କର ସ୍ତୁତି କରି-ଥାନ୍ତି । ଯୁଦ୍ଧଦେବତା (ମରୁତ) ଓ ଅନ୍ୟ ଦେବତାମାନଙ୍କ ବିଷୟ ମଧ୍ୟ ଏକା ଭଳି । କିନ୍ତୁ ଅନ୍ୟାନ୍ୟ ପୌରାଣିକ କାହାଣୀଠାରୁ ଏହାର ବିଶେଷତ୍ୱ ଏହି ଯେ, ଏହିସବୁ ଦେବତାଙ୍କର ପ୍ରତ୍ୟେକ ଚରିତ୍ରରେ ଅନନ୍ତର (ଅନନ୍ତ ଶକ୍ତିର) ଭାବ ରହିଅଛି । ଏହି ଅନନ୍ତ କେବେକେବେ ଭାବରୂପରେ ଚିତ୍ରିତ, କେବେକେବେ ଆଦିତ୍ୟରୂପରେ ବର୍ଣ୍ଣିତ, କେବେ ବା ଅନ୍ୟାନ୍ୟ ଦେବତାଙ୍କ ଚରିତ୍ରରେ ଆରୋପିତ । ଇନ୍ଦ୍ରଙ୍କ କଥା ହିଁ ଧରନ୍ତୁ । ବେଦର କୌଣସି କୌଣସି ଅଂଶରେ ଦେଖିବାକୁ ମିଳିବ ଯେ, ଇନ୍ଦ୍ର ମନୁଷ୍ୟ ଭଳି ଶରୀରଧାରୀ ପୁରୁଷ, ସେ ଅତୀବ ଶକ୍ତିଶାଳୀ, କେବେ କେବେ ସେ ସୁବର୍ଣ୍ଣ ବର୍ମ ପରିହିତ । କେବେ କେବେ ପୁଣି ସେ ଉପାସକମାନଙ୍କ ନିକଟରେ ଅବତରଣ କରି ସେମାନଙ୍କ ସହିତ ଆହାର ଓ ବସବାସ କରନ୍ତି । ଅସୁରମାନଙ୍କ ସହ ଯୁଦ୍ଧ କରନ୍ତି, ସର୍ପ-କୁଳର ଧ୍ୱଂସସାଧନ କରନ୍ତି ଇତ୍ୟାଦି ଇତ୍ୟାଦି । ପୁନଶ୍ଚ, ଆଉ ଗୋଟିଏ ସ୍ତୋତ୍ରରେ ଦେଖିବାକୁ ମିଳେ ଯେ, ଇନ୍ଦ୍ରଙ୍କୁ ଉଚ୍ଚ ଆସନ ଦିଆଯାଇଛି । ସେ ସର୍ବଶକ୍ତିମାନ, ସର୍ବତ୍ର ବିଦ୍ୟମାନ ଏବଂ ସର୍ବ ଜୀବର ଅନ୍ତର୍ଦ୍ରଷ୍ଟା । ବରୁଣ ଦେବତାଙ୍କ ସମ୍ବନ୍ଧରେ ବି ଏହିଭଳି କୁହାଯାଇଛି । ସେ ମଧ୍ୟ ଇନ୍ଦ୍ରଙ୍କ ସଦୃଶ ଅନ୍ତରୀକ୍ଷର ଦେବତା ଓ ବୃଷ୍ଟିର ଅଧିପତି । ତା'ପରେ ସହସା ଦେଖିବାକୁ ମିଳେ ଯେ ସେ ଉଚ୍ଚାସନକୁ ଉନ୍ନୀତ । ତାଙ୍କୁ ସର୍ବବ୍ୟାପୀ ଓ ସର୍ବଶକ୍ତିମାନ୍ ପ୍ରଭୃତି କୁହାଯାଇଛି । ମୁଁ ଆପଣମାନଙ୍କ ନିକଟରେ ବରୁଣ ଦେବଙ୍କର ସର୍ବଶ୍ରେଷ୍ଠ ଚରିତ୍ର ଯେଉଁଭଳିଭାବେ ବର୍ଣ୍ଣିତ ହୋଇଛି, ସେ ସମ୍ବନ୍ଧରେ ଗୋଟିଏ ସ୍ତୋତ୍ର ପାଠ କରିବି । ସେଥିରୁ ଆପଣମାନେ ବୁଝିପାରିବେ, ମୁଁ କ'ଣ କହିବାକୁ ଚାହେଁ । ଇଂରାଜୀଭାଷାରେ ମଧ୍ୟ କବିତାକାରରେ ଏହା ଅନୂଦିତ ହୋଇଛି ।

ସେହି ସମୁଚ୍ଚ ଶିଖରରୁ ସବୁ ସେ ଦେଖୁଛନ୍ତି
ଆମର ସମସ୍ତ କାର୍ଯ୍ୟାକାର୍ଯ୍ୟ ।
ସେହି ସର୍ବଶକ୍ତିମାନ ପ୍ରଭୁ, ସତେ କି
ଆମର ଖୁବ୍ ନିକଟରେ ।
ଯଦିଓ ମନୁଷ୍ୟ ରଖେ ଖୁବ୍ ଗୋପନୀୟ,
ତାହାର ପ୍ରତିଟି କର୍ମ,
ସ୍ୱର୍ଗେ ଥାଇ ଦେବଗଣ ଦେଖୁଛନ୍ତି ତାହା ଅନୁକ୍ଷଣ ।
ଯେ କେହି ଠିଆ ହେଉ, ଚାଲୁ ଅବା ବୁଲୁ
ଗୋପନରେ ଯାଉ ସ୍ଥାନାନ୍ତର
ପ୍ରବେଶୁ ନିଭୃତ କକ୍ଷେ—
ଦେବତାର ଦୃଷ୍ଟିପଥେ ସବୁ ଆସେ ପଡ଼ି ।

ଯେତେ ଯାହା ସନ୍ତ୍ରସନ୍ଧି କୁଏ ନିଭୃତରେ
ଅବା ଅତି ସଂଗୋପନେ,
ତୃତୀୟ ବରୁଣଦେବ ସେହି ସ୍ଥାନେ କରି ଅବସ୍ଥାନ,
ସମସ୍ତ ଦୁରଭିସନ୍ଧି ଜାଣିଯାନ୍ତି, ପ୍ରଭୁ ସିଏ ସର୍ବଶକ୍ତିମାନ ।
ଏହି ଯେ ରହିଛି ବିଶ୍ୱ,
ସିଏ ତାର ଅଧିପତି ।
ଏହି ଯେ ଦେଖୁଛ ନଭଃ ସୀମାହୀନ ସୁବିଶାଳ
ତାହାର ବି ପ୍ରଭୁ ସିଏ ।
ତାହାରି ମଧ୍ୟରେ,
ବିରାଜିତ ଅନ୍ତହୀନ ଦୁଇ ପାରାବାର ।
ତଥାପି ଏ କ୍ଷୁଦ୍ର ଜଳାଶୟ
ରଚିଅଛି ଆଗାର ତାଙ୍କର ।
ଯେ କରଇ ଉଚ୍ଚାକାଙ୍କ୍ଷା
ଅନ୍ୱେଷଣ କରିବାକୁ ସ୍ୱର୍ଗେ
ବରୁଣଙ୍କ କବଳରୁ ପାଏନା ସେ
କେବେ ଅବ୍ୟାହତି ।
ବରୁଣଙ୍କ ଅନୁଚରଗଣ,
ସ୍ୱର୍ଗରାଜ୍ୟୁଁ ଅବତରି ନିରନ୍ତର କରନ୍ତି ଭ୍ରମଣ
ଅତି ଦ୍ରୁତ ବେଗେ ସସାଗରା ଏ ପୃଥିବୀ ପରେ ।
ଦୂର ଦୂରତମ ସ୍ଥାନେ ଲକ୍ଷ୍ୟ ତାଙ୍କ ସଦା ଅବ୍ୟାହତ
ପର୍ଯ୍ୟକ୍ଷାକୁଶଳ ନେତ୍ର ବିସ୍ତାରିତ କରି ଶତ ଶତ ।[୧]

ଅନ୍ୟାନ୍ୟ ଦେବତାମାନଙ୍କ ସମ୍ବନ୍ଧରେ ମଧ୍ୟ ଏହିଭଳି ଅସଂଖ୍ୟ ଦୃଷ୍ଟାନ୍ତ ପ୍ରଦର୍ଶିତ ହୋଇପାରେ । ସେମାନେ ଜଣକ ପରେ ଜଣେ ସେହି ଗୋଟିଏ ଅବସ୍ଥା ଲଭ କରନ୍ତି । ପ୍ରଥମେ ସେମାନେ ଅନ୍ୟତମ ଦେବତାରୂପେ ଆରାଧିତ ହୁଅନ୍ତି । କିନ୍ତୁ ପରେ ପରେ ସେହି ପରମସତ୍ତାରୂପରେ ଗୃହୀତ ହୋଇଯାନ୍ତି, ଯେଉଁ ପରମସତ୍ତା ହେଉଛନ୍ତି ପ୍ରତ୍ୟେକଙ୍କର ଅନ୍ତର୍ଯ୍ୟାମୀ, ବିଶ୍ୱବ୍ରହ୍ମାଣ୍ଡର ଶାସନକର୍ତ୍ତା ଏବଂ ଯାହାଙ୍କଠାରେ ସମଗ୍ର ଜଗତ ଅବସ୍ଥିତ ରହିଛି । ବରୁଣଦେବଙ୍କ ସମ୍ବନ୍ଧରେ କିନ୍ତୁ ଆଉ ଗୋଟିଏ ଧାରଣା ରହିଛି । ଏହାର ଅଙ୍କୁର ମାତ୍ର ଦେଖାଯାଇଥିଲା କିନ୍ତୁ ଆର୍ଯ୍ୟମାନେ ଶୀଘ୍ର ଏହା ଦମନ କରିଥିଲେ । ଏହି ଧାରଣାଟି ହେଉଛି 'ଭୀତିର ଧାରଣା' । ଆଉ ଗୋଟିଏ ସ୍ଥାନରେ ଦେଖାଯାଏ— ସେମାନେ ଭୀତ ଓ ସେମାନେ ପାପ କରି ବରୁଣଙ୍କ ନିକଟରେ କ୍ଷମାପ୍ରାର୍ଥୀ ହେଉଛନ୍ତି । ଏହି ଧାରଣାଗୁଡ଼ିକୁ କିନ୍ତୁ ଭାରତବର୍ଷରେ ବଢ଼ିବାକୁ ଦିଆ ଯାଇନାହିଁ । ଏହି କାରଣ

୧. ଅଥର୍ବବେଦ, କାଣ୍ଡ ୪-ସୂ. ୧୬ (ଇଂରାଜୀ ଅନୁବାଦରୁ ପୁନଃ ଅନୂଦିତ)

ପରେ ଆପଣମାନେ ବୁଝିପାରିବେ । କିନ୍ତୁ ଏହାର ବୀଜଗୁଡ଼ିକ ନଷ୍ଟ ହୋଇ ନାହିଁ । ଏଗୁଡ଼ିକ କିନ୍ତୁ ଅଙ୍କୁରିତ ହେବାକୁ ଆରମ୍ଭ କରିଥିଲା—'ଏହା ଭୟ ଓ ପାପର ଧାରଣା ।' ଆପଣମାନେ ସମସ୍ତେ ଜାଣନ୍ତି ଯେ, ଏହି ଧାରଣାକୁ 'ଏକେଶ୍ୱରବାଦ' କୁହାଯାଏ । ଏହି ଏକେଶ୍ୱରବାଦ ପ୍ରଥମ କରି ଭାରତବର୍ଷରେ ଦେଖା ଦେଇଥିଲା । ଆମେ ସଂହିତା-ଗୁଡ଼ିକର ପ୍ରଥମ ଓ ସର୍ବପ୍ରାଚୀନ ଅଂଶରେ ଏହି ଏକେଶ୍ୱରବାଦର ପ୍ରଭାବ ଦେଖିବାକୁ ପାଉ । କିନ୍ତୁ ଆମେ ଲକ୍ଷ୍ୟ କରିବା ଯେ, ଆର୍ଯ୍ୟମାନଙ୍କ ପକ୍ଷରେ ଏହା ପର୍ଯ୍ୟାପ୍ତ ହେଲା ନାହିଁ । ହିନ୍ଦୁମାନଙ୍କ ବିଶ୍ୱାସ ସେମାନେ ଏହାକୁ ଅତି ପ୍ରାଥମିକ ଧାରଣା ବୋଧ କରି ଉପେକ୍ଷା କରିଥିଲେ ଏବଂ ଆହୁରି ଅଗ୍ରସର ହୋଇ ଚିନ୍ତା କରିବାକୁ ଲାଗିଲେ । ଅବଶ୍ୟ ବେଦ ସମ୍ବନ୍ଧରେ ଇଉରୋପୀୟମାନଙ୍କର ଏଭଳି ସମାଲୋଚନା ପାଠ କରି ହିନ୍ଦୁମାନେ ହାସ୍ୟ ସମ୍ବରଣ କରିପାରନ୍ତି ନାହିଁ । ଯେଉଁମାନେ (ପାଶ୍ଚାତ୍ୟ ଜାତିର ଲୋକେ) ମାତୃଦୁଗ୍ଧପାନ ସଦୃଶ ସଗୁଣ ଈଶ୍ୱରବାଦକୁ ହିଁ ଈଶ୍ୱରଙ୍କର ସର୍ବୋଚ୍ଚ ଧାରଣା ବୋଲି ଗ୍ରହଣ କରିଛନ୍ତି, ସେମାନେ ଯେତେବେଳେ ଦେଖିବାକୁ ପାଆନ୍ତି, ଯେଉଁ ଏକେଶ୍ୱର-ବାଦର ଭାବରେ ବେଦର ସଂହିତାଭାଗ ପୂର୍ଣ୍ଣ ସେହି ଏକେଶ୍ୱରବାଦକୁ ଆର୍ଯ୍ୟଗଣ ଅପ୍ରୟୋଜନୀୟ ଏବଂ ଦାର୍ଶନିକ ଓ ଚିନ୍ତାଶୀଳ ବ୍ୟକ୍ତିମାନଙ୍କର ଅଯୋଗ୍ୟ ବୋଲି ପରିତ୍ୟାଗ କରିବାକୁ ଏବଂ ଅଧିକତର ଦାର୍ଶନିକ ଯୁକ୍ତିପୂର୍ଣ୍ଣ ଓ ଅତୀନ୍ଦ୍ରିୟ ଭାବ ଆୟତ୍ତ କରିବାକୁ କଠୋର ଆୟାସ ସ୍ୱୀକାର କରିଛନ୍ତି, ସେତେବେଳେ ସ୍ୱଭାବତଃ ହିଁ ସେମାନେ ଭାରତୀୟ ପ୍ରାଚୀନ ଦାର୍ଶନିକମାନଙ୍କର ଭାବ ଅନୁଯାୟୀ ଚିନ୍ତା କରିବାକୁ ସାହସ କରନ୍ତି ନାହିଁ ।

ଯଦିଓ ଈଶ୍ୱରଙ୍କର ବର୍ଣ୍ଣନା କଲାବେଳେ ଆର୍ଯ୍ୟମାନେ କହୁଛନ୍ତି—"ସମୁଦାୟ ଜଗତ ତାହାଙ୍କଠାରେ ଆଶ୍ରିତ" ଏବଂ "ତୁମେ ସକଳ ହୃଦୟର ପାଳନକର୍ତ୍ତା"—ତଥାପି ଏକେଶ୍ୱରବାଦ ସେମାନଙ୍କ ନିକଟରେ ଅତ୍ୟନ୍ତ ମାନବଭାବାପନ୍ନ ବୋଲି ମନେ ହୋଇ-ଥିଲା । ହିନ୍ଦୁମାନେ ସର୍ବବିଧ ଚିନ୍ତାଧାରାରେ ସାହସୀ—ଏତେ ସାହସୀ ଯେ ସେମାନଙ୍କ ଚିନ୍ତାର ଗୋଟିଏ ଗୋଟିଏ ସ୍ଫୁଲିଙ୍ଗ ପାଶ୍ଚାତ୍ୟ ଦେଶମାନଙ୍କର ତଥାକଥିତ ସାହସୀ ମନୀଷୀମାନଙ୍କର ଭୀତି ଉତ୍ପାଦନ କରିଥାଏ । ହିନ୍ଦୁମାନଙ୍କ ପକ୍ଷରେ ଏହା ଗୋଟିଏ ଗୌରବ ଓ କୃତିତ୍ୱର ବିଷୟ । ଏହି ହିନ୍ଦୁ ମନୀଷୀମାନଙ୍କ ସମ୍ବନ୍ଧରେ ଅଧ୍ୟାପକ ମାକ୍ସମୁଲର ଯଥାର୍ଥରେ କହିଛନ୍ତି—"ସେମାନେ ଏତେ ଉଚ୍ଚକୁ ଉଠିଥିଲେ ଯେ, ସେହି ଊର୍ଦ୍ଧ୍ୱଦେଶରେ କେବଳ ସେହିମାନଙ୍କ ଫୁସ୍‌ଫୁସ୍ ଶ୍ୱାସ ଗ୍ରହଣ କରିପାରେ । କିନ୍ତୁ ସେଠାରେ ଅନ୍ୟ ଦାର୍ଶନିକ-ମାନଙ୍କର ଫୁସ୍‌ଫୁସ୍ ଫାଟି ଯାଆନ୍ତା ।" ଏହି ସାହସୀ ଜାତି ବରାବର ଯୁକ୍ତି ଅନୁସରଣ କରି ଚାଲି ଆସିଛି । ଯୁକ୍ତି ସେମାନଙ୍କୁ କେଉଁଠାକୁ ନେଇଯିବ, ଏହା ଲାଗି ସେମାନଙ୍କୁ କି ମୂଲ୍ୟ ଦେବାକୁ ପଡ଼ିବ, ସେକଥା ଆର୍ଯ୍ୟ ଦାର୍ଶନିକମାନେ କେବେ ଭାବି ନାହାନ୍ତି । ଏହାଫଳରେ ସେମାନଙ୍କର ଅତି ପ୍ରିୟ କୁସଂସ୍କାରଗୁଡ଼ିକ ଚୂର୍ଣ୍ଣ ହୋଇଯାଏ, ଏବଂ ସମାଜ ସେମାନଙ୍କ ସମ୍ବନ୍ଧରେ କଅଣ ଭାବିବ ବା କହିବ, ସେହି ବିଷୟରେ ମଧ୍ୟ ସେମାନେ

ଦୃକ୍‌ପାତ କରନ୍ତି ନାହିଁ । କିନ୍ତୁ ସେମାନେ ଯାହା ସତ୍ୟ ଓ ଯଥାର୍ଥ ବୋଲି ବୁଝିପାରିଥିଲେ ତାହା ହିଁ ପ୍ରଚାର କରିଯାଇଛନ୍ତି ।

ପ୍ରାଚୀନ ବୈଦିକ ଋଷିମାନଙ୍କ ବିଷୟରେ ଆଲୋଚନା କରିବା ପୂର୍ବରୁ ଆମେ ପ୍ରଥମତଃ ଗୋଟିଏ ଦୁଇଟି ଅତି ଆଶ୍ଚର୍ଯ୍ୟ ବୈଦିକ ଦୃଷ୍ଟାନ୍ତ ଉଲ୍ଲେଖ କରିବା । ଏହି ଦେବତାମାନେ ଜଣକ ପରେ ଜଣେ ଗୃହୀତ ହୋଇ ସର୍ବୋଚ୍ଚ ସ୍ଥାନକୁ ଉନ୍ନୀତ ହୋଇଛନ୍ତି । ଅବଶେଷରେ ସେମାନେ ପ୍ରତ୍ୟେକେ ଅନାଦି ଅଖଣ୍ଡ ସଗୁଣ ଈଶ୍ୱରରୂପ ଧାରଣ କରିଛନ୍ତି । ଏହି ଅଭିନବ ବ୍ୟାପାରଟିର ବ୍ୟାଖ୍ୟା ପ୍ରୟୋଜନ । ଅଧ୍ୟାପକ ମାକ୍‌ସମୁଲର ଏହିଭଳି ଉପାସନାରେ ହିନ୍ଦୁଧର୍ମର ବିଶେଷତ୍ୱ ଲକ୍ଷ୍ୟ କରି ଏହାକୁ Henotheism ବା 'ଦେବାଧିଦେବ' ବୋଲି ଆଖ୍ୟା ଦେଇଅଛନ୍ତି । ଏହାର ବ୍ୟାଖ୍ୟା ଲାଗି ଆମକୁ ବହୁଦୂର ଯିବାକୁ ହେବ ନାହିଁ । ଏହା ଋକ୍‌ବେଦ ମଧ୍ୟରେ ହିଁ ରହିଛି । ଏହି ଗ୍ରନ୍ଥର ଯେଉଁ ସ୍ଥଳରେ ପ୍ରତ୍ୟେକ ଦେବତାଙ୍କୁ ଏହିପରି ସର୍ବୋଚ୍ଚ ମହିମାରେ ମଣ୍ଡିତ କରି ଉପାସନା କରିବାର କଥା ରହିଛି, ସେ ସ୍ଥଳରୁ ଆଉ ଟିକିଏ ଆଗକୁ ଗଲେ ଆମେ ତାର ଅର୍ଥ ମଧ୍ୟ ଜାଣିପାରିବା । ବର୍ତ୍ତମାନ ପ୍ରଶ୍ନ ହେଉଛି—ହିନ୍ଦୁ ପୁରାଣଗୁଡ଼ିକ ଅନ୍ୟାନ୍ୟ ଧର୍ମର ପୌରାଣିକ ଆଖ୍ୟାୟିକାଗୁଡ଼ିକଠାରୁ ଏତେ ପୃଥକ୍, ଏତେ ବିଶିଷ୍ଟ କିଭଳି ହେଲା ? ବାବିଲୋନୀୟ ବା ଗ୍ରୀକ୍ ପୁରାଣରେ ଦେଖିବାକୁ ମିଳେ ଯେ, ଜଣେ ଦେବତାଙ୍କୁ ଉନ୍ନୀତ କରିବାର ପ୍ରୟାସ କରାଯାଇଛି । ପରେ ସେ ଗୋଟିଏ ଉଚ୍ଚପଦ ଲାଭ କରି ପ୍ରତିଷ୍ଠିତ ହେଲେ ଏବଂ ଅନ୍ୟ ଦେବତାମାନେ ତା'ଫଳରେ ହତଶ୍ରୀ ହୋଇଗଲେ । ସବୁ ମୋଲୋକ (Molochs)ଙ୍କ ମଧ୍ୟରେ ଜିହୋବା (Jehovah) ଶ୍ରେଷ୍ଠ ହେଲେ । ଅନ୍ୟାନ୍ୟ ମୋଲୋକମାନେ ଚିରଦିନ ଲାଗି ବିସ୍ମୃତ ଓ ବିଲୀନ ହୋଇଗଲେ । ସେହି ହେଲେ ଦେବାଧିଦେବ 'ଈଶ୍ୱର' । ଗ୍ରୀକ୍ ଦେବତାମାନଙ୍କ ସମ୍ବନ୍ଧରେ ମଧ୍ୟ ଏହିଭଳି କଥା କୁହାଯାଇପାରେ । ଜିଉସ (Zeus) ଅଗ୍ରବର୍ତ୍ତୀ ହେଲେ, ଉଚ୍ଚ ଉଚ୍ଚ ପଦବୀପ୍ରାପ୍ତ ହେଲେ, ସମଗ୍ର ଜଗତର ପ୍ରଭୁ ହେଲେ ଏବଂ ଅନ୍ୟାନ୍ୟ ଦେବଗଣ ଅତି କ୍ଷୁଦ୍ର ଦେବଦୂତ-ରୂପେ ପରିଣତ ହେଲେ । ପରବର୍ତ୍ତୀ କାଳରେ ମଧ୍ୟ ଏହି ଘଟଣାର ପୁନରାବୃତ୍ତି ଦେଖା-ଯାଏ । ବୌଦ୍ଧ ଓ ଜୈନଗଣ ସେମାନଙ୍କର ଜଣେ ଧର୍ମପ୍ରଚାରକଙ୍କୁ ଈଶ୍ୱରରୂପେ ଆରାଧନା କଲେ ଏବଂ ଅନ୍ୟାନ୍ୟ ଦେବଗଣଙ୍କୁ ତାଙ୍କର ଅଧୀନ କରିଦେଲେ । ଏହି ପଦ୍ଧତି ହିଁ ସର୍ବତ୍ର ଅନୁସୃତ । କିନ୍ତୁ ଏ ବିଷୟରେ ହିନ୍ଦୁଧର୍ମରେ ବିଶେଷତ୍ୱ ଓ ବ୍ୟତିକ୍ରମ ଦେଖିବାକୁ ମିଳେ । ପ୍ରଥମେ ଜଣେ ଦେବତାଙ୍କୁ ବନ୍ଦନା କରାଯାଇଛି, କିଛିକ୍ଷଣ ପାଇଁ ଅନ୍ୟ ଦେବତାମାନେ ତାଙ୍କର ଆଜ୍ଞାନୁବର୍ତ୍ତୀ ବୋଲି କୁହାଯାଇଛି ।

ଯେ ବରୁଣଦେବଙ୍କ ଦ୍ୱାରା ପୂଜିତ ଓ ସମ୍ମାନିତ ହେଲେ, ସେ ହିଁ ପରବର୍ତ୍ତୀ ଗ୍ରନ୍ଥରେ ସର୍ବୋଚ୍ଚ ଗୌରବ ଲାଭ କଲେ । ଏହି ଦେବଗଣ ଯଥାକ୍ରମେ ପ୍ରତ୍ୟେକେ ହିଁ ସଗୁଣ ଈଶ୍ୱରରୂପେ ବର୍ଣ୍ଣିତ । ଏହାର ବ୍ୟାଖ୍ୟା ଏହି ପୁସ୍ତକରେ ହିଁ ରହିଛି ଏବଂ ଏହା ହିଁ ଚମତ୍କାର ବ୍ୟାଖ୍ୟା । ଯେଉଁ ମନ୍ତ୍ର ପ୍ରଭାବରେ ଅତୀତ ଭାରତରେ

ଗୋଟିଏ ଚିନ୍ତାପ୍ରବାହ ଉଠିଥିଲା ଏବଂ ଯାହା ଭବିଷ୍ୟତରେ ସମଗ୍ର ଧର୍ମଜଗତର ଚିନ୍ତାର କେନ୍ଦ୍ରସ୍ଥାନୀୟ ହୋଇ ଠିଆ ହେବ, ସେହି ମନ୍ତ୍ରଟି ହେଉଛି—"ଏକଂ ସଦ୍‌ବିପ୍ରାଃ ବହୁଧା ବଦନ୍ତି"—ଯାହା ସତ୍ୟ, ତାହା ଏକ, ଜ୍ଞାନୀଗଣ ତାହାକୁ ବିଭିନ୍ନ ନାମରେ ଅଭିହିତ କରିଅଛନ୍ତି । ଏହି ଦେବତାମାନଙ୍କ ବିଷୟରେ ଯେଉଁସବୁ ସ୍ତୋତ୍ର ରଚିତ ହୋଇଅଛି, ସର୍ବତ୍ର ହିଁ ଅନୁଭୂତ ସତ୍ତା ଏକ—ଅନୁଭବ କରିବା ପାଇଁ କେବଳ ଯାହା କିଛି ବିଭିନ୍ନତା । ସ୍ତୋତ୍ରରଚୟିତା ଋଷି ଓ କବିଗଣ ବିଭିନ୍ନ ଭାଷାରେ ଏବଂ ବିଭିନ୍ନ ବାକ୍ୟରେ ସେହି ଏକ ସତ୍ତାର (ବ୍ରହ୍ମର) ସ୍ତୁତିଗାନ କରିଅଛନ୍ତି "ଏକଂ ସଦ୍‌ବିପ୍ରାଃ ବହୁଧା ବଦନ୍ତି" । ଏହି ଗୋଟିଏ ମାତ୍ର ଶ୍ରୁତିବାକ୍ୟରୁ ପ୍ରଭୂତ ଫଳ ଫଳିଅଛି । ସମ୍ଭବତଃ ତୁମେମାନେ କେହି କେହି ଭାବି ବିସ୍ମିତ ହେବ ଯେ, ଭାରତବର୍ଷ ହିଁ ଏକମାତ୍ର ଦେଶ, ଯେଉଁଠାରେ ଧର୍ମ ଲାଗି କେବେ କାହା ଉପରେ ନିର୍ଯ୍ୟାତନା ହୋଇ ନାହିଁ—କୌଣସି ବ୍ୟକ୍ତି କଦାପି ତାର ଧର୍ମବିଶ୍ୱାସ ଲାଗି ଉତ୍ପୀଡ଼ିତ ହୁଏ ନାହିଁ । ସେହି ଭାରତରେ ଈଶ୍ୱର-ବିଶ୍ୱାସୀ, ନାସ୍ତିକ, ଅଦ୍ୱୈତବାଦୀ, ଦ୍ୱୈତବାଦୀ ଏବଂ ଏକେଶ୍ୱରବାଦୀ ସମସ୍ତେ ଏକତ୍ର ଅବସ୍ଥାନ କରୁଛନ୍ତି ଏବଂ କେହି କାହାକୁ ଆପଣାର ଧର୍ମମତ ଲାଗି ନିର୍ଯ୍ୟାତିତ କରି ନାହାନ୍ତି । ସେହି ଭାରତବର୍ଷରେ ଜଡ଼ବାଦୀମାନଙ୍କୁ ମଧ୍ୟ ବ୍ରାହ୍ମଣ-ପରିଚାଳିତ ମନ୍ଦିରର ସୋପାନରୁ ଦେବତାମାନଙ୍କ ବିରୋଧରେ, ଏପରିକି ସ୍ୱୟଂ ଈଶ୍ୱରଙ୍କ ବିରୋଧରେ ପ୍ରଚାର କରିବାକୁ ଦିଆଯାଇଛି । ଜଡ଼ବାଦୀ ଚାର୍ବାକପନ୍ଥୀଗଣ ଦେଶମଯ଼ ପ୍ରଚାର କରିଛନ୍ତି—ଈଶ୍ୱର-ବିଶ୍ୱାସ କୁସଂସ୍କାର ଏବଂ ଦେବତା, ବେଦ ଓ ଧର୍ମ ହେଉଛି ପୁରୋହିତମାନଙ୍କର ସ୍ୱାର୍ଥସିଦ୍ଧି ପାଇଁ ଉଦ୍‌ଭାବିତ କୁସଂସ୍କାର ମାତ୍ର । ସେମାନେ ବିନା ଉତ୍ପୀଡ଼ନରେ ଏହିସବୁ ପ୍ରଚାର କରିଛନ୍ତି । ଏହିରୂପେ ବୁଦ୍ଧଦେବ ହିନ୍ଦୁମାନଙ୍କର ପ୍ରତ୍ୟେକ ପ୍ରାଚୀନ ଓ ପବିତ୍ର ବିଷୟକୁ ଧୂଳିସାତ୍ କରିବାକୁ ଚେଷ୍ଟା କରି ମଧ୍ୟ ଅତି ବୃଦ୍ଧବୟସ ପର୍ଯ୍ୟନ୍ତ ଜୀବିତ ଥିଲେ । ଜୈନମାନେ ମଧ୍ୟ ଏହିପରି କରିଛନ୍ତି । ସେମାନେ ଈଶ୍ୱରଙ୍କ ଅସ୍ତିତ୍ୱ ଶୁଣି ବିଦ୍ରୂପ କରୁଥିଲେ । ସେମାନେ କହୁଥିଲେ—ଈଶ୍ୱର ଅଛନ୍ତି, ଏହା କିଭଳି ସମ୍ଭବ ? ଏହା କେବଳ ଗୋଟିଏ କୁସଂସ୍କାର ଛଡ଼ା ଆଉ କିଛି ନୁହେଁ । ଏହିଭଳି ଅସଂଖ୍ୟ ଦୃଷ୍ଟାନ୍ତ ଦିଆଯାଇପାରେ । ମୁସଲମାନ ଆକ୍ରମଣ-ତରଙ୍ଗ ଭାରତକୁ ଆସିବା ପୂର୍ବରୁ ଏ ଦେଶରେ 'ଧର୍ମ ଲାଗି ନିର୍ଯ୍ୟାତନ' ବିଷୟ କଅଣ, ତାହା କେହି କେବେ ଜାଣି ନ ଥିଲେ । ଯେତେବେଳେ ବିଦେଶୀମାନେ ଏହି ନିର୍ଯ୍ୟାତନ ହିନ୍ଦୁମାନଙ୍କ ଉପରେ ଆରମ୍ଭ କଲେ, ସେତିକିବେଳେ ହିଁ ହିନ୍ଦୁମାନଙ୍କର ଏ ବିଷୟରେ ଅଭିଜ୍ଞତା ହେଲା ଏବଂ ଏବେ ବି ଏହା ଗୋଟିଏ ସର୍ବଜନବିଦିତ ସତ୍ୟ ଯେ, ହିନ୍ଦୁମାନେ ଖ୍ରୀଷ୍ଟାନମାନଙ୍କର ଗୀର୍ଜା ନିର୍ମାଣରେ କେତେ ଅଧିକ ପରିମାଣରେ ଏବଂ ତତ୍ପରତାର ସହିତ ସାହାଯ୍ୟ କରିଛନ୍ତି ! କେଉଁଠି କିଛି ରକ୍ତପାତ ହୋଇ ନାହିଁ । ଏପରିକି ଭାରତବର୍ଷରୁ ଯେଉଁସବୁ ହିନ୍ଦୁ-ଧର୍ମବିରୋଧୀ ଧର୍ମ ଉଦ୍ଭୂତ ହୋଇଥିଲା, ସେଗୁଡ଼ିକ ଉପରେ ମଧ୍ୟ କେହି କେବେ ନିର୍ଯ୍ୟାତନା କରି ନାହାନ୍ତି । ବୌଦ୍ଧଧର୍ମର କଥା ଧରାଯାଉ । ବୌଦ୍ଧଧର୍ମ କୌଣସି କୌଣସି ବିଷୟରେ ଗୋଟିଏ ଶ୍ରେଷ୍ଠ ଧର୍ମ । କିନ୍ତୁ ବୌଦ୍ଧଧର୍ମକୁ ବେଦାନ୍ତ ବୋଲି ମନେ

କରିବା ଅର୍ଥହୀନ । ଖ୍ରୀଷ୍ଟଧର୍ମ ଓ 'ସାଲ୍‌ଭେସନ୍ ଆର୍ମି'ର ପ୍ରଭେଦ ସମ୍ବନ୍ଧେ ଅନୁଭବ କରିଥିବେ । ବୌଦ୍ଧଧର୍ମରେ ମହାନ୍ ଓ ସୁନ୍ଦର ଭାବସବୁ ରହିଛି । କିନ୍ତୁ ଏହା ଏପରି ଏକପ୍ରକାର ମଣ୍ଡଳୀ ହସ୍ତରେ ପତିତ ହୋଇଥିଲା, ଯେଉଁମାନେ କି ଏହି ଭାବଗୁଡ଼ିକୁ ରକ୍ଷା କରିପାରିଲେ ନାହିଁ । ଦାର୍ଶନିକମାନଙ୍କ ହସ୍ତର ରତ୍ନଗୁଡ଼ିକ ଜନସାଧାରଣଙ୍କ ହାତରେ ପଡ଼ିଲା ଏବଂ ସେମାନେ ଦାର୍ଶନିକ ଭାବଗୁଡ଼ିକୁ ଦଖଲ କରି ବସିଲେ । ସେମାନଙ୍କର ଥିଲା ଅତ୍ୟଧିକ ଉତ୍ସାହ ଏବଂ କେତୋଟି ଆଶ୍ଚର୍ଯ୍ୟ ଆଦର୍ଶ । ମହତ୍ ଜନହିତକର ଭାବ ମଧ୍ୟ ପ୍ରଚୁର ଥିଲା । କିନ୍ତୁ ସର୍ବୋପରି, ସବୁ ବିଷୟ ନିରାପଦ ରଖିବା ପକ୍ଷରେ ଆହୁରି କିଛି ପ୍ରୟୋଜନ ରହିଛି । ତାହାହେଲା ଚିନ୍ତା ଓ ମନୀଷା । ଯେଉଁଠି ଦେଖନ୍ତୁ, ଉଚ୍ଚତମ ଲୋକହିତକର ଭାବଗୁଡ଼ିକ ଶିକ୍ଷାଦୀକ୍ଷାହୀନ ସାଧାରଣ ଲୋକଙ୍କ ହାତରେ ପଡ଼ିଯାଇଛି, ତାହାର ପ୍ରଥମ ଫଳ ଅବନତି । କେବଳମାତ୍ର ବିଦ୍ୟାନୁଶୀଳନ ଓ ବିଚାରଶକ୍ତି ସକଳବସ୍ତୁକୁ ସୁରକ୍ଷିତ କରିଥାଏ । ତା'ପରେ ଏହି ବୌଦ୍ଧଧର୍ମ ହିଁ ପୃଥିବୀରେ ସର୍ବପ୍ରଥମ ପ୍ରଚାରଶୀଳ ଧର୍ମ । ତତ୍କାଳୀନ ସମୁଦାୟ ସଭ୍ୟ ଜଗତର ସର୍ବତ୍ର ହିଁ ଏହା ପ୍ରବେଶ କରିଥିଲା । କିନ୍ତୁ ତାହା ଲାଗି ଗୋଟିଏ ବିନ୍ଦୁମାତ୍ର ରକ୍ତପାତ ହୋଇ ନାହିଁ । ଆମେ ପଢ଼ିଛୁ, କିପରି ଚୀନ ଦେଶରେ ବୌଦ୍ଧ ପ୍ରଚାରକମାନେ ନିର୍ଯ୍ୟାତିତ ହୋଇଛନ୍ତି ଏବଂ ସହସ୍ର ସହସ୍ର ବୌଦ୍ଧ କ୍ରମାନ୍ୱୟରେ ଦୁଇ ତିନି ଜଣ ସମ୍ରାଟଙ୍କ ହାତରେ ନିହତ ହୋଇଥିବାର ଶୋଚନୀୟ ବୃତ୍ତାନ୍ତ ମଧ୍ୟ ଆମକୁ ଜଣାଅଛି । କିନ୍ତୁ ତା'ପରେ ଯେତେବେଳେ ବୌଦ୍ଧମାନଙ୍କର ଅଦୃଷ୍ଟ ସୁପ୍ରସନ୍ନ ହେଲା ଏବଂ ଜଣେ ସମ୍ରାଟ ଉତ୍ପୀଡ଼ନକାରୀମାନଙ୍କ ଉପରେ ପ୍ରତିଶୋଧ ନେବା ନିମିତ୍ତ ପ୍ରସ୍ତାବ କଲେ, ସେତେବେଳେ ଭିକ୍ଷୁଗଣ ତାଙ୍କୁ ଏହି ପ୍ରତିହିଂସାରୁ ନିବୃତ୍ତ କଲେ । ଆମର ଏହି ସମୁଦାୟ ଉଦାରତା ଲାଗି ସେହି ଗୋଟିଏ ମନ୍ତ୍ର ନିକଟରେ ଆମେ ନିଶ୍ଚୟ ଋଣୀ । ସେଥିପାଇଁ ମୁଁ ଏହା ଆପଣମାନଙ୍କୁ ସ୍ମରଣ କରିବାକୁ କହୁଛି । ଯାହାକୁ ସମସ୍ତେ ଇନ୍ଦ୍ର, ବରୁଣ ମିତ୍ର ବୋଲି କହନ୍ତି, ସେହି ସତ୍ତା ହେଉଛି ମୂଳତଃ ଗୋଟିଏ । ଋଷିମାନେ ତାଙ୍କୁ ବହୁ ନାମରେ ଡାକନ୍ତି—"ଏକଂ ସଦ୍ ବିପ୍ରା ବହୁଧା ବଦନ୍ତି" । ୧

ଏହି ସ୍ତୁତି କେଉଁ ସମୟରେ ରଚିତ ହୋଇଥିଲା, ତାହା କେହି ଜାଣନ୍ତି ନାହିଁ । ଆଠହଜାର ବର୍ଷ ପୂର୍ବେ ହୋଇପାରେ ଏବଂ ଆଧୁନିକ ସକଳ ପ୍ରତିବାଦ ସତ୍ତ୍ୱେ ଏହାର ପ୍ରଣୟନ-କାଳ ନଅହଜାର ବର୍ଷ ପୂର୍ବେ ବି ହୋଇପାରେ ।

ଧର୍ମବିଷୟକ ଏହି ଅନୁଧ୍ୟାନଗୁଡ଼ିକର ଗୋଟିଏ ବି ଆଧୁନିକ କାଳର ନୁହେଁ । ତଥାପି ରଚନାକାଳରେ ଏଗୁଡ଼ିକ ଯେପରି ଜୀବନ୍ତ ଥିଲା, ଏବେ ମଧ୍ୟ ସେହିପରି ରହିଛି । ବର୍ତ୍ତମାନ ବରଂ ଅଧିକତର ସଜୀବ ହୋଇ ଉଠିଛି । କାରଣ ପ୍ରାଚୀନତମ କାଳରେ

---

୧. ଇନ୍ଦ୍ରଂ ମିତ୍ରଂ ବରୁଣମଗ୍ନିମାହୁରଥୋ ଦିବ୍ୟଃ ସ ସୁପର୍ଣ୍ଣୋ ଗରୁତ୍ମାନ୍ ।
ଏକଂ ସଦ୍‌ବିପ୍ରା ବହୁଧା ବଦନ୍ତ୍ୟଗ୍ନିଂ ଯମଂ ମାତରିଶ୍ୱାନମାହୁଃ ॥
—ଋକ୍‌ବେଦ, ୧।୧୬୪।୪୬

ମାନବଜାତି ଆଧୁନିକ କାଳ ଭଳି ଏତେ 'ସଭ୍ୟ' ନ ଥିଲା । ସାମାନ୍ୟତମ ମତପାର୍ଥକ୍ୟ ଲାଗି ସେ ସେତେବେଳେ ବି ତାର ଭାଇର ଗଳା କାଟିବାକୁ ଶିଖି ନ ଥିଲା, କମ୍ବା ରକ୍ତ-ସ୍ରୋତରେ ଧରିତ୍ରୀ ପ୍ଲାବିତ କରୁ ନ ଥିଲା ଅଥବା ନିଜ ପ୍ରତିବେଶୀ ପ୍ରତି ପିଶାଚସଦୃଶ ବ୍ୟବହାର କରୁ ନ ଥିଲା । ସେତେବେଳେ ମଣିଷ ମନୁଷ୍ୟତ୍ୱ ନାମରେ ସମୁଦାୟ ମାନବ-ଜାତିର ଧ୍ୱଂସସାଧନ କରିବାକୁ ଶିଖି ନ ଥିଲା ।

ସେଥିପାଇଁ "ଏକଂ ସଦ୍‌ବିପ୍ରା ବହୁଧା ବଦନ୍ତି"—ଏହି ମହାବାଣୀ ଆଜି ମଧ୍ୟ ଆମମାନଙ୍କ ନିକଟରେ ଅତିଶୟ ସଜୀବ, ତତୋଽଧିକ ମହାନ୍, ଶକ୍ତି ଓ ଜୀବନପ୍ରଦ— ଏବଂ ଯେଉଁ ସମୟରେ ଏଗୁଡ଼ିକ ଲିଖିତ ହୋଇଥିଲା, ସେହି ସମୟ ଅପେକ୍ଷା ଅଧିକତର ନବୀନ ରୂପରେ ପ୍ରତିଭାତ ହୋଇଅଛି । ବର୍ତ୍ତମାନ ମଧ୍ୟ, ଆମମାନଙ୍କୁ ଶିଖିବାକୁ ହେବ ଯେ ସକଳ ପ୍ରକାର ଧର୍ମ—ହିନ୍ଦୁ, ବୌଦ୍ଧ, ମୁସଲମାନ, ଖ୍ରୀଷ୍ଟାନ— ଯେକୌଣସି ନାମରେ ଅଭିହିତ ହେଉ ନା କାହିଁକି ସମସ୍ତେ ଗୋଟିଏ ଈଶ୍ୱରଙ୍କର ଉପାସନା କରନ୍ତି ଏବଂ ଯେ ଏଗୁଡ଼ିକରୁ ଗୋଟିକୁ ଘୃଣା କରେ ସେ ତାର ନିଜର ଭଗବାନଙ୍କୁ ହିଁ ଘୃଣା କରେ ।

ସେମାନେ ଏହି ସିଦ୍ଧାନ୍ତରେ ହିଁ ଉପନୀତ ହେଲେ; କିନ୍ତୁ ପୂର୍ବେ ଯେପରି କହିଥିଲି—ଏହି ପ୍ରାଚୀନ ଏକେଶ୍ୱରବାଦ ହିନ୍ଦୁ-ଚିତ୍ତକୁ ସନ୍ତୁଷ୍ଟ କରିପାରି ନାହିଁ । କାରଣ ଆଧ୍ୟାତ୍ମିକ ରାଜ୍ୟରେ ଏହା ଅଧିକ ଦୂର ଅଗ୍ରସର ହେବାକୁ ଅସମର୍ଥ । ଏହାଦ୍ୱାରା ଦୃଶ୍ୟଜଗତର ବ୍ୟାଖ୍ୟା ହୁଏ ନାହିଁ । ପୃଥିବୀର ଏକଛତ୍ର ଶାସନକର୍ତ୍ତାଙ୍କ ଦ୍ୱାରା କଅଣ ପୃଥିବୀର ବ୍ୟାଖ୍ୟା ହୋଇପାରେ ?

ବିଶ୍ୱର ଜଣେ ନିୟନ୍ତାଙ୍କ ଦ୍ୱାରା କଦାପି ବିଶ୍ୱର ବ୍ୟାଖ୍ୟା ହୋଇପାରିବ ନାହିଁ । ବିଶେଷତଃ ବିଶ୍ୱର ବାହାରେ ଅବସ୍ଥିତ ନିୟନ୍ତାଙ୍କ ଦ୍ୱାରା ଏହାର ସମ୍ଭାବନା ତ ଆହୁରି କମ୍ । ସେ ଆମର ନୈତିକ ଗୁରୁ ହୋଇପାରନ୍ତି, ଜଗତ ମଧ୍ୟରେ ଶ୍ରେଷ୍ଠ ଶକ୍ତିସମ୍ପନ୍ନ ହୋଇପାରନ୍ତି, କିନ୍ତୁ ତାହା ତ ବିଶ୍ୱର ବ୍ୟାଖ୍ୟା ନୁହେଁ !

ତେଣୁ ପ୍ରଥମ ପ୍ରଶ୍ନ ଉଠୁଛି—ବିରାଟ ପ୍ରଶ୍ନ ଉଠୁଛି :

"ଏହି ବିଶ୍ୱ କେଉଁଠାରୁ ଆସିଲା, କିପରି ଭାବେ ଆସିଲା ? ଏବଂ କେଉଁ ଭାବରେ ବା ଏହା ଅବସ୍ଥାନ କରୁଛି ?" (କିଂ ସ୍ୱିଦାସୀଦଧିଷ୍ଠାନମାରମ୍ଭଣଂ କତମତ୍‌ସ୍ୱିତ୍ କଥା-ସୀତ୍ । —ଋକ୍‌ବେଦ, ୧୦।୮୧।୨) ଏହି ପ୍ରଶ୍ନ ସମାଧାନର ଗୋଟିଏ ବିଶିଷ୍ଟ ରୂପ ଗଠନ ଲାଗି ବହୁ ସ୍ତୋତ୍ର ଲିଖିତ ହୋଇଅଛି । କିନ୍ତୁ ଏହି ସ୍ତୋତ୍ରରେ ଯେଉଁଭଳି ଅପୂର୍ବ କାବ୍ୟ-ଶୈଳୀରେ ଏହା ପ୍ରକାଶିତ ହୋଇଛି ସେପରି ଆଉ କେଉଁଠି ଦେଖାଯାଏ ନାହିଁ ।

ନାସଦାସୀନ୍ନୋ ସଦାସୀତ୍ତଦାନୀଂ ନାସୀଦ୍ରଜୋ ନୋ ବ୍ୟୋମା ପରୋ ଯତ୍ ।
କିମାବରୀବଃ କୁହ କସ୍ୟ ଶର୍ମନ୍ନଭଃ କିମାସୀଦ୍ ଗହନଂ ଗଭୀରମ୍ ॥
ନ ମୃତ୍ୟୁରାସୀଦମୃତଂ ନ ତର୍ହି ନ ରାତ୍ର୍ୟା ଅହ୍ନ ଆସୀତ୍ ପ୍ରକେତଃ ।
ଆନୀଦବାତଂ ସ୍ୱଧୟା ତଦେକଂ ତସ୍ମାଦ୍ଧାନ୍ୟନ୍ନ ପରଃ କିଞ୍ଚନାସ ॥
(ଋକ୍‌ବେଦ—ନାସଦୀୟସୂକ୍ତ—୧୦।୧୨୯।୧-୨)

—"ଯେତେବେଳେ ଅସତ୍ ନ ଥିଲା, ସତ୍ ମଧ୍ୟ ନ ଥିଲା, ଯେତେବେଳେ ଅନ୍ତରୀକ୍ଷ ନ ଥିଲା, ଯେତେବେଳେ କିଛି ମଧ୍ୟ ନ ଥିଲା—ସେତେବେଳେ କେଉଁ ବସ୍ତୁ ସମସ୍ତଙ୍କୁ ଆବୃତ କରି ରଖିଥିଲା ? କାହା ଉପରେ ସବୁକିଛି ବିଶ୍ରାମ କରୁଥିଲା ? ସେତେବେଳେ ମୃତ୍ୟୁ ନ ଥିଲା ଅମୃତ ମଧ୍ୟ ନ ଥିଲା, ଦିବାରାତ୍ରିର ବିଭାଗ ମଧ୍ୟ ନ ଥିଲା ।"

ଅନୁବାଦରେ ମୂଳର କାବ୍ୟ-ମାଧୁର୍ଯ୍ୟ ବହୁଳାଂଶରେ ନଷ୍ଟ ହୋଇଯାଏ । "ସେତେବେଳେ ମୃତ୍ୟୁ ନ ଥିଲା, ଅମୃତ ନ ଥିଲା, ଦିବାରାତ୍ରିର ବିଭାଗ ମଧ୍ୟ ନ ଥିଲା !" ସଂସ୍କୃତ ଭାଷାର ପ୍ରତ୍ୟେକ ଧ୍ୱନିଟି ଯେପରି ସ୍ୱରମୟ ! ସେତେବେଳେ ସେହି 'ଏକ' (ଈଶ୍ୱର) ଅବରୁଦ୍ଧ-ପ୍ରାଣରେ ନିଜ ଭିତରେ ନିଜେ ଅବସ୍ଥାନ କରୁଥିଲେ । ତାଙ୍କ ଛଡ଼ା ଆଉ କିଛି ନ ଥିଲା । ଏହି ଭାବଟି ଉତ୍ତମରୂପେ ଧାରଣା କରିବା ଉଚିତ ଯେ, ଈଶ୍ୱର ଅବରୁଦ୍ଧ-ପ୍ରାଣ (ଗତିହୀନ) ରୂପରେ ଅବସ୍ଥାନ କରୁଥିଲେ । କାରଣ ଏହାପରେ ଆମେ ଦେଖିବା, କେଉଁ ଭାବରେ ପରବର୍ତ୍ତୀକାଳରେ ଏହି ଭାବରୁ ହିଁ ସୃଷ୍ଟିତତ୍ତ୍ୱ ଅଙ୍କୁରିତ ହୋଇ-ଅଛି । ହିନ୍ଦୁ ଦାର୍ଶନିକଗଣ ସମଗ୍ର ବିଶ୍ୱକୁ ଗୋଟିଏ ସ୍ପନ୍ଦନସମଷ୍ଟି—ଏକପ୍ରକାର ଗତି ବୋଲି ମନେକରିଛନ୍ତି । ସର୍ବତ୍ର ହିଁ ଶକ୍ତିପ୍ରବାହ । ଏହି ଗତିସମଷ୍ଟି ଗୋଟିଏ ସମୟରେ ସ୍ଥିର ହୋଇଥାଏ ଏବଂ ସୂକ୍ଷ୍ମରୁ ସୂକ୍ଷ୍ମତର ଅବସ୍ଥାକୁ ଗମନ କରେ ଏବଂ କିଛି କାଳ ଲାଗି ସେହି ଅବସ୍ଥାରେ ସ୍ଥିତ କରେ । ଏହି ସ୍ତୋତ୍ରରେ ଏହି ଅବସ୍ଥାର କଥା ହିଁ ବର୍ଣ୍ଣିତ ହୋଇ-ଅଛି । ଏହି ଜଗତ ସ୍ପନ୍ଦନହୀନ ହୋଇ ନିଶ୍ଚଳ ଅବସ୍ଥାରେ ଥିଲା । ଯେତେବେଳେ ଏହି ସୃଷ୍ଟିର ସୂଚନା ହେଲା, ସେତେବେଳେ ଏହା ସ୍ପନ୍ଦିତ ହେବାକୁ ଆରମ୍ଭ କଲା ଏବଂ ଏହା ଭିତରୁ ଜଗତ ବାହାରି ଆସିଲା । ସେହି ପୁରୁଷର ନିଃଶ୍ୱାସ ଶାନ୍ତ ସ୍ୱୟଂସମ୍ପୂର୍ଣ୍ଣ—ଏହାର ବାହାରେ ଆଉ କିଛି ନାହିଁ ।

ପ୍ରଥମେ ଥିଲା କେବଳ ଅନ୍ଧକାର । ତୁମମାନଙ୍କ ଭିତରୁ ଯେଉଁମାନେ ଭାରତବର୍ଷ ଅଥବା ଅନ୍ୟ କୌଣସି ଗ୍ରୀଷ୍ମମଣ୍ଡଳର ଦେଶକୁ ଯାଇ ମୌସୁମୀ ବାୟୁଚାଳିତ ମେଘବିସ୍ତାର ଦେଖିଅଛ, ସେହିମାନେ କେବଳ ଏହି ବାକ୍ୟର ଗାମ୍ଭୀର୍ଯ୍ୟ ବୁଝିପାରିବ । ଆମର ମନେ-ଅଛି —ତିନିଜଣ କବି ଏହି ଦୃଶ୍ୟ ବର୍ଣ୍ଣନା କରିବାକୁ ଚେଷ୍ଟା କରିଛନ୍ତି । ମିଲ୍‌ଟନ କହିଛନ୍ତି, "ସେଠାରେ ଆଲୋକ ନାହିଁ, ବରଂ ଅନ୍ଧକାର ଦୃଶ୍ୟମାନ ।" କାଳିଦାସ କହିଛନ୍ତି— "ସୂଚିଭେଦ୍ୟ ଅନ୍ଧକାର" । କିନ୍ତୁ କେହି ବି ଏହି ବୈଦିକ ବର୍ଣ୍ଣନାର ନିକଟବର୍ତ୍ତୀ ହୋଇ-ପାରି ନାହାନ୍ତି—"ଅନ୍ଧକାର ମଧ୍ୟରେ ଅନ୍ଧକାର ଲୁଚି ରହିଥିଲା ।" ସବୁବସ୍ତୁ ଦହ୍ୟମାନ, ମର୍ମରିତ—ଶୁଷ୍କ, ସମଗ୍ର ସୃଷ୍ଟି ଯେପରି ଭସ୍ମୀଭୂତ ହୋଇଯାଉଛି ଏବଂ ଏହି ଭାବରେ କେତେଦିନ ଅତିବାହିତ ହେଲା ପରେ ଦିନେ ସାୟାହ୍ନକାଳରେ ଦିକ୍‌ଚକ୍ରବାଳର ଗୋଟିଏ ପ୍ରାନ୍ତରେ ଖଣ୍ଡିଏ ମେଘ ଦେଖା ଦେଲା ଏବଂ ଅଧଘଣ୍ଟାଏ ମଧ୍ୟରେ ମେଘରେ ସାରା ପୃଥିବୀ ଢାଙ୍କି ହୋଇଗଲା । ମେଘ ଉପରେ ମେଘ, ସ୍ତରେ ସ୍ତରେ ମେଘ— ତା'ପରେ ପ୍ରବଳ ଧାରାରେ ଏହା ଯେପରି ଫାଟି ପଡ଼ିଲା ! ତା'ପରେ ପ୍ଲାବନ ଆରମ୍ଭ ହୋଇଗଲା ।

ଏଠାରେ ଇଚ୍ଛା ହିଁ ସୃଷ୍ଟିର କାରଣରୂପେ ବର୍ଣ୍ଣିତ ହୋଇଛି । ପ୍ରଥମେ ଯାହା ଥିଲା, ତାହା ଯେପରି ଇଚ୍ଛାରୂପେ ପରିଣତ ହେଲା ଏବଂ କ୍ରମେ ତାହାର ଭିତରୁ ହିଁ ବାସନାର ପ୍ରକାଶ ହେଲା । ଏହିଟି ଆମର ବିଶେଷରୂପେ ସ୍ମରଣ ରଖିବା ଉଚିତ । କାରଣ, ଏହି ବାସନା ହିଁ ଆମର ଯାହା କିଛି ପ୍ରତ୍ୟକ୍ଷର କାରଣରୂପେ ବର୍ଣ୍ଣିତ ହୋଇଅଛି । ଏହି ଇଚ୍ଛାର ଧାରଣା ହିଁ ବୌଦ୍ଧ ଓ ବେଦାନ୍ତ ସମ୍ପ୍ରଦାୟର ଭିତ୍ତିସ୍ୱରୂପ ଏବଂ ପରବର୍ତ୍ତୀ କାଳରେ ଜର୍ମାନୀ ଦର୍ଶନରେ ପ୍ରବିଷ୍ଟ ହୋଇ ଶୋପେନ୍‌ହାଓ୍ୱାରଙ୍କ ଦର୍ଶନର ଭିତ୍ତିସ୍ୱରୂପ ହୋଇ-ଅଛି । ଏହିଠାରେ ହିଁ ଆମେ ପ୍ରଥମେ ପାଉ—

ବ୍ୟକ୍ତ ମନ ଭିତରେ ଉପ୍ତ ହୋଇଛି ଯେ ବୀଜ
ସେହି କେଉଁ ସୁଦୂର ପ୍ରଭାତରେ
ପ୍ରଥମ କରି ଜାଗି ଉଠିଲା ଏହି ଇଚ୍ଛା
ବାସନାର ଅଙ୍କୁର !
ଜ୍ଞାନର ସହାୟତାରେ କବିର କଳ୍ପନା
ଖୋଜିଲା ତାକୁ ହୃଦୟ ଭିତରେ ।
ଦେଖିଲା ସେଠାରେ—
ସତ୍ ଓ ଅସତ୍ ବିସ୍ତ୍ରିତ
ଗୋଟିଏ ବନ୍ଧନରେ ଜଡ଼ିତ ହୋଇ ।

ଋକ୍‌ବେଦର ନାସଦୀୟସୂକ୍ତର ୪ର୍ଥ ମନ୍ତ୍ରଟି ଏହିପରି—

କାମସ୍ତଦଗ୍ରେ ସମବର୍ତ୍ତତାଧି ମନସୋ ରେତଃ ପ୍ରଥମଂ ଯଦାସୀତ୍,
ସତୋବନ୍ଧୁମସତି ନିରବିନ୍ଦନ୍ ହୃଦି ପ୍ରତୀଷ୍ୟା କବୟୋ ମନୀଷା ।

ଏହା ଏକ ନୂତନ ପ୍ରକାରର ଅଭିବ୍ୟକ୍ତି, କବି ଏହା କହି ସମାପ୍ତି କଲେ—

"ସେ ମଧ୍ୟ ବୋଧହୁଏ ଜାଣନ୍ତି ନାହିଁ—ସେହି ଅଧ୍ୟକ୍ଷ ମଧ୍ୟ ସୃଷ୍ଟିର କାରଣ ଜାଣନ୍ତି ନାହିଁ ।"

ଋକ୍‌ବେଦର ସେହି ନାସଦୀୟ ସୂକ୍ତର ୭ମ ମନ୍ତ୍ରଟି ହେଲା—

ଇୟଂ ବିସୃଷ୍ଟିର୍ଯତ ଆବଭୂବ ଯଦି ବା ଦଧେ ଯଦି ବା ନ,
ଯୋ ଅସ୍ୟାଧ୍ୟକ୍ଷଃ ପରମେ ବ୍ୟୋମନ୍ ସୋ ଅଙ୍ଗ ବେଦ ଯଦି ବା ନ ବେଦ ।

ଆମେମାନେ ଏହି ସୂକ୍ତରେ ଦେଖିବାକୁ ପାଉ—ଏହାର କାବ୍ୟମାଧୁରୀ ବ୍ୟତୀତ ବିଶ୍ୱରଚନା ସମ୍ବନ୍ଧରେ ପ୍ରଶ୍ନଟି ଏକ ନିର୍ଦ୍ଦିଷ୍ଟ ଆକାର ଧାରଣ କରିଛି ଏବଂ ଏହିସବୁ ଋଷି-ମାନଙ୍କର ମନ ଏପରି ଗୋଟିଏ ଅବସ୍ଥାରେ ଉପନୀତ ହୋଇଅଛି ଯେ, ସେମାନେ ଆଉ ସାଧାରଣ ଉତ୍ତରରେ ସନ୍ତୁଷ୍ଟ ନୁହନ୍ତି । ଆମେ ଏଠାରେ ଦେଖୁ ଯେ ସେମାନେ 'ପରମ ବ୍ୟୋମରେ ଅଧିଷ୍ଠିତ ଏହି ଜଗତର ଅଧ୍ୟକ୍ଷରୂପେ ଜଣେ ଶାସନକର୍ତ୍ତା' ସିଦ୍ଧାନ୍ତ ଉପରେ ସନ୍ତୁଷ୍ଟ ନୁହନ୍ତି । ଏହି ବିଶ୍ୱ କି ଭାବରେ ଆବିର୍ଭୂତ ହେଲା—ଏ ସମ୍ବନ୍ଧରେ ପୂର୍ବେ ଆମେ ଯେଉଁଭଳି ଦେଖିଅଛୁ ସେହି ଗୋଟିଏ ଧାରଣା ନାନା ସୂକ୍ତରେ ଦେଖିବାକୁ ମିଳେ ।

ସେମାନେ ଜଣେ ବ୍ୟକ୍ତିବିଶେଷଙ୍କୁ ଏହି ବିଶ୍ୱର ଅଧ୍ୟକ୍ଷରୂପେ ଖୋଜି ବାହାର କରିବାକୁ ଚେଷ୍ଟା କରିଥିଲେ ଏବଂ ସେଥିପାଇଁ ଜଣେ ଜଣେ ଦେବତାଙ୍କୁ ଗ୍ରହଣ କରି ତାଙ୍କୁ ସେହି ଈଶ୍ୱରଙ୍କ ଆସନରେ ବସାଇଥିଲେ । ସେଥିଲାଗି ବିଭିନ୍ନ ସ୍ତୋତ୍ରରେ ଆମେ ଦେଖିବାକୁ ପାଉ, ଗୋଟିଏ ଗୋଟିଏ ବିଭିନ୍ନ ତତ୍ତ୍ୱକୁ ଗ୍ରହଣ କରି ତାକୁ ଅନନ୍ତରୂପରେ ବର୍ଦ୍ଧିତ କରି ନିଖିଳ ବିଶ୍ୱର କାରଣ ବୋଲି ନିର୍ଦ୍ଦେଶ କରାଯାଇଛି । କୌଣସି ଏକ ବିଶିଷ୍ଟ ତତ୍ତ୍ୱ ଏହି ଜଗତର ଆଧାରରୂପେ ଗୃହୀତ ହୋଇଅଛି, ଯେଉଁଥିରେ ଏହି ବିଶ୍ୱର ସ୍ଥିତି ଏବଂ ଯେଉଁ ଆଧାର ଏହି ବିଶ୍ୱରୂପରେ ପରିଣତ ହୋଇଅଛି । ଏହିରୂପେ ନାନା ଆଦର୍ଶ ଗ୍ରହଣ କରି ସେମାନେ ବିଶ୍ୱରହସ୍ୟ ସମାଧାନର ଚେଷ୍ଟା କରିଛନ୍ତି ।

ପ୍ରାଣ ହିଁ ଜୀବନୀଶକ୍ତି; ସେମାନେ ଏହି ପ୍ରାଣତତ୍ତ୍ୱ ଗ୍ରହଣ କରି ତାକୁ ଏପରିଭାବେ ବର୍ଦ୍ଧିତ କରିବାକୁ ଲାଗିଲେ ଯେ ଏହି ପ୍ରାଣଶକ୍ତି ଏକ ଅନନ୍ତ ତତ୍ତ୍ୱରେ ପରିଣତ ହେଲା । ଏହି ପ୍ରାଣଶକ୍ତି ସବୁକୁ ଧାରଣ କରୁଅଛି— କେବଳ ମନୁଷ୍ୟ ଶରୀରକୁ ନୁହେଁ, ଏହି ପ୍ରାଣଶକ୍ତି ସୂର୍ଯ୍ୟ ଓ ଚନ୍ଦ୍ରର ମଧ୍ୟ ଆଲୋକ—ଏହା ହିଁ ସବୁକିଛିକୁ ସ୍ପନ୍ଦିତ କରୁଅଛି । ଏହା ହିଁ ବିଶ୍ୱର ପ୍ରେରଣାଶକ୍ତି ।

ସମସ୍ୟାର ସମାଧାନରେ ଏହିସବୁ ଚେଷ୍ଟା ଖୁବ୍ ସୁନ୍ଦର—ବେଶ୍ କାବ୍ୟମଧୁର । ସେଗୁଡ଼ିକ ମଧ୍ୟରେ କେତେକ, ଯଥା "ସେ ହିଁ ସୁନ୍ଦରୀ ଉଷାର ଆଗମନ ବାର୍ତ୍ତା ଘୋଷଣା କରନ୍ତି"—ପ୍ରଭୃତି ସେମାନେ ଯେପରି ଭାବେ ଚିତ୍ରିତ କରିଛନ୍ତି ତାହା ବାସ୍ତବିକ ଅପୂର୍ବ ଗୀତିମୟ ।

ଏହି ଯେ 'ଇଚ୍ଛା' ଯାହା ଆମେ ବର୍ତ୍ତମାନ ପାଠ କଲୁ—ଯାହା କି ସୃଷ୍ଟିର ଆଦି ବୀଜ ରୂପେ ଉତ୍ଥିତ ହୋଇଥିଲା, ତାକୁ ସେମାନେ ଏପରିଭାବରେ ବିସ୍ତୃତ କରିବାକୁ ଲାଗିଲେ ଯେ, ଶେଷ ପର୍ଯ୍ୟନ୍ତ ଏହା ଏକ ବିଶ୍ୱଜନୀନ ଈଶ୍ୱରରେ ପରିଣତ ହେଲା । କିନ୍ତୁ ଏହି ଭାବଗୁଡ଼ିକର କୌଣସିଟି ହିଁ ସେମାନଙ୍କୁ ସନ୍ତୁଷ୍ଟ କରିପାରିଲା ନାହିଁ ।

ଏହି ଆଦର୍ଶ କ୍ରମେ ମହିମାନ୍ୱିତ ହୋଇ ଶେଷରେ ଏକ ବିରାଟ ବ୍ୟକ୍ତିତ୍ୱରେ ଘନୀଭୂତ ହେଲା । ଋକ୍‌ବେଦ, ୧୦।୧୨୧।୧-୪ ମନ୍ତ୍ର( ହିରଣ୍ୟଗର୍ଭ ସୂକ୍ତ)ରେ ବର୍ଣ୍ଣିନା ହେଲା, "ସେ ଥିଲେ ସୃଷ୍ଟିର ଅଗ୍ରଭାଗରେ, ସେ ସବୁ କିଛିର ଅଧୀଶ୍ୱର, ସେ ବିଶ୍ୱକୁ ଧରିଅଛନ୍ତି, ସେ ଜୀବର ସ୍ରଷ୍ଟା, ସେ ବଳବିଧାତା, ସବୁ ଦେବତା ଯାହାଙ୍କୁ ଉପାସନା କରନ୍ତି, ଜୀବନ ଓ ମୃତ୍ୟୁ ଯାହାଙ୍କର ଛାୟା—ତାଙ୍କୁ ଛାଡ଼ି ଆଉ କେଉଁ ଦେବତାଙ୍କୁ ଆମେ ଉପାସନା କରିବୁ ? ତୁଷାରମୌଳି ହିମାଳୟ ଯାହାଙ୍କର ମହିମା ଘୋଷଣା କରୁଅଛି, ସମୁଦ୍ର ତାର ସମଗ୍ର ଜଳରାଶି ସହ ଯାହାଙ୍କ ମହିମା ଘୋଷଣା କରୁଅଛି"—ଏହି ଭାବରେ ତାଙ୍କର ବର୍ଣ୍ଣିନା କରାଯାଇଛି । କିନ୍ତୁ ମୁଁ ବର୍ତ୍ତମାନ କହିଲି ଯେ, ଏହି ସମସ୍ତ ଧାରଣା ମଧ୍ୟ ସେହି ଋଷିମାନଙ୍କୁ ସନ୍ତୁଷ୍ଟ କରିପାରି ନ ଥିଲା ।

ଅବଶେଷରେ ବେଦରେ ଆମେ ଏକ ଅଦ୍ଭୁତ ଧାରଣା ଦେଖିବାକୁ ପାଉ । ସେହି ଯୁଗରେ ଆର୍ଯ୍ୟମାନଙ୍କର ମନ ଏତେଦିନ ବହିଃପ୍ରକୃତିରୁ ଏହି ପ୍ରଶ୍ନର ( କିଏ ସେହି

ସର୍ବଙ୍କ ଏକମାତ୍ର ସ୍ରଷ୍ଟା ? ) ଉତ୍ତର ଅନୁସନ୍ଧାନ କରୁଥିଲେ । ସେମାନେ ସୂର୍ଯ୍ୟ, ଚନ୍ଦ୍ର, ନକ୍ଷତ୍ରରାଶି ପ୍ରଭୃତି ସର୍ବବସ୍ତୁର କାରଣ ଜିଜ୍ଞାସା କରି ସାଧ୍ୟାନୁଯାୟୀ ତାହାର ସମାଧାନ ବି କରିଥିଲେ । ସମଗ୍ର ବିଶ୍ୱ ସେମାନଙ୍କୁ କେବଳ ଏତିକି ମାତ୍ର ଶିଖାଇଥିଲା—ବିଶ୍ୱର ନିୟନ୍ତା ଜଣେ ସଗୁଣ ଈଶ୍ୱର ଅଛନ୍ତି । ବହିଃପ୍ରକୃତି ଏହା ଅପେକ୍ଷା ଆଉ କିଛି ଅଧିକ ଶିଖାଇ-ପାରେ ନାହିଁ । ଫଳେପରେ ବହିଃପ୍ରକୃତିରୁ ଆମେ ମାତ୍ର ଜଣେ ବିଶ୍ୱ-ସ୍ଥପତିର ଅସ୍ତିତ୍ୱ ଧାରଣା କରିପାରୁ । ଏହି ଧାରଣା ରଚନାକୌଶଳବାଦ (Design Theory) ବୋଲି ଅଭିହିତ ହୋଇଛି । ଆମେ ସମସ୍ତେ ଜାଣୁ—ଏହିଭଳି ମୀମାଂସା ଖୁବ୍ ବେଶୀ ଯୁକ୍ତିସଙ୍ଗତ ନୁହେଁ । ଏହି ମତବାଦ କେତେକାଂଶରେ ପିଲାଳିଆ, ତଥାପି ବହିର୍ଜଗତର କାରଣାନୁସନ୍ଧାନ-ଦ୍ୱାରା ଏତିକି ମାତ୍ର ଆମେ ଜାଣିପାରୁ ଯେ, ଏହି ଜଗତର ଜଣେ ନିର୍ମାତା ପ୍ରୟୋଜନ । କିନ୍ତୁ ଏହାଦ୍ୱାରା ଆଦୌ ଜଗତର ବ୍ୟାଖ୍ୟା ହେଲା ନାହିଁ । ଏହି ଜଗତର ଉପାଦାନ ତ ଈଶ୍ୱରଙ୍କ ପୂର୍ବରୁ ହିଁ ଥିଲା ଏବଂ ତାଙ୍କର ଏହିସବୁ ଉପାଦାନର ପ୍ରୟୋଜନ ମଧ୍ୟ ଥିଲା । କିନ୍ତୁ ଏଥିରେ ଗୋଟିଏ ବଡ଼ ଆପତ୍ତି ଉଠିପାରେ ଯେ, ସେ ତା' ହେଲେ ଏହି ଉପାଦାନ-ଦ୍ୱାରା ସୀମାବଦ୍ଧ । ଗୃହନିର୍ମାତା ଉପାଦାନ ବ୍ୟତିରେକେ ଗୃହ ନିର୍ମାଣ କରିପାରନ୍ତି ନାହିଁ । ଅତଏବ ସେ ଉପାଦାନ ଦ୍ୱାରା ସୀମାବଦ୍ଧ ହେଲେ । ଉପାଦାନଦ୍ୱାରା ଯେତିକି ମାତ୍ର ସମ୍ଭବ, ସେତିକି ସେ ସୃଷ୍ଟି କରିପାରନ୍ତି । ସେଥିଲାଗି ରଚନାକୌଶଳବାଦର ଈଶ୍ୱର ଜଣେ ସ୍ଥପତି ମାତ୍ର ଏବଂ ସେହି ବିଶ୍ୱସ୍ଥପତି ସସୀମ; ଉପାଦାନଦ୍ୱାରା ସେ ସୀମାବଦ୍ଧ—ଆଦୌ ସ୍ୱାଧୀନ ନୁହନ୍ତି । ଏହି ପର୍ଯ୍ୟନ୍ତ ସେମାନେ ଏହା ପୂର୍ବରୁ ଆବିଷ୍କାର କରିଥିଲେ ଏବଂ ବହୁ ମାନବଚିତ୍ତ ଏହିଠାରେ ହିଁ ବିଶ୍ରାମ କରିପାରେ । ଅନ୍ୟାନ୍ୟ ଦେଶର ଚିନ୍ତାକ୍ଷେତ୍ରରେ ଏହା ହିଁ ଘଟିଥିଲା । କିନ୍ତୁ ମନୁଷ୍ୟମନ ଏଥିରେ ତୃପ୍ତ ହୋଇପାରେ ନାହିଁ । ଚିନ୍ତାଶୀଳ, ଅବଧାରଣଶୀଳ ଚିତ୍ତ ଆହୁରି ଅଧିକ ଦୂର ଅଗ୍ରସର ହେବାକୁ ଚାହିଁଲା । କିନ୍ତୁ ଯେଉଁମାନେ ପଶ୍ଚାଦ୍‌ବର୍ତ୍ତୀ ସେମାନେ ଏହାକୁ ହିଁ ଧରି ରହିଗଲେ ଏବଂ ଅଗ୍ରବର୍ତ୍ତୀମାନଙ୍କୁ ଆଉ ଅଗ୍ରସର ହେବାକୁ ଦେଲେ ନାହିଁ । କିନ୍ତୁ ସୌଭାଗ୍ୟକ୍ରମେ ଏହି ହିନ୍ଦୁ ଋଷିମାନେ ଆଘାତ ପାଇ ହଟିଯିବାର ପାତ୍ର ନ ଥିଲେ । ସେମାନେ ଏହାର ସମାଧାନ ଚାହିଁଲେ ଏବଂ ବର୍ତ୍ତମାନ ଆମେ ଦେଖୁଛୁ ଯେ, ସେମାନେ ବାହାରକୁ ତ୍ୟାଗ କରି ଅନ୍ତରରେ ପ୍ରବିଷ୍ଟ ହୋଇଛନ୍ତି ।

ପ୍ରଥମେ ହିଁ ସେମାନଙ୍କ ମନରେ ଏହି ସତ୍ୟ ଧରା ପଡ଼ିଥିଲା ଯେ, ଚକ୍ଷୁ ପ୍ରଭୃତି ଇନ୍ଦ୍ରିୟଦ୍ୱାରା ଆମେ ଏହି ବହିର୍ଜଗତକୁ ପ୍ରତ୍ୟକ୍ଷ କରୁ ନାହିଁ ବା ଆଧ୍ୟାତ୍ମିକ ତତ୍ତ୍ୱ ସମ୍ବନ୍ଧରେ କିଛି ଜାଣିପାରୁ ନାହିଁ । ସେମାନଙ୍କର ପ୍ରଥମ ଚେଷ୍ଟା ସେଥିପାଇଁ ଆମର ଶାରୀରିକ ଏବଂ ମାନସିକ ଅକ୍ଷମତା ନିର୍ଦ୍ଦେଶ କରିବା—ଏହା ଆମେ କ୍ରମଶଃ ଦେଖିବାକୁ ପାଇବା । ଜଣେ ଋଷି କହିଲେ—"ତୁମେ ଏହି ବିଶ୍ୱର କାରଣ ଜାଣ ନାହିଁ । ତୁମ ଓ ମୋ ଭିତରେ ଏକ ବିରାଟ ବ୍ୟବଧାନର ସୃଷ୍ଟି ହୋଇଛି—କାହିଁକି ? ତୁମେ ଇନ୍ଦ୍ରିୟପର ବିଷୟ ସମ୍ବନ୍ଧରେ କଥା କହୁଅଛ ଏବଂ ବିଷୟ ଓ ଧର୍ମର ଆନୁଷ୍ଠାନିକ ବ୍ୟାପାରରେ ସନ୍ତୁଷ୍ଟ ରହିଅଛ—ପକ୍ଷାନ୍ତରେ ମୁଁ ସେହି ଇନ୍ଦ୍ରିୟାତୀତ ପୁରୁଷଙ୍କୁ ଜାଣିଛି ।"

ମୁଁ ଯେ ଏହି ଆଧ୍ୟାତ୍ମିକ ପ୍ରଗତିର ଅନୁସରଣ କରିବାକୁ ଚେଷ୍ଟା କରୁଛି, ତାହା ସଙ୍ଗେ ସଙ୍ଗେ ଧର୍ମର ଅପର ଦିଗ, ଯାହା ସହିତ ମୋର ପ୍ରତିପାଦ୍ୟ ବିଷୟର କୌଣସି ସମ୍ବନ୍ଧ ନାହିଁ ଏବଂ ଯେଉଁଥିଲାଗି ମୁଁ ଏହା ବିଶଦରୂପେ ଉପସ୍ଥାପିତ କରିବାକୁ ଇଚ୍ଛୁକ ନୁହେଁ— ସେହି ଅନୁଷ୍ଠାନିକ ଧର୍ମର ବୃଦ୍ଧି ସମ୍ବନ୍ଧରେ ଏଠାରେ କିଛି କହିବି । ଯଦି ଆଧ୍ୟାତ୍ମିକ ଧାରଣାର ପ୍ରଗତି ସମାନ୍ତରରେ (Arithmetical Progression) ବର୍ଦ୍ଧିତ ହୁଏ, ତାହା ହେଲେ ଅନୁଷ୍ଠାନିକ ଧର୍ମର ପ୍ରଗତି ସମଗୁଣିତାନ୍ତର (Geometrical Progression) ବେଗରେ ବର୍ଦ୍ଧିତ ହୋଇଅଛି । ପ୍ରାଚୀନ କୁଟସ୍ଥାର ଏକ ବିରାଟ ଅନୁଷ୍ଠାନିକ ବ୍ୟାପାରରେ ପରିଣତ ହୋଇଅଛି । ଏହା ଧୀରେ ଧୀରେ ବିରାଟ ଆକାର ଧାରଣ କରି ହିନ୍ଦୁର ଜୀବନୀଶକ୍ତିକୁ ଏହାର ଉପରେ ପ୍ରାୟ ଧ୍ୱଂସ କରିଦେଇଛି । ଏହା ସେଠାରେ ବର୍ତ୍ତମାନ ମଧ୍ୟ ତଦ୍ରୂପ ରହିଅଛି । ଏହା ଆମମାନଙ୍କୁ କଠୋରଭାବରେ ଧରି ରଖିଛି ଏବଂ ଆମ ଜୀବନୀଶକ୍ତିର ମଜ୍ଜାରେ ମଜ୍ଜାରେ ପ୍ରବିଷ୍ଟ ହୋଇ ଜନ୍ମରୁ ହିଁ ଆମକୁ କ୍ରୀତଦାସରେ ପରିଣତ କରିଅଛି । ତଥାପି, ସେହି ପ୍ରାଚୀନ କାଳରୁ ଆମେ ଦେଖିବାକୁ ପାଉ ଅନୁଷ୍ଠାନର ବୃଦ୍ଧି ସଙ୍ଗେ ସଙ୍ଗେ ତାହା ବିରୋଧରେ ଯୁଦ୍ଧ ମଧ୍ୟ ଚାଲିଛି । ଏହାର ବିରୋଧରେ ଯେ ଗୋଟିଏ ଆପତ୍ତି ଉଠିଥିଲା, ତାହା ହେଉଛି ଏହି କ୍ରିୟାକାଣ୍ଡରେ ପ୍ରୀତି, ନିର୍ଦ୍ଦିଷ୍ଟ ସମୟରେ ପରିଚ୍ଛଦ ଧାରଣ, ନିର୍ଦ୍ଦିଷ୍ଟ ଉପାୟରେ ଖିଆପିଆ—ଧର୍ମର ଏହି ସବୁ ବାହ୍ୟ ଘଟା ଓ ମୂକ ନାଟ୍ୟାଭିନୟ, ବହିରଙ୍ଗଧର୍ମ; ଏହା କେବଳ ମନୁଷ୍ୟର ଇନ୍ଦ୍ରିୟକୁ ତୃପ୍ତ କରେ, ଇନ୍ଦ୍ରିୟର ଅତୀତ ପ୍ରଦେଶକୁ ଯିବାକୁ ଦିଏ ନାହିଁ । ଆମର ଓ ପ୍ରତ୍ୟେକ ମନୁଷ୍ୟ ପକ୍ଷରେ ଆଧ୍ୟାତ୍ମିକ ଜଗତରେ ଅଗ୍ରସର ହେବା ଲାଗି ଏହା ହିଁ ହେଲା ଏକ ପ୍ରଚଣ୍ଡ ବାଧା ।

ତା' ଛଡ଼ା, ଯଦ୍ୟପି ଆମେ ଆଧ୍ୟାତ୍ମିକ ବିଷୟ ଶ୍ରବଣ କରିବାକୁ ଇଚ୍ଛା କରୁ, ତାହା ମଧ୍ୟ ଇନ୍ଦ୍ରିୟ-ଉପଯୋଗୀ ନ ହେଲେ ଆମର ଚଳିବ ନାହିଁ । ଜଣେ ବ୍ୟକ୍ତି କେତେଦିନ ଧରି ଦର୍ଶନ, ଈଶ୍ୱର, ଅତୀନ୍ଦ୍ରିୟ ବସ୍ତୁ ଶ୍ରବଣ କରିବା ପରେ ଜିଜ୍ଞାସା କରିଥାଏ— "ଆଚ୍ଛା ଠିକ୍ ଅଛି । ତେବେ ଏଥିରେ କେତେ ଟଙ୍କା ମିଳିପାରେ ? ଏହାଦ୍ୱାରା କେତେ ଦୂର ଇନ୍ଦ୍ରିୟ ସମ୍ଭୋଗ ହୋଇପାରେ ?" ଏମାନେ ଅବଶ୍ୟ ସମ୍ଭୋଗ କହିଲେ କେବଳ ମାତ୍ର ଇନ୍ଦ୍ରିୟସୁଖକୁ ହିଁ ବୁଝିଥାଆନ୍ତି । ଏହା ଖୁବ୍ ସ୍ୱାଭାବିକ । କିନ୍ତୁ ଆମର ଋଷିମାନେ କହିଛନ୍ତି—"ଇନ୍ଦ୍ରିୟତୃପ୍ତି ହିଁ ସତ୍ୟ ଏବଂ ଆମ ମଧ୍ୟରେ ଏକ ଆବରଣ ବିସ୍ତାର କରି ରଖିଛି ।" କ୍ରିୟାକାଣ୍ଡରେ ଆନନ୍ଦ, ଇନ୍ଦ୍ରିୟରେ ତୃପ୍ତି ଏବଂ ବିଭିନ୍ନ ମତବାଦ, ସତ୍ୟ ଅଉ ଆମ ଭିତରେ ଏକ ଆବରଣ ଟାଣି ରଖିଛି । ଏହି ବିଷୟଟି ଆଧ୍ୟାତ୍ମିକ ରାଜ୍ୟର ଆଉ ଗୋଟିଏ ବିରାଟ ସୀମା-ନିର୍ଦ୍ଦେଶ । ଆମେ ଶେଷ ପର୍ଯ୍ୟନ୍ତ ଏହି ଆଦର୍ଶର ହିଁ ଅନୁସରଣ କରିବା ଏବଂ ଆମେ ଦେଖିବା, ଏହା କିଭଳି ବର୍ଦ୍ଧିତ ହୋଇ ବେଦାନ୍ତର ସେହି ଅଦ୍ଭୁତ ମାୟାବାଦରେ ପରିସମାପ୍ତ ହୋଇଛି । ଏହି ମାୟାର ଅବଗୁଣ୍ଠନ ହିଁ ବେଦାନ୍ତର ଯଥାର୍ଥ

ବ୍ୟାଖ୍ୟା । ସତ୍ୟ ଚିରନ୍ତନ ସ୍ୱମହିମାରେ ବିଦ୍ୟମାନ । କେବଳ ମାୟା ତା'ର ଅବଗୁଣ୍ଠନ-ଦ୍ୱାରା ତାକୁ ଆବୃତ କରି ରଖିଛି ।

ଏହି ଭାବରେ ଆମେ ଦେଖିବାକୁ ପାଉଛୁ ଯେ, ପ୍ରାଚୀନ ଚିନ୍ତାଶୀଳ ଆର୍ଯ୍ୟମାନେ ଏକ ନୂତନ ପ୍ରସଙ୍ଗ ଆରମ୍ଭ କରିଛନ୍ତି । ସେମାନେ ଆବିଷ୍କାର କଲେ—ବହିର୍ଜଗତର ଅନୁ-ସନ୍ଧାନଦ୍ୱାରା ଏହି ପ୍ରଶ୍ନର ଉତ୍ତର ମିଳିବ ନାହିଁ । ଅନନ୍ତ କାଳ ଧରି ବହିର୍ଜଗତରେ ଅନୁସନ୍ଧାନ କଲେ ମଧ୍ୟ ସେଠାରୁ ଏହି ପ୍ରଶ୍ନର କୌଣସି ଉତ୍ତର ମିଳିବ ନାହିଁ । ଏଥିଲାଗି ସେମାନେ ଅପର ପନ୍ଥା ଅବଲମ୍ବନ କଲେ ଏବଂ ତଦନୁଯାୟୀ ଜାଣିଲେ ଯେ, ଏହି ଇନ୍ଦ୍ରିୟ-ସୁଖର ବାସନା, କ୍ରିୟାକାଣ୍ଡ ପ୍ରତି ଆସକ୍ତ ପ୍ରବୃତ୍ତି ବାହ୍ୟ ବିଷୟଗୁଡ଼ିକ ବ୍ୟକ୍ତି ସହିତ ସତ୍ୟର ମିଳନ ମଧ୍ୟରେ ଏକ ବ୍ୟବଧାନ ଟାଣି ଦେଇଛି, ଯାହା କି କୌଣସି କ୍ରିୟାକାଣ୍ଡଦ୍ୱାରା ଅପସାରିତ ହେବାର ନୁହେଁ । ସେମାନେ ତେଣୁ ସେମାନଙ୍କର ମନୋଜଗତରେ ଆଶ୍ରୟ ନେଲେ ଏବଂ ନିଜ ନିଜ ମଧ୍ୟରେ ସେହି ସତ୍ୟକୁ ଆବିଷ୍କାର କରିବା ନିମିତ୍ତ ମନକୁ ବିଶ୍ଳେଷଣ କରିବାକୁ ଲାଗିଲେ । ସେମାନେ ବହିର୍ଜଗତରେ ବ୍ୟର୍ଥ ହୋଇ ଯେତେବେଳେ ଅନ୍ତର୍ଜଗତରେ ପ୍ରବେଶ କଲେ, ସେତିକିବେଳେ ହିଁ ଏହା ପ୍ରକୃତ ବେଦାନ୍ତ-ଦର୍ଶନରେ ପରିଣତ ହେଲା । ଏହିଠାରୁ ହିଁ ବେଦାନ୍ତ-ଦର୍ଶନର ଆରମ୍ଭ ଏବଂ ଏହା ହିଁ ବେଦାନ୍ତର ଭିତ୍ତି-ପ୍ରସ୍ତର । ଆମେ ଯେତିକି ଅଗ୍ରସର ହେବୁ, ସେତିକି ବୁଝିପାରିବୁ ଯେ, ଏହି ଦର୍ଶନର ସମସ୍ତ ଅନୁସନ୍ଧାନ ଅନ୍ତର୍ଦ୍ଦେଶରେ । ଦେଖାଯାଏ—ପ୍ରଥମରୁ ହିଁ ସେମାନେ ଘୋଷଣା କରିଛନ୍ତି, "କୌଣସି ଧର୍ମବିଶେଷରେ ସତ୍ୟର ଅନୁସନ୍ଧାନ କର ନାହିଁ, ସମସ୍ତ ରହସ୍ୟର ରହସ୍ୟ, ସମସ୍ତ ଜ୍ଞାନର କେନ୍ଦ୍ର, ଅସ୍ତିତ୍ୱର ଖଣି—ଏହି ମାନବାତ୍ମା ଭିତରେ ଅନୁସନ୍ଧାନ କର । ଯାହା ଏଠାରେ ନାହିଁ, ତାହା ସେଠାରେ ମଧ୍ୟ ନାହିଁ ।" କ୍ରମେ ସେମାନେ ବୁଝିପାରିଲେ ଯେ, ଯାହା ବାହ୍ୟ, ତାହା ଅନ୍ତରର ଖୁବ୍ ବେଶୀ ହେଲେ ଗୋଟିଏ ମଳିନ ପ୍ରତିବିମ୍ବ ମାତ୍ର । ଆମେ ଦେଖି-ବାକୁ ପାଇବା, ସେମାନେ କିପରି ଜଗତରୁ ପୃଥକ୍ ଏବଂ ଶାସକ ଈଶ୍ୱରଙ୍କର ପ୍ରାଚୀନ ଧାରଣାକୁ ପ୍ରଥମ କରି ବାହାରୁ ଆଣି ଅନ୍ତରରେ ସ୍ଥାପନ କଲେ । ଏହି ଭଗବାନ ଜଗତର ବାହାରେ ନୁହନ୍ତି, ଅନ୍ତରରେ; ଏବଂ ପରେ ସେଠାରୁ ତାଙ୍କୁ ନେଇ ଆସି ସେମାନେ ନିଜ ନିଜ ହୃଦୟରେ ପ୍ରତିଷ୍ଠା କରିଅଛନ୍ତି । ସେ ଏଠାରେ ଏହି ମାନବ-ହୃଦୟରେ ଅଛନ୍ତି—ସେ ଆମମାନଙ୍କ ଆତ୍ମାର ଆତ୍ମା—ଆମର ଅନ୍ତର୍ଯାମୀ ସତ୍ୟସ୍ୱରୂପ ।

ବେଦାନ୍ତ-ଦର୍ଶନର କର୍ମପ୍ରଣାଳୀ ଯଥାଯଥ ଭାବରେ ଆୟତ୍ତ କରିବାକୁ ହେଲେ, କେତେଗୁଡ଼ିଏ ମହତ୍ତ୍ୱ ଧାରଣା ପୂର୍ବରୁ ବୁଝିବାକୁ ହେବ । କାଣ୍ଟ୍ ଓ ହେଗେଲ୍‌ଙ୍କ ଦର୍ଶନ ଆମେ ଯେପରି ଭାବେ ବୁଝୁ, ବେଦାନ୍ତ ସେହି ଭାବର କୌଣସି ଦର୍ଶନଶାସ୍ତ୍ର ମାତ୍ର ନୁହେଁ । ଏହା କୌଣସି ଗ୍ରନ୍ଥବିଶେଷ ବା କୌଣସି ବ୍ୟକ୍ତିବିଶେଷଙ୍କ ଲେଖା ମଧ୍ୟ ନୁହେଁ । ବେଦାନ୍ତ ହେଉଛି—ବିଭିନ୍ନ କାଳରେ ରଚିତ ଗ୍ରନ୍ଥସମଷ୍ଟି । କେବେ କେବେ ଦେଖାଯାଏ, ଏହାର ଗୋଟିଏ ଗ୍ରନ୍ଥରେ ପଚାଶଟି ବିଷୟ ସନ୍ନିବିଷ୍ଟ ହୋଇଛି । ଅନ୍ୟ ବିଷୟଗୁଡ଼ିକ ଯଥାଯଥ

ଭାବେ ସଜ୍ଜିତ ମଧ୍ୟ ନୁହେଁ । ମାତ୍ର ଚିନ୍ତାଗୁଡ଼ିକର ଉଲ୍ଲେଖ ଦେଖିବାକୁ ମିଳେ । ଆମେ ଦେଖିବାକୁ ପାଉ, ନାନା ବିଜାତୀୟ ବିଷୟ ମଧ୍ୟରେ ଏକ ଅଦ୍ଭୁତ ତତ୍ତ୍ୱ ସନ୍ନିବିଷ୍ଟ । କିନ୍ତୁ ଗୋଟିଏ ବିଷୟ ଖୁବ୍ ପ୍ରଣିଧାନଯୋଗ୍ୟ ଯେ, ଉପନିଷଦ୍‌ର ଏହି ଆଦର୍ଶଗୁଡ଼ିକ ଚିର ପ୍ରଗତିଶୀଳ । ଋଷିମାନଙ୍କ ମନର କାର୍ଯ୍ୟାବଳୀ, ମନ ଭିତରେ ଯେଉଁପରିଭାବରେ କାର୍ଯ୍ୟ ଚାଲିଛି, ସେଗୁଡ଼ିକୁ ସେମାନେ ସେହି ପ୍ରାଚୀନ ଅସମ୍ପୂର୍ଣ୍ଣ ଭାଷାରେ ସେହିପରି ଭାବେ ଆଙ୍କିଯାଇଛନ୍ତି । ପ୍ରଥମ ଧାରଣାଗୁଡ଼ିକ ଅତି ସ୍ଥୂଳ, କ୍ରମେ ସେଗୁଡ଼ିକ ସୂକ୍ଷ୍ମରୁ ସୂକ୍ଷ୍ମତର ଧାରଣାରେ ପରିଣତ ହୋଇ ବେଦାନ୍ତର ଶେଷ ସୀମାରେ ଉପସ୍ଥିତ ହୋଇଅଛି ଏବଂ ପରେ ଏହି ଶେଷ ସିଦ୍ଧାନ୍ତ ଏକ ଦାର୍ଶନିକ ଆଖ୍ୟା ପ୍ରାପ୍ତ ହୋଇଛି । ଯେପରି ପ୍ରଥମେ ଆମେ ଦେଖିବାକୁ ପାଉ— ଦ୍ୟୋତନସ୍ୱଭାବ ଦେବତାଙ୍କର ଅନୁସନ୍ଧାନ, ତା'ପରେ ଆଦି ଜଗତ-କାରଣର ଅନ୍ୱେଷଣ ଏବଂ ସେହି ସତ୍ୟ ଗୋଟିଏ ମାତ୍ର ଅନୁସନ୍ଧାନ ଫଳରେ ଆଉ ଗୋଟିଏ ଅଧିକତର ସ୍ପଷ୍ଟ ଦାର୍ଶନିକ ଆଖ୍ୟା ପ୍ରାପ୍ତ ହୋଇଅଛି, ସମସ୍ତ ପଦାର୍ଥର ଏକତ୍ୱ—"ଯାହାକୁ ଜାଣିଲେ ସମସ୍ତ କିଛି ଜଣାଯାଏ ।"

# ହିନ୍ଦୁଧର୍ମ

[ପ୍ରାଚୀନ ବୈଦିକ ଋଷିମାନଙ୍କର ପ୍ରେମ ଓ ପରଧର୍ମ-ସହିଷ୍ଣୁତାପୂର୍ଣ୍ଣ ମଧୁର କଣ୍ଠସ୍ୱର ସେଦିନ ହିନ୍ଦୁ ସନ୍ନ୍ୟାସୀ ପରମହଂସ ସ୍ୱାମୀ ବିବେକାନନ୍ଦଙ୍କ ଭିତର ଦେଇ ପ୍ରକାଶ ପାଇଥିଲା ଏବଂ ବ୍ରୁକ୍‌ଲିନ୍ ଏଥିକାଲ୍ ସୋସାଇଟିର ନିମନ୍ତ୍ରଣକ୍ରମେ କ୍ଲିଣ୍ଟନ୍ ଏଭିନ୍ୟୁରେ ଅବସ୍ଥିତ ପାଉଚ୍ ଗାଲେରିର ପ୍ରକାଣ୍ଡ ବକ୍ତୃତାଗୃହ ଏବଂ ତତ୍‌ସଂଯୁକ୍ତ ଗୃହଗୁଡ଼ିକରେ ନିର୍ଦ୍ଦିଷ୍ଟ ସଂଖ୍ୟା ଅପେକ୍ଷା ବହୁ ଅଧିକ ଲୋକ ସମବେତ ହୋଇଥିଲେ ଏବଂ ସେହି ବହୁ ଶତ ଶ୍ରୋତୃବୃନ୍ଦଙ୍କ ଭିତରୁ ପ୍ରତ୍ୟେକଙ୍କୁ ସେହି କଣ୍ଠସ୍ୱର ମନ୍ତ୍ରମୁଗ୍ଧ କରି ରଖିଥିଲା ।— ୩୦ ଡିସେମ୍ବର ୧୮୯୪ ଖ୍ରୀଷ୍ଟାବ୍ଦ ।]

ଏହି ପ୍ରାଚ୍ୟ ସନ୍ନ୍ୟାସୀ 'ହିନ୍ଦୁଧର୍ମ' ନାମକ ସର୍ବାପେକ୍ଷା ପ୍ରାଚୀନ ଓ ଦର୍ଶନସମ୍ମତ ଧର୍ମୋପାସନାର ଦୂତ ଓ ପ୍ରତିଭୂରୂପେ ପାଶ୍ଚାତ୍ୟ ଦେଶମାନଙ୍କୁ ଆଗମନ କରିଥିଲେ । ତାଙ୍କର ଯଶ ପୂର୍ବରୁ ହିଁ ବିସ୍ତୃତ ହୋଇଥିଲା ଏବଂ ତାହାର ଫଳସ୍ୱରୂପ ଡାକ୍ତର, ଆଇନଜୀବୀ, ବିଚାରପତି, ଶିକ୍ଷକ ଓ ଅଧ୍ୟାପକ ପ୍ରଭୃତି ସକଳ ବିଭାଗର ଲୋକ ବହୁ ଭଦ୍ରମହିଳାଙ୍କ ସହିତ ସହରର ନାନା ସ୍ଥାନରୁ ଭାରତୀୟ ଧର୍ମର ଏହି ଅପୂର୍ବ ସୁନ୍ଦର ଓ ବାଗ୍ମିତାପୂର୍ଣ୍ଣ ବକ୍ତୃତା ଶ୍ରବଣ କରିବା ଲାଗି ସମବେତ ହୋଇଥିଲେ । ଏହାପୂର୍ବରୁ ସେମାନେ ଶୁଣିଥିଲେ ଯେ, ସେ ଚିକାଗୋ ବିଶ୍ୱମେଳାର ଅନ୍ତର୍ଗତ ଧର୍ମମହାସଭାରେ କୃଷ୍ଣ, ବ୍ରହ୍ମ ଏବଂ ବୁଦ୍ଧଙ୍କ ଉପାସକମାନଙ୍କ ତରଫରୁ ପ୍ରତିନିଧିତ୍ୱ କରିଥିଲେ ଏବଂ ସେଠାରେ ଅଖ୍ରୀଷ୍ଟାନ ପ୍ରତିନିଧିମଣ୍ଡଳୀ ମଧ୍ୟରେ ସର୍ବାପେକ୍ଷା ସମ୍ମାନିତ ହୋଇଥିଲେ । ସେମାନେ ପୂର୍ବରୁ ପଢ଼ିଥିଲେ ଯେ, ଏହି ଦର୍ଶନସମ୍ମତ ଧର୍ମ ଲାଗି ସେ ତାଙ୍କର ଉଜ୍ଜ୍ୱଳ ସାଂସାରିକ ଜୀବନ ତ୍ୟାଗ କରିଛନ୍ତି ଏବଂ ବହୁବର୍ଷର ଆଗ୍ରହପୂର୍ଣ୍ଣ ଓ ଧୀର ଅଧ୍ୟୟନ ଫଳରେ ପାଶ୍ଚାତ୍ୟ ବୈଜ୍ଞାନିକ ସଂସ୍କୃତିକୁ ଆୟତ୍ତ କରି ଐତିହ୍ୟପୂର୍ଣ୍ଣ ହିନ୍ଦୁ ସଭ୍ୟତାର ଅଧ୍ୟାତ୍ମ-ରହସ୍ୟପୂର୍ଣ୍ଣ ଭୂମିରେ ଏହା ରୋପଣ କରିଛନ୍ତି । ସେମାନେ ଇତିପୂର୍ବରୁ ତାଙ୍କର ଶିକ୍ଷା ଓ ସଂସ୍କୃତି, ଜ୍ଞାନ ଓ ବାଗ୍ମିତା, ପବିତ୍ରତା, ସାରଲ୍ୟ ଓ ସାଧୁତା ସମ୍ବନ୍ଧରେ ଶୁଣିଥିଲେ । ତେଣୁ ସେମାନେ ତାଙ୍କ ନିକଟରୁ ଅନେକ କିଛି ଆଶା କରିଥିଲେ ।

ଏ ବିଷୟରେ ସେମାନେ ହତାଶ ହୋଇ ନାହାନ୍ତି । ସ୍ୱାମୀ (ରବ୍‌ବି ବା ଆଚାର୍ଯ୍ୟ) ବିବେକାନନ୍ଦ ତାଙ୍କର ଯଶ ଅପେକ୍ଷା ମଧ୍ୟ ମହତ୍ତର । ସେ ଯେତେବେଳେ ଉଜ୍ଜ୍ୱଳ ଲାଲ୍‌ରଙ୍ଗର ଆଲଖାଲ୍ଲା ପରିଧାନ କରି ସଭାମଣ୍ଡପରେ ଦଣ୍ଡାୟମାନ ହେଲେ, ସେତେବେଳେ କେତେକ କୃଷ୍ଣବର୍ଣ୍ଣର ଚୂର୍ଣ୍ଣକୁନ୍ତଳ ତାଙ୍କର କମଳା ରଙ୍ଗର ବହୁଭଙ୍ଗୀଯୁକ୍ତ ପଗଡ଼ିର ପାଖ ଦେଇ ଦେଖାଯାଉଥିଲା । ମୁଖମଣ୍ଡଳର ଶ୍ୟାମଶ୍ରୀରେ ଚନ୍ଦ୍ରର ଔଜ୍ଜ୍ୱଲ୍ୟ ଫୁଟିଉଠୁଥିଲା । ଅଦ୍ଭୁତ ଭାବଦ୍ୟୋତକ ଚକ୍ଷୁଯୁଗଳ ଈଶ୍ୱରପ୍ରେରିତ ପୁରୁଷଙ୍କ ଉଦ୍ଦୀପନାରେ ଭାସ୍ୱର ଦିଶୁଥିଲା

ଓ ତାଙ୍କର ସାବଲୀଳ ମୁଖମଣ୍ଡଳରୁ ଗମ୍ଭୀର ସୁମଧୁର ସ୍ୱରରେ ପ୍ରାୟ ନିର୍ଭୁଲ ଶୁଦ୍ଧଇଂରେଜୀ ଭାଷାରେ କେବଳ ପ୍ରେମ ସହାନୁଭୂତି ଓ ପରମ ସହିଷ୍ଣୁତାର ବାଣୀ ଉଚ୍ଚାରିତ ହେଉଥିଲା । ସେ ଥିଲେ ହିମାଳୟର ପ୍ରସିଦ୍ଧ ଋଷିମାନଙ୍କର ଜଣେ ଅତ୍ୟାଶ୍ଚର୍ଯ୍ୟ ପ୍ରତିରୂପ, ବୌଦ୍ଧଧର୍ମର ଦାର୍ଶନିକତା ସହିତ ଖ୍ରୀଷ୍ଟଧର୍ମର ନୈତିକତାର ସମନ୍ୱୟକାରୀ ଏକ ନବୀନ ଧର୍ମର ପ୍ରବର୍ତ୍ତକ । ତାଙ୍କର ଶ୍ରୋତାମାନେ ବୁଝିପାରିଥିଲେ ଯେ, କାହିଁକି ୧୮୯୪ ଖ୍ରୀଷ୍ଟାବ୍ଦର ସେପ୍‌ଟେମ୍ବର ପାଞ୍ଚ ତାରିଖରେ ହିନ୍ଦୁଧର୍ମର ସମର୍ଥନକଲେ । ସେ ଯେଉଁ ମହତ୍ତ୍ୱ କାର୍ଯ୍ୟ ସମ୍ପନ୍ନ କରିଥିଲେ— କେବଳ ସେଥିଲାଗି ତାଙ୍କ ପ୍ରତି ସ୍ୱଦେଶବାସୀଙ୍କର କୃତଜ୍ଞତାପୂର୍ଣ୍ଣ ଧନ୍ୟବାଦ ପ୍ରକାଶ୍ୟ ଭାବରେ ଲିପିବଦ୍ଧ କରିବା ଉଦ୍ଦେଶ୍ୟରେ କଲିକତା ନଗରୀରେ ଏକ ମହତୀ ଜନସଭା ଆହୂତ ହୋଇଥିଲା । ସ୍ୱାମୀଜୀ ଲିଖିତ ବକ୍ତୃତା ନ ଦେଇ ମୌଖିକ ଭାଷଣ ଦେଇଥିଲେ । ବକ୍ତୃତା ସମ୍ବନ୍ଧରେ ଯେ ଯାହା ସମାଲୋଚନା କରୁ ପଛେ, ବାସ୍ତବିକ ଏହା ଅତ୍ୟନ୍ତ ହୃଦୟଗ୍ରାହୀ ହୋଇଥିଲା । ଏଥିକାଲ୍ ଆସୋସିଏସନର ସଭାପତି ଡଃ ଲୁଇସ୍ ଜି: ଜେନ୍‌ସ ସ୍ୱାମୀଜୀଙ୍କ ପରିଚୟ ଦେବାପରେ ଶ୍ରୋତୃମଣ୍ଡଳୀ ତାଙ୍କୁ ଯେଉଁ ଆନ୍ତରିକ ଅଭ୍ୟର୍ଥନା ଜ୍ଞାପନ କଲେ, ତାହାଲାଗି ଧନ୍ୟବାଦ ଜ୍ଞାପନ କରି ସ୍ୱାମୀ ବିବେକାନନ୍ଦ ଯାହା କହିଥିଲେ ତାର କିୟଦଂଶ ଏହିପରି :]

ଶିକ୍ଷାଲାଭ କରିବା ହିଁ ମୋର ଧର୍ମ । ମୁଁ ମୋର ଧର୍ମଗ୍ରନ୍ଥ ତୁମମାନଙ୍କ ବାଇବେଲ୍‌ର ଆଲୋକରେ ଅଧିକତର ସ୍ପଷ୍ଟରୂପେ ପଢ଼ିପାରେ । ତୁମମାନଙ୍କ ଈଶ୍ୱରପ୍ରେରିତ ମହାପୁରୁଷ-ମାନଙ୍କ ବାଣୀ ସହିତ ତୁଳନା କଲେ ମୋ ଧର୍ମର ଅସ୍ପଷ୍ଟ ସତ୍ୟଗୁଡ଼ିକ ଅଧିକତର ଉଜ୍ଜ୍ୱଳ ରୂପେ ପ୍ରତିଭାତ ହୁଏ । ସତ୍ୟ ଚିରକାଳ ହିଁ ସାର୍ବଜନୀନ । ଯଦି ତୁମ ସମସ୍ତଙ୍କ ହାତରେ ମାତ୍ର ପାଞ୍ଚୋଟି ଆଙ୍ଗୁଠି ଥାଏ ଏବଂ ମୋ ହାତରେ ଥାଏ ଛଅଟି ଆଙ୍ଗୁଠି, ତା'ହେଲେ ତୁମେମାନେ କେହି ମନେ କରିବ ନାହିଁ ଯେ, ମୋର ହାତଟି ପ୍ରକୃତିର ଯଥାର୍ଥ ଉଦ୍ଦେଶ୍ୟ ସାଧନ କରୁଛି, ବରଂ ଏହା ଅସ୍ୱାଭାବିକ ଏବଂ ରୋଗପ୍ରସୂତ । ଧର୍ମ ସମ୍ବନ୍ଧରେ ମଧ୍ୟ ଠିକ୍ ସେହି କଥା ।

ଯଦି ଗୋଟିଏ ମାତ୍ର ସମ୍ପ୍ରଦାୟ ଠିକ୍ ହୁଏ ଏବଂ ଅନ୍ୟଗୁଡ଼ିକ ଅସତ୍ୟ ହୁଏ, ତେବେ ତୁମର କହିବାର ଅଧିକାର ଅଛି ଯେ, ଏହି ପୂର୍ବର ଧର୍ମଟି ଭୁଲ । ଯଦି ଗୋଟିଏ ଧର୍ମ ସତ୍ୟ ହୁଏ, ତା'ହେଲେ ବୁଝିବାକୁ ହେବ, ଅନ୍ୟଗୁଡ଼ିକ ମଧ୍ୟ ନିଶ୍ଚୟ ସତ୍ୟ । ଏହି ଦୃଷ୍ଟିରୁ ହିନ୍ଦୁଧର୍ମ ଉପରେ ତୁମମାନଙ୍କର ଠିକ୍ ସେତିକି ଦାବୀ ରହିଛି, ଯେତିକି ଦାବୀ ମୋର ଅଛି । ଊନବିଂଶ କୋଟି (ସେହି ସମୟରେ ଭାରତର ଲୋକସଂଖ୍ୟା) ଭାରତବାସୀଙ୍କ ଭିତରେ ମାତ୍ର କୋଡ଼ିଏ ଲକ୍ଷ ଖ୍ରୀଷ୍ଟାନ, ଛଅକୋଟି ମୁସଲମାନ ଏବଂ ବାକି ସମସ୍ତେ ହିନ୍ଦୁ ।

ପ୍ରାଚୀନ ବେଦ ଉପରେ ହିନ୍ଦୁମାନେ ସେମାନଙ୍କର ଧର୍ମବିଶ୍ୱାସ ପ୍ରତିଷ୍ଠା କରିଛନ୍ତି । 'ବେଦ' ଶବ୍ଦଟି ଜ୍ଞାନାର୍ଥକ 'ବିଦ୍' ଧାତୁରୁ ନିଷ୍ପନ୍ନ ହୋଇଛି । ବେଦ କେତେଗୁଡ଼ିଏ ପୁସ୍ତକର ସମଷ୍ଟି । ଆମ ମତରେ ଏଥିରେ ହିଁ ସବୁ ଧର୍ମର ସାର ନିହିତ । ତେବେ ଏ କଥା ଆମେ କହୁନାହିଁ ଯେ, ସତ୍ୟ କେବଳ ଏହାରି ଭିତରେ ନିହିତ ରହିଛି । ବେଦ ଆମମାନଙ୍କୁ

ଆତ୍ମାର ଅମରତ୍ୱ ଶିକ୍ଷା ଦିଏ । ପ୍ରତ୍ୟେକ ଦେଶରେ ପ୍ରତ୍ୟେକ ବ୍ୟକ୍ତିର ଅନ୍ତରର ସ୍ୱାଭାବିକ ଆକାଙ୍କ୍ଷା ଏକ ସ୍ଥାୟୀ ସାମ୍ୟ ଅବସ୍ଥାର ସନ୍ଧାନ କରିବା, ଯାହା କେବେ ହେଲେ ପରିବର୍ତ୍ତିତ ହୁଏ ନାହିଁ । ପ୍ରକୃତି ଭିତରେ ଆମେମାନେ ଏହାର ସାକ୍ଷାତ୍ ପାଉନାହିଁ । କାରଣ ସମଗ୍ର ବିଶ୍ୱ ଏକ ଅସୀମ ପରିବର୍ତ୍ତନର ସମଷ୍ଟି ବ୍ୟତୀତ ଅନ୍ୟ କିଛି ନୁହେଁ ।

କିନ୍ତୁ ଏଥିରୁ ଯଦି ଏହିଭଳି ଅନୁମାନ କରାଯାଏ ଯେ, ଏ ଜଗତରେ ଅପରିବର୍ତ୍ତନୀୟ କିଛି ନାହିଁ, ତେବେ ଆମେମାନେ ହୀନଯାନ ବୌଦ୍ଧ ଏବଂ ଚାର୍ବାକପନ୍ଥୀଙ୍କ ଭ୍ରମରେ ପଡ଼ିଯିବୁ । ଚାର୍ବାକ୍‌ପନ୍ଥୀମାନେ ବିଶ୍ୱାସ କରନ୍ତି ଯେ, ସବୁ କିଛି ଜଡ଼, ମନ ବୋଲି କିଛି ନାହିଁ । ଧର୍ମ ମାନେ ହିଁ ପ୍ରବଞ୍ଚନା ଏବଂ ନୈତିକତା ଓ ସତତା ଅପ୍ରୟୋଜନୀୟ କୁସଂସ୍କାର । ବେଦାନ୍ତ ଦର୍ଶନ ଶିକ୍ଷା ଦିଏ ଯେ, ମନୁଷ୍ୟ ପଞ୍ଚେନ୍ଦ୍ରିୟ ମଧ୍ୟରେ ଆବଦ୍ଧ ନୁହେଁ । ଇନ୍ଦ୍ରିୟମାନେ ବର୍ତ୍ତମାନକୁ ହିଁ ଜାଣିପାରନ୍ତି, ଭବିଷ୍ୟତ ବା ଅତୀତକୁ ନୁହେଁ । କିନ୍ତୁ ଏହି ବର୍ତ୍ତମାନ ଯେହେତୁ ଅତୀତ ଓ ଭବିଷ୍ୟତର ସାକ୍ଷ୍ୟ ଦିଏ ଏବଂ ଏହି ତିନୋଟି ହିଁ ଯେହେତୁ କାଳର ବିଭିନ୍ନ ନିର୍ଦ୍ଦେଶମାତ୍ର, ଅତଏବ ଯଦି ଇନ୍ଦ୍ରିୟାତୀତ, କାଳନିରପେକ୍ଷ ଏବଂ ଅତୀତ ଭବିଷ୍ୟତ ଓ ବର୍ତ୍ତମାନର ଐକ୍ୟ-ବିଧାନକାରୀ କୌଣସି ସତ୍ତା ନ ଥାଏ, ତେବେ ଏହି ବର୍ତ୍ତମାନ ମଧ୍ୟ ଅଜ୍ଞାତ ରହିଯିବ ।

କିନ୍ତୁ ସ୍ୱାଧୀନ କିଏ ? ଦେହ ସ୍ୱାଧୀନ ନୁହେଁ । କାରଣ ଏହା ବାହ୍ୟ ବିଷୟାଦି ଉପରେ ନିର୍ଭର କରେ । ମନ ମଧ୍ୟ ସ୍ୱାଧୀନ ନୁହେଁ—କାରଣ, ଯେଉଁ ଚିନ୍ତାରାଶିଦ୍ୱାରା ଏହା ଗଠିତ, ତାହା ମଧ୍ୟ ଆଉ ଏକ କାରଣର କାର୍ଯ୍ୟ । ଆମର ଆତ୍ମା ହିଁ ସ୍ୱାଧୀନ । ବେଦ କହନ୍ତି—ସମଗ୍ର ବିଶ୍ୱ, ସ୍ୱାଧୀନତା ଓ ପରାଧୀନତା—ମୁକ୍ତି ଓ ଦାସତ୍ୱର ମିଶ୍ରଣରେ ପ୍ରସ୍ତୁତ । କିନ୍ତୁ ଏହି ସମସ୍ତ ଦ୍ୱନ୍ଦ୍ୱ ମଧ୍ୟରେ ବି ସେହି ମୁକ୍ତ, ନିତ୍ୟ, ଶୁଦ୍ଧ, ପୂର୍ଣ୍ଣ ଓ ପବିତ୍ର ଆତ୍ମା ପ୍ରକାଶିତ ରହିଛି । ଯଦି ଏହା ସ୍ୱାଧୀନ ହୁଏ, ତାହା ହେଲେ ଏହାର ଧ୍ୱଂସ ସମ୍ଭବ ନୁହେଁ । କାରଣ ମୃତ୍ୟୁ ଗୋଟିଏ ପରିବର୍ତ୍ତନ ଏବଂ ଏକ ବିଶେଷ ଅବସ୍ଥା-ସାପେକ୍ଷ । ଆତ୍ମା ଯଦି ସ୍ୱାଧୀନ ହୁଏ, ଏହାକୁ ପୂର୍ଣ୍ଣ ହେବାକୁ ପଡ଼ିବ । କାରଣ—ଅସମ୍ପୂର୍ଣ୍ଣତା ମଧ୍ୟ ଏକ ଅବସ୍ଥା-ସାପେକ୍ଷ, ସେଥିପାଇଁ ଏହା ପରାଧୀନ । ପୁନଶ୍ଚ ଏହି ଅମର ପୂର୍ଣ୍ଣ ଆତ୍ମା ନିଶ୍ଚୟ ହିଁ ସର୍ବୋତ୍ତମ, ଭଗବାନଙ୍କଠାରୁ ନିକୃଷ୍ଟ ମାନବ ପର୍ଯ୍ୟନ୍ତ—ସମସ୍ତଙ୍କ ଭିତରେ ସମଭାବରେ ଅବସ୍ଥିତ; ଉଭୟର ପ୍ରଭେଦ ମାତ୍ର ଆତ୍ମାର ବିକାଶର ତାରତମ୍ୟରେ । କିନ୍ତୁ ଆତ୍ମା ଶରୀର ଧାରଣ କରେ କାହିଁକି ? ଯେଉଁ କାରଣରୁ ମୁଁ ଦର୍ପଣ ବ୍ୟବହାର କରେ, ନିଜର ମୁହଁ ଦେଖିବା ଲାଗି । ଏହି ଭାବରେ ହିଁ ଦେହରେ ଆତ୍ମା ପ୍ରତିବିମ୍ବିତ ହୁଅନ୍ତି । ଆତ୍ମା ହିଁ ଈଶ୍ୱର, ପ୍ରତ୍ୟେକ ମନୁଷ୍ୟ ଭିତରେ ହିଁ ପୂର୍ଣ୍ଣ ଦେବତ୍ୱ ରହିଅଛି ଏବଂ ପ୍ରତ୍ୟେକଙ୍କୁ ତାର ଅନ୍ତର୍ନିହିତ ଦେବତ୍ୱକୁ ଶୀଘ୍ର ବା ବିଳମ୍ବରେ ପ୍ରକାଶ କରିବାକୁ ହେବ । ଯଦି ମୁଁ କୌଣସି ଅନ୍ଧକାର ଗୃହରେ ଥାଏ, ସହସ୍ର ଅନୁଯୋଗରେ ସୁଦ୍ଧା ଘର ଆଲୋକିତ ହେବ ନାହିଁ । ମୋତେ ଦୀପଟିଏ ଜଳାଇ ଦେବାକୁ ହେବ । ଠିକ୍ ସେହିପରି, କେବଳ ଅନୁଯୋଗ ଓ ଆର୍ତ୍ତନାଦଦ୍ୱାରା ଆମର ଅପୂର୍ଣ୍ଣ ଦେହ କେବେ ହେଲେ ପୂର୍ଣ୍ଣତା ଲାଭ କରିବ ନାହିଁ । କିନ୍ତୁ

ବେଦାନ୍ତ ଶିକ୍ଷା ଦିଏ, ତୁମର ଆତ୍ମାର ଶକ୍ତିକୁ ଉଦ୍‌ବୋଧିତ କର—ନିଜ ଦେବତ୍ୱ ପ୍ରକାଶିତ କର । ତୁମର ସନ୍ତାନସନ୍ତତିଙ୍କୁ ଶିକ୍ଷା ଦିଅ ଯେ, ସେମାନେ ଦେବତା; ଧର୍ମ ଅସ୍ତିମୂଳକ; ତାହା କେବେ ନାସ୍ତିମୂଳକ ବାତୁଳତା ହୋଇ ନ ପାରେ । ପୀଡ଼ନ ଫଳରେ କ୍ରନ୍ଦନର ଆଶ୍ରୟ ନେବାକୁ ଧର୍ମ କୁହାଯାଏ ନାହିଁ—ଧର୍ମ ହେଉଛି ବିସ୍ତାର ଓ ପ୍ରକାଶ ।

ପ୍ରତ୍ୟେକ ଧର୍ମ କୁହେ—ଅତୀତଦ୍ୱାରା ହିଁ ମନୁଷ୍ୟର ବର୍ତ୍ତମାନ ଓ ଭବିଷ୍ୟତ ରୂପାୟିତ ହୁଏ । ବର୍ତ୍ତମାନ ହେଉଛି ଅତୀତର ଫଳସ୍ୱରୂପ । ଯଦି ତାହା ହେଲା—ତେବେ ପ୍ରତ୍ୟେକ ଶିଶୁ ଯେତେବେଳେ ଏପରି କେତେଗୁଡ଼ିଏ ସଂସ୍କାର ନେଇ ଜନ୍ମ ଗ୍ରହଣ କରେ, ଯାହାର ବ୍ୟାଖ୍ୟା ବଂଶାନୁକ୍ରମିକ ଭାବସଂକ୍ରମଣର ସାହାଯ୍ୟରେ ଦେଇପାରିବା ସମ୍ଭବ ନୁହେଁ, ତାହାର କି ମୀମାଂସା ହେବ ? କିଏ ଯେତେବେଳେ ଭଲ ପିତାମାତାଙ୍କଠାରୁ ଜନ୍ମ ଗ୍ରହଣ କରି ସତ୍ ଶିକ୍ଷାଦ୍ୱାରା ସତ୍ ଲୋକ ହୁଏ, ଏବଂ ଅନ୍ୟ କେହି ମାତଲ୍ଲାଜଶୂନ୍ୟ ପିତାମାତାଙ୍କଠାରୁ ଜନ୍ମଗ୍ରହଣ କରି ଫାସୀ-କାଠରେ ଜୀବନଲୀଳା ଶେଷ କରେ, ତା'ର ବା କି ବ୍ୟାଖ୍ୟା କରାଯାଇପାରିବ ? ଈଶ୍ୱରଙ୍କୁ ଦାୟୀ ନ କରି ଏହି ବୈଷମ୍ୟର ସମାଧାନ କିପରି ସମ୍ଭବ ହେବ ? କରୁଣାମୟ ପିତା ତାଙ୍କର ସନ୍ତାନଙ୍କୁ କାହିଁକି ଏପରି ଅବସ୍ଥାରେ ନିକ୍ଷେପ କଲେ, ଯାହାର ଫଳ ନିଶ୍ଚିତଭାବରେ ଦୁଃଖ ? "ଭଗବାନ ଭବିଷ୍ୟତରେ ସଂଶୋଧନ କରିବେ, ପ୍ରଥମେ ହତ୍ୟା କରି ପରେ କ୍ଷତିପୂରଣ କରିବେ"—ଏହା କୌଣସି ବ୍ୟାଖ୍ୟା ହୋଇ ନ ପାରେ—ଏବଂ ଏଇଟା ଯଦି ମୋର ପ୍ରଥମ ଜନ୍ମ ହୁଏ, ତେବେ ମୋର 'ମୁକ୍ତି' ବିଷୟରେ କ'ଣ ହେବ ? ପୂର୍ବଜନ୍ମର ସଂସ୍କାର-ବର୍ଜିତ ହୋଇ ସଂସାରକୁ ଆଗମନ କଲେ ସ୍ୱାଧୀନତା ବୋଲି ଆଉ କିଛି ରହିବ ନାହିଁ, କାରଣ ମୋର ପଥ ସେତେବେଳେ ଅନ୍ୟର ଅଭିଜ୍ଞତା ଦ୍ୱାରା ନିର୍ଦ୍ଦେଶିତ ହେବ । ମୁଁ ଯଦି ମୋର ଭାଗ୍ୟବିଧାତା ନ ହୁଏ, ମୁଁ ତେବେ ଆଉ ସ୍ୱାଧୀନ କିପରି ? ବର୍ତ୍ତମାନ ଜୀବନର ଦୁଃଖର ଦାୟିତ୍ୱ ମୁଁ ନିଜେ ହିଁ ସ୍ୱୀକାର କରେ, ଏବଂ ପୂର୍ବଜନ୍ମରେ ଯେଉଁ ଅନ୍ୟାୟ ବା ଅଶୁଭ କର୍ମ କରିଛି, ଏହି ଜନ୍ମରେ ମୁଁ ନିଜେ ହିଁ ତାକୁ ଧ୍ୱଂସ କରିଦେବି । ଆମର ଜନ୍ମାନ୍ତରବାଦର ଦାର୍ଶନିକ ଭିତ୍ତି ଏହିଭଳି । ଆମେମାନେ ପୂର୍ବଜନ୍ମର ଅଭିଜ୍ଞତା ନେଇ ବର୍ତ୍ତମାନର ଜୀବନରେ ପ୍ରବେଶ କରିଅଛୁ; ଏବଂ ଆମର ବର୍ତ୍ତମାନ ଜନ୍ମର ସୌଭାଗ୍ୟ ବା ଦୁର୍ଭାଗ୍ୟ ସେହି ପୂର୍ବଜନ୍ମର କର୍ମଫଳ । ତେବେ ଉତ୍ତରୋତ୍ତର ମୋର ଉନ୍ନତି ହିଁ ହେଉଛି—ଏବଂ ଅବଶେଷରେ ଦିନେ ଆମେ ପୂର୍ଣ୍ଣତ୍ୱ ଲାଭ କରିବୁ ।

ବିଶ୍ୱଜଗତର ପିତା, ଅନନ୍ତ ସର୍ବଶକ୍ତିମାନ୍ ଏକ ଈଶ୍ୱରଙ୍କଠାରେ ଆମେମାନେ ବିଶ୍ୱାସ କରୁ । ଆମର ଆତ୍ମା ଯଦି ଅବଶେଷରେ ପୂର୍ଣ୍ଣତା ଲାଭ କରେ, ତେବେ ସେତେବେଳେ ତାକୁ ଅନନ୍ତ ହିଁ ହେବାକୁ ହେବ । କିନ୍ତୁ ଗୋଟିଏ ସମୟରେ ଦୁଇଟି ନିରପେକ୍ଷ ଅନନ୍ତ ସତ୍ତା ରହି ନ ପାରନ୍ତି । ଅତଏବ ଆମେ କହୁ ଯେ, ସେ ଆଉ ଆମେ ଏକ । ପ୍ରତ୍ୟେକ ଧର୍ମ ଏହି ତିନୋଟି ସ୍ତର ସ୍ୱୀକାର କରନ୍ତି । ପ୍ରଥମେ, ଆମେ ଈଶ୍ୱରଙ୍କୁ କୌଣସି ଦୂରଦେଶରେ ଅବସ୍ଥାନ କରିବାର ଦେଖୁ । କ୍ରମଶଃ ଆମେ ତାଙ୍କର ନିକଟବର୍ତ୍ତୀ ହେଉ

ଏବଂ ତାଙ୍କର ସର୍ବବ୍ୟାପିତ୍ୱ ସ୍ୱୀକାର କରୁ । ଅର୍ଥାତ୍ ଆମେ ତାଙ୍କଠାରେ ହିଁ ଆଶ୍ରିତ ଅଛୁ ବୋଲି ମନେ କରୁ, ସର୍ବଶେଷରେ ଜାଣୁ ଯେ ଆମେ ଓ ସେ ଅଭିନ୍ନ । ଭେଦ-ଦୃଷ୍ଟିରେ ଯେଉଁ ଭଗବାନଙ୍କର ଦର୍ଶନ, ତାହା ମଧ୍ୟ ମିଥ୍ୟା ନୁହେଁ । ପ୍ରକୃତପକ୍ଷରେ ତାଙ୍କ ସମ୍ବନ୍ଧରେ ଯେତେ ଧାରଣା ରହିଅଛି ସବୁ ହିଁ ସତ୍ୟ, ଏବଂ ତେଣୁ ପ୍ରତ୍ୟେକ ଧର୍ମ ମଧ୍ୟ ସତ୍ୟ । କାରଣ ଏଗୁଡ଼ିକ ଆମ ଜ୍ଞାନଯାତ୍ରାର ବିଭିନ୍ନ ସ୍ତର ଅଟେ । ସବୁର ଉଦ୍ଦେଶ୍ୟ ହେଲା ବେଦର ସମ୍ପୂର୍ଣ୍ଣ ସତ୍ୟକୁ ଉପଲବ୍ଧି କରିବା । କାର୍ଯ୍ୟତଃ ଆମେ ହିନ୍ଦୁମାନେ କେବଳ ଯେ ପରମତସହିଷ୍ଣୁ, ତାହା ନୁହେଁ, ଆମେ ପ୍ରତ୍ୟେକ ଧର୍ମକୁ ସତ୍ୟ ବୋଲି ମାନୁ । ଏବଂ ସେହି ହେତୁ ମୁସଲମାନମାନଙ୍କ ମସଜିଦ୍‌ରେ ପ୍ରାର୍ଥନା କରୁ, ଜରଥୁଷ୍ଟ୍ରିୟଙ୍କର ଅଗ୍ନି ସମ୍ମୁଖରେ ଉପାସନା କରୁ, ଖ୍ରୀଷ୍ଟିଆନଙ୍କ କ୍ରୁଶ ସମକ୍ଷରେ ମଥା ନତ କରୁ; କାରଣ, ଆମେ ଜାଣୁ ଯେ, ବୃକ୍ଷପ୍ରସ୍ତରର ଉପାସନାଠାରୁ ସର୍ବୋଚ୍ଚ ନିର୍ଗୁଣ ବ୍ରହ୍ମବାଦ ପର୍ଯ୍ୟନ୍ତ ପ୍ରତ୍ୟେକ ମତର ଅର୍ଥ ହେଲା—ପ୍ରତ୍ୟେକ ମାନବାତ୍ମା ନିଜ ଜନ୍ମ ଓ ଆବେଷ୍ଟନୀର ପରି-ପ୍ରେକ୍ଷୀରେ ଅନନ୍ତକୁ ଧରିବା ଓ ବୁଝିବା ଲାଗି ଏହିଭଳି ବିବିଧ ଚେଷ୍ଟାରେ ବ୍ୟାପୃତ ରହିଛି; ପ୍ରତ୍ୟେକ ଅବସ୍ଥା ହେଉଛି, ଆତ୍ମାର ପ୍ରଗତିର ଗୋଟିଏ ଗୋଟିଏ ସ୍ତରମାତ୍ର । ଆମେମାନେ ଏହି ବିଭିନ୍ନ ପୁଷ୍ପଗୁଡ଼ିକୁ ଚୟନ ଏବଂ ପ୍ରେମସୂତ୍ରରେ ବନ୍ଧନ କରି, ତାହାକୁ ଏକ ଅପୂର୍ବ ଉପାସନା-ସ୍ତବକରେ ପରିଣତ କରୁ ।

ମୁଁ ଯଦି ବ୍ରହ୍ମ ହିଁ ହୁଏ, ତା'ହେଲେ ମୋର ଅନ୍ତରାତ୍ମା ହିଁ ସେହି ପରମାତ୍ମାଙ୍କର ମନ୍ଦିର, ଏବଂ ମୋର ପ୍ରତ୍ୟେକ କର୍ମ ହିଁ ତାଙ୍କର ଉପାସନା ହେବା ଉଚିତ । ମୋତେ, ପୁରସ୍କାରର ଆଶା ବା ଶାସ୍ତିର ଭୟ ନ ରଖି ଭଲ ପାଇବା ଲାଗି ହିଁ କେବଳ ଭଲ ପାଇବାକୁ ହେବ । କର୍ତ୍ତବ୍ୟବୋଧରୁ ହିଁ କର୍ମ କରିବାକୁ ହେବ । ଏହି ଭାବରେ ମୋର ଧର୍ମର ଅର୍ଥ ବିସ୍ତାର, ବିସ୍ତାର ଅର୍ଥରେ ଅନୁଭୂତି, ଅର୍ଥାତ୍ ସର୍ବୋଚ୍ଚ ଭାବର ଉପଲବ୍ଧି—ଗାଲ୍ଲୁ ମାଡ଼ୁ କରି କେତେଗୁଡ଼ିଏ ଶବ୍ଦ ଉଚ୍ଚାରଣ କରିବା କିମ୍ବା ଆଣ୍ଠୁମାଡ଼ି ବସିବାର ଭଙ୍ଗୀମାତ୍ର ନୁହେଁ । ମନୁଷ୍ୟକୁ ଦେବତ୍ୱ ଲାଭ କରିବାକୁ ହେବ—ପ୍ରତିଦିନ ଅଧିକରୁ ଅଧିକତରରୂପେ ସେହି ଦେବତ୍ୱର ଉପଲବ୍ଧି କରୁ କରୁ ଅନନ୍ତ ପ୍ରଗତି ପଥରେ ଚାଲିବାକୁ ହେବ ।

[ବକ୍ତୃତା କାଳରେ ବକ୍ତାଙ୍କୁ ମୁହୁର୍ମୁହୁଃ ଆନନ୍ଦଧ୍ୱନି ସହକାରେ ଆନ୍ତରିକ ଅଭିନନ୍ଦନ ଜଣାଇ ଦିଆଯାଉଥିଲା । ବକ୍ତୃତା ଶେଷରେ ସେ ପ୍ରାୟ ପନ୍ଦର ମିନିଟ କାଳ ଶ୍ରୋତାମାନଙ୍କର ବିଭିନ୍ନ ପ୍ରଶ୍ନର ଉତ୍ତର ଦେବାରେ ଅତିବାହିତ କରିଥିଲେ । ତା'ପରେ ସେ ସାଧାରଣ ଭାବେ ଅନେକଙ୍କ ସହିତ ମିଳାମିଶା କରିଥିଲେ ।—ବ୍ରୁକ୍‌ଲିନ୍ ଷ୍ଟାଣ୍ଡାର୍ଡ଼ (Brooklyn Standard) ]

# ଧର୍ମର ଉଦ୍ଭବ

[ ପ୍ରଥମଥର ଆମେରିକାରେ ଅବସ୍ଥାନ କଲାବେଳେ ଜଣେ ପାଶ୍ଚାତ୍ୟବାସୀ ଶିଷ୍ୟ ସ୍ୱାମୀଜୀଙ୍କୁ କେତେକ ପ୍ରଶ୍ନ କରିଥିଲେ । ସେହି ପ୍ରଶ୍ନଗୁଡ଼ିକର ଉତ୍ତରରେ ସ୍ୱାମୀଜୀ ଏତକ ଲେଖିଛନ୍ତି ]

ବିଚିତ୍ର ପାଖୁଡ଼ାମାନ ମେଲି ଫୁଲସବୁ ଅରଣ୍ୟ ଭିତରେ ମୃଦୁ ପବନରେ ନାଚୁଥିଲେ—ଶିର ଦୋହଲାଇ ଖେଳୁଥିଲେ । ଅପୂର୍ବ ସୌନ୍ଦର୍ଯ୍ୟ-ମଣ୍ଡିତ ପକ୍ଷ ମେଲାଇ ସୁନ୍ଦର ପକ୍ଷୀମାନେ ବନଭୂମିର ପ୍ରତିଟି କନ୍ଦରକୁ ମଧୁର କାକଳିରେ ପ୍ରତିଧ୍ୱନିତ କରୁଥିଲେ । ଗତକାଲି ପର୍ଯ୍ୟନ୍ତ ସେମାନେ ଥିଲେ ମୋର ସାଥୀ ଓ ସାନ୍ତ୍ୱନା । କିନ୍ତୁ ଆଜି ଆଉ ସେମାନେ ନାହାନ୍ତି, କୁଆଡ଼େ ଅନ୍ତର୍ହିତ ହୋଇଗଲେଣି । କୁଆଡ଼େ ଗଲେ ସେମାନେ ? କୁଆଡ଼େ ଗଲେ ସେମାନେ, ଯେଉଁମାନେ ଥିଲେ ମୋର ଖେଳର ସାଥୀ । ମୋ ସୁଖ-ଦୁଃଖର ଅଂଶୀଦାର, ମୋର ଆନନ୍ଦ ଓ ଖେଳର ସହଚର ? ସେମାନେ ବି ଚାଲିଗଲେ । କୁଆଡ଼େ ଗଲେ ? ଯେଉଁମାନେ ମୋତେ ପିଲାଦିନେ ଲାଳନପାଳନ କରିଥିଲେ—ଯେଉଁମାନେ ସାରା ଜୀବନ ଖାଲି ମୋରି କଥା ହିଁ ଭାବୁଥିଲେ—ଯେଉଁମାନେ ମୋ ଲାଗି ସବୁକିଛି କରିବାକୁ ପ୍ରସ୍ତୁତ ଥିଲେ—ସେମାନେ ବି ଆଜି ଆଉ ନାହାନ୍ତି । ପ୍ରତ୍ୟେକ ବ୍ୟକ୍ତି, ପ୍ରତିଟି ବସ୍ତୁ ଚାଲିଯାଇଛନ୍ତି—ଚାଲିଯାଉଛନ୍ତି—ଏବଂ ଚାଲିଯିବେ ମଧ୍ୟ । ଆଚ୍ଛା, ସେମାନେ କୁଆଡ଼େ ଯାଆନ୍ତି ? ଆଦିମ ମଣିଷ ମନରେ ଏହି ପ୍ରଶ୍ନର ଉତ୍ତର ଲାଗି ବ୍ୟାକୁଳତା ଜାଗି ଉଠିଥିଲା । ସମ୍ଭବପର, କାହିଁକି ମନରେ ଏଭଳି ପ୍ରଶ୍ନ ଉଠେ ? ଆଦିମ ମନୁଷ୍ୟ କ'ଣ ଲକ୍ଷ୍ୟ କରିପାରୁ ନ ଥିଲା ଯେ, ତା'ର ଆଖି ଆଗରେ ସବୁ ଜିନିଷ ପଚିଯାଉଛି—ଶୁଖିଯାଉଛି—ତା'ପରେ ଚୂର୍ଣ୍ଣୀଭୂତ ହୋଇ କୁଆଡ଼େ ଧୂଳିରେ ମିଶିଯାଉଛି ? ପ୍ରକୃତରେ ଏସବୁ କୁଆଡ଼େ ଯାଉଛି—ସେହି ସମ୍ବନ୍ଧରେ ଆଦିମ ମଣିଷ ମୁଣ୍ଡ ଖେଳେଇବ କେଉଁଥିପାଇଁ ?

ଆଦିମ ମଣିଷର ଦୃଷ୍ଟିରେ ପ୍ରଥମତଃ ସବୁ କିଛି ଥିଲା ଜୀବନ୍ତ ଏବଂ ମୃତ୍ୟୁ ଯେ ବିନାଶ—ଏହା ତା' ନିକଟରେ ସମ୍ପୂର୍ଣ୍ଣ ଅର୍ଥହୀନ କଥା । ତା'ର ଧାରଣା ଥିଲା—ମନୁଷ୍ୟ ଆସେ, ଚାଲିଯାଏ ଓ ପୁଣି ଥରେ ମଧ୍ୟ ଏଠାକୁ ଫେରି ଆସେ । କେବେ କେବେ କେତେକ ଚାଲିଯାଆନ୍ତି—ଆଉ ଏଠାକୁ ଫେରି ଆସନ୍ତି ନାହିଁ । ସୁତରାଂ କାହାର ମୃତ୍ୟୁ ହେଲେ, ପୃଥିବୀର ପ୍ରାଚୀନତମ ଭାଷାରେ ମୃତ୍ୟୁ ହେଲା ବଦଳରେ କୁହାଯାଏ ଯେ 'ସେ ଚାଲିଗଲେ' । ଏହା ହିଁ ଧର୍ମର ପ୍ରାରମ୍ଭ । ଏହି ଭାବରେ ଆଦିମ ମନୁଷ୍ୟ ତା'ର ଏହି ପ୍ରଶ୍ନର ସମାଧାନ ପାଇଁ ସର୍ବତ୍ର ଅନ୍ୱେଷଣ କରି ବୁଲୁଥିଲା । ତା'ର ମନରେ ସେହି ଗୋଟିଏ ପ୍ରଶ୍ନ—ଯେଉଁମାନେ ମରିଯାଉଛନ୍ତି, ସେମାନେ ସବୁ କୁଆଡ଼େ ଯାଉଛନ୍ତି ?

ରାତିର ନିଦ୍ରାଭିଭୂତ ପୃଥିବୀ ଉପରକୁ ଓହ୍ଲାଇ ଆସନ୍ତି ଉଷାଦେବୀ—ଆଲୋକ, ଉତ୍ତାପ ଓ ଆନନ୍ଦ ବିଚ୍ଛୁରଣ କରି ପୂର୍ବାକାଶରେ ସ୍ୱମହିମାପ୍ରାପ୍ତ ପ୍ରଭାତ-ସୂର୍ଯ୍ୟ ଉଦିତ ହୁଅନ୍ତି । ଧୀରେ ଧୀରେ କିନ୍ତୁ ସେହି ସୂର୍ଯ୍ୟ ଆକାଶକୁ ଅତିକ୍ରମ କରି ଚାଲନ୍ତି । ହାୟ ! ସୂର୍ଯ୍ୟ ମଧ୍ୟ ଶେଷରେ ପଶ୍ଚିମ ଦିଗ୍‌ବଳୟର ଅତି ନିମ୍ନ ଅଞ୍ଚଳରେ ଅଦୃଶ୍ୟ ହୋଇଯା'ନ୍ତି । କିନ୍ତୁ ତତ୍-ପରଦିନ ପୁନର୍ବାର ଗୌରବ ଓ ଲାବଣ୍ୟମଣ୍ଡିତ ହୋଇ ଆବିର୍ଭୂତ ହୁଅନ୍ତି ।

ସଭ୍ୟତାର, ଜନ୍ମଭୂମି ନୀଳ, ସିନ୍ଧୁ ଓ ଟାଇଗ୍ରୀସ୍ ନଦୀର ଉପତ୍ୟକାରେ ଅପୂର୍ବ ପଦ୍ମଫୁଲଗୁଡ଼ିକର ମୁଦିତ ପାଖୁଡ଼ାରେ ପ୍ରାତଃକାଳୀନ ସୂର୍ଯ୍ୟକିରଣର ସ୍ପର୍ଶ ଲାଗିବା ମାତ୍ରେ ଫୁଲଗୁଡ଼ିକ **ଫୁଟି** ଉଠନ୍ତି—ପୁଣି ସନ୍ଧ୍ୟାର ଆଗମନରେ ସୂର୍ଯ୍ୟ ଅସ୍ତ ଯିବାମାତ୍ରେ ସେମାନେ ନିମୀଳିତ ହୋଇଯା'ନ୍ତି । ଆଦିମ ମଣିଷ ଭାବୁଥିଲା— ତା'ହେଲେ କେଉଁଠାରେ କେହି ନା କେହି ଜଣେ ଥିଲା—ସେ ସେଠାକୁ ଆସିଥିଲା—କିଛି ସମୟ ରହି ଚାଲିଗଲା । ପୁନଶ୍ଚ ସମାଧିସ୍ଥାନରୁ ପୁନରୁଜ୍ଜୀବିତ ହୋଇ ଆସିଗଲା । ଏହା ହିଁ ହେଲା ପ୍ରାଚୀନ ମଣିଷର ପ୍ରଥମ ସମାଧାନ । ସେଥିପାଇଁ ଅତି ପ୍ରାଚୀନ ଧର୍ମଗୁଡ଼ିକର ପ୍ରଧାନ ପ୍ରତୀକ ଥିଲେ ସୂର୍ଯ୍ୟ ଓ ପଦ୍ମ । କାହିଁକି ଭଲା ଏସବୁ ପ୍ରତୀକର ସୃଷ୍ଟି ହେଲା ? କାରଣ ଚିନ୍ତାମାନେ ହିଁ ବିମୂର୍ତ୍ତି । ଯେକୌଣସି ଚିନ୍ତା ଯେତେବେଳେ ପ୍ରକାଶ ପାଏ, ସେତେବେଳେ ଏହା ଦୃଶ୍ୟ, ଗ୍ରାହ୍ୟ, ଓ ସ୍ଥୂଳ ଅବଲମ୍ବନ ଦେଇ ମୂର୍ତ୍ତି ହେବାକୁ ବାଧ୍ୟ ହୁଏ, ଏହା ହିଁ ନିୟମ । ତିରୋଧାନର ଅର୍ଥ ଅସ୍ତିତ୍ୱର ବାହାରକୁ ଚାଲିଯିବା ନୁହେଁ, ବରଂ ଅସ୍ତିତ୍ୱର ଭିତରେ ହିଁ ଏହି ଯିବାଆସିବା ଚାଲିଛି—ଏହି ଭାବଟି ପ୍ରକାଶ କରିବାକୁ ହେବ । ଏହାକୁ ପରିବର୍ତ୍ତନ, ବିକଳ୍ପ ବା ସାମୟିକ ରୂପାୟନର ଅର୍ଥରେ ହିଁ ବ୍ୟାଖ୍ୟା କରିବାକୁ ହେବ । ସ୍ୱୟଂକ୍ରିୟଭାବରେ ଯେଉଁ ବସ୍ତୁଟି ଇନ୍ଦ୍ରିୟଗୁଡ଼ିକୁ ଆଘାତ କରି ମନ ଉପରେ ସ୍ପନ୍ଦନ ସୃଷ୍ଟି କରେ ଏବଂ ଗୋଟିଏ ନୂତନ ଚିନ୍ତା ଜାଗ୍ରତ କରାଏ, ସେହି ବସ୍ତୁଟିକୁ ଅବଲମ୍ବନ ଓ କେନ୍ଦ୍ରରୂପେ ଗ୍ରହଣ କରିବାକୁ ହେବ । ଏହାକୁ ହିଁ ଅବଲମ୍ବନ କରି ନୂତନ ଚିନ୍ତା ଅଭିବ୍ୟକ୍ତି ନିମିତ୍ତ ସମ୍ପ୍ରସାରିତ ହୁଏ ଏବଂ ଏଥିପାଇଁ ସୂର୍ଯ୍ୟ ଓ ପଦ୍ମ ଧର୍ମ-ଜଗତରେ ପ୍ରଥମ ପ୍ରତୀକ ।

ସର୍ବଦା ରହିଛି ଗଭୀର ଗହ୍ୱର—ଏଗୁଡ଼ିକ ଅତି ଅନ୍ଧକାର ଓ ନିରାନନ୍ଦ, ତଳଦେଶ ସମ୍ପୂର୍ଣ୍ଣ ତମିସ୍ର ଓ ଭୟାବହ । ଆଖି ଖୋଲି ରଖିଲେ ମଧ୍ୟ ଗଭୀର ଜଳର ନିମ୍ନଦେଶରେ କଅଣ ରହିଛି ଆମେ ଦେଖିପାରୁ ନାହିଁ । ଉପରେ କିନ୍ତୁ ସବୁଠାରେ ଆଲୁଅ—ସମସ୍ତ ଆଲୋକମୟ, ରାତିକାଳରେ ମଧ୍ୟ ମନୋରମ ନକ୍ଷତ୍ରପୁଞ୍ଜ ଆଲୋକ ବିକିରଣ କରନ୍ତି । ତା'ହେଲେ ଯେଉଁମାନଙ୍କୁ ଆମେ ଭଲ ପାଉ, ସେମାନେ ଯାଆନ୍ତି କୁଆଡ଼େ ? ନିଶ୍ଚୟ ସେମାନେ ସେହି ତମସାବୃତ ସ୍ଥାନକୁ ଯାଆନ୍ତି ନାହିଁ । ସେମାନେ ଯାଆନ୍ତି ଊର୍ଦ୍ଧ୍ୱ ଲୋକକୁ, ଯେଉଁଠାରେ ରହିଛି ନିତ୍ୟ ଜ୍ୟୋତିର୍ମୟ ଧାମ । ଏହି ଚିନ୍ତା ଲାଗି ଗୋଟିଏ ନୂତନ ପ୍ରତୀକର ପ୍ରୟୋଜନ ହେଲା । ଏତିକିବେଳେ ଆସିଲା ଅଗ୍ନି—ଅଦ୍ଭୁତ ପ୍ରଜ୍ୱଳିତ ଅଗ୍ନିର ଲେଲିହାନ ଶିଖା—ଯେ କି ନିମିଷକେ **ଗୋଟିଏ** ବଣକୁ ଗ୍ରାସ କରିଯାଏ—ପୁଣି ସେହି ଅଗ୍ନି ଆମର ଖାଦ୍ୟ ପ୍ରସ୍ତୁତ କରେ, ଉତ୍ତାପ ଦିଏ, ବନ୍ୟଜନ୍ତୁମାନଙ୍କୁ ବିତାଡ଼ିତ କରିଥାଏ । ଏହି ଅଗ୍ନି ତେଣୁ

ପ୍ରାଣଦ, ଜୀବନରକ୍ଷକ । ପୁଣି ଦେଖନ୍ତୁ—ଏହି ଅଗ୍ନିଶିଖାର ଗତି ଊର୍ଦ୍ଧ୍ୱକୁ, କେବେହେଁ ଏହା ନିମ୍ନମୁଖୀ ହୁଏ ନାହିଁ । ଅଗ୍ନି ମଧ୍ୟ ଆଉ ଗୋଟିଏ ପ୍ରକାରର କାର୍ଯ୍ୟ କରେ । ଯେଉଁ ଅଗ୍ନି ମୃତ୍ୟୁପରେ ମନୁଷ୍ୟକୁ ଊର୍ଦ୍ଧ୍ୱସ୍ଥ ଆଲୋକଧାମକୁ ଉତ୍ତୋଳନ କରି ନେଇ ଯାଉଛି, ସେହି ଅଗ୍ନି ହିଁ ପରଲୋକବାସୀ ଓ ଆମ ଭିତରେ ଯୋଗସୂତ୍ର । ପ୍ରାଚୀନତମ ଧର୍ମଗ୍ରନ୍ଥ ବେଦ କହନ୍ତି, "ହେ ଅଗ୍ନି ! ଜ୍ୟୋତିର୍ମୟ ଦେବଗଣଙ୍କ ନିକଟକୁ ତୁମେ ହିଁ ଆମମାନଙ୍କ ଦୂତ ।" ଏହି ଚିନ୍ତା ଯୋଗୁଁ ଆର୍ଯ୍ୟମାନେ ଖାଦ୍ୟ, ପାନୀୟ ଏବଂ ଏହି ଜ୍ୟୋତିର୍ମୟ ଦେହଧାରୀମାନଙ୍କର ସନ୍ତୁଷ୍ଟିବିଧାୟକରୂପେ ବିବେଚିତ ସବୁ କିଛିକୁ ଅଗ୍ନିରେ ଆହୁତି ଦେଉଥିଲେ । ଏହା ହିଁ ହେଲା ଯଜ୍ଞତତ୍ତ୍ୱର ମୂଳ ସୂଚନା ।

ଏପର୍ଯ୍ୟନ୍ତ ପ୍ରଥମ ପ୍ରଶ୍ନର ସମାଧାନ ହେଲା । ଅନ୍ତତଃ ଆଦିମ ମନୁଷ୍ୟର ଜିଜ୍ଞାସାବାଦର କ୍ଷୁଧା ମେଣ୍ଟାଇବା ଲାଗି ଯେତିକି ପ୍ରୟୋଜନ, ସେତିକି ହେଲା । ଏହା ପରେ ଆସିଲା କିନ୍ତୁ ଆଉ ଗୋଟିଏ ପ୍ରଶ୍ନ । ତାହା ହେଉଛି ଏସବୁ ଜିନିଷ କେଉଁଠାରୁ ଆସିଲା ? ଏ ପ୍ରଶ୍ନଟି ତା' ହେଲେ ମୂଳରୁ ବା କାହିଁକି ଉଠିଲା ନାହିଁ ? କାରଣ ଆମେ ଗୋଟିଏ ଆକସ୍ମିକ ପରିବର୍ତ୍ତନକୁ ବେଶୀ ମନେ ରଖୁ । ସୁଖ, ଆନନ୍ଦ, ସଂଯୋଗ, ସମ୍ଭୋଗ ପ୍ରଭୃତି ଆମ ମନରେ ଯେତେ ଦାଗ ନ କାଟେ, ତାହା ଅପେକ୍ଷା ଅଧିକ ରେଖାପାତ କରେ ଅସୁଖ, ଦୁଃଖ ଏବଂ ବିୟୋଗ । ଆମର ପ୍ରକୃତି ହେଉଛି ଆନନ୍ଦ, ସମ୍ଭୋଗ ଓ ସୁଖ । ଆମର ଏହି ପ୍ରକୃତିକୁ ଯାହା କିଛି ଭୀଷଣଭାବରେ ଆନ୍ଦୋଳିତ କରିଦିଏ, ସେହି ସବୁ ସ୍ୱାଭାବିକ ଗତି ଅପେକ୍ଷା ଗଭୀରତର ଛାପ ରଖନ୍ତି । ତା' ଭିତରେ ମୃତ୍ୟୁ ହିଁ ସର୍ବାପେକ୍ଷା ଅଧିକ ତୀବ୍ରଭାବରେ ଆମର ସବୁ କିଛିକୁ ଛିନ୍ନଭିନ୍ନ କରିଦିଏ । ସେଥିପାଇଁ ମୃତ୍ୟୁସମସ୍ୟାର ସମାଧାନ ହେଲା ପ୍ରଥମ କର୍ତ୍ତବ୍ୟ । ତା'ପରେ ଅଗ୍ରଗତିର ସଙ୍ଗେ ସଙ୍ଗେ ଅନ୍ୟ ପ୍ରଶ୍ନଟି ଉଠିଲା—ଏସବୁ କେଉଁଠାରୁ ଆସେ ? ଯାହା ପ୍ରାଣବାନ ତାହା ହିଁ ହୁଏ ଗତିଶୀଳ । ଆମେ ଚାଲୁ—ଯେତେବେଳେ ଆମର ଇଚ୍ଛାଶକ୍ତି ଆମର ଅଙ୍ଗପ୍ରତ୍ୟଙ୍ଗକୁ ଚାଳନା କରେ । ଆମ ଇଚ୍ଛାବଶରେ ଏହି ଅଙ୍ଗପ୍ରତ୍ୟଙ୍ଗଗୁଡ଼ିକ ନାନା ଆକାର ଧାରଣ କରେ । ବର୍ତ୍ତମାନ କାଳରେ ଛୋଟ ପିଲାଟିଏ ଯେପରି ଭାବିଥାଏ, ସେହିପରି ପ୍ରାଚୀନ କାଳରେ ଅର୍ଥାତ୍ ମନୁଷ୍ୟର ମାନସିକ ବିକାଶ ଯେତେବେଳେ ଶୈଶବାବସ୍ଥାରେ ଥିଲା, ସେତେବେଳେ ମଧ୍ୟ ସେ ଭାବୁଥିଲା—ଯାହା କିଛି ଚାଲୁଛି, ତା' ପଛରେ ଗୋଟିଏ ଇଚ୍ଛା ରହିଛି । ସେ ବୃଷ୍ଟିରୁ ବାୟୁର ଇଚ୍ଛା ଅଛି—ମେଘର ମଧ୍ୟ ଇଚ୍ଛା ଅଛି । ଏପରିକି ସମସ୍ତ ପ୍ରକୃତିର ମଧ୍ୟ ସ୍ୱତନ୍ତ୍ର ଇଚ୍ଛା, ମନ ଓ ଆତ୍ମା ରହିଛି । ଆମେ ଯେପରି ଆମର ଇଚ୍ଛାନୁଯାୟୀ ବହୁ ବସ୍ତୁ ନିର୍ମାଣ କରୁ— ସେମାନେ ମଧ୍ୟ ସେହିପରି ଏହିସବୁ ସୃଷ୍ଟି କରିଛନ୍ତି । ସେମାନେ, ଅର୍ଥାତ୍ ଦେବତାମାନେ—ଇଲୋହିମ-(ହିବ୍ରୁ ଭାଷାରେ ଦେବତା) ଗଣ ଏସବୁର ସ୍ରଷ୍ଟା ।

ଇତି ମଧ୍ୟରେ ସମାଜର ମଧ୍ୟ ଉନ୍ନତି ହେବାକୁ ଲାଗିଲା । ସମାଜରେ ରାଜା ଥାଆନ୍ତି । ସେହି ନ୍ୟାୟରେ ଦେବତାମାନଙ୍କ ଭିତରେ, ଇଲୋହିମମାନଙ୍କ ଭିତରେ ବି ଜଣେ ରାଜା ବା ନ ରହିବେ କିପରି ? ସୁତରାଂ ଜଣେ ଦେବାଦିଦେବ, ଜଣେ ଇଲୋହିମ-ଯିହୋଭା,

ପରମେଶ୍ୱର ହେଲେ, ଯେ କି ସ୍ୱୀୟ ଇଚ୍ଛା ମାତ୍ରେ ଏହିସବୁ, ଏପରିକି ଦେବତାମାନଙ୍କୁ ମଧ୍ୟ ସୃଷ୍ଟି କରିଅଛନ୍ତି । କିନ୍ତୁ ସେ ଯେପରି ବିଭିନ୍ନ ଗ୍ରହ ଓ ନକ୍ଷତ୍ରାଦି ନିଯୁକ୍ତ କରିଛନ୍ତି, ସେହିଭଳି ପ୍ରକୃତିର ବିଭିନ୍ନ କାର୍ଯ୍ୟସାଧନାର ଅଧିନାୟକରୂପେ ଜଣେ ଜଣେ ଦେବତା ବା ଦେବଦୂତଙ୍କୁ ମଧ୍ୟ ନିଯୋଜିତ କଲେ । ସେମାନଙ୍କ ଭିତରେ କିଏ ହେଲେ ମୃତ୍ୟୁର ଦେବତା, କିଏ ବା ହେଲେ ଜନ୍ମର ଦେବତା—ଏହିଭାବରେ ସବୁଥିର ଜଣେ ଜଣେ ଅଧିଷ୍ଠାତ୍ରୀ ଦେବତା ରହିଲେ । ଧର୍ମର ଦୁଇ ବିରାଟ ଉତ୍ସ—ଆର୍ଯ୍ୟ ଓ ସେମିଟିକ୍ ଜାତିର ଧର୍ମ ଭିତରେ ଗୋଟିଏ ସାଧାରଣ ଧାରଣା ରହିଆସିଛି—ତା' ହେଉଛି, ଜଣେ ପରମପୁରୁଷ ଅଛନ୍ତି ଏବଂ ସେ ସବୁଠାରୁ ବହୁଗୁଣରେ ଶକ୍ତିଶାଳୀ ବୋଲି ପରମପୁରୁଷ ହୋଇଅଛନ୍ତି । କିନ୍ତୁ ଏହା ପରେ ହିଁ ଆର୍ଯ୍ୟମାନେ ଗୋଟିଏ ନୂତନ ଧାରା ପ୍ରବର୍ତ୍ତନ କଲେ । ଏହା ପୂର୍ବତନ ଧାରାର ଏକ ମହାନ୍ ବ୍ୟତିକ୍ରମ । ସେମାନଙ୍କ ଦେବତା କେବଳ ପରମପୁରୁଷ ନୁହନ୍ତି—ସେ ହେଉଛନ୍ତି "ଦ୍ୟୌଃ ପିତରଃ"—ଅର୍ଥାତ୍ ସ୍ୱର୍ଗସ୍ଥ ପିତା । ଏହା ହିଁ ହେଲା ପ୍ରେମର ସୂଚନା । ସେମିଟିକ୍ ଭଗବାନ କେବଳ ସମୁଦ୍ୟତବଜ୍ର ରୁଦ୍ର—ଦଳର ମହାପରାକ୍ରମୀ ପ୍ରଭୁ । ଏହିସବୁ ଭାବ ସହିତ ଆର୍ଯ୍ୟମାନେ ଗୋଟିଏ ନୂତନ ଭାବ—ପିତୃଭାବ ସଂଯୋଜନ କଲେ । ଭାବ ଓ ଚିନ୍ତାର ଉନ୍ନତି ସଙ୍ଗେ ସଙ୍ଗେ ଏହି ପ୍ରଭେଦ ଆହୁରି ସୁସ୍ପଷ୍ଟ ହେବାକୁ ଲାଗିଲା । ମାନବଜାତିର ସେମିଟିକ୍ ଶାଖା ଭିତରେ ଏହିଠାରେ ହିଁ ପ୍ରଗତିର ଇତି ହୋଇଗଲା । ସେମିଟିକ୍‌ମାନଙ୍କ ଈଶ୍ୱରଙ୍କୁ କେହି ଦେଖିପାରିବେ ନାହିଁ । କେବଳ ସେତିକି ନୁହେଁ—ଦୈବାତ୍ ଯଦି କେହି ଈଶ୍ୱରଙ୍କ ହାବୁଡ଼େ ପଡ଼ିଗଲା, ତେବେ ତାର ମୃତ୍ୟୁ ଅବଶ୍ୟ-ମ୍ଭାବୀ । ଆର୍ଯ୍ୟମାନଙ୍କ ଈଶ୍ୱରଙ୍କୁ ଯେ କେବଳ ଦେଖି ହେବ ତାହା ନୁହେଁ—ସେ ସକଳ ଜୀବଜନ୍ତୁଙ୍କର ଲକ୍ଷ୍ୟ । ମାନବଜୀବନର ଏକମାତ୍ର ଉଦ୍ଦେଶ୍ୟ ହେଲା—ତାଙ୍କୁ ଦର୍ଶନ କରିବା । ସେମିଟିକ୍ ତା'ର ରାଜାଧିରାଜ ଈଶ୍ୱରଙ୍କୁ ଶାସ୍ତିର ଭୟରେ ମାନେ, ତାଙ୍କର ଆଜ୍ଞା ଓ ଅନୁ-ଶାସନକୁ ମାନି ଚଳେ । ଆର୍ଯ୍ୟମାନେ ତାଙ୍କ ପିତାଙ୍କୁ ଭଲ ପାଆନ୍ତି । ମାତା ଓ ବନ୍ଧୁକୁ ମଧ୍ୟ ଭଲ୍‌ପାଆନ୍ତି । ସେମାନେ କହନ୍ତି—"ମୋତେ ଭଲ ପାଇଲେ ମୋର କୁକୁରକୁ ମଧ୍ୟ ଭଲ ପାଇବାକୁ ହେବ । ସୁତରାଂ ଈଶ୍ୱରସୃଷ୍ଟ ପ୍ରତ୍ୟେକ ଜୀବକୁ ଭଲ ପାଇବାକୁ ହେବ । କାରଣ, ସେମାନେ ସମସ୍ତେ ଈଶ୍ୱରଙ୍କର ସନ୍ତାନ । ସେମିଟିକ୍ ନିକଟରେ କିନ୍ତୁ ଏହି ଜୀବନଟା ସତେକି ଗୋଟିଏ ସୈନ୍ୟଶିବିର ! ଏଠାରେ ଆମକୁ ଆମର ଆନୁଗତ୍ୟ ପରୀକ୍ଷା କରିବା ନିମିତ୍ତ ନିଯୁକ୍ତ କରାହୋଇଛି । ଆର୍ଯ୍ୟଧାରଣାରେ ଏହି ଜୀବନ ହେଲା ଆମର ଲକ୍ଷ୍ୟ-ସ୍ଥଳୀରେ ପହଞ୍ଚିବାର ପଥସ୍ୱରୂପ । ସେମିଟିକ୍‌ର ବିଶ୍ୱାସ ହେଉଛି—ଯଦି ଆମେ ଆମର କର୍ତ୍ତବ୍ୟ ଠିକ୍ ଭାବେ ସମ୍ପନ୍ନ କରୁ, ତା' ହେଲେ ସ୍ୱର୍ଗରେ ଆମେ ନିଷ୍ଟୟ ଏକ ନିତ୍ୟ ଆନନ୍ଦମୟ ନିକେତନରେ ବାସ କରିବୁ । ଆର୍ଯ୍ୟ କିନ୍ତୁ ଭାବେ ଯେ ସେହି ନିତ୍ୟ ଆନନ୍ଦମୟ ନିକେତନ ହେଲା ସ୍ୱୟଂ ଈଶ୍ୱର । ଈଶ୍ୱର ହିଁ ସେହି ନିତ୍ୟାନନ୍ଦଧାମସ୍ୱରୂପ । ସେମିଟିକ୍ ମତରେ ଈଶ୍ୱର-ସେବା ଉଦ୍ଦେଶ୍ୟଲାଭର ଏକ ଉପାୟ ମାତ୍ର ଏବଂ ସେହି ଉଦ୍ଦେଶ୍ୟଟି ହେଲା ଆନନ୍ଦ ଓ ସୁଖ । ଆର୍ଯ୍ୟମତରେ କିନ୍ତୁ ସବୁପ୍ରକାର ସୁଖଦୁଃଖ ବା ଭୋଗାଭୋଗ ହେଲା

କେବଳ ଉପାୟମାତ୍ର । ଈଶ୍ବରଲାଭ ହିଁ ହେଲା ଜୀବର ମୂଳ ଉଦ୍ଦେଶ୍ୟ । ସ୍ବର୍ଗପ୍ରାପ୍ତି ଲାଗି ଯେମିତିକ ଭଗବାନଙ୍କୁ ଭଜନା କରେ, ଅର୍ଯ୍ୟ କିନ୍ତୁ ଭଗବାନଙ୍କୁ ପାଇବା ପାଇଁ ସ୍ବର୍ଗ ପ୍ରତ୍ୟାଖ୍ୟାନ କରେ । ପକ୍ଷେପରେ ଏହା ହିଁ ହେଲା ପ୍ରଧାନ ପ୍ରଭେଦ । ଆର୍ଯ୍ୟଜୀବନର ଉଦ୍ଦେଶ୍ୟ ଏବଂ ଲକ୍ଷ୍ୟ ହେଲା ଈଶ୍ବରଦର୍ଶନ— ସେହି ପ୍ରେମମୟଙ୍କର ସାକ୍ଷାତ୍କାର । କାରଣ ଈଶ୍ବରଙ୍କ ବ୍ୟତୀତ ବସ୍ତୁତଃ ନାହିଁ । "ତୁମେ ଯଦି ନାହଁ ତେବେ ସୂର୍ଯ୍ୟ, ଚନ୍ଦ୍ର ଓ ନକ୍ଷତ୍ରମାନଙ୍କର ନିଜର କୌଣସି ଜ୍ୟୋତି ରହିପାରେ ନାହିଁ ।"

## ଧର୍ମର ମୂଳତତ୍ତ୍ୱ

[ଆମେରିକାରେ ପ୍ରଦତ୍ତ ଗୋଟିଏ ଭାଷଣର ସାରାଂଶ]

ଫରାସୀ ଦେଶରେ ଦୀର୍ଘକାଳ ଧରି ଜାତିର ମୂଳମନ୍ତ୍ର ଥିଲା 'ମଣିଷର ଅଧିକାର' । ଆମେରିକାରେ ଏବେ ବି 'ନାରୀର ଅଧିକାର' ଜନସାଧାରଣଙ୍କ କାନରେ ଆବେଦନ ସୃଷ୍ଟି କରୁଛି । ଭାରତବର୍ଷରେ କିନ୍ତୁ ଆମର ଆଜୀବନ ମୁଣ୍ଡ ବଥାଏ, କିପରି ଈଶ୍ବରଙ୍କ ସମ୍ପର୍କରେ ବିଭିନ୍ନ ଭାବପ୍ରକାଶର ଅଧିକାର ସ୍ଥାପିତ ହେବ ।

ସବୁ ପ୍ରକାର ଧର୍ମମତ ବେଦାନ୍ତର ଅନ୍ତର୍ଭୁକ୍ତ । ଭାରତବର୍ଷରେ ଆମର ଗୋଟିଏ ସ୍ବତନ୍ତ୍ର ଭାବ ରହିଛି । ମୋର ଯଦି ଗୋଟିଏ ସନ୍ତାନ ଆଆନ୍ତା—ତେବେ ମୁଁ ତାକୁ ମନଃସଂଯମର ଅଭ୍ୟାସ ଏବଂ ସେଥିସଙ୍ଗେ କେତୋଟି ପ୍ରାର୍ଥନାମନ୍ତ୍ର ଶିଖାଇଦେବା ଛଡ଼ା, ଆଉ କୌଣସି ଧର୍ମକଥା ଶିକ୍ଷା ଦେଇ ନ ଥାଆନ୍ତି । ଅବଶ୍ୟ, ତୁମେମାନେ ଯେଉଁ ଅର୍ଥରେ ପ୍ରାର୍ଥନା ବୁଝ, ଠିକ୍ ସେହି ଅର୍ଥରେ ମୁଁ ପ୍ରାର୍ଥନା କରିବାକୁ କହିବି ନାହିଁ । ସେ ପ୍ରାର୍ଥନାଟି ହେବ ଏହିପରି—"ଯେ ଏହି ଚରାଚର ବିଶ୍ବର ସ୍ରଷ୍ଟା, ମୁଁ ତାଙ୍କୁ ଧ୍ୟାନ କରୁଛି । ସେ ମୋର ଧୀ-ଶକ୍ତି ଉଦ୍‌ବୁଦ୍ଧ କରନ୍ତୁ ।" ତା'ପରେ ସେ ଯେତେବେଳେ ବଡ଼ ହୋଇ ନାନା ମତ ଏବଂ ଉପଦେଶ ଶୁଣି ଶୁଣି ଏପରି କିଛି ଗୋଟାଏ ପାଇବ ବା ଅନୁଭବ କରିବ, ଯାହା କି ତା' ନିକଟରେ ସତ୍ୟ ବୋଲି ମନେ ହେବ, ସେତେବେଳେ ସେହି ସତ୍ୟର ଯେ ଉପଦେଷ୍ଟା ସେ ତାଙ୍କୁ ଗୁରୁ ବୋଲି ମନେ କରି ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିବ । ଖ୍ରୀଷ୍ଟ, ବୁଦ୍ଧ ବା ମହମ୍ମଦ—ଯାହାଙ୍କୁ ତା'ର ଇଚ୍ଛା ହେବ ସେ ଉପାସନା କରିପାରିବ । ଏମାନଙ୍କର ପ୍ରତ୍ୟେକଙ୍କ ଅଧିକାର ଆମେ ମାନୁ ଏବଂ ସମସ୍ତଙ୍କର ନିଜ ନିଜ ଇଷ୍ଟ ବା ମନୋମତ ପନ୍ଥା ଅନୁସରଣ କରିବାର ଅଧିକାର ଆମେ ସ୍ବୀକାର କରୁ । ସୁତରାଂ ଏହା ଖୁବ୍ ସ୍ବାଭାବିକ ଯେ ଏକକାଳୀନ, ସମ୍ପୂର୍ଣ୍ଣ ସ୍ବାଧୀନଭାବେ ଏବଂ ନିର୍ବିରୋଧରେ ମୋର ପିଲା ବୌଦ୍ଧ, ମୋର ସ୍ତ୍ରୀ ଖ୍ରୀଷ୍ଟାନ ଏବଂ ମୁଁ ନିଜେ ମୁସଲମାନ ହୋଇ ଏକତ୍ର ରହିପାରୁ ।

ଆମେ ଜାଣୁ—ସବୁ ଧର୍ମପଥ ଦେଇ ଭଗବାନଙ୍କ ନିକଟରେ ପହଞ୍ଚାଯାଇପାରେ । କେବଳ ଆମର ଆଖି ଦେଇ ଭଗବାନଙ୍କୁ ନ ଦେଖିଲେ ଯେ ପୃଥିବୀର ଉନ୍ନତି ହେବ

ନାହିଁ, ତାହା ନୁହେଁ; ଏବଂ ଆମେ ଯେପରି ଭାବରେ ଭଗବାନଙ୍କୁ ଦେଖିଛୁ ବା ଜାଣିଛୁ—ସେହିପରି ଯଦି ସାରା ପୃଥିବୀର ଲୋକେ ଈଶ୍ୱରଙ୍କୁ ଦେଖିବେ ବା ଜାଣିବେ, ତା' ହେଲେ ଯାଇ ପୃଥିବୀବାସୀଙ୍କର ସବୁ ଭଲ ହେବ— ସେ କଥା ମଧ୍ୟ ଠିକ୍ ନୁହେଁ । ଆମର ମୂଳ ଭାବଟି ହେଉଛି— ତୁମର ଧର୍ମବିଶ୍ୱାସ ମୋର ନ ହୋଇପାରେ—ଏବଂ ମୋର ମତବାଦ ମଧ୍ୟ ତୁମର ହୋଇ ନ ପାରେ । ମୁଁ ମୋର ନିଜର ଗୋଟିଏ ସମ୍ପ୍ରଦାୟ । ଏ କଥା ଠିକ୍ ଯେ ଭାରତରେ ଆମେମାନେ ଏପରି ଏକ ଧର୍ମମତ ସୃଷ୍ଟି କରିଛୁ, ଯାହାକୁ ଆମେମାନେ ଏକମାତ୍ର ଯୁକ୍ତିପୂର୍ଣ୍ଣ ଧର୍ମପଦ୍ଧତି ବୋଲି ବିଶ୍ୱାସ କରୁ, କିନ୍ତୁ ଏହାର ଯୁକ୍ତିବତ୍ତାରେ ସକଳ ଈଶ୍ୱରାନ୍ୱେଷୀଙ୍କୁ ଏହାର ଅନ୍ତର୍ଭୁକ୍ତ କରିନେବା ଉପରେ ଆମର ବିଶ୍ୱାସ ନିର୍ଭର କରୁଛି । ଏବଂ ସର୍ବପ୍ରକାର ଉପାସନାପଦ୍ଧତି ପ୍ରତି ସମ୍ପୂର୍ଣ୍ଣ ଉଦାରତା ଦେଖାଇବା ଓ ଜଗତର ଭଗବତ୍-ଅଭିମୁଖୀ ସବୁପ୍ରକାର ଚିନ୍ତାପ୍ରଣାଳୀଗୁଡ଼ିକୁ ଗ୍ରହଣ କରିବାର କ୍ଷମତା ଉପରେ ମଧ୍ୟ ଏହି ଯୌକ୍ତିକତା ନିର୍ଭର କରୁଛି । ଆମର ନିୟମ-ପଦ୍ଧତିଗୁଡ଼ିକ ମଧ୍ୟରେ ବି ଅପୂର୍ଣ୍ଣତା ରହିଛି । ସେ କଥା ଆମେ ସ୍ୱୀକାର କରିଛୁ । କାରଣ, ତତ୍ତ୍ୱବସ୍ତୁ ହେଉଛି ସକଳ ନିୟମ-ପଦ୍ଧତିର ଊର୍ଦ୍ଧ୍ୱରେ । ଏବଂ ଏହି ସ୍ୱୀକୃତି ମଧ୍ୟରେ ବି ରହିଛି ଅନନ୍ତ ବିକାଶର ଇଙ୍ଗିତ ଓ ପ୍ରତିଶ୍ରୁତି । ମତ, ଉପାସନା ଓ ଶାସ୍ତ୍ର ମନୁଷ୍ୟର ସ୍ୱରୂପ-ଉପଲବ୍ଧିର ଉପାୟ ହିସାବରେ ଠିକ୍—ଉପଲବ୍ଧି ହେବାପରେ ସେ ଏସବୁକୁ ପରିହାର କରେ । ବେଦାନ୍ତଦର୍ଶନର ଶେଷ କଥା ହେଲା—"ମୁଁ ବେଦ ଅତିକ୍ରମ କରିଛି ।" ଆଚାର, ଉପାସନା, ଯାଗଯଜ୍ଞ ଏବଂ ଶାସ୍ତ୍ରଗ୍ରନ୍ଥ—ଯେଉଁଗୁଡ଼ିକ ସାହାଯ୍ୟରେ ମନୁଷ୍ୟ ଏହି ମୁକ୍ତିପଥରେ ପରିଭ୍ରମଣ କରୁଛି—ସେସବୁ ତା' ନିକଟରେ ବିଲୀନ ହୋଇଯାଏ । 'ସୋଽହଂ, ସୋଽହଂ'—ମୁଁ ହେଉଛି ସେହି—ଏହି ଧ୍ୱନି ସେତେବେଳେ ତା' କଣ୍ଠରେ ଉଦ୍‌ଗୀତ ହୁଏ । ଈଶ୍ୱରଙ୍କୁ 'ତୁମେ' ବୋଲି ସମ୍ବୋଧନ ସେତେବେଳେ ତାର ଅସହ୍ୟ ହୋଇଉଠେ । କାରଣ ସାଧକ ସେତେବେଳେ 'ତାର ପିତାଙ୍କ ସଙ୍ଗେ ଅଭିନ୍ନ' ।

ବ୍ୟକ୍ତିଗତ ଭାବରେ ଅବଶ୍ୟ ମୁଁ ବେଦର ସେତିକି ଅଂଶ ଗ୍ରହଣ କରେ—ଯେତିକି ଯୁକ୍ତି ସଙ୍ଗେ ମିଳିଯାଏ । ବେଦମତର ଅନେକ ଅଂଶ ବାହ୍ୟତଃ ପରସ୍ପରବିରୁଦ୍ଧ । ପାଶ୍ଚାତ୍ୟରେ ଯାହାକୁ 'ପ୍ରତ୍ୟାଦିଷ୍ଟ ବାଣୀ' ବୋଲି କୁହାଯାଏ, ଏଗୁଡ଼ିକ ତାହା ନୁହେଁ । କିନ୍ତୁ ଏଗୁଡ଼ିକ ଈଶ୍ୱରଙ୍କର ସମଷ୍ଟି ଜ୍ଞାନ ବା ସର୍ବଜ୍ଞତ୍ୱ, ଯାହା ଆମମାନଙ୍କ ଭିତରେ ମଧ୍ୟ ରହିଛି । ତା' ବୋଲି ଯେଉଁ ଗ୍ରନ୍ଥଗୁଡ଼ିକୁ ଆମେ ବେଦ କହୁ, କେବଳ ସେହି-ଗୁଡ଼ିକ ମଧ୍ୟରେ ଯେ ଏହି ଜ୍ଞାନଭଣ୍ଡାର ନିଃଶେଷିତ, ଏ କଥା କହିବା ବାତୁଳତା । ଆମେମାନେ ଜାଣୁ—ସବୁ ସମ୍ପ୍ରଦାୟର ଶାସ୍ତ୍ର ମଧ୍ୟରେ ତାହା ବିଭିନ୍ନ ମାତ୍ରାରେ ସଞ୍ଚିତ ରହିଛି । ମନୁ କହନ୍ତି—ବେଦର ଯେଉଁ ଅଂଶଟିକକ ବିଚାର ଉପରେ ପ୍ରତିଷ୍ଠିତ, ସେତିକି ମାତ୍ର ଯଥାର୍ଥ ବେଦ । ଆମର ଆହୁରି ଅନେକ ମନୀଷୀ ମଧ୍ୟ ଏହି ମତ ପୋଷଣ କରନ୍ତି । ପୃଥିବୀର ଧର୍ମଗ୍ରନ୍ଥଗୁଡ଼ିକ ମଧ୍ୟରେ ଏକମାତ୍ର ବେଦ ହିଁ ଘୋଷଣା କରନ୍ତି ଯେ, କେବଳ ବେଦ-ଅଧ୍ୟୟନ ନିତାନ୍ତ ଗୌଣ ବ୍ୟାପାର ।

ଯାହାଦ୍ୱାରା ଆମେ ଶାଶ୍ୱତ ସନାତନ ସତ୍ୟ ଉପଲବ୍ଧି କରୁ ଏବଂ ଯାହା କେବଳ ଅଧ୍ୟୟନ, ବିଶ୍ୱାସ ବା ତର୍କ-ବୁଦ୍ଧିଦ୍ୱାରା ସମ୍ଭବ ନୁହେଁ—ତାହାକୁ ହିଁ ସ୍ୱାଧାସ୍ତ କୁହାଯାଏ । ଅପରୋକ୍ଷାନୁଭୂତି ଓ ସମାଧିଦ୍ୱାରା ଏହା ସମ୍ଭବ ହୋଇଥାଏ । ସାଧକ ଯେତେବେଳେ ଏହି ଅବସ୍ଥା ପ୍ରାପ୍ତ ହୁଅନ୍ତି, ସେତେବେଳେ ସେ ସଗୁଣ ଈଶ୍ୱରଙ୍କର ଭାବ ଲାଭ କରନ୍ତି, ଅର୍ଥାତ୍ ଯେତେବେଳେ "ମୁଁ ଏବଂ ମୋର ପିତା ଏକ"—ନିର୍ବିଶେଷ ବ୍ରହ୍ମ ସଙ୍ଗେ ଏକ ବୋଲି ସେ ନିଜକୁ ଜାଣନ୍ତି ଏବଂ ସଗୁଣ ଈଶ୍ୱରଙ୍କ ଭିତରେ ନିଜେହିଁ ନିଜକୁ ପ୍ରକ୍ଷିପ୍ତ କରନ୍ତି । ମାୟାର ଆବରଣ—ଅଜ୍ଞାନର ମଧ୍ୟ ଦେଇ ଦେଖିଲେ ବ୍ରହ୍ମଙ୍କୁ ସଗୁଣ ଈଶ୍ୱର ବୋଲି ବୋଧହୁଏ ।

ପଞ୍ଚେନ୍ଦ୍ରିୟ ସହାୟତାରେ ଯେତେବେଳେ ତାଙ୍କ ନିକଟରେ ସମୁପସ୍ଥିତ ହେଉ, ସେତେବେଳେ ଆମେ ତାଙ୍କୁ କେବଳ ସଗୁଣ ଭଗବାନ ରୂପରେ ଧାରଣା କରିପାରୁ । କିଆଁ ହେଉଛି—ଆତ୍ମା କୌଣସି ପ୍ରକାରେ ଇନ୍ଦ୍ରିୟଗ୍ରାହ୍ୟ ହୋଇ ନ ପାରେ । ଜ୍ଞାତା ପୁଣି ନିଜକୁ ବା ଜାଣିବ କପରି ? କିନ୍ତୁ ସେ ଯେପରି, ଠିକ୍ ସେହିପରି ନିଜକୁ ପ୍ରତିବିମ୍ବିତ କରିପାରେ ଏବଂ ଏହି ପ୍ରତିବିମ୍ବର ସର୍ବୋଚ୍ଚ ରୂପ, ଅର୍ଥାତ୍ ଏହି ଇନ୍ଦ୍ରିୟାନୁଭବଗମ୍ୟ ଅଭିବ୍ୟକ୍ତି ହିଁ ସଗୁଣ ଈଶ୍ୱର । ପରମାତ୍ମା ହେଉଛନ୍ତି ସନାତନ ଜ୍ଞାତା ଏବଂ ତାଙ୍କୁ ଜ୍ଞେୟ କରିବା ନିମିତ୍ତ ଆମେମାନେ ଅନନ୍ତ କାଳ ଧରି ଚେଷ୍ଟା କରି ଆସିଛୁ—ଏବଂ ଏହି ପ୍ରଚେଷ୍ଟା ଫଳରେ ଏହି ବିଶ୍ୱପ୍ରପଞ୍ଚ ଫୁଟି ଉଠିଛି—ଯାହାକୁ ଆମେ ଜଡ଼ ବୋଲି କହୁ । କିନ୍ତୁ ଏସବୁ ହେଲା ଖୁବ୍ ଦୁର୍ବଳ ପ୍ରୟାସ । ଆମ ଜ୍ଞାନର ବିକଶିତରୂପେ ଆତ୍ମାର ସମ୍ଭବପର ସର୍ବୋଚ୍ଚ ପ୍ରକାଶ ହେଉଛନ୍ତି ସଗୁଣ ଈଶ୍ୱର ।

ତୁମମାନଙ୍କର ଜଣେ ପାଶ୍ଚାତ୍ୟ ଚିନ୍ତାଶୀଳ ବ୍ୟକ୍ତି କହିଛନ୍ତି—"ଗୋଟିଏ ଉତ୍ତମ ଭଗବାନ ଗଢ଼ିବା ହିଁ ମନୁଷ୍ୟର ମହତ୍ତମ କାର୍ତ୍ତି ।" ମଣିଷ ଯେଉଁ ପ୍ରକାର ହେବ ତା'ର ଭଗବାନ ସେହି ପ୍ରକାର ହେବେ । ଏହି ପ୍ରକାର ମାନବିକ ପ୍ରକାଶ ଛଡ଼ା ଅନ୍ୟ କୌଣସି ଉପାୟରେ ମନୁଷ୍ୟ ଈଶ୍ୱରଙ୍କୁ ଦର୍ଶନ କରି ନ ପାରେ । ଯାହା ଇଚ୍ଛା କୁହ—ଯେତେ ଯାହା ଚେଷ୍ଟା କର—ତୁମେ ଭଗବାନଙ୍କୁ ମନୁଷ୍ୟ ବ୍ୟତୀତ ଅନ୍ୟ କିଛି କଳ୍ପନା କରିପାରିବ ନାହିଁ ଏବଂ ସେ ଠିକ୍ ତୁମମାନଙ୍କ ସଦୃଶ ଗୋଚରୀଭୂତ ହେବେ । ଜଣେ ନିର୍ବୋଧ ଲୋକକୁ ଶିବଙ୍କର ମୂର୍ତ୍ତିଟିଏ ଗଢ଼ିବାକୁ କୁହା ଯାଇଥିଲା । ଲୋକଟି ବହୁଦିନ ଧରି ବହୁ ଚେଷ୍ଟା କରି ଯେଉଁ ମୂର୍ତ୍ତିଟି ଗଢ଼ିଲା—ଦେଖାଗଲା, ତାହା ଗୋଟିଏ ମାଙ୍କଡ଼ର ମୂର୍ତ୍ତି । ଠିକ୍ ସେହିପରି ଆମେ ଯେତେବେଳେ ଈଶ୍ୱରଙ୍କ ପରିପୂର୍ଣ୍ଣ ସତ୍ତାକୁ ଭାବିବାକୁ ଚେଷ୍ଟା-କରୁ, ସେତେବେଳେ ନିଦାରୁଣ ବ୍ୟର୍ଥତାର ସମ୍ମୁଖୀନ ହେଉ । କାରଣ, ଆମ ମନର ବର୍ତ୍ତମାନ ପ୍ରକୃତି ଅନୁଯାୟୀ ଈଶ୍ୱରଙ୍କୁ ବ୍ୟକ୍ତିରୂପେ ଦେଖିବାକୁ ଆମେ ବାଧ୍ୟ । ଯଦି ମହିଷମାନେ କେବେ ଭଗବାନଙ୍କୁ ପୂଜା କରିବା ଲାଗି ଇଚ୍ଛା କରନ୍ତି, ତେବେ ସେମାନଙ୍କ ନିଜ ପ୍ରକୃତି ଅନୁଯାୟୀ ସେମାନେ ଭଗବାନଙ୍କୁ ଗୋଟିଏ ବିରାଟ ମହିଷ ବୋଲି ଭାବିବେ । ଗୋଟାଏ ମାଛ ଯଦି ଭଗବାନଙ୍କୁ ଉପାସନା କରିବାକୁ ଇଚ୍ଛା କରେ—ତା'ହେଲେ

ଈଶ୍ୱରଙ୍କ ସମ୍ବନ୍ଧରେ ତା'ର କଳ୍ପନା ହେବ—ଈଶ୍ୱର ଗୋଟାଏ ପ୍ରକାଣ୍ଡ ମସ୍ତ୍ୟ । ଠିକ୍ ସେହିପରି ମନୁଷ୍ୟ ତାଙ୍କୁ ମଣିଷ ବୋଲି ହିଁ ଚିନ୍ତା କରିଥାଏ । ମନେ କରିଯାଉ—ଏହି ମଣିଷ, ମହିଷ ଏବଂ ମାଛ ସବୁ ଗୋଟିଏ ଗୋଟିଏ ଭିନ୍ନ ଭିନ୍ନ ପାତ୍ର—ନିଜ ନିଜର ଆକାର ଓ ସାମର୍ଥ୍ୟାନୁଯାୟୀ ସେମାନେ ଈଶ୍ୱରରୂପୀ ସମୁଦ୍ରଜଳରେ ପୂର୍ଣ୍ଣ ହୋଇ ରହିଛନ୍ତି । ମଣିଷ ଭିତରେ ସେହି ଜଳ ମଣିଷର ଆକାର ନେବ—ମହିଷ ଭିତରେ ନେବ ମହିଷର ଆକାର ଏବଂ ମାଛ ଭିତରେ ମାଛର ଆକାର । କିନ୍ତୁ ପ୍ରତି ପାତ୍ରରେ ଈଶ୍ୱର-ସମୁଦ୍ରର ସେହି ଏକା ଜଳ ହିଁ ପୂର୍ଣ୍ଣ ହେବ ।

ଭଗବାନଙ୍କୁ ବ୍ୟକ୍ତିରୂପେ ଉପାସନା କରନ୍ତି ନାହିଁ ଦୁଇ ପ୍ରକାର ମନୁଷ୍ୟ । ଗୋଟିଏ ପ୍ରକାର ହେଲେ 'ନରପଶୁ'—ଯେଉଁମାନଙ୍କର ଧର୍ମ ବୋଲି କିଛି ନାହିଁ ଏବଂ ଅନ୍ୟ ପ୍ରକାର ହେଲେ 'ପରମହଂସ'—ଯେଉଁମାନେ ମନୁଷ୍ୟ-ପ୍ରକୃତିର ସମସ୍ତ ସୀମା ଅତିକ୍ରମ କରିଛନ୍ତି । ସମଗ୍ର ପ୍ରକୃତି 'ପରମହଂସ'ଙ୍କ ନିଜସ୍ୱରୂପ ହୋଇଉଠେ । ସେ କେବଳ ଈଶ୍ୱରଙ୍କୁ ତାଙ୍କର ସ୍ୱରୂପରେ ହିଁ ପୂଜା କରିପାରନ୍ତି । କିନ୍ତୁ ନରପଶୁ ତା'ର ଅଜ୍ଞତା ଲାଗି ଉପାସନା କରେ ନାହିଁ ଏବଂ ଜୀବନ୍ମୁକ୍ତମାନେ ମଧ୍ୟ ଉପାସନା କରନ୍ତି ନାହିଁ; କାରଣ ସେମାନେ ନିଜ ଭିତରେ ଭଗବାନଙ୍କୁ ଦେଖିଛନ୍ତି । ସେମାନଙ୍କର କୌଣସି ସାଧନା ମଧ୍ୟ ନ ଥାଏ । ଈଶ୍ୱରଙ୍କୁ ତାଙ୍କ ସ୍ୱୀୟ ଆତ୍ମାର ସ୍ୱରୂପ ବୋଲି ବୋଧ କରନ୍ତି ସେମାନେ । ସେମାନେ କହନ୍ତି—'ସୋଽହଂ ସୋଽହଂ'—ମୁଁ ହିଁ ସେ । ଏ କ୍ଷେତ୍ରରେ ସେମାନେ କିପରି ବା ନିଜେ ନିଜର ଉପାସନା କରିବେ ?

ତୁମମାନଙ୍କୁ ଗୋଟିଏ ଗଳ୍ପ କହୁଛି ଶୁଣ । ଥରେ ଗୋଟିଏ ସିଂହଶିଶୁ ତା'ର ମରଣାପନ୍ନ ମାଆଠାରୁ କୌଣସିପ୍ରକାରେ ପରିତ୍ୟକ୍ତ ହୋଇ ଦଳେ ମେଣ୍ଢାଙ୍କ ଭିତରେ ରହିଗଲା । ମେଣ୍ଢାଛୁଆଙ୍କ ଭିତରେ ସେ ଚଳବୁଲ କଲା ଓ ଗୋଟିଏ ମେଣ୍ଢୀ ତାକୁ ନିଜର ଛୁଆ ଭାବି ଦୁଧ ଖୁଆଇଲା । ସିଂହଛୁଆଟି କ୍ରମେ ବଡ଼ ହୋଇ ଉଠିଲା ଏବଂ ମେଣ୍ଢାମାନଙ୍କ ଭଳି ଭେଁ ଭେଁ ବୋବାଳି ଛାଡ଼ି ସେହି ମେଣ୍ଢାପଲରେ ବୁଲିଲା । ଦିନେ ଆଉ ଗୋଟିଏ ସିଂହ ଆସି ସେଠାରେ ପହଞ୍ଚିଲା । ଏହି ଅଦ୍ଭୁତ ବ୍ୟାପାର ଦେଖି ସେ ପଚାରିଲା—"ଆରେ, ତୁ ଏଠି କଅଣ କରୁଛୁ ?" ଏପରି ପଚାରିବାର କାରଣ ହେଲା—ସେ ଦେଖିଲା ଯେ ତା'ର ଭଳି ସିଂହଟିଏ ମେଣ୍ଢାପଲରେ ରହି ଭେଁ ଭେଁ ବୋବାଳି ଛାଡ଼ୁଛି ।

ଶ୍ରେଷ୍ଠ ସିଂହଟି କହିଲା—"ମୁଁ ଗୋଟିଏ ମେଣ୍ଢାଛୁଆ । ମୁଁ ନିତାନ୍ତ ଶିଶୁ । ତୁମକୁ ଦେଖି ମତେ ବଡ଼ ଭୟ ଲାଗୁଛି ।" ବଡ଼ ସିଂହଟି ଗର୍ଜନ କରି କହିଲା—"ବୋକା ! ଶୀଘ୍ର ଏମାନଙ୍କ ଭିତରୁ ପଳାଇ ଆ, ତୋତେ ଗୋଟାଏ ମଜା ଦେଖାଇବି ।" ତା'ପରେ ସେ ତାକୁ ଗୋଟିଏ ଶାନ୍ତ ଜଳାଶୟ ପାଖକୁ ନେଇଗଲା ଏବଂ ସ୍ଥିର ଜଳରେ ତା'ର ପ୍ରତିବିମ୍ବଟିକୁ ଦେଖାଇ କହିଲା— ତୁମେ ହେଉଛ ଗୋଟିଏ ସିଂହ । "ମୋ ଆଡ଼କୁ ଚାହିଁ ଏବଂ ତୁମ ଚେହେରାଟାକୁ ମଧ୍ୟ ଦେଖି ନିଅ । ସିଂହଶିଶୁଟି ଯେମିତି ତାର ପ୍ରତିବିମ୍ବ ଦେଖିଛି, ସେମିତି କହିଲା—ଏ କ'ଣ ? ମୁଁ କି ଭ୍ରମରେ ପଡ଼ିଥିଲି ! ମୁଁ ତ ମେଣ୍ଢା ନୁହେଁ

—ମୁଁ ତ ସିଂହ ! ଏତିକ କହି ସେ ଏପରି ଗର୍ଜନ କଲା ଯେ, ସାରା ପାହାଡ଼ କମ୍ପି ଉଠିଲା ।

ଆମମାନଙ୍କର ମଧ୍ୟ ଠିକ୍ ସେହି ଭଳି ଅବସ୍ଥା । ମେଷସଂସ୍କାରର ଆବରଣରେ ଆମେ ସମସ୍ତେ ସିଂହ । ଆମର ପରିବେଶ ହିଁ ଆମକୁ ଦୁର୍ବଳ ଓ ମୋହଗ୍ରସ୍ତ କରି ରଖିଛି । ବେଦାନ୍ତର କାର୍ଯ୍ୟ ହେଲା—ଏହି ମୋହବିମୋଚନ । ମୁକ୍ତି ହିଁ ଆମର ଚରମ ଲକ୍ଷ୍ୟ । ପ୍ରାକୃତିକ ନିୟମ ପ୍ରତି ଆନୁଗତ୍ୟ ହିଁ ମୁକ୍ତି—ତାହା ଆମେମାନେ ସ୍ୱୀକାର କରୁ ନାହିଁ । ଏ କଥାର ଅର୍ଥ ମୁଁ ବୁଝିପାରେ ନାହିଁ । ମାନବର ଉନ୍ନତିର ଇତିହାସ ଅନୁଯାୟୀ ପ୍ରାକୃତିକ ନିୟମର ଊର୍ଦ୍ଧ୍ୱକୁ ଯିବା ହିଁ ଉନ୍ନତିର କାରଣ । କେହି କେହି ହୁଏତ କହିବେ, ସାଧାରଣ ନିୟମକୁ ଜୟ କରିବା ତ ଉଚ୍ଚତର ନିୟମ ସାହାଯ୍ୟରେ ସମ୍ଭବ ହୁଏ । କିନ୍ତୁ ବିଜୟୀ ମନ ସେଠାରେ ମଧ୍ୟ ମୁକ୍ତିକୁ ଖୋଜି ବୁଲେ । ଆଉ ଯେତେବେଳେ ଜାଣିପାରେ ଯେ, ନିୟମ ଭିତର ଦେଇ ସଂଗ୍ରାମ, ସେତେବେଳେ ସେ ତାକୁ ମଧ୍ୟ ଜୟ କରିବାକୁ ଚାହେଁ । ସୁତରାଂ ମୁକ୍ତି ହିଁ ହେଉଛି ସର୍ବକାଳର ଆଦର୍ଶ । ବୃକ୍ଷମାନେ କେବେ ନିୟମ ଅମାନ୍ୟ କରନ୍ତି ନାହିଁ । କୌଣସି ଗୋରୁ କେବେ ଚୋରି କରିବା ଦେଖାଯାଇ ନାହିଁ । ଶୁକ୍ତିକା କେବେ ମିଥ୍ୟା କହେ ନାହିଁ । ତଥାପି ଏମାନେ ମଣିଷଠାରୁ ବଡ଼ ହୋଇ ନ ପାରନ୍ତି । ନିୟମପ୍ରତି ଆନୁଗତ୍ୟ ଶେଷ ପର୍ଯ୍ୟନ୍ତ ଆମକୁ ଜଡ଼ ପଦାର୍ଥରେ ପରିଣତ କରେ—ତାହା ସମାଜରେ ହେଉ, ରାଜନୀତିରେ ହେଉ ବା ଧର୍ମରେ ହେଉ । ଏ ଜୀବନ ତ ହେଉଛି ମୁକ୍ତିର ହିଁ ଉଦାତ୍ତ ନିର୍ଘୋଷ । ଅତ୍ୟଧିକ ନିୟମର ଆଧିକ୍ୟ ମାନେ ମୃତ୍ୟୁ । ହିନ୍ଦୁମାନଙ୍କ ଭଳି ଅନ୍ୟ କୌଣସି ଜାତିର ଏତେ ବେଶୀ ସାମାଜିକ ନିୟମକାନୁନ ନାହିଁ; ତା'ର ଫଳ ହୋଇଛି ଜାତୀୟ ମୃତ୍ୟୁ । କିନ୍ତୁ ହିନ୍ଦୁମାନଙ୍କର ସ୍ୱାତନ୍ତ୍ର୍ୟ ହେଉଛି—ଧର୍ମ ଭିତରେ ସେମାନେ କୌଣସି ମତ-ବାଦ ବା ନିୟମକୁ ଦୃଢ଼ କରି ରଖି ନାହାନ୍ତି । ସେମାନଙ୍କ ଧର୍ମର ତେଣୁ ସର୍ବୋଚ୍ଚ ବିକାଶ ସମ୍ଭବ ହୋଇପାରିଛି । ଏହି ଧର୍ମକ୍ଷେତ୍ରରେ ଆମେ ସମସ୍ତଙ୍କଠାରୁ ସବୁରି ଅପେକ୍ଷା ଅଧିକ ବାସ୍ତବ ଦୃଷ୍ଟିସମ୍ପନ୍ନ ଏବଂ ଏ କ୍ଷେତ୍ରରେ ତୁମେମାନେ ସବୁଠାରୁ ବାସ୍ତବ ଦୃଷ୍ଟିହୀନ ।

ଆମେରିକାରେ କେତେକ ଲୋକ ଆସି କହିଲେ—ଆମେ ଗୋଟିଏ ଯୌଥ କାରବାର କରିବୁ । ପାଞ୍ଚମିନିଟ ଭିତରେ ତାହା ହୋଇଗଲା । ଭାରତବର୍ଷରେ କୋଡ଼ିଏ ଜଣ ଲୋକ ଏକାଠି ହୋଇ ଦୀର୍ଘ କେତେ ସପ୍ତାହ ଧରି ଯୌଥ କାରବାର ସମ୍ପର୍କରେ ଆଲୋଚନା କରିପାରନ୍ତି, ଅଥଚ ସେ କାର୍ଯ୍ୟଟି ହୋଇପାରିବ ନାହିଁ । କିନ୍ତୁ କେହି ଯଦି ବିଶ୍ୱାସ କରେ ଯେ, ଚାଳିଶ ବର୍ଷ ଊର୍ଦ୍ଧ୍ୱବାହୁ ହୋଇ ତପସ୍ୟା କଲେ ସେ ଜ୍ଞାନଲାଭ କରିବ—ତା'ହେଲେ ତତ୍କ୍ଷଣାତ୍ ସେ ସେହି କାର୍ଯ୍ୟଟି କରି ବସିବ । ତେଣୁ ବୁଝିବାକୁ ହେବ, ଆମେମାନେ ଆମ ଭାବରେ ବାସ୍ତବ ବୁଦ୍ଧିସମ୍ପନ୍ନ । ତୁମେମାନେ ତୁମ ଭାବରେ ମଧ୍ୟ ସେହିଭଳି ।

କିନ୍ତୁ ଅନୁଭବ-ରାଜ୍ୟରେ ପ୍ରବେଶର ଯେତେ ପଥ ଅଛି, ସବୁଠାରୁ ଶ୍ରେଷ୍ଠ ପଥଟି ହେଲା ଅନୁରାଗ । ଈଶ୍ୱରଙ୍କଠାରେ ଅନୁରାଗ ହେଲେ ସମସ୍ତ ବିଶ୍ୱ ଆପଣାର ବୋଲି ମନେହୁଏ । କାରଣ ସବୁ ତ ତାଙ୍କର ସୃଷ୍ଟି । ଭକ୍ତ କହନ୍ତି—"ତାଙ୍କର ତ ସବୁ ! ଆଉ ସେ

ହୋଉଛନ୍ତି ମୋର ପ୍ରେମାସ୍ପଦ । ମୁଁ ତାଙ୍କୁ ହିଁ ଭଲପାଏ ।'' ଏହିପରଭାବରେ ଭକ୍ତ ନିକଟରେ ସବୁକିଛି ପବିତ୍ର ହୋଇଉଠେ । କାରଣ ସମସ୍ତ ବସ୍ତୁ ତାଙ୍କର । ତା'ହେଲେ ଆମେ ଭଲ କିପରି କାହାକୁ କଷ୍ଟ ଦେଇପାରିବା ? କିପରି ଭଲ ଅନ୍ୟକୁ ଭଲ ନ ପାଇ ରହିପାରିବା ? ଈଶ୍ୱରଙ୍କୁ ଭଲ ପାଇବା ସଙ୍ଗେ ସଙ୍ଗେ ତା'ର ଫଳସ୍ୱରୂପ ଅବଶେଷରେ ପ୍ରତ୍ୟେକ ପ୍ରତି ସ୍ନେହପ୍ରେମର ଭାବ ସ୍ୱତଃ ଆସିଯିବ । ଈଶ୍ୱରଙ୍କର ଯେତେ ନିକଟବର୍ତ୍ତୀ ଆମେ ହେବା, ସେତେ ଆମେ ଦେଖିବା ଯେ, ତାଙ୍କଠାରେ ହିଁ ସବୁକିଛି ରହିଛି । ସେତେବେଳେ ଆମର ହୃଦୟ ହୋଇଉଠିବ ପ୍ରେମର ଅନନ୍ତ ପ୍ରସ୍ରବଣ । ପ୍ରେମର ଦିବ୍ୟାଲୋକରେ ମନୁଷ୍ୟ ରୂପାନ୍ତରିତ ହୋଇଯାଏ ଏବଂ ଶେଷ ପର୍ଯ୍ୟନ୍ତ ସେହି ମଧୁର ଓ ଉଦ୍ଦୀପନାମୟ ସତ୍ୟଟି ଉପଲବ୍ଧି କରିଯାଏ—ପ୍ରେମ, ପ୍ରେମିକ ଓ ପ୍ରେମାସ୍ପଦ—ତତ୍ତ୍ୱତଃ ଏକ ।

## ଧର୍ମର ଦାବି

ଆପଣମାନଙ୍କ ଭିତରୁ ଅନେକଙ୍କର ସ୍ମରଣଥାଇପାରେ ଶୈଶବକାଳର ଉଦୀୟମାନ ଜ୍ୟୋତିର୍ମୟ ସୂର୍ଯ୍ୟଙ୍କୁ କେଡ଼େ ଆନନ୍ଦରେ ଆପଣମାନେ ଚାହିଁ ରହୁଥିଲେ ! ସେହିଭଳି ଜୀବନର କେଉଁ କେଉଁ ସମୟରେ ଅସ୍ତାଚଳଗାମୀ ଭାସ୍କର ସୂର୍ଯ୍ୟଙ୍କୁ ସ୍ଥିର ଦୃଷ୍ଟିରେ ଅବଲୋକନ କରି ଆପଣମାନଙ୍କ ମନରେ କଳ୍ପନା ଜାଗିଉଠିଥିବ ଓ ସେହି କଳ୍ପନା ସାହାଯ୍ୟରେ ଆପଣ ଅଦୃଶ୍ୟ ଲୋକରେ ଅନୁପ୍ରବେଶ କରିବା ଲାଗି ପ୍ରଚେଷ୍ଟା ମଧ୍ୟ କରିଥାଇପାରନ୍ତି । ବସ୍ତୁତଃ ଏହି ବ୍ୟାପାରଟି ସମଗ୍ର ବିଶ୍ୱର ଭିତ୍ତିମୂଳରେ ରହିଅଛି । ଅଦୃଶ୍ୟ ଲୋକ ଭିତରୁ ଉଦୟ ଏବଂ ତା' ଭିତରେ ପୁନରାୟ ଅସ୍ତଗମନ, ଅଜଣା ଭିତରୁ ଏହି ସମଗ୍ର ବିଶ୍ୱର ଉଦ୍‌ଭବ ଏବଂ ପୁନର୍ବାର ସେହି ଅଜଣା ଭିତରେ ଅନୁପ୍ରବେଶ, ଶିଶୁଭଳି ଅନ୍ଧକାର ଭିତରୁ ଗୁରୁଣ୍ଡି ଗୁରୁଣ୍ଡି ଆବିର୍ଭୂତ ହେବା ଏବଂ ପୁନର୍ବାର ବୃଦ୍ଧ ବୟସରେ ଗୁରୁଣ୍ଡି ଗୁରୁଣ୍ଡି କୌଣସିପ୍ରକାରେ ସେହି ଅନ୍ଧକାର ଭିତରକୁ ଫେରିଯିବା—ଏହିଭଳି ଏକ ପୁନରାବୃତ୍ତି ଏଠାରେ ଚାଲିଛି ।

ଆମର ଏହି ବିଶ୍ୱ, ଏହି ଇନ୍ଦ୍ରିୟଗ୍ରାହ୍ୟ ଜଗତ୍, ଏହି ଯୁକ୍ତି ଓ ବୁଦ୍ଧିଗ୍ରାହ୍ୟ ବ୍ରହ୍ମାଣ୍ଡଟି ଉଭୟ ପ୍ରାନ୍ତରେ ହିଁ ଅସୀମ, ଅଜ୍ଞେୟ ଓ ଚିର ଅଜ୍ଞାତଦ୍ୱାରା ଆବୃତ । ଅନୁସନ୍ଧାନ—ଏହି ଅଜ୍ଞାତ ବିଷୟରେ ହିଁ ଅନୁସନ୍ଧାନ ଚାଲେ—ଏହିଠାରେ ହିଁ ପ୍ରଶ୍ନ ଚାଲେ, ଏହିଠାରେ ହିଁ ରହିଛି ତଥ୍ୟ । ଏହାର ଭିତରେ ପୁଣି ବିଚ୍ଛୁରିତ ହୁଏ ସେହି ଆଲୋକ ଏବଂ ଏହି ଆଲୋକ ହିଁ 'ଧର୍ମ' ନାମରେ ଜଗତରେ ପ୍ରସିଦ୍ଧ ହୋଇଥାଏ । କିନ୍ତୁ ପ୍ରକୃତ ଧର୍ମ ଇହଲୋକର ଇନ୍ଦ୍ରିୟଗ୍ରାହ୍ୟ ବସ୍ତୁ ନୁହେଁ । ଏହା ଅତୀନ୍ଦ୍ରିୟ ସ୍ତରର ବସ୍ତୁ । ଏହା

ଯୁକ୍ତିବସ୍ତୁର ଅତୀତ । ଏହା ବୁଦ୍ଧିଗ୍ରାହ୍ୟ ସ୍ତରର ଅନ୍ତର୍ଭୁକ୍ତ ନୁହେଁ । ଏହା ଏପରି ଏକ ପ୍ରତ୍ୟକ୍ଷ ଦର୍ଶନ ଏବଂ ଏପରି ଏକ ଦୈବୀ ପ୍ରେରଣା ଓ ଅଜ୍ଞାତ ଅଜ୍ଞେୟ ମଧ୍ୟରେ ଏପରି ଏକ ଆତ୍ମ-ନିମଜ୍ଜନ ଯେ, ଯାହା ଫଳରେ ଅଜ୍ଞେୟକୁ ଜ୍ଞାତ ଅପେକ୍ଷା ମଧ୍ୟ ନିବିଡ଼ ଭାବରେ ଜାଣି ହୁଏ । କାରଣ ଲୌକିକ ଅର୍ଥରେ ଏହାର ଜ୍ଞାନ ସମ୍ଭବ ନୁହେଁ । ମୋର ବିଶ୍ୱାସ, ମଣିଷ ମନର ଏହି ଅନୁସନ୍ଧିତ୍ସା ସୃଷ୍ଟିର ଆଦ୍ୟରୁ ଚାଲିଆସିଛି । ଜଗତର ଇତିହାସରେ ଏପରି କୌଣସି ସମୟ ନ ଥିଲା—ଯେତେବେଳେ କି ମଣିଷର ବିଚାରଶକ୍ତି ଓ ବୁଦ୍ଧିମତ୍ତା ଥିଲା, ଅଥଚ ଏହି ପ୍ରଚେଷ୍ଟା ଓ ଏହି ଅତୀନ୍ଦ୍ରିୟ ବସ୍ତୁର ଅନୁସନ୍ଧିତ୍ସା ନ ଥିଲା । ଆମେ ହୁଏତ ଦେଖିପାରିଲୁ—ଆମର ଏହି କ୍ଷୁଦ୍ର ବିଶ୍ୱରେ, ଏହି ମାନବୀୟ ମନ ଭିତରେ ଗୋଟିଏ ଭାବନାର ଉଦୟ ହେଲା । କିନ୍ତୁ କେଉଁଠାରୁ ଏହାର ଉଦ୍ଭବ ହେଲା, ତାହା ଆମେ ଜାଣି ନାହୁଁ ଏବଂ ଯେତେବେଳେ ଏହା ବିଲୁପ୍ତ ହୁଏ ସେତେବେଳେ ବା ଏହା ଯାଏ କୁଆଡ଼େ ? ତାହା ମଧ୍ୟ ଆମକୁ ଅଗୋଚର । ଏହି କ୍ଷୁଦ୍ର ଜଗତ ଓ ବିରାଟ ବ୍ରହ୍ମାଣ୍ଡ ଗୋଟିଏ ଉତ୍ସରୁ ଉଦ୍ଭୂତ ହୁଏ, ଗୋଟିଏ ଧାରାରେ ଚାଲେ, ଗୋଟିଏ ପ୍ରକାର ସ୍ତରସମଷ୍ଟି ଅତିକ୍ରମ କରେ ଏବଂ ଗୋଟିଏ ପର୍ଦ୍ଦାରେ ଝଙ୍କୃତ ହୁଏ ।

ମୁଁ ଆପଣମାନଙ୍କ ସମ୍ମୁଖରେ ହିନ୍ଦୁମାନଙ୍କର ଏହି ମତବାଦ ବ୍ୟକ୍ତ କରିବାକୁ ଚେଷ୍ଟା କରିବି ଯେ, ଧର୍ମ ବାହାର ଇଲାକାରୁ ଆସେ ନାହିଁ—ଅନ୍ତର ଭିତରୁ ହିଁ ଉତ୍ସରିତ ହୁଏ । ମୋର ବିଶ୍ୱାସ—ଧର୍ମ ମନୁଷ୍ୟର ଏପରି ମଜ୍ଜାଗତ ଯେ, ଯେତେକ୍ଷଣ ମନୁଷ୍ୟ ଦେହ ଓ ମନ ତ୍ୟାଗ ନ କରେ, ଚିନ୍ତା ଓ ପ୍ରାଣରେ ଗତି ନିରୁଦ୍ଧ ନ କରେ, ସେତେକ୍ଷଣ ଧର୍ମ-ତ୍ୟାଗ କରିପାରିବ ନାହିଁ । ମନୁଷ୍ୟ ଯେତେବେଳେ ଯାଏ ଚିନ୍ତା କରିବା ପାଇଁ ସମର୍ଥ ଥିବ, ସେତେବେଳ ପର୍ଯ୍ୟନ୍ତ ଏହି ପ୍ରୟାସ ରହିବ, ସେତେଦିନ ପର୍ଯ୍ୟନ୍ତ ମନୁଷ୍ୟର କୌଣସି ନା କୌଣସି ପ୍ରକାର ଧର୍ମ ରହିବ ହିଁ ରହିବ; ଏହି ଭାବରେ ଆମେ ଦେଖିବା ଯେ ଜଗତରେ ନାନା ଧର୍ମର ଉତ୍ପତ୍ତି ହୋଇଅଛି । ଏଗୁଡ଼ିକର ଅନୁଶୀଳନ କରୁ କରୁ କିନ୍ତୁ ମନୁଷ୍ୟ ବାଟବଣା ହୋଇଯାଏ । ଯଦ୍ୟପି ଅନେକେ ମନେକରନ୍ତି ଯେ, ଏ ପ୍ରକାର ଗବେଷଣା ବୃଥା—ତଥାପି ବସ୍ତୁତଃ ଏହା ବୃଥା ନୁହେଁ । ଏହି ବିଶୃଙ୍ଖଳା ମଧ୍ୟରେ ହିଁ ଗୋଟିଏ ସାମଞ୍ଜସ୍ୟ ରହିଛି । ଏସବୁ ବେତାଲିଆ ବେସୁରା ରାଗିଣୀ ଭିତରେ ମଧ୍ୟ ଗୋଟିଏ ସଙ୍ଗୀତର ଛନ୍ଦ ସୂକ୍ଷ୍ମଭାବରେ ରହିଅଛି । ଯେ ଶୁଣିବାକୁ ଚେଷ୍ଟା କରିବ, ସେ ହିଁ କେବଳ ଶୁଣିପାରିବ ସେହି ଛନ୍ଦ ।

ବର୍ତ୍ତମାନ ସମୟରେ ସବୁଠାରୁ ବଡ଼ ପ୍ରଶ୍ନ ହେଲା—ଯଦି ଏହା ହିଁ ସତ୍ୟ ହୁଏ ଯେ, ଜ୍ଞେୟ ଏବଂ ଜ୍ଞାତ ବସ୍ତୁର ଉଭୟ ପ୍ରାନ୍ତରେ ଅଜ୍ଞେୟ ଓ ସମ୍ପୂର୍ଣ୍ଣ ଅଜ୍ଞାତ ଅନନ୍ତ ବେଷ୍ଟନୀ ରହିଅଛି—ତେବେ ସେହି ଅଜଣାକୁ ଜାଣିବା ଲାଗି ଏତେ ପ୍ରୟାସ କାହିଁକି ? କାହିଁକି ଆମେ ଜ୍ଞାତ ବସ୍ତୁ ନେଇ ସନ୍ତୁଷ୍ଟ ରହୁନୁ ନାହିଁ ? କାହିଁକି ଆମେ କେବଳ ପାନାହାର ଓ ସମାଜର ମଙ୍ଗଳସାଧନ କଳ୍ପେ ସାମାନ୍ୟ କିଛି କରି ସେଥିକରେ ପରିତୃପ୍ତ ରହିବା ନାହିଁ ? ଏହି ଧାରଣା ହିଁ ବର୍ତ୍ତମାନ ସବଦି ଗଗନପବନରେ ପୂରି ରହିଛି । ପଣ୍ଡିତ ଅଧ୍ୟାପକ-

ମାନଙ୍କଠାରୁ ଆରମ୍ଭ କରି ଅସ୍ଫୁଟ ଭାଷାଭାଷୀ ଶିଶୁ ପର୍ଯ୍ୟନ୍ତ ସମସ୍ତେ କହନ୍ତି—"ଜଗତର ଉପକାର କର, ଏତିକି ମାତ୍ର କର୍ତ୍ତବ୍ୟ ହିଁ ଧର୍ମ । ବୃଥାରେ ଇନ୍ଦ୍ରିୟାତୀତ ବସ୍ତୁ ସମ୍ପର୍କରେ ମୁଣ୍ଡ ଘୂରାଅ ନାହିଁ ।" ଏକଥା ଏତେ ବେଶୀ କ୍ଷେତ୍ରରେ କୁହା ଯାଇ-ଥାଏ ଯେ ବର୍ତ୍ତମାନ ଏହା ଗୋଟିଏ ଅବଧାରିତ ସତ୍ୟରେ ପରିଣତ ହୋଇଯାଇଛି ।

କିନ୍ତୁ ସୌଭାଗ୍ୟର ବିଷୟ ହେଲା—ଆମେ ସ୍ୱଭାବତଃ ଏହାର ଊର୍ଦ୍ଧ୍ୱରେ ଅନୁସନ୍ଧାନ କରିବାକୁ ବାଧ୍ୟ । ଏହି ବର୍ତ୍ତମାନ ଏବଂ ଏହି ଯାହାକୁ ଆମେ ବ୍ୟକ୍ତ ବୋଲି କହୁଛୁ ତାହା ଅବ୍ୟକ୍ତର ଏକ ଅଂଶମାତ୍ର । ଏହି ଇନ୍ଦ୍ରିୟଗ୍ରାହ୍ୟ ବିଶ୍ୱ ସତେ କି ସେହି ଅନନ୍ତ ଆଧ୍ୟାତ୍ମ-ଲୋକର ଏପରି ଗୋଟିଏ ଅଂଶ, ଏପରି ଗୋଟିଏ ଖଣ୍ଡ, ଯାହା କି ଏହି ଇନ୍ଦ୍ରିୟଗ୍ରାହ୍ୟ ଚେତନସ୍ତର ମଧ୍ୟରେ ପ୍ରସାରିତ ହୋଇପଡ଼ିଛି । ସେହି ଅତୀନ୍ଦ୍ରିୟ ତତ୍ତ୍ୱକୁ ବାଦ ଦେଇ କେବଳ ଏହି ପ୍ରସାରିତ କ୍ଷୁଦ୍ର ଅଂଶଟିକୁ କିପରି ବୁଝିହେବ ଓ ବ୍ୟାଖ୍ୟା କରିହେବ ? ତାହା ଅସମ୍ଭବ ନୁହେଁ କି ? ସକ୍ରେଟିସ୍‌ଙ୍କ ସମ୍ବନ୍ଧରେ କଥିତ ଅଛି—ଥରେ ସେ ଯେତେବେଳେ ଏଥେନ୍ସ ନଗରୀରେ ବକ୍ତୃତା ଦେଉଥିଲେ, ସେତେବେଳେ ତାଙ୍କର ଜଣେ ବ୍ରାହ୍ମଣଙ୍କ ସହିତ ଭେଟ ହୋଇଥିଲା । ସେହି ବ୍ରାହ୍ମଣ ଭ୍ରମଣ ଉଦ୍ଦେଶ୍ୟରେ ଗ୍ରୀସ୍‌ରେ ଯାଇ ପହଞ୍ଚି-ଥିଲେ । ସକ୍ରେଟିସ୍ ତାଙ୍କୁ କହିଲେ—ମନୁଷ୍ୟର ପ୍ରଧାନ ଜ୍ଞାତବ୍ୟ ବିଷୟ ହେଲା 'ମନୁଷ୍ୟ' । ବ୍ରାହ୍ମଣ ତତ୍‌କ୍ଷଣାତ୍ ସେ କଥାର ପ୍ରତିବାଦ କରି କହିଲେ—"ଈଶ୍ୱରଙ୍କୁ ନ ଜାଣି ଆପଣ ମନୁଷ୍ୟକୁ ଜାଣିବେ କିପରି ?"

ଏହି ଯେଉଁ ଈଶ୍ୱର, ଏହି ଯାହାଙ୍କୁ ସର୍ବଦା ଅଜ୍ଞେୟ ସତ୍ତା ବୋଲି କୁହାଯାଉଛି—ଯାହାଙ୍କୁ କୁହାଯାଉଛି 'ପରମତତ୍ତ୍ୱ' ଅଥବା ଅନନ୍ତ ବସ୍ତୁ, ଅଥବା ଅନାମ ସତ୍ତା—ଏପରିକି ତାଙ୍କୁ ଯେ ଯେଉଁଭାବରେ ଡାକୁ ବା କହୁ ପଛେ—ଏକମାତ୍ର ତାଙ୍କୁ ହିଁ ଅବଲମ୍ବନ କରି ଜ୍ଞାତ ଓ ଜ୍ଞେୟ ଅର୍ଥାତ୍ ଏହି ବର୍ତ୍ତମାନ ଜୀବନର ଯୌକ୍ତିକତା ସମ୍ପୂର୍ଣ୍ଣ ବ୍ୟାଖ୍ୟା କରିବା ବା ସମଗ୍ର ଅବସ୍ଥିତିର ମୂଳ କାରଣ ପ୍ରଦର୍ଶନ କରିବା ସମ୍ଭବ । ଆପଣଙ୍କ ସମ୍ମୁଖସ୍ଥ ଯେକୌଣସି ଅତିଜଡ଼ ବସ୍ତୁକୁ ଧରନ୍ତୁ—ଯେଉଁସବୁ ବିଦ୍ୟା ଅତୀବ ଜଡ଼ ବିଷୟ ସମ୍ବନ୍ଧୀୟ ବିଜ୍ଞାନ ବୋଲି ପରିଚିତ, ତାହାର ଯେକୌଣସି ବିଷୟକୁ ଧରନ୍ତୁ—ଯଥା ରସାୟନବିଦ୍ୟା, ପଦାର୍ଥବିଦ୍ୟା, ଜ୍ୟୋତିର୍ବିଜ୍ଞାନ ବା ପ୍ରାଣୀବିଜ୍ଞାନ ଅଧ୍ୟୟନ କରନ୍ତୁ—କ୍ରମାଗତ ତାହାର ଅନୁଶୀଳନ କରି ଚାଲନ୍ତୁ—ଦେଖିବେ ସ୍ଥୂଳ ରୂପଗୁଡ଼ିକ କ୍ରମଶଃ ବିଲୀନ ହୋଇ ସୂକ୍ଷ୍ମରେ ପରିଣତ ହୋଇ ଯାଉଛି । ଅବଶେଷରେ ଏପରି ଗୋଟିଏ ବିନ୍ଦୁସଦୃଶ କେନ୍ଦ୍ରରେ ଆସି ପହଞ୍ଚୁଛି— ଯେଉଁ-ଠାରେ ଆପଣ ଜଡ଼ରୁ ଅଜଡ଼ରେ ଉପନୀତ ହେବା ଲାଗି ଗୋଟିଏ ଲମ୍ଫ ପ୍ରଦାନ କରିବାକୁ ବାଧ୍ୟ । ସ୍ଥୂଳ ବିଗଳିତ ହୋଇ ସୂକ୍ଷ୍ମାକାର ଗ୍ରହଣ କରେ—ସେହିପରି ପଦାର୍ଥବିଜ୍ଞାନ (Physics) ଦର୍ଶନଶାସ୍ତ୍ର (Metaphysics)ରେ ପରିଣତ ହୁଏ । ଜ୍ଞାନରାଜ୍ୟର ସକଳ କ୍ଷେତ୍ରରେ ଏହି ପ୍ରକ୍ରିୟା ପରିଲକ୍ଷିତ ହୋଇଥାଏ ।

ଆମର ଯାହା କିଛି ଅଛି—ଆମର ସମାଜ, ଆମର ପାରସ୍ପରିକ ସମ୍ପର୍କ, ଆମର ଧର୍ମ ଏବଂ ଆପଣମାନେ ଯାହାକୁ ନୀତିଶାସ୍ତ୍ର ନାମରେ ଅଭିହିତ କରନ୍ତି—ସର୍ବକ୍ଷେତ୍ରରେ

ସେହି ଗୋଟିଏ କଥା ପ୍ରଯୁଜ୍ୟ । କେବଳ ମାତ୍ର ଉପଯୋଗିତା (utility) ଭିତ୍ତିରେ ନୀତିଶାସ୍ତ୍ର ତିଆରି କରିବାର ବହୁ ପ୍ରଚେଷ୍ଟା ହେବାର ଦେଖାଯାଏ । ମୁଁ ବର୍ତ୍ତମାନ ପ୍ରତିଦ୍ୱନ୍ଦ୍ୱୀ ରୂପେ ଯେକୌଣସି ବ୍ୟକ୍ତିକୁ ଏହି ପ୍ରକାର କୌଣସି ନ୍ୟାୟସମ୍ମତ ନୀତିଶାସ୍ତ୍ରଟିଏ ଗଢ଼ି ତୋଳିବାକୁ ଆହ୍ୱାନ କରୁଛି । ସେ ହୁଏତ ଅନ୍ୟର ଉପକାର ସାଧନ କରିବାକୁ ଉପଦେଶ ଦେବେ । "କାହିଁକି ଉପକାର କରିବି ? ଯେହେତୁ ଏଭଳି କରିବା ହିଁ ମାନବ ପକ୍ଷରେ ସର୍ବାପେକ୍ଷା ଅଧିକ ଉପଯୋଗୀ ।" ବର୍ତ୍ତମାନ ଧରିଯାଉ—କୌଣସି ବ୍ୟକ୍ତି ଯଦି କହେ— "ମୁଁ କାହାର ଉପକାର କରିବାକୁ ଚାହେଁ ନାହିଁ—ମୁଁ ଅନ୍ୟ ଲୋକର ତଣ୍ଟି ଚିପି ନିଜେ ଧନୀ ହେବି," ତେବେ ଆପଣ ତାକୁ କ'ଣ ଉତ୍ତର ଦେବେ ? ସେ ତ ଆପଣଙ୍କ ପ୍ରୟୋଜନ-ବାଦର ଆଶ୍ରୟ ନେଇ ଏହି ପ୍ରୟୋଜନବାଦକୁ ଖଣ୍ଡନ କରିଦେଲା । ମୁଁ ଯଦି ଜଗତର ଉପକାର ସାଧନ କରେ, ସେଥିରେ ମୋର କେଉଁ ପ୍ରୟୋଜନ ସିଦ୍ଧ ହେବ ? ମୁଁ କ'ଣ ଏତେ ନିର୍ବୋଧ ଯେ ଅନ୍ୟ ଲୋକ ଯେଉଁଥିରେ ସୁଖରେ ରହିପାରିବ—ସେଥିପାଇଁ ମୁଁ ପରିଶ୍ରମ କରି ମୋର ଜୀବନକୁ କ୍ଷୟ କରି ଚାଲିବି ? ଯଦି ସମାଜ ବ୍ୟତୀତ ଅନ୍ୟ କୌଣସି ଚେତନ ବସ୍ତୁ ନ ରହେ, ପଞ୍ଚେନ୍ଦ୍ରିୟ ବ୍ୟତୀତ ଜଗତରେ ଅନ୍ୟ କୌଣସି ଶକ୍ତି ନ ଥାଏ, ତା'ହେଲେ ମୁଁ ନିଜେ ଭଲ କାହିଁକି ସୁଖରେ ରହିବାକୁ ଚେଷ୍ଟା କରିବି ନାହିଁ ? ଯଦି ଆଇନରକ୍ଷୀମାନଙ୍କ ଆଖିରେ ଧୂଳି ଦେଇ ନିଜକୁ ମୁକ୍ତ ରଖିପାରେ, ତେବେ ମୁଁ କାହିଁକି ମୋର ଭାଇବିରାଦରମାନଙ୍କ ତଣ୍ଟି କାଟି ନିଜେ ସୁଖୀ ନ ହେବି ? ଆପଣ ଏ କଥାର କି ଉତ୍ତର ଦେବେ ? ଆପଣ ଏହାର ସମର୍ଥନରେ କେଉଁ ଉପଯୋଗିତାବାଦର ଯୁକ୍ତି ବାଢ଼ି-ପାରିବେ ? ଏହିଭଳି ଯେତେବେଳେ ଆପଣଙ୍କ ଯୁକ୍ତିର ଭିତ୍ତି ଦୋହଲିଯାଏ ସେତେବେଳେ ଆପଣ କହନ୍ତି—"ଆହେ ବନ୍ଧୁବର ! ଜଗତରେ ଭଲ କରିବା ହିଁ ଭଲ ।" କିନ୍ତୁ ମଣିଷ ମନର ଅନ୍ତର୍ନିହିତ ଯେଉଁ ଶକ୍ତି, ସେ କହେ—"ଭଲ ହେବା ହିଁ ଭଲ ।" ଯେଉଁ ଶକ୍ତି ଆମ ନିକଟରେ ଅତି ସମୁଜ୍ଜ୍ୱଳ ଆତ୍ମାର ମହିମା ପ୍ରକାଶ କରେ—ସାଧୁତାର ସୌନ୍ଦର୍ଯ୍ୟ ଓ ପୁଣ୍ୟର ସର୍ବମନୋହର ଆକର୍ଷଣ ପ୍ରକଟିତ କରେ ଓ ମଙ୍ଗଳର ଅନନ୍ତ ଶକ୍ତିର ପରିଚୟ ଦିଏ ସେହି ଶକ୍ତିଟିର ସ୍ୱରୂପ କ'ଣ ? ତାହାକୁ ହିଁ ଆମେ କହୁ ଈଶ୍ୱର । ତାହା ନୁହେଁ କି ?

ଦ୍ୱିତୀୟତଃ ଏଥର ମୁଁ ଏପରି ଏକ କ୍ଷେତ୍ରରେ ଆସି ପଡ଼ିଛି, ଯେଉଁଠାରେ ସାବଧାନରେ କଥା କହିବାକୁ ହୁଏ । ମୁଁ ଆପଣମାନଙ୍କ ମନୋଯୋଗ ଆକର୍ଷଣ କରୁଛି ଏବଂ ଅନୁରୋଧ କରୁଛି ଯେପରିକି ଆପଣମାନେ ମୋର ବକ୍ତବ୍ୟ ଶୁଣି ଖୁବ୍ ଶୀଘ୍ର କୌଣସି ସିଦ୍ଧାନ୍ତରେ ପହଞ୍ଚି ନ ଯା'ନ୍ତୁ । ଆମେମାନେ ଏ ଜଗତର ବିଶେଷ କିଛି ଯେ ଉପକାର କରିପାରିବୁ ତାହା ନୁହେଁ । ଜଗତର କଲ୍ୟାଣ କରିବା ଅବଶ୍ୟ ଭଲ କଥା । କିନ୍ତୁ ଏ ଜଗତର କୌଣସି ବିଶେଷ ଉପକାର ଆମେ କରିପାରିବୁ କି ? ଏହି ଯେ ଶତ ଶତ ବର୍ଷ ଧରି ଆମେ ଚେଷ୍ଟାକରି ଚାଲିଛୁ ସେଥିରେ କ'ଣ ଖୁବ୍ ବେଶୀ ଉପକାର ଆମେ କରିପାରିଛୁ ? ଜଗତର ମୋଟ ସୁଖର ପରିମାଣ କ'ଣ ଆମେ ବୃଦ୍ଧି କରିପାରିଛୁ ? ଜଗତରେ ସୁଖସୃଷ୍ଟି ଲାଗି ପ୍ରତିଦିନ ଅସଂଖ୍ୟ ଉପାୟ ଉଦ୍‌ଭାବିତ ହେଉଛି ଏବଂ ଏହି ପ୍ରକ୍ରିୟା ଶତ ସହସ୍ର ବର୍ଷ

ଧରି ଚାଲିଛୁ । ମୁଁ ଆପଣମାନଙ୍କୁ ପ୍ରଶ୍ନ କରୁଛି—ଗୋଟିଏ ଶତାବ୍ଦୀର ପୂର୍ବ ତୁଳନାରେ ବର୍ତ୍ତମାନ ମୋଟ ସୁଖର ପରିମାଣ କ'ଣ ସତରେ ବୃଦ୍ଧି ପାଇଛି ? ନା—ତାହା ସମ୍ଭବ ନୁହେଁ । ମହାସାଗର ବକ୍ଷରେ ଗୋଟିଏ ଉତ୍ତାଳ ତରଙ୍ଗର ସୃଷ୍ଟି ହେଲେ ଅନ୍ୟ ସ୍ଥାନରେ ଏକ ଗଭୀର ଗହ୍ୱରର ସୃଷ୍ଟି ହୋଇଥାଏ । ଯଦି କୌଣସି ଜାତି ଧନୀ ଓ ଶକ୍ତିଶାଳୀ ହୋଇ ଉଠେ, ତେବେ ତାହା ଅନ୍ୟ କୌଣସି ଜାତିର ଧନସମ୍ପଦ ଓ କ୍ଷମତାର ହ୍ରାସ କରି ହିଁ ସମ୍ଭବ ହୋଇଥାଏ । ପ୍ରତିଟି ନବାବିଷ୍କୃତ ଯନ୍ତ୍ର ମାତ୍ର କୋଡ଼ିଏ ଜଣଙ୍କୁ ଧନୀ କରିଛି ଓ କୋଡ଼ିଏ ହଜାର ଲୋକଙ୍କୁ ଦରିଦ୍ର କରିଛି । ସର୍ବତ୍ର ଦେଖାଯାଏ—ପ୍ରତିଯୋଗିତାର ଏହି ସାଧାରଣ ନିୟମର ଅଭିବ୍ୟକ୍ତି । ମୋଟ ସ୍ଫୂର୍ତ୍ତିଶକ୍ତିର ପରିମାଣ ସର୍ବଦା ସମାନ ଥାଏ । ଆଉ ମଧ୍ୟ ଦେଖନ୍ତୁ—ଏହି କାର୍ଯ୍ୟ ହିଁ ନିର୍ବୋଧତାର ପରିଚାୟକ । ଦୁଃଖକୁ ବାଦ୍ ଦେଇ ଆମେ ସୁଖର ବ୍ୟବସ୍ଥା କରିପାରୁ, ଏହା ଅଯୌକ୍ତିକ କଥା । ଭୋଗର ଏହିସବୁ ଉପକରଣ ସୃଷ୍ଟି କରି ଆପଣମାନେ ଜଗତର ଅଭାବ ବଢ଼ାଇ ଚାଲିଛନ୍ତି ନା ନାହିଁ ? ପୁଣି ଅଭାବବୃଦ୍ଧିର ଅର୍ଥ ହେଲା ଅତୃପ୍ତ ବାସନା, ଯାହା କେବେହେଁ ପ୍ରଶମିତ ହେବ ନାହିଁ । ଏହି ଅଭାବବୋଧ ଓ ଏହି ତୃଷ୍ଣାକୁ କେଉଁ ବସ୍ତୁ ଭଲ ପରିତୃପ୍ତ କରିପାରେ ? ଯେତେବେଳଯାଏ ଏହି ତୃଷ୍ଣା ରହିବ, ସେତେବେଳଯାଏ ଦୁଃଖ ଅନିବାର୍ଯ୍ୟ । ଜୀବନର ସ୍ୱାଭାବିକ ଧାରା ହେଲା ଦୁଃଖ ଓ ସୁଖ କ୍ରମାନ୍ୱୟରେ ଆସେ ଓ ଯାଏ । ତା'ଛଡ଼ା, ଆଚ୍ଛା, ଆପଣ କ'ଣ ମନେକରନ୍ତି, ପୃଥିବୀର ମଙ୍ଗଳସାଧନ-କର୍ମଟି ଆପଣଙ୍କ ଉପରେ ହିଁ ଅର୍ପଣ କରା ହୋଇଛି ? ଆଉ କ'ଣ କୌଣସି ଶକ୍ତି ଏ ବିଶ୍ୱରେ କାର୍ଯ୍ୟ କରୁ ନାହିଁ ? ଯେ ସନାତନ, ସର୍ବଶକ୍ତିମାନ, କରୁଣାମୟ, ଚିରଜାଗ୍ରତ—ଯେ ସମଗ୍ର ବିଶ୍ୱ ନିଦ୍ରାମଗ୍ନ ହେଲେ ମଧ୍ୟ ନିଜେ କେବେ ନିଦ୍ରିତ ହୁଅନ୍ତି ନାହିଁ, ଯାହାଙ୍କ ଚକ୍ଷୁ ସତତ ନିର୍ନିମେଷ, ସେହି ଈଶ୍ୱର କଅଣ ମୋର ଆଉ ଆପଣଙ୍କ ହାତରେ ତାଙ୍କ ବିଶ୍ୱକୁ ସମର୍ପଣ କରି ଦେଇ ମୃତ୍ୟୁବରଣ କରିଛନ୍ତି, ବା ଏ ବିଶ୍ୱରୁ ବିଦାୟ ନେଇ ଚାଲିଗଲେଣି ? ଏହି ଅନନ୍ତ ଆକାଶ ଯାହାର ସଦା ଉନ୍ମୀଳିତ ଚକ୍ଷୁସଦୃଶ, ସେ କଅଣ ମୃତ୍ୟୁକବଳିତ ହୋଇ ନିଶ୍ଚିହ୍ନ ହୋଇଯାଇଛନ୍ତି ? ସେ କଅଣ ଆଉ ଏ ବିଶ୍ୱକୁ ପାଳନାଦି କରୁ ନାହାନ୍ତି ? ବିଶ୍ୱ ତ ବେଶ୍ ଭଲ ଭାବରେ ଚାଲିଛି । ଆପଣଙ୍କର ତ ବ୍ୟସ୍ତ ହେବାର କୌଣସି ପ୍ରୟୋଜନ ନାହିଁ ? ଏସବୁ କଥା ଭାବି ଆପଣଙ୍କର ଦୁଃଖଭୋଗ କରିବାର ପ୍ରୟୋଜନ ବା କଅଣ ?

[ ସ୍ୱାମୀଜୀ ଏହି ସମ୍ପର୍କରେ ଗୋଟିଏ ଲୋକର ଗଳ୍ପ କହିଲେ—ସେ ଗୋଟିଏ ଭୂତକୁ ବଶୀଭୂତ କରି ନିଜର ବହୁକର୍ମ ସମ୍ପାଦିତ କରିଥିଲା, କିନ୍ତୁ ଭୂତକୁ ନିଯୁକ୍ତ ରଖିବା ଭଳି କୌଣସି କର୍ମ ଶେଷରେ ନ ପାଇ ତାକୁ ଗୋଟିଏ କୁକୁରର ବଙ୍କା ଲାଞ୍ଜ ସିଧାକରିବା ପାଇଁ ଦେଇଥିଲା । ]

ଏ ପୃଥିବୀର ଉପକାର କରିବାକୁ ଯାଇ ଆମେମାନେ ମଧ୍ୟ ସେହି ଭୂତର ଦୁର୍ଦ୍ଦଶା ଭୋଗ କରୁଛୁ । ହେ ଭ୍ରାତୃବୃନ୍ଦ ! ଆମେ ମଧ୍ୟ ସେହିଭଳି ଏହି ହଜାର ହଜାର ବର୍ଷ ଧରି କୁକୁରର ବଙ୍କା ଲାଞ୍ଜଟିକୁ ସିଧା କରିବା ସାଧନାରେ ଲାଗିପଡ଼ିଛୁ । ଏହା ହେଲା

ଠିକ୍ ଗୋଟିଏ ବାତବ୍ୟାଧି ଭଳି ବ୍ୟାପାର । ତାକୁ ପାଦ ଆଡ଼୍ ତଡ଼ିଲେ ଏହା ଯାଇ ମସ୍ତକରେ ଆଶ୍ରୟ ନିଏ ଏବଂ ମସ୍ତକରୁ ବିତାଡ଼ିତ କଲେ ଏହା ପୁଣି ଅନ୍ୟ ଅଙ୍ଗରେ ଆଶ୍ରୟ ନିଏ ।

ଅବଶ୍ୟ ଜଗତ ସମ୍ବନ୍ଧରେ ମୋର ଏହି ମତବାଦ ଆପଣମାନଙ୍କ ଭିତରୁ ଅନେକଙ୍କୁ ଖୁବ୍ ନୈରାଶ୍ୟଜନକ ମନେହେବ । କିନ୍ତୁ ପ୍ରକୃତରେ ତାହା ନୁହେଁ । ନୈରାଶ୍ୟବାଦ ଓ ଆଶାବାଦ—ଉଭୟ ଭ୍ରାନ୍ତ ମତବାଦ । ଦୁଇଟିଯାକ ଅତିମାତ୍ରାରେ ଚରମ । ଯେତେବେଳେ ଯାଏ ଜଣଙ୍କର ଅପର୍ଯ୍ୟାପ୍ତ ଖାଦ୍ୟ ଓ ପାନୀୟ ରହିଛି – ପିନ୍ଧିବା ଲାଗି ଉତ୍ତମ ବସ୍ତ୍ର ଭୂଷଣ ରହିଛି—ସେତେବେଳଯାଏ ସେ ଅବଶ୍ୟ ଖୁବ୍ ଆଶାବାଦୀ ରହିପାରେ । କିନ୍ତୁ ସେ ଲୋକ ଯେତେବେଳେ ସବୁ କିଛି ହରାଇ ବସିବ, ସେତେବେଳେ ସେ ନିଶ୍ଚୟ ଚରମ ନୈରାଶ୍ୟବାଦୀ ହୋଇ ଉଠିବ । ଯେତେବେଳେ କୌଣସି ବ୍ୟକ୍ତି ସବୁ ପ୍ରକାର ଧନସମ୍ପଦରୁ ସମ୍ପୂର୍ଣ୍ଣ ବଞ୍ଚିତ ହୁଏ ଏବଂ ନିତାନ୍ତ ଦୀନଦରିଦ୍ର ହୋଇଯାଏ, କେବଳ ସେତିକିବେଳେ ମାନବଜାତିର ଭ୍ରାତୃତ୍ୱ ସମ୍ବନ୍ଧୀୟ ଧାରଣାଟିଏ ତା' ନିକଟରେ ସବେଗରେ ଆବିର୍ଭୂତ ହୁଏ । ଏହା ହିଁ ସଂସାରର ସ୍ୱରୂପ । ଦେଶଦେଶାନ୍ତର ଭ୍ରମଣ କରି ମୁଁ ଜଗତ ସହିତ ଯେତେ ଅଧିକ ପରିଚିତ ହେଉଛି, ମୋର ଯେତିକି ବୟସ ଅଧିକ ହେଉଛି, ମୁଁ ସେତିକି ସେତିକି ଆଶାବାଦ ଓ ନିରାଶାବାଦର ଦୁଇ ଚରମ ମତକୁ ପରିହାର କରିବାର ଚେଷ୍ଟା କରି ଚାଲିଛି । ଏହି ଜଗତ ଭଲ ନୁହେଁ କି ଖରାପ ନୁହେଁ । ଏହା ପ୍ରଭୁଙ୍କର ଜଗତ । ଏହା ଭଲମନ୍ଦ ଉଭୟର ଅତୀତ । ନିଜ ଦିଗରୁ ଏହା ସର୍ବବିଷୟରେ ପରିପୂର୍ଣ୍ଣ । ଭଗବାନଙ୍କ ଇଚ୍ଛାରେ ଏଠାରେ କାର୍ଯ୍ୟ ଚାଲିଛି ଏବଂ ଆମ ଆଗରେ ଏହିସବୁ ବିଭିନ୍ନ ଚିତ୍ର ଦେଖାଯାଉଛି । ଅନାଦି ଅନନ୍ତ କାଳ ଧରି ଏହା ଏପରି ଚାଲିବ । ଏହା ଗୋଟିଏ ସୁବୃହତ୍ ବ୍ୟାୟାମାଗାର ତୁଲ୍ୟ । ଏଠାକୁ ଆସି ମୋତେ, ଆପଣମାନଙ୍କୁ ଓ ଲକ୍ଷ ଲକ୍ଷ ପ୍ରାଣୀଙ୍କୁ ବ୍ୟାୟାମ ଅଭ୍ୟାସ କରିବାକୁ ପଡ଼ିବ ଏବଂ ନିଜ ନିଜକୁ ସରଳ ଓ ଦୋଷଶୂନ୍ୟ କରି ଗଢ଼ିବାକୁ ପଡ଼ିବ । ଏହି ଜଗତ ଠିକ୍ ଏହି ଉଦ୍ଦେଶ୍ୟରେ ହିଁ ସୃଷ୍ଟ ହୋଇଛି । ଭଗବାନ ଅବଶ୍ୟ ଗୋଟିଏ ତ୍ରୁଟିହୀନ ଜଗତ ସୃଷ୍ଟି କରିପାରିଥାଆନ୍ତେ ଏବଂ ଏକଥା ମଧ୍ୟ ଭାବିବା ଠିକ୍ ନୁହେଁ ଯେ, ଏ ଜଗତରେ ଦୁଃଖର ବ୍ୟବସ୍ଥା କରିବା ବ୍ୟତୀତ ଭଗବାନଙ୍କର ଆଉ ଅନ୍ୟ ଉପାୟ ନ ଥିଲା ।

ଆପଣମାନେ ସେହି ଧର୍ମଯାଜକ ଓ ତରୁଣୀର କାହାଣୀଟି ସ୍ମରଣ କରନ୍ତୁ । ଗୋଟିଏ ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଉଭୟେ ଚନ୍ଦ୍ରକୁ ଅବଲମ୍ବନ କରି କଳଙ୍କରେଖାଗୁଡ଼ିକ ଦେଖିବାକୁ ପାଇଲେ । ଧର୍ମଯାଜକ କହିଲେ—"ଏଗୁଡ଼ିକ ନିଶ୍ଚୟ ଚନ୍ଦ୍ରପୃଷ୍ଠସ୍ଥ ଗୀର୍ଜାଗୁଡ଼ିକର ଚୂଡ଼ା ହୋଇଥିବ ।" ତରୁଣୀ କହିଲା—"ବାଜେ କଥା । ମୋର ଯାହା ମନେହେଉଛି—ସେଠାରେ ତରୁଣ-ତରୁଣୀ ପ୍ରଣୟବିଭୋର ହୋଇ ପରସ୍ପରକୁ ଚୁମ୍ବନ ଦିଆଦେଇ ହେଉଛନ୍ତି ।" ଏ ପୃଥିବୀ ସମ୍ପର୍କରେ ଆମର ଦର୍ଶନ ମଧ୍ୟ ଅନୁରୂପ । ଆମେ ଯେତେବେଳେ ଏ ଜଗତର ଭିତରେ ଥାଉ, ସେତେବେଳେ ମନେକରୁ ଏହାର ଅନ୍ତର୍ଭାଗ ଆମେ ଦେଖିପାରୁଛୁ । ଆମେ ଜୀବନର ଯେଉଁ ସ୍ତରରେ ଥାଉ, ତଦନୁଯାୟୀ ଏ

ବିଶ୍ୱକୁ ଦେଖ। ଷ୍ଟୋଭଘରର ଅଗ୍ନି ଭଲ ନୁହେଁ କି ମନ୍ଦ ମଧ୍ୟ ନୁହେଁ। ଯେତେବେଳେ ସେହି ଅଗ୍ନି ଆପଣଙ୍କର ଆହାର୍ଯ୍ୟ ପ୍ରସ୍ତୁତ କରିଦିଏ, ସେତେବେଳେ ଆପଣ ତା'ର ପ୍ରଶଂସା କରି କହନ୍ତି—"ଅଗ୍ନି କେଡ଼େ ଭଲ!" କିନ୍ତୁ ସେ ଅଗ୍ନି ଯେତେବେଳେ ଆପଣଙ୍କ ଆଙ୍ଗୁଠି ପୋଡ଼ିଦିଏ, ସେତେବେଳେ ଆପଣ କହନ୍ତି—"ଆଃ, ଏ ଅଗ୍ନି କେଡ଼େ ଜଘନ୍ୟ!" ଠିକ୍ ସେହିପରି ସମଯୁକ୍ତି କରି ମଧ୍ୟ କୁହାଯାଇପାରେ ଯେ, ଏ ବିଶ୍ୱ ଭଲ ନୁହେଁ କି ମନ୍ଦ ବି ନୁହେଁ; ଏ ସଂସାରଟି ସଂସାର ବ୍ୟତୀତ ଆଉ କିଛି ନୁହେଁ ଏବଂ ଏହା ଚିରକାଳ ତାହା ହିଁ ରହିବ। ଯେତେବେଳେ ଆମେ ନିଜକୁ ସଂସାର ନିକଟରେ ଏପରି ଖୋଲିଧରୁ ଯେ, ଜାଗତିକ କାର୍ଯ୍ୟାବଳୀ ଆମର ଅନୁକୂଳ ହୋଇଉଠେ, ସେତେବେଳେ ଆମେ ଏହାକୁ ଭଲ ବୋଲି କହୁ। ପୁଣି ଯଦି ଆମେ ନିଜକୁ ଏପରି ଅବସ୍ଥାରେ ଉପନୀତ କରୁ ଯେ ଏହା ଆମକୁ ଦୁଃଖ-ସାଗରରେ ଭସାଇଦିଏ, ତା'ହେଲେ ଆମେ ତାକୁ ମନ୍ଦ ବୋଲି କହୁ। ଠିକ୍ ଏହି ଭଳି ଆପଣମାନେ ସବୁବେଳେ ଦେଖିବେ—ନିର୍ଦ୍ଦୋଷ ଓ ଆନନ୍ଦମୟ ଶିଶୁଟିଏ, ଯାହା ମନରେ କାହାପ୍ରତି କୌଣସି ଅନିଷ୍ଟ ଚିନ୍ତା ଜାଗ୍ରତ ହୋଇ ନାହିଁ, ସେ କେବଳ ଆଶାବାଦୀ ହୋଇଥାଏ। ଏହିଭଳି ଶିଶୁମନା ବ୍ୟକ୍ତିମାନେ କେବଳ ସୁନାର ସ୍ୱପ୍ନ ଦେଖନ୍ତି। ଅନ୍ୟ ଦିଗରେ ଯେଉଁ ବୟସ୍କ ଲୋକଙ୍କର ଅନ୍ତର ବାସନାରେ ପରିପୂର୍ଣ୍ଣ ଅଥଚ ସେହି ବାସନାଗୁଡ଼ିକୁ ପୂର୍ଣ୍ଣ କରିବା ଲାଗି କୌଣସି ଉପାୟ ନାହିଁ—ବିଶେଷତଃ ଯେଉଁ ବ୍ୟକ୍ତିମାନେ ସଂସାରର ପ୍ରଚୁର ଘାତପ୍ରତିଘାତରେ ଆବର୍ତ୍ତିତ ହୋଇଛନ୍ତି, ସେମାନେ ସାଧାରଣତଃ ନୈରାଶ୍ୟବାଦୀ ହୋଇଥାଆନ୍ତି। ଧର୍ମ ସତ୍ୟକୁ ଜାଣିବାକୁ ଚାହେଁ ଏବଂ ପ୍ରଥମେ ଯେଉଁ ତତ୍ତ୍ୱ ସେ ଆବିଷ୍କାର କରିଛି ତାହା ହେଲା—ସତ୍ୟର ଅନୁଭୂତି ବ୍ୟତୀତ ବଞ୍ଚି ରହିବାର କୌଣସି ଅର୍ଥ ନାହିଁ।

ଆମେ ଯଦି ଲୋକାତୀତଙ୍କୁ ଜାଣି ନ ପାରିବୁ, ତା'ହେଲେ ଆମର ଜୀବନ ମରୁଭୂମିରେ ପରିଣତ ହୋଇଯିବ। ମାନବ-ଜନ୍ମ ବୃଥାରେ ବିତିଯିବ। "ବର୍ତ୍ତମାନର ବିଷୟବସ୍ତୁ ନେଇ ସନ୍ତୁଷ୍ଟ ରହ"—ଏହା କହିବା ସହଜ। ଗାଈ, କୁକୁର ଓ ଅନ୍ୟ ପଶୁଙ୍କ କ୍ଷେତ୍ରରେ ଏହିପରି ହେବା ସମ୍ଭବ ଏବଂ ଏହି ସନ୍ତୋଷ ହିଁ ସେମାନଙ୍କୁ ପଶୁ କରି ରଖିଛି। ସୁତରାଂ ମନୁଷ୍ୟ ଯଦି ବର୍ତ୍ତମାନ ନେଇ ସନ୍ତୁଷ୍ଟ ରହେ ଓ ଲୋକାତୀତଙ୍କ ଉଦ୍ଦେଶ୍ୟରେ ସମସ୍ତ ଅନୁସନ୍ଧାନ ପରିତ୍ୟାଗ କରେ, ତା' ହେଲେ ମନୁଷ୍ୟକୁ ପୁନରାୟ ପଶୁଭୂମିର ସ୍ତରକୁ ଫେରିଯିବାକୁ ହେବ। ଏହି ଧର୍ମ, ଏହି ଲୋକାତୀତ ଲାଗି ଅନୁସନ୍ଧିତ୍ସା ହିଁ ମନୁଷ୍ୟ ଓ ପଶୁ ମଧ୍ୟରେ ପାର୍ଥକ୍ୟ ସୃଷ୍ଟି କରିଛି। ଏକଥା ବାରମ୍ବାର କୁହାଯାଇଛି ଯେ ମନୁଷ୍ୟ ହିଁ ଏକମାତ୍ର ଜୀବ, ଯେ ସ୍ୱଭାବତଃ ଊର୍ଦ୍ଧ୍ୱକୁ ଦୃଷ୍ଟିପାତ କରେ ଓ ଅନ୍ୟାନ୍ୟ ପ୍ରାଣୀ ସ୍ୱଭାବବଶତଃ ନିମ୍ନଦୃଷ୍ଟି। ଏହି ଯେଉଁ ଊର୍ଦ୍ଧ୍ୱଦୃଷ୍ଟି ଏବଂ ଊର୍ଦ୍ଧ୍ୱ-ଅଭିମୁଖରେ ଗତି ଓ ପୂର୍ଣ୍ଣତାଲାଭର ଆକୂତି—ଏହାକୁ ହିଁ ମୁକ୍ତି କୁହାଯାଏ ଏବଂ ଯେତେଶୀଘ୍ର ମନୁଷ୍ୟ ଊର୍ଦ୍ଧ୍ୱ ସ୍ତରାଭି-ମୁଖରେ ଚାଲିବାକୁ ଆରମ୍ଭ କରେ, ସେତେ ଶୀଘ୍ର ସେ ଏହିଭଳି ଧାରଣାରେ ଉପନୀତ ହୁଏ ଯେ, ମୁକ୍ତି କହିଲେ ସତ୍ୟକୁ ହିଁ ବୁଝାଏ। ତୁମ ପକେଟରେ କେତେ ଟଙ୍କା ଅଛି

କିମ୍ବା ତୁମେ କିଭଳି ପୋଷାକପରିଚ୍ଛଦ ପିନ୍ଧିଛ—କିମ୍ବା କେଉଁ ପ୍ରକାର ଘରେ ବାସ କରୁଛ—ତା' ଉପରେ ମୁକ୍ତି ନିର୍ଭର କରେ ନାହିଁ । ନିର୍ଭର କରେ ତୁମ ମସ୍ତିଷ୍କରେ କେତେ ପରିମାଣରେ ଅଧ୍ୟାତ୍ମ-ଚିନ୍ତା ରହିଛି, ତା'ଉପରେ । ଏହାରି ଫଳରେ ମନୁଷ୍ୟର ଉନ୍ନତି ହୁଏ । ଏହା ହିଁ ଜଡ଼ଜଗତ ଓ ବୁଦ୍ଧିଜଗତରେ ସବୁପ୍ରକାର ଉନ୍ନତିର ଉତ୍ସ । ଏହା ହିଁ ସେହି ମୌଳିକ ଆକୂତି, ସେହି ଉତ୍ସାହ, ଯାହା ମନୁଷ୍ୟମାନଙ୍କୁ ପ୍ରଗତି-ପଥରେ ପରିଚାଳିତ କରେ ।

ତା' ହେଲେ ମାନବଜୀବନର ଲକ୍ଷ୍ୟ କ'ଣ ? ସୁଖ ଓ ଇନ୍ଦ୍ରିୟଗ୍ରାହ୍ୟ ଭୋଗ କ'ଣ ତା'ହେଲେ ଲକ୍ଷ୍ୟ ? ପ୍ରାଚୀନ ଯୁଗରେ କୁହାଯାଉଥିଲା, ମନୁଷ୍ୟ ସ୍ୱର୍ଗକୁ ଯାଇ ତୂରୀ-ନିନାଦ କରିବ ଏବଂ ରାଜସିଂହାସନ ନିକଟରେ ବାସ କରିବ । ବର୍ତ୍ତମାନ ଯୁଗରେ ଦେଖୁଛୁ—ଏହି ଧାରଣାକୁ ଅତି ହୀନ ବୋଲି ମନେ କରାଯାଉଛି । ବର୍ତ୍ତମାନ ଯୁଗରେ ଏହି ଧାରଣା-ଟିର ଉତ୍କର୍ଷ ସାଧନ କରାହୋଇଛି ଏବଂ କୁହାଯାଉଛି—ସ୍ୱର୍ଗରେ ସମସ୍ତେ ବିବାହ କରି-ପାରିବେ ଏବଂ ଏହି ଜାତୀୟ ସବୁ କିଛି ସେଠାରେ ପାଇବେ । ଏ ଦୁଇଟି ଧାରଣା ମଧ୍ୟରେ ଯଦି କୌଣସିଟିର ଅଗ୍ରଗତି ହୋଇଥାଏ, ତା'ହେଲେ ମନ୍ଦ ଦିଗରେ ହିଁ ଦ୍ୱିତୀୟଟିର ଅଗ୍ରଗତି ହୋଇଛି । ସ୍ୱର୍ଗ ସମ୍ପର୍କରେ ଏହି ଯେଉଁସବୁ ଧାରଣା ଉପସ୍ଥାପିତ କରାଗଲା, ତାହା ମନର ଦୁର୍ବଳତାର ହିଁ ପରିଚାୟକ ଏବଂ ଏହି ଦୁର୍ବଳତାର କାରଣ ପ୍ରଥମତଃ ମନୁଷ୍ୟ ମନେକରେ, ଇନ୍ଦ୍ରିୟସୁଖ ହିଁ ଜୀବନର ଲକ୍ଷ୍ୟ । ଦ୍ୱିତୀୟତଃ ପଞ୍ଚେନ୍ଦ୍ରିୟର ଅତୀତ କୌଣସି ବସ୍ତୁର ଧାରଣା ସେ କରିପାରେ ନାହିଁ । ଏହି ମତବାଦୀମାନେ ପ୍ରୟୋଜନ-ବାଦୀଙ୍କ ଭଳି ଯୁକ୍ତିହୀନ । ତଥାପି ଏମାନେ ଅନ୍ତତଃପକ୍ଷେ ଆଧୁନିକ ନାସ୍ତିକ ପ୍ରୟୋଜନବାଦୀଙ୍କ ତୁଳନାରେ ଅନେକ ଭଲ । ପରିଶେଷରେ କହିବାକୁ ହେବ, ପ୍ରୟୋଜନବାଦୀଙ୍କର ଏହି ମତବାଦଟି ବାଳକୋଚିତ । ଆପଣଙ୍କର ଏ କଥା କହିବାର କି ଅଧିକାର ଅଛି ଯେ, "ଏହି ମୋର ବିଚାରର ମାପକାଠି ଏବଂ ସମଗ୍ର ବିଶ୍ୱକୁ ଏହି ବିଚାରର ମାପକାଠି ଅନୁଯାୟୀ ଚାଲିବାକୁ ହେବ ?" ଯେଉଁ ମାପକାଠିର ଶିକ୍ଷା ହେଲା—କେବଳ ଅନ୍ନ, ଅର୍ଥ ଓ ପୋଷାକରେ ଈଶ୍ୱର—ସେହି ମାପକାଠିଦ୍ୱାରା ସବୁ ସତ୍ୟକୁ ବିଚାର କରିବାକୁ ହେବ—ଏଭଳି କହିବା ପାଇଁ ଆପଣଙ୍କର କି ଅଧିକାର ଅଛି ?

ଧର୍ମ କୌଣସି ପ୍ରକାର ଖାଦ୍ୟ ବା ବାସସ୍ଥାନ ମଧ୍ୟରେ ସୀମାବଦ୍ଧ ନ ଥାଏ । ଆପଣମାନେ ପ୍ରାୟ ଏଭଳି ସମାଲୋଚନା ଶୁଣିଥିବେ ଯେ, "ଧର୍ମ ଭଲା ମଣିଷର କି ହିତ-ସାଧନ କରିପାରେ ? ଧର୍ମ କଅଣ ମଣିଷର ଦାରିଦ୍ର୍ୟ ଦୂର କରିପାରେ ? ପିନ୍ଧିବା ପାଇଁ ବସ୍ତ୍ର ଦେଇପାରେ ?" ଧରନ୍ତୁ, ଧର୍ମ ତାହା ପାରିବ ନାହିଁ । ତା'ହେଲେ ଏହାଦ୍ୱାରା କ'ଣ ଧର୍ମର ଅସତ୍ୟତା ପ୍ରମାଣିତ ହେବ ? ଧରନ୍ତୁ, ଜ୍ୟୋତିର୍ବିଦ୍ୟାସମ୍ବନ୍ଧୀୟ କୌଣସି ତତ୍ତ୍ୱ ବ୍ୟାଖ୍ୟା କରାଯାଉଛି । ଏହି ସମୟରେ ଆପଣମାନଙ୍କ ଭିତରୁ ଶିଶୁଟିଏ ଉଠି ପ୍ରଶ୍ନ କଲା—"ଏହି ତତ୍ତ୍ୱ କଅଣ କିଛି ଭଲ ଖାଇବା ଜିନିଷ ଉତ୍ପନ୍ନ କରିପାରିବ ?" ଆପଣ ହୁଏତ କହିବେ—"ନା, ପାରିବ ନାହିଁ ।" ଶିଶୁଟି ତା'ପରେ କହିବ—"ତା'ହେଲେ ଏସବୁ ତତ୍ତ୍ୱ

ନିରର୍ଥକ ।'' ଶିଶୁମାନେ ସାରା ବିଶ୍ୱକୁ ନିଜ ଦୃଷ୍ଟିକୋଣରୁ ଦେଖନ୍ତି । ସେମାନଙ୍କର ଦୃଷ୍ଟିକୋଣ ହେଲା ଭଲ ଖାଇବା ଜନିତ ସନ୍ଧାନ୍ତୀୟ ଦୃଷ୍ଟିକୋଣ ଏବଂ ଏ ସଂସାରରେ ଯେଉଁମାନେ ଶିଶୁବୁଦ୍ଧି, ସେମାନେ ମଧ୍ୟ ଏହିଭଳି କରିଥାନ୍ତି ।

ଊନବିଂଶ ଶତାବ୍ଦୀର ଶେଷଭାଗରେ ଏକଥା କହିବାକୁ ଦୁଃଖଲାଗେ ଯେ ପୃଥିବୀରେ ଆଜି ପର୍ଯ୍ୟନ୍ତ ଯେଉଁମାନଙ୍କୁ ଶ୍ରେଷ୍ଠ ପଣ୍ଡିତ, ସର୍ବାଧିକ ଯୁକ୍ତିବାଦୀ, ସର୍ବାପେକ୍ଷା ନ୍ୟାୟକୁଶଳ ଏବଂ ସର୍ବୋତ୍ତମ ମନୀଷାସମ୍ପନ୍ନ ବୋଲି ଆମେମାନେ ଜାଣୁ, ସେମାନେ ସମସ୍ତେ ଏହି ଶିଶୁମାନଙ୍କ ମଧ୍ୟରେ ପରିଗଣିତ ହେବେ । ଉଚ୍ଚତତ୍ତ୍ୱଗୁଡ଼ିକୁ ଆମର ଏହି ହୀନ ଦୃଷ୍ଟିକୋଣରୁ ବିଚାର କରିବା ସଙ୍ଗତ ନୁହେଁ । ପ୍ରତ୍ୟେକ ବସ୍ତୁକୁ ତା'ର ନିଜସ୍ୱ ମାପକାଠି ଦେଇ ବିଚାର କରିବାକୁ ହେବ । ଅସୀମକୁ ଅସୀମର ମାନ ଅନୁସାରେ ହିଁ ପରୀକ୍ଷା କରିବାକୁ ହେବ—ଅନନ୍ତର ଦୃଷ୍ଟିକୋଣରୁ ହିଁ ଦେଖିବାକୁ ହେବ । ଧର୍ମ ହେଲା ମନୁଷ୍ୟର ସମଗ୍ର ଜୀବନ । କେବଳ ବର୍ତ୍ତମାନ ନୁହେଁ; ଅତୀତ, ବର୍ତ୍ତମାନ, ଭବିଷ୍ୟତ—ସବୁକାଳର ଜୀବନଧାରାକୁ ଧର୍ମ ପରିବ୍ୟାପ୍ତ କରି ରଖିଛି । ଅତଏବ ଧର୍ମ ହେଲା—ସନାତନ ଆତ୍ମା ସହିତ ସନାତନ ଈଶ୍ୱରଙ୍କର ଶାଶ୍ୱତ ସମ୍ପର୍କ । ପାଞ୍ଚମିନିଟର ମାନବ-ଜୀବନ ଉପରେ ଏହା କି ପ୍ରକାର ପ୍ରଭାବ ବିସ୍ତାର କଲା, ସେତିକି ଦେଖି ତା'ର ମୂଲ୍ୟ ନିର୍ଦ୍ଧାରଣ କରିବା କ'ଣ ନ୍ୟାୟସଙ୍ଗତ ହୋଇପାରେ ? କେବେ ନୁହେଁ । ଏଗୁଡ଼ିକ ସବୁ ହେଲା ନେତିବାଚକ ଯୁକ୍ତି ।

ବର୍ତ୍ତମାନ ପ୍ରଶ୍ନ ଉଠୁଛି—ଧର୍ମ କ'ଣ ମନୁଷ୍ୟ ପାଇଁ ସତକୁ ସତ କିଛି କରିପାରେ ? ପାରେ ନିଶ୍ଚୟ । ଧର୍ମ କଅଣ ସତକୁ ସତ ମନୁଷ୍ୟ ପାଇଁ ଅନ୍ନବସ୍ତ୍ରର ବ୍ୟବସ୍ଥା କରିପାରେ ? ଅବଶ୍ୟ କରିପାରେ । ତାହା ହିଁ ହେଲା ସବୁବେଳେ ଧର୍ମର କାମ । କିନ୍ତୁ ଧର୍ମ ଏତିକି ଅପେକ୍ଷା ଆହୁରି ବହୁତ କିଛି ମଧ୍ୟ କରିପାରେ । ଏହା ମନୁଷ୍ୟକୁ ଅନନ୍ତ ମହାଜୀବନ ଦେଇପାରେ । ଧର୍ମ ହିଁ ମନୁଷ୍ୟକୁ ମନୁଷ୍ୟ କରି ଗଢ଼ିଛି ଏବଂ କ୍ରମଶଃ ଦିନେ ଏହି ପଶୁମଣିଷକୁ ଦେବତ୍ୱରେ ଉନ୍ନୀତ କରିବ । ଏହା ହିଁ ହେଲା ଧର୍ମର ଫଳ । ମନୁଷ୍ୟ-ସମାଜ ଭିତରୁ ଧର୍ମକୁ ବାଦ ଦେଇ ଦେଖନ୍ତୁ—ଅବଶିଷ୍ଟ ଭଲ ଆଉ କଅଣ ରହିବ ? ଶେଷରେ ଦେଖାଯିବ ବର୍ବରମାନଙ୍କ ଦ୍ୱାରା ପରିପୂର୍ଣ୍ଣ ଗୋଟିଏ ଅରଣ୍ୟ—ଆଉ କିଛି ନାହିଁ । ଯେହେତୁ,ବର୍ତ୍ତମାନ ମୁଁ ଆପଣମାନଙ୍କ ନିକଟରେ ପ୍ରମାଣ କରିବାକୁ ଚେଷ୍ଟା କଲି ଯେ, ଇନ୍ଦ୍ରିୟସୁଖକୁ ମାନବ-ଜୀବନର ଲକ୍ଷ୍ୟ ମନେକରିବା ଅସମ୍ଭବ, ସେହେତୁ ଆମେମାନେ ଏହି ସିଦ୍ଧାନ୍ତରେ ପହଞ୍ଚିଲୁ ଯେ, ଜ୍ଞାନ ହିଁ ମାନବଜୀବନର ଉଦ୍ଦେଶ୍ୟ । ମୁଁ ଆପଣମାନଙ୍କୁ ଏକଥା ମଧ୍ୟ ବୁଝେଇବାକୁ ପ୍ରୟାସ କରିଛି ଯେ, ଏହି ହଜାର ବର୍ଷ ଧରି ସତ୍ୟାନୁସନ୍ଧାନ ପାଇଁ ଏବଂ ମାନବକଲ୍ୟାଣ ପାଇଁ କଠୋର ପ୍ରଚେଷ୍ଟା ସତ୍ତ୍ୱେ ଆମେମାନେ ଉଲ୍ଲେଖ-ଯୋଗ୍ୟ ଉନ୍ନତି ଖୁବ୍ ଅଳ୍ପ ମାତ୍ରାରେ ହିଁ କରିପାରିଛୁ । କିନ୍ତୁ ମନୁଷ୍ୟ ଜ୍ଞାନ ଅଭିମୁଖରେ ବହୁଦୂର ଅଗ୍ରସର ହୋଇଛି । ଜୈବ-ଭୋଗର ବ୍ୟବସ୍ଥା କରିଦେବାଟାକୁ ଧର୍ମର ଶ୍ରେଷ୍ଠ ଉପଯୋଗିତା ବୋଲି କହିବା ଅନୁଚିତ । ଏହାର ବରଂ ଶ୍ରେଷ୍ଠ ଅବଦାନ ହେଲା—ପଶୁ-ମାନବକୁ ଦେବମାନବରେ ପରିଣତ କରିବା । ଅତଃପର ଜ୍ଞାନଲାଭ ହେଲେ ଏଥିରୁ ସ୍ୱଭାବତଃ ହିଁ ପରମାନନ୍ଦ

ଆବିର୍ଭୂତ ହୁଅନ୍ତି ।

ଶିଶୁମାନେ ମନେ କରନ୍ତି, ସବୁ ସୁଖ ଭିତରେ ଇନ୍ଦ୍ରିୟସୁଖ ହିଁ ହେଲା ସର୍ବଶ୍ରେଷ୍ଠ । ଆପଣମାନେ ପ୍ରାୟ ସମସ୍ତେ ଜାଣନ୍ତି ଯେ ମନୁଷ୍ୟ-ଜୀବନରେ ଇନ୍ଦ୍ରିୟ-ସମ୍ଭୋଗ ଅପେକ୍ଷା ବୁଦ୍ଧିଜସମ୍ଭୋଗ ଅଧିକତର ତୃପ୍ତିପ୍ରଦ । ଗୋଟିଏ କୁକୁର ଖାଇଲା ବେଳେ ଯେଉଁ ଆନନ୍ଦ ପାଏ, ଆପଣମାନେ କେହି ସେପରି ଆନନ୍ଦ ପାଇପାରିବେ ନାହିଁ । ଆପଣମାନେ ସମସ୍ତେ ଏହା ବିଶେଷଭାବେ ଲକ୍ଷ୍ୟ କରିଥିବେ । ମଣିଷ ଭିତରେ କେଉଁଥିରୁ ଭଲ ତୃପ୍ତିବୋଧ ଜାଗ୍ରତ ହୋଇଥାଏ ? ଆହାର ମଧ୍ୟରୁ କୁକୁର ବା ଘୁଷୁରି ଯେଉଁ ଆନନ୍ଦ ପାଆନ୍ତି, ମୁଁ ସେ ପ୍ରକାର ଆନନ୍ଦର କଥା କହୁ ନାହିଁ । ଲକ୍ଷ୍ୟ କରନ୍ତୁ—ଘୁଷୁରିଟିଏ କି ଭାବରେ ଆହାର କରେ । ସେ ଯେତେବେଳେ ଖାଏ, ସେତେବେଳେ ସେ ସମଗ୍ର ବିଶ୍ୱକୁ ଭୁଲି ଯାଇଥାଏ । ତା'ର ସମଗ୍ର ମନ ଏହି ଆହାର ଭିତରେ ବୁଡ଼ିଯାଇ ଥାଏ । ଆହାର କଲାବେଳେ ତାକୁ ହତ୍ୟା କଲେ ମଧ୍ୟ ସେ ଗ୍ରାହ୍ୟ କରିବ ନାହିଁ । ଭାବି ଦେଖନ୍ତୁ—ଏହି ସମୟରେ ଘୁଷୁରିଟିର ଆନନ୍ଦ-ସମ୍ଭୋଗ କେତେ ତୀବ୍ର ! କୌଣସି ମଣିଷର ଏହି ତୀବ୍ର ସମ୍ଭୋଗାନୁଭୂତି ନାହିଁ । ମନୁଷ୍ୟର ସେ ଅନୁଭୂତି କୁଆଡ଼େ ଗଲା ? ମଣିଷ ଏହାକୁ ବୁଦ୍ଧିଜଭୋଗରେ ପରିଣତ କରିପାରିଛି । ଗୋଟିଏ ଶୂକର କଅଣ ଧର୍ମସମ୍ବନ୍ଧୀୟ ବକ୍ତୃତା ଉପଭୋଗ କରିପାରିବ ? ବୁଦ୍ଧି ସାହାଯ୍ୟରେ ଉପଭୋଗ ଅପେକ୍ଷା ଏହା ଉଚ୍ଚତର ଓ ଶ୍ରାବ୍ୟତର ସ୍ତରରେ ଘଟିଥାଏ । ଏହା ହିଁ ହେଲା ଆଧ୍ୟାତ୍ମିକ ସ୍ତର । ଏହା ହିଁ ଐଶୀବସ୍ତୁର ଆତ୍ମିକ ସମ୍ଭୋଗ, ଏହା ବୁଦ୍ଧି ଓ ଯୁକ୍ତିର ଊର୍ଦ୍ଧ୍ୱରେ ଅବସ୍ଥିତ । ଏହା ଲାଭ କରିବାକୁ ହେଲେ ଆମକୁ ଏହିସବୁ ଇନ୍ଦ୍ରିୟସୁଖ ପରିତ୍ୟାଗ କରିବାକୁ ହେବ । ଜୀବନରେ ଏହାର ହିଁ ସର୍ବଶ୍ରେଷ୍ଠ ଉପଯୋଗିତା ରହିଛି । ଉପଯୋଗିତାର ଅର୍ଥ ହେଲା—ଯାହା ମୁଁ ଉପଭୋଗ କରିପାରିବି, ଅନ୍ୟମାନେ ମଧ୍ୟ ଉପଭୋଗ କରିପାରିବେ ଏବଂ ଏହି ଦିଗରେ ହିଁ ଆମେ ସମସ୍ତେ ଧାବମାନ । ଆମେମାନେ ଦେଖିବାକୁ ପାଉଛୁ, ପଶୁମାନଙ୍କ ଇନ୍ଦ୍ରିୟସୁଖ ଅପେକ୍ଷା ମନୁଷ୍ୟ ନିଜ ବୁଦ୍ଧିମତ୍ତାରୁ ଅଧିକତର ଆନନ୍ଦ ଉପଭୋଗ କରିଥାଏ ଏବଂ ଏ କଥା ମଧ୍ୟ ଆମେ ଦେଖୁ ଯେ, ମନୁଷ୍ୟ ତା'ର ବୁଦ୍ଧିମତ୍ତା ଅପେକ୍ଷା ଆଧ୍ୟାତ୍ମିକ ସ୍ୱରୂପରୁ ଅଧିକତର ଆନନ୍ଦଲାଭ କରିଥାଏ । ଅତଏବ ଏହି ଆଧ୍ୟାତ୍ମିକ ଅନୁଭୂତି ହେଲା ସର୍ବଶ୍ରେଷ୍ଠ ଜ୍ଞାନ । ଏହି ଅନୁଭୂତି ସହିତ ଆନନ୍ଦଲାଭ ମଧ୍ୟ ହୋଇଥାଏ । ଏହି ଜଗତ୍—ଏହି ଯେଉଁସବୁ ଦୃଶ୍ୟମାନ ବସ୍ତୁ—ଏସବୁ ତ ସେହି ପ୍ରକୃତ ସତ୍ୟ ଏବଂ ଆନନ୍ଦର ଛାୟାମାତ୍ର—ଏହାର ତୃତୀୟ ବା ଚତୁର୍ଥ ସ୍ତରର ନିମ୍ନତର ବିକାଶ ମାତ୍ର ।

ମାନବୀୟ ପ୍ରେମ ଭିତର ଦେଇ ସେହି ପରମାନନ୍ଦ ହିଁ ତୁମମାନଙ୍କ ନିକଟକୁ ଆସନ୍ତି । ମାନବୀୟ ପ୍ରେମ ହେଉଛି ଏହି ଅଧ୍ୟାତ୍ମିକ ଆନନ୍ଦର ହିଁ ଛାୟା । କିନ୍ତୁ ମାନବୀୟ ଆନନ୍ଦ ସହିତ ଏହାକୁ ଏକ ବୋଲି ଭାବିବା ଉଚିତ ନୁହେଁ । ଏ ଗୋଟିଏ ବଡ଼ ଧରଣର ଭୁଲ ସବୁବେଳେ ଘଟିଥାଏ । ଆମେମାନେ ପ୍ରତମୁହୂର୍ତ୍ତିରେ ଆମର ଏହି ଦୈହିକ ପ୍ରେମ, ଏହି ମାନବୀୟ ଅନୁରାଗ, ଏହି ତୁଚ୍ଛ ସସୀମ ପ୍ରତି ଆକର୍ଷଣ, ସମାଜର ଅନ୍ତର୍ଗତ ଅପରାପର

ମନୁଷ୍ୟ ପ୍ରତି ଏହି ବିଦ୍ୟୁତ୍ ସଦୃଶ ଆକର୍ଷଣକୁ ସର୍ବଦା ପରମାନନ୍ଦ ବୋଲି ମନେକରି ଭୁଲ କରିଥାଉ । ଆମେମାନେ ଏହାକୁ ହିଁ ସେହି ଶାଶ୍ୱତ ବସ୍ତୁ ବୋଲି ଅଭିହିତ କରିଥାଉ, କିନ୍ତୁ ପ୍ରକୃତରେ ଏହା ସେହି ବସ୍ତୁ ନୁହେଁ । ଏହାର କୌଣସି ସଠିକ ସମାର୍ଥକ ଶବ୍ଦ ଇଂରାଜୀ ଭାଷାରେ ନ ଥିବା ହେତୁ ମୁଁ ଏହାକୁ bliss (ବ୍ଲିସ୍) ବା ପରମାନନ୍ଦ ବୋଲି କହିବି । ଏହି ପରମାନନ୍ଦ ଶାଶ୍ୱତ ଜ୍ଞାନସହ ଅଭିନ୍ନ ଏବଂ ଏହା ହିଁ ଆମର ଲକ୍ଷ୍ୟ । ବିଶ୍ୱର ଯେଉଁଠାରେ ଯେତେ ଧର୍ମ ଅଛି ବା ଭବିଷ୍ୟତରେ ମଧ୍ୟ ଆସିପାରେ, ସମସ୍ତେ ବିଭିନ୍ନ ଦେଶରେ ବିଭିନ୍ନ ନାମରେ ପରିଚିତ—ଏହି ଗୋଟିଏ ଉତ୍ସରୁ ଉଦ୍ଭୂତ ହୋଇଛନ୍ତି ଓ ହେବେ । ଏହି ପାଶ୍ଚାତ୍ୟ ଦେଶରେ, ତୁମେମାନେ ଯାହାକୁ ଦିବ୍ୟପ୍ରେରଣା ବୋଲି କୁହ, ତାହା ମଧ୍ୟ ଏହି ଉତ୍ସ ବ୍ୟତୀତ ଆଉ କିଛି ନୁହଁ । ଏହି ପ୍ରେରଣାର ସ୍ୱରୂପ କଅଣ ? ପ୍ରେରଣା ହିଁ ଧର୍ମାନୁଭୂତିର ଏକମାତ୍ର ଉତ୍ସ । ଆମେ ଜାଣୁ—ଧର୍ମ ହେଉଛି ଅତୀନ୍ଦ୍ରିୟ ସ୍ତରର ବସ୍ତୁ । "ଧର୍ମ ହେଉଛି ସେହି ବସ୍ତୁ—ଯେଉଁଠାକୁ ଚକ୍ଷୁ ବା କର୍ଣ୍ଣ ଯାଇପାରେ ନାହିଁ—ମନ ମଧ୍ୟ ଯାଇ ପହଞ୍ଚିପାରେ ନାହିଁ, ବାକ୍ୟ ଯାହାକୁ ପ୍ରକାଶ କରିପାରେ ନାହିଁ ।" ଏହା ହିଁ ଧର୍ମର କ୍ଷେତ୍ର ଏବଂ ଲକ୍ଷ୍ୟ; ଆମେ ଯାହାକୁ ପ୍ରେରଣା ନାମରେ ଅଭିହିତ କରୁଛୁ ତା' ମଧ୍ୟ ଏହିଠାରୁ ଉଦ୍‌ଗତ ହୁଏ । ଅତଏବ, ସ୍ୱଭାବତଃ ହିଁ ଆମେ ଏହି ସିଦ୍ଧାନ୍ତରେ ଉପନୀତ ହେଉ ଯେ, ଏହି ଇନ୍ଦ୍ରିୟାତୀତ ଲୋକରେ ପହଞ୍ଚିବାର କୌଣସି ନା କୌଣସି ପଥ ଅବଶ୍ୟ ରହିଛି । ଏହା ଅବଶ୍ୟ ସମ୍ପୂର୍ଣ୍ଣ ସତ କଥା ଯେ, ଯୁକ୍ତି ଇନ୍ଦ୍ରିୟସମୂହକୁ ଅତିକ୍ରମ କରିପାରେ ନାହିଁ । ସମସ୍ତ ଯୁକ୍ତି ଇନ୍ଦ୍ରିୟ-ପରିଧି ଭିତରେ—ଇନ୍ଦ୍ରିୟ ବିଷୟ ମଧ୍ୟରେ ସୀମାବଦ୍ଧ; ଇନ୍ଦ୍ରିୟ-ଗୁଡ଼ିକ ଯେଉଁସବୁ ତଥ୍ୟରେ ଉପସ୍ଥିତ ହୋଇପାରିବେ, ଯୁକ୍ତି କେବଳ ତାହାର ଭିତ୍ତିରେ ଗଠିତ ହୋଇଥାଏ । କୌଣସି ମନୁଷ୍ୟ ଇନ୍ଦ୍ରିୟର ସୀମା ଅତିକ୍ରମ କରିପାରେ କି ? କୌଣସି ମନୁଷ୍ୟ କଅଣ ଏହି ଅଜ୍ଞେୟକୁ ଜାଣିପାରେ ? ଏହି ଗୋଟିଏ ପ୍ରଶ୍ନର ଭିତ୍ତିରେ ହିଁ ଧର୍ମସମ୍ବନ୍ଧୀୟ ସକଳ ପ୍ରଶ୍ନର ସମାଧାନ କରିବାକୁ ହେବ । ଏହା ପୂର୍ବରୁ ତାହା ହିଁ କରି-ଯାଇଛି । ସ୍ମରଣାତୀତ କାଳରୁ ଶତ-ସହସ୍ର ନରନାରୀ ଏହି ପ୍ରାଚୀର ଭେଦ କରିବା ନିମିତ୍ତ ସଂଗ୍ରାମ କରି ଆସିଛନ୍ତି । ଲକ୍ଷ ଲକ୍ଷ ମନୁଷ୍ୟ ଅକୃତକାର୍ଯ୍ୟ ହୋଇଛନ୍ତି । ଅପର ଦିଗରେ ଲକ୍ଷ ଲକ୍ଷ ମନୁଷ୍ୟ କୃତକାର୍ଯ୍ୟ ମଧ୍ୟ ହୋଇଛନ୍ତି । ଏହା ହିଁ ହେଲା ଏ ଜଗତର ଇତିହାସ । ଏଣେ ପୁଣି ଆହୁରି ଲକ୍ଷ ଲକ୍ଷ ମନୁଷ୍ୟ ଅଛନ୍ତି, ଯେଉଁମାନେ ଏ ସମ୍ବନ୍ଧରେ ପ୍ରକୃତରେ କେହି କେହି କୃତକାର୍ଯ୍ୟ ହୋଇଛନ୍ତି ବୋଲି ବିଶ୍ୱାସ କରନ୍ତି ନାହିଁ । ଏହିମାନେ ହିଁ ପୃଥିବୀର ଆଧୁନିକ ସନ୍ଦେହବାଦୀ (Sceptics) । କିନ୍ତୁ ମନୁଷ୍ୟ ଚେଷ୍ଟା କଲେ ଏହି ପ୍ରାଚୀର ଅତିକ୍ରମ କରିପାରେ । ମଣିଷ ଭିତରେ କେବଳମାତ୍ର ଯେ ଯୁକ୍ତି ରହିଛି ତାହା ନୁହେଁ, କେବଳମାତ୍ର ଇନ୍ଦ୍ରିୟସମୂହ ଯେ ରହିଛି, ତାହା ମଧ୍ୟ ନୁହେଁ—ତା' ଭିତରେ ଆହୁରି ଅନେକ କିଛି ରହିଛି, ଯାହାସବୁ ତା'ର ଇନ୍ଦ୍ରିୟର ଅତୀତ । ଆମେ ଏକଥା ଟିକିଏ ବ୍ୟାଖ୍ୟା କରିବାକୁ ଚେଷ୍ଟା କରିବା । ମୋର ଆଶା, ତୁମେମାନେ ତା'ହେଲେ ବୁଝିପାରିବ ଯେ, ସେ ଶକ୍ତି ତୁମମାନଙ୍କ ଭିତରେ ମଧ୍ୟ ରହିଛି ।

ମୁଁ ଯେତେବେଳେ ମୋର ହସ୍ତ ସଞ୍ଚାଳନ କରେ ସେତେବେଳେ ଅନୁଭବ କରେ ଏବଂ ଜାଣିବାକୁ ପାଏ ଯେ ମୁଁ ହସ୍ତ ସଞ୍ଚାଳନ କରୁଛି । ଏହାକୁ ଆମେମାନେ ଚେତନା ବୋଲି କହୁ । ମୁଁ ଏ ବିଷୟରେ ସଚେତନ ଯେ ମୁଁ ମୋର ହସ୍ତ ସଞ୍ଚାଳନ କରୁଛି । ମୋର ହୃତ୍ପିଣ୍ଡ ମଧ୍ୟ ସ୍ପନ୍ଦିତ ହେଉଛି; କିନ୍ତୁ ସେ ସମ୍ବନ୍ଧରେ ମୁଁ ସଚେତନ ନୁହେଁ । କିନ୍ତୁ କିଏ ମୋର ହୃତ୍ପିଣ୍ଡ ସଞ୍ଚାଳନ କରୁଛି ? ଏହା ମଧ୍ୟ ସେହି ଗୋଟିଏ ସତ୍ତା ହେବ । ସୁତରାଂ ଆମେ ଦେଖିଲୁ ଯେ, ଯେଉଁ ସତ୍ତା ହସ୍ତସଞ୍ଚାଳନ-କ୍ରିୟା ସଂଘଟନ କରୁଛି, ବାକ୍ୟସ୍ଫୁରଣ କରାଉଅଛି, ଅର୍ଥାତ୍ ସଚେତନ କର୍ମ ସମ୍ପନ୍ନ କରୁଅଛି, ତାହା ମଧ୍ୟ ଅଚେତନ କର୍ମଗୁଡ଼ିକୁ ସଂପାଦନ କରାଉଛି । ଅତଏବ ଆମେ ଦେଖିଲୁ—ଏହି ସତ୍ତା ଉଭୟ ସ୍ତରରେ ହିଁ କାର୍ଯ୍ୟ କରିପାରେ । ଗୋଟିଏ ହେଲା ଚେତନାର ସ୍ତର ଏବଂ ଅନ୍ୟଟି ତା'ର ନିମ୍ନବର୍ତ୍ତୀ ସ୍ତର । ଅବଚେତନ ସ୍ତରରୁ ଯେଉଁସବୁ ସଂଘଳନ ଘଟେ, ସେଗୁଡ଼ିକୁ ଆମେ ସହଜାତ ବୃତ୍ତି ନାମରେ ଅଭିହିତ କରୁ ଏବଂ ଯେତେବେଳେ ସେହି ସଂଘଳନ ଚେତନାର ସ୍ତରରୁ ଘଟିଥାଏ, ଆମେ ତାକୁ ଯୁକ୍ତି ବୋଲି କହୁ । କିନ୍ତୁ ଆଉ ଗୋଟିଏ ଉଚ୍ଚତର ସ୍ତର ରହିଛି — ତାହା ହେଲା ମଣିଷର ଅତିଚେତନ ସ୍ତର । ଏହା ଆପାତତଃ ଅଚେତନ ଅବସ୍ଥାସଦୃଶ । କାରଣ ଏହା ଚେତନ ସ୍ତରର ଅତୀତ । ବସ୍ତୁତଃ ଏହା ଚେତନାର ଊର୍ଦ୍ଧ୍ୱରେ ଅବସ୍ଥିତ, ନିମ୍ନରେ ନୁହେଁ । ଏହା ସହଜତ ବୃତ୍ତି ନୁହେଁ ଏହା 'ଦିବ୍ୟ ପ୍ରେରଣା' । ଏହା ସପକ୍ଷରେ ପ୍ରମାଣ ରହିଛି । ସମଗ୍ର ଜଗତରେ ଯେଉଁସବୁ ଅବତାର ପୁରୁଷ ଓ ସାଧକ ଜନ୍ମଗ୍ରହଣ କରିଛନ୍ତି—ସେମାନଙ୍କ କଥା ସ୍ମରଣ କରନ୍ତୁ । ଏକଥା ସମସ୍ତେ ଜାଣନ୍ତି ଯେ, ସେମାନଙ୍କ ଜୀବନରେ ଏପରି ସବୁ ମୁହୂର୍ତ୍ତ ଆସିଛି, ଯେତେବେଳେ ଆପାତଃଦୃଷ୍ଟିରେ ସେମାନଙ୍କୁ ବାହ୍ୟ ଜଗତ ସମ୍ପର୍କରେ ଅଚେତନ ବୋଲି ମନେହୁଏ । ମାତ୍ର ସେହିମାନଙ୍କ ଭିତର ଦେଇ ଯେଉଁସବୁ ଜ୍ଞାନରାଶି ଉତ୍ସାରିତ ହୋଇଛି—ସେ ସମ୍ବନ୍ଧରେ ସେମାନେ କହନ୍ତି, ଏସବୁ ସେମାନେ ଅତିଚେତନ ସ୍ତରରୁ ଲାଭ କରିଛନ୍ତି । ସକ୍ରେଟିସ୍‌ଙ୍କ ସମ୍ବନ୍ଧରେ କଥିତ ଅଛି—ସେ ଥରେ ଯେତେବେଳେ ଦଳେ ସୈନିକଙ୍କ ସଙ୍ଗେ ଯାତ୍ରା କରୁଥିଲେ, ସେତେବେଳେ ଅତି ସୁନ୍ଦର ସୂର୍ଯ୍ୟୋଦୟ ହୋଇଥିଲା । ସେହି ଦୃଶ୍ୟ ଦେଖି ତାଙ୍କ ମନରେ ଏକ ଅଦ୍‌ଭୁତ ପ୍ରକାର ଚିନ୍ତାପ୍ରବାହ ବହିବାକୁ ଲାଗିଲା । ତାହା ଫଳରେ ସେ ସେହି ସ୍ଥାନରେ ଏକାଦିକ୍ରମେ ଦୁଇଦିନ ଠିଆ ହୋଇ ରହିଲେ ଏବଂ ସେହି ସମୟତକ ତାଙ୍କର କୌଣସି ବାହ୍ୟଜ୍ଞାନ ନ ଥିଲା । ଏହି ମୁହୂର୍ତ୍ତଗୁଡ଼ିକ ହିଁ ଜଗତକୁ ସକ୍ରେଟିସୀୟ ଜ୍ଞାନ ପ୍ରଦାନ କରିଛି । ଏହିରୂପେ ଜଗତର ଯାବତୀୟ ଅବତାର ଓ ସାଧକ ପୁରୁଷଙ୍କ ଜୀବନରେ ଏଭଳି ସବୁ ମୁହୂର୍ତ୍ତ ଆସେ, ଯେତେବେଳେ ସେମାନେ ଏହି ଆମର ସାଧାରଣ ଚେତନ ସ୍ତରରୁ ଊର୍ଦ୍ଧ୍ୱ ସ୍ତରକୁ ଉଠିଯାଆନ୍ତି ଏବଂ ଯେତେବେଳେ ସେମାନେ ପୁନର୍ବାର ଆମର ଏହି ସାଧାରଣ ଚେତନ ସ୍ତରକୁ ଓହ୍ଲାଇ ଆସନ୍ତି, ସେତେବେଳେ ସେମାନେ ଜ୍ଞାନଜ୍ୟୋତିରେ ଉଜ୍ଜ୍ୱଳ ହୋଇ ଉଠିଥାଆନ୍ତି ଏବଂ ସେହି ଅବାଙ୍ମନସ ଲୋକର ସମ୍ବାଦ ପ୍ରଦାନ କରନ୍ତି । ଏହିମାନେ ହିଁ ଜଗତର ଦିବ୍ୟଶକ୍ତିସମ୍ପନ୍ନ ଋଷି ।

କିନ୍ତୁ ଏହିଠାରେ ରହିଛି ଗୋଟିଏ ବଡ଼ ବିପଦ । ଅନେକେ ଦାବି କରିପାରନ୍ତି ଯେ, ସେମାନେ ମଧ୍ୟ ଦିବ୍ୟଭାବରେ ଅନୁପ୍ରାଣିତ । ବହୁ ସମୟରେ ଏଭଳି ଦାବି ମଧ୍ୟ ଶୁଣାଯାଏ । ଏ ସମ୍ବନ୍ଧରେ ପରୀକ୍ଷାର ଉପାୟ କ'ଣ ? ନିଦ୍ରାବେଳେ ଆମେ ଅଚେତନ ଥାଉ । ଧରନ୍ତୁ, ଜଣେ ମୂର୍ଖ ନିଦ୍ରାମଗ୍ନ ହେଲା । ତିନଘଣ୍ଟା ତାକୁ ସୁନିଦ୍ରା ହେଲା । ଯେତେବେଳେ ତା'ର ନିଦ୍ରାବସ୍ଥା କଟିଗଲା, ସେତେବେଳେ ମଧ୍ୟ ଜଣାଗଲା ଯେ ଶୋଇବା ପୂର୍ବରୁ ସେ ଯେପରି ବୋକା ଥିଲା ବର୍ତ୍ତମାନ ମଧ୍ୟ ସେପରି ବୋକା ଅଛି । ଅନ୍ୟପକ୍ଷରେ ନାଜାରେଥ୍‌ର ଯୀଶୁ ଦିବ୍ୟଭାବରେ ଆରୂଢ଼ ହେଲେ । ସେ ଯେତେବେଳେ ସେ ଅବସ୍ଥାରୁ ପୁଣି ଫେରିଲେ ସେତେବେଳେ ଦେଖାଗଲା, ସେ ଯୀଶୁଖ୍ରୀଷ୍ଟରେ ପରିଣତ ହୋଇଛନ୍ତି । ଏହିଠାରେ ଏତିକି ପ୍ରଭେଦ ଜଣାଗଲା—ଗୋଟିଏ ହେଲା ଦିବ୍ୟ ପ୍ରେରଣା, ଅନ୍ୟଟି ହେଲା ସହଜାତ ପ୍ରବୃତ୍ତି । ଜଣେ ଶିଶୁ—ଅନ୍ୟ ଜଣକ ପ୍ରବୀଣ ଅଭିଜ୍ଞ ବ୍ୟକ୍ତି । ଏହି ଦିବ୍ୟ ପ୍ରେରଣା ଆମେ ଯେ କେହି ଲାଭ କରିପାରୁ । ଏହା ଯାବତୀୟ ଧର୍ମର ଉତ୍ପତ୍ତିସ୍ଥଳ ଓ ଚିରକାଳ ଧରି ଏହା ଉଚ୍ଚତର ଜ୍ଞାନର ଉତ୍ସ ହୋଇ ରହିବ । ତଥାପି ଏ ପଥରେ ବହୁ ବିପଦର ସମ୍ଭାବନା । ଅନେକ ସମୟରେ ଭଣ୍ଡ ବ୍ୟକ୍ତି ଜନମାନଙ୍କୁ ପ୍ରତାରିତ କରିବାକୁ ଚାହାନ୍ତି । ବର୍ତ୍ତମାନ ଯୁଗରେ ଏମାନଙ୍କର ପୁଣି ବହୁତ ପ୍ରାଦୁର୍ଭାବ ଦେଖାଯାଉଛି । ମୋର ଜଣେ ବନ୍ଧୁଙ୍କର ଖଣ୍ଡିଏ ଚମତ୍କାର ଚିତ୍ରପଟ ଥିଲା । ଜଣେ ଧନୀ ଭଦ୍ରଲୋକ ଯେ କି କେତେକାଂଶରେ ଧର୍ମଭାବାପନ୍ନ ଥିଲେ, ତାଙ୍କର ଏହି ଚିତ୍ରପଟଟି ଉପରେ ଲୋଭ ହେଲା । କିନ୍ତୁ ମୋର ବନ୍ଧୁ ତାହା ବିକ୍ରି କରିବାକୁ ଅନିଚ୍ଛୁକ ଥିଲେ । ସେହି ଭଦ୍ରଲୋକ ଦିନେ ମୋର ବନ୍ଧୁଙ୍କ ପାଖରେ ଆସି କହିଲେ—"ମୁଁ ଦୈବ ପ୍ରେରଣା ଲାଭ କରିଛି ଏବଂ ଈଶ୍ୱରଙ୍କ କର୍ତ୍ତୃକ ପ୍ରତ୍ୟାଦିଷ୍ଟ ହୋଇ ଆସିଛି ।" ମୋର ବନ୍ଧୁ ପ୍ରଶ୍ନ କଲେ—"ଭଗବାନଙ୍କ ନିକଟରୁ ଆପଣ କି ଆଦେଶ ପାଇଛନ୍ତି ?" ଧନୀ ଭଦ୍ରଲୋକଟି କହିଲେ—"ତାଙ୍କର ଆଦେଶ ହେଲା, ଆପଣଙ୍କୁ ମୋତେ ଏହି ଚିତ୍ରଟି ଅର୍ପଣ କରିବାକୁ ହେବ ।" ମୋର ବନ୍ଧୁ ମଧ୍ୟ ଧୂର୍ତ୍ତତାରେ କିଛି କମ୍ ନୁହନ୍ତି । ସେ ତତ୍‌କ୍ଷଣାତ୍ ଉତ୍ତର ଦେଲେ—"ଠିକ୍ କଥା, କି ଚମତ୍କାର ! ମୋତେ ମଧ୍ୟ ସେପରି ଈଶ୍ୱରଙ୍କ ଆଦେଶ ମିଳିଛି ଯେ ମୋତେ ଆପଣଙ୍କୁ ସେ ଛବିଟା ଦେବାକୁ ହେବ । ଆପଣ କ'ଣ ତା' ହେଲେ ଟଙ୍କା ଧରି ଆସିଛନ୍ତି ?"

"ଟଙ୍କା ! ଟଙ୍କା କ'ଣ ?"—ଭଦ୍ରଲୋକଙ୍କ ମୁହଁରୁ ଏତକ ଶୁଣି ମୋର ବନ୍ଧୁ କହିଲେ—"ତା' ହେଲେ ଆପଣଙ୍କ ପ୍ରତ୍ୟାଦେଶ ଠିକ୍ ବୋଲି ମୁଁ ମନେକରୁ ନାହିଁ । ମୁଁ ଯେଉଁ ପ୍ରତ୍ୟାଦେଶ ପାଇଛି—ସେଥିରେ ଈଶ୍ୱର କହିଛନ୍ତି ଯେ, ଯେଉଁ ବ୍ୟକ୍ତି ଏକଲକ୍ଷ ଡଲାର ମୂଲ୍ୟର ଚେକ୍ ଦେବ, ତାଙ୍କୁ ହିଁ ଯେପରି ମୁଁ ସେ ଚିତ୍ରଟି ଦିଏ । ଆପଣଙ୍କୁ ନିଶ୍ଚୟ ଚେକ୍‌ଟି ଆଗ ଆଣିବାକୁ ପଡ଼ିବ ।" ଭଦ୍ରଲୋକ ବୁଝିଲେ ଯେ, ତାଙ୍କ ଠକାମି ଧରା ପଡ଼ିଗଲାଣି । ସେତେବେଳେ ସେ ଆଉ ପ୍ରତ୍ୟାଦେଶ କଥା ଉଠାଇଲେ ନାହିଁ । ଏହି ହେଲା ବିପଦ । ବୋଷ୍ଟନ୍ ସହରରେ ଥରେ ଜଣେ ବ୍ୟକ୍ତି ଆସି ମୋତେ କହିଲେ, ତାଙ୍କର ଏପରି ଏକ ଦୈବଦର୍ଶନ ହୋଇଛି, ଯେଉଁଥିରେ କି ତାଙ୍କ ସଙ୍ଗେ ହିନ୍ଦୁଭାଷାରେ

ଭଗବାନ କଥାବାର୍ତ୍ତା କରନ୍ତି । ମୁଁ କହିଲି—"କ'ଣ କ'ଣ ଶୁଣିଲେ କହନ୍ତୁ—ମୁଁ ତା' ହେଲେ ବିଶ୍ୱାସ କରିବି ।" କିନ୍ତୁ ସେ ବ୍ୟକ୍ତି ଏଣୁ ତେଣୁ ଗୁଡ଼ାଏ ଅର୍ଥହୀନ କଥା ଲେଖିଲେ । ମୁଁ ସେଗୁଡ଼ିକ ବୁଝିବା ଲାଗି ବହୁତ ଚେଷ୍ଟା କଲି, କିନ୍ତୁ କିଛି ଧରିପାରିଲି ନାହିଁ । ତେଣୁ ମୁଁ ତାଙ୍କୁ କହିଲି—"ମୋ ଜାଣିବାରେ ଏପରି ଭାଷା ଭାରତବର୍ଷରେ କେବେ ନ ଥିଲା ବା ନାହିଁ । ଭୂତାତ୍ମାମାନେ ଏଭଳି ଭାଷା ଲାଭ କରିବା ଲାଗି ଏ ଯାବତ ଯଥେଷ୍ଟ ସଭ୍ୟ ହୋଇ ନାହାନ୍ତି ।" ଏ କଥା ଶୁଣି ସେ ଭାବିଲେ ଯେ, ମୁଁ ଭଲ ଲୋକ ନୁହେଁ ଏବଂ ଜଣେ ସଂଶୟବାଦୀ । ତା'ପରେ ସେ ମୋ ପାଖ ଛାଡ଼ି ଚାଲିଗଲେ । ବର୍ତ୍ତମାନ ଯଦି ମୁଁ ଶୁଣିବାକୁ ପାଏ ଯେ ସେହି ବ୍ୟକ୍ତି ପାଗଳାଗାରଦରେ ଆଶ୍ରୟ ପାଇଛନ୍ତି, ତା'ହେଲେ ବିସ୍ମିତ ହେବାର କିଛି ନାହିଁ । ସଂସାରରେ ଏ ଦୁଇପ୍ରକାର ବିପଦର ସମ୍ଭାବନା ସବୁବେଳେ ରହି ଆସିଛି । ଏହିଭଳି ବିପଦ ଆସେ ହୁଏତ ଭଣ୍ଡମାନଙ୍କ ପାଖରୁ ଅଥବା ମୂର୍ଖମାନଙ୍କ ପାଖରୁ । କିନ୍ତୁ ଏଥିଲାଗି ଆମେ ଦବିଯିବା ଉଚିତ ନୁହେଁ । କାରଣ ଜଗତରେ ଯେକୌଣସି ମହତ୍-ବସ୍ତୁ ଲାଭର ପଥ ବିପଦାକୀର୍ଣ୍ଣ । ଆମକୁ କିନ୍ତୁ ସାବଧାନ ରହିବାକୁ ପଡ଼ିବ । ଅନେକ ସମୟରେ ଦେଖିବାକୁ ମିଳେ—ବହୁ ବ୍ୟକ୍ତି ଯୁକ୍ତି ଅବଲମ୍ବନ କରି ପରୀକ୍ଷା କରି ଦେଖିବାକୁ ଅକ୍ଷମ । କେହି ହୁଏତ ଆସି କହିଲା—"ମୁଁ ଏହି ଏହି ଦେବତାଙ୍କ ମୁଖରୁ ଏହି ଏହି ବାଣୀ ଶୁଣିଲି" ଏବଂ ତା'ପରେ ପଚାରିଲା, "ଆପଣ କ'ଣ ଏହାକୁ ଅସ୍ୱୀକାର କରି-ପାରିବେ ? ଏହା କଅଣ ସମ୍ଭବ ନୁହେଁ ଯେ, ଏଭଳି ଦେବତା ଅଛନ୍ତି ଏବଂ ସେ ଏପରି ଆଦେଶ ଦେଇପାରନ୍ତି ?" ଶତକଡ଼ା ନବେଜଣ ମୂର୍ଖ ଏକଥା ଗଳାଧଃକରଣ କରି-ନେବେ । ସେହି ମୂର୍ଖମାନେ ମନେକରନ୍ତି—ଏତିକି ଯୁକ୍ତି ହିଁ ଯଥେଷ୍ଟ । କିନ୍ତୁ ଗୋଟିଏ କଥା ଆପଣମାନଙ୍କର ଜାଣିବା ଉଚିତ, ଯେକୌଣସି ଘଟଣା ହିଁ ସମ୍ଭବପର ହୋଇପାରେ ଏବଂ ଏହା ମଧ୍ୟ ସମ୍ଭବପର ହୋଇପାରେ ଯେ, ଲୁବ୍ଧକ ନକ୍ଷତ୍ରର ସଂସ୍ପର୍ଶରେ ଆସିଲେ ପୃଥିବୀ ଆସନ୍ତା ବର୍ଷ ବିଦୀର୍ଣ୍ଣ ହୋଇଯିବ । ମୁଁ ଯଦି ଏ ପ୍ରକାର ସମ୍ଭାବନା ଉପସ୍ଥାପିତ କରେ, ତେବେ ଆପଣମାନଙ୍କର ମଧ୍ୟ ଅଧିକାର ଅଛି ଯେ ଆପଣମାନେ ମୋତେ ଏକଥା ପ୍ରମାଣ କରିବାକୁ ଆହ୍ୱାନ ଦେଇପାରିବେ । ଆଇନଜ୍ଞମାନେ ଯାହାକୁ କହନ୍ତି—'ପ୍ରମାଣ କରିବାର ଦାୟିତ୍ୱ' । ସେହି ଦାୟିତ୍ୱ ତା'ର ଉପରେ ପଡ଼ିବ ଯେ ଏହି ଜାତୀୟ ମତବାଦ ଉପସ୍ଥାପିତ କରିବ । ଯଦି ମୁଁ କୌଣସି ଦେବତାଙ୍କ ପାଖରୁ କିଛି ପ୍ରତ୍ୟାଦେଶ ଲାଭ କରିଛି, ତା'ହେଲେ ତାହା ପ୍ରମାଣ କରିବାର ଦାୟିତ୍ୱ ମୋର, ଆପଣଙ୍କର ନୁହେଁ । କାରଣ ମୁଁ ସିନା ଆପଣମାନଙ୍କ ନିକଟରେ ସେହି ପ୍ରକଳ୍ପଟି ଉପସ୍ଥାପିତ କରିଛି । ଯଦି ମୁଁ ତାହା ପ୍ରମାଣ କରି ନ ପାରେ ତା'ହେଲେ ମୋର ମୋ ଜିହ୍ୱାକୁ ଶାସନ କରିବା ଉଚିତ ଥିଲା । ଏହି ଉଭୟ ବିପଦକୁ ପରିହାର କରନ୍ତୁ । ତା'ପରେ ଆପଣ ଯଦୃଚ୍ଛା ବିଚରଣ କରିପାରନ୍ତି । ଆମେ ଜୀବନରେ ଅନେକ ଦୈବ ବାଣୀ ଶୁଣିଥାଉ କିମ୍ବା ଶୁଣିଛୁ ବୋଲି ମନେକରୁ । କିନ୍ତୁ ଯେତେବେଳେ ପର୍ଯ୍ୟନ୍ତ ଏଗୁଡ଼ିକ ଆପଣଙ୍କର ନିଜସ୍ୱ ବିଷୟ ହୋଇ ଥାଏ, ସେତେବେଳେ ପର୍ଯ୍ୟନ୍ତ ଆପଣ ଯାହା ଇଚ୍ଛା ତାହା କରିପାରନ୍ତି; କିନ୍ତୁ

ସେଗୁଡ଼ିକ ଯଦି ଅନ୍ୟ ଦ୍ୱାରା ଆପଣଙ୍କର ସମ୍ମୁଖ ବା ଅନ୍ୟପ୍ରତି ଆଚରଣ ବିଷୟକ ହୁଏ, ତେବେ ସେ ସମ୍ପର୍କରେ କିଛି କରିବା ପୂର୍ବରୁ ଶହେଥର ବିବେଚନା କରି ଦେଖନ୍ତୁ । ତା' ହେଲେ ଆଉ ବିପଦର ସମ୍ଭାବନା ରହିବ ନାହିଁ ।

ଆମେ ଦେଖିଲୁ ଯେ ଦିବ୍ୟପ୍ରେରଣା ଧର୍ମର ଉତ୍ସ, ଅଥଚ ଏହା ନାନା ବିପଦରେ ପୂର୍ଣ୍ଣ । ସର୍ବଶେଷ ଓ ସର୍ବାପେକ୍ଷା ବୃହତ୍ତ୍ ବିପଦ ହେଲା ଅତିରିକ୍ତ ଦାବି । ଏପରି ଲୋକ ଅଛନ୍ତି, ଯାହାଙ୍କର ଅଭ୍ୟୁଦୟ ଅକସ୍ମାତ୍ ହୁଏ । ସେମାନେ କହନ୍ତି—ଭଗବାନଙ୍କ ନିକଟରୁ ସେମାନେ ବାର୍ତ୍ତାଲାଭ କରିଛନ୍ତି ଏବଂ ସେମାନେ ସର୍ବଶକ୍ତିମାନ୍ ଭଗବାନଙ୍କ ବାଣୀ ହିଁ ଉଚ୍ଚାରଣ କରୁଛନ୍ତି । ଅନ୍ୟକାହାର ଏପରି ଦିବ୍ୟ ବାର୍ତ୍ତାଲାଭର ଅଧିକାର ନାହିଁ । ଶୁଣିଲେ ମନେହୁଏ, ଏହା ଅତ୍ୟନ୍ତ ଅଯୌକ୍ତିକ । ଏହି ବିଶ୍ୱରେ ଯାହା କିଛି ଥାଉ ନା କାହିଁକି, ଏହା ସମସ୍ତଙ୍କ ପକ୍ଷରେ ସମାନଭାବେ ରହିବା ଉଚିତ । ଏ ବିଶ୍ୱରେ ଏପରି କୌଣସି ସ୍ପନ୍ଦନ ନାହିଁ, ଯାହା ବିଶ୍ୱଜନୀନ ନୁହେଁ; କାରଣ ସମଗ୍ର ବିଶ୍ୱ ନିୟମର ଅଧୀନ । ଏହା ମୂଳରୁ ଶେଷଯାଏ ବିଧିବଦ୍ଧ ଏବଂ ସାମଞ୍ଜସ୍ୟପୂର୍ଣ୍ଣ । ସେଥିଯୋଗୁଁ କେଉଁଠାରେ ଯଦି କିଛି ଥାଏ, ତେବେ ତାହା ସର୍ବତ୍ର ରହିବାର ସମ୍ଭାବନା ଅବଶ୍ୟ ରହିଛି । ସର୍ବାପେକ୍ଷା ବୃହଦାକାର ସୂର୍ଯ୍ୟ ଓ ନକ୍ଷତ୍ରାଦି ଯେଉଁଭାବରେ ଗଠିତ, ଗୋଟିଏ ଅଣୁ ମଧ୍ୟ ସେହିଭାବରେ ଗଠିତ । ଯଦି କେବେ କେହି ଦିବ୍ୟଭାବରେ ଅନୁପ୍ରେରିତ ହୋଇଥାଏ, ତେବେ ଆମ ସମସ୍ତଙ୍କ ପକ୍ଷରେ ମଧ୍ୟ ଦିବ୍ୟପ୍ରେରଣାର ସମ୍ଭାବନା ରହିଛି । ଏହି ହେଲା ଧର୍ମ । ଏହିସବୁ ବିପଦ, ବିଭ୍ରମ, ପ୍ରହେଳିକା ଓ ଭଣ୍ଡାମି ଏବଂ ଅତିରିକ୍ତ ଦାବି ପରିହାର କରିବା ଉଚିତ । ଧର୍ମତଥ୍ୟଗୁଡ଼ିକୁ ପ୍ରତ୍ୟକ୍ଷ କରି ଧର୍ମବିଜ୍ଞାନର ସାକ୍ଷାତ୍ ସମ୍ପର୍କରେ ଆସିବା ଉଚିତ । କେତେକ ମତବାଦ ଓ ବିଧିନିଷେଧକୁ ସ୍ୱୀକାର କରିବା, ବିଶ୍ୱାସ କରିବା, ଗୀର୍ଜା ବା ମନ୍ଦିରକୁ ଯିବା କୌଣସି ବିଶେଷ ଗ୍ରନ୍ଥ ଅଧ୍ୟୟନ କରିବା ଧର୍ମର ପ୍ରକୃତ ଅର୍ଥ ବା ଲକ୍ଷ୍ୟ ନୁହେଁ । ଆପଣ କ'ଣ ଈଶ୍ୱରଙ୍କୁ ଦେଖିଛନ୍ତି ? ଆପଣଙ୍କର କ'ଣ ଆତ୍ମଦର୍ଶନ ହୋଇଛି ? ଯଦି ହୋଇ ନାହିଁ, ଆପଣ କ'ଣ ସେଥିପାଇଁ ପ୍ରୟାସ କରୁଛନ୍ତି ? ଏହା ବର୍ତ୍ତମାନ ଏହି ମୁହୂର୍ତ୍ତରେ ହିଁ ଲଭ୍ୟ— ଭବିଷ୍ୟତ ଲାଗି ଆପଣଙ୍କୁ ଅପେକ୍ଷା କରିବାକୁ ହେବ ନାହିଁ । ଭବିଷ୍ୟତ ତ ସୀମାହୀନ ବର୍ତ୍ତମାନ ବ୍ୟତୀତ ଆଉ କିଛି ନୁହେଁ । ଯାବତୀୟ ସମୟ ଗୋଟିଏ ମୁହୂର୍ତ୍ତର ପୁନରାବର୍ତ୍ତନ ବ୍ୟତୀତ ଆଉ କ'ଣ ହୋଇପାରେ ? ଧର୍ମ ଏହିଠାରେ ଏହିକ୍ଷଣି ରହିଅଛି । ଏହି ବର୍ତ୍ତମାନର ଜୀବନରେ ହିଁ ରହିଅଛି ।

ଆଉ ଗୋଟିଏ ପ୍ରଶ୍ନ ହେଲା— ମାନବଜୀବନର ଲକ୍ଷ୍ୟ କଅଣ ? ବର୍ତ୍ତମାନ ପ୍ରଚାର କରାଯାଉଛି ଯେ, ମନୁଷ୍ୟ କ୍ରମେ କ୍ରମେ ଉନ୍ନତ ହେଉଛି । ମଣିଷ ହେଲା ଅନନ୍ତ ପ୍ରଗତି-ପଥର ଯାତ୍ରୀ । ଏହି ଉନ୍ନତିଲାଭର କୌଣସି ନିର୍ଦ୍ଦିଷ୍ଟ ସୀମା ବା ଲକ୍ଷ୍ୟ ନାହିଁ । ସର୍ବଦା ସେ କିଛି ନା କିଛି ଲକ୍ଷ୍ୟରେ କ୍ରମଶଃ ଅଗ୍ରସର ହୋଇ ଚାଲିଛି । ଅଥଚ କୌଣସିକାଳେ ସେ ଲକ୍ଷ୍ୟରେ ପହଞ୍ଚିପାରିବ ନାହିଁ—ଏ କଥାର ଅର୍ଥ ଯାହା ହେଉ, ଏହା ଯେତେ ବିସ୍ମୟକର ହେଉ ପଛେ, ଶୁଣିଲେ ମନେହୁଏ, ଏହା ଅତ୍ୟନ୍ତ ଅସମ୍ଭବ ବ୍ୟାପାର ।

ସରଳରେଖା ଅବଲମ୍ବନରେ କୌଣସି ପ୍ରକାର ଗଢ଼ ଭଲ ସମ୍ଭବପର ହୁଏ ? କୌଣସି ସରଳରେଖାକୁ ଅନନ୍ତରୂପେ ପ୍ରସାରିତ କଲେ ଏହି ରେଖାଟି ଗୋଟିଏ ବୃତ୍ତରେ ପରିଣତ ହୁଏ । ଯେଉଁ ସ୍ଥାନରୁ ସେ ରେଖାଟି ପ୍ରସାରିତ ହୋଇଥିଲ, ପୁନଶ୍ଚ ସେହି ବିନ୍ଦୁକୁ ତାହା ଫେରି ଆସିବ । ଯେଉଁଠାରୁ ଆରମ୍ଭ ହୋଇଥିଲ, ସେଠାକୁ ହିଁ ଫେରିଯିବାକୁ ହେବ । ଏବଂ ଯେହେତୁ ଈଶ୍ୱରଙ୍କଠାରୁ ଆମର ଯାତ୍ରା ଆରମ୍ଭ ହୋଇଛି, ସେହେତୁ ସେହି ସ୍ଥାନକୁ ହିଁ ଆମକୁ ଫେରି ଯିବାକୁ ହେବ । ତା' ହେଲେ ଆଉ ରହିଲ କ'ଣ ? ଆଉ ଯାହା ରହିଲ, ତା' ହେଲ, ଆନୁସଙ୍ଗିକ ଶ୍ରେଷ୍ଠ ବଡ଼ କର୍ମ । ଅନନ୍ତକାଳ ଧରି ଆମକୁ ଏହିସବୁ ଆନୁସଙ୍ଗିକ କର୍ମ କରିଯିବାକୁ ହେବ ।

ଆଉ ଗୋଟିଏ ପ୍ରଶ୍ନ ରହିଛି । ଅଗ୍ରଗତି ସଙ୍ଗେ ସଙ୍ଗେ ଆମମାନଙ୍କୁ କ'ଣ ନୂଆ ନୂଆ ଧର୍ମତତ୍ତ୍ୱ ଆବିଷ୍କାର କରିବାକୁ ପଡ଼ିବ ? ଏହାର ଉତ୍ତର 'ହିଁ' ବି ହୋଇପାରେ—'ନା' ମଧ୍ୟ ହୋଇପାରେ । ପ୍ରଥମତଃ ଧର୍ମ ସମ୍ବନ୍ଧରେ ଆଉ ନୂତନ କିଛି ଜାଣିବା ସମ୍ଭବ ନୁହେଁ । ସେସମ୍ବନ୍ଧରେ ସବୁ ପ୍ରାୟ ଜଣା ସରିଛି । ପୃଥିବୀର ସବୁଧର୍ମ ଦାବି କରନ୍ତି ଯେ, ଆମ ଭିତରେ କେଉଁଠାରେ ଗୋଟିଏ ମିଳନଭୂମି ଅଛି । ଯେହେତୁ ଈଶ୍ୱରଙ୍କଠାରୁ ଆମେ ଅଭିନ୍ନ, ଅତଏବ ଏହି ଅର୍ଥରେ ଆଉ କୌଣସି ଅଗ୍ରଗତି ସମ୍ଭବ ନୁହେଁ । ଜ୍ଞାନର ଅର୍ଥ ହେଲ ବୈଚିତ୍ର୍ୟ ମଧ୍ୟରେ ଐକ୍ୟ ଦର୍ଶନ କରିବା । ମୁଁ ଆପଣମାନଙ୍କୁ ବିଭିନ୍ନ ନରନାରୀ ରୂପରେ ଦେଖୁଛି— ଏହା ହିଁ ବୈଚିତ୍ର୍ୟ । ଯେତେବେଳେ ଆପମୋନଙ୍କୁ ଏକତ୍ର ଗୋଷ୍ଠୀଭୁକ୍ତ କରି ମାନବ ବୋଲି ଭାବିବି, ସେତିକିବେଳେ ତାହା ବିଜ୍ଞାନ-ଜାତୀୟ ଜ୍ଞାନରେ ପରିଣତ ହେବ । ଦୃଷ୍ଟାନ୍ତସ୍ୱରୂପ, ରସାୟନ-ବିଜ୍ଞାନର କଥା ଧରିଯାଉ । ରସାୟନିକଗଣ ସମଗ୍ର ଜ୍ଞାତ ବସ୍ତୁକୁ ମୂଳ ଭୌତିକ ଉପାଦାନରେ ପରିଣତ କରିବାକୁ ସଚେଷ୍ଟ ହୁଅନ୍ତି ଏବଂ ସମ୍ଭବ ହେଲେ ସେମାନେ ଏପରି ଗୋଟିଏ ମାତ୍ର ପଦାର୍ଥ ଆବିଷ୍କାର କରିବାକୁ ଚାହାଁନ୍ତି, ଯେଉଁଥିରୁ ଏହି ବିବିଧ ପଦାର୍ଥର ଉତ୍ପତ୍ତି ଦେଖାଯାଇପାରେ । ହୁଏତ ଏପରି ସମୟ ଆସିବ, ଯେତେବେଳେ ସେମାନେ ଏହା ଆବିଷ୍କାର କରିପାରିବେ । ଏହା ହିଁ ହେବ ସମସ୍ତ ପଦାର୍ଥର ମୂଳ ଉପାଦାନ । ସେଠାରେ ଉପନୀତ ହେଲେ, ସେମାନେ ଆଉ ଅଗ୍ରସର ହୋଇପାରିବେ ନାହିଁ । ସେତିକିବେଳେ ହିଁ ରସାୟନବିଜ୍ଞାନ ପରିପୂର୍ଣ୍ଣତା ଲଭ କରିବ । ଧର୍ମ-ବିଜ୍ଞାନ ସମ୍ବନ୍ଧରେ ବି ସେହି ଗୋଟିଏ କଥା କୁହାଯାଇପାରିବ । ଆମେ ଯଦି ଏହି ପୂର୍ଣ୍ଣ ଐକ୍ୟ ଆବିଷ୍କାର କରିପାରିବୁ, ତା'ହେଲେ ଆଉ ଅଧିକତର ଉନ୍ନତି ସମ୍ଭବ ହେବ ନାହିଁ ।

"ମୁଁ ଆଉ ମୋର ପିତା ଅଭିନ୍ନ" ବୋଲି ଏହି ତଥ୍ୟ ଯେତେବେଳେ ଆବିଷ୍କୃତ ହେଲ (ଯୀଶୁଖ୍ରୀଷ୍ଟଙ୍କ ମୁଖନିଃସୃତ) ସେତେବେଳେ ଧର୍ମ ସମ୍ବନ୍ଧରେ ଶେଷ କଥା କୁହାଗଲା; ତା'ପରେ ବାକି ରହିଲ ଆଉ ଯାହା ସବୁ ଶ୍ରେଷ୍ଠବଡ଼ କଥା । ପ୍ରକୃତ ଧର୍ମରେ—ଅନ୍ଧବିଶ୍ୱାସ ବଶତଃ କୌଣସି କଥାକୁ ବିଶ୍ୱାସ କରିବା ବା ମାନି ନେବାର ସ୍ଥାନ ନାହିଁ । କୌଣସି ଧର୍ମପ୍ରଚାରକ ମହାତ୍ମା ଏଭଳି ପ୍ରଚାର କରନ୍ତି ନାହିଁ । ଅବକ୍ଷୟ ସମୟରେ ଏହି ଭ୍ରାନ୍ତି ଆସି ଜୁଟେ । ବୁଦ୍ଧିହୀନ ବ୍ୟକ୍ତିମାନେ କୌଣସି କୌଣସି ଧର୍ମନେତାଙ୍କର ଅନୁସରଣ-

କାଶୀ ବୋଲି ଛଳନା କରନ୍ତି ଏବଂ ସେମାନଙ୍କର କୌଣସି କ୍ଷମତା ନ ଥିଲେ ମଧ୍ୟ ସେମାନେ ମାନବସମାଜକୁ ଅନ୍ଧବିଶ୍ୱାସ ଶିକ୍ଷା ଦେବାକୁ ଚେଷ୍ଟା କରନ୍ତି । ସେମାନେ କି ବିଶ୍ୱାସ କରିବେ ? ଅନ୍ଧବିଶ୍ୱାସର ଅର୍ଥ ହେଲା ମାନବାତ୍ମାର ଅଧଃପତନ । ଯଦି ନାସ୍ତିକ ହେବାକୁ ଚାହୁଁଛ, ତେବେ ନାସ୍ତିକ ହୁଅ; କିନ୍ତୁ ବିନା ପ୍ରଶ୍ନରେ କୌଣସି କଥା ଗ୍ରହଣ କରିବା ଉଚିତ ନୁହେଁ । ମଣିଷର ଆତ୍ମାକୁ ପଶୁସ୍ତରକୁ କାହିଁକି ଅବନତ କରି ଆଣିବ ? ତୁମେ ଯେ ଏହାଦ୍ୱାରା କେବଳ ନିଜର ଅନିଷ୍ଟ କରୁଛ, ତାହା ନୁହେଁ—ତୁମେ ସମାଜର ମଧ୍ୟ କ୍ଷତି କରୁଛ ଏବଂ ଯେଉଁମାନେ ତୁମ ପରେ ଆସିବେ, ସେମାନଙ୍କର ପଥ ମଧ୍ୟ ବିପଦସଙ୍କୁଳ କରୁଛ । ଉଠି ଠିଆହୁଅ—ବିଚାର କର—ଅନ୍ଧବିଶ୍ୱାସର ବଶବର୍ତ୍ତୀ ହୁଅ ନାହିଁ । ଧର୍ମର ଅର୍ଥ ହେଲା—ତଦାକାରକାରିତ ହେବା ବା ହେବାକୁ ଚେଷ୍ଟା କରିବା, କେବଳ ବିଶ୍ୱାସ କରିଯିବା ନୁହେଁ । ଏହା ହିଁ ଧର୍ମ ଏବଂ ତୁମେ ଯେତେବେଳେ ସେହି ଅବସ୍ଥା ପ୍ରାପ୍ତ ହେବ, ସେତିକିବେଳେ ହିଁ ତୁମର ଧର୍ମଲାଭ ହେବ । ତା' ପୂର୍ବରୁ ତୁମେ ପଶୁଠାରୁ ମଧ୍ୟ ଉନ୍ନତର ନୁହଁ । ମହାତ୍ମା ବୁଦ୍ଧ କହିଛନ୍ତି—"ଶୁଣିବାମାତ୍ରେ କିଛି ବିଶ୍ୱାସ କରିଯାଅ ନାହିଁ । ବଂଶାନୁକ୍ରମେ କୌଣସି ମତବାଦ ପ୍ରାପ୍ତ ହୋଇଛି ବୋଲି ସେଥିରେ ବିଶ୍ୱାସ କରିବାକୁ ତୁମେ ବାଧ୍ୟ ନୁହଁ । ଅନ୍ୟ ଲୋକ ଯେହେତୁ ବିନା ବିଚାରରେ ବିଶ୍ୱାସ କରୁଛି, ସେହିହେତୁ କେଉଁ କଥାରେ ଆସ୍ଥାବାନ ହୋଇଉଠିବା ଅନୁଚିତ । କୌଣସି ପ୍ରାଚୀନ ଋଷି କହିଛନ୍ତି ବୋଲି କୌଣସି କଥାକୁ ମାନିନିଅ ନାହିଁ । ଯେଉଁସବୁ ତତ୍ତ୍ୱ ସହିତ ନିଜକୁ ଅଭ୍ୟାସବଶତଃ ଜଡ଼ିତ କରିଛ, ସେଥିରେ ବିଶ୍ୱାସ କରିଯାଅ ନାହିଁ । କେବଳ ଆପ୍ତବାକ୍ୟ ବା ଗୁରୁବାକ୍ୟ ବୋଲି କୌଣସି କଥା ମାନିନିଅ ନାହିଁ । ବିଚାର ଓ ବିଶ୍ଳେଷଣ କର ଏବଂ ଯେତେବେଳେ ଫଳଗୁଡ଼ିକ ଯୁକ୍ତିସହିତ ମିଳିଯିବ ଏବଂ ସମସ୍ତଙ୍କ ପକ୍ଷରେ ହିତକାରୀ ହେବ, ସେତିକିବେଳେ ହିଁ ତାହା ଗ୍ରହଣ କର ଏବଂ ତଦନୁଯାୟୀ ଜୀବନଯାପନ କର ।

# ଧର୍ମସାଧନା

ଆମେମାନେ ବହୁ ଗ୍ରନ୍ଥ, ବହୁ ଶାସ୍ତ୍ର ଅଧ୍ୟୟନ କରିଥାଉଁ । ବାଲ୍ୟକାଳରୁ ଆମେ ବିବିଧ ଭାବ ଆହରଣ କରୁ ଏବଂ ପ୍ରାୟଶଃ ଭାବର ପରିବର୍ତ୍ତନ କରିଥାଉ । ତତ୍ତ୍ୱଦିଗରୁ 'ଧର୍ମ' କାହାକୁ କୁହାଯାଏ, ତାହା ଆମକୁ ଜଣାଅଛି । ଆମେ ମନେକରୁ—ଧର୍ମର ପ୍ରୟୋଗ ଦିଗଟି ମଧ୍ୟ ଆମକୁ ଜଣାଅଛି । ଏଠାରେ ମୁଁ ଆପଣମାନଙ୍କ ନିକଟରେ 'କର୍ମରେ ପରିଣତ ଧର୍ମ' ସମ୍ବନ୍ଧରେ ମୋର ନିଜସ୍ୱ ଧାରଣା ଉପସ୍ଥାପିତ କରିବି ।

ଆମେ ସବୁଆଡ଼େ ପ୍ରୟୋଗମୂଳକ ଧର୍ମକଥା ଶୁଣିବାକୁ ପାଉଛୁ । ସେସବୁକୁ ବିଶ୍ଳେଷଣ କରି କେତୋଟି ମୂଳ କଥାରେ ପରିଣତ କରାଯାଇପାରେ । ଆମର ସମଶ୍ରେଣୀସ୍ଥ ଜୀବମାନଙ୍କ ପ୍ରତି କରୁଣା କରିବାକୁ ହେବ । କିନ୍ତୁ ଏତିକି କଅଣ ଧର୍ମର ସବୁକଥା ? ଏ ଦେଶରେ ଆମେ ପ୍ରତିଦିନ କାର୍ଯ୍ୟରେ ପରିଣତ ଖ୍ରୀଷ୍ଟଧର୍ମ କଥା ଶୁଣିଥାଉ । ଆମେ ଶୁଣିବାକୁ ପାଉ—କୌଣସି ବ୍ୟକ୍ତି ତା'ର ସମଶ୍ରେଣୀସ୍ଥ ଜୀବ ପାଇଁ କୌଣସି ହିତକର କାର୍ଯ୍ୟ କରିଛି । କିନ୍ତୁ ଏତିକି କଅଣ ସବୁ ?

ଆଚ୍ଛା—ଜୀବନର ଲକ୍ଷ୍ୟ କଅଣ ? ଏହି ଐହିକ ଜଗତ କଅଣ ଜୀବନର ଲକ୍ଷ୍ୟ ? ଆଉ କିଛି ନାହିଁ ? ଆମେ ଯେମିତି ଅଛୁ—ଆମକୁ କ'ଣ ସେମିତି ରହିବାକୁ ପଡ଼ିବ ମୃତ୍ୟୁ ପର୍ଯ୍ୟନ୍ତ ? ଏହାଠାରୁ ଆଉ ଅଧିକ କିଛି ନାହିଁ ! ମଣିଷ କଅଣ ଏମିତି ଗୋଟିଏ ଯନ୍ତ୍ରରେ ପରିଣତ ହୋଇ ବିନା ବାଧାରେ ସାବଲୀଳ ଗତିରେ ଚାଲିପାରେ ? ପୁଣି, ଆଜି ସେ ଯେଉଁ ଦୁଃଖର ଭାଗ ଭୋଗ କରୁଛି, ତାହା ହିଁ କ'ଣ ତା'ର ଶେଷ ପ୍ରାପ୍ୟ ? ସେ କ'ଣ ଆଉ କିଛି ଚାହେଁ ନାହିଁ ?

ବହୁ ଧର୍ମମତର ଶ୍ରେଷ୍ଠ କଳ୍ପନା ହେଲା ଏହି ଐହିକ ଜଗତ । ବିଶାଳ ଜନସମଷ୍ଟି ଏପରି ଗୋଟିଏ ସମୟର ସ୍ୱପ୍ନ ଦେଖୁଛି—ଯେତେବେଳେ କି କୌଣସି ରୋଗ, ଅସୁସ୍ଥତା, ଦାରିଦ୍ର୍ୟ ବା ଅନ୍ୟ କୌଣସି ପ୍ରକାର ଦୁଃଖ ଏ ଜଗତରେ ଆଉ ରହିବ ନାହିଁ । ସର୍ବତୋଭାବେ ମଣିଷ କେବଳ ସୁଖମୟ ଜୀବନ ଉପଭୋଗ କରିବ । ସୁତରାଂ 'କାର୍ଯ୍ୟରେ ପରିଣତ ଧର୍ମ' କହିଲେ କେବଳ ଏତିକି ମାତ୍ର ବୁଝାଏ—'ପଥଘାଟ ପରିଷ୍କାର ରଖ ଏବଂ ଆହୁରି ସୁନ୍ଦର ପଥଘାଟ ନିର୍ମାଣ କର ।' ସମସ୍ତେ ଏଥିରେ କେତେ ଆନନ୍ଦ ପାଆନ୍ତି, ତାହା ଆମେ ଦେଖୁଛୁ । ଭୋଗ କଅଣ ଜୀବନର ଲକ୍ଷ୍ୟ ? ତାହା ଯଦି ହୋଇଥାଏ ତେବେ ମନୁଷ୍ୟରୂପେ ଜନ୍ମଗ୍ରହଣ କରିବା ଗୋଟିଏ ପ୍ରକାଣ୍ଡ ଭୁଲ ବୋଲି ବୁଝିବାକୁ ହେବ । କୁକୁର ଓ ବିଲେଇମାନେ ଯେଉଁ ଲୋଲୁପତାର ସହିତ ସେମାନଙ୍କର ଖାଦ୍ୟ ଉପଭୋଗ କରନ୍ତି, କୌଣସି ମନୁଷ୍ୟ ଅଧିକତର ଆଗ୍ରହ ସହକାରେ ତାହା କରିପାରିବ କି ? ଆବଦ୍ଧ ବନ୍ୟପଶୁମାନଙ୍କ ପ୍ରଦର୍ଶନୀରେ ଯାଇ ଦେଖ—ପଶୁମାନେ କିପରି ହାଡ଼ରୁ ମାଂସ ଛିନ୍ନ କରି ଖାଉଛନ୍ତି । ଉନ୍ନତିର ବିପରୀତ ଦିଗରେ ଯାଇ ପକ୍ଷୀରୂପେ ଜନ୍ମଗ୍ରହଣ କର । ମଣିଷ ହୋଇ କି ଭୁଲ ନ ହୋଇଯାଇଛି ! ସେହି ଯେଉଁ ବର୍ଷଗୁଡ଼ିକ—ଯାହା ଭିତରେ ଶହ ଶହ ବର୍ଷ

ଧରି ଆମେ କେବଳ ଏହି ଇନ୍ଦ୍ରିୟବେଗରେ ପରିତୃପ୍ତ ମଣିଷ ହେବା ନିମିତ୍ତ କଠୋର ସାଧନା କରୁଛୁ (ଏହି ଦୃଷ୍ଟିରେ)—ତାହା ବୃଥା ଯାଇଛି ।

ତା' ହେଲେ ବାସ୍ତବ ଧର୍ମର ଅର୍ଥଟି କ'ଣ, ଏହା ଆମକୁ କେଉଁଆଡ଼କୁ ନେଇଯାଏ, ତାହା ଶୁଣି ଦେଖ । ଦାନ କରିବା ଖୁବ୍ ଭଲ କଥା, କିନ୍ତୁ ଯେଉଁ ମୁହୂର୍ତ୍ତିରେ ତୁମେ କହିବ—'ଏତିକି ହିଁ ସବୁ' ସେତେବେଳେ ତୁମେ ସେହି ଜଡ଼ବାଦୀଙ୍କ ଦଳରେ ଯାଇ ପଡ଼ିଯିବ । ଏହା ଧର୍ମ ନୁହେଁ । ଏହା ନାସ୍ତିକତା ଅପେକ୍ଷା କିଛି ଭଲ ନୁହେଁ, ବରଂ ତା'-ଠାରୁ ଅପକୃଷ୍ଟ । ତୁମେମାନେ ଖ୍ରୀଷ୍ଟଧର୍ମାବଲମ୍ବୀ, ତୁମେମାନେ କଅଣ ସମଗ୍ର ବାଇବେଲ ପଢ଼ି, ଅନ୍ୟ ଲାଗି କର୍ମ କରିବା କିମ୍ବା ଆରୋଗ୍ୟ ନିକେତନ ନିର୍ମାଣ କରିବା ବ୍ୟତୀତ ଆଉ କିଛି ଖୋଜି ପାଉ ନାହିଁ ? କେହି ହୁଏତ ଦୋକାନଦାର—ସେ ଠିଆ ହୋଇ ବକ୍ତୃତା ଦେବେ—ଯୀଶୁ ଦୋକାନୀ ହୋଇଥିଲେ କିପରି ଦୋକାନ ଚଳେଇଥାନ୍ତେ ! ଯୀଶୁ କେବେ ବି କ୍ଷୌରାଳୟ ବା ଦୋକାନ ଚଳେଇ ନ ଥାନ୍ତେ କିମ୍ବା ସମ୍ବାଦପତ୍ର ମଧ୍ୟ ସମ୍ପାଦନା କରି ନ ଥାନ୍ତେ । ଏ ଧରଣର କାର୍ଯ୍ୟମୂଳକ ଧର୍ମ ଅବଶ୍ୟ ଭଲ । ମୁଁ ତାକୁ ମନ୍ଦ ବୋଲି କହୁ ନାହିଁ, କିନ୍ତୁ ଏହା ଶିଶୁବିଦ୍ୟାଳୟସ୍ତରର ଧର୍ମ । ଏହା ଆମକୁ କୌଣସି ଲକ୍ଷ୍ୟ ଦିଗରେ ନେଇଯାଇପାରିବ ନାହିଁ । ତୁମେମାନେ ଯଦି ପ୍ରକୃତରେ ଈଶ୍ୱରଙ୍କୁ ବିଶ୍ୱାସ କର, ଯଦି ପ୍ରକୃତରେ ତୁମେମାନେ ଖ୍ରୀଷ୍ଟାନ ହୋଇଥାଏ ଏବଂ ବାରମ୍ବାର "ପ୍ରଭୁ ! ତୁମର ଇଚ୍ଛା ପୂର୍ଣ୍ଣ ହେଉ" ବୋଲି ଉଚ୍ଚାରଣ କର, ତେବେ ଭାବି ଦେଖ—ଏହି କଥାର ତାତ୍ପର୍ଯ୍ୟ କ'ଣ ! ଯେତେବେଳେ ତୁମେମାନେ କୁହ—"ତୁମର ଇଚ୍ଛା ପୂର୍ଣ୍ଣ ହେଉ"—ସେତେବେଳେ ସତ କଥା କହିବାକୁ ଗଲେ ତୁମେମାନେ କହିବାକୁ ଚାହଁ—"ହେ ଈଶ୍ୱର ! ମୋର ଇଚ୍ଛା ତୁମଦ୍ୱାରା ପୂର୍ଣ୍ଣ ହେଉ ।" ସେହି ଅନନ୍ତ ପରମାତ୍ମା ତାଙ୍କ ନିଜସ୍ୱ ପରିକଳ୍ପନା ଅନୁଯାୟୀ କାର୍ଯ୍ୟ କରି ଚାଲିଛନ୍ତି । କିନ୍ତୁ ଆମେ ସତରେ କ'ଣ କହିବାକୁ ଚାହୁଁ—ଈଶ୍ୱର ଭୁଲ କରି ପକାଇଛନ୍ତି ! ମୋତେ ଓ ତୁମମାନଙ୍କୁ ତାହା ସଂଶୋଧନ କରିବାକୁ ହେବ । ଏ ବିଶ୍ୱର ଯେ ବିଶ୍ୱକର୍ମା, ତାଙ୍କୁ କ'ଣ କେତେଜଣ ବଢ଼େଇ ଶିକ୍ଷା ଦେବେ ? ସେ ଜଗତକୁ ଗୋଟିଏ ଆବର୍ଜନାର ସ୍ତୂପରୂପେ ସୃଷ୍ଟି କରିଛନ୍ତି, ବର୍ତ୍ତମାନ ତୁମେ ଏହାକୁ ସୁନ୍ଦର କରି ସଜାଇବ ?

ଏସବୁ କର୍ମର ଲକ୍ଷ୍ୟ କ'ଣ ? ଇନ୍ଦ୍ରିୟପରିତୃପ୍ତି କ'ଣ କେବେ ଲକ୍ଷ୍ୟ ହୋଇ-ପାରେ ? ସୁଖ, ସମ୍ଭୋଗ କ'ଣ କେବେ ଲକ୍ଷ୍ୟ ହୋଇପାରେ ? ଐହିକ ଜୀବନ କ'ଣ କେବେ ଆତ୍ମାର ଲକ୍ଷ୍ୟ ହୋଇପାରେ ? ଯଦି ତାହା ହୁଏ, ତା'ହେଲେ ବରଂ ଏହି ମୁହୂର୍ତ୍ତିରେ ମରିଯିବା ଶ୍ରେୟସ୍କର, ତଥାପି ଐହିକ ଜୀବନ ଚାହିଁବା ଉଚିତ ନୁହେଁ । ଏହା ଯଦି ମନୁଷ୍ୟର ଭାଗ୍ୟ ହୁଏ ଯେ, ସେ ଗୋଟିଏ ତ୍ରୁଟିହୀନ ଯନ୍ତ୍ରରେ ପରିଣତ ହେବ, ତା'ହେଲେ ତା'ର ତାତ୍ପର୍ଯ୍ୟ ଏହି ଯେ ଆମେମାନେ ପୁନର୍ବାର ବୃକ୍ଷ, ପ୍ରସ୍ତର ଇତ୍ୟାଦିରେ ପରିଣତ ହେବାକୁ ଯାଉଅଛୁ । ତୁମେ ଭଲ କେବେ ଗାଈଟିଏ ମିଛକଥା କହିବାର ଶୁଣିଛ ? କିମ୍ବା ବୃକ୍ଷଟିଏ ଚୋରି କରିବା ଦେଖିଛ ଭଲ ? ସେଗୁଡ଼ିକ ହେଲେ ନିର୍ଭୁଲ ଯନ୍ତ୍ର । ସେମାନେ ଭୁଲ

କରନ୍ତି ନାହିଁ । ସେମାନେ ଏପରି ଜଗତରେ ବାସ କରନ୍ତି, ଯେଉଁଠାରେ ସବୁ କିଛି ନିୟମର ପରାକାଷ୍ଠା ଲାଭ କରିଛି । ଏହି ବାସ୍ତବ ଧର୍ମକୁ ଯଦି ଆଦର୍ଶ ଧର୍ମ ବୋଲି କୁହା ନ ଯାଏ, ତେବେ ଆଦର୍ଶଟି ପ୍ରକୃତରେ କଅଣ ? ବ୍ୟାବହାରିକ ଧର୍ମ କେବେହେଲେ ସେହି ଆଦର୍ଶ ହୋଇପାରେ ନାହିଁ । ଆମେ କେଉଁ ଉଦ୍ଦେଶ୍ୟରେ ଏହି ପୃଥିବୀକୁ ଆସିଛୁ ? ମୁକ୍ତି ଆଉ ଜ୍ଞାନଲାଭ ଉଦ୍ଦେଶ୍ୟରେ । ଆମେ ମୁକ୍ତିଲାଭ ଉଦ୍ଦେଶ୍ୟରେ ହିଁ ଜ୍ଞାନାର୍ଜନ କରିବାକୁ ଚାହୁଁ । ଏହା ହିଁ ଆମମାନଙ୍କ ପକ୍ଷରେ ବଞ୍ଚି ରହିବାର ଅର୍ଥ । ଏହା ହେଲା—ମୁକ୍ତିଲାଭ ନିମିତ୍ତ ସର୍ବବ୍ୟାପୀ ଆକୂତି । କାହିଁକି ଭଲ ମଞ୍ଜି ଭିତରୁ ଗଛଟିଏ ବାହାରେ ? କାହିଁକି ଭଲ ସେ ଭୂମିକୁ ବିଦୀର୍ଣ୍ଣ କରି ଊର୍ଦ୍ଧ୍ୱାଭିମୁଖରେ ଅଭିଯାନ କରେ । ପୃଥିବୀ ନିକଟରେ ସୂର୍ଯ୍ୟଙ୍କର ଦାନ କ'ଣ ? ତୁମ ଜୀବନର ଅର୍ଥ କ'ଣ ? ଏହା ମଧ୍ୟ ମୁକ୍ତିଲାଭ ଉଦ୍ଦେଶ୍ୟରେ ସେହି ଗୋଟିଏ ପ୍ରକାର ସଂଗ୍ରାମ । ପ୍ରକୃତି ଆମମାନଙ୍କୁ ଚାରିଦିଗରୁ ଦମନ କରିବାକୁ ଚାହେଁ ଏବଂ ଆତ୍ମା ଚାହେଁ ନିଜକୁ ପ୍ରକାଶ କରିବାକୁ । ପ୍ରକୃତି ସହିତ ସତତ ସଂଗ୍ରାମ ଚାଲିଛି । ମୁକ୍ତିଲାଗି ଏହି ସଂଗ୍ରାମ ଫଳରେ ହୁଏତ ବହୁ ଜିନିଷ ଦଳିତ ମଥିତ ହୋଇଯିବ । ଏହା ହିଁ ହେଲା ତୁମ ଦୁଃଖର ପ୍ରକୃତ ଅର୍ଥ । ଯୁଦ୍ଧକ୍ଷେତ୍ର ପ୍ରଚୁର ପରିମାଣ ଧୂଳି ଓ ଜଞ୍ଜାଳରେ ପୂର୍ଣ୍ଣ ହୋଇଯିବ । ପ୍ରକୃତି କହେ—"ମୋର ଜୟ ହେବ"; ଆତ୍ମା କହେ—"ମୋତେ ହିଁ ବିଜୟୀ ହେବାକୁ ପଡ଼ିବ ।" ପ୍ରକୃତି କହେ—"ଟିକିଏ ଅପେକ୍ଷା କର । ମୁଁ ତୁମକୁ ଶାନ୍ତ ରଖିବା ପାଇଁ ଟିକିଏ ଭୋଗ କରିବାର ସୁଯୋଗ ଦେଉଛି ।" ଆତ୍ମା ଟିକିଏ ଭୋଗ କରେ । ମୁହୂର୍ତ୍ତିକ ଲାଗି ସେ ବିଭ୍ରାନ୍ତ ମଧ୍ୟ ହୋଇଯାଏ । କିନ୍ତୁ ପରମୁହୂର୍ତ୍ତରେ ସେ ପୁଣି ସେଥିରୁ ମୁକ୍ତି ପାଇବାକୁ କ୍ରନ୍ଦନ କରିଉଠେ । ପ୍ରତ୍ୟେକର ହୃଦୟରେ ଏହି ଯେ ଚିରନ୍ତନ କ୍ରନ୍ଦନ ଯୁଗ ଯୁଗ ଧରି ଚାଲିଛି—ତାହା କେବେ ଲକ୍ଷ୍ୟ କରିଛ ? ଆମେମାନେ ଦାରିଦ୍ର୍ୟଦ୍ୱାରା ପ୍ରବଞ୍ଚିତ ହେଉ—ସେଥିଲାଗି ଆମେ ଧନ ଅର୍ଜନ କରୁ । ସେତେବେଳେ ପୁନର୍ବାର ଆମେ ଧନଦ୍ୱାରା ପ୍ରବଞ୍ଚିତ ହେଉ । ଆମେମାନେ ହୁଏତ ମୂର୍ଖ, ସେଥିଲାଗି ଆମେ ବିଦ୍ୟା ଅର୍ଜନ କରି ପଣ୍ଡିତ ହେବାକୁ ଚାହୁଁ । ପୁଣି ପଣ୍ଡିତ ହୋଇସାରଲେ ପୁନର୍ବାର ସେହି ପାଣ୍ଡିତ୍ୟଦ୍ୱାରା ହିଁ ପ୍ରବଞ୍ଚିତ ହେଉ । ମଣିଷ କେବେହେଲେ ସମ୍ପୂର୍ଣ୍ଣ ପରିତୃପ୍ତ ହୁଏ ନାହିଁ । ତାହା ହିଁ ତା'ର ଦୁଃଖର କାରଣ ଏବଂ ତାହା ହିଁ ତା'ର ଆଶୀର୍ବାଦର ମୂଳ । ଏହି ହେଲା ଜଗତର ପ୍ରକୃତ ଲକ୍ଷଣ । ତୁମେ କପରି ଭଲ ଏ ଜଗତ ଭିତରେ ତୃପ୍ତି ପାଇବ ? ଯଦି ଆସନ୍ତା କାଲି ଏ ପୃଥିବୀ ସ୍ୱର୍ଗରେ ପରିଣତ ହୁଏ—ସେତେବେଳେ ବି ଆମେ କହିବା—"ଏଇଟା ଫେରାଇ ନିଅ, ଆଉ ଗୋଟେ କିଛି ଦିଅ ।"

ଏହି ଅସୀମ ମାନବାତ୍ମା ସ୍ୱୟଂ ଅସୀମକୁ ଲାଭ ନ କଲେ କେବେହେଁ ତୃପ୍ତ ହୋଇପାରେ ନାହିଁ । ଅନନ୍ତ ତୃଷ୍ଣା କେବଳ ମାତ୍ର ଅନନ୍ତ ଜ୍ଞାନଦ୍ୱାରା ପରିତୃପ୍ତ ହୁଏ । ତା' ବ୍ୟତୀତ ଅନ୍ୟ କିଛିଦ୍ୱାରା ହୁଏ ନାହିଁ । କେତେ ତ ଜଗତ ଯିବ ଓ ପୁଣି ଫେରି ଆସିବ । ସେଥିରେ କଅଣ ବା ଆସେ ଯାଏ ? କିନ୍ତୁ ଆତ୍ମା ବଞ୍ଚିଛି ଏବଂ ଚିରକାଳଧରି ଅନନ୍ତ ଆଡ଼କୁ ଅଗ୍ରସର ହେଉଛି । ସମଗ୍ର ଜଗତକୁ ଆତ୍ମା ମଧ୍ୟରେ ଲୀନ ହେବାକୁ ପଡ଼ିବ । ମହାସାଗର ବକ୍ଷରେ

ଯେପରି ଜଳବିନ୍ଦୁ ମିଳେଇ ଯାଏ, ସେହିଭଳି ବିଶ୍ୱଜଗତ୍ ଆତ୍ମାରେ ବିଲୀନ ହୋଇଯିବ । ଅଚ୍ଛା—ଆତ୍ମାର ଲକ୍ଷ୍ୟ କଅଣ ଏହି ଜଗତ ? ଯଦି ଆମର ସାଧାରଣ ବୁଦ୍ଧି ଥାଏ, ତେବେ ଆମେ ପରିତୃପ୍ତ ହୋଇପାରିବୁ ନାହିଁ । ଯଦିଓ ଯୁଗ ଯୁଗ ଧରି ଏହା ହିଁ ଥିଲା କବିମାନଙ୍କର ରଚନାର ବିଷୟବସ୍ତୁ—ଯଦିଓ ସେମାନେ ସର୍ବଦା ଆମକୁ ପରିତୃପ୍ତ ରହିବାକୁ ଉପଦେଶ ଦେଇ ଆସିଛନ୍ତି—ତଥାପି ଆଜିପର୍ଯ୍ୟନ୍ତ କେହି ଜଣେ ସୁଦ୍ଧା ପରିତୃପ୍ତ ହୋଇପାରି ନାହିଁ । ଅସଂଖ୍ୟ ଋଷିକଳ୍ପ ବ୍ୟକ୍ତି ଆମକୁ କହି ଆସିଛନ୍ତି--"ନିଜ ନିଜ ଭାଗ୍ୟକୁ ନେଇ ସନ୍ତୁଷ୍ଟ ରହ ।" କବିମାନେ ମଧ୍ୟ ସେହି ମର୍ମରେ କାବ୍ୟ କବିତା ରଚନା କରିଛନ୍ତି । ଆମେମାନେ ନିଜକୁ ପରିତୃପ୍ତ ଓ ଶାନ୍ତ ରହିବାକୁ ବାରମ୍ବାର ବୁଝାଇଛୁ—କିନ୍ତୁ ସେପରି ରହିପାରି ନାହୁଁ । ଏହା ସନାତନ ବିଧାନ ଯେ, ଏହି ପୃଥିବୀରେ ବା ଊର୍ଦ୍ଧ୍ୱରେ ବା ସ୍ୱର୍ଗଲୋକରେ କିମ୍ବା ଏହାର ନିମ୍ନଦେଶରେ ପାତାଳରେ ଏପରି କିଛି ନାହିଁ—ଯାହାଦ୍ୱାରା ଆମର ଆତ୍ମା ପରିତୃପ୍ତ ହୋଇପାରେ । ଆମ ଆତ୍ମାର ତୃଷ୍ଣା ନିକଟରେ ନକ୍ଷତ୍ର ଓ ଗ୍ରହରାଜି, ଊର୍ଦ୍ଧ୍ୱ ଓ ଅଧଃ, ସମଗ୍ର ବିଶ୍ୱ କେତେଗୁଡ଼ିଏ ଘୃଣ୍ୟ ପୀଡ଼ାଦାୟକ ବସ୍ତୁ ମାତ୍ର । ତାହାଛଡ଼ା ଆଉ କିଛି ନୁହେଁ । ଧର୍ମ ଆମକୁ ଏତିକି ବୁଝାଇଦିଏ ଏବଂ ଆଉ ଯାହା କିଛି ଆମକୁ ଏହି ତତ୍ତ୍ୱଟି ବୁଝାଇ ଦେଇପାରେ ନାହିଁ—ତା'ର ସବୁ କିଛି ଅମଙ୍ଗଳମୟୀ । ପ୍ରତ୍ୟେକଟି ବାସନା ହେଉଛି ଦୁଃଖର କାରଣ । ଯଦି ତାହା ଏହି ତତ୍ତ୍ୱଟି ବୁଝାଇ ଦେଇ ନ ପାରେ, ଯଦି ତୁମେ ଏହାର ପ୍ରକୃତ ତାତ୍ପର୍ଯ୍ୟ ଓ ଲକ୍ଷ୍ୟ ଧରିପାର, ତେବେ ସମଗ୍ର ପ୍ରକୃତି ତା'ର ପ୍ରତ୍ୟେକ ପରମାଣୁ ଭିତର ଦେଇ ଗୋଟିଏ ମାତ୍ର ଜିନିଷ ପାଇଁ ଆକୁତି ଜଣାଉଛି—ତାହା ହେଲା ମୁକ୍ତି ।

ତା'ହେଲେ 'କର୍ମରେ ପରିଣତ ଧର୍ମ' କଥାଟିର ଅର୍ଥ କ'ଣ ? ଏହାର ଅର୍ଥ ହେଲା ମୁକ୍ତିର ଅବସ୍ଥାରେ ଉପନୀତ ହେବା—ଅନ୍ୟ କଥାରେ ମୁକ୍ତିଲାଭ କରିବା ଏବଂ ଯଦି ପୃଥିବୀ ଆମକୁ ଏହି ଲକ୍ଷ୍ୟରେ ପହଞ୍ଚାଇ ଦେବା ଦିଗରେ ସହାୟତା କରେ, ତା'ହେଲେ ଏହା ମଙ୍ଗଳମୟ । କିନ୍ତୁ ଯଦି ତାହା ନ ହୁଏ, ଯଦି ସହସ୍ର ବନ୍ଧନ ସାଙ୍ଗରେ ଏହା ପୁଣି ଗୋଟିଏ ଅତିରିକ୍ତ ବନ୍ଧନ ସଂଯୁକ୍ତ କରେ, ତା' ହେଲେ ଏହା ମନ୍ଦରେ ପରିଣତ ହୁଏ । ଧନସମ୍ପଦ, ବିଦ୍ୟାବୁଦ୍ଧି, ସୌନ୍ଦର୍ଯ୍ୟ ବା ଶକ୍ତି ପ୍ରଭୃତି ଯାବତୀୟ ବିଷୟ ଯେତେବେଳଯାଏ ଏହି ଲକ୍ଷ୍ୟରେ ଉପନୀତ ହେବାରେ ସହାୟତା କରେ, ସେତେବେଳ ପର୍ଯ୍ୟନ୍ତ ଏଗୁଡ଼ିକର ବ୍ୟାବହାରିକ ମୂଲ୍ୟ ରହିଛି । କିନ୍ତୁ ଯେତେବେଳେ ଜଣାପଡ଼େ ଯେ, ଏଗୁଡ଼ିକ ମୁକ୍ତିଲାଭ ଲାଗି ସାହାଯ୍ୟ କରୁନାହାନ୍ତି, ସେତେବେଳେ ସେଗୁଡ଼ିକ ନିଶ୍ଚିତରୂପେ ଭୟାବହ । ତା' ଯଦି ହୁଏ, ତେବେ 'କାର୍ଯ୍ୟରେ ପରିଣତ ଧର୍ମ'ର ସ୍ୱରୂପ କଅଣ ? ଇହଲୌକିକ ଏବଂ ପାରଲୌକିକ ସବୁ କିଛି ସେହି ଏକ ଉଦ୍ଦେଶ୍ୟରେ ବ୍ୟବହାର କରିବାକୁ ହେବ—ଯାହାଦ୍ୱାରା ମୁକ୍ତିଲାଭ ହେବ । ଏ ଜଗତରେ ଯଦି ବିନ୍ଦୁଏ ମାତ୍ର ଭୋଗ ପାଇବାକୁ ଚାହଁ—ଯଦି ବିନ୍ଦୁଏ ମାତ୍ର ସୁଖ ପାଇବାକୁ ଚାହଁ—ତେବେ ତା'ର ବିନିମୟରେ ହୃଦୟ-ମନର ସମ୍ମିଳିତ ଅସୀମ ଶକ୍ତି ବ୍ୟୟ କରିବାକୁ ହେବ ।

ଏହି ଜଗତର ଭଲ ଓ ମନ୍ଦର ସମଷ୍ଟି ଆଡ଼କୁ ଚାହିଁ ଦେଖ । ଏଥିରେ କ'ଣ କିଛି ପରିବର୍ତ୍ତନ ଘଟିଛି ? ଯୁଗ ଯୁଗ ଅବ୍ୟାହତ ହୋଇଛି ଏବଂ ଯୁଗ ଯୁଗ ଧରି ବ୍ୟାବହାରିକ ଧର୍ମ ଆପଣାର କାର୍ଯ୍ୟ କରି ଚାଲିଛି । ପ୍ରତ୍ୟହ ପୃଥିବୀ ମନେକରି ଆସିଛି ଯେ, ଏଥର ନିଶ୍ଚୟ ସମସ୍ୟାର ସମାଧାନ ହୋଇଯିବ । କିନ୍ତୁ ସମସ୍ୟାଟି ଯେପରି ଥିଲା, ସେହିପରି ରହିଯାଏ । ଖୁବ୍ ହେଲେ ଏହାର ଆକୃତିର ପରିବର୍ତ୍ତନ ହୁଏ ମାତ୍ର । ଏହା କୋଡ଼ିଏ ହଜାର ଦୋକାନରେ ସ୍ନାୟୁରୋଗ ଓ କ୍ଷୟରୋଗର ବ୍ୟବହାର୍ଯ୍ୟ ନିମିତ୍ତ ପଣ୍ୟ ସରବରାହ କରେ । ଏହା ପୁରାତନ ବାତବ୍ୟାଧିସଦୃଶ । ତାକୁ ଗୋଟିଏ ଜାଗାରୁ ବିତାଡ଼ନ କର—ଦେଖିବ ତାହା ଆଉ ଗୋଟିଏ ସ୍ଥାନରେ ଆଶ୍ରୟ ପାଇ ରହିଲାଣି । ଶହେବର୍ଷ ପୂର୍ବେ ମନୁଷ୍ୟ ପଦବ୍ରଜରେ ବା ଘୋଡ଼ା ଉପରେ ଭ୍ରମଣ କରୁଥିଲା । ବର୍ତ୍ତମାନ ସେ ଖୁବ୍ ସୁଖୀ । କାରଣ ବର୍ତ୍ତମାନ ସେ ଟ୍ରେନ୍‌ରେ ବସି ଭ୍ରମଣ କରୁଛି । କିନ୍ତୁ ତାକୁ ଅଧିକତର ଶ୍ରମ କରି ଅଧିକତର ଅର୍ଥ ଉପାର୍ଜନ କରିବାକୁ ପଡ଼ୁଛି ବୋଲି ସେ ଅସୁଖୀ । ଯେକୌଣସି ଯନ୍ତ୍ର ଶାରୀରିକ ଶ୍ରମ ଲାଘବ କରେ, ତାହା ପୁଣି ଅନ୍ୟପ୍ରକାରେ ଶ୍ରମିକ ଉପରେ ଗୁରୁଭାର ଲଦି ଦିଏ ।

ଏହି ବିଶ୍ୱ, ଏହି ପ୍ରକୃତି କିମ୍ବା ଅନ୍ୟ ଯେକୌଣସି ନାମରେ ଏହାକୁ ଅଭିହିତ କର ନା କାହିଁକି, ଏହା ନିଶ୍ଚୟ ସୀମାବଦ୍ଧ । ଏହା କେବେହେଲେ ଅସୀମ ହୋଇପାରେ ନାହିଁ । ସର୍ବାତୀତ ପରମସତ୍ତାଙ୍କୁ ମଧ୍ୟ ଜଗତର ଉପାଦାନରୂପେ ପରିଣତ ହେବାକୁ ହେଲେ ଦେଶ, କାଳ ଓ ନିମିତ୍ତର ସୀମା ଭିତରକୁ ଆସିବାକୁ ପଡ଼େ । ଜଗତରେ ଯେତିକ ଶକ୍ତି ରହିଛି, ତାହା ସୀମାବଦ୍ଧ । ତାକୁ ଯଦି ଗୋଟିଏ ସ୍ଥାନରେ ବ୍ୟୟ କର, ତା' ହେଲେ ଅନ୍ୟ ସ୍ଥାନଟିରେ କମ୍ ପଡ଼ିଯିବ । ସେହି ଶକ୍ତିର ପରିମାଣ ସର୍ବଦା ଏକ ରହିବ । କୌଣସି ସ୍ଥାନରେ ଯଦି ତରଙ୍ଗ ଉଠେ, ତେବେ ସମୁଦ୍ରର ଅନ୍ୟ ସ୍ଥାନରେ ନିଶ୍ଚୟ ଗଭୀର ଗହ୍ୱରର ସୃଷ୍ଟି ହେବ । ଯଦି କୌଣସି ଜାତି ଧନୀ ହୁଏ, ତା'ହେଲେ ଅନ୍ୟ ଜାତିମାନେ ଦରିଦ୍ର ହୋଇଯିବେ । ଭଲ ସହିତ ମନ୍ଦ ଭାରସାମ୍ୟ ରକ୍ଷାକରେ । ଯେଉଁ ବ୍ୟକ୍ତି କୌଣସି କାଳରେ ତରଙ୍ଗଶୀର୍ଷରେ ଅବସ୍ଥାନ କରିଛି, ସେତେବେଳେ ସେ ମନେକରେ, ସବୁ ଭଲ ଚାଲିଛି; କିନ୍ତୁ ଯେ ତରଙ୍ଗର ନିମ୍ନରେ ପଡ଼ିଯାଇଛି—ସେ କହେ, ଏହି ପୃଥିବୀରେ ସବୁ ଖରାପ ଚାଲିଛି । କିନ୍ତୁ ଯେଉଁ ବ୍ୟକ୍ତି ପାର୍ଶ୍ୱଦେଶରେ ଠିଆ ହୋଇଛି—ସେ ଦେଖେ ଈଶ୍ୱରଙ୍କ ଲୀଳା କିପରି ଚାଲିଛି । କିଏ କାନ୍ଦେ—କିଏ ବା ହସେ । ପୁଣି ବର୍ତ୍ତମାନ ଯେଉଁମାନେ ହସୁଛନ୍ତି, ସମୟ ଆସିବ, ସେମାନେ ପୁଣି କାନ୍ଦିବେ । ସେତେବେଳେ ଆଗରୁ କାନ୍ଦୁଥିବା ଲୋକେ ପୁଣି ହସିବେ । ଆମେ ଭଲ କଅଣ କରିପାରିବୁ ? ଆମେ ଜାଣୁ, ଆମେ କିଛି କରିପାରିବୁ ନାହିଁ ।

ଜଗତର ହିତସାଧନ ଉଦ୍ଦେଶ୍ୟରେ କାର୍ଯ୍ୟରେ ଅଗ୍ରସର ହେବାଭଳି ଲୋକ ଆମ ଭିତରେ କେତେଜଣ ଅଛନ୍ତି ? ଖୁବ୍ ମୁଷ୍ଟିମେୟ ଅବଶ୍ୟ, ତାଙ୍କର ସଂଖ୍ୟା ଆଙ୍ଗୁଠିରେ ଗଣି ହେବ । ଆମ ଭିତରୁ ଯେଉଁମାନେ ଅନ୍ୟର ହିତ ସାଧନ କରୁଛନ୍ତି ବୋଲି ଭାବନ୍ତି —

ସେମାନେ ବାଧ୍ୟ ହୋଇ ତାହା କରୁଛନ୍ତି । କାରଣ ସେମାନେ ସେତକ ନ କରି ରହିପାରିବେ ନାହିଁ । ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଆମେ କ୍ରମାଗତ ତଡ଼ାଖାଉଛୁ, ତା' ଫଳରେ ଆମେ ଅଗ୍ରସର ହେଉଛୁ । ଆମର କରିବା କ୍ଷମତା ବା କେତେ ? ଜଗତ ଯେମିତି ଥିଲା ସେମିତି ରହିବ । ପୃଥିବୀ ସେମିତି ରହିବ, ଖୁବ୍ ହେଲେ ଏହାର ରଙ୍ଗ ଟିକିଏ ବଦଳି ଯାଇପାରେ । ନାଲି ଥିଲା—ବାଦାମୀ ହୋଇଯାଇପାରେ । ବାଦାମୀରୁ ପୁଣି ନାଲି ହୋଇଯାଇପାରେ । ଗୋଟିଏ ଖୁସି ଜାଗାରେ ଆଉ ଗୋଟିଏ ଖୁସି, ଗୋଟିଏ ଧରଣର ମନ୍ଦ ଜାଗାରେ ଅନ୍ୟ ଧରଣର ମନ୍ଦ—ଏହିଭଳି ଗୋଟିଏ ଧାରା ଚାଲିଛି । ତୁମେ ଯାହାକୁ ଛଅଣା – ଆମେ ତାକୁ କହୁଛୁ 'ଅଧଡଜନ' । ଅରଣ୍ୟରେ ବୁଲୁଥିବା ଆମେରିକାର ଅସଭ୍ୟ ଲୋହିତ ଭାରତୀୟମାନେ, ତୁମମାନଙ୍କ ଭଳି ଦର୍ଶନଶାସ୍ତ୍ରସମ୍ବନ୍ଧୀୟ ବକ୍ତୃତା ଶୁଣିପାରନ୍ତି ନାହିଁ; କିନ୍ତୁ ସେମାନେ ଭଲଭାବରେ ତୁମଠାରୁ ଖାଦ୍ୟ ହଜମ କରିପାରନ୍ତି । ତୁମେ ତାଙ୍କ ଭିତରୁ ଜଣକୁ ହାଣି ଖଣ୍ଡ ଖଣ୍ଡ କରି ଦିଅ—ଅଳ୍ପଦିନ ଭିତରେ ଦେଖିବ, ସେ ବେଶ୍ ସୁସ୍ଥ ହୋଇ ଉଠି ଚାଲିବୁଲି କଲାଣି; କିନ୍ତୁ ଆମର ଯଦି କାହାର ଦେହରେ ସାମାନ୍ୟ ଟିକିଏ ଖଣ୍ଡିଆ ଖାଦିଏ ହୁଏ, ତା'ହେଲେ ଛଅମାସକାଳ ହାସପାତାଳରେ ପଡ଼ିବାକୁ ହେବ ।

ଜୀବଦେହ ଯେତେ ନିମ୍ନସ୍ତରର ହେବ, ତା'ର ଇନ୍ଦ୍ରିୟସୁଖ ସେତେ ତୀବ୍ରତର ହେବ । ନିମ୍ନସ୍ତରର ପ୍ରାଣୀ ଓ ସେମାନଙ୍କର ସ୍ପର୍ଶଶକ୍ତିର କଥା ଭାବି ତ ଦେଖି ! ସେମାନଙ୍କର ସ୍ପର୍ଶେନ୍ଦ୍ରିୟ ଖୁବ୍ ତୀକ୍ଷ୍ଣ । ମନୁଷ୍ୟ କ୍ଷେତ୍ରରେ ବି ଦେଖ, ଯେଉଁ ଲୋକ ସଭ୍ୟତାର ଯେତେ ନିମ୍ନସ୍ତରରେ ଅଛି, ତା'ର ଇନ୍ଦ୍ରିୟର ଶକ୍ତି ମଧ୍ୟ ସେତେ ପ୍ରବଳ ହୋଇଥାଏ । ଜୀବଦେହ ଯେତେ ଉଚ୍ଚ ଶ୍ରେଣୀର ହେବ, ଇନ୍ଦ୍ରିୟ-ସୁଖର ପରିମାଣ ମଧ୍ୟ ସେତିକି କମ୍ ହୋଇଯିବ । କୁକୁର ଗାବୁ ଗାବୁ କରି ଖାଇଲାବେଳେ ଖୁବ୍ ଆନନ୍ଦ ପାଏ । କିନ୍ତୁ ଆଧ୍ୟାତ୍ମିକ ଭାବନାନୁଭୂତିର ଅନୁପମ ଆନନ୍ଦ ସେ କାହୁଁ ପାଇବ ? ତୁମେ ବୁଦ୍ଧିରୁ ଯେଉଁ ଆଶ୍ଚର୍ଯ୍ୟ ଆନନ୍ଦ ଅନୁଭବ କରୁ, ସେଥିରୁ ସେ ବଞ୍ଚିତ । ଇନ୍ଦ୍ରିୟଜନିତ ସୁଖ ଖୁବ୍ ତୀବ୍ର । କିନ୍ତୁ ବୁଦ୍ଧିରୁ ଜାତ ଯେଉଁ ସୁଖ ତାହା ତୀବ୍ରତର । ତୁମେ ଯେତେବେଳେ ପ୍ୟାରିସ୍‌ରେ ପଚାଶ ରକମର ବ୍ୟଞ୍ଜନ ପରିବେଷିତ କୌଣସି ଭୋଜରେ ଯୋଗଦାନ କର, ତାହା ଖୁବ୍ ସୁଖକର । କିନ୍ତୁ ମାନମନ୍ଦିରକୁ ଯାଇ ନକ୍ଷତ୍ରମାନଙ୍କୁ ପର୍ଯ୍ୟବେକ୍ଷଣ କରିବା, ଗ୍ରହମାନଙ୍କର ଆବିର୍ଭାବ ଓ ଗତିବିକାଶାଦି ଦର୍ଶନ କରିବା—ଏସବୁ କଥା ଭାବି ଦେଖ ତ ! ଏ ଆନନ୍ଦ ନିଶ୍ଚୟ ବିପୁଳତର । ମୁଁ ଜାଣେ, ଯେତେବେଳେ ତୁମେ ଏତେ ଆନନ୍ଦନିମଗ୍ନ ଥାଅ ଯେ ପାନାହାରର କଥା ମଧ୍ୟ ଭୁଲିଯାଇଥାଅ । ସେ ସୁଖ ନିଶ୍ଚୟ ପାର୍ଥିବ ସୁଖ ଅପେକ୍ଷା ଅଧିକ । ତୁମେମାନେ ସେତେବେଳେ ସ୍ତ୍ରୀପୁତ୍ର, ସ୍ୱାମୀ ସବୁ କିଛି ଭୁଲିଯାଅ । ଇନ୍ଦ୍ରିୟପ୍ରତ୍ୟକ୍ଷ ଜଗତ ସେତେବେଳେ ଭୁଲି ହୋଇଯାଏ । ଏହାକୁ କହନ୍ତି ବୁଦ୍ଧିଜ ସୁଖ । ସାଧାରଣ ବୁଦ୍ଧିରେ ବୁଝାଯାଏ ଯେ, ଏହି ସୁଖ ଇନ୍ଦ୍ରିୟସୁଖ ଅପେକ୍ଷା ନିଶ୍ଚୟ ତୀବ୍ରତର । ଆମେ ସର୍ବଦା ବଡ଼ ସୁଖ ପାଇଁ ଛୋଟ ସୁଖ ତ୍ୟାଗ କରିଥାଉ । ଏହି ମୁକ୍ତି ବା ବୈରାଗ୍ୟଲାଭ ହିଁ ହେଲା କାର୍ଯ୍ୟରେ ପରିଣତ ଧର୍ମ; ତେଣୁ କହୁଛି—ବୈରାଗ୍ୟ ଅବଲମ୍ବନ କର ।

ଶ୍ରେଷ୍ଠକୁ ତ୍ୟାଗ କର । ତାହାଦ୍ୱାରା ବଡ଼କୁ ପାଇପାରିବ । ସମାଜର ଭିତ୍ତି କେଉଁଠି ? ନ୍ୟାୟ, ନୀତି ଓ ଆଇନ ଭିତରେ ତ ? ତା'ହେଲେ ତ୍ୟାଗକର । ପ୍ରତିବେଶୀର ସମ୍ପତ୍ତି ଅପହରଣ କରିବାର ଇଚ୍ଛା ପରିତ୍ୟାଗ କର, ପ୍ରତିବେଶୀ ଉପରେ ହସ୍ତକ୍ଷେପ କରିବାର ପ୍ରଲୋଭନ ପରିହାର କର । ମିଥ୍ୟା କହି ଅନ୍ୟକୁ ପ୍ରବଞ୍ଚନା କରିବାର ସୁଖକୁ ବର୍ଜନ କର । ନୈତିକତା କଅଣ ସମାଜର ଭିତ୍ତି ନୁହେଁ ? ବ୍ୟଭିଚାର ପରିହାର କରିବା ବ୍ୟତୀତ ବିବାହର ଆଉ ଅନ୍ୟ ଅର୍ଥ କ'ଣ ଅଛି ? ବର୍ବର ତ ବିବାହ କରେ ନାହିଁ । ମନୁଷ୍ୟ ବିବାହ କରେ, କାରଣ ସେ ତ୍ୟାଗ ଲାଗି ପ୍ରସ୍ତୁତ । ସବୁ କ୍ଷେତ୍ରରେ ସେହି ଏକା କଥା । ତ୍ୟାଗ କର, ବୈରାଗ୍ୟ ଅବଲମ୍ବନ କର, ପରିହାର କର, ପରିତ୍ୟାଗ କର—ଶୂନ୍ୟ ନିମିତ୍ତ ନୁହେଁ, ନାସ୍ତିବାଦ ଲାଗି ନୁହେଁ—କିନ୍ତୁ ଶ୍ରେୟୋଲାଭ ନିମିତ୍ତ ଏସବୁ କର । କିନ୍ତୁ ଏ କଥା କିଏ ପାରିବ ? ଶ୍ରେୟୋଲାଭର ପୂର୍ବରୁ ତୁମେ ତାହା ପାରିବ ନାହିଁ । ମୁହଁରେ କହିପାର । ପ୍ରୟାସ କରିପାର । ଅନେକ କିଛି କରିବାର ଚେଷ୍ଟା ମଧ୍ୟ କରିପାର, କିନ୍ତୁ ଏକଥା ସତ ଯେ, ଶ୍ରେୟୋଲାଭ ହେଲେ ବୈରାଗ୍ୟ ଆପେ ଆସି ଉପସ୍ଥିତ ହୁଏ । ଅଶ୍ରେୟ ସେତେବେଳେ ଆପଣାଛାଏଁ ଝରିପଡେ । ଏହାକୁ ହିଁ କୁହାଯାଏ 'କାର୍ଯ୍ୟରେ ପରିଣତ ଧର୍ମ' । ଏହାଛଡ଼ା ପଥ ମାର୍ଜନା କରିବା କିମ୍ବା ଆରୋଗ୍ୟ-ନିକେତନ ନିର୍ମାଣ କରିବା ବିଷୟକୁ ଆଉ କଅଣ କହିବା ? ଯେତିକି ବୈରାଗ୍ୟ ଏସବୁ କର୍ମର ମୂଳରେ ଅଛି, ସେହି ଅନୁସାରେ ଏସବୁକର୍ମର ମୂଲ୍ୟାମୂଲ୍ୟ ବିଚାର କରିବାକୁ ହେବ । ବୈରାଗ୍ୟର ମଧ୍ୟ କେଉଁଠି ସୀମାରେଖା ନାହିଁ । ସେଇଠି ମୁସ୍କିଲ ହୁଏ, ଯେଉଁଠି କେହି ସୀମାଟିଏ ଟାଣି ଦେଇ କହେ—ଏହି ପର୍ଯ୍ୟନ୍ତ, ଆଉ ଅଧିକ ନୁହେଁ । କିନ୍ତୁ ସତ କଥା ହେଲା—ଏ ବୈରାଗ୍ୟର ସୀମା ନାହିଁ ।

ଯେଉଁଠି ଈଶ୍ୱର ଅଛନ୍ତି, ସେଠି ଆଉ କିଛି ନାହିଁ । ଯେଉଁଠି ସାଂସାରିକତା ଅଛି, ସେଠାରେ ଈଶ୍ୱର ନାହାନ୍ତି । ଏ ଉଭୟର କେଉଁ ଜାଗାରେ ମିଳନ ହେବ ନାହିଁ । ଯେପରି ଆଲୁଅ ଆଉ ଅନ୍ଧକାରର । ଏହି କଥା ତ ମୁଁ ବୁଝିଛି ଖ୍ରୀଷ୍ଟଧର୍ମ ଓ ତା'ର ପ୍ରଥମ ପ୍ରଚାରକମାନଙ୍କ ଜୀବନୀ ଅଧ୍ୟୟନ କରି । ବୌଦ୍ଧଧର୍ମ ବି କ'ଣ ସେଇଆ ନୁହେଁ କି ? ଏହି କଥା କଅଣ ସବୁ ଋଷି ଆଉ ଆଚାର୍ଯ୍ୟମାନେ କହି ନାହାନ୍ତି ? ଯେଉଁ ସଂସାରକୁ ବର୍ଜନ କରିବାକୁ ହେବ, ତାହା କଅଣ ? ତାହା ଏହିଠାରେ ହିଁ ଅଛି । ମୁଁ ମୋ ସାଙ୍ଗରେ ମୋ ସଂସାରକୁ ନେଇ ବୁଲୁଛି । ମୋର ଏହି ଶରୀର ହିଁ ହେଲା ମୋର ସଂସାର । ଏହି ଦେହ ପାଇଁ, ଏହି ଦେହକୁ ଟିକିଏ ଭଲରେ ବା ସୁଖରେ ରଖିବା ପାଇଁ ମୁଁ ମୋ ପ୍ରତିବେଶୀ ଉପରେ ଉତ୍ପୀଡ଼ନ କରିଥାଏ । ଏହି ଦେହ ଲାଗି ମୁଁ ଅନ୍ୟର କ୍ଷତିସାଧନ କରେ, ଭୁଲଭ୍ରାନ୍ତି ମଧ୍ୟ କରେ ।

କେତେ ମହାମାନବଙ୍କର ଦେହତ୍ୟାଗ ହୋଇଛି । କେତେ ଦୁର୍ବଳଚିତ୍ତ ମଣିଷ, ମୃତ୍ୟୁ-କବଳିତ ହୋଇଛନ୍ତି । କେତେ ଦେବତା ମଧ୍ୟ ମୃତ୍ୟୁବରଣ କରିଛନ୍ତି । ମୃତ୍ୟୁ, ମୃତ୍ୟୁ —ସର୍ବତ୍ର ମୃତ୍ୟୁ ହିଁ ବିରାଜମାନ କରୁଛି । ଏହି ପୃଥିବୀ ଅନାଦି ଅତୀତର ଏକ ଶ୍ମଶାନକ୍ଷେତ୍ର, ତଥାପି ଆମେ ଏହି ଦେହକୁ ହିଁ ଜାବୁଡ଼ି ଧରିଥାଉ—ଆଉ କହୁଁ "ମୁଁ କେବେହେଲେ

ମରିବି ନାହିଁ ।'' ମୁଁ ଠିକ୍ ଜାଣେ ଯେ ଦେହର ମୃତ୍ୟୁ ଅବଶ୍ୟମ୍ଭାବୀ । ଅଥଚ ଏହାକୁ ହିଁ ଆଙ୍କୁଡ଼ି ଧରିଥାଏ । ଠିକ୍ ଅମର ଯଦି କିଛି ଥାଏ, ତାହା ହେଲା ଆତ୍ମା । ଅଥଚ ଆମେ ଧରିଥାଉ ଏହି ସ୍ଥୂଳ ଦେହଟାକୁ, ଏହିଠାରେ ଭୁଲ ରହିଯାଏ ।

ତୁମେମାନେ ସମସ୍ତେ ଜଡ଼ବାଦୀ । କାରଣ ତୁମେ ସମସ୍ତେ ବିଶ୍ୱାସ କର ଯେ, ତୁମେ କେବଳ ଦେହ । କେହି ଯଦି ମୋର ଶରୀର ଉପରେ ବିଧାଟାଏ ମାରେ, ତେବେ ମୁଁ କହୁଛି ଯେ ମୋତେ ବିଧା ମରା ହେଲା । ମୋର ଶରୀର ଉପରେ ପ୍ରହାର ବସିଲେ ମୁଁ ଭାବେ ମୁଁ ପ୍ରହୃତ ହେଉଛି । ମୁଁ ଯଦି ନିଜକୁ ଶରୀର ବୋଲି ନ ଭାବୁଥାନ୍ତି, ତେବେ ଏପରି କହନ୍ତି କାହିଁକି ? ଯଦିଓ ମୁଁ କେବଳ ମୁହଁରେ ନିଜକୁ ଆତ୍ମା ବୋଲି କହେ— ତା'ହେଲେ ମଧ୍ୟ ସେଥିରେ କିଛି ପାର୍ଥକ୍ୟ ହୁଏ ନାହିଁ । କାରଣ ଠିକ୍ ସେହି ମୁହୂର୍ତ୍ତଟି ପାଇଁ ମୁ ଶରୀର । ମୁଁ ନିଜକୁ ଜଡ଼ବସ୍ତୁରେ ପରିଣତ କରିଛି । ଏଥିପାଇଁ ମୋତେ ଏହି ଶରୀର ପରିତ୍ୟାଗ କରିବାକୁ ପଡ଼ିବ । ତା' ପରିବର୍ତ୍ତେ ମୁଁ ସ୍ୱରୂପତଃ ଯାହା, ତା'ର ଚିନ୍ତା କରିବାକୁ ହେବ । ମୁଁ ଆତ୍ମା—ସେହି ଆତ୍ମା, ଯାହାକୁ କୌଣସି ଅସ୍ତ୍ର ଛେଦନ କରିପାରେନା—କୌଣସି ତରବାରି ଖଣ୍ଡିତ କରିପାରେନା—ଅଗ୍ନି ଦହନ କରିପାରେନା - ପବନ ଶୁଷ୍କ କରିପାରେନା । ମୁଁ ଜନ୍ମରହିତ, ସୃଷ୍ଟିରହିତ, ଅନାଦି, ଅଖଣ୍ଡ, ମୃତ୍ୟୁହୀନ ଜନ୍ମହୀନ ଏବଂ ସର୍ବବ୍ୟାପୀ—ଏହା ହିଁ ମୋର ପ୍ରକୃତ ସ୍ୱରୂପ । ସମସ୍ତ ଦୁଃଖ-ଉତ୍ପତ୍ତିର କାରଣ ହେଲା—ମୁଁ ମନେକରେ ଯେ ମୁଁ ଖଣ୍ଡିଏ ମାଟିଢେଲା । ମୁଁ ନିଜକୁ ଜଡ଼ ସହିତ ଏକ କରି ପକାଇଛି । ତେଣୁ ତା'ର ଫଳ ଏହିପରି ଭୋଗ କରୁଛି ।

କାର୍ଯ୍ୟରେ ପରିଣତ ଧର୍ମ ହେଲା ନିଜକୁ ଆତ୍ମା ସହିତ ଏକ କରିବା । ଏହା ବ୍ୟତୀତ, ଅନ୍ୟସବୁ ଭ୍ରମାତ୍ମକ ଅଧ୍ୟାସ-ଚିନ୍ତା ପରିହାର କର । ଏ ଦିଗରେ ଭଲା ତୁମେ କେତେଦୂର ଅଗ୍ରସର ହୋଇଛ ? ତୁମେ ହୁଏତ ଦୁଇହଜାର ଆରୋଗ୍ୟ-ନିକେତନ ନିର୍ମାଣ କରିସାରିଛ । କିନ୍ତୁ ସେଥିରେ କ'ଣ ବା ଯାଏ ଆସେ ? ଏସବୁଦ୍ୱାରା ଯଦି ତୁମର ଆତ୍ମାନୁଭୂତି ଲାଭ ହୋଇ ନାହିଁ, ତେବେ ସେସବୁ କର୍ମର ବିଶେଷ କିଛି ମୂଲ୍ୟ ନାହିଁ । ତୁମେ ସାମାନ୍ୟ କୁକୁରର ଅନୁଭୂତି ନେଇ ଶେଷରେ ହୁଏତ ଏହି ମାନବଜନ୍ମ ସମ୍ବରଣ କରିବ । କୁକୁର ମୃତ୍ୟୁ ସମୟରେ ଚିତ୍କାର କରେ ଆଉ କାନ୍ଦେ । କାରଣ ସେ ଜାଣେ ଯେ, ସେ ଜଡ଼ବସ୍ତୁ ଏବଂ ସେ ନିଃଶେଷ ହୋଇଯାଉଛି ।

ତୁମେ ତ ଜାଣ ଯେ ମୃତ୍ୟୁ ଅନିର୍ବାର୍ଯ୍ୟ । ମୃତ୍ୟୁ ସର୍ବତ୍ର ବିରାଜମାନ —ଜଳରେ, ପବନରେ, ପ୍ରାସାଦରେ ବନ୍ଦୀଶାଳାରେ—ସର୍ବତ୍ର । କେଉଁ ବସ୍ତୁ ତୁମକୁ ଅଭୟ ଦେବ ? ତୁମେ ସେତିକିବେଳେ ଅଭୟ ପାଇବ, ଯେତେବେଳେ ତୁମେ ତୁମର ସ୍ୱରୂପ ଜାଣିପାରିବ । ସେତେବେଳେ ତୁମେ ଜାଣିବ ଯେ, ତୁମେ ଅସୀମ, ଜନ୍ମହୀନ, ମୃତ୍ୟୁହୀନ ଆତ୍ମା । ଆତ୍ମାକୁ ଅଗ୍ନି ଦହନ କରିପାରେନା, କୌଣସି ଅସ୍ତ୍ର ହତ୍ୟା, କରିପାରେନା, କୌଣସି ବିଷ ଜର୍ଜରିତ କରିପାରେନା । ମନେକରନା ଯେ, ଧର୍ମ କେବଳ ଗୋଟିଏ ମତବାଦ, କେବଳ ଶାସ୍ତ୍ରଜ୍ଞାନ । ଧର୍ମ କେବଳ ଶୁକପକ୍ଷୀର ମୁଖସ୍ଥ ବୋଲି ମାତ୍ର ନୁହେଁ । ମୋର ଜ୍ଞାନବୃଦ୍ଧ ଗୁରୁଦେବ

କହୁଥିଲେ—ଶୁଆକୁ ଯେତେ 'ହରିବୋଲ୍' 'ହରିବୋଲ୍' ଶିଖାଅ ନା କାହିଁକି, ବିଲେଇ ଯେତେବେଳେ ତା'ର ବେକକୁ କାମୁଡ଼ି ଧରିବ, ସେତେବେଳେ ଶୁଆର ସେ ଶବ୍ଦ ଆଉ ମନେପଡ଼ିବ ନାହିଁ । ତୁମେ ଚବିଶ ଘଣ୍ଟା ପ୍ରାର୍ଥନା କରିପାର—ଜଗତର ସବୁ ଶାସ୍ତ୍ର ଅଧ୍ୟୟନ କରିପାର, ଯେତେ ଦେବତା ଅଛନ୍ତି, ସମସ୍ତଙ୍କର ପୂଜା କରିପାର, କିନ୍ତୁ ଯେତେବେଳଯାଏ ଆତ୍ମାନୁଭୂତି ନ ହୋଇଛି, ସେତେବେଳଯାଏ ମୁକ୍ତି ନାହିଁ । ବାଗାଡ଼ମ୍ବର ନୁହେଁ, ତତ୍ତ୍ୱାଲୋଚନା ନୁହେଁ, ଯୁକ୍ତିତର୍କ ନୁହେଁ, ଲୋଡ଼ା ଅନୁଭୂତି । ଏହାକୁ ହିଁ ମୁଁ କହେ—ବାସ୍ତବ ଜୀବନରେ ପରିଣତ ଧର୍ମ ।

ପ୍ରଥମେ ଆତ୍ମା ସମ୍ପର୍କରେ ଏହି ସତ୍ୟ ଶ୍ରବଣ କରିବାକୁ ହେବ । ଯଦି ଶ୍ରବଣ କରିଥାଅ, ତା'ପରେ ମନନ କର । ମନନ କରିସାରିଲେ ଧ୍ୟାନ କର । ବୃଥା ତର୍କବିତର୍କର ନିଷ୍ପ୍ରୟୋଜନ । ଥରକରେ ନିଶ୍ଚିନ୍ତ ହୋଇଯାଅ, ତୁମେ ସେହି ଅସୀମ ଆତ୍ମା । ତାହା ଯଦି ସତ୍ୟ ହୁଏ, ତା'ହେଲେ ନିଜକୁ ଦେହ ବୋଲି ଭାବିବା ତ ମୂର୍ଖତା ! ତୁମେ ତ ଆତ୍ମା—ଏବଂ ଏହି ଆତ୍ମାନୁଭୂତି ହିଁ ଲାଭ କରିବାକୁ ହେବ । ଆତ୍ମା ନିଜକୁ ଆତ୍ମାରୂପେ ଦେଖିବ । ବର୍ତ୍ତମାନ ଆତ୍ମା ନିଜକୁ ଦେହରୂପେ ଦେଖୁଛି । ତାହା ବନ୍ଦ କରିବାକୁ ହେବ । ଯେଉଁ ମୁହୂର୍ତ୍ତରେ ତାହା ଅନୁଭବ କରିବାକୁ ଆରମ୍ଭ କରିବ, ସେହି ମୁହୂର୍ତ୍ତରେ ତୁମେ ମୁକ୍ତ ହେବ ।

ତୁମେମାନେ ଏହି କାଚଟିକୁ ଦେଖୁଛ । ତୁମେମାନେ ଜାଣ—ଏହା ଭ୍ରାନ୍ତିମାତ୍ର । କୌଣସି ବୈଜ୍ଞାନିକ ହୁଏତ ତୁମକୁ କହିବ—ଏହା କେବଳ ଆଲୋକ ଓ ସ୍ପନ୍ଦନ··· । ଆତ୍ମଦର୍ଶନ ଏହା ଅପେକ୍ଷା ନିଶ୍ଚୟ ଅଧିକ ପରିମାଣରେ ସତ୍ୟ, ଏହା ନିଶ୍ଚୟ ଏକମାତ୍ର ବାସ୍ତବ ଅବସ୍ଥା, ଏକମାତ୍ର ସତ୍ୟ-ସଂବେଦନା, ଏକମାତ୍ର ବାସ୍ତବ ପ୍ରତ୍ୟକ୍ଷ । ଏହିସବୁ ଯାହା ଦେଖିବାକୁ ପାଉଛ— ଏ ସମସ୍ତ ହିଁ ସ୍ୱପ୍ନ । ଆଜିକାଲି ଦିନରେ ତାହା ତୁମେ ଜାଣ । ମୁଁ ପ୍ରାଚୀନ ବିଜ୍ଞାନବାଦୀଙ୍କ କଥା କହୁ ନାହୁଁ । ଆଧୁନିକ ପଦାର୍ଥବିଦ୍ୟାବିତ୍ ମଧ୍ୟ କହିବେ—ଦୃଶ୍ୟମାନ ବସ୍ତୁ ମଧ୍ୟରେ ଅଛି କେବଳ ଆଲୋକସ୍ପନ୍ଦନ । ଆଲୋକସ୍ପନ୍ଦନର ସାମାନ୍ୟ ଇତର-ବିଶେଷଦ୍ୱାରା ହିଁ ସମସ୍ତ ପାର୍ଥକ୍ୟ ଘଟୁଛି ।

ତୁମକୁ ନିଶ୍ଚୟ ଈଶ୍ୱରଦର୍ଶନ କରିବାକୁ ହେବ, ଆତ୍ମାନୁଭୂତି କରିବାକୁ ହେବ ଏବଂ ଏହା ହିଁ ବାସ୍ତବ ଧର୍ମ । ଯୀଶୁଖ୍ରୀଷ୍ଟ କହିଗଲେ—"ଯେଉଁମାନଙ୍କର ଚିତ୍ତ ବିନୀତ ଓ ନମ୍ର, ସେମାନେ ଧନ୍ୟ । କାରଣ ସେହିମାନେ ସ୍ୱର୍ଗରାଜ୍ୟପ୍ରାପ୍ତ ହେବେ ।" ବାସ୍ତବଧର୍ମ ବୋଲି ତ ତୁମେମାନେ ଆଉ ଏତିକି ମାନିବାକୁ ଚାହୁଁ ନାହଁ ! ତାଙ୍କର ଏ ଉପଦେଶ କ'ଣ କେବଳ ଏକ ତାମସା ବିଷୟ ବୋଲି ଭାବିଛ ? ତା'ହେଲେ ବାସ୍ତବଧର୍ମ କହିଲେ ତୁମେମାନେ କ'ଣ ବୁଝ ? ତୁମମାନଙ୍କର ଏହି ତଥାକଥିତ ବାସ୍ତବତାରୁ ଈଶ୍ୱର ମୋତେ ରକ୍ଷା କରନ୍ତୁ । "ଯେଉଁମାନେ ଶୁଦ୍ଧଚିତ୍ତ, ସେମାନେ ଧନ୍ୟ, କାରଣ ସେମାନେ ଈଶ୍ୱରଦର୍ଶନ କରିବେ ।" ଏଥିରୁ କିଅଣ ପଥ ପରିଷ୍କାର କରିବା, ଆରୋଗ୍ୟଭବନ ନିର୍ମାଣ କରିବା କଥା ପ୍ରଭୃତିକୁ ବୁଝାଏ ? ଯେତେବେଳେ ଶୁଦ୍ଧ ଚିତ୍ତରେ ଏ ସମସ୍ତ ଅନୁଷ୍ଠାନ କରାଯାଏ, ସେତେବେଳେ

ଏହା ସତ୍କର୍ମ । କୋଡ଼ିଏ ଡଲାର ଦାନ କରି ନିଜର ନାମ ପ୍ରକାଶିତ ହେବାର ଦେଖିବା ପାଇଁ ସାନ୍‌ଫ୍ରାନ୍‌ସିସ୍କୋର ସମସ୍ତ ସମ୍ବାଦପତ୍ର କିଣିବାକୁ ଯିବା ବାତୁଳତା ମାତ୍ର । ନିଜ ଧର୍ମଗ୍ରନ୍ଥରେ କ'ଣ ଆପଣମାନେ ପଢ଼ି ନାହାନ୍ତି ଯେ, କେହି ତୁମକୁ ସାହାଯ୍ୟ କରିବେ ନାହିଁ ବୋଲି ? ଈଶ୍ୱରଙ୍କୁ ଉପାସନା କରିବାର ମନୋଭାବ ନେଇ ଈଶ୍ୱରଙ୍କୁ ଦରିଦ୍ର, ଦୁଃଖୀ ଓ ଦୁର୍ବଳମାନଙ୍କ ଭିତରେ ସେବା କର । ତାହା ସମ୍ପନ୍ନ କରିପାରିଲେ ଫଳପ୍ରାପ୍ତି ଗୌଣ କଥା । ଲାଭର ବାସନା ନ ରଖି ଏହି ଧରଣର କର୍ମ ଅନୁଷ୍ଠାନ କଲେ, ଆତ୍ମାର ମଙ୍ଗଳ ସାଧିତ ହୁଏ ଏବଂ ଏହିଭଳି ଲୋକଙ୍କର ସ୍ୱର୍ଗରାଜ୍ୟ ଲାଭ ହୁଏ । ଏହି ସ୍ୱର୍ଗରାଜ୍ୟ ଆମ ଭିତରେ ହିଁ ରହିଛି । ଯେ ସକଳ ଆତ୍ମାର ଆତ୍ମା, ସେ ଏହିଠାରେ ହିଁ ବିରାଜମାନ କରନ୍ତି । ତାଙ୍କୁ ନିଜ ଅନ୍ତର ଭିତରେ ଉପଲବ୍ଧି କର । ତାଙ୍କୁ ହିଁ ବୁଝାଯିବ ଯଥାର୍ଥ କାର୍ଯ୍ୟରେ ପରିଣତ ଧର୍ମ । ତାହା ହିଁ ମୁକ୍ତି । ପରସ୍ପରକୁ ପ୍ରଶ୍ନ କରି ଦେଖାଯାଉ - ଆମେ କଏ କେତେଦୂର ଏ ପଥରେ ଅଗ୍ରସର ହୋଇପାରିଛୁ—ଆମେ କେତେଦୂର ଏହି ଦେହର ଉପାସକ, କେତେ-ଆମେ ପରମାତ୍ମାସ୍ୱରୂପ ଭଗବାନଙ୍କଠାରେ ଠିକ୍ ବିଶ୍ୱାସ ରଖିଛୁ ! ଏବଂ କେତେଦୂର ମଧ୍ୟ ଆମକୁ ଆମେ ଆତ୍ମା ବୋଲି ବିଶ୍ୱାସ କରିପାରିଛୁ ! ଏତକ ହେଲେ ଆମେ ଯଥାର୍ଥରେ ହିଁ ସ୍ୱାର୍ଥଶୂନ୍ୟ ହୋଇପାରିବୁ । ଏହା ହିଁ ମୁକ୍ତି । ଏହା ହିଁ ପ୍ରକୃତ ଈଶ୍ୱର-ଉପାସନା । ଆତ୍ମାକୁ ଉପଲବ୍ଧି କର । ତାହା ହିଁ ଏକମାତ୍ର କର୍ତ୍ତବ୍ୟ । ନିଜେ ସ୍ୱରୂପତଃ ଯାହା, ଅର୍ଥାତ୍ ନିଜକୁ ଅସୀମ ଆତ୍ମାରୂପେ ଜାଣିବା, ତାହା ହିଁ ବାସ୍ତବ ଧର୍ମ । ଆଉ ଯାହାସବୁ—ସମସ୍ତ ଅବାସ୍ତବ । କାରଣ ଆଉ ଯାହା କିଛି ଅଛି, ସମସ୍ତ ବିଲୁପ୍ତ ହୋଇଯିବ । ଏକମାତ୍ର ଆତ୍ମା ହିଁ କେବେ ବିଲୁପ୍ତ ହେବ ନାହିଁ । ଆତ୍ମା ହିଁ ଶାଶ୍ୱତ, ତୁମର ଆରୋଗ୍ୟ ନିକେତନ ଦିନେ ଭୁଷୁଡ଼ି ପଡ଼ିବ । ଯେଉଁମାନେ ରେଳପଥ-ନିର୍ମାତା, ସେମାନେ ବି ଦିନେ ମୃତ୍ୟୁମୁଖରେ ପଡ଼ିବେ । ଏହି ପୃଥିବୀ ଖଣ୍ଡ ଖଣ୍ଡ ହୋଇ ଉଡ଼ିଯିବ—ସୂର୍ଯ୍ୟ ମଧ୍ୟ ନିଶ୍ଚିହ୍ନ ହୋଇଯିବ । କିନ୍ତୁ ଆତ୍ମା ଚିରକାଳ ବିରାଜମାନ ଥିବ ।

କେଉଁଟା ଶ୍ରେୟ ? ଏହିସବୁ ଧ୍ୱଂସଶୀଳ ବସ୍ତୁର ପଶ୍ଚାଦ୍‌ଧାବନ, ନା ଚିର ଅପରିବର୍ତ୍ତନୀୟର ଉପାସନା ? କେଉଁଟି ଅଧିକ ବାସ୍ତବ ? ତୁମ ଜୀବନର ସମସ୍ତ ଶକ୍ତି ପ୍ରୟୋଗ କରି ଯେଉଁସବୁ ବସ୍ତୁ ଆୟତ୍ତ କଲ, ସେଗୁଡ଼ିକ ଆୟତ୍ତାଧୀନ ହେବା ପୂର୍ବରୁ ପରିତ୍ୟାଗ କରିଯିବା କ'ଣ ଶ୍ରେୟ ? ସେହି ବିଖ୍ୟାତ ଦିଗ୍‌ବିଜୟୀଙ୍କ ଭାଗ୍ୟରେ କଅଣ ଘଟିଲା ସ୍ମରଣ ଅଛି ତ ? ସେ ସବୁ ଦେଶ ଜୟ କଲେ । ପରେ ଯେତେବେଳେ ମୃତ୍ୟୁକାଳ ଉପସ୍ଥିତ ହେଲା, ଅନୁଚରମାନଙ୍କୁ ଆଦେଶ ଦେଲେ, "ମୋ ସମ୍ମୁଖରେ କଳସୀପୂର୍ଣ୍ଣ ଦ୍ରବ୍ୟସମ୍ଭାର ସଜ୍ଜିତ କରି ରଖ ।" ତା'ପରେ କହିଲେ—"ସେହି ବଡ଼ ହୀରକଖଣ୍ଡଟି ନେଇ ଆସ ।" ସେତେବେଳେ ସେହିଟିକୁ ବକ୍ଷରେ ସ୍ଥାପନ କରି ସେ କାନ୍ଦିବାକୁ ଲାଗିଲେ । ଏହିରୂପେ କ୍ରନ୍ଦନ କରି କରି ସେ ଦେହତ୍ୟାଗ କଲେ । ଗୋଟିଏ କୁକୁର ମଧ୍ୟ ଠିକ୍ ଏପରି ପ୍ରାଣତ୍ୟାଗ କରେ ।

ମନୁଷ୍ୟ ସଦର୍ପରେ କହେ—"ମୁଁ ବଞ୍ଚିଅଛି ।" ସେ ଜାଣେ ନାହିଁ ଯେ, ମୃତ୍ୟୁ-

ଭଯ୍ସରେ ଭୀତ ହୋଇ ସେ ଏ ଜୀବନକୁ ଜାକି ଧରିଛି । ମଣିଷ କହେ—"ମୁଁ ସମ୍ଭୋଗ କରୁଛି ।" ସେ କେବେ ବି ବୁଝିପାରେ ନାହିଁ ଯେ ପ୍ରକୃତି ତାକୁ ଦାସ କରି ରଖିଛି ।

ପ୍ରକୃତି ଆମ ସମସ୍ତଙ୍କୁ ପେଷଣ କରି ଚାଲିଛି । ଯେତିକି ସୁଖ-କଣିକା ପାଇଛ, ତା'ର ହିସାବ କରି ଦେଖ, ଶେଷପର୍ଯ୍ୟନ୍ତ ଦେଖିବ—ପ୍ରକୃତି ତୁମ ମାଧ୍ୟମରେ ତା' କାର୍ଯ୍ୟ କରାଇ ନେଉଛି ଏବଂ ଯେତେବେଳେ ତୁମର ମୃତ୍ୟୁ ହେବ, ସେତେବେଳେ ତୁମର ଶରୀର-ଦ୍ୱାରା ଅନ୍ୟ ବୃକ୍ଷଲତାମାନଙ୍କର ପରିପୁଷ୍ଟି ହେବ । ତଥାପି ଆମେ ସମସ୍ତେ ମନେକରୁଁ, ଆମେ ସ୍ୱାଧୀନଭାବରେ ସୁଖ ପାଉଛୁ । ଏହିପରିଭାବରେ ସଂସାରଚକ୍ର ଆବର୍ତ୍ତିତ ହୋଇ ଚାଲିଛି ।

ସୁତରାଂ ଆତ୍ମାକୁ ଆତ୍ମାରୂପେ ଅନୁଭବ କରିବା ହେଲା ବାସ୍ତବ ଧର୍ମ । ଅନ୍ୟ ସବୁ କିଛି ଯେତିକି ପରିମାଣରେ ଭଲ, ଯେତିକିଦୂର ସେଗୁଡ଼ିକ ଆମକୁ ଏହି ଅତ୍ୟୁତ୍ତମ ଧାରଣାରେ ଉପନୀତ କରାଇପାରେ । ବୈରାଗ୍ୟ ଓ ଧ୍ୟାନଦ୍ୱାରା ସେହି ଅନୁଭୂତି ଲାଭ କରାଯାଏ । ବୈରାଗ୍ୟର ଅର୍ଥ ହେଲା ସମସ୍ତ ଇନ୍ଦ୍ରିୟଜାଲ ଭିତରୁ ବିରତି ଏବଂ ଯେତେସବୁ ଗ୍ରନ୍ଥି, ଯେତେସବୁ ଶୃଙ୍ଖଳ ଆମମାନଙ୍କୁ ଜଡ଼ବସ୍ତୁ ସହିତ ବାନ୍ଧି ରଖେ, ସେଗୁଡ଼ିକୁ ଛିନ୍ନ କରିବା । ମୁଁ ଏହି ଜଡ଼ଜୀବନ ଲାଭ କରିବାକୁ ଚାହେଁ ନାହିଁ; ଏହି ଇନ୍ଦ୍ରିୟଭୋଗର ଜୀବନ କାମନା କରେ ନାହିଁ । ମୁଁ ଉଚ୍ଚତର ବସ୍ତୁକୁ କାମନା କରେ । ଏହା ହିଁ ହେଲା ବୈରାଗ୍ୟ । ଅତଃପର ଆମର ଯେଉଁସବୁ କ୍ଷତି ହୋଇଯାଇଛି, ଧ୍ୟାନଦ୍ୱାରା ତା'ର ପ୍ରତିକାର କରିବାକୁ ହେବ ।

ଆମେମାନେ ପ୍ରକୃତିର ଆଜ୍ଞାନୁରୂପ କାର୍ଯ୍ୟ କରିବାକୁ ବାଧ୍ୟ । ଯଦି ବାହାରେ କେଉଁଠାରେ ଶବ୍ଦ ହୁଏ, ମୋତେ ତାହା ଶୁଣିବାକୁ ହେବ । ଯଦି କିଛି ଘଟିଥାଏ, ମୋତେ ତାହା ଦେଖିବାକୁ ହେବ । ଆମେ ଯେପରି ମାଙ୍କଡ଼, ଆମେ ପ୍ରତ୍ୟେକେ ସତେକି ଦୁଇ-ହଜାର ମାଙ୍କଡ଼ଙ୍କର ଗୋଟିଏ ଗୋଟିଏ ପ୍ରତିନିଧି । ମର୍କଟ ଗୋଟିଏ ଅଦ୍ଭୁତ ପ୍ରାଣୀ । ଫଳତଃ ଆମେମାନେ ଅସହାୟ, ଅଥଚ ଆମେ ପୁଣି କହି ବୁଲୁ—"ଏହା ହିଁ ଆମର ଉପଭୋଗ ।" ଅପୂର୍ବ ଏହି ଭାଷା ! ପୃଥିବୀକୁ ଆମେ ଉପଭୋଗ କରୁଛୁ ସତ । ଆମ ପକ୍ଷରେ ଏହି ଭୋଗ କରିବା ବ୍ୟତୀତ ଗତ୍ୟନ୍ତର ନାହିଁ । ପ୍ରକୃତି ଚାହେଁ ଯେ, ଆମେ ଭୋଗ କରୁଁ । କେଉଁଠାରେ ଗୋଟିଏ ସୁଲଳିତ ଶବ୍ଦ ହେଉଛି—ମୁଁ ତାକୁ ଶୁଣୁଛି । ଯେପରିକି ଏହାକୁ ଶୁଣିବା ନ ଶୁଣିବା ମୋ ହାତରେ ! ପ୍ରକୃତି କହେ—"ଯାଅ, ଦୁଃଖର ଗଭୀରତା ଭିତରେ ବୁଡ଼ିଯାଅ ଏବଂ ମୁହୂର୍ତ୍ତକ ଭିତରେ ମୁଁ ଦୁଃଖରେ କମ୍ପିତ ହୋଇଯାଏ । ଆମେ ଇନ୍ଦ୍ରିୟ ଓ ସମ୍ପଦ ସମ୍ଭୋଗ କରିବା କଥା କହୁଥାଉ । କେହି ହୁଏତ ମୋତେ ଖୁବ୍ ପଣ୍ଡିତ ମନେକରେ । ପୁଣି ଅନ୍ୟ କେହି ହୁଏତ ମନେକରେ—"ଏ ମୂର୍ଖ ।" ଜୀବନରେ ଏହି ଅଧଃପତନ, ଏହି ଦାସତ୍ୱ ଚାଲିଛି । ଅଥଚ ଆମର ସେ ସମ୍ବନ୍ଧରେ କୌଣସି ବୋଧ ନାହିଁ । ଆମେ ଗୋଟିଏ ଅନ୍ଧାରୁଆ ଘରେ ବସି ପରସ୍ପରର ମୁଣ୍ଡକୁ ମୁଣ୍ଡ ଲଢ଼େଇ କରି ମରୁଛୁ ।

ଧ୍ୟାନ କାହାକୁ କହନ୍ତି ? ଧ୍ୟାନ ହେଲା ସେହି ଶକ୍ତି, ଯାହାଦ୍ୱାରା ଆମେ ଏହିସବୁ ପ୍ରତିବନ୍ଧକକୁ ଅତିକ୍ରମ କରିପାରିବାର କ୍ଷମତା ଲାଭ କରିପାରୁ । ପ୍ରକୃତି ଆମକୁ ପ୍ରଲୋଭନ ଦେଖାଇ କହିପାରେ, "ଦେଖ କି ସୁନ୍ଦର ବସ୍ତୁ !" ଆମେ କିନ୍ତୁ ତା' ଆଡ଼କୁ ଗ୍ରହିବୁ ନାହିଁ । ସେତେବେଳେ ସେ ପୁଣି କହିବ—"ଏଇ ଯେ କି ସୁନ୍ଦର ବାସ୍ନା ! ଏହାକୁ ଆଘ୍ରାଣ କର ।" ମୁଁ ମୋର ଘ୍ରାଣେନ୍ଦ୍ରିୟକୁ କହିବି—"ତାକୁ ଆଘ୍ରାଣ କର ନାହିଁ ।" ନାସିକା ଆଉ ତା' କରିବ ନାହିଁ । ଆଖିକୁ କହିବି, "ଦେଖ ନାହିଁ ।" ପ୍ରକୃତି ଗୋଟିଏ ମର୍ମନ୍ତୁଦ କାଣ୍ଡ କରି ବସିଲା । ସେ ମୋର ଗୋଟିଏ ସନ୍ତାନକୁ ହତ୍ୟା କରି କହିଲା—"ହତଭାଗ୍ୟ ! ଏଥର ତୁ ବସି କାନ୍ଦ । ଶୋକସମୁଦ୍ରରେ ଉବୁଟୁବୁ ହେଉଥା ।" ମୁଁ କହିଲି—"ଅସମ୍ଭବ । ମୁଁ ସେକଥା କରିବି ନାହିଁ ।" ମୁଁ ଉଠି ଠିଆହେଲି । ମୋତେ ସ୍ୱାଧୀନ ହେବାକୁ ପଡ଼ିବ । ଏପରିଭାବରେ ମଝିରେ ମଝିରେ ପରୀକ୍ଷା କରି ଦେଖୁ ନାହଁ କାହିଁକି ? ଗୋଟିଏ ମୁହୂର୍ତ୍ତ ଧ୍ୟାନ ଫଳରେ ଏହି ପ୍ରକୃତିରେ ବି ପରିବର୍ତ୍ତନ ଆଣିପାରିବ । ମନେକର ତୁମ ନିଜ ମଧ୍ୟରେ ବି ଯଦି ସେ କ୍ଷମତା ଥାଆନ୍ତା, ତା'ହେଲେ ଏହା କ'ଣ ସ୍ୱର୍ଗସଦୃଶ ହୁଅନ୍ତା ନାହିଁ ? ଏହା ବି କଅଣ ମୁକ୍ତି ହୁଅନ୍ତା ନାହିଁ ? ଏହା ହିଁ ହେଲା ଧ୍ୟାନର ଶକ୍ତି ।

କ'ଣ କରି ଏହାକୁ ଆୟତ୍ତ କରି ହେବ ? ନାନା ଉପାୟରେ ଏହା ହୋଇପାରେ । ପ୍ରତ୍ୟେକଙ୍କ ପ୍ରକୃତିର ନିଜସ୍ୱ ଗତି ଅଛି । କିନ୍ତୁ ସାଧାରଣ ନିୟମ ହେଲା—ମନକୁ ଆୟତ୍ତରେ ଆଣିବା । ମନ ଗୋଟିଏ ଜଳାଶୟସଦୃଶ । ଏଥିରେ ଯେକୌଣସି ପଡ଼ିବା ମାତ୍ରେ ତରଙ୍ଗର ସୃଷ୍ଟି ହୋଇଥାଏ । ଏହି ତରଙ୍ଗଗୁଡ଼ିକ ହିଁ ଆମର ସ୍ୱରୂପଦର୍ଶନରେ ଅନ୍ତରାୟ ସୃଷ୍ଟି କରନ୍ତି । ଜଳାଶୟରେ ପୂର୍ଣ୍ଣଚନ୍ଦ୍ର ପ୍ରତିବିମ୍ବିତ ହୋଇଛନ୍ତି, କିନ୍ତୁ ଜଳାଶୟର ବକ୍ଷ ଏତେ ଆଲୋଡ଼ିତ ଯେ,ପ୍ରତିବିମ୍ବଟି ପରିଷ୍କାର ରୂପେ ଦେଖାପଡ଼ୁ ନାହିଁ । ଏହାକୁ ଶାନ୍ତ ହେବାକୁ ଦିଅ, ଯେପରିକି ପ୍ରକୃତି ଏଥିରେ ତରଙ୍ଗ ସୃଷ୍ଟି କରି ନ ପାରେ ! ଶାନ୍ତ ହୋଇ ରହ । ତାହା ହେଲେ କିଛି ପରେ ପ୍ରକୃତି ତୁମକୁ ଛାଡ଼ିଦେବ । ସେତେବେଳେ ଆମେ ଜାଣିପାରିବା, ଆମେ ପ୍ରକୃତ ସ୍ୱରୂପରେ କ'ଣ ? ଈଶ୍ୱର ସର୍ବଦା ନିକଟରେ ରହିଛନ୍ତି; କିନ୍ତୁ ମନ ବଡ଼ ଚଞ୍ଚଳ । ସେ ସର୍ବଦା ଇନ୍ଦ୍ରିୟଗୁଡ଼ିକ ପଛରେ ଦୌଡ଼ୁଛି । ଇନ୍ଦ୍ରିୟଗୁଡ଼ିକର ଦ୍ୱାର ରୁଦ୍ଧ କଲେ ମଧ୍ୟ ତୁମର ଘୂର୍ଣ୍ଣିପାକର ଅବସାନ ହେବ ନାହିଁ । ଏହି ମୁହୂର୍ତ୍ତରେ ମନେକରୁଛି ମୁଁ ଠିକ୍ ଅଛି; ଈଶ୍ୱରଙ୍କର ଧ୍ୟାନ କରିବି । କିନ୍ତୁ ଠିକ୍ ପରମୁହୂର୍ତ୍ତରେ ମୋର ମନ ଲଣ୍ଡନ ଆଡ଼କୁ ଛୁଟିଗଲା । ଯଦିଓ ତାକୁ ସେଠାରୁ ଜୋର୍ କରି ଟାଣି ଆଣିଲି —ସେଇଠୁ ମନ ଛୁଟିଲା ନିଉୟର୍କକୁ; ସେଠାରେ ମୁଁ ଅତୀତରେ କଅଣ କରିଛି ତାହା ଦେଖିବା ପାଇଁ ! ଏହିସବୁ ତରଙ୍ଗକୁ ଧ୍ୟାନଦ୍ୱାରା ନିବାରଣ କରିବାକୁ ହେବ ।

ଧୀରେ ଧୀରେ ଏବଂ କ୍ରମେ କ୍ରମେ ନିଜକୁ ପ୍ରସ୍ତୁତ କରିବାକୁ ପଡ଼ିବ । ଏହା କିଛି ତାମସାର କଥା ନୁହେଁ । ଗୋଟିଏ ଦିନର ବା କେତୋଟି ବର୍ଷର—ଏପରିକି କେତୋଟି ଜନ୍ମର କଥା ମଧ୍ୟ ନୁହେଁ । କିନ୍ତୁ ଏହା ବୋଲି ଏଥିରେ ଦବିଯିବା କଥା ନୁହେଁ । ସଂଗ୍ରାମ ଚାଲୁ ରଖିବାକୁ ହେବ । ସଚେତନଭାବରେ ସ୍ୱେଚ୍ଛାକୃତ ହୋଇ ଏହି ସଂଗ୍ରାମ

ଚଲେଇବାକୁ ପଡ଼ିବ । ଢଳଢଳ କରି ଆମକୁ ନୂତନ ଭୂମି ଜୟ କରିଯିବାକୁ ପଡ଼ିବ । ସେତେବେଳେ ଆମେ ଏପରି ପ୍ରକୃତ ସମ୍ପଦର ଅଧିକାରୀ ହୋଇପାରିବା, ଯାହାକୁ କେହି କେବେ ଆମ ପାଖରୁ ହରଣ କରି ନେଇପାରିବେ ନାହିଁ । ଏପରି ସମ୍ପଦ, ଯାହା କେହି ନଷ୍ଟ କରିପାରିବେ ନାହିଁ । ଏପରି ଆନନ୍ଦ, ଯାହା ଉପରେ ଆଉ କୌଣସି ବିପଦର ଛାଇ ପଡ଼ିବ ନାହିଁ ।

ଏତେକାଳ ଧରି ଆମେ ଅନ୍ୟ ଉପରେ ନିର୍ଭର କରିଆସିଛୁ । ଯେତେବେଳେ ମୁଁ ସାମାନ୍ୟ ସୁଖ ପାଉଥିଲି, ସେତେବେଳେ ସେହି ସୁଖର କାରଣସ୍ୱରୂପ ଯେଉଁ ବ୍ୟକ୍ତି ଥିଲେ ସେ ପ୍ରସ୍ଥାନ କରନ୍ତେ ମୁଁ ସେ ସୁଖ ହରାଇ ବସୁଥିଲି । ମନୁଷ୍ୟର ନିର୍ବୁଦ୍ଧିତା ଦେଖ । ନିଜ ସୁଖ ପାଇଁ ସେ ଅନ୍ୟ ଉପରେ ନିର୍ଭର କରେ । ସମସ୍ତ ବିଯୋଗ ହିଁ ଦୁଃଖମୟ । ଏହା ସ୍ୱାଭାବିକ । ସୁଖ ପାଇଁ କ'ଣ ଧନ ଉପରେ ନିର୍ଭର କରିବ ? ଧନର ହ୍ରାସବୃଦ୍ଧି ମଧ୍ୟ ରହିଛି । ସୁଖ ପାଇଁ ସ୍ୱାସ୍ଥ୍ୟ ଅଥବା ଅନ୍ୟ କୌଣସି ବିଷୟ ଉପରେ ନିର୍ଭର କଲେ, ଆଜି ଅଥବା କାଲି ଦୁଃଖ ଅବଶ୍ୟମ୍ଭାବୀ ।

ଅନନ୍ତ ଆତ୍ମା ବ୍ୟତୀତ ଆଉ ସବୁ କିଛି ପରିବର୍ତ୍ତନଶୀଳ । ପରିବର୍ତ୍ତନର ଚକ୍ର ଆବର୍ତ୍ତିତ ହୋଇ ଚାଲିଛି । ତୁମ ନିଜ ଅନ୍ତର ବ୍ୟତୀତ ସ୍ଥାୟିତ୍ୱ ଆଉ କେଉଁଠାରେ ହେଲେ ନାହିଁ । ସେହିଠାରେ ହିଁ ରହିଛି ଅପରିବର୍ତ୍ତନୀୟ ଅସୀମ ଆନନ୍ଦ । ସେଠାକୁ ଯିବାର ଦ୍ୱାର ହେଲା ଧ୍ୟାନ । ପ୍ରାର୍ଥନା, କ୍ରିୟାକାଣ୍ଡ ଏବଂ ଅନ୍ୟାନ୍ୟ ନାନା ପ୍ରକାର ଉପାସନା ଧ୍ୟାନର ପ୍ରାଥମିକ ଶିକ୍ଷା ମାତ୍ର । ତୁମେ ପ୍ରାର୍ଥନା କରୁଛ, ଅର୍ଘ୍ୟଦାନ କରୁଛ—ଗୋଟିଏ ମତ ଥିଲା—ଯେଉଁଥିରେ କୁହାଯାଇଛି—ଏସବୁ ବ୍ୟାପାର ଆତ୍ମିକ ଶକ୍ତିର ବୃଦ୍ଧିସାଧନ କରେ । ଜପ, ପୁଷ୍ପାଞ୍ଜଳି, ପ୍ରତିମା, ମନ୍ଦିର, ଦୀପାଳି, ପ୍ରଭୃତି କ୍ରିୟାକାଣ୍ଡ ଫଳରେ ମନରେ ତଦନୁରୂପ ଭାବର ସଞ୍ଚାର ହୁଏ । କିନ୍ତୁ ଏ ଭାବଟି ସର୍ବଦା ମନୁଷ୍ୟର ନିଜ ଭିତରେ ରହିଛି—ଅନ୍ୟତ୍ର ନୁହେଁ । ସମସ୍ତେ ଏହି ପ୍ରକାର କରୁଛନ୍ତି । କିନ୍ତୁ ଲୋକମାନେ ଯାହା ନ ଜାଣି କରୁଛନ୍ତି, ସେଗୁଡ଼ିକୁ ଜାଣି କରି କରିବାକୁ ହେବ । ଏହା ହିଁ ହେଲା ଧ୍ୟାନର ଶକ୍ତି । ତୁମ ଭିତରେ ହିଁ ଯାବତୀୟ ଜ୍ଞାନ ରହିଛି । ତାହା କିଭଳି ସମ୍ଭବ ହେଲା ? ଧ୍ୟାନର ଶକ୍ତି-ଦ୍ୱାରା ଆତ୍ମା ନିଜର ଅନ୍ତଃପ୍ରଦେଶ ମନ୍ଥନ କରି ଏହା ଉଦ୍ଧାର କରିଛି । ଆତ୍ମା ବାହାରେ କେବେ କୌଣସି ଜ୍ଞାନ ଥିଲା କି ? ପରିଶେଷରେ ଏହି ଧ୍ୟାନର ଶକ୍ତିରେ ଆମେ ଆମ ଶରୀର ଭିତରୁ ବିଚ୍ଛିନ୍ନ ହେଉ । ସେତେବେଳେ ଆତ୍ମା ନିଜର ସେହି ଜନ୍ମହୀନ ମୃତ୍ୟୁହୀନ ସ୍ୱରୂପକୁ ଜାଣିପାରେ । ସେତେବେଳେ ଆଉ କୌଣସି ଦୁଃଖ ରହେ ନାହିଁ । ଏହି ପୃଥିବୀରେ ଆଉ ଜନ୍ମ ହୁଏ ନାହିଁ । କ୍ରମବିକାଶ ବି ହୁଏ ନାହିଁ । ଆତ୍ମା ସେତେବେଳେ ଜାଣେ, ମୁଁ ସର୍ବଦା ପୂର୍ଣ୍ଣ ଓ ମୁକ୍ତ ।

# ଧର୍ମର ସାଧନ-ପ୍ରଣାଳୀ ଓ ଉଦ୍ଦେଶ୍ୟ

ପୃଥିବୀର ଧର୍ମଗୁଡ଼ିକୁ ପର୍ଯ୍ୟାଲୋଚନା କଲେ, ଆମେ ସାଧାରଣତଃ ଦୁଇଟି ସାଧନ-ପଥ ଦେଖିବାକୁ ପାଉ । ଗୋଟିଏ ହେଲା ଈଶ୍ୱରଙ୍କ ଆଡ଼ୁ ମନୁଷ୍ୟ ଆଡ଼କୁ ବିସର୍ପିତ । ଅର୍ଥାତ୍ ସେମିଟିକ୍ ଧର୍ମଗୋଷ୍ଠୀରେ ଦେଖିବାକୁ ମିଳେ—ଈଶ୍ୱରୀୟ ଧାରଣା ପ୍ରାୟ ହିଁ ପ୍ରଥମରୁ ସ୍ଫୁରିତ କରିଥିଲା । ଅଥଚ, ଅତ୍ୟନ୍ତ ଆଶ୍ଚର୍ଯ୍ୟ ଯେ ଆତ୍ମା ସମ୍ବନ୍ଧରେ ସେମାନଙ୍କର କୌଣସି ଧାରଣା ନ ଥିଲା । ଏହା ଉଲ୍ଲେଖଯୋଗ୍ୟ ଯେ, ଅତ୍ୟାଧୁନିକ କାଳ କଥା ଛାଡ଼ି-ଦେଲେ ପ୍ରାଚୀନ ଇହୁଦୀମାନଙ୍କ ମଧ୍ୟରେ ଜୀବାତ୍ମା ସମ୍ପର୍କରେ କୌଣସି ଚିନ୍ତାର ସ୍ଫୁରଣ ହୋଇ ନାହିଁ । (ସେମାନଙ୍କ ମତରେ) ମନ ଓ କେତେକ ଜଡ଼-ଉପାଦାନର ସମ୍ମିଶ୍ରଣରେ ମନୁଷ୍ୟର ସୃଷ୍ଟି, ତାହାର ଅତିରିକ୍ତ ଆଉ କିଛି ନୁହେଁ । ମୃତ୍ୟୁରେ ହିଁ ସବୁ କିଛିର ପରିସମାପ୍ତି । ଅଥଚ ଏହି ଜାତି ଭିତରେ ଈଶ୍ୱରଙ୍କ ସମ୍ବନ୍ଧରେ ଅତି ବିସ୍ମୟକର ଚିନ୍ତା-ଧାରାର ବିକାଶ ହୋଇଥିଲା । ଏହା ମଧ୍ୟ ଅନ୍ୟତମ ସାଧନାପଥ । ଆଉ ଗୋଟିଏ ସାଧନା-ପଥ ହେଲା—ମନୁଷ୍ୟ ଭିତର ଦେଇ ଈଶ୍ୱରଙ୍କ ଆଡ଼କୁ ଗତି କରିବା । ଏହି ଦ୍ୱିତୀୟ ପ୍ରଣାଳୀଟି ହେଉଛି ବିଶେଷରୂପେ ଆର୍ଯ୍ୟଜାତିର ଏବଂ ପ୍ରଥମଟି ହେଲା, ସେମିଟିକ୍ ଜାତିର ।

ଆର୍ଯ୍ୟମାନେ ପ୍ରଥମେ ଆତ୍ମତତ୍ତ୍ୱ ନେଇ ଆରମ୍ଭ କରିଥିଲେ । ସେତେବେଳେ ସେମାନଙ୍କର ଈଶ୍ୱରବିଷୟକ ଧାରଣାଗୁଡ଼ିକ ଥିଲା ଅସ୍ପଷ୍ଟ, ପାର୍ଥକ୍ୟ-ନିର୍ଣ୍ଣୟରେ ଅସମର୍ଥ ଓ ଅପରିଚ୍ଛନ୍ନ । କିନ୍ତୁ କାଳକ୍ରମେ ଆତ୍ମା ସମ୍ବନ୍ଧରେ ସେମାନଙ୍କ ଧାରଣା ଯେତେ ସ୍ପଷ୍ଟତର ହେବାକୁ ଲଗିଲା, ଈଶ୍ୱରଙ୍କ ସମ୍ବନ୍ଧରେ ଧାରଣା ସମ ଅନୁପାତରେ ସେତିକି ସ୍ପଷ୍ଟତର ହେବାକୁ ଲଗିଲା । ସେଥିପାଇଁ ଦେଖାଯାଏ, ବେଦମାନଙ୍କରେ ଯାବତୀୟ ଜିଜ୍ଞାସାମାନ ସର୍ବଦା ଆତ୍ମାର ମାଧ୍ୟମରେ ଉତ୍‌ଥାପିତ ହୋଇଥିଲା ଏବଂ ଈଶ୍ୱରଙ୍କ ସମ୍ବନ୍ଧରେ ଆର୍ଯ୍ୟ-ମାନଙ୍କର ଯେତେ ଯାହା ଜ୍ଞାନ, ସବୁ ହିଁ ଜୀବାତ୍ମାର ମଧ୍ୟ ଦେଇ ସ୍ଫୁର୍ତ୍ତି ପାଇଅଛି । ସେହି-ହେତୁ, ସେମାନଙ୍କର ସମଗ୍ର ଦର୍ଶନ-ସାହିତ୍ୟରେ ଅନ୍ତର୍ମୁଖୀ ଈଶ୍ୱରାନୁସନ୍ଧାନର ବା ବ୍ରହ୍ମ-ଜିଜ୍ଞାସାର ଗୋଟିଏ ବିଚିତ୍ର ଛାପ ଅଙ୍କିତ ରହିଅଛି ।

ଆର୍ଯ୍ୟମାନେ ନିଜ ନିଜର ଅନ୍ତରରେ ଚିରଦିନ ଭଗବାନଙ୍କ ଅନୁସନ୍ଧାନ କରିଛନ୍ତି । କାଳକ୍ରମେ ଏହି ସାଧନପ୍ରଣାଳୀ ସେମାନଙ୍କ ନିକଟରେ ସ୍ୱାଭାବିକ ଓ ନିଜସ୍ୱ ହୋଇ ଉଠି-ଥିଲା । ସେମାନଙ୍କର ଶିଳ୍ପଚର୍ଚ୍ଚା ଓ ପ୍ରାତ୍ୟହିକ ଆଚରଣ ମଧ୍ୟରେ ବି ଏହି ବୈଶିଷ୍ଟ୍ୟ ଲକ୍ଷଣୀୟ । ବର୍ତ୍ତମାନ କାଳରେ ମଧ୍ୟ ୟୁରୋପରେ ଉପାସନାରତ କୌଣସି ବ୍ୟକ୍ତିର ପ୍ରତିକୃତି ଅଙ୍କିବାକୁ ଯାଇ ଶିଳ୍ପୀ ତା'ର ଦୃଷ୍ଟିକୁ ଊର୍ଦ୍ଧ୍ୱରେ ସ୍ଥାପନ କରିଥାଏ । ଉପାସକ ପ୍ରକୃତିର ବାହାରେ ଭଗବାନଙ୍କୁ ଅନୁସନ୍ଧାନ କରେ । ଦୂର ମହାକାଶ ଆଡ଼ରେ ତା'ର ଦୃଷ୍ଟି ପ୍ରସାରିତ ରହିଅଛି—ଏହି ଭାବରେ ହିଁ ସେହି ପ୍ରତିମୂର୍ତ୍ତି ଅଙ୍କିତ ହୁଏ । ପକ୍ଷାନ୍ତରେ ଭାରତବର୍ଷରେ ଉପାସକର ମୂର୍ତ୍ତି ଅନ୍ୟ ପ୍ରକାର । ଏଠାରେ ଉପାସନାରେ ଚକ୍ଷୁଦ୍ୱୟ ମୁଦ୍ରିତ

ଥାଏ । ଉପାସକର ଦୃଷ୍ଟି ସତେଜ ଅନ୍ତର୍ମୁଖୀ ।

ଏହି ଦୁଇଟି ହେଲ—ମନୁଷ୍ୟର ଶିକ୍ଷଣୀୟ ବସ୍ତୁ । ଗୋଟିଏ ବହିଃପ୍ରକୃତି,ଅପରଟି ଅନ୍ତଃପ୍ରକୃତି । ଆପାତଦୃଷ୍ଟିରେ ପରସ୍ପରବିରୋଧୀ ହେଲେ ମଧ୍ୟ ସାଧାରଣ ମନୁଷ୍ୟ ନିକଟରେ ବହିଃପ୍ରକୃତି ବା ଅନ୍ତଃପ୍ରକୃତି [ବା ଚିନ୍ତାଜଗତ] ଦ୍ୱାରା ସମ୍ପୂର୍ଣ୍ଣରୂପେ ଗଠିତ । ଅଧିକାଂଶ ଦର୍ଶନଶାସ୍ତ୍ରରେ, ବିଶେଷତଃ ପାଶ୍ଚାତ୍ୟ ଦର୍ଶନଶାସ୍ତ୍ରରେ ପ୍ରଥମରୁ ଅନୁମିତ ହୋଇଛି ଯେ, ଜଡ଼ବସ୍ତୁ ଏବଂ ଚେତନମନ—ଏ ଦୁଇଟି ବିପରୀତଧର୍ମୀ । କିନ୍ତୁ ପରିଣାମରେ ଆମେ ଦେଖୁ—ଏମାନେ ବିପରୀତଧର୍ମୀ ନୁହନ୍ତି । ବରଂ ଧୀରେ ଧୀରେ ଏମାନେ ପରସ୍ପରର ସାନ୍ନିଧ୍ୟରେ ଆସିବେ ଏବଂ ଚରମରେ ଏକତ୍ର ମିଳିତ ହୋଇ ଏକ ଅନନ୍ତ ଅଖଣ୍ଡ ବସ୍ତୁ ସୃଷ୍ଟି କରିବେ । ସୁତରାଂ ଏହି ବିଶ୍ଳେଷଣଦ୍ୱାରା କୌଣସି ଗୋଟିଏ ମତକୁ ଅପର ମତଠାରୁ ପ୍ରାଧାନ୍ୟ ଦେବା ମୋର ଅଭିପ୍ରାୟ ନୁହେଁ । ବହିଃପ୍ରକୃତି ସାହାଯ୍ୟରେ ସତ୍ୟାନୁସନ୍ଧାନରେ ଯେଉଁମାନେ ବ୍ୟାପୃତ, ସେମାନେ ଯେପରି ଭ୍ରାନ୍ତ ନୁହନ୍ତି, ଅନ୍ତଃପ୍ରକୃତିର ମଧ୍ୟ ଦେଇ ସତ୍ୟଲାଭ କରିବାକୁ ଯେଉଁମାନେ ପ୍ରୟାସୀ, ସେମାନଙ୍କୁ ମଧ୍ୟ ଉଚ୍ଚତର ବୋଲି ମନେ କରିବାର କୌଣସି ହେତୁ ନାହିଁ । ଏହା ଦୁଇଟି ପୃଥକ୍ ପ୍ରଣାଳୀ ମାତ୍ର । ଏହି ଦୁଇଟିଯାକ ପଥ ଜଗତରେ ରହିବ । ଦୁଇଟିର ହିଁ ଅନୁଶୀଳନ ପ୍ରୟୋଜନ । ପରିଣାମରେ ଦେଖାଯିବ ଯେ, ଦୁଇଟି ମତର ହିଁ ପରସ୍ପର ମିଳନ ଘଟିଅଛି । ଆମେ ଦେଖୁ ଯେ, ମନ ଯେପରି ଦେହର ପରିପନ୍ଥୀ ନୁହେଁ, ଦେହ ମଧ୍ୟ ସେହିପରି ମନର ପରିପନ୍ଥୀ ନୁହେଁ—ଯଦିଓ ଅନେକେ ମନେ କରନ୍ତି, ଏହି ଦେହଟି ଏକାନ୍ତଭାବେ ତୁଚ୍ଛ ଓ ନଗଣ୍ୟ । ପ୍ରାଚୀନ କାଳରେ ପ୍ରତି ଦେଶରେ ଏପରି ବହୁ ଲୋକ ଥିଲେ, ଯେଉଁମାନେ କ ଦେହକୁ କେବଳ ଆଧି, ବ୍ୟାଧି, ପାପ ଓ ଏହି ଜାତୀୟ ବସ୍ତୁର ଆଧାରରୂପେ ଗଣ୍ୟ କରୁଥିଲେ । ଯାହାହେଉ, ଉତ୍ତର କାଳରେ ଆମେ ଦେଖିବାକୁ ପାଉ, ବେଦର ଶିକ୍ଷାନୁସାରେ ଏହି ଦେହ ମନ ସହିତ ମିଶି ଯାଇଛି ଏବଂ ମନ ଦେହ ସହିତ ମିଶି ଯାଇଛି ।

ଗୋଟିଏ ବିଷୟ ସ୍ମରଣ ରଖିବାକୁ ହେବ, ଯାହା ସମଗ୍ର ବେଦରେ ଧ୍ୱନିତ ହୋଇଅଛି । (ଯେନାଶ୍ରୁତଂ ଶ୍ରୁତଂ ଭବତ୍ୟମତଂ ମତମବିଜ୍ଞାତଂ ବିଜ୍ଞାତମିତି କଥଂ ନ ଭଗବଃ ସ ଆଦେଶୋ ଭବତୀତି ? ଯଥା ସୌମ୍ୟୈକେନ ମୃତ୍ପିଣ୍ଡେନ ସର୍ବଂ ମୃଣ୍ମୟଂ ବିଜ୍ଞାତଂ ସ୍ୟାଦ୍ ବାଚାରମ୍ଭଣଂ ବିକାରୋ ନାମଧେୟଂ ମୃତ୍ତିକେତ୍ୟେବ ସତ୍ୟମ୍ ।—ଛାନ୍ଦୋଗ୍ୟ ଉପ., ୬।୧।୩-୪) । ଯଥା—ଯେପରି ଗୋଟିଏ ମାଟିର ଢେଲା ସମ୍ବନ୍ଧରେ ଜ୍ଞାନ ହେଲେ, ଆମେ ବିଶ୍ୱର ସମସ୍ତ ମାଟି ବିଷୟରେ ଜାଣିପାରୁ, ସେହିପରି ସେହି ବସ୍ତୁଟି କଅଣ, ଯାହାକୁ ଜାଣିଲେ ଆମେ ଅନ୍ୟ ସବୁ ବିଷୟ ଜାଣିପାରିବୁ ? କମ୍ ବେଶୀ ସ୍ପଷ୍ଟତଃ କହିବାକୁ ଗଲେ, ଏହି ତତ୍ତ୍ୱ ହିଁ ସମଗ୍ର ମାନବଜ୍ଞାନର ବିଷୟବସ୍ତୁ । ଏହି ଏକତ୍ୱ ଉପଲବ୍ଧି ଦିଗରେ ଆମେ ସମସ୍ତେ ଅଗ୍ରସର ହେଉଛୁ । ଆମ ଜୀବନର ପ୍ରତିଟି କର୍ମ—ତାହା ଅତି ବୈଷୟିକ, ଅତି ସ୍ଥୂଳ, ଅତି ସୂକ୍ଷ୍ମ, ଅତି ଉଚ୍ଚ, ଅତି ଆଧ୍ୟାତ୍ମିକ କର୍ମ ହେଉ ପଛେ, ସମଭାବରେ ସେହି ଗୋଟିଏ ଆଦର୍ଶ ଏକତ୍ୱାନୁଭୂତି ଦିଗରେ ଆମମାନଙ୍କୁ ନେଇ

ଚାଲିଛି । ଜଣେ ବ୍ୟକ୍ତି ଅବିବାହିତ । ସେ ବିବାହ କଲେ । ବାହ୍ୟତଃ ଏହା ଗୋଟିଏ ସ୍ୱାର୍ଥପୂର୍ଣ୍ଣ କାର୍ଯ୍ୟ ହୋଇପାରେ । କିନ୍ତୁ ଏହାର ପଶ୍ଚାତ୍‌ରେ ଯେଉଁ ପ୍ରେରଣା ଯେଉଁ ଉଦ୍ଦେଶ୍ୟ ରହିଅଛି, ତାହା ମଧ୍ୟ ଏହି ଏକତ୍ୱ ଉପଲବ୍‌ଧିର ଚେଷ୍ଟା । ତା'ର ପୁତ୍ର କନ୍ୟା ଅଛନ୍ତି । ବନ୍ଧୁବାନ୍ଧବ ଅଛନ୍ତି । ସେ ତା'ର ଦେଶକୁ ଭଲପାଏ—ଏହି ପୃଥିବୀକୁ ଭଲପାଏ ଏବଂ ପରିଣାମରେ ସମଗ୍ର ବିଶ୍ୱରେ ତା'ର ପ୍ରେମ ପରିବ୍ୟାପ୍ତ ହୁଏ । ଦୁର୍ନିବାର ଗତିରେ ଆମେ ସେହି ପୂର୍ଣ୍ଣତା ଦିଗରେ ଚାଲିଅଛୁ । ଏହି କ୍ଷୁଦ୍ର 'ମୁଁ ତ୍ୱ'କୁ ନାଶ କରି ଏବଂ ଉଦାରରୁ ଉଦାରତର ହୋଇ ଅଦ୍ୱୈତାନୁଭୂତିର ପଥରେ ଚାଲିଅଛୁ । ଏହା ହିଁ ଚରମ ଲକ୍ଷ୍ୟ । ଏହି ଲକ୍ଷ୍ୟ ଦିଗରେ ହିଁ ସମଗ୍ର ବିଶ୍ୱ ଦ୍ରୁତ ଧାବମାନ । ପ୍ରତି ଅଣୁ ପରମାଣୁ ପରସ୍ପର ସହିତ ମିଳିତ ହେବାଲାଗି ପ୍ରଧାବିତ । ଅଣୁ ସହିତ ଅଣୁର, ପରମାଣୁ ସହିତ ପରମାଣୁର ମୁହୂର୍ମୁହୁ ମିଳନ ହେଉଅଛି ଏବଂ ବିଶାଳକୃତି ଗୋଲକ, ଭୂଲୋକ, ଚନ୍ଦ୍ର, ସୂର୍ଯ୍ୟ, ନକ୍ଷତ୍ର, ଗ୍ରହ, ଉପଗ୍ରହର ଉତ୍ପତ୍ତି ହେଉଅଛି । ପୁଣି ଏମାନେ ବି ଯଥାନିୟମରେ ପରସ୍ପରଦିଗରେ ବେଗରେ ଛୁଟିଛନ୍ତି—ଏବଂ ଏକଥା ଆମେ ଜାଣୁ ଯେ ଶେଷରେ ସମଗ୍ର ଜଡ଼ ଜଗତ ଓ ଚେତନ ଜଗତ ଏକ ଅଖଣ୍ଡ ସତ୍ତାରେ ମିଶି ଏକୀଭୂତ ହେବେ ।

ନିଖିଳ ବିଶ୍ୱରେ ବିପୁଳଭାବରେ ଯେଉଁ କ୍ରିୟା ଚାଲିଛି—ବ୍ୟକ୍ତି ମଣିଷଟି ଭିତରେ ମଧ୍ୟ ସ୍ୱଳ୍ପାୟତନରେ ସେହି ଏକା କ୍ରିୟା ଚାଲିଛି । ବିଶ୍ୱ-ବ୍ରହ୍ମାଣ୍ଡର ଯେପରି ଗୋଟିଏ ନିଜସ୍ୱ ସ୍ୱତନ୍ତ୍ର ସତ୍ତା ଅଛି, ଅଥଚ ଏହା ନିୟତ ହିଁ ଏକତ୍ୱର—ଅଖଣ୍ଡତ୍ୱର ଦିଗରେ ଧାବମାନ, ଆମର କ୍ଷୁଦ୍ରତର ବ୍ରହ୍ମାଣ୍ଡରେ ମଧ୍ୟ ସେହିଭଳି ପ୍ରତି ଜୀବ ଯେପରିକି ଜଗତର ଅବଶିଷ୍ଟାଂଶରୁ ବିଚ୍ଛିନ୍ନ ହୋଇ ନିତ୍ୟ ନବଜନ୍ମ ପରିଗ୍ରହ କରୁଅଛି । ଯେ ଯେତେ ବେଶୀ ମୂର୍ଖ ଓ ଅଜ୍ଞ, ସେ ନିଜକୁ ସେତେ ବେଶୀ ବିଶ୍ୱଠାରୁ ବିଚ୍ଛିନ୍ନ ମନେ କରେ । ଯେ ଯେତେ ବେଶୀ ଅଜ୍ଞ, ସେତେ ବେଶୀ ମନେକରେ ଯେ, ସେ ମରିବ କିମ୍ବା ଜନ୍ମଗ୍ରହଣ କରିବ··· ଇତ୍ୟାଦି ଇତ୍ୟାଦି । ଏହିସବୁ ଭାବ ଏହି ଅନୈକ୍ୟ ବା ଭିନ୍ନତାକୁ ହିଁ ପ୍ରକାଶ କରେ ଏବଂ ଏହା ହିଁ ବିଚ୍ଛିନ୍ନ ଭାବର ଅଭିବ୍ୟଞ୍ଜକ । କିନ୍ତୁ ଦେଖାଯାଏ, ଜ୍ଞାନୋତ୍କର୍ଷର ସଙ୍ଗେ ସଙ୍ଗେ ମନୁଷ୍ୟତ୍ୱର ବିକାଶ ହୁଏ, ନୀତିଜ୍ଞାନ ଅଭିବ୍ୟକ୍ତ ହୁଏ ଏବଂ ମନୁଷ୍ୟ ମଧ୍ୟରେ ଅଖଣ୍ଡ ଚେତନାର ଉନ୍ମେଷ ହୁଏ । ଜ୍ଞାତସାରରେ ହେଉ, ଅବା ଅଜ୍ଞାତସାରରେ ହେଉ, ଏହି ଶକ୍ତି ହିଁ ପଛରେ ରହି ମନୁଷ୍ୟକୁ ନିଃସ୍ୱାର୍ଥ ହେବାକୁ ପ୍ରେରଣା ଦିଏ । ଏହା ହିଁ ସକଳ ପ୍ରକାର ନୀତିଜ୍ଞାନର ଭିତ୍ତି । ପୃଥିବୀର ଯେକୌଣସି ଭାଷାରେ ବା ଯେକୌଣସି ଧର୍ମରେ ବା ଯେ କୌଣସି ଅବତାର ପୁରୁଷଙ୍କଦ୍ୱାରା ପ୍ରଚାରିତ ଧର୍ମନୀତିରେ ଏହା ହିଁ ସର୍ବାପେକ୍ଷା ଅପରିହାର୍ଯ୍ୟ ଅଂଶ । "ନିଃସ୍ୱାର୍ଥ ହୁଅ"—"ନାହଂ ନାହଂ"—"ତୁହୁଁ ତୁହୁଁ"—ଏହି ଭାବଟି ସକଳ ନୀତି ଓ ଅନୁଶାସନର ପୃଷ୍ଠଭୂମି । ତୁମେ ମୋର ଅଂଶ ଏବଂ ମୁଁ ମଧ୍ୟ ତୁମର ଅଂଶ । ତୁମକୁ ଆଘାତ କଲେ ମୁଁ ନିଜେ ଆଘାତପ୍ରାପ୍ତ ହୁଏ । ତୁମକୁ ସାହାଯ୍ୟ କଲେ, ମୋର ନିଜର ସାହାଯ୍ୟ ହୋଇଥାଏ । ତୁମେ ଜୀବିତ ରହିଲେ ସମ୍ଭବତଃ ମୋର ମଧ୍ୟ ମୃତ୍ୟୁ ହୋଇପାରେ ନାହିଁ—ଏହାର ଅର୍ଥ ଏହି ବ୍ୟକ୍ତିଭାବଶୂନ୍ୟତାର ସ୍ୱୀକୃତି । ଯେତେବେଳଯାଏ

ଏହି ବିପୁଳ ବିଶ୍ୱରେ ଗୋଟିଏ କୀଟ ବି ଜୀବିତ ଥାଏ, ସେତେବେଳଯାଏ ମୁଁ ବା କିପରି ମରିପାରେ ? କାରଣ, ମୋର ଜୀବନ ତ ଏହି କୀଟର ଜୀବନ ମଧ୍ୟରେ ବି ଅନୁସ୍ୟୂତ ରହିଅଛି । ସଙ୍ଗେ ସଙ୍ଗେ ଆମେ ଏହି ଶିକ୍ଷା ମଧ୍ୟ ପାଉ ଯେ, କୌଣସି ମନୁଷ୍ୟଙ୍କୁ ସାହାଯ୍ୟ ନ କରି ଆମେ ରହିପାରିବୁ ନାହିଁ । ତା'ର କଲ୍ୟାଣରେ ମୋର ମଧ୍ୟ କଲ୍ୟାଣ ।

ଏହି ବିଷୟ ହିଁ ସମଗ୍ର ବେଦାନ୍ତ ଏବଂ ଅନ୍ୟାନ୍ୟ ଧର୍ମର ଭିତର ଦେଇ ଅନୁସ୍ୟୂତ ହୋଇ ଆସିଛି । ଏକଥା ସ୍ମରଣ ରଖିବାକୁ ହେବ ଯେ, ସାଧାରଣଭାବେ ଧର୍ମ ମାନେ ହିଁ ତିନିଭାଗରେ ବିଭକ୍ତ ।

ପ୍ରଥମାଂଶଟି ହେଲା ଦର୍ଶନ—ପ୍ରତ୍ୟେକ ଧର୍ମର ମୂଳନୀତି ଓ ସାରକଥା । ସେହି ତତ୍ତ୍ୱଗୁଡ଼ିକ ପୁରାଣର ଆଖ୍ୟାୟିକା—ମହାପୁରୁଷ ବା ବୀରମାନଙ୍କର ଜୀବନୀ, ଦେବତା, ଉପଦେବତା ବା ଦେବମାନବଗଣଙ୍କ କାହାଣୀର ମଧ୍ୟ ଦେଇ ରୂପ ପରିଗ୍ରହ କରେ । ବସ୍ତୁତଃ ଶକ୍ତିର ପ୍ରକାଶନ ହିଁ ସକଳ ପୁରାଣ-ସାହିତ୍ୟର ମୂଳଭାବ । ନିମ୍ନସ୍ତରର ପୁରାଣ-ଗୁଡ଼ିକରେ—ଆଦିମ ଯୁଗର ରଚନାରେ—ଏହି ଶକ୍ତିର ଅଭିବ୍ୟକ୍ତି ଦେଖାଯାଏ ଦେହର ପେଶୀରେ । ପୁରାଣଗୁଡ଼ିକରେ ବର୍ଣ୍ଣିତ ନାୟକଗଣ ଆକୃତିରେ ଯେପରି ବିଶାଳ, ବିକ୍ରମରେ ମଧ୍ୟ ସେହିଭଳି ବିପୁଳ । ଜଣେ ବୀର ସତେ କି ସମଗ୍ର ବିଶ୍ୱକୁ ଜୟ କରିବାରେ ସମର୍ଥ । ମନୁଷ୍ୟର ଅଗ୍ରଗତିର ସଙ୍ଗେ ସଙ୍ଗେ ତା'ର ଶକ୍ତି ଦେହ ଅପେକ୍ଷା ବ୍ୟାପକତର କ୍ଷେତ୍ରରେ ଆତ୍ମପ୍ରକାଶ କରେ । ଫଳରେ ମହାପୁରୁଷଗଣ ଉଚ୍ଚତର ନୀତିଜ୍ଞାନର ନିଦର୍ଶନ ରୂପେ ପୁରାଣାଦିରେ ଚିତ୍ରିତ ହୋଇଛନ୍ତି । ପବିତ୍ରତା ଏବଂ ଉଚ୍ଚନୀତିବୋଧ ମଧ୍ୟ ଦେଇ ସେମାନଙ୍କ ଶକ୍ତି ପ୍ରକାଶିତ ହୋଇଛି । ସେମାନେ ସ୍ୱତନ୍ତ୍ର-ବ୍ୟକ୍ତିତ୍ୱସମ୍ପନ୍ନ ମହାପୁରୁଷ । ସ୍ୱାର୍ଥପରତା ଓ ନୀତିହୀନତାର ଦୁର୍ବାର ସ୍ରୋତ ପ୍ରତିରୋଧ କରିବାର ସାମର୍ଥ୍ୟ ସେମାନଙ୍କର ଅଛି । ସବୁ ଧର୍ମର ତୃତୀୟ ଅଂଶ—ପ୍ରତୀକୋପାସନା । ଏହାକୁ ତୁମେମାନେ ଯାଗଯଜ୍ଞ, ଆନୁଷ୍ଠାନିକ କ୍ରିୟାକର୍ମ କୁହ । ପୌରାଣିକ ଉପାଖ୍ୟାନ ଏବଂ ମହାପୁରୁଷମାନଙ୍କ ଚରିତ ସବୁସ୍ତରର ନରନାରୀଙ୍କର ପ୍ରୟୋଜନ ମେଣ୍ଟାଇପାରେ ନାହିଁ । ଏଭଳି ନିମ୍ନପର୍ଯ୍ୟାୟର ମନୁଷ୍ୟ ମଧ୍ୟ ସଂସାରରେ ଅଛନ୍ତି, ଯେଉଁମାନଙ୍କ ପାଇଁ ଶିଶୁମାନଙ୍କ ଭଳି ଧର୍ମର 'କିଣ୍ଡରଗାର୍ଟେନ' ପ୍ରୟୋଜନ । ଏହିଭାବରେ ପ୍ରତୀକ-ଉପାସନା ଓ ବ୍ୟାବହାରିକ ଦୃଷ୍ଟାନ୍ତର ପ୍ରୟୋଜନ ବୁଝାଯାଏ । ଏଗୁଡ଼ିକୁ ଧରାଯାଏ, ବୁଝାଯାଏ—ଇନ୍ଦ୍ରିୟ ସାହାଯ୍ୟରେ ଜଡ଼ବସ୍ତୁ ସଦୃଶ ଦେଖାଯାଏ ଏବଂ ଅନୁଭବ ମଧ୍ୟ କରାଯାଏ ।

ଅତଏବ ପ୍ରତ୍ୟେକ ଧର୍ମରେ ହିଁ ତିନୋଟି ସ୍ତର ବା ପର୍ଯ୍ୟାୟ ଦେଖାଯାଏ । ଯଥା—ଦର୍ଶନ, ପୁରାଣ ଓ ପୂଜା-ଅନୁଷ୍ଠାନ । ବେଦାନ୍ତପକ୍ଷରେ ଗୋଟିଏ ସୁବିଧା କଥା କୁହାଯାଇଥାଏ ଯେ, ସୌଭାଗ୍ୟକ୍ରମେ ଭାରତବର୍ଷରେ ଧର୍ମର ଏହି ତିନୋଟି ପର୍ଯ୍ୟାୟର ସଂଜ୍ଞା ହିଁ ସୁସ୍ପଷ୍ଟଭାବେ ନିର୍ଦ୍ଦିଷ୍ଟ ହୋଇଅଛି । ଅନ୍ୟାନ୍ୟ ଧର୍ମର ମୂଳତତ୍ତ୍ୱଗୁଡ଼ିକ ଉପାଖ୍ୟାନ ଅଂଶ ସହିତ ଏପରି ଭାବେ ଜଡ଼ିତ ଯେ, ଗୋଟିକୁ ଅନ୍ୟଟିଠାରୁ ସ୍ୱତନ୍ତ୍ର କରିବା ଅତ୍ୟନ୍ତ କଠିନ । ଉପାଖ୍ୟାନ ଭାଗ ଯେପରି ତତ୍ତ୍ୱାଂଶକୁ ଗ୍ରାସ କରି ପ୍ରାଧାନ୍ୟ ଲାଭ କରିଛି ଏବଂ

କେତେକ ଶତାବ୍ଦୀ ମଧ୍ୟରେ ସାଧାରଣ ମନୁଷ୍ୟ ତତ୍ତ୍ୱଗୁଡ଼ିକୁ ଏକପ୍ରକାର ଭୁଲିଯାଏ, ତତ୍ତ୍ୱାଂଶର ତାତ୍ପର୍ଯ୍ୟ ଆଉ ଧରିପାରେ ନାହିଁ । ତତ୍ତ୍ୱର ଟୀକା, ବ୍ୟାଖ୍ୟା ପ୍ରଭୃତି ମୂଳତତ୍ତ୍ୱକୁ ଗ୍ରାସ କରେ ଏବଂ ସମସ୍ତେ ଏହିଗୁଡ଼ିକୁ ନେଇ ସନ୍ତୁଷ୍ଟ ରହନ୍ତି ଏବଂ ଅବତାର, ପ୍ରଚାରକ ଏବଂ ଆଚାର୍ଯ୍ୟମାନଙ୍କ କଥା ହିଁ କେବଳ ଚିନ୍ତା କରୁଥାଆନ୍ତି । ମୂଳତତ୍ତ୍ୱ କ୍ରମଶଃ ବିଲୁପ୍ତ ହୋଇଆସେ—ଏତେଦୂର ବିଲୁପ୍ତ ହୋଇଯାଏ ଯେ, ବର୍ତ୍ତମାନ କାଳରେ ବି ଯଦି କେହି ଯୀଶୁଙ୍କୁ ବାଦ୍ ଦେଇ ଖ୍ରୀଷ୍ଟଧର୍ମର ତତ୍ତ୍ୱସମୂହ ପ୍ରଚାର କରିବାକୁ ପ୍ରୟାସୀ ହୁଅନ୍ତି, ତେବେ ଲୋକେ ତାଙ୍କୁ ଆକ୍ରମଣ କରିବାକୁ ଚେଷ୍ଟା କରିବେ ଏବଂ ଭାବିବେ ଯେ, ସେ ଅନ୍ୟାୟ କରିଛନ୍ତି ଏବଂ ଖ୍ରୀଷ୍ଟଧର୍ମର ବିରୁଦ୍ଧାଚରଣ କରିଛନ୍ତି । ଅନୁରୂପଭାବେ ଯଦି କେହି ହଜରତ୍ ମହମ୍ମଦଙ୍କୁ ବାଦ୍ ଦେଇ ଇସଲାମ ଧର୍ମର ତତ୍ତ୍ୱଗୁଡ଼ିକୁ ପ୍ରଚାର କରିବାରେ ଅଗ୍ରସର ହୁଅନ୍ତି, ତେବେ ମୁସଲମାନମାନେ ମଧ୍ୟ ତାଙ୍କୁ ସହ୍ୟ କରିବେ ନାହିଁ । କାରଣ ବାସ୍ତବ ଉଦାହରଣ ମହାପୁରୁଷ ଓ ପୟଗମ୍ବରଙ୍କ ଜୀବନ-କାହାଣୀ ହିଁ ତତ୍ତ୍ୱାଂଶକୁ ସର୍ବତୋଭାବେ ଆବୃତ କରି ରଖିଛି ।

ବେଦାନ୍ତର ପ୍ରଧାନ ସୁବିଧା ଏହି ଯେ, ଏହା କୌଣସି ବ୍ୟକ୍ତିବିଶେଷର ସୃଷ୍ଟି ନୁହେଁ । ସୁତରାଂ ସ୍ୱଭାବତଃ ବୌଦ୍ଧଧର୍ମ, ଖ୍ରୀଷ୍ଟଧର୍ମ ବା ଇସଲାମ ସଦୃଶ କୌଣସି ପ୍ରତ୍ୟାଦିଷ୍ଟ ବା ପ୍ରେରିତ ପୁରୁଷଙ୍କ ପ୍ରଭାବ ଏହାର ତତ୍ତ୍ୱାଂଶଗୁଡ଼ିକୁ ସର୍ବତୋଭାବେ ଗ୍ରାସ ଅଥବା ଆବୃତ କରେ ନାହିଁ ।…

ତତ୍ତ୍ୱ ମାନେ ଶାଶ୍ୱତ ଓ ଚିରନ୍ତନ ଏବଂ ପ୍ରତ୍ୟାଦିଷ୍ଟ ପୁରୁଷଗଣ ଯେପରି 'ଗୌଣପର୍ଯ୍ୟାୟଭୁକ୍ତ'—ସେମାନଙ୍କ କଥା ବେଦାନ୍ତ ଶାସ୍ତ୍ରମାନଙ୍କରେ ଉଲ୍ଲିଖିତ ହୋଇ ନାହିଁ । ଉପନିଷଦ୍‌ଗୁଡ଼ିକରେ କୌଣସି ବିଶେଷ ପ୍ରତ୍ୟାଦିଷ୍ଟ ପୁରୁଷଙ୍କ ବିଷୟ କୁହାଯାଇ ନାହିଁ । ତେବେ ବହୁ ମନ୍ତ୍ରଦ୍ରଷ୍ଟା ପୁରୁଷ ଓ ନାରୀଙ୍କ କଥା କୁହାଯାଇଛି । ପ୍ରାଚୀନ ଇହୁଦୀମାନଙ୍କର ଏହି ଧରଣର କିଛି ଭାବ ଥିଲା । ତଥାପି ଆମେ ଦେଖିବାକୁ ପାଉ, ମୋଜେସ୍ ହିବ୍ରୁ ସାହିତ୍ୟର ଅଧିକାଂଶ ସ୍ଥାନ ଅଧିକାର କରି ରହିଛନ୍ତି । ଅବଶ୍ୟ ମୁଁ କହିବାକୁ ଚାହେଁ ନା ଯେ, ଏହି ଭଳି ସିଦ୍ଧ ମହାପୁରୁଷମାନଙ୍କ ଦ୍ୱାରା ଗୋଟିଏ ଜାତିର ଧର୍ମ-ଜୀବନ ନିୟନ୍ତ୍ରିତ ହେବା ଖରାପ । କିନ୍ତୁ ଯଦି କୌଣସି କାରଣବଶତଃ ଧର୍ମର ସମଗ୍ର ତତ୍ତ୍ୱାଂଶକୁ ଉପେକ୍ଷା କରାଯାଏ, ତେବେ ତାହା ଜାତି ପକ୍ଷରେ ନିଶ୍ଚୟ କ୍ଷତିକର ହେବ । ତତ୍ତ୍ୱ ଦିଗରୁ ବିଭିନ୍ନ ଜାତି ମଧ୍ୟରେ ଅନେକ ଐକ୍ୟସୂତ୍ର ମିଳିଯାଇପାରେ । କିନ୍ତୁ ବ୍ୟକ୍ତିତ୍ୱ ଦିଗରୁ ଦେଖିଲେ ତାହା ସମ୍ଭବ ନୁହେଁ । ବ୍ୟକ୍ତି ଆମମାନଙ୍କର ହୃଦୟାବେଗ ସ୍ପର୍ଶ କରନ୍ତି । ତତ୍ତ୍ୱର ଆବେଦନ ଉଚ୍ଚତର କ୍ଷେତ୍ର—ଅର୍ଥାତ୍ ଆମର ଶାନ୍ତ ବିଚାର-ବୁଦ୍ଧିକୁ ସ୍ପର୍ଶ କରେ । ତତ୍ତ୍ୱ ହିଁ ଚରମରେ ଜୟଲାଭ କରିବ । କାରଣ ଏହା ହିଁ ମନୁଷ୍ୟର ମନୁଷ୍ୟତା । ଭାବାବେଗ ଅନେକ ସମୟରେ ଆମମାନଙ୍କୁ ପଶୁସ୍ତରକୁ ଖସାଇ ଆଣେ । ବିଚାରବୁଦ୍ଧି ଅପେକ୍ଷା ଇନ୍ଦ୍ରିୟଗୁଡ଼ିକ ସହିତ ହିଁ ଭାବାବେଗର ସମ୍ବନ୍ଧ ବେଶୀ । ସୁତରାଂ ଯେତେବେଳେ ତତ୍ତ୍ୱସମୂହ ସର୍ବତୋଭାବେ ଉପେକ୍ଷିତ ହୁଏ ଏବଂ ଭାବାବେଗ ପ୍ରବଳ ହୋଇଉଠେ,

ସେତେବେଳେ ଧର୍ମାନ୍ଧତା ଓ ସାମ୍ପ୍ରଦାୟିକତାରେ ତାହା ପର୍ଯ୍ୟବସିତ ହୋଇଯାଏ ଏବଂ ଏହି ଅବସ୍ଥାରେ ଧର୍ମ ଏବଂ ଦଳୀୟ ରାଜନୀତି ଓ ଅନୁରୂପ ବିଷୟରେ ବିଶେଷ କୌଣସି ପାର୍ଥକ୍ୟ ରହେ ନାହିଁ । ସେତେବେଳେ ଧର୍ମ ସମ୍ବନ୍ଧରେ ମନୁଷ୍ୟ-ମନରେ ଅତି ଉତ୍କଟ ଓ ଅନ୍ଧ ଧାରଣାର ସୃଷ୍ଟି ହୁଏ ଏବଂ ହଜାର ହଜାର ମନୁଷ୍ୟ ପରସ୍ପରର ଗଳାରେ ଛୁରି ଚଳାଇ ଦେବାକୁ କୁଣ୍ଠାବୋଧ କରନ୍ତି ନାହିଁ । ଅବଶ୍ୟ ଏହିସବୁ ପ୍ରତ୍ୟାଦିଷ୍ଟ ମହାପୁରୁଷ-ମାନଙ୍କ ଜୀବନ ସତ୍‌କର୍ମର ମହତ୍ତ୍ୱ ପ୍ରେରଣାସ୍ୱରୂପ । କିନ୍ତୁ ନୀତିଚ୍ୟୁତ ହେଲେ ଏହା ହିଁ ପୁଣି ମହାଅନର୍ଥର ହେତୁ ହୋଇଉଠେ । ଏହି ପ୍ରକ୍ରିୟା ସବୁ ଯୁଗରେ ମନୁଷ୍ୟକୁ ସାମ୍ପ୍ରଦାୟିକତା ଭିତରକୁ ଠେଲି ଦେଇଛି ଏବଂ ଧରିତ୍ରୀ ତାହା ଫଳରେ ରକ୍ତସ୍ନାତ ହୋଇଛି । ବେଦାନ୍ତ କିନ୍ତୁ ଏହି ବିପଦ ଏଡ଼ାଇବା ପାଇଁ ସମର୍ଥ, କାରଣ ଏହା ଭିତରେ କୌଣସି ପ୍ରତ୍ୟାଦିଷ୍ଟ ପୁରୁଷଙ୍କର ସ୍ଥାନ ନାହିଁ । ବେଦାନ୍ତରେ ଅନେକ ମନ୍ତ୍ରଦ୍ରଷ୍ଟାଙ୍କ କଥା ଅଛି—'ଋଷି' ବା 'ମୁନି' ଶବ୍ଦଦ୍ୱାରା ସେମାନଙ୍କୁ ଅଭିହିତ କରାଯାଇଛି । 'ଦ୍ରଷ୍ଟା' ଶବ୍ଦଟି ମଧ୍ୟ ଆକ୍ଷରିକ ଅର୍ଥରେ ବ୍ୟବହୃତ । ଯେଉଁମାନେ ସତ୍ୟଦର୍ଶନ କରିଛନ୍ତି, ମନ୍ତ୍ରାର୍ଥ ଉପଲବ୍ଧି କରିଛନ୍ତି, ସେହିମାନେ ହିଁ ଦ୍ରଷ୍ଟା ।

ମନ୍ତ୍ର ଶବ୍ଦର ଅର୍ଥ ହେଲା ଯାହା ମନନ କରାଯାଇଛି, ଯାହା ମନରେ ଧ୍ୟାନ-ଦ୍ୱାରା ଲବ୍ଧ ଏବଂ ଋଷି ଏହିସବୁ ମନ୍ତ୍ରର ଦ୍ରଷ୍ଟା । ଏହି ମନ୍ତ୍ରଗୁଡ଼ିକ କୌଣସି ମାନବ-ଗୋଷ୍ଠୀର ଅବା କୌଣସି ବିଶେଷ ନର ବା ନାରୀର ନିଜସ୍ୱ ସମ୍ପତ୍ତି ନୁହେଁ—ସେ ଯେତେ ମହାପୁରୁଷ ବା ମହାତ୍ମା ହୁଅନ୍ତୁ ପଛକେ—ଏପରିକି ବୁଦ୍ଧ ବା ଯୀଶୁଖ୍ରୀଷ୍ଟଙ୍କ ଭଳି ଶ୍ରେଷ୍ଠ ମହାପୁରୁଷମାନଙ୍କର ବି ନିଜସ୍ୱ ସମ୍ପତ୍ତି ନୁହେଁ । ଏହି ମତଗୁଡ଼ିକ କ୍ଷୁଦ୍ରାଦପି କ୍ଷୁଦ୍ରର ଯେପରି ସମ୍ପତ୍ତି, ବୁଦ୍ଧଦେବଙ୍କ ଭଳି ମହାପୁରୁଷଙ୍କର ମଧ୍ୟ ତଦ୍ରୂପ ସମ୍ପତ୍ତି । ଅତି ନଗଣ୍ୟ କୀଟର ଯେପରି ସମ୍ପତ୍ତି ଖ୍ରୀଷ୍ଟଙ୍କର ମଧ୍ୟ ତଦ୍ରୂପ ସମ୍ପତ୍ତି । କାରଣ ଏଗୁଡ଼ିକ ସାର୍ବଭୌମତତ୍ତ୍ୱ, ଏହି ମନ୍ତ୍ରଗୁଡ଼ିକ କେବେ ସୃଷ୍ଟ ହୋଇନାହିଁ । ଏଗୁଡ଼ିକ ଚିରନ୍ତନ, ଶାଶ୍ୱତ । ଏଗୁଡ଼ିକ ଅଜ; ଆଧୁନିକ ବିଜ୍ଞାନର କୌଣସି ବିଧି ବା ନିୟମଦ୍ୱାରା ସୃଷ୍ଟ ହୋଇନାହିଁ । ଏହି ମନ୍ତ୍ରଗୁଡ଼ିକ ଆବୃତ ଥାଏ ଏବଂ ଆବିଷ୍କୃତ ହୁଏ; କିନ୍ତୁ ଅନନ୍ତକାଳ ପ୍ରକୃତି ଭିତରେ ହିଁ ରହିଛି । ନିଉଟନ୍ ଜନ୍ମଗ୍ରହଣ ନ କଲେ ବି ଜଗତରେ ମାଧ୍ୟାକର୍ଷଣ ଶକ୍ତି ବିରାଜିତ ରହିଥାଆନ୍ତା ଏବଂ କ୍ରିୟାଶୀଳ ଥାଆନ୍ତା । ନିଉଟନ୍‌ଙ୍କ ପ୍ରତିଭା ଏହି ଶକ୍ତିକୁ ଉଦ୍‌ଭାବନ ଓ ଆବିଷ୍କାର କରିଥିଲା—ସଜୀବ କରିଥିଲା ଏବଂ ମାନବୀୟ ଜ୍ଞାନର ବିଷୟବସ୍ତୁରେ ରୂପାୟିତ କରିଥିଲା ମାତ୍ର । ଧର୍ମତତ୍ତ୍ୱ ଏବଂ ସୁମହାନ୍ ଆଧ୍ୟାତ୍ମିକ ସତ୍ୟସମୂହ ସମ୍ପର୍କରେ ମଧ୍ୟ ଏହି ଗୋଟିଏ କଥା ପ୍ରଯୁଜ୍ୟ । ଏଗୁଡ଼ିକ ନିତ୍ୟକ୍ରିୟାଶୀଳ । ଯଦି ବେଦ, ବାଇବେଲ, କୋରାନ୍, ପ୍ରଭୃତି ଧର୍ମଗ୍ରନ୍ଥ ଆଦୌ ନ ଥାନ୍ତା—ଯଦି ଋଷି ଓ ଅବତାର ପ୍ରଥିତ ପୁରୁଷଗଣ ଜନ୍ମଗ୍ରହଣ ନ କରିଥାନ୍ତେ, ତଥାପି ଏହି ଧର୍ମତତ୍ତ୍ୱଗୁଡ଼ିକର ଅସ୍ତିତ୍ୱ ଥାଆନ୍ତା । ଏଗୁଡ଼ିକ କେବଳ ସାମୟିକ-ଭାବରେ ସ୍ଥଗିତ ରହିଛି ଏବଂ ମନୁଷ୍ୟଜାତି ଓ ମନୁଷ୍ୟପ୍ରକୃତିର ଉନ୍ନତି ସାଧନ କରିବାର ଉଦ୍ଦେଶ୍ୟ ଧୀର ସ୍ଥିର ଭାବେ ସକ୍ରିୟ ରହିବ । କିନ୍ତୁ ଯେଉଁମାନେ ଏହି ତତ୍ତ୍ୱଗୁଡ଼ିକୁ ଦର୍ଶନ

ଓ ଆବିଷ୍କାର କରନ୍ତି, ସେହିମାନେ ହିଁ ଅବତାର ପୁରୁଷ—ସେହିମାନେ ହିଁ ଆତ୍ମିକ-ରାଜ୍ୟର ଆବିଷ୍କାରକ । ନିଉଟନ ଓ ଗାଲିଲିଓ ଯେପରି ପଦାର୍ଥ-ବିଜ୍ଞାନର ଋଷି ଥିଲେ, ଅବତାର ପୁରୁଷମାନେ ମଧ୍ୟ ସେହିଭଳି ଅଧ୍ୟାତ୍ମ-ବିଜ୍ଞାନର ଋଷି । ଏହିସବୁ ତତ୍ତ୍ୱ ଉପରେ କୌଣସି ବିଶେଷ ଅଧିକାର ସେମାନେ ଦାବି କରି ନ ପାରନ୍ତି । ଏଗୁଡ଼ିକ ବିଶ୍ୱପ୍ରକୃତିର ସାଧାରଣ ସମ୍ପଦ ।

ହିନ୍ଦୁମାନଙ୍କ ମତରେ ବେଦ ଅନନ୍ତ । ବେଦ କାହିଁକି ଅନନ୍ତ, ତା'ର ତାତ୍ପର୍ଯ୍ୟ ବର୍ତ୍ତମାନ ଆମେ ବୁଝିପାରୁ । ଏହାର ଅର୍ଥ—ପ୍ରକୃତିର ଯେପରି ଆଦି ବା ଅନ୍ତ ବୋଲି କିଛି ନାହିଁ, ଏହିସବୁ ତତ୍ତ୍ୱର ମଧ୍ୟ ସେହିପରି ଆରମ୍ଭ ବା ଶେଷ ବୋଲି କିଛି ନାହିଁ । ପୃଥିବୀ ପରେ ପୃଥିବୀ, ମତବାଦ ପରେ ମତବାଦ ଉଦ୍ଭୂତ ହେଉଥିବ । କିଛିକାଳ ଚାଲୁଥିବ ଏବଂ ପରେ ପୁଣି ଥରେ ଧ୍ୱଂସପ୍ରାପ୍ତ ହେଉଥିବ । କିନ୍ତୁ ବିଶ୍ୱପ୍ରକୃତି ରହିଥିବ ଯେମିତି ସେମିତି । ଲକ୍ଷ ଲକ୍ଷ ମତବାଦର ଉଦ୍ଭବ ହୋଇଛି—ପୁଣି ବିଲୟ ଘଟିଛି; କିନ୍ତୁ ବିଶ୍ୱ ରହିଛି ଗୋଟିଏ ଭାବରେ । କୌଣସି ଗୋଟିଏ ଗ୍ରହ ସମ୍ପର୍କରେ ସମୟର ଆଦି ଅନ୍ତ ହୁଏତ କୁହାଯାଇପାରେ, କିନ୍ତୁ ବିଶ୍ୱବ୍ରହ୍ମାଣ୍ଡ ସମ୍ପର୍କରେ ଏଭଳି ସୀମାର ନିର୍ଦ୍ଦେଶ ସମ୍ପୂର୍ଣ୍ଣ ଅର୍ଥହୀନ । ନୈସର୍ଗିକ ନିୟମ, ଜଡ଼ବିଜ୍ଞାନ, ମନୋବିଜ୍ଞାନ ଓ ଅଧ୍ୟାତ୍ମବିଜ୍ଞାନର ତତ୍ତ୍ୱାଦି ସମ୍ପର୍କରେ ବି ଏକଥା ସତ୍ୟ । ଆଦିଅନ୍ତହୀନ କାଳ ମଧ୍ୟରେ ସେମାନେ ବିରାଜମାନ ଏବଂ ମନୁଷ୍ୟ ଖୁବ୍ ଅଳ୍ପକାଳ ହେଲା, ତୁଳନାମୂଳକଭାବେ କହିବାକୁ ଗଲେ, କେତେ ହଜାର ବର୍ଷ ଯାବତ୍ ମନୁଷ୍ୟ ଏଗୁଡ଼ିକର ସ୍ୱରୂପ ନିର୍ଦ୍ଧାରଣରେ ସଚେଷ୍ଟ ହୋଇଅଛି । ଆମ ସମ୍ମୁଖରେ ଅଜସ୍ର ଉପାଦାନ ରହିଅଛି । ଅତଏବ ବେଦ ଭିତରୁ ଏକ ମହାନ୍ ସତ୍ୟ ଆମେ ପ୍ରଥମରୁ ଶିକ୍ଷା କରୁ, ତା' ହେଉଛି—ଧର୍ମ, ଯାହା ଖୁବ୍ ଅଳ୍ପକାଳ ହେଲା ଆରମ୍ଭ ହୋଇଛି । ଆଧ୍ୟାତ୍ମିକ ସତ୍ୟର ଅସୀମ ସମୁଦ୍ର ଆମ ସମ୍ମୁଖରେ ପ୍ରସାରିତ । ଏହା ଆମମାନଙ୍କୁ ଆବିଷ୍କାର କରିବାକୁ ହେବ, କାର୍ଯ୍ୟକାରୀ କରିବାକୁ ହେବ ଏବଂ ଜୀବନରେ ରୂପାୟିତ କରିବାକୁ ହେବ । ସହସ୍ର ସହସ୍ର ପ୍ରତ୍ୟାଦିଷ୍ଟ ପୁରୁଷଙ୍କର ଆବିର୍ଭାବ ଜଗତ ପ୍ରତ୍ୟକ୍ଷ କରିଛି ଏବଂ ଭବିଷ୍ୟତରେ ଆହୁରି ଲକ୍ଷ ଲକ୍ଷ ମହାପୁରୁଷଙ୍କର ଆବିର୍ଭାବ ମଧ୍ୟ ପ୍ରତ୍ୟକ୍ଷ କରିବ ।

ପ୍ରାଚୀନ କାଳରେ ପ୍ରତି ସମାଜରେ ଅନେକ ପ୍ରତ୍ୟାଦିଷ୍ଟ ମହାପୁରୁଷ ଥିଲେ । ଏପରି ସମୟ ଆସିବ, ଯେତେବେଳେ ପୃଥିବୀରେ ପ୍ରତି ନଗରର ଗଳିକନ୍ଦିରେ ପ୍ରତ୍ୟାଦିଷ୍ଟ ପୁରୁଷମାନଙ୍କର ସାକ୍ଷାତ୍ ମିଳିପାରିବ । ବସ୍ତୁତଃ ଏପରି ମଧ୍ୟ କୁହାଯାଇପାରେ ଯେ, ପ୍ରାଚୀନଯୁଗର ସମାଜ-ବ୍ୟବସ୍ଥାରେ ଅସାଧାରଣ ବ୍ୟକ୍ତିମାନେ ଅବତାରରୂପେ ଚିହ୍ନିତ ହୋଇଆସନ୍ତି । ସମୟ ଆସିଛି—ଯେତେବେଳେ ଆମେ ଉପଲବ୍ଧି କରିପାରିବୁ ଯେ, ଧର୍ମଜୀବନ ଲାଭ କରିବାର ଅର୍ଥ ହିଁ ହେଲା ଈଶ୍ୱରଙ୍କଠାରୁ ପ୍ରତ୍ୟାଦେଶ ଲାଭ କରିବା ଏବଂ ଏକଥା ବି ସତ ଯେ, ନର ବା ନାରୀ ସତ୍ୟଦ୍ରଷ୍ଟା ନ ହୋଇ କେହି ଧାର୍ମିକ ହୋଇପାରିବେ ନାହିଁ । ଆମେ ବୁଝିପାରିବୁ ଯେ, ଧର୍ମତତ୍ତ୍ୱ କେବଳ ମାନସିକ ଚିନ୍ତା ବା ବାଙ୍ଗ୍ମୟ କଥା

ମଧ୍ୟରେ ନିହିତ ନୁହେଁ । ପରନ୍ତୁ, ବେଦର ଶିକ୍ଷା ଏହି ତତ୍ତ୍ୱର ପ୍ରତ୍ୟକ୍ଷ ଉପଲବ୍ଧି-- ଉଚ୍ଚରୁ ଉଚ୍ଚତର ତତ୍ତ୍ୱର ଉଦ୍ଭାବନ ଓ ଆବିଷ୍କାର ଏବଂ ସମାଜରେ ଏହାର ପ୍ରଚାର ମଧ୍ୟରେ ହିଁ ଧର୍ମର ମୂଳ ରହସ୍ୟ ନିହିତ । ପ୍ରତ୍ୟାଦିଷ୍ଟ ପୁରୁଷ ବା ଜଣେ ଋଷିଙ୍କୁ ଗଢ଼ି ତୋଳିବା ହିଁ ଧର୍ମଚର୍ଚ୍ଚାର ଉଦ୍ଦେଶ୍ୟ ଏବଂ ବିଦ୍ୟାୟତନଗୁଡ଼ିକ ମଧ୍ୟ ସେହି ଉଦ୍ଦେଶ୍ୟ ସାଧନ ନିମିତ୍ତ ଗଢ଼ି ଉଠିବ । ସମଗ୍ର ବିଶ୍ୱ ପ୍ରତ୍ୟାଦିଷ୍ଟ ପୁରୁଷମାନଙ୍କଦ୍ୱାରା ପୂର୍ଣ୍ଣ ହେବ । ଯେତେଦିନ ମନୁଷ୍ୟ ସତ୍ୟଦ୍ରଷ୍ଟା ବା ପ୍ରତ୍ୟାଦିଷ୍ଟ ପୁରୁଷ ନ ହୋଇଛି, ସେତେଦିନଯାଏ ଧର୍ମ ତା' ନିକଟରେ କେବଳ କଥାର କଥା ହୋଇ ରହିଥାଏ । ଏହି ଘରର କବାଟ ଝରକାକୁ ଆମେ ଯେପରି ଦେଖୁଛୁ, ତା' ଅପେକ୍ଷା ସହସ୍ର ଗୁଣ ଗଭୀରଭାବରେ ଧର୍ମକୁ ଆମେ ପ୍ରତ୍ୟକ୍ଷ କରିବୁ—ଉପଲବ୍ଧି କରିବୁ—ଅନୁଭବ କରିବୁ ।

ଧର୍ମର ଏହିସବୁ ବିବିଧ ବହିଃପ୍ରକାଶର ଅନ୍ତରାଳରେ ଗୋଟିଏ ମୂଳ ତତ୍ତ୍ୱ ବିଦ୍ୟମାନ ଏବଂ ଆମମାନଙ୍କ ଲାଗି ତାହା ପୂର୍ବେ ହିଁ ବିଶଦରୂପେ ବର୍ଣ୍ଣିତ ହୋଇଛି । ପ୍ରତ୍ୟେକ ଜଡ଼ବିଜ୍ଞାନ ଐକ୍ୟର ସନ୍ଧାନ ପାଇଲେ ତା'ର ସମାପ୍ତି ହେବ । କାରଣ ତା'ଠାରୁ ବେଶୀ ଆଉ ଆମେ ଯାଇପାରିବୁ ନାହିଁ । ପୂର୍ଣ୍ଣ ଐକ୍ୟରେ ପହଞ୍ଚିଲେ ତତ୍ତ୍ୱ ଦିଗରୁ ବିଜ୍ଞାନର ଆଉ ବେଶୀ କିଛି କହିବାକୁ ନ ଥାଏ । ବ୍ୟାବହାରିକ ଧର୍ମର କାର୍ଯ୍ୟ କେବଳ ପ୍ରୟୋଜନୀୟ ଟିକିନିଖି ଜିନିଷର ବ୍ୟବସ୍ଥା କରିବା । ଉଦାହରଣସ୍ୱରୂପ, ଯେକୌଣସି ଗୋଟିଏ ବିଜ୍ଞାନଶାଖା—ଯଥା ରସାୟନଶାସ୍ତ୍ରର କଥା ଧରାଯାଇପାରେ । ମନେ କରନ୍ତୁ, ଏପରି ଗୋଟିଏ ମୂଳ ଉପାଦାନର ସନ୍ଧାନ ମିଳିଲା, ଯେଉଁଥିରୁ କି ଅନ୍ୟାନ୍ୟ ଉପାଦାନଗୁଡ଼ିକ ପ୍ରସ୍ତୁତ କରାଯାଇପାରେ । ସେତେବେଳେ ହିଁ ବିଜ୍ଞାନ ହିସାବରେ ଏହି ରସାୟନଶାସ୍ତ୍ର ଚରମ ଉତ୍କର୍ଷ ଲାଭ କରିବ । ତା'ପରେ ବାକି ରହିବ ପ୍ରତିଦିନ ଏହି ମୂଳ ଉପାଦାନଟିର ନୂତନ ସଂଯୋଗ ଆବିଷ୍କାର କରିବା ଏବଂ ଜୀବନର ପ୍ରୟୋଜନରେ ଏହି ଯୌଗିକ ପଦାର୍ଥଗୁଡ଼ିକୁ ପ୍ରୟୋଗ କରିବା । ଧର୍ମ ସମ୍ବନ୍ଧରେ ମଧ୍ୟ ସେହି କଥା । ଧର୍ମର ମହାନ୍ ତତ୍ତ୍ୱସମୂହ, ଏହାର କାର୍ଯ୍ୟକ୍ଷେତ୍ର ଓ ପରିକଳ୍ପନା ସେହି ସ୍ମରଣାତୀତ ଯୁଗରେ ହିଁ ଆବିଷ୍କୃତ ହୋଇଥିଲା—ଯେଉଁ ଯୁଗରେ ଜ୍ଞାନର ଚରମ ଏବଂ ପରମବାଣୀରୂପେ କଥିତ ବେଦର ସେହି 'ସୋଽହମ୍' ତତ୍ତ୍ୱଟି ମନୁଷ୍ୟ ଲାଭ କରିବାକୁ ସକ୍ଷମ ହୋଇଥିଲା । ସେହି 'ଏକମେବାଦ୍ୱିତୀୟମ୍'ର ମଧ୍ୟରେ ଏହି ସମଗ୍ର ଜଡ଼ଜଗତ ଓ ମନୋଜଗତ ସମନ୍ୱିତ । ଏହାକୁ କେହି ଈଶ୍ୱର, କେହି ବ୍ରହ୍ମ, କେହି ଆଲ୍ଲା, କେହି ଜିହୋବା ଅଥବା ଅନ୍ୟ କୌଣସି ନାମରେ ଅଭିହିତ କରିଥାଆନ୍ତି । ଏହି ମହାନ୍ ତତ୍ତ୍ୱ ଆମ ଲାଗି ପୂର୍ବରୁ ବିଶଦ-ରୂପେ ବର୍ଣ୍ଣିତ ହୋଇଅଛି । ଏହାର ବାହାରକୁ ଯିବା ଆମର ସାଧ୍ୟାତୀତ । ଆମର କର୍ମରେ ଆମ ଜୀବନର ପ୍ରତ୍ୟେକ ବ୍ୟାପାରରେ ଏହାକୁ ସାର୍ଥକ କରିବାକୁ ହେବ—ପୂର୍ଣ୍ଣ କରିବାକୁ ହେବ । ବର୍ତ୍ତମାନ ଆମମାନଙ୍କୁ କାର୍ଯ୍ୟ କରିବାକୁ ହେବ, ଯେପରିକି ଆମେ ପ୍ରତ୍ୟେକେ ପ୍ରତ୍ୟାଦିଷ୍ଟ ପୁରୁଷ ହୋଇପାରୁ । ଆମ ସମ୍ମୁଖରେ ତେଣୁ ବିରାଟ କାର୍ଯ୍ୟ ରହିଛି ।

ପ୍ରାଚୀନ କାଳରେ ପ୍ରତ୍ୟାଦିଷ୍ଟ ପୁରୁଷଙ୍କ ତାତ୍ପର୍ଯ୍ୟ ଅନେକେ ଉପଲବ୍ଧି କରିପାରୁ

ନ ଥିଲେ । ସେକାଳରେ ପ୍ରତ୍ୟାଦିଷ୍ଟ ପୁରୁଷଙ୍କୁ ଗୋଟିଏ ଆକସ୍ମିକ ବ୍ୟାପାର ବୋଲି ମନେ କରାଯାଉଥିଲା । ଲୋକଙ୍କର ଧାରଣା ଥିଲା ଯେ, ପ୍ରବଳ ଇଚ୍ଛାଶକ୍ତି ବା ତୀକ୍ଷ୍ଣ ବୁଦ୍ଧିର ପ୍ରଭାବରେ କୌଣସି ବ୍ୟକ୍ତି ଉଚ୍ଚତର ଜ୍ଞାନର ଅଧିକାରୀ ହୁଅନ୍ତି । ଆଧୁନିକ କାଳରେ ଆମେ ପ୍ରମାଣ କରିବାକୁ ପ୍ରସ୍ତୁତ ଯେ, ପ୍ରତ୍ୟେକ ଜୀବ—ସେ ଯେ ହୁଅନ୍ତୁ ବା ଯେଉଁଠାରେ ବାସ କରନ୍ତୁ ନା କାହିଁକି ତାଙ୍କର ଏହି ଜ୍ଞାନରେ ଜନ୍ମଗତ ଅଧିକାର ରହିଛି । ଏହି ଜଗତରେ ଆକସ୍ମିକ ବ୍ୟାପାର ବୋଲି କିଛି ନାହିଁ । ଯେଉଁ ବ୍ୟକ୍ତି ଆକସ୍ମିକଭାବେ କିଛି ଲାଭ କରି-ଛନ୍ତି ବୋଲି ଆମେ ମନେକରୁ, ସେ ମଧ୍ୟ ଏହା ପାଇବା ନିମିତ୍ତ ଯୁଗଯୁଗ ବ୍ୟାପୀ ଧୀର ଓ ଅବ୍ୟାହତ ତପସ୍ୟା କରିଛନ୍ତି । ସମଗ୍ର ପ୍ରଶ୍ନଟି ଆମ ଉପରେ ନିର୍ଭର କରେ । ଆମେ କ'ଣ ସତକୁ ସତ ଋଷି ବା ପ୍ରତ୍ୟାଦିଷ୍ଟ ପୁରୁଷ ହେବାକୁ ଚାହୁଁ ? ଯଦି ଚାହୁଁ, ତେବେ ଅବଶ୍ୟ ତାହା ଆମେ ହୋଇପାରିବୁ ।

ପ୍ରତ୍ୟାଦିଷ୍ଟ ପୁରୁଷ ଗଢ଼ିବାର ଏହି ବିରାଟ କାର୍ଯ୍ୟ ଆମ ସମ୍ମୁଖରେ ବିଦ୍ୟମାନ । ଜ୍ଞାତସାରରେ ହେଉ, ଅବା ଅଜ୍ଞାତସାରରେ ହେଉ, ଜଗତର ପ୍ରଧାନ ଧର୍ମଗୁଡ଼ିକ ଏହି ମହତ୍ ଉଦ୍ଦେଶ୍ୟରେ କାର୍ଯ୍ୟ କରି ଚାଲିଛନ୍ତି । ପାର୍ଥକ୍ୟ କେବଳ ଏତିକି ଯେ, ବହୁ ଧର୍ମମତ ଘୋଷଣା କରନ୍ତି—ଆଧ୍ୟାତ୍ମିକ ସତ୍ୟର ଏହି ପ୍ରତ୍ୟକ୍ଷ ଅନୁଭୂତି ଏହି ଜୀବନରେ ହେବାର ନୁହେଁ—ମୃତ୍ୟୁପରେ ଅନ୍ୟ ଜଗତରେ ଏପରି ଏକ ସମୟ ଆସିବ, ଯେତେବେଳେ ସେ ସତ୍ୟ ଦର୍ଶନ କରିବ, ବର୍ତ୍ତମାନ କେବଳ ତାକୁ ବିଶ୍ୱାସ କରିବାକୁ ହେବ । କିନ୍ତୁ ଯେଉଁମାନେ ଏସବୁ କଥା କହନ୍ତି, ସେମାନଙ୍କୁ ବେଦାନ୍ତ ଜିଜ୍ଞାସା କରେ—ଅବସ୍ଥା ଯଦି ବାସ୍ତବିକ ଏହା ହିଁ ହୁଏ, ତେବେ ଆଧ୍ୟାତ୍ମିକ ସତ୍ୟର ପ୍ରମାଣ କେଉଁଠାରେ ? ଉତ୍ତରରେ ସେମାନଙ୍କୁ କହି-ବାକୁ ପଡ଼ିବ—ସବୁ କାଳରେ କେତେକ ବିଶିଷ୍ଟ ମନୁଷ୍ୟ ରହିବେ, ଯେଉଁମାନେ କି ଏହି ଜୀବନରେ ମଧ୍ୟ ସେହି ଅଜ୍ଞେୟ ଓ ଅଜ୍ଞାତ ବସ୍ତୁସମୂହର ଆଭାସ ପାଇଥିବେ ।

ଅବଶ୍ୟ ଏଥିରେ ମଧ୍ୟ ସମସ୍ୟାର ସମାଧାନ ହେବ ନାହିଁ । ଯଦି ଏସବୁ ବ୍ୟକ୍ତି ଅସାଧାରଣ ହୋଇଥାନ୍ତି, ଯଦି ଅକସ୍ମାତ୍ ସେମାନଙ୍କ ମଧ୍ୟରେ ଏହି ଶକ୍ତିର ଉନ୍ମେଷ ହୋଇ-ଥାଏ, ତେବେ ସେମାନଙ୍କୁ ବିଶ୍ୱାସ କରିବାର ଅଧିକାର ଆମର ନାହିଁ । ଯାହା ଦୈବାତ୍ ଲବ୍ଧ, ତାହା ବିଶ୍ୱାସ କରିବା ମଧ୍ୟ ଆମ ପକ୍ଷରେ ପାପ । କାରଣ ଆମେ ତାହା ଜାଣି-ପାରୁନା । ଜ୍ଞାନ କାହାକୁ କୁହାଯାଏ ? ଜ୍ଞାନର ଅର୍ଥ ବିଶେଷତ୍ୱ ବା ଅଦ୍ଭୁତତ୍ୱର ବିନାଶ । ମନେ କରନ୍ତୁ—ଗୋଟିଏ ବାଳକ ରାସ୍ତାରେ ବା କୌଣସି ପଶୁପ୍ରଦର୍ଶନୀକୁ ଯାଇ ଅଦ୍ଭୁତ ଆକୃତିର ଗୋଟିଏ ଜନ୍ତୁ ଦେଖିବାକୁ ପାଇଲା । ସେ ଜନ୍ତୁଟି କ'ଣ ସେ ଚିହ୍ନିପାରିଲା ନାହିଁ । ତା'ପରେ ସେ ଏପରି ଗୋଟିଏ ଦେଶକୁ ଗଲା, ଯେଉଁଠାରେ ଏହି ଜାତୀୟ ଜନ୍ତୁ ଅସଂଖ୍ୟ ରହିଛନ୍ତି । ସେତେବେଳେ ସେ ଏହି ଜନ୍ତୁମାନଙ୍କୁ ଏକ ବିଶେଷ ଶ୍ରେଣୀର ଜନ୍ତୁ ବୋଲି ବୁଝିଲା ଏବଂ ସନ୍ତୁଷ୍ଟ ହେଲା । ଅତଏବ ମୂଳତତ୍ତ୍ୱଟି ଜାଣିବାର ନାମ ହିଁ ହେଲା ଜ୍ଞାନ । ତତ୍ତ୍ୱବର୍ଜିତ କୌଣସି ଗୋଟିଏ ବସ୍ତୁବିଶେଷର ଯେଉଁ ଜ୍ଞାନ, ତାହା ଜ୍ଞାନ ନୁହେଁ । ମୂଳ ସତ୍ୟ-ଠାରୁ ବିଚ୍ଛିନ୍ନ କୌଣସି ଗୋଟିଏ ବିଷୟ ଅଥବା ଅଳ୍ପ କେତୋଟି ବିଷୟ ସମ୍ପର୍କରେ ଆମେ

ଯେତେବେଳେ ଜ୍ଞାନଲାଭ କରୁ, ସେତେବେଳେ ଆମର ଜ୍ଞାନ ହୁଏ ନାହିଁ, ଆମେ ଅଜ୍ଞାନ ହିଁ ରହୁ । ଅତଏବ ଯଦି ଏହି ପ୍ରତ୍ୟାଦିଷ୍ଟ ପୁରୁଷଗଣ ବିଶେଷ ଧରଣର ବ୍ୟକ୍ତି ହୋଇଥାନ୍ତି, ଯଦି ସାଧାରଣଙ୍କ ଆୟତ୍ତର ବାହାରେ ଯେଉଁ ଜ୍ଞାନ, ତାହା ଲାଭ କରିବାର ଅଧିକାର କେବଳ ସେହିମାନଙ୍କର ହୋଇଥାଏ ଏବଂ ଆଉ କାହାର ନ ହୁଏ, ତେବେ ସେମାନଙ୍କ ଉପରେ ବିଶ୍ୱାସ ସ୍ଥାପନ କରିବା ଉଚିତ ନୁହେଁ । କାରଣ, ସେମାନେ ବିଶେଷ ଧରଣର ଦୃଷ୍ଟାନ୍ତ ମାତ୍ର । ମୂଳତତ୍ତ୍ୱ ସହିତ ସେମାନଙ୍କର ସମ୍ପର୍କ ନାହିଁ । ଆମେ ନିଜେ ଯଦି ପ୍ରତ୍ୟାଦିଷ୍ଟ ପୁରୁଷ ହୋଇଥାଉ ବା ହୋଇପାରୁ, ତା'ହେଲେ ଯାଇ ଆମେ ସେମାନଙ୍କୁ ବିଶ୍ୱାସ କରିପାରିବୁ ।

ସମ୍ବାଦପତ୍ରରେ ସମୁଦ୍ରର ନାଗକନ୍ୟା ସମ୍ପର୍କରେ ନାନା କୌତୁକାବହ ଘଟଣା-ସମୂହ ତୁମେମାନେ ଶୁଣିଅଛ । କୌତୁକାବହ କାହିଁକି । କାରଣ ଦୀର୍ଘକାଳ ଅନ୍ତରରେ କେତେକ ମନୁଷ୍ୟ ଆସି ଲୋକ-ସମାଜରେ ଏହି ନାଗକନ୍ୟା ବା ମତ୍ସ୍ୟକନ୍ୟାମାନଙ୍କ ବିଷୟରେ କାହାଣୀ ପ୍ରଚାର କରିଥାନ୍ତି । ଅଥଚ, ଅନ୍ୟ କେହି କେବେ ବି ଏମାନଙ୍କୁ ଦେଖି ନାହିଁ । ସେମାନଙ୍କର ଉଲ୍ଲେଖଯୋଗ୍ୟ କୌଣସି ବିଶେଷ ତତ୍ତ୍ୱ ନାହିଁ । ଫଳରେ ଜଗତ ଏହା ବିଶ୍ୱାସ କରେ ନାହିଁ । ବସ୍ତୁତଃ ଏହିସବୁ କାହାଣୀ ପଛରେ କୌଣସି ଶାଶ୍ୱତ ସତ୍ୟ ନାହିଁ ବୋଲି ଜଗତ ଏହା ବିଶ୍ୱାସ କରେ ନାହିଁ । ଯଦି କେହି ମୋ ଆଗରେ ଆସି କହେ ଯେ, ଜଣେ ପ୍ରତ୍ୟାଦିଷ୍ଟ ପୁରୁଷ ତାଙ୍କର ସ୍ଥୂଳଶରୀର ସହି ଅକସ୍ମାତ୍ ଆକାଶରେ ଅଦୃଶ୍ୟ ହୋଇଯାଇଥିଲେ—ତା'ହେଲେ ସେହି ଅସାଧାରଣ ବ୍ୟାପାରଟି ପ୍ରତ୍ୟକ୍ଷ କରିବାର ଅଧିକାର ମୋର ନିଶ୍ଚୟ ଅଛି । ମୁଁ ତାକୁ ପଚାରିବି—"ଆପଣଙ୍କ ବାପା କିମ୍ବା ଅଜା ଏ ଦୃଶ୍ୟଟି ପ୍ରତ୍ୟକ୍ଷ କରିଛନ୍ତି ?" ସେ ହୁଏତ କହିବେ—"ନାଇଁ ଆଜ୍ଞା ! ସେମାନେ କେହି ଦେଖି-ନାହାନ୍ତି, କିନ୍ତୁ ପାଞ୍ଚହଜାର ବର୍ଷ ପୂର୍ବେ ଏଭଳି ଘଟଣା ଘଟିଥିଲା ।" ମୁଁ ଯଦି ଏଭଳି ଘଟଣା ବିଶ୍ୱାସ ନ କରେ, ତା'ହେଲେ କଅଣ ଅନନ୍ତକାଳ ପର୍ଯ୍ୟନ୍ତ ମୋତେ ନରକରେ ପଡ଼ି ଦଗ୍ଧ ହେବାକୁ ପଡ଼ିବ ?

ଏ ଭଳି କୁସଂସ୍କାର : ଏବଂ ଏହାର ଫଳରେ ହିଁ ମନୁଷ୍ୟ ତା'ର ଦେବସ୍ୱଭାବରୁ ପଶୁସ୍ୱଭାବକୁ ଖସିପଡ଼ୁଛି । ଯଦି ଆମମାନଙ୍କୁ ସବୁକିଛି ଅନ୍ଧଭାବେ ବିଶ୍ୱାସ କରିବାକୁ ହୁଏ, ତେବେ ଆମକୁ ବିଚାରବୁଦ୍ଧି କାହିଁକି ଦିଆଯାଇଛି ? ଯୁକ୍ତିବିରୋଧୀ ଯେକୌଣସି କଥାକୁ ବିଶ୍ୱାସ କରିବା କ'ଣ ମହାପାପ ନୁହେଁ ? ଈଶ୍ୱର ଯେଉଁ ଉତ୍କୃଷ୍ଟ ସମ୍ପଦଟି ଆମମାନଙ୍କୁ ଦାନ କରିଛନ୍ତି— ତା'ର ଯଥାଯଥ ବ୍ୟବହାର ନ କରିବାର ଅଧିକାର ଆମର ଅଛି କି ? ମୋର ନିଶ୍ଚିତ ବିଶ୍ୱାସ ହେଲା—ଈଶ୍ୱରଦତ୍ତ ଶକ୍ତିର ବ୍ୟବହାରରେ ଅକ୍ଷମ ଅନ୍ଧବିଶ୍ୱାସୀ ଅପେକ୍ଷା ଯୁକ୍ତିବାଦୀ ଅବିଶ୍ୱାସୀକୁ ଭଗବାନ ସହଜରେ କ୍ଷମା କରିବେ । ଅନ୍ଧବିଶ୍ୱାସୀ କେବଳ ନିଜର ପ୍ରକୃତିକୁ ଅବନମିତ କରେ ଏବଂ ପଶୁସ୍ତରରେ ଅଧଃପାତିତ ହୁଏ । ବୁଦ୍ଧିନାଶ ଫଳରେ ଧ୍ୱଂସପ୍ରାପ୍ତ ହୁଏ । ଆମେ ନିଶ୍ଚୟ ଯୁକ୍ତିବିଚାରର ଆଶ୍ରୟ ଗ୍ରହଣ କରିବା ଏବଂ ସବୁ ଦେଶର ପ୍ରାଚୀନ ଶାସ୍ତ୍ରରେ ବର୍ଣ୍ଣିତ ଏହିସବୁ ଈଶ୍ୱରଦୂତ ଅଥବା ମହାପୁରୁଷଙ୍କ କାହାଣୀ-

ଗୁଡ଼ିକୁ ଯେତେବେଳେ ଯୁକ୍ତିସମ୍ମତ ବୋଲି ପ୍ରମାଣ କରିପାରିବା, ସେତେବେଳେ ଯାଇ ଆମେ ସେମାନଙ୍କୁ ବା ସେସବୁ କଥାକୁ ବିଶ୍ୱାସ କରିବା । ଯେତେବେଳେ ଆମ ଭିତରେ ମଧ୍ୟ ସେମାନଙ୍କ ସଦୃଶ ପ୍ରତ୍ୟାଦିଷ୍ଟ ମହାପୁରୁଷଙ୍କୁ ଦେଖିବାକୁ ପାଇବା, ସେତେବେଳେ ଯାଇ ସେମାନଙ୍କୁ ବିଶ୍ୱାସ କରିବା । ସେତେବେଳେ ଆମେ ଦେଖିବା ଯେ, ସେମାନେ ବିଚିତ୍ର ଧରଣର କୌଣସି ଜୀବ ନୁହନ୍ତି—ବରଂ କେତେଗୁଡ଼ିଏ ତତ୍ତ୍ୱର ଜୀବନ୍ତ ଉଦାହରଣ ମାତ୍ର । ଜୀବନରେ ସେମାନେ ତପସ୍ୟା କରିଛନ୍ତି, କର୍ମ କରିଛନ୍ତି—ଫଳରେ ଏହି ନୀତି ବା ତତ୍ତ୍ୱ ସ୍ୱତଃ ସେମାନଙ୍କ ମଧ୍ୟରେ ରୂପ ପରିଗ୍ରହ କରିଅଛି । ଆମମାନଙ୍କୁ ଏହି ଅବସ୍ଥା ଲାଭ କରିବାକୁ ହେଲେ ଅବଶ୍ୟ କର୍ମ କରିବାକୁ ହେବ । ଆମେ ଯେତେବେଳେ ପ୍ରତ୍ୟାଦିଷ୍ଟ ମହାପୁରୁଷ ହେବା, ସେତିକବେଳେ ହିଁ ଆମେ ତାଙ୍କୁ ଚିହ୍ନି ପାରିବା । ସେମାନେ ମନ୍ତ୍ରଦ୍ରଷ୍ଟା ଥିଲେ, ଇନ୍ଦ୍ରିୟର ପରିଧି ଅତିକ୍ରମ କରି ଅତୀନ୍ଦ୍ରିୟ ସତ୍ୟ ଦର୍ଶନ କରିଥିଲେ—ଏସବୁ କଥା ଆମେ ସେତେବେଳେ ଯାଇ ବିଶ୍ୱାସ କରିବା ଯେତେବେଳେ ଏହିଭଳି ଅବସ୍ଥା ଆମେ ନିଜେ ଲଭ କରିବାକୁ ସମର୍ଥ ହେବା ।— ତା' ପୂର୍ବରୁ ନୁହେଁ ।

ବେଦାନ୍ତର ଏହା ହିଁ ଏକମାତ୍ର ମୂଳନୀତି । ବେଦାନ୍ତ ଘୋଷଣା କରେ ଯେ, ପ୍ରତ୍ୟକ୍ଷ ଏବଂ ଜାଗ୍ରତ ଉପଲବ୍‌ଧି ହିଁ ଧର୍ମର ପ୍ରାଣ । କାରଣ ଇହକାଳ ଓ ପରକାଳ, ଜନ୍ମ ଓ ମୃତ୍ୟୁ, ଇହଲୋକ ଓ ପରଲୋକର ପ୍ରଶ୍ନ, ସବୁ ହିଁ ସଂସ୍କାର ଓ ବିଶ୍ୱାସର ପ୍ରଶ୍ନ ମାତ୍ର । କାଳ ଅନନ୍ତ, ମନୁଷ୍ୟ ତାକୁ ଖଣ୍ଡିତ କରିବାକୁ ଚେଷ୍ଟା କରେ । କିନ୍ତୁ ସାମାନ୍ୟ ପ୍ରାକୃତିକ ପରିବର୍ତ୍ତନ ଭିନ୍ନ ଦଶଘଡ଼ିକା ଓ ବାରଘଡ଼ିକା ସମୟ ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ । କାଳପ୍ରବାହ ଅନନ୍ତ ଗତିରେ ଚାଲିଅଛି । ସୁତରାଂ ଏହି ଜୀବନ ଓ ଜୀବନାନ୍ତର ମଧ୍ୟରେ ପାର୍ଥକ୍ୟ କେଉଁଠି ? ଏହା ସମୟର ପ୍ରଶ୍ନ ମାତ୍ର ଏବଂ ସମୟ ହିସାବରେ ଯେଉଁ ଟିକିଏ କ୍ଷତି ହୁଏ, କର୍ମର ଗତିବୃଦ୍ଧିରେ ତାହା ପୂରଣ ହୋଇଯାଏ । ଅତଏବ ବେଦାନ୍ତ ଘୋଷଣା କରିଛନ୍ତି—ଧର୍ମକୁ ବର୍ତ୍ତମାନ ହିଁ ଉପଲବ୍‌ଧି କରିବାକୁ ହେବ ଏବଂ ତୁମକୁ ଧାର୍ମିକ ହେବାକୁ ହେଲେ ସଂସ୍କାରମୁକ୍ତ ଓ ପରିଚ୍ଛନ୍ନ ମନ ନେଇ କଠୋର ଶ୍ରମ ସହିତ ଅଗ୍ରସର ହେବାକୁ ହେବ । ତତ୍ତ୍ୱ ଉପଲବ୍‌ଧି କରିବାକୁ ହେବ । ପ୍ରତ୍ୟେକଟି ବିଷୟକୁ ସ୍ୱୟଂ ଦର୍ଶନ କରିବାକୁ ହେବ । ତା ହେଲେ ହିଁ ଯଥାର୍ଥ ଧର୍ମଲାଭ ହେବ । ଏହା ପୂର୍ବରୁ ତୁମେ ନାସ୍ତିକ ଛଡ଼ା ଆଉ କିଛି ନୁହଁ ଅଥବା ନାସ୍ତିକ ଅପେକ୍ଷା ମଧ୍ୟ ନିକୃଷ୍ଟ । ନାସ୍ତିକ ତଥାପି ଭଲ । କାରଣ ସେ ଅକପଟ, ଅକପଟ ଭାବରେ ସେ କହେ—"ମୁଁ ଏସବୁ ଜାଣେ ନାହିଁ" ଏବଂ ଅନ୍ୟମାନେ ସମ୍ପୂର୍ଣ୍ଣ ଅଜ୍ଞତାସତ୍ତ୍ୱେ ନିଜକୁ ଜାହିର୍ କରି କହନ୍ତି— "ଆମେମାନେ ଖୁବ୍ ଧାର୍ମିକ ।" କେହି ଜାଣେ ନାହିଁ, ତା'ର ଧର୍ମ କଅଣ । କାରଣ ପ୍ରତ୍ୟେକେ 'ବୁଢ଼ୀମା'ର ଝୁଲି' ଭିତରୁ କେତେକ ଉଦ୍‌ଭଟ କାହାଣୀ ଗଳାଧଃକରଣ କରିଥାଆନ୍ତି । ପୁରୋହିତମାନେ ମଧ୍ୟ ସେମାନଙ୍କୁ ସେଗୁଡ଼ିକୁ ବିଶ୍ୱାସ କରିବାକୁ କହିଥାଆନ୍ତି । ନ କଲେ ଯେ ସେମାନଙ୍କର ଉଦ୍ଧାର ନାହିଁ । ଯୁଗେ ଯୁଗେ ଏହି ଧାରା ହିଁ ଚାଲି ଆସିଛି ।

ଧର୍ମର ପ୍ରତ୍ୟକ୍ଷାନୁଭୂତ ହିଁ ଏକମାତ୍ର ପଥ । ସମସ୍ତଙ୍କୁ ସେହି ପଥଟି ଆବିଷ୍କାର କରିବାକୁ ହେବ । ପ୍ରଶ୍ନ ଉଠିପାରେ—ତା'ହେଲେ ବାଇବେଲ ପ୍ରଭୃତି ଶାସ୍ତ୍ରଗୁଡ଼ିକର ମୂଲ୍ୟ କ'ଣ । ଶାସ୍ତ୍ରଗୁଡ଼ିକର ମୂଲ୍ୟ ନିଶ୍ଚୟ ବହୁତ ବେଶୀ । ଯେପରି କୌଣସି ଦେଶକୁ ଜାଣିବାକୁ ହେଲେ ଆଗେ ତା'ର ମାନଚିତ୍ର ଦେଖିବାକୁ ହୁଏ । ଇଂଲଣ୍ଡକୁ ଆସିବା ପୂର୍ବରୁ ମୁଁ ଇଂଲଣ୍ଡର ମାନଚିତ୍ର ଅସଂଖ୍ୟଥର ଦେଖିଛି । ଇଂଲଣ୍ଡ ସମ୍ବନ୍ଧରେ ମୋଟାମୋଟି ଗୋଟିଏ ଧାରଣା ପାଇବାକୁ ସେ ମାନଚିତ୍ର ମୋତେ ଯଥେଷ୍ଟ ସାହାଯ୍ୟ କରିଛି । ତଥାପି ଯେତେବେଳେ ଏ ଦେଶକୁ ଆସିଲି, ସେତେବେଳେ ବୁଝିଲି—ମାନଚିତ୍ର ଓ ବାସ୍ତବ ଦେଶ ଭିତରେ କେତେ ପ୍ରଭେଦ ! ଉପଲବ୍ଧି ଓ ଶାସ୍ତ୍ର ଭିତରେ ସେହିଭଳି ପାର୍ଥକ୍ୟ ରହିଛି । ଶାସ୍ତ୍ରଗୁଡ଼ିକ କେବଳ ମାନଚିତ୍ର । ଏଗୁଡ଼ିକ ଅତୀତର ମହାପୁରୁଷମାନଙ୍କର ଅନୁଭୂତି ବା ଅଭିଜ୍ଞତା । ଏଗୁଡ଼ିକ ଆମମାନଙ୍କୁ ଗୋଟିଏ ଭାବରେ ଗୋଟିଏ ଅଭିଜ୍ଞତା ବା ଅନୁଭୂତି ପାଇବାରେ ସାହସ ଦିଏ ଓ ଅନୁପ୍ରାଣିତ କରେ ।

ବେଦାନ୍ତର ପ୍ରଥମ ତତ୍ତ୍ୱ ହେଲା—ଅନୁଭୂତି ହିଁ ଧର୍ମ । ଅନୁଭୂତିସମ୍ପନ୍ନ ବ୍ୟକ୍ତି ହିଁ ଧାର୍ମିକ । ଅନୁଭୂତିହୀନ ବ୍ୟକ୍ତି ଓ ନାସ୍ତିକ ଭିତରେ କୌଣସି ପାର୍ଥକ୍ୟ ନାହିଁ । ବରଂ ନାସ୍ତିକ ଭଲ । କାରଣ ସେ ନିଜର ଅଜ୍ଞତା ଅକପଟରେ ସ୍ୱୀକାର କରେ । ପୁଣି ଧର୍ମଶାସ୍ତ୍ର-ସମୂହ ଧର୍ମାନୁଭୂତି ଲାଭରେ ପ୍ରଭୂତ ସାହାଯ୍ୟ କରନ୍ତି । ଏଗୁଡ଼ିକ କେବଳ ଆମର ପଥପ୍ରଦର୍ଶକ ନୁହନ୍ତି, ପରନ୍ତୁ ଆମମାନଙ୍କୁ ସାଧନ-ପ୍ରଣାଳୀର ଉପଦେଶ ଦିଅନ୍ତି । ପ୍ରତ୍ୟେକ ବିଜ୍ଞାନର ହିଁ ନିଜସ୍ୱ ଅନୁସନ୍ଧାନ-ପ୍ରଣାଳୀ ରହିଛି । ଏ ଜଗତରେ ଏପରି ବହୁ ଲୋକ ଅଛନ୍ତି—ଯେଉଁମାନେ କହନ୍ତି—"ମୁଁ ଧାର୍ମିକ ହେବାକୁ ଚାହିଁଥିଲି—ସତ୍ୟ ଉପଲବ୍ଧି କରିବାକୁ ଚାହିଁଥିଲି—କିନ୍ତୁ ପାରିଲି ନାହିଁ । ତେଣୁ ମୁଁ କିଛି ବିଶ୍ୱାସ କରିବି ନାହିଁ ।" ଶିକ୍ଷିତ ବ୍ୟକ୍ତିମାନଙ୍କ ମଧ୍ୟରେ ବି ଏହିଭଳି ଲୋକ ଦେଖିବାକୁ ମିଳନ୍ତି । ବହୁଲୋକ ତୁମକୁ କହିବେ—"ମୁଁ ଧାର୍ମିକ ହେବା ନିମିତ୍ତ ଚେଷ୍ଟା କରିଛି । କିନ୍ତୁ ଆଜୀବନ ଦେଖିଛି—ଏହା ଭିତରେ କିଛି ନାହିଁ ।" ପୁଣି ସାଙ୍ଗେ ସାଙ୍ଗେ ଏହି ବ୍ୟାପାର ମଧ୍ୟ ଦେଖିବ—ମନେକର, ଜଣେ ରସାୟନିକ ବଡ଼ ବୈଜ୍ଞାନିକ ତୁମ ନିକଟକୁ ଆସି ରସାୟନଶାସ୍ତ୍ର କଥା କହିଲେ । ଯଦି ତୁମେ ତାଙ୍କୁ କହିବ, "ମୁଁ ରସାୟନବିଦ୍ୟାର କିଛି କଥା ବିଶ୍ୱାସ କରେ ନାହିଁ, କାରଣ ଆଜୀବନ ରସାୟନବିତ୍ ହେବାକୁ ଚେଷ୍ଟା କରିଛି—କିନ୍ତୁ ଏହା ଭିତରେ ମୁଁ କିଛି ହିଁ ପାଇଲି ନାହିଁ ।" ଏକଥା ଶୁଣି ବୈଜ୍ଞାନିକ ପ୍ରଶ୍ନ କରିବେ—"କେବେ ତୁମେ ଏଭଳି ଚେଷ୍ଟା କରିଥିଲ ?" ତୁମେ କହିବ—"ଯେତେବେଳେ ମୁଁ ଶୋଇବାକୁ ଯାଏ, ସେତେବେଳେ ପୁନଃ ପୁନଃ ଏହି କଥା ଉଚ୍ଚାରଣ କରେ—ହେ ରସାୟନ-ଶାସ୍ତ୍ର ! ମୋ ନିକଟକୁ ଆସ । କିନ୍ତୁ ସେ କେବେ ବି ମୋ ପାଖକୁ ଆସିଲା ନାହିଁ ।" ଏ ଉତ୍ତର ଶୁଣି ବୈଜ୍ଞାନିକ ହସିବେ ଓ କହିବେ—"ନା, ଏହା ଯଥାର୍ଥ ପ୍ରଣାଳୀ ନୁହେଁ ! ତୁମେ ତ ପରୀକ୍ଷାଗାରକୁ ଯାଇ କ୍ଷାରରସ, ଅମ୍ଳରସ ପ୍ରଭୃତି ମିଶାଇ ଦିନ ଦିନ ଧରି ଗବେଷଣାରେ ତୁମର ହାତ ପୋଡ଼ିନାହିଁ ! ଏଭଳି କରିଥିଲେ ତୁମେ ଧୀରେ ଧୀରେ ରସାୟନ-ଶାସ୍ତ୍ରରେ ଜ୍ଞାନଲାଭ କରିପାରିଥାଆନ୍ତ !" ଧର୍ମ ସମ୍ବନ୍ଧରେ

ଠିକ୍ ସେହିକଥା । ଧର୍ମ ସମ୍ବନ୍ଧରେ ଏଭଳି ଶ୍ରମ ସ୍ୱୀକାର କରିବା ଲାଗି ତୁମେ ପ୍ରସ୍ତୁତ ଅଛ କି ? ପ୍ରତ୍ୟେକ ବିଜ୍ଞାନଶାଖାରେ ଯେପରି ଶିକ୍ଷାର ଗୋଟିଏ ବିଶିଷ୍ଟ ପ୍ରଣାଳୀ ଅଛି, ଧର୍ମାନୁଶୀଳନର ବି ତଦ୍ରୂପ ପନ୍ଥା ଆବଶ୍ୟକ । ଧର୍ମର ମଧ୍ୟ ନିଜସ୍ୱ ପଦ୍ଧତି ଅଛି । ଏହି ବିଷୟରେ ପୃଥିବୀର ପ୍ରାଚୀନ ପ୍ରତ୍ୟାଦିଷ୍ଟ ମହାପୁରୁଷମାନେ, ଯେଉଁମାନେ ଧର୍ମ ଉପଲବ୍ଧି କରିଛନ୍ତି ଏବଂ କିଛି ଲାଭ କରିଛନ୍ତି, ସେମାନଙ୍କ ନିକଟରୁ ଅବଶ୍ୟ ଆମେ ଧର୍ମଲାଭର କୌଣସି ନା କୌଣସି ଶିକ୍ଷା ପାଇପାରୁ ଏବଂ ପାଇପାରିବୁ ମଧ୍ୟ । ସେମାନେ ଆମମାନଙ୍କୁ ଧର୍ମର ବିବିଧ ପ୍ରଣାଳୀ ଓ ବିଶେଷ ପଦ୍ଧତି ଶିଖାଇଦେବେ ଏବଂ ଏହିସବୁ ସାହାଯ୍ୟରେ ଆମେ ଧର୍ମର ନିଗୂଢ଼ ସତ୍ୟସମୂହ ଉପଲବ୍ଧି କରିବାକୁ ସମର୍ଥ ହେବୁ । ସେମାନେ ଆଜୀବନ ସାଧନା କରିଛନ୍ତି—ମନକୁ ସୂକ୍ଷ୍ମତମ ଅନୁଭୂତିର ଉପଯୋଗୀ କରି ମାନସିକ ଉତ୍କର୍ଷର ବିଶେଷ ପଦ୍ଧତି ଆବିଷ୍କାର କରିଛନ୍ତି—ଏବଂ ଏହି ସୂକ୍ଷ୍ମାନୁଭୂତିର ସହାୟତାରେ ଧର୍ମତତ୍ତ୍ୱ ଉପଲବ୍ଧି କରିଛନ୍ତି । ଧାର୍ମିକ ହେବାକୁ ହେଲେ, ଧର୍ମକୁ ଉପଲବ୍ଧି ଓ ଅନୁଭବ କରିବାକୁ ହେଲେ, ପ୍ରତ୍ୟାଦିଷ୍ଟ ମହାପୁରୁଷ ହେବାକୁ ହେଲେ ସେମାନଙ୍କ ପ୍ରଦର୍ଶିତ ପଦ୍ଧତି ଗ୍ରହଣ କରିବାକୁ ହେବ ଏବଂ ତଦନୁଯାୟୀ ସାଧନ କରିବାକୁ ହେବ । ତା'ପରେ ବି ଯଦି କିଛି ପାଇବା ନ ହେଲା, ସେତେବେଳେ ଯାଇ ଅବଶ୍ୟ ଏକଥା କହିବାର ଅଧିକାର ଆମର ହେବ—"ଧର୍ମ ଭିତରେ କିଛି ନାହିଁ । କାରଣ ମୁଁ ପରୀକ୍ଷା କରି ଦେଖିଛି ଏବଂ ବିଫଳ ହୋଇଛି ।"

ଏହା ହିଁ ସମସ୍ତ ଧର୍ମର ବ୍ୟାବହାରିକ ଦିଗ । ଜଗତର ସକଳ ଧର୍ମଗ୍ରନ୍ଥରେ ହିଁ ଏହା ପାଇବ । କେତେଗୁଡ଼ିଏ ମତ ଓ ନୀତିକଥାରେ ତ ଧର୍ମଶିକ୍ଷା ହୁଏ ନାହିଁ, ବରଂ ମହାପୁରୁଷମାନଙ୍କ ଜୀବନରେ ଧର୍ମର ଆଚରଣ ବା ତପସ୍ୟା ଆମେ ଦେଖିବାକୁ ପାଉ । ଯେଉଁସବୁ ଆଗ୍ରହର ଆଚରଣର ବିଷୟ ହୁଏତ ଶାସ୍ତ୍ରରେ ପରିଷ୍କାର ଭାବରେ ଲିଖିତ ହୋଇନାହିଁ, ସେଗୁଡ଼ିକ ମଧ୍ୟ ଏହିସବୁ ମହାପୁରୁଷମାନଙ୍କ ପ୍ରାତ୍ୟହିକ ଜୀବନରେ —ଆହାର-ବିହାରରେ ପ୍ରତିପାଳିତ ଏବଂ ଅନୁସୃତ ହେବାର ଦେଖିବାକୁ ପାଇବ । ମହାପୁରୁଷମାନଙ୍କର ସମଗ୍ର ଜୀବନ, ଆଚରଣ, କର୍ମପଦ୍ଧତି ପ୍ରଭୃତି ସବୁକିଛି ହିଁ ଜନସାଧାରଣଙ୍କ ଜୀବନଧାରାରୁ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ଏବଂ ସେଥିପାଇଁ ସେମାନେ ଉଚ୍ଚତର ଜ୍ଞାନ ଓ ଭଗବତ୍-ଦର୍ଶନ ଅଧିକାର ଲାଭ କରିଛନ୍ତି ଏବଂ ଆମେମାନେ ଯଦି ଏହିପରି ଦର୍ଶନ ଲାଭ କରିବାକୁ ଚାହୁଁ, ତେବେ ଆମମାନଙ୍କୁ ମଧ୍ୟ ଅନୁରୂପ ପଦ୍ଧତି ଗ୍ରହଣ କରିବା ଲାଗି ପ୍ରସ୍ତୁତ ହେବାକୁ ପଡ଼ିବ । ତପସ୍ୟା ଓ ଅଭ୍ୟାସଯୋଗଦ୍ୱାରା ହିଁ ଆମେ ଏହିଭଳି ଅବସ୍ଥାକୁ ଉନ୍ନୀତ ହୋଇପାରିବୁ । ସୁତରାଂ ବେଦାନ୍ତର ପଦ୍ଧତି ଏହି—ପ୍ରଥମେ ଧର୍ମର ମୂଳନୀତିଗୁଡ଼ିକୁ ନିର୍ଦ୍ଧାରଣ କରିବାକୁ ହେବ, ଲକ୍ଷ୍ୟବସ୍ତୁଟିକୁ ଚିହ୍ନିତ କରିବାକୁ ହେବ । ତା'ପରେ ଯେଉଁ ପ୍ରଣାଳୀର ସହାୟତାରେ ଏହି ଲକ୍ଷ୍ୟରେ ପହଞ୍ଚି ହେବ, ସେହି ନୀତି ଶିଖିବାକୁ ହେବ, ବୁଝିବାକୁ ହେବ ଏବଂ ଉପଲବ୍ଧି କରିବାକୁ ହେବ ।

ପୁଣି, ଏହିସବୁ ପ୍ରଣାଳୀ ବହୁମୁଖୀ ହେବା ଉଚିତ । ଆମମାନଙ୍କ ପ୍ରକୃତି

ପରସ୍ପରଠାରୁ ଏତେ ସ୍ୱତନ୍ତ୍ର ଯେ, ଗୋଟିଏ ପ୍ରଣାଳୀ ଏକାଧିକ ବ୍ୟକ୍ତିଙ୍କ ପକ୍ଷରେ କ୍ୱଚିତ୍ ସମଭାବରେ ପ୍ରଯୁଜ୍ୟ ହୋଇପାରେ । ଆମ ପ୍ରତ୍ୟେକଙ୍କର ରୁଚି ଓ ପ୍ରକୃତି ପୃଥକ୍—ସୁତରାଂ ପ୍ରଣାଳୀ ମଧ୍ୟ ଭିନ୍ନ ହେବା ଉଚିତ । ତୁମେ ଦେଖିବ, କେହି କେହି ଅତ୍ୟନ୍ତ ଭାବପ୍ରବଣ, କେହି କେହି ଦାର୍ଶନିକ ଓ ଯୁକ୍ତିବାଦୀ, କେହି କେହି ମଧ୍ୟ ଆନୁଷ୍ଠାନିକ ପୂଜା ଅର୍ଚ୍ଚନାର ପକ୍ଷପାତୀ—ସ୍ଥୂଳ ବସ୍ତୁର ସହାୟତା ପାଇବାକୁ ଚାହାଁନ୍ତି । ଆଉ ମଧ୍ୟ ଦେଖିବ, କେହି କେହି କୌଣସି ପ୍ରକାର ରୂପ, ମୂର୍ତ୍ତି ବା ପୂଜା ଅନୁଷ୍ଠାନ ପସନ୍ଦ କରନ୍ତି ନାହିଁ । ଏଗୁଡ଼ିକ ସେମାନଙ୍କ ପକ୍ଷରେ ମୃତ୍ୟୁତୁଲ୍ୟ । ପୁଣି ଆଉ ଜଣେ ହୋଇଥିବେ ତାବିଜ ଆଉ କବଚ ସାରା ଶରୀରରେ ଲମ୍ବି ହୋଇଥାଏ । ସେ ଏହିସବୁ ପ୍ରତୀକ ପ୍ରତି ଏତେ ଅନୁରାଗୀ ! ଆଉ ଜଣେ ଭାବପ୍ରବଣ ବ୍ୟକ୍ତି ଦାନଧ୍ୟାନର ପକ୍ଷପାତୀ । ସେ କାନ୍ଦେ, ଭଲପାଏ, ବହୁ ପ୍ରକାରେ ଅନ୍ତରର ଭାବ ବ୍ୟକ୍ତ କରେ । ଅତଏବ ଏହିସବୁ ବିଭିନ୍ନ ଧରଣର ବ୍ୟକ୍ତିମାନଙ୍କ ପାଇଁ କେତେବେଳେ ହେଲେ ବି ଗୋଟିଏ ପ୍ରଣାଳୀ ଉପଯୋଗୀ ହୋଇପାରେ ନାହିଁ । ଯଦି ଧର୍ମଜଗତରେ ସତ୍ୟଲାଭ ନିମିତ୍ତ ଗୋଟିଏ ମାତ୍ର ପଥ ନିର୍ଦ୍ଦିଷ୍ଟ ଥାଆନ୍ତା, ତେବେ ଏହି ପଥ ଯେଉଁମାନଙ୍କର ଉପଯୋଗୀ ନୁହେଁ, ସେମାନଙ୍କ ପକ୍ଷରେ ଏହା ଅନିଷ୍ଟର କାରଣ ହୋଇଥାନ୍ତା—ଏପରିକି ମୃତ୍ୟୁତୁଲ୍ୟ ହୋଇଥାନ୍ତା । ସୁତରାଂ ସାଧନ-ପ୍ରଣାଳୀ ବିଭିନ୍ନ ହେବ । ସେଥିପାଇଁ ବେଦାନ୍ତ ରୁଚିର ବୈଚିତ୍ର୍ୟ ଅନୁସାରେ ଭିନ୍ନ ଭିନ୍ନ ପଥର ପ୍ରୟୋଜନୀୟତା ଉପଲବ୍ଧି କରେ ଏବଂ ତଦନୁଯାୟୀ ନିର୍ଦ୍ଦେଶ ଦେଇଥାଏ । ତୁମର ରୁଚି ଅନୁଯାୟୀ ଯେକୌଣସି ଗୋଟିଏ ପଥ ଗ୍ରହଣ କର । ଗୋଟିଏ ତୁମର ଉପଯୋଗୀ ନ ହେଲେ, ଅନ୍ୟଟି ହୁଏତ ଉପଯୋଗୀ ହୋଇପାରେ ।

ଏହି ଦୃଷ୍ଟିଭଙ୍ଗିରୁ ବିଚାର କଲେ ଆମେ ଦେଖୁ ଯେ, ଜଗତରେ ପ୍ରଚଳିତ ଏକାଧିକ ଧର୍ମ ଆମମାନଙ୍କ ପକ୍ଷରେ କେତେ ଗୌରବର ବିଷୟ ! ବହୁ ଲୋକଙ୍କ ପସନ୍ଦ ଅନୁଯାୟୀ ଜଣେ ମାତ୍ର ଆଚାର୍ଯ୍ୟ ଓ ପ୍ରତ୍ୟାଦିଷ୍ଟ ମହାପୁରୁଷ ନ ହୋଇ ବହୁଧର୍ମଗୁରୁଙ୍କ ଆବିର୍ଭାବ କେତେ କଲ୍ୟାଣକର ! ମୁସଲମାନ ସମସ୍ତ ପୃଥିବୀକୁ ଇସ୍‌ଲାମ ଧର୍ମରେ, ଖ୍ରୀଷ୍ଟାନଗଣ ଖ୍ରୀଷ୍ଟ ଧର୍ମରେ ଏବଂ ବୌଦ୍ଧଗଣ ବୌଦ୍ଧ ଧର୍ମରେ ଦୀକ୍ଷିତ କରିବାକୁ ଚାହାଁନ୍ତି । କିନ୍ତୁ ବେଦାନ୍ତର ଘୋଷଣା ହେଲା, ଜଗତର ପ୍ରତ୍ୟେକ ନରନାରୀ ନିଜନିଜର ପୃଥକ୍ ମତରେ ବିଶ୍ୱାସୀ ହୁଅନ୍ତୁ । ମତଗୁଡ଼ିକର ପଶ୍ଚାତ୍‌ରେ ଗୋଟିଏ ତତ୍ତ୍ୱ, ଗୋଟିଏ ଏକତ୍ୱ ବିଦ୍ୟମାନ । ଯେତେ ଅଧିକ ସଂଖ୍ୟାରେ ପ୍ରତ୍ୟାଦିଷ୍ଟ ମହାପୁରୁଷମାନଙ୍କର ଆବିର୍ଭାବ ହେବ, ଯେତେ ବେଶୀ ଶାସ୍ତ୍ର ରହିବ, ଯେତେ ବେଶୀ ମନ୍ତ୍ରଦ୍ରଷ୍ଟା ରହିବେ, ଯେତେ ମତ ଓ ପଥ ରହିବ, ଜଗତ ପକ୍ଷରେ ସେତେ ହିଁ ମଙ୍ଗଳ ହେବ ।

ଯେପରି ସାମାଜିକ କ୍ଷେତ୍ରରେ ସମାଜର ଯେତେ ବେଶୀ ବୃତ୍ତିର ସଂସ୍ଥାନ ଥାଏ, ଜନସାଧାରଣଙ୍କ ପକ୍ଷରେ ସେତେ ଅଧିକ ପରିମାଣରେ କର୍ମଲାଭର ସୁଯୋଗ ମିଳିଥାଏ, ଭାବ-ଜଗତରେ ଓ ଧର୍ମ-ଜଗତରେ ମଧ୍ୟ ସେହିଭଳି ହୋଇଥାଏ । ବର୍ତ୍ତମାନ କାଳରେ ବିଜ୍ଞାନର ବହୁମୁଖୀ ବିକାଶ ହେବା ଫଳରେ ମାନସିକ ଉତ୍କର୍ଷର ନିମନ୍ତେ ବହୁବିଧ ସୁଯୋଗ ମନୁଷ୍ୟ

ସମ୍ମୁଖରେ ଉପସ୍ଥିତ ହୋଇଛୁ ! ଜାଗତିକ କ୍ଷେତ୍ରରେ ବି ପ୍ରୟୋଜନ ଓ ରୁଚି ଅନୁସାରେ ନାନା ସାମଗ୍ରୀ ଆପଣା ଆୟତ୍ତ ମଧ୍ୟରେ ପାଇବାଦ୍ୱାରା ମନୁଷ୍ୟ ପକ୍ଷରେ କେତେ ବେଶୀ ସୁବିଧା ନ ହୋଇଛି ! ଧର୍ମ-ଜଗତରେ ମଧ୍ୟ ସେହି କଥା । ଭଗବାନଙ୍କର ଏହା ଗୋଟିଏ ମହିମାମୟ ବିଧାନ ଯେ, ଜଗତରେ ବହୁ ଧର୍ମମତର ଉଦ୍‌ଭବ ହୋଇଅଛି । ମୋର ପ୍ରାର୍ଥନା ଏହି ଧର୍ମମତର ସଂଖ୍ୟା ଉତ୍ତରୋତ୍ତର ବର୍ଦ୍ଧିତ ହେଉ ଏବଂ କାଳକ୍ରମେ ପ୍ରତ୍ୟେକ ବ୍ୟକ୍ତି ତା'ର ସଂସ୍କାର ଅନୁଯାୟୀ ସ୍ୱତନ୍ତ୍ର ଧର୍ମମତର ଅନୁବର୍ତ୍ତୀ ହେବାର ସୁଯୋଗ ଲଭ କରୁ ।

ବେଦାନ୍ତ ଏହି ନିଗୂଢ଼ ପ୍ରୟୋଜନ ଉପଲବ୍‌ଧି କରି ଏକ ସତ୍ୟ ପ୍ରଚାର କରନ୍ତି ଏବଂ ଏକାଧିକ ସାଧନ-ପ୍ରଣାଳୀ ସ୍ୱୀକାର କରନ୍ତି । ତୁମେ ଖ୍ରୀଷ୍ଟାନ, ବୌଦ୍ଧ, ଇହୁଦୀ ବା ହିନ୍ଦୁ, ଯାହା ହୁଅନା କାହିଁକି, ଯେକୌଣସି ପୁରାଣ ଶାସ୍ତ୍ରରେ ବିଶ୍ୱାସୀ ହୁଅନା କାହିଁକି, ନାଜାରେଥର ଈଶଦୂତ, ମକ୍‌କାର ପ୍ରେରିତ ପୁରୁଷ ମହମ୍ମଦ, ଭାରତର ବା ଅନ୍ୟ କୌଣସି ସ୍ଥାନର ଅବତାର ଓ ପ୍ରତ୍ୟାଦିଷ୍ଟ ମହାପୁରୁଷଙ୍କ ପ୍ରତି ଆନୁଗତ୍ୟ ସ୍ୱୀକାର କରନା କାହିଁକି, ଏପରିକି ତୁମେ ନିଜେ ଜଣେ ସତ୍ୟଦ୍ରଷ୍ଟା ହେଲେ ମଧ୍ୟ, ବେଦାନ୍ତ ଏ ସମ୍ବନ୍ଧରେ କିଛି କହିବ ନାହିଁ । ବେଦାନ୍ତ କେବଳ ସେହି ଶାଶ୍ୱତ ନୀତି ପ୍ରଚାର କରେ, ଯାହା ସକଳ ଧର୍ମର ଭିତ୍ତି ଏବଂ ଯାହାର ଜୀବନ୍ତ ଉଦାହରଣ ଓ ପ୍ରକାଶରୂପେ ଅବତାରପୁରୁଷ ଓ ମୁନିଋଷିଗଣ ଯୁଗେ ଯୁଗେ ଆବିର୍ଭୂତ ହୁଅନ୍ତି । ସେମାନଙ୍କ ସଂଖ୍ୟା ଯେତେ ବର୍ଦ୍ଧିତ ହେଉ, ସେଥିରେ ବେଦାନ୍ତ କୌଣସି ଆପତ୍ତି ଉତ୍ଥାପନ କରିବ ନାହିଁ । ବେଦାନ୍ତ କେବଳ ତତ୍ତ୍ୱଟି ପ୍ରଚାର କରେ ଏବଂ ସାଧନ-ପ୍ରଣାଳୀ ତୁମ ଉପରେ ଛାଡ଼ିଦିଏ । ଯେକୌଣସି ପଥ ଅନୁସରଣ କର, ଯେକୌଣସି ପ୍ରତ୍ୟାଦିଷ୍ଟ ମହାପୁରୁଷଙ୍କର ଅନୁଗାମୀ ହୁଅ, ସେଥିରେ କିଛି ଯାଏ ଆସେ ନାହିଁ । କେବଳ ଲକ୍ଷ୍ୟ ରଖ ସାଧନ-ପଥଟି ଯେପରି ତୁମର ସଂସ୍କାର ଅନୁଯାୟୀ ହୁଏ, ସେତିକି ହେଲେ ତୁମର ଉନ୍ନତି ନିଶ୍ଚିତ ।

## ଭାରତୀୟ ଧର୍ମଚିନ୍ତା

(ଆମେରିକାର ବ୍ରୁକଲୀନ୍ ସହରସ୍ଥ କ୍ଲିଣ୍ଟନ୍ ଆଭିନ୍ୟୁ ଉପରେ ଅବସ୍ଥିତ ପାଉଚ୍ ମାନସନ୍‌ର ଆର୍ଟଗ୍ୟାଲେରୀରେ ବ୍ରୁକଲୀନ୍ ଏଥିକ୍ୟାଲ୍ ସୋସାଇଟିର ବ୍ୟବସ୍ଥାପନାରେ ସ୍ୱାମୀଜୀଙ୍କ ପ୍ରଦତ୍ତ ବକ୍ତୃତା)

ଭାରତବର୍ଷ ଆକାରରେ ଆମେରିକା ଯୁକ୍ତରାଷ୍ଟ୍ରର ଅର୍ଦ୍ଧେକ ହୋଇଥିଲେ ସୁଦ୍ଧା ତା'ର ଜନସଂଖ୍ୟା ଅଣତିରିଶ କୋଟି । ଅଧିବାସୀ ମଧ୍ୟରେ ମୁସଲମାନ, ବୌଦ୍ଧ (ଜୈନ ସମେତ) ଏବଂ ହିନ୍ଦୁ, ଏହି ତିନୋଟି ଧର୍ମମତର ଆଧିପତ୍ୟ ପରିଲକ୍ଷିତ ହୁଏ । ପ୍ରଥମୋକ୍ତ ଧର୍ମାବଲମ୍ବୀଙ୍କ ସଂଖ୍ୟା ଛଅ କୋଟି, ଦ୍ୱିତୀୟଟିର ସଂଖ୍ୟା ନବେଲକ୍ଷ ଏବଂ ପ୍ରାୟ କୋଡ଼ିଏ କୋଟି ଷାଠିଏଲକ୍ଷ ନରନାରୀ ଶେଷୋକ୍ତ ଧର୍ମମତର ଅନ୍ତର୍ଭୁକ୍ତ । ହିନ୍ଦୁଧର୍ମର ମୌଳିକ

ବୈଶିଷ୍ଟ୍ୟ ହେଲ—ଏହା ଧ୍ୟାନାଶ୍ରୟୀ ଓ ତତ୍ତ୍ୱଚିନ୍ତାଶ୍ରୟୀ ଦାର୍ଶନିକ ମତ ଉପରେ ପ୍ରତିଷ୍ଠିତ ଏବଂ ବେଦର ନାନା ଖଣ୍ଡରେ ବର୍ଦ୍ଧିତ ନୈତିକ ଶିକ୍ଷା ଉପରେ ସ୍ଥାପିତ । ଏହି ବେଦର ଦାବୀ ହେଲ—ଦେଶ (space) ଦିଗରୁ ଦେଖିଲେ ଏହି ବ୍ରହ୍ମାଣ୍ଡ ଅସୀମ—ଏବଂ କାଳ (time) ଦିଗରୁ ଦେଖିଲେ ଏହା ଅନନ୍ତ । ଏହାର ଆଦି ନାହିଁ, ଅନ୍ତ ବି ନାହିଁ । ଜଡ଼ଜଗତରେ ଆତ୍ମାର ଶକ୍ତି ସାନ୍ତ ଉପରେ ଅନନ୍ତ ଶକ୍ତିର ଅସଂଖ୍ୟ ବିକାଶ ଓ ପ୍ରକାଶ ଘଟିଅଛି । ତଥାପି, ଅନନ୍ତ ଅପରିମେୟ ଆତ୍ମା ସ୍ୱୟମ୍ଭୂ, ଶାଶ୍ୱତ ଓ ଚିର ଅପରିବର୍ତ୍ତନୀୟ । ଅନନ୍ତର ବକ୍ଷରେ କାଳର ଗତି କୌଣସି ଚିହ୍ନ ଅଙ୍କିତ କରିପାରେ ନାହିଁ । ମାନବୀୟ ବୁଦ୍ଧିର ଅଗମ୍ୟ ଏହାର ଅତୀନ୍ଦ୍ରିୟ ସ୍ତରରେ ଅତୀତ ବୋଲି କିଛି ନାହିଁ, ଭବିଷ୍ୟତ ବୋଲି କିଛି ନାହିଁ । ବେଦ ବିସ୍ତାର କରନ୍ତି—ମାନବାତ୍ମା ଅବିନଶ୍ୱର । ଶରୀର କ୍ଷୟବୃଦ୍ଧି ନିୟମର ଅଧୀନ । ଯାହାର ବୃଦ୍ଧି ଅଛି, ତାହାର ବିନାଶ ଅବଶ୍ୟମ୍ଭାବୀ । କିନ୍ତୁ ପ୍ରତ୍ୟଗାତ୍ମାର ସମ୍ପର୍କ ଅନ୍ତସ୍ଥାନ ଶାଶ୍ୱତ ଜୀବନ ସହିତ; ଏହାର କୌଣସି ଦିନ ଆଦି ନ ଥିଲ ଏବଂ କେବେ ମଧ୍ୟ ଅନ୍ତ ହେବ ନାହିଁ । ହିନ୍ଦୁ ଓ ଖ୍ରୀଷ୍ଟାନ ଧର୍ମ ମଧ୍ୟରେ ଅନ୍ୟତମ ପ୍ରଧାନ ପାର୍ଥକ୍ୟ ହେଉଛି—ଖ୍ରୀଷ୍ଟଧର୍ମ ମତରେ ଏହି ପୃଥିବୀରେ ଜନ୍ମଗ୍ରହଣର ମୁହୂର୍ତ୍ତିଟିକୁ ହିଁ ପ୍ରତ୍ୟେକ ମାନବାତ୍ମାର ଆରମ୍ଭ କାଳ ବୋଲି ଧରା ହୁଏ । କିନ୍ତୁ ହିନ୍ଦୁଧର୍ମ ଦାବୀ କରେ ଯେ, ମାନବର ଆତ୍ମା ସନାତନ ଐଶୀସତ୍ତାର ହିଁ ବହିଃ-ପ୍ରକାଶ ଏବଂ ଈଶ୍ୱରଙ୍କର ଯେପରି ଆଦି ନାହିଁ ଆତ୍ମାର ମଧ୍ୟ ସେହିପରି ଆଦି ନାହିଁ । ସେ ଗୋଟିଏ ବ୍ୟକ୍ତିତ୍ୱରୁ ଅନ୍ୟ ଗୋଟିଏ ବ୍ୟକ୍ତିତ୍ୱକୁ ନିରନ୍ତର ଗମନାଗମନର ପଥରେ ଆଧ୍ୟାତ୍ମିକ କ୍ରମବିକାଶର ମହାନ୍ ନିୟମାନୁସାରେ ଅଗଣିତ ରୂପଲାଭ କରୁଛି ଏବଂ ପୂର୍ଣ୍ଣତାଲାଭ ନ ହେବା ପର୍ଯ୍ୟନ୍ତ ସେ ଏହି ପ୍ରକାର ରୂପସବୁ ଲାଭ କରିବ—ଏବଂ ତା'ପରେ ଆଉ ପରିବର୍ତ୍ତନ ଘଟିବ ନାହିଁ ।

ଏ ସମ୍ପର୍କରେ ଗୋଟିଏ ପ୍ରଶ୍ନ ବାରମ୍ବାର କରାଯାଏ—ଯଦି ଆତ୍ମା ପୂର୍ବରୁ ବହୁବାର ଜନ୍ମଗ୍ରହଣ କରିଥିଲା, ତେବେ ଅତୀତ ଜୀବନର କୌଣସି କଥା କାହିଁକି ଆମର ସ୍ମରଣ ରହେ ନାହିଁ ? ସେହି ସମ୍ପର୍କରେ ଉତ୍ତର ହେଲ—ଆମେ ମାନସ-ମହାସମୁଦ୍ରର କେବଳ ଉପରିଭାଗର ନାମ ଦେଇଛୁ 'ଚେତନା'; କିନ୍ତୁ ତା'ର ଅତଳ ଗଭୀରରେ ସଞ୍ଚିତ ରହିଛି ଆମର ସବୁ ପ୍ରକାର ସୁଖଦୁଃଖମୟ ଅଭିଜ୍ଞତା । ମାନବାତ୍ମା ଏପରି କିଛି ପାଇବାକୁ ଲାଳାୟିତ, ଯାହା ଚିରସ୍ଥାୟୀ । କିନ୍ତୁ ଆମର ମନ ଓ ଶରୀର—ବସ୍ତୁତଃ ଏହି ଦୃଶ୍ୟମାନ ବିଶ୍ୱ-ପ୍ରପଞ୍ଚର ସବୁ କିଛି ନିରନ୍ତର ପରିବର୍ତ୍ତନଶୀଳ । ଅଥଚ ଆମମାନଙ୍କ ଆତ୍ମାର ତୀବ୍ରତମ ଆକାଙ୍କ୍ଷା ଏପରି କିଛି ଲାଗି, ଯାହାର ପରିବର୍ତ୍ତନ ନାହିଁ, ଯାହା ଚିରକାଳ ଲାଗି ପରିପୂର୍ଣ୍ଣତାରେ ସ୍ଥିତି ଲାଭ କରିଛି । ମାନବାତ୍ମାର ଏହି ତୃଷ୍ଣା ଅସୀମ ଭୂମା ଲାଗି । ଆମମାନଙ୍କର ନୈତିକ ଉନ୍ନତି ଯେତେ ଗଭୀର ହେବ, ବୁଦ୍ଧିବୃତ୍ତିର ବିକାଶ ଯେତେ ସୂକ୍ଷ୍ମାତିସୂକ୍ଷ୍ମ ହେବ, ଏହି କୂଟସ୍ଥ ନିତ୍ୟ ବିଷୟ ଲାଗି ଆତ୍ମିକ ଆକାଙ୍କ୍ଷା ମଧ୍ୟ ସେତିକି ତୀବ୍ର ହେବ ।

ଆଧୁନିକ ବୈଜ୍ଞାନିକମାନେ ବିସ୍ତାର କରନ୍ତି—ଯାହାଁ ପଞ୍ଚେନ୍ଦ୍ରିୟଦ୍ୱାରା ଜଣାଯାଏ

ନାହିଁ, ତା'ର ଅସ୍ତିତ୍ୱ ସମ୍ଭବ ନୁହେଁ—ଏବଂ ମାନବର ଆତ୍ମା ବୋଲି କୌଣସି ସ୍ୱତନ୍ତ୍ର ସତ୍ତା ଅଛି, ଏ ବିଶ୍ୱାସ ଭ୍ରମ ମାତ୍ର । ଅନ୍ୟ ଦିଗରେ ବିଜ୍ଞାନବାଦୀମାନେ (Idealist) ଦାବି କରନ୍ତି, ପ୍ରତ୍ୟେକ ବ୍ୟକ୍ତିର ସ୍ୱତନ୍ତ୍ର ସତ୍ତା ରହିଛି ଏବଂ ତା'ର ମନୋଜଗତର ଧାରଣାର ବାହାରେ ବହିର୍ବିଶ୍ୱର ବାସ୍ତବିକ କୌଣସି ଅସ୍ତିତ୍ୱ ନାହିଁ । ଏହି ଦ୍ୱନ୍ଦ୍ୱର ନିଶ୍ଚିତ ସମାଧାନ ହେଉଛି, ବସ୍ତୁତଃ ବିଶ୍ୱ-ପ୍ରପଞ୍ଚ ସ୍ୱାତନ୍ତ୍ର୍ୟ ଓ ପରତନ୍ତ୍ରତାର—ବସ୍ତୁ ଓ ଧାରଣାର ସମ୍ମିଶ୍ରଣ । ଆମର ଦେହ, ମନ, ବହିର୍ଜଗତ ଉପରେ ନିର୍ଭରଶୀଳ ଏବଂ ବହିର୍ଜଗତ ସହିତ ଦେହ-ମନ ସମ୍ବନ୍ଧର ଅବସ୍ଥାନୁଯାୟୀ ଏହି ନିର୍ଭରଶୀଳତାର ତାରତମ୍ୟ ଘଟିଥାଏ । କିନ୍ତୁ ଈଶ୍ୱର ଯେପରି ସ୍ୱାଧୀନ, ପ୍ରତ୍ୟଗାତ୍ମା ମଧ୍ୟ ସେହିଭଳି ମୁକ୍ତ ଏବଂ ଶରୀର ଓ ମନର ବିକାଶ ଅନୁଯାୟୀ ସେମାନଙ୍କର ଗତିକୁ ମଧ୍ୟ ଅଳ୍ପାଧିକ ନିୟନ୍ତ୍ରଣ କରିବାରେ ସମର୍ଥ ।

ମୃତ୍ୟୁ କହିଲେ ଅବସ୍ଥାର ପରିବର୍ତ୍ତନ ମାତ୍ରକୁ ବୁଝାଇଥାଏ । ଆମେ ସେହି ଏକ ବିଶ୍ୱ ଭିତରେ ରହିଥାଉ ଏବଂ ପୂର୍ବଭଳି ସେହି ଏକ ନିୟମ-ଶୃଙ୍ଖଳରେ ଆବଦ୍ଧ ଥାଉ । ଏହି ବିଶ୍ୱକୁ ଯେଉଁମାନେ ଅତିକ୍ରମ କରିଛନ୍ତି, ଜ୍ଞାନ ଓ ସୌନ୍ଦର୍ଯ୍ୟ ବିକାଶର ଉଚ୍ଚତର ଲୋକରେ ଯେଉଁମାନେ ଉପନୀତ, ସେମାନେ ସେମାନଙ୍କର ଅନୁଗାମୀ ବିଶ୍ୱବ୍ୟାପୀ ସୈନ୍ୟବର୍ଗଙ୍କର ଅଗ୍ରଗାମୀ ଦଳ ବ୍ୟତୀତ ଆଉ କିଛି ନୁହନ୍ତି । ଏହିରୂପେ ସର୍ବୋତ୍ତମ ବିକାଶପ୍ରାପ୍ତ ଆତ୍ମା ସର୍ବନିମ୍ନ ଅନୁନ୍ନତ ଆତ୍ମା ସହିତ ସମ୍ପୃକ୍ତ ଏବଂ ଅସୀମ ପୂର୍ଣ୍ଣତାର ବୀଜ ସମସ୍ତଙ୍କ ମଧ୍ୟରେ ନିହିତ ରହିଛି । ଅତଏବ ଆମମାନଙ୍କୁ ଆଶାବାଦୀ ଦୃଷ୍ଟିଭଙ୍ଗୀ ଅନୁଶୀଳନ କରିବାକୁ ହେବ ଏବଂ ସମସ୍ତଙ୍କ ଭିତରେ ଯାହା କିଛି ଉତ୍ତମ ନିହିତ ଅଛି, ସେତିକ ଦେଖିବା ପାଇଁ ସଚେଷ୍ଟ ରହିବାକୁ ହେବ । ବସି ବସି କେବଳ ଆମର ଶରୀର ମନର ଅପୂର୍ଣ୍ଣତା ନେଇ ବିଳାପ କଲେ କୌଣସି ଲାଭ ହେବ ନାହିଁ । ସମସ୍ତ ପ୍ରତିକୂଳ ଅବସ୍ଥାକୁ ଦମନ କରିବା ନିମିତ୍ତ ଯେଉଁ ସାଗ୍ରହ ପ୍ରଚେଷ୍ଟା, ତାହା ହିଁ ଆମର ଆତ୍ମାକୁ ଉନ୍ନତପଥରେ ଚାଳିତ କରେ । ମାନବ-ଜୀବନର ଉଦ୍ଦେଶ୍ୟ—ଆଧ୍ୟାତ୍ମିକ ଉନ୍ନତିର ନିୟମଗୁଡ଼ିକୁ ଉତ୍ତମ ରୂପେ ଆୟତ୍ତ କରିବା । ଖ୍ରୀଷ୍ଟାନମାନେ ଏ ବିଷୟରେ ହିନ୍ଦୁମାନଙ୍କ ନିକଟରୁ ଶିକ୍ଷା କରିପାରନ୍ତି । ହିନ୍ଦୁମାନେ ମଧ୍ୟ ଖ୍ରୀଷ୍ଟାନମାନଙ୍କଠାରୁ ଶିକ୍ଷାକରିପାରନ୍ତି । ବିଶ୍ୱର ଜ୍ଞାନଭଣ୍ଡାରରେ ଏ ପ୍ରତ୍ୟେକଙ୍କର ମୂଲ୍ୟବାନ ଅବଦାନ ରହିଛି ।

ଆପଣମାନେ ସନ୍ତାନସନ୍ତତିଙ୍କୁ ଏହି ଶିକ୍ଷା ଦିଅନ୍ତୁ ଯେ, ପ୍ରକୃତ ଧର୍ମ ଇତିମୂଳକ ସତ୍ୟ ବସ୍ତୁ, ନେତିମୂଳକ ନୁହେଁ । ଏହି ଶିକ୍ଷା ଦିଅନ୍ତୁ ଯେ, କେବଳ ପାପଠାରୁ ବିରତ ରହିବା ହିଁ ଧର୍ମ ନୁହେଁ । ନିରନ୍ତର ମହତ୍ତ୍ୱ କର୍ମର ଅନୁଷ୍ଠାନ ହିଁ ଧର୍ମ । ପ୍ରକୃତ ଧର୍ମ କୌଣସି ମନୁଷ୍ୟ ନିକଟରୁ ଶିକ୍ଷାଦ୍ୱାରା ପ୍ରାପ୍ୟ ବିଷୟ ନୁହେଁ—ପୁସ୍ତକପାଠଦ୍ୱାରା ମଧ୍ୟ ଲଭ୍ୟ ନୁହେଁ । ପ୍ରକୃତ ଧର୍ମ ହେଲା—ଅନ୍ତରାତ୍ମାର ଜାଗରଣ ଏବଂ ଏହି ଜାଗରଣ ସାଗ୍ରହ ପୁଣ୍ୟକର୍ମର ଅନୁଷ୍ଠାନ ଦ୍ୱାରା ସଂଘଟିତ ହୁଏ । ଏହି ପୃଥିବୀରେ ଜାତ ପ୍ରତ୍ୟେକ ଶିଶୁ ହିଁ ପୂର୍ବ ପୂର୍ବ ଅତୀତ ଜୀବନରୁ ସଞ୍ଚିତ ଅଭିଜ୍ଞତା ନେଇ ଜନ୍ମଗ୍ରହଣ କରନ୍ତି । ଏହିସବୁ ସଞ୍ଚିତ ଅଭିଜ୍ଞତାର

ସୁସ୍ପଷ୍ଟ ଚିହ୍ନ ସେମାନଙ୍କ ଦେହ-ମନର ଗଠନରେ ପରିଲକ୍ଷିତ ହୁଏ । କିନ୍ତୁ ଆମ ସମସ୍ତଙ୍କ ମଧ୍ୟରେ ଯେ ଏକପ୍ରକାର ସ୍ୱାତନ୍ତ୍ର୍ୟବୋଧ ରହିଛି, ତାହା ସୁସ୍ପଷ୍ଟରୂପେ ପ୍ରମାଣ କରେ ଯେ, ଶରୀର ଓ ମନ ବ୍ୟତୀତ ଆଉ କିଛି ମଧ୍ୟ ଆମ ଭିତରେ ବିରାଜିତ ରହିଛି । ଆମ ସମସ୍ତଙ୍କ ଅନ୍ତରରେ ଯେଉଁ ଆତ୍ମା ଆଧିପତ୍ୟ କରେ, ତାହା ସ୍ୱାଧୀନ ଏବଂ ତାହା ହିଁ ଆମ ମନରେ ମୁକ୍ତିର ଆକାଙ୍କ୍ଷା ଜାଗରିତ କରେ । ଆମେ ନିଜେ ଯଦି ମୁକ୍ତ ନ ହେଉ, ତାହାହେଲେ ଏହି ପୃଥିବୀର ଉନ୍ନତି-ସାଧନର ଆଶା କେଉଁରୂପେ କରିପାରିବୁ ? ଆମେ ବିଶ୍ୱାସ କରୁ ଯେ, ମନୁଷ୍ୟର ପ୍ରଗତି ଆତ୍ମାର କାର୍ଯ୍ୟକଳାପ ଫଳରେ ହିଁ ସମ୍ଭବ ହୁଏ । ଏ ପୃଥିବୀ ଯାହା ଏବଂ ଆମେମାନେ ଯାହା, ତାହା ଆତ୍ମାର ମୁକ୍ତସ୍ୱଭାବର ହିଁ ଫଳ ।

ଆମର ବିଶ୍ୱାସ ଈଶ୍ୱର ଏକ । ସେ ଆମ ସମସ୍ତଙ୍କର ପିତା । ସେ ସର୍ବତ୍ର ବିରାଜମାନ, ସର୍ବଶକ୍ତିମାନ ଏବଂ ସେ ତାଙ୍କର ସନ୍ତାନମାନଙ୍କୁ ଅସୀମ ପ୍ରେମ ସହିତ ପରିଚାଳନା ଓ ପରିପାଳନ କରନ୍ତି । ଆମେ ଖ୍ରୀଷ୍ଟଧର୍ମାବଲମ୍ବୀମାନଙ୍କ ଭଳି ସଗୁଣ ଈଶ୍ୱରଙ୍କୁ ବିଶ୍ୱାସ କରୁ—କିନ୍ତୁ ସେତିକରେ ଆମେ କ୍ଷାନ୍ତ ହୋଇ ଯାଉନାହିଁ । ଆମେ ଆହୁରି ଅଗ୍ରସର ହୋଇ କହୁ ଯେ—ମୁଁ ହେଉଛି ସେହି ଈଶ୍ୱର । ଆମେ କହୁ ଯେ, ତାଙ୍କର ବ୍ୟକ୍ତିତ୍ୱ ଆମମାନଙ୍କ ଭିତରେ ବିକଶିତ । ଆମମାନଙ୍କ ଅନ୍ତରରେ ସେ ବାସ କରନ୍ତି ଏବଂ ଆମେମାନେ ତାଙ୍କଠାରେ ଅବସ୍ଥିତ । ଆମେ ବିଶ୍ୱାସ କରୁ—ସବୁ ଧର୍ମରେ କିଛି ନା କିଛି ସତ୍ୟର ବୀଜ ନିହିତ ଅଛି ଏବଂ ହିନ୍ଦୁମାନେ ସବୁ ଧର୍ମ ନିକଟରେ ଶ୍ରଦ୍ଧାର ସହିତ ମସ୍ତକ ଅବନତ କରିଥାଆନ୍ତି । କାରଣ ଏହି ବିଶ୍ୱପ୍ରପଞ୍ଚରେ କ୍ରମବୃଦ୍ଧିର ନିୟମରେ ସତ୍ୟ ଉପଲବ୍ଧ ହୁଏ, ସଙ୍କୁଚିତ ହେବାର ନିୟମରେ ନୁହେଁ । ଆମେ ଭଗବାନଙ୍କ ଚରଣରେ ସବୁ ଧର୍ମର ସର୍ବୋତ୍କୃଷ୍ଟ ପୁଷ୍ପରାଶିଦ୍ୱାରା ସଜ୍ଜିତ ଗୋଟିଏ ସ୍ତବକ ନିବେଦନ କରିବୁ । ଆମେ ତାଙ୍କୁ ଭଲ ପାଇବା ଲାଗି ଭଲ ପାଇବୁ—କୌଣସି ପ୍ରକାର ଲାଭ ଆଶାରେ ନୁହେଁ । ଆମେ କର୍ତ୍ତବ୍ୟ ଲାଗି କର୍ତ୍ତବ୍ୟ କରିବୁ—କୌଣସି ପୁରସ୍କାର ପ୍ରତ୍ୟାଶାରେ ନୁହେଁ । ଆମେ ସୌନ୍ଦର୍ଯ୍ୟ ଲାଗି ସୌନ୍ଦର୍ଯ୍ୟର ଉପାସନା କରିବୁ—ଲାଭ-ଆକାଙ୍କ୍ଷାରେ ନୁହେଁ । ଏହିରୂପେ ଚିତ୍ତର ପବିତ୍ରତା ସହିତ ଆମେ ଭଗବାନଙ୍କର ଦର୍ଶନ ପାଇବୁ । ଯାଗ-ଯଜ୍ଞ, ମୁଦ୍ରା ଓ ନ୍ୟାସ, ମନ୍ତ୍ରୋଚ୍ଚାରଣ ବା ମନ୍ତ୍ରଜପ ପ୍ରଭୃତିକୁ ଧର୍ମ କହିବା ଠିକ୍ ନୁହେଁ । ଏସବୁ ସେତିକି ବେଳେ ପ୍ରଶଂସନୀୟ, ଯେତେବେଳେ ସେଗୁଡ଼ିକ ଆମ ମନରେ ସାହସର ସହିତ ସୁନ୍ଦର ଓ ବୀରୋଚିତ କର୍ମସମ୍ପାଦନ ନିମିତ୍ତ ଉତ୍ସାହ ସଞ୍ଚାର କରେ ଏବଂ ଆମର ଚିତ୍ତକୁ ଭଗବାନଙ୍କ ପୂର୍ଣ୍ଣତା ଉପଲବ୍ଧି କରିବା ସ୍ତରକୁ ଉନ୍ନୀତ କରେ ।

ଯଦି ପ୍ରତିଦିନ କେବଳ ପ୍ରାର୍ଥନା ସମୟରେ ଆମେ 'ଈଶ୍ୱର ସମସ୍ତଙ୍କର ପିତା' ବୋଲି ସ୍ୱୀକାର କରିବା, କିନ୍ତୁ ଦୈନନ୍ଦିନ ଜୀବନରେ ପ୍ରତ୍ୟେକ ମନୁଷ୍ୟ ସହିତ ଭାଇଭଳି ବ୍ୟବହାର ନ କରିବା, ତା'ହେଲେ କଅଣ ଲାଭ ହେବ ? ପୁସ୍ତକରଚନାର ଉଦ୍ଦେଶ୍ୟ ହେଲା: କେବଳ ଆମ ଲାଗି ଉଚ୍ଚତର ଜୀବନର ପଥ ନିର୍ଦ୍ଦେଶ କରିବା, କିନ୍ତୁ ଅବିଚଳିତ

ଚଲିରେ ଆମେ ଯଦି ଯେ ପଥରେ ନ ଚାଲିପାରୁ, ତା'ହେଲେ କୌଣସି ଶୁଭ ଫଳ ମିଳିବ ନାହିଁ । ପ୍ରତ୍ୟେକ ମନୁଷ୍ୟର ବ୍ୟକ୍ତିତ୍ୱକୁ ଗୋଟିଏ କାଚଗୋଲକ ସଙ୍ଗେ ତୁଳନା କରାଯାଇ-ପାରେ । ପ୍ରତ୍ୟେକଟିର କେନ୍ଦ୍ର ସେହି ଶୁଭ୍ର ଜ୍ୟୋତି, ଐଶୀ ସତ୍ତାର ଏକ ବିଚ୍ଛୁରଣ; କିନ୍ତୁ କାଚର ଆବରଣର ବର୍ଣ୍ଣ ଓ ଘନତ୍ୱର ପାର୍ଥକ୍ୟରୁ ରଶ୍ମି ନିଃସରଣରେ ବୈଚିତ୍ର୍ୟ ଓ ବିଭିନ୍ନତା ଘଟିଥାଏ । କେନ୍ଦ୍ରରେ ଅବସ୍ଥିତ ଶିଖାଟିର ଦୀପ୍ତି ଓ ସୌନ୍ଦର୍ଯ୍ୟ ସମାନ । କିନ୍ତୁ ଯେଉଁ କାଳଗତ ଯନ୍ତ୍ର ମାଧ୍ୟମରେ ତା'ର ପ୍ରକାଶ ହୁଏ, କେବଳ ତାହାର ଅପୂର୍ଣ୍ଣତାବଶତଃ ତାରତମ୍ୟର ପ୍ରତୀତି ଘଟିଥାଏ । ବିକାଶର ମାନଦଣ୍ଡ ଅନୁସାରେ ଆମେ ଯେତେ ଉଚ୍ଚରେ ଆରୋହଣ କରିବା, ସେତେ ହିଁ ପ୍ରକାଶ-ଯନ୍ତ୍ର ସ୍ୱଚ୍ଛରୁ ସ୍ୱଚ୍ଛତର ହୋଇଉଠିବ ।

## କଳ୍ପକାଳୀନ ସ୍ଥିତି ଓ ପରିବର୍ତ୍ତନ

[ ପ୍ରଥମଥର ଆମେରିକାରେ ଅବସ୍ଥାନ କାଳରେ ଜନୈକ ପାଶ୍ଚାତ୍ୟବାସୀ ଶିଷ୍ୟଙ୍କ ପ୍ରଶ୍ନର ଉତ୍ତରରେ ଲିଖିତ ]

ଜଗତରେ ସମତା ନଷ୍ଟ ହୋଇ ଯାଇଛି; ବିନଷ୍ଟ ସାମ୍ୟାବସ୍ଥାର ଦୃଷ୍ଟାନ୍ତ ଏହି ସମଗ୍ର ବିଶ୍ୱ । ଜଗତର ସମସ୍ତ ଗତି ଏହି ସାମ୍ୟାବସ୍ଥା ଫେରି ପାଇବାର ପ୍ରୟାସକୁ ବୁଝାଯାଏ; ସେଥିପାଇଁ ଏହାକୁ 'ଗତି' ଆଖ୍ୟା ଦେବା ଅନୁଚିତ । ଅନ୍ତର୍ଜଗତର ସାମ୍ୟାବସ୍ଥା ଏପରି ଗୋଟିଏ ଜିନିଷ, ଯାହା କି ଆମର ଚିନ୍ତାର ଅତୀତ । କାରଣ, ଚିନ୍ତା ନିଜେ ହିଁ ଗତିବିଶେଷ । ପ୍ରସାର ଅର୍ଥ ହେଲା ପୂର୍ଣ୍ଣ ସମତା ଦିଗରେ ଅଗ୍ରସର ହେବା ଏବଂ ସମଗ୍ର ଜଗତ ସେହି ଦିଗରେ ହିଁ ଧାବମାନ । ସେ ଦୃଷ୍ଟିରୁ ପୂର୍ଣ୍ଣ ସାମ୍ୟାବସ୍ଥା କେବେହେଲେ ଲାଭ କରାଯାଇ ନ ପାରେ—ଏଭଳି କଥା କହିବାର ଅଧିକାର ଆମର ନାହିଁ । ସାମ୍ୟାବସ୍ଥାରେ କୌଣସି ପ୍ରକାର ବୈଚିତ୍ର୍ୟ ରହିବା ଅସମ୍ଭବ । ଏହା ବୈଚିତ୍ର୍ୟହୀନ ହେବ ହିଁ ହେବ । କାରଣ, ଯେତେବେଳ ପର୍ଯ୍ୟନ୍ତ ମାତ୍ର ଦୁଇଟି ପରମାଣୁ ଥିବ, ସେତେବେଳ ଯାଏ ଏମାନେ ପରସ୍ପରକୁ ଆକର୍ଷଣ ବିକର୍ଷଣ କରି ସାମ୍ୟଭାବ ନଷ୍ଟ କରିବେ । ସାମ୍ୟାବସ୍ଥା —ଏକତ୍ୱ, ସ୍ଥିତି ଓ ସାଦୃଶ୍ୟର ଅବସ୍ଥା । ଅନ୍ତର୍ଜଗତ ଦିଗରୁ ଏହି ସାମ୍ୟାବସ୍ଥା ଚିନ୍ତା ମଧ୍ୟ ନୁହେଁ, ଶରୀର ବି ନୁହେଁ, ଏପରିକି ଆମେ ଯାହାକୁ ଗୁଣ କହୁ ତାହା ମଧ୍ୟ ନୁହେଁ । ନିଜର ସ୍ୱରୂପ କହିଲେ ଯାହା ବୁଝାଏ, ଏ ଅବସ୍ଥାରେ ଏକମାତ୍ର ତାହା ହିଁ ଥାଏ । ଏହା ହିଁ ସତ୍, ଚିତ୍ ଓ ଆନନ୍ଦ ସ୍ୱରୂପ ।

ଗୋଟିଏ ମାତ୍ର କାରଣରୁ ଏହି ଅବସ୍ଥା କେବେ ଦୁଇପ୍ରକାର ହୋଇ ନ ପାରେ, ଏହା ଅବିଶ୍ୱାସ୍ୟ । ଏଠାରେ ତୁମେ ମୁଁ ପ୍ରଭୃତି ସବୁପ୍ରକାର କୃତ୍ରିମ ବୈଚିତ୍ର୍ୟ ଅନ୍ତର୍ହିତ ହୋଇଯିବ, କାରଣ ବୈଚିତ୍ର୍ୟ ପରିବର୍ତ୍ତନ ବା ଅଭିବ୍ୟକ୍ତିର ଅବସ୍ଥା । ଏହା ମାୟାର ଅନ୍ତର୍ଗତ । ଅବଶ୍ୟ ତୁମେ କହିପାର, ଆତ୍ମାର ଏହି ଅଭିବ୍ୟକ୍ତ ଅବସ୍ଥା ଦେଖି ଆତ୍ମା ପୂର୍ବେ

ସ୍ଥିର ଓ ମୁକ୍ତ ଥିଲା, ଏକଥା ମନେହେଲେ ମଧ୍ୟ ବର୍ତ୍ତମାନ ଭେଦପୂର୍ଣ୍ଣ ଅବସ୍ଥା ହିଁ ଏହାର ପ୍ରକୃତ ସ୍ୱରୂପ; ଯେଉଁଥିରୁ ଆତ୍ମା ଏହି ପରିବର୍ତ୍ତନଶୀଳ ଅବସ୍ଥାରେ ଆସି ଉପନୀତ ହୋଇଛି, ତାହା ଆତ୍ମାର ଆଦିମ ଅପରିଣତ ଅବସ୍ଥା—ସେ ଅବସ୍ଥାକୁ ପୁନଶ୍ଚ ଫେରିଯିବା ମାନେ ଅଧଃପତନ । ଏକଥା କହିପାରି ସତ—ତେବେ ଏକଥାର କୌଣସି ମୂଲ୍ୟ ବା ଗୁରୁତ୍ୱ ନାହିଁ । ତାହା ଥାଆନ୍ତା, ଯଦି ପ୍ରମାଣିତ ହୁଅନ୍ତା ଯେ ଆତ୍ମାର ଏକରୂପତା ଓ ନାନା-ଧର୍ମିତା ନାମକ ଅବସ୍ଥାପ୍ରାପ୍ତି ମାତ୍ର ଥରକ ପାଇଁ ଘଟନ୍ତା । କିନ୍ତୁ ତାହା ତ ନୁହେଁ—ଯାହା ଥରେ ଘଟେ, ବାରମ୍ବାର ତା'ର ପୁନରାବୃତ୍ତି ହେବ ହିଁ ହେବ । ସ୍ଥିତିକୁ ଅନୁସରଣ କରି ପରିବର୍ତ୍ତନ—ଏହା ହିଁ ଜଗତ । ସ୍ଥିତିପୂର୍ବରୁ ପରିବର୍ତ୍ତନ ନିଶ୍ଚୟ ଥିଲା ଏବଂ ପରିବର୍ତ୍ତନର ପରବର୍ତ୍ତୀ ସ୍ଥିତି ପୁନର୍ବାର ଆସିବ । ବାରମ୍ବାର ଏହିଭଳି ଘଟିବ । ଏକଥା ଚିନ୍ତା କରିବା ହାସ୍ୟକର ଯେ, ଏକଦା ନିରବଚ୍ଛିନ୍ନ ସ୍ଥିତି ଥିଲା ଏବଂ ତା'ପରେ ନିରବଚ୍ଛିନ୍ନ ପରିବର୍ତ୍ତନ ଆସିଛି । ପ୍ରକୃତିର ପ୍ରତ୍ୟେକ କଣା ଦେଖାଇଦିଏ ଯେ, କ୍ରମାନ୍ୱୟରେ ସ୍ଥିତି ଓ ପରିବର୍ତ୍ତନର ଭିତର ଦେଇ ଏହା ନିୟମିତ ଭାବରେ ଚାଲିଛି ।

ଦୁଇଟି ସ୍ଥିତିକାଳର ମଧ୍ୟବର୍ତ୍ତୀ ବ୍ୟବଧାନର ନାମ କଳ୍ପ । କାଳ୍ପିକ ସ୍ଥିତି ଗୋଟିଏ ପୂର୍ଣ୍ଣ ସମଜାତୀୟ ଅବସ୍ଥା ହୋଇ ନ ପାରେ । ତାହା ଯଦି ହେବ, ତେବେ ଭାବୀ ବିକାଶର ପରିସମାପ୍ତି ଘଟିବ । ଏକଥା କହିବା ଅଯୌକ୍ତିକ ଯେ, ବର୍ତ୍ତମାନ ପରିବର୍ତ୍ତନର ଅବସ୍ଥା ପୂର୍ବର ସ୍ଥିତି ଅବସ୍ଥା ତୁଳନାରେ ଉନ୍ନତତର । କାରଣ, ତା'ହେଲେ ଭାବୀ ସ୍ଥିତି ଅବସ୍ଥାର କାଳ, ପୂର୍ବବର୍ତ୍ତୀ ପରିବର୍ତ୍ତନ ଅବସ୍ଥାର କାଳ ଅପେକ୍ଷା ଅଧୁନାତନ ହେବା ଲାଗି ସେହି ଅବସ୍ଥା ପୂର୍ଣ୍ଣତର ହେବ । ପ୍ରକୃତି ବାରମ୍ବାର ଗୋଟିଏ ରୂପ ଦେଖାଉଥାଏ । ନିୟମ କହିଲେ ବସ୍ତୁତଃ ଏହା ହିଁ ବୁଝାଏ । ଜୀବାତ୍ମାମାନଙ୍କର କ୍ଷେତ୍ରରେ କିନ୍ତୁ ବିଭିନ୍ନ କଳ୍ପରେ କ୍ରମଶଃ ଉନ୍ନତତର ଅବସ୍ଥାପ୍ରାପ୍ତି ଘଟିଥାଏ । ଅର୍ଥାତ୍ ଜୀବାତ୍ମାମାନେ କଳ୍ପରୁ ଅନ୍ୟ କଳ୍ପକୁ ନିଜ ସ୍ୱରୂପର ଅଧିକତର ନିକଟବର୍ତ୍ତୀ ହୁଅନ୍ତି । ଏହି ଭାବରେ କ୍ରମଶଃ ଉନ୍ନତ ହୋଇ ହୋଇ ପ୍ରତିକଳ୍ପରେ ଅନେକ ଜୀବାତ୍ମା ମୁକ୍ତ ହୋଇଯାଆନ୍ତି । ପୁନର୍ବାର ସେମାନଙ୍କୁ ସଂସାରଚକ୍ରରେ ଆବର୍ତ୍ତିତ ହେବାକୁ ପଡ଼େ ନାହିଁ ।

ଜଣେ କହିପାରେ—ଜୀବାତ୍ମା ତ ଜଗତ ଓ ପ୍ରକୃତିର ଅଂଶ, ଜଗତ ଓ ପ୍ରକୃତି ସଦୃଶ ସେ ବି ତ ବାରମ୍ବାର ପୁନରାବର୍ତ୍ତନ କରିବା କଥା ! ତା'ର ଆଉ ମୁକ୍ତି କିପରି ହେବ ? ଜଗତର ଧ୍ୱଂସ ନ ହେଲେ ତା'ର ବା ଆଉ କିଭଳି ମୁକ୍ତି ହେବ ?

ଏହାର ଉତ୍ତରରେ କୁହାଯାଇପାରେ—ଜୀବାତ୍ମା ମାୟାର କଳ୍ପନା ମାତ୍ର । ସ୍ୱରୂପତଃ ସେ ମଧ୍ୟ ଯଥାର୍ଥ ସତ୍ତା ବା ବ୍ରହ୍ମ । ଜୀବାତ୍ମା ହିଁ ନିର୍ବିଶେଷ ବ୍ରହ୍ମ । ପ୍ରକୃତି ଭିତରେ ଯାହା ସତ୍ ବସ୍ତୁ, ତାହା ହିଁ ବ୍ରହ୍ମ । ମାୟାର ଅଧ୍ୟାସ ହେତୁ ସେ ଏହି ନାନାତ୍ୱ ବା ପ୍ରକୃତି ରୂପରେ ପ୍ରତୀତ ହେଉଛନ୍ତି । ମାୟା ଦୃଷ୍ଟିବିଭ୍ରମ ମାତ୍ର । ତେଣୁପାଇଁ ମାୟାକୁ 'ସତ୍' କୁହାଯାଇପାରେ ନାହିଁ । ତଥାପି ମାୟା ଏହି ଦୃଶ୍ୟଜଗତ ସୃଷ୍ଟି କରିଛନ୍ତି । ଯଦି କୁହ—ମାୟା ନିଜେ ଅସତ୍ ହୋଇ କିପରି ସୃଷ୍ଟି କରନ୍ତି ? ତା'ର ଉତ୍ତରରେ କୁହାଯାଇପାରେ

—ଯାହା ସୃଷ୍ଟ ହୁଏ, ତାହା ଯଦି ଅଜ୍ଞାନ (ଅସତ୍) ତେବେ ସ୍ରଷ୍ଟା ବି ଅଜ୍ଞାନୀ (ଅସତ୍) ହେବେ । ଜ୍ଞାନଦ୍ୱାରା କିପରି ଅଜ୍ଞାନର ସୃଷ୍ଟି ହୋଇପାରିବ ? ତେଣୁ ବିଦ୍ୟା ଓ ଅବିଦ୍ୟା—ଏହି ଦୁଇରୂପରେ ମାୟା କାର୍ଯ୍ୟ କରୁଛନ୍ତି । ଅବିଦ୍ୟା ବା ଅଜ୍ଞାନକୁ ନାଶ କରି ବିଦ୍ୟା ନିଜେ ମଧ୍ୟ ବିନଷ୍ଟ ହୁଅନ୍ତି । ଏହି ଭାବରେ ମାୟା ନିଜେ ନିଜକୁ ବିନଷ୍ଟ କରନ୍ତି । ତା'ପରେ ଯାହା ବାକି ଥାଏ, ତାହା ହିଁ ସଚ୍ଚିଦାନନ୍ଦ ବ୍ରହ୍ମ । ପ୍ରକୃତି ଭିତରେ ଯାହା ସଦ୍‌ବସ୍ତୁ, ତାହା ହିଁ ବ୍ରହ୍ମ । ପ୍ରକୃତି ତିନୋଟି ରୂପରେ ଆମମାନଙ୍କ ନିକଟରେ ଆବିର୍ଭୂତ ହୁଅନ୍ତି—ଈଶ୍ୱର, ଚିତ୍ ବା ଜୀବ ଏବଂ ଅଚିତ୍ ବା ଜଡ଼ବସ୍ତୁ । ଏସବୁର କିନ୍ତୁ ପ୍ରକୃତ ସ୍ୱରୂପ ହେବେ ବ୍ରହ୍ମ । ମାୟା ଭିତର ଦେଇ ଦେଖୁ ବୋଲି ସେ ନାନାରୂପରେ ପ୍ରତିଭାତ ହୁଅନ୍ତି । ତେବେ ଈଶ୍ୱରଙ୍କ ଦର୍ଶନ କରିବାଦ୍ୱାରା, ପରମସତ୍ତାଙ୍କୁ ଈଶ୍ୱରରୂପେ ଦର୍ଶନ କରିବାଦ୍ୱାରା ଚରମ-ସତ୍ତାର ସବୁଠାରୁ ନିକଟବର୍ତ୍ତୀ ହୋଇହୁଏ ଏବଂ ଏହା ହିଁ ସର୍ବୋତ୍ତମ ଦର୍ଶନ । ସଗୁଣ ଈଶ୍ୱରଙ୍କର ଭାବ ହିଁ ମାନବୀୟ ଭାବର ସର୍ବୋଚ୍ଚ ଅବସ୍ଥା । ପ୍ରକୃତିର ଗୁଣଗୁଡ଼ିକ ଯେଉଁ ଅର୍ଥରେ ସତ୍ୟ, ଈଶ୍ୱରଙ୍କଠାରେ ଆରୋପିତ ଗୁଣଗୁଡ଼ିକ ମଧ୍ୟ ସେହି ଅର୍ଥରେ ସତ୍ୟ । ତଥାପି ଏକଥା ଯେପରି ଆମେ କେବେ ଭୁଲି ନ ଯାଉ ଯେ, ନିର୍ଗୁଣ ବ୍ରହ୍ମଙ୍କୁ ମାୟା ଭିତର ଦେଇ ଦେଖିଲେ ଯେଉଁ ରୂପରେ ଦିଶେ, ତାହା ହିଁ ହେଲେ ସଗୁଣ ଈଶ୍ୱର ।

# ବିସ୍ତାର ଲାଗି ସଂଗ୍ରାମ

[ ପ୍ରଥମଥର ଆମେରିକାରେ ଅବସ୍ଥାନ କରୁଥିଲା ବେଳେ ଜନୈକ ପାଶ୍ଚାତ୍ୟବାସୀ ଶିଷ୍ୟଙ୍କ ପ୍ରଶ୍ନରେ ସ୍ୱାମୀଜୀକର୍ତ୍ତୃକ ଲିଖିତ ।]

ଆମର ସର୍ବବିଧ ଜ୍ଞାନ ଭିତରେ ଅନୁସ୍ୟୂତ ରହିଛି ସେହି ପ୍ରାଚୀନ ସମସ୍ୟାଟି— ବୀଜରୁ ବୃକ୍ଷର ଉତ୍ପତ୍ତି ନା ବୃକ୍ଷରୁ ବୀଜର ଉତ୍ପତ୍ତି : ସତ୍ତାର ଅଭିବ୍ୟକ୍ତିର କ୍ରମରେ ଚୈତନ୍ୟ ପ୍ରଥମ, ନା ଜଡ଼ ପ୍ରଥମ; ଭାବ ପ୍ରଥମ ନା ବାହ୍ୟପ୍ରକାଶ ପ୍ରଥମ ! ମୁକ୍ତି ଆମର ପ୍ରକୃତସ୍ୱରୂପ ନା ନିୟମର ବନ୍ଧନ ! ଚିନ୍ତା ଜଡ଼ର ସ୍ରଷ୍ଟା, ନା ଜଡ଼ ଚିନ୍ତାର ସ୍ରଷ୍ଟା ! ପ୍ରକୃତିରେ ନିରବଚ୍ଛିନ୍ନ ପରିବର୍ତ୍ତନ ସ୍ଥିତିର ପୂର୍ବ ଅବସ୍ଥା ନା ସ୍ଥିତିର ଭାବଟି ପରିବର୍ତ୍ତନର ପୂର୍ବ ଅବସ୍ଥା ? ଏହିସବୁ ପ୍ରଶ୍ନର ସମାଧାନ ସମାନ ଭାବରେ ଦୁରୂହ । ତରଙ୍ଗମାଳାର ପର୍ଯ୍ୟାୟକ୍ରମରେ ଉତ୍ଥାନ ଓ ପତନସଦୃଶ ଉପରୋକ୍ତ ପ୍ରଶ୍ନଗୁଡ଼ିକ ମଧ୍ୟ ଅନିବାର୍ଯ୍ୟ ପରମ୍ପରାରେ ଗୋଟିଏ ଆରଟିକୁ ଅନୁସରଣ କରିଥାଏ ଏବଂ ମନୁଷ୍ୟ ତା'ର ରୁଚି, ଶିକ୍ଷା ବା ମାନସିକ ଗଠନର ବୈଶିଷ୍ଟ୍ୟ ଅନୁଯାୟୀ କୌଣସି ନା କୌଣସି ଗୋଟିଏ ପକ୍ଷ ସମର୍ଥନ କରେ । ଉଦାହରଣ ସ୍ୱରୂପ ଯଦି କୁହାଯାଏ ଯେ, ପ୍ରକୃତିର ବିଭିନ୍ନ ଅଂଶଗୁଡ଼ିକ ଭିତରେ ଯେଉଁ ସଙ୍ଗତି ରହିଅଛି ତାହା ଦେଖି ସ୍ପଷ୍ଟ ମନେହୁଏ, ଏହା ଚେତନାତ୍ମକ କାର୍ଯ୍ୟର ହିଁ ଫଳ; ପକ୍ଷାନ୍ତରରେ ତର୍କ କରାଯାଇପାରେ—ଚୈତନ୍ୟର ଅସ୍ତିତ୍ୱ ଜଗତ୍-ସୃଷ୍ଟିର ପୂର୍ବେ ରହିବା ସମ୍ଭବପର ନୁହେଁ— କାରଣ ବିବର୍ତ୍ତନର ଫଳରେ ଏହା ଜଡ଼ ଏବଂ ଶକ୍ତିଦ୍ୱାରା ସୃଷ୍ଟ ହୋଇଛି । ଯଦି କୁହାଯାଏ ଯେ, ପ୍ରତିଟି ରୂପର ପଶ୍ଚାତ୍‌ରେ ମନରେ ଗୋଟିଏ ଭାବାଦର୍ଶ ଅବଶ୍ୟ ହିଁ ରହିବ, ତା'ହେଲେ ସମାନ ଜୋର୍ ଦେଇ କୁହାଯାଇପାରେ – ବହୁବିଧ ବାହ୍ୟ ଅଭିଜ୍ଞତାଦ୍ୱାରା ହିଁ ଭାବାଦର୍ଶର ସୃଷ୍ଟି ହୋଇଥିଲା । ଗୋଟିଏ ଦିଗରେ ମୁକ୍ତି ସମ୍ବନ୍ଧରେ ଆମର ଚିରନ୍ତନ ଧାରଣା ପ୍ରତି ଆବେଦନ, ଅପରଦିଗରେ ଏ ଧାରଣା ମଧ୍ୟ ରହିଛି ଯେ, ଜଗତରେ କେଉଁ ବିଷୟ କାରଣ-ହୀନ ନୁହେଁ ବୋଲି କି ସ୍ଥୂଳ, କି ମାନସିକ—ସବୁ କିଛି ହିଁ କାର୍ଯ୍ୟକାରଣ-ନିୟମର ବନ୍ଧନରେ ଦୃଢ଼ ଭାବରେ ଆବଦ୍ଧ । ଶକ୍ତିଦ୍ୱାରା ଉତ୍ପନ୍ନ ଶରୀରର ପରିବର୍ତ୍ତନ ଲକ୍ଷ୍ୟ କରିବା ପରେ ଯଦି ସ୍ୱୀକାର କରାଯାଏ, ଚିନ୍ତା ହିଁ ସ୍ପଷ୍ଟତଃ ଏହି ଶରୀରର ସ୍ରଷ୍ଟା, ତା'ହେଲେ ଏହା ମଧ୍ୟ ସ୍ପଷ୍ଟ ଯେ ଶରୀରର ପରିବର୍ତ୍ତନରେ ଚିନ୍ତାର ପରିବର୍ତ୍ତନ ହୁଏ ବୋଲି ଶରୀର ନିଶ୍ଚୟ ମନର ସ୍ରଷ୍ଟା । ଯଦି ଯୁକ୍ତି ପ୍ରଦର୍ଶନ କରାଯାଏ, ସାର୍ବଜନୀନ ପରିବର୍ତ୍ତନ ନିଶ୍ଚୟ ହିଁ ଗୋଟିଏ ପୂର୍ବବର୍ତ୍ତୀ ସ୍ଥିତିର ଫଳସ୍ୱରୂପ, ତା'ହେଲେ ସମାନ ଯୁକ୍ତିଦ୍ୱାରା ପ୍ରମାଣ କରାଯାଇପାରିବ ଯେ, ଅପରିବର୍ତ୍ତନୀୟତାର ଭାବ ଗୋଟିଏ ବିଭ୍ରମଜନକ ଆପେକ୍ଷିକ ଧାରଣା ମାତ୍ର । ଗତିର ତୁଳନାମୂଳକ ପ୍ରଭେଦଦ୍ୱାରା ଏହାର ଉଦ୍‌ଭବ ହୋଇଅଛି ।

ଏହି ଭାବରେ ଚୂଡ଼ାନ୍ତ ବିଶ୍ଳେଷଣରେ ଦେଖାଯାଏ ଯେ, ସମସ୍ତ ଜ୍ଞାନ ହିଁ ଏହି ଅଛିଣ୍ଡା ଚକ୍ରରେ ପର୍ଯ୍ୟବସିତ ହୋଇଯାଏ । କାର୍ଯ୍ୟ ଓ କାରଣର ଅନିର୍ଦ୍ଦିଷ୍ଟ ପରସ୍ପର ନିର୍ଭରଶୀଳତା ହିଁ ଏହି ଚକ୍ର—ଏହା ଭିତରେ କେଉଁଟି ଆଗ, କେଉଁଟି ପଛ, ତାହା ନିର୍ଣ୍ଣୟ କରିବା ଦୁଃସାଧ୍ୟ । ଯୁକ୍ତିର ନିୟମରେ ବିଚାର କଲେ ଏହି ଜ୍ଞାନ ଭୁଲ । ପୁଣି

ସର୍ବାପେକ୍ଷା ଅଦ୍ଭୁତ କଥା ହେଲା ଏହି ଜ୍ଞାନ ଭୁଲ ବୋଲି ପ୍ରମାଣିତ ହୁଏ—ଯଥାର୍ଥ ଜ୍ଞାନ ସହିତ ତୁଳନା କରି ନୁହେଁ, କିନ୍ତୁ ସେହି ଗୋଟିଏ ଅଚ୍ଛିନ୍ନ ଚକ୍ର ଉପରେ ନିର୍ଭରଶୀଳ ନିୟମଗୁଡ଼ିକଦ୍ୱାରା। ସୁତରାଂ, ସ୍ପଷ୍ଟଭାବେ ବୁଝାଯାଏ, ଆମମାନଙ୍କ ସମସ୍ତ ଜ୍ଞାନର ବୈଶିଷ୍ଟ୍ୟ ହେଉଛି—ଏହା ନିଜେ ନିଜର ଅପରିପୂର୍ଣ୍ଣତା ପ୍ରମାଣ କରିଥାଏ। ପୁଣି ଆମେ ଏହା ମଧ୍ୟ କହିପାରୁ ନାହିଁ ଯେ ଏହି ଜ୍ଞାନ ମିଥ୍ୟା—କାରଣ, ଯେଉଁସବୁ ସତ୍ୟ ଆମେ ଜାଣୁ ବା ଚିନ୍ତା କରୁ, ସେଗୁଡ଼ିକ ଏହି ଜ୍ଞାନ ଭିତରେ ହିଁ ରହିଅଛି। ପୁଣି ବ୍ୟାବହାରିକ କ୍ଷେତ୍ରରେ ସବୁ କିଛି ଲାଗି ଏହି ଜ୍ଞାନ ହିଁ ଯେ ଯଥେଷ୍ଟ, ଏକଥା ଅସ୍ୱୀକାର କରାଯାଇପାରେ ନାହିଁ। ଅନ୍ତର୍ଜଗତ ଓ ବହିର୍ଜଗତ—ମାନବିକ ଜ୍ଞାନ ଏହି ଅବସ୍ଥାର ଅନ୍ତର୍ଗତ—ଏବଂ ଏହାକୁ ହିଁ କୁହାଯାଏ 'ମାୟା'। ଏହା ମିଥ୍ୟା, କାରଣ ଏହା ନିଜେ ହିଁ ନିଜର ଅଶୁଦ୍ଧତା ପ୍ରମାଣ କରେ ଏବଂ ଏହି ଅର୍ଥରେ ଏହା ସତ୍ୟ ଯେ, ଏହା ପଶୁ-ମାନବର ସମସ୍ତ ପ୍ରୟୋଜନ ପକ୍ଷରେ ଯଥେଷ୍ଟ।

ବହିର୍ଜଗତରେ କ୍ରିୟାକାଳରେ ମାୟା ନିଜକୁ ପ୍ରକାଶ କରେ ଆକର୍ଷଣୀ ଓ ବିକର୍ଷଣୀ ଶକ୍ତିରୂପରେ ଏବଂ ଅନ୍ତର୍ଜଗତରେ ପ୍ରବୃତ୍ତି ଓ ନିବୃତ୍ତି ରୂପରେ। ସମସ୍ତ ଜଗତ ବାହାର ଆଡ଼କୁ ଧାବିତ ହେବା ଲାଗି ଚେଷ୍ଟା କରୁଛି। ପ୍ରତିଟି ପରମାଣୁ ଏହାର କେନ୍ଦ୍ରଠାରୁ ଦୂରକୁ ପଳାଇବା ଲାଗି ସଚେଷ୍ଟ। ଅନ୍ତର୍ଜଗତରେ ପ୍ରତିଟି ଚିନ୍ତା ନିୟନ୍ତ୍ରଣର ବାହାରକୁ ଚାଲିଯିବା ଲାଗି ଚେଷ୍ଟା କରେ। ପୁଣି ବହିର୍ଜଗତରେ ପ୍ରତିଟି କଣା ଏବଂ ଗୋଟିଏ ଶକ୍ତି କେନ୍ଦ୍ରାଭିଗ ଶକ୍ତିଦ୍ୱାରା ନିରୁଦ୍ଧ ହେଉଅଛି। ଏହି ଶକ୍ତି-କଣାଟିକୁ କେନ୍ଦ୍ର ଆଡ଼କୁ ଟାଣି ନେଇ ଯାଉଛି। ସେହିଭଳି ଚିନ୍ତାଜଗତରେ ସଂଯମ-ଶକ୍ତି ଏହିସବୁ ବହିର୍ମୁଖୀ ପ୍ରବୃତ୍ତିଗୁଡ଼ିକୁ ସଂଯତ କରୁଅଛି। ଜଡ଼ ଦିଗରେ ଅଗ୍ରସର ହେବାର ପ୍ରବୃତ୍ତି ଅର୍ଥାତ୍ ଯନ୍ତ୍ରବତ୍ ଚାଳିତ ହେବା ଦିଗରେ, କ୍ରମଶଃ ତଳ ଆଡ଼କୁ ଓହ୍ଲାଇ ଯିବାର ପ୍ରବୃତ୍ତି ପଶୁ-ମାନବର ଧର୍ମ। ଯେତେବେଳେ ମଣିଷ ଭିତରେ ଇନ୍ଦ୍ରିୟର ବନ୍ଧନ ରୋଧ କରିବାର ଇଚ୍ଛା ଜାଗ୍ରତ ହୁଏ, କେବଳ ସେତିକିବେଳେ ହିଁ ତା'ର ମନରେ ଧର୍ମର ଉଦୟ ହୋଇଥାଏ। ଏହି ଭାବରେ ଆମେମାନେ ଦେଖୁ ଯେ, ଧର୍ମର କାର୍ଯ୍ୟକ୍ଷେତ୍ର ହେଉଛି ମନୁଷ୍ୟକୁ ଇନ୍ଦ୍ରିୟର ବନ୍ଧନରେ ପଡ଼ିବାକୁ ନ ଦେବା ଏବଂ ମୁକ୍ତିଲାଭ ନିମିତ୍ତ ତାହାକୁ ସାହାଯ୍ୟ କରିବା। ସେହି ଉଦ୍ଦେଶ୍ୟରେ ନିବୃତ୍ତି-ଶକ୍ତିର ପ୍ରଥମ ପ୍ରୟାସକୁ କୁହାଯାଏ ନୀତି। ସକଳ ନୀତିର ଉଦ୍ଦେଶ୍ୟ ହେଲା ଏହି ଅଧଃପତନକୁ ରୋଧ କରିବା ଓ ଏହି ବନ୍ଧନକୁ ଭାଙ୍ଗି ପକାଇବା। ସକଳ ସ୍ମୃତିନୀତିକୁ 'ବିଧି' ଓ 'ନିଷେଧ'—ଏହି ଦୁଇ ଭାଗରେ ଭାଗ କରାଯାଏ। ଏହି ନୀତି ବତାଇଦିଏ—"ଏହା କର"—ନତୁବା କହେ—"ଏହା କର ନାହିଁ।" ଯେତେବେଳେ ଏହା କହେ—"କର ନାହିଁ", ସେତେବେଳେ ସ୍ପଷ୍ଟ ବୁଝିନେବାକୁ ହେବ ଯେ, ଗୋଟିଏ ବାସନାକୁ ସଂଯତ କରିବା ଲାଗି କୁହାଯାଉଛି। କାରଣ ସେହି ବାସନାଟି ସେ ମଣିଷକୁ କ୍ରୀତଦାସ କରି ରଖିବ। ପୁଣି ଏହା ଯେତେବେଳେ କହେ ଯେ—"ଏକଥା କର"—ସେତେବେଳେ ଏହାର ଉଦ୍ଦେଶ୍ୟ ହେଲା—ମନୁଷ୍ୟକୁ ମୁକ୍ତିର ପଥ ଦେଖାଇବା ଏବଂ ଯେ

କୌଣସି ଅଧଃପତନ ମନୁଷ୍ୟର ହୃଦୟକୁ ପୂର୍ବରୁ ଅଧିକାର କରି ରଖିଥିଲା, ତାହାକୁ ନଷ୍ଟ କରିଦେବା ।

ମନୁଷ୍ୟର ସମ୍ମୁଖରେ ଗୋଟିଏ ମୁକ୍ତିର ଆଦର୍ଶ ରହିଲେ ହିଁ ଚରିତ୍ର-ନୀତିର ସାର୍ଥକତା ରହିବ । ପୂର୍ଣ୍ଣମୁକ୍ତି-ଲାଭର ସମ୍ଭାବନାର ପ୍ରଶ୍ନ ଛାଡ଼ିଦେଲେ ବି ଏହା ସ୍ପଷ୍ଟ ଯେ, ସମଗ୍ର ବିଶ୍ୱ ହିଁ ହେଉଛି ବିସ୍ତାର ଲାଗି ସଂଗ୍ରାମର ବା ଅନ୍ୟ ଭାଷାରେ କହିବାକୁ ଗଲେ 'ମୁକ୍ତିଲାଭର ପ୍ରଚେଷ୍ଟା' । ଗୋଟିଏ ପରମାଣୁ ଲାଗି ମଧ୍ୟ ଏହି ଅନନ୍ତ ବିଶ୍ୱ ଯଥେଷ୍ଟ ସ୍ଥାନ ନୁହେଁ । ବିସ୍ତାର ଲାଗି ଏହି ସଂଗ୍ରାମ ଅନନ୍ତ କାଳ ପର୍ଯ୍ୟନ୍ତ ଚାଲିବ ହିଁ ଚାଲିବ, ମୁକ୍ତିଲାଭ ନ ହେବା ଯାଏ ଚାଲିବ । ଏହା କୁହାଯାଇ ନ ପାରେ ଯେ, ସନ୍ତାପକୁ ଏଡ଼ାଇ ଯିବା ବା ଆନନ୍ଦଲାଭ ହିଁ ଏହି ମୁକ୍ତି-ସଂଗ୍ରାମର ଉଦ୍ଦେଶ୍ୟ । ଯେଉଁମାନଙ୍କ ଭିତରେ ଏ ପ୍ରକାର ବୋଧଶକ୍ତି ନାହିଁ—ସେହି ନିମ୍ନତମ ପର୍ଯ୍ୟାୟର ପ୍ରାଣୀମାନେ ମଧ୍ୟ ବିସ୍ତାର ଲାଗି ଅନ୍ୟ ପ୍ରକାର ପ୍ରୟାସ କରିଚାଲନ୍ତି ଏବଂ ଅନେକଙ୍କ ମତରେ ମନୁଷ୍ୟ ନିଜେ ହିଁ ଏହିସବୁ ପ୍ରାଣୀମାନଙ୍କର ବିସ୍ତାର ।

# ଈଶ୍ୱର ଓ ବ୍ରହ୍ମ

[ସ୍ୱିଜରଲାଣ୍ଡ ନୁହେଁ — ସ୍ୱପ୍ନ ନୁହେଁ]

[ସ୍ୟୁଗ୍ରେପରେ ଅବସ୍ଥାନ କାଳରେ—'ବେଦାନ୍ତ ଦର୍ଶନରେ ଈଶ୍ୱରଙ୍କର ଯଥାର୍ଥ ସ୍ଥାନ କେଉଁଠ ?'—ଏହି ପ୍ରଶ୍ନର ଉତ୍ତରରେ ସ୍ୱାମୀଜୀ ନିମ୍ନୋକ୍ତ କଥା କହିଥିଲେ । ]

ଈଶ୍ୱର ସକଳ ବ୍ୟଷ୍ଟିର ସମଷ୍ଟି-ସ୍ୱରୂପ। ତଥାପି ସେ 'ବ୍ୟକ୍ତି-ବିଶେଷ', ଯେପରି ମନୁଷ୍ୟ-ଦେହ ଗୋଟିଏ ବସ୍ତୁ, ଏହାର ପ୍ରତ୍ୟେକ କୋଷ ଗୋଟିଏ ଲେଖାଏଁ ବ୍ୟଷ୍ଟି । ସମଷ୍ଟି—ଈଶ୍ୱର, ବ୍ୟଷ୍ଟି ହେଲା ଜୀବ । ସୁତରାଂ ଦେହ ଯେପରି କୋଷ ଉପରେ ନିର୍ଭର କରେ, ଈଶ୍ୱରଙ୍କର ଅସ୍ତିତ୍ୱ ସେହିପରି ଜୀବର ଅସ୍ତିତ୍ୱ ଉପରେ ନିର୍ଭର କରେ । ଏହାର ବିପରୀତଟି ମଧ୍ୟ ଠିକ୍ ସେହିପରି । ଏହିପରି ଭାବରେ ଜୀବ ଓ ଈଶ୍ୱର ଯେପରିକି ସହ-ଅବସ୍ଥିତ ଦୁଇଟି ସତ୍ତା—ଗୋଟିଏ ରହିଲେ ଅପରଟି ରହିବ । ଅଧିକନ୍ତୁ, ଆମର ଏହି ଭୂଲୋକ ବ୍ୟତୀତ ଅନ୍ୟାନ୍ୟ ଉଚ୍ଚତର ଲୋକରେ ଶୁଭର ପରିମାଣ ଅଶୁଭର ପରିମାଣ ଅପେକ୍ଷା ବହୁଗୁଣ ବେଶୀ ଥିବାରୁ ସମଷ୍ଟି-(ଈଶ୍ୱର)-ଙ୍କୁ ସର୍ବମଙ୍ଗଳସ୍ୱରୂପ କୁହାଯାଇପାରେ । ସର୍ବଶକ୍ତିମତ୍ତା ଓ ସର୍ବଜ୍ଞତ୍ୱ ହେଲା ଈଶ୍ୱରଙ୍କର ପ୍ରତ୍ୟକ୍ଷ ଗୁଣ ଏବଂ ସମଷ୍ଟି ଦିଗରୁ ଏହା ପ୍ରମାଣ କରିବା ନିମିତ୍ତ କୌଣସି ଯୁକ୍ତିର ପ୍ରୟୋଜନ ହୁଏ ନାହିଁ । ବ୍ରହ୍ମ କିନ୍ତୁ ଏହି ଉଭୟର ଊର୍ଦ୍ଧ୍ୱରେ—ଏବଂ ଏହା ଗୋଟିଏ ସପ୍ରତିବନ୍ଧ ବା ସାପେକ୍ଷ ଅବସ୍ଥା ନୁହେଁ । ବ୍ରହ୍ମ ଏକମାତ୍ର ସ୍ୱୟଂପୂର୍ଣ୍ଣ, ଯାହା ବହୁ ଏକକଦ୍ୱାରା ଗଠିତ ହୋଇନାହିଁ । ଜୀବକୋଷଠାରୁ ଈଶ୍ୱରଙ୍କ ପର୍ଯ୍ୟନ୍ତ ଯେଉଁ ତତ୍ତ୍ୱ ଅନୁସ୍ୟୂତ, ଯାହା ବ୍ୟତୀତ କୌଣସି କିଛିର ଅସ୍ତିତ୍ୱ ରହେ ନାହିଁ ଏବଂ ଯାହା କିଛି ସତ୍ୟ, ତାହା ହିଁ ସେହି ତତ୍ତ୍ୱ ବା ବ୍ରହ୍ମ । ଯେତେବେଳେ ମୁଁ ଚିନ୍ତା କରେ—ମୁଁ ହେଉଛି ବ୍ରହ୍ମ, ସେତେବେଳେ କେବଳ ମୁଁ ହିଁ ଥାଏ । ସମସ୍ତଙ୍କ ପକ୍ଷରେ ହିଁ ଏକଥା ପ୍ରଯୋଜ୍ୟ । ସୁତରାଂ ପ୍ରତ୍ୟେକେ ସେହି ତତ୍ତ୍ୱର ସାମଗ୍ରିକ ବିକାଶ ।

# ଯୋଗର ଚାରୋଟି ପଥ

[ଆମେରିକାରେ ପ୍ରଥମଥର ଅବସ୍ଥାନ କାଳରେ ଜଣେ ପାଶ୍ଚାତ୍ୟ ଶିଷ୍ୟଙ୍କ ପ୍ରଶ୍ନର ଉତ୍ତରରେ ଲିଖିତ ।]

ମୁକ୍ତ ହେବା ହିଁ ଆମ ଜୀବନର ପ୍ରଧାନ ସମସ୍ୟା । ଆମେ ପରମବ୍ରହ୍ମ—ଯେତେବେଳଯାଏ ଆମର ଏହି ଉପଲବ୍ଧି ନ ହୋଇଛୁ, ସେତେବେଳଯାଏ ଆମେ ଯେ ମୁକ୍ତିଲାଭ କରିବାକୁ ସମର୍ଥ ହୋଇନାହୁଁ—ଏକଥା ଅତି ସ୍ପଷ୍ଟ । ଏହି ଅନୁଭୂତି ପାଇବା ପାଇଁ ବହୁ ପଥ ରହିଛି । ଏହି ପଥଗୁଡ଼ିକର ଗୋଟିଏ ସାଧାରଣ ନାମ ଅଛି—ତାହା ହେଲା 'ଯୋଗ' —ମାନେ ଆମ ସତ୍ତା ସହିତ ନିଜକୁ ଯୋଗ କରିବା । ନାନା ଶ୍ରେଣୀରେ ବିଭକ୍ତ ହେଲେ ମଧ୍ୟ ଏହି ଯୋଗଗୁଡ଼ିକୁ ମୂଳତଃ ଚାରୋଟି ପର୍ଯ୍ୟାୟଭୁକ୍ତ କରାଯାଇପାରେ । ପ୍ରତ୍ୟେକ ଯୋଗ ଗୌଣତଃ ସେହି ପରମଙ୍କୁ ଉପଲବ୍ଧି କରିବାର ପଥ – ସେଥିଲାଗି ଏଗୁଡ଼ିକ ବିଭିନ୍ନ ରୁଚି ପକ୍ଷରେ ଉପଯୋଗୀ । ବର୍ତ୍ତମାନ ଆମମାନଙ୍କୁ ଅବଶ୍ୟ ମନେ ରଖିବାକୁ ହେବ—କଳ୍ପିତ ମାନବ ହିଁ ପ୍ରକୃତ ମାନବ ବା 'ପରମ' ହୁଏ ନାହିଁ । ପରମରେ ରୂପାନ୍ତରିତ ହେବା ସମ୍ଭବ ନୁହେଁ । ପରମ ନିତ୍ୟମୁକ୍ତ, ନିତ୍ୟପୂର୍ଣ୍ଣ—କିନ୍ତୁ ସାମୟିକଭାବେ ଅବିଦ୍ୟା ଏହାର ସ୍ୱରୂପକୁ ଆବୃତ କରି ରଖିଛି । ଅବିଦ୍ୟାର ଏହି ଆବରଣ ଖୋଲିଦେବାକୁ ହେବ । ପ୍ରତ୍ୟେକ ଧର୍ମ ହିଁ ଗୋଟିଏ ଗୋଟିଏ ଯୋଗର ପ୍ରତିନିଧି । ଯୋଗଗୁଡ଼ିକ କେବଳ ଅବିଦ୍ୟାର ଆବରଣ ଉନ୍ମୋଚନ କରିଥାନ୍ତି ଏବଂ ଆତ୍ମାକୁ ନିଜର ସ୍ୱରୂପରେ ପୁନଃପ୍ରତିଷ୍ଠିତ କରିଥାନ୍ତି । ଅଭ୍ୟାସ ଓ ବୈରାଗ୍ୟ ମୁକ୍ତିର ପ୍ରଧାନ ସହାୟ । ଆସକ୍ତିଶୂନ୍ୟତାକୁ କୁହାଯାଏ 'ବୈରାଗ୍ୟ'—କାରଣ ଭୋଗୈଷଣା ବନ୍ଧନର ସୃଷ୍ଟି କରେ । ଯେକୌଣସି ଗୋଟିଏ ଯୋଗର ନିୟମିତ ଅନୁଶୀଳନକୁ 'ଅଭ୍ୟାସ' କୁହାଯାଏ ।

**କର୍ମଯୋଗ**—କର୍ମଯୋଗ ହେଲା କର୍ମଦ୍ୱାରା ଚିତ୍ତଶୁଦ୍ଧି କରିବା । ଭଲ ଅଥବା ମନ୍ଦ କର୍ମ କଲେ ଏହି କର୍ମର ଫଳ ଅବଶ୍ୟ ଭଲ ବା ମନ୍ଦ ହେବ । ଯଦି ଅନ୍ୟ କୌଣସି କାରଣ ନ ଥାଏ, କୌଣସି ଶକ୍ତି ଏହାର କାର୍ଯ୍ୟରୋଧ କରିପାରିବ ନାହିଁ । ସତ୍‌କର୍ମର ଫଳ ସତ୍ ଏବଂ ଅସତ୍ କର୍ମର ଫଳ ଅସତ୍ ହେବ ଏବଂ ମୁକ୍ତିର କୌଣସି ସମ୍ଭାବନା ନ ରଖି ଆତ୍ମା ଚିରବନ୍ଧନ ଭିତରେ ଆବଦ୍ଧ ରହିବ । କର୍ମର ଭୋକ୍ତା ଦେହ ଅଥବା ମନ—କେବେହେଲେ ଆତ୍ମା ନୁହେଁ । କର୍ମ କେବଳ ଆତ୍ମାର ସମ୍ମୁଖରେ ଗୋଟିଏ ଆବରଣ ନିକ୍ଷେପ କରିପାରେ । ଅବିଦ୍ୟା –ଅଶୁଭ କର୍ମଦ୍ୱାରା ନିକ୍ଷିପ୍ତ ସେହି ଆବରଣ । ସତ୍‌କର୍ମ ନୈତିକଶକ୍ତିକୁ ଦୃଢ଼ କରିପାରେ ଏବଂ ଏହିରୂପେ ନୈତିକ ଶକ୍ତିଦ୍ୱାରା ଅନାସକ୍ତିର ଅଭ୍ୟାସ ହୁଏ । ନୈତିକଶକ୍ତି ଅସତ୍‌କର୍ମର ପ୍ରବଣତା ଉତ୍ପାଦନ କରେ ଏବଂ ଚିତ୍ତକୁ ଶୁଦ୍ଧ କରେ । କିନ୍ତୁ ଯଦି ଭୋଗ ଉଦ୍ଦେଶ୍ୟରେ କର୍ମ କରାଯାଏ, ତାହା ହେଲେ ଏହି କର୍ମ ସେହି ବିଶେଷ ଭୋଗଟି ଉତ୍ପାଦନ କରିଥାଏ ଏବଂ ତଦ୍ୱାରା ଚିତ୍ତ ଶୁଦ୍ଧ ହୁଏ ନାହିଁ । ସୁତରାଂ ଫଳାସକ୍ତିଶୂନ୍ୟ ହୋଇ ସକଳ କର୍ମ କରିବାକୁ ହେବ । କର୍ମଯୋଗୀକୁ ସମସ୍ତ ଭୟ ଓ ଇହାମୁତ୍ରଫଳ ଭୋଗ ଚିରକାଳ

ଲଗି ତ୍ୟାଗ କରିବାକୁ ହେବ । ଉପରନ୍ତୁ ଏଷଣାବିହୀନ କର୍ମ ସକଳ ବନ୍ଧନର ମୂଳ ସ୍ୱାର୍ଥପରତାକୁ ବିନଷ୍ଟ କରିପାରେ । କର୍ମଯୋଗୀର ମୂଳମନ୍ତ୍ର ହେଉଛି—"ନାହଂ, ନାହଂ, ତୁହୁଁ ତୁହୁଁ"—ଏବଂ କୌଣସି ଆତ୍ମତ୍ୟାଗ ହିଁ ତା' ପକ୍ଷରେ ଯଥେଷ୍ଟ ନୁହେଁ । କିନ୍ତୁ ସ୍ୱର୍ଗପ୍ରାପ୍ତି, ନାମ, ଯଶ ବା କୌଣସି ଜାଗତିକ ସିଦ୍ଧି ନିମିତ୍ତ ସେ କର୍ମ କରେ ନାହିଁ । ଏହି ନିଃସ୍ୱାର୍ଥ କର୍ମର ବ୍ୟାଖ୍ୟା ଓ ଉପପତ୍ତି କେବଳ ଜ୍ଞାନଯୋଗରେ ରହିଛି । ତଥାପି ସବୁ ସଂପ୍ରଦାୟଭୁକ୍ତ, ସବୁ ମତାବଲମ୍ବୀ ମନୁଷ୍ୟର ଅନ୍ତର୍ନିହିତ ଦେବତ୍ୱ ସେମାନଙ୍କ ଭିତରେ ଲୋକକଲ୍ୟାଣ ଲଗି ଆତ୍ମତ୍ୟାଗର ଅନୁରାଗ ବଢ଼ାଇ ଦେଇଥାଏ, ଆଉ ଅନେକଙ୍କ ନିକଟରେ ବାହାର ବନ୍ଧନ ଅତ୍ୟନ୍ତ କଠିନ । ଯେଉଁ ବସ୍ତୁଲାଳସା ସେମାନଙ୍କ ଭିତରେ ଦାନା ବାନ୍ଧି ଉଠେ, ତାହା ଭାଙ୍ଗିବା ଲଗି ବସ୍ତୁକାମୀଙ୍କ ପକ୍ଷରେ କର୍ମଯୋଗ ଏକାନ୍ତ ପ୍ରୟୋଜନୀୟ ।

**ଭକ୍ତିଯୋଗ**—ଭକ୍ତ ବା ପୂଜା କିମ୍ବା କୌଣସି ନା କୌଣସି ପ୍ରକାର ଅନୁରକ୍ତି ମନୁଷ୍ୟର ସର୍ବାପେକ୍ଷା ସହଜ, ସୁଖକର ଏବଂ ସ୍ୱାଭାବିକ ପଥ । ଏହି ବିଶ୍ୱର ସ୍ୱାଭାବିକ ଅବସ୍ଥା ହେଉଛି ଆକର୍ଷଣ; ଏହା କିନ୍ତୁ ନିଶ୍ଚିତ ଭାବରେ ଏକ ଚୂଡ଼ାନ୍ତ ବିଚ୍ଛେଦରେ ପରିଣତ ହୁଏ । ଏହା ସତ୍ତ୍ୱେ ପ୍ରେମ ମାନବହୃଦୟରେ ସହଜାତ ଗୋଟିଏ ପ୍ରବୃତ୍ତି । ପ୍ରେମ ନିଜେ ଦୁଃଖର ଗୋଟିଏ ମହାକାରଣ ହେଲେ ମଧ୍ୟ ଯୋଗ୍ୟ ବିଷୟପ୍ରତି ନିୟୋଜିତ ହେଲେ ମୁକ୍ତି ଆନୟନ କରେ । ଭକ୍ତିର ଲକ୍ଷ୍ୟ ଈଶ୍ୱର । ପ୍ରେମିକ ଓ ପ୍ରେମାସ୍ପଦ ବିନା ପ୍ରେମ ରହିପାରେ ନାହିଁ । ପ୍ରଥମେ, ଏପରି ଜଣେ ପ୍ରେମାସ୍ପଦ ରହିବା ଉଚିତ, ଯେ କି ଆମ ପ୍ରେମର ପ୍ରତିଦାନ ଦେଇପାରିବେ । ସୁତରାଂ ଭକ୍ତିର ଭଗବାନଙ୍କୁ ଗୋଟିଏ ଅର୍ଥରେ ମାନବୀୟ ଭଗବାନ ହେବାକୁ ପଡ଼ିବ । ସେ ଅବଶ୍ୟ ପ୍ରେମମୟ ହେବେ । ଏବଂବିଧ ଭଗବାନ ଅଛନ୍ତି ବା ନାହାନ୍ତି—ଏ ପ୍ରଶ୍ନ ଛାଡ଼ି ଦେଲେ ମଧ୍ୟ ଏହା ସତ୍ୟ ଯେ, ଯେଉଁମାନଙ୍କ ହୃଦୟରେ ପ୍ରେମ ରହିଛି, ସେମାନଙ୍କ ନିକଟରେ ଏହି ନିର୍ଗୁଣ ବ୍ରହ୍ମ ହିଁ ପ୍ରେମମୟ ଈଶ୍ୱର ବା ସଗୁଣ ବ୍ରହ୍ମରୂପେ ଆବିର୍ଭୂତ ହୁଅନ୍ତି ।

ଭଗବାନ ଜଣେ ବିଚାରକ, ଶାସ୍ତିଦାତା ବା ଏପରି ଜଣେ, ଯାହାଙ୍କୁ ଭୟରେ ମାନିବାକୁ ହେବ—ଏହିସବୁ ଭାବ ନିମ୍ନ ପର୍ଯ୍ୟାୟର ପୂଜା । ଏହି ପ୍ରକାର ପୂଜାକୁ ପ୍ରେମର ପୂଜା କୁହାଯାଏ ନାହିଁ । ଏହିସବୁ ପୂଜା ଅବଶ୍ୟ ଧୀରେ ଧୀରେ ଉଚ୍ଚାଙ୍ଗ ପୂଜାରେ ରୂପାନ୍ତିତ ହୁଏ । ବର୍ତ୍ତମାନ ଆମେ 'ପ୍ରେମ କି ବସ୍ତୁ' ତାହା ନିରୂପଣ କରିବା । ଆମେ ପ୍ରେମକୁ ଗୋଟିଏ ତ୍ରିଭୁଜଦ୍ୱାରା ବ୍ୟାଖ୍ୟା କରିବା । ସେହି ତ୍ରିଭୁଜର ପାଦଦେଶର ପ୍ରଥମ କୋଣ ଭୟଶୂନ୍ୟତା । ଯେତେବେଳଯାଏ ଭୟ ରହିଥିବ, ସେତେବେଳଯାଏ ଏହା ପ୍ରେମ ନୁହେଁ । ପ୍ରେମ ସବୁ ଭୟ ଦୂର କରେ । ଶିଶୁକୁ ରକ୍ଷା କରିବା ନିମିତ୍ତ ମାତା ବ୍ୟାଘ୍ରର ସମ୍ମୁଖୀନ ହୁଏ । ଦ୍ୱିତୀୟ କୋଣ ହେଲା—ପ୍ରେମ କେବେ ହେଲେ କିଛି ଭିକ୍ଷା କରେ ନାହିଁ । ତୃତୀୟ ବା ଶୀର୍ଷକୋଣ ହେଲା—ପ୍ରେମ ମାଗେ ନାହିଁ—କିଛି ମାଗେ ନାହିଁ, ଭିକ୍ଷା କରେ ନାହିଁ । ତୃତୀୟ ବା ଶୀର୍ଷକୋଣ ହେଲା—ପ୍ରେମ ତା' ନିଜ ପାଇଁ, ଅର୍ଥାତ୍ ପ୍ରେମ ପାଇଁ ପ୍ରେମ । ଏହି ପ୍ରେମ ବିଷୟବିଷୟୀ-ସଂପର୍କଶୂନ୍ୟ । ଏହା ହିଁ ହେଲା ପ୍ରେମର ସର୍ବୋଚ୍ଚ ବିକାଶ ଏବଂ ପରମ ସତ୍ତା ସମାର୍ଥକ ।

**ରାଜଯୋଗ**—ଏହି ଯୋଗ ଆଉସବୁ ଯୋଗ ସହିତ ଖାପ୍ ଖାଇଯାଏ । ଈଶ୍ୱର-ବିଶ୍ୱାସୀ ଅଥବା ନାସ୍ତିକ, ସବୁଶ୍ରେଣୀର ଜିଜ୍ଞାସୁଙ୍କ ପକ୍ଷରେ ରାଜଯୋଗ ଉପଯୁକ୍ତ । ରାଜଯୋଗ ଆଧ୍ୟାତ୍ମିକ ଜିଜ୍ଞାସାର ଯଥାର୍ଥ ଯନ୍ତ୍ର । ଯେପରି ପ୍ରତ୍ୟେକ ବିଜ୍ଞାନର ଅନୁସନ୍ଧାନ ପାଇଁ ଗୋଟିଏ ଗୋଟିଏ ସ୍ୱକୀୟ ଧାରା ଥାଏ, ସେହିପରି ଧର୍ମକ୍ଷେତ୍ରରେ ରାଜଯୋଗ । ବିଭିନ୍ନ ପ୍ରକୃତି ଅନୁଯାୟୀ ଏହି ରାଜଯୋଗ-ବିଜ୍ଞାନର ପ୍ରୟୋଗ ବିଭିନ୍ନ ଭାବରେ ହୁଏ । ଏହାର ପ୍ରଧାନ ଅଙ୍ଗ ହେଲା ପ୍ରାଣାୟାମ, ଧାରଣା ଓ ଧ୍ୟାନ । ଈଶ୍ୱର-ବିଶ୍ୱାସୀଙ୍କ ପକ୍ଷରେ ଗୁରୁଙ୍କ ନିକଟରୁ ଲବ୍ଧ ପ୍ରଣବ ବା ଓଁକାର ବା ଅନ୍ୟ କୌଣସି ମନ୍ତ୍ର ଖୁବ୍ ସହାୟକ ହୁଏ ! ପ୍ରଣବମନ୍ତ୍ର ହିଁ ସର୍ବଶ୍ରେଷ୍ଠ । ଏହା ନିର୍ଗୁଣ ବ୍ରହ୍ମର ବାଚକ । ଜପ ସହିତ ଏହିସବୁ ମନ୍ତ୍ରର ଅର୍ଥଭାବନା ହିଁ ଏଠାରେ ପ୍ରଧାନ ସାଧନା ।

**ଜ୍ଞାନଯୋଗ**—ଜ୍ଞାନଯୋଗ ତିନିଭାଗରେ ବିଭକ୍ତ—(୧) ଶ୍ରବଣ, ଅର୍ଥାତ୍ ଆତ୍ମା ଏକମାତ୍ର ସତ୍ ପଦାର୍ଥ ଏବଂ ଅନ୍ୟାନ୍ୟ ସବୁକିଛି ମାୟା—ଏହି ତତ୍ତ୍ୱଟିକୁ ଶୁଣିବା । (୨) ମନନ, ଅର୍ଥାତ୍ ସବୁ ଦିଗରୁ ଏହି ତତ୍ତ୍ୱକୁ ବିଚାର କରିବା । (୩) ନିଦିଧ୍ୟାସନ, ଅର୍ଥାତ୍ ସମସ୍ତ ବିଚାର ତ୍ୟାଗକରି ତତ୍ତ୍ୱକୁ ଉପଲବ୍ଧି କରିବା । ଏହି ଉପଲବ୍ଧିର ଚାରୋଟି ସାଧନ ରହିଛି । ଯଥା—(୧) 'ବ୍ରହ୍ମ ସତ୍ୟ, ଜଗତ୍ ମିଥ୍ୟା'-ରୂପ ଦୃଢ଼ ଧାରଣା, (୨) ସର୍ବ ଏଷଣା ତ୍ୟାଗ, (୩) ଶମଦମାଦି ଓ (୪) ମୁମୁକ୍ଷୁତ୍ୱ । ତତ୍ତ୍ୱର ନିରନ୍ତର ଧ୍ୟାନ ଏବଂ ଆତ୍ମାକୁ ଏହାର ପ୍ରକୃତ ସ୍ୱରୂପ ସ୍ମରଣ କରାଇଦେବା ଏହି ଯୋଗର ଏକମାତ୍ର ପଥ । ଏହି ଯୋଗ ସର୍ବଶ୍ରେଷ୍ଠ, କିନ୍ତୁ କଠିନତମ । ଏହି ଯୋଗ ଅନେକଙ୍କର ବୁଦ୍ଧିଗ୍ରାହ୍ୟ ହୋଇପାରେ, କିନ୍ତୁ ଅତି ଅଳ୍ପ ଲୋକ ହିଁ ଏହି ଯୋଗରେ ସିଦ୍ଧିଲାଭ କରିବାକୁ ସମର୍ଥ ହୁଅନ୍ତି ।

# ଲକ୍ଷ୍ୟ ଓ ଏହାର ଉପଲବ୍ଧିର ଉପାୟ

ଯଦି ସମଗ୍ର ମାନବଜାତି କେବେ କୌଣସି କାଳରେ କେବଳ ଗୋଟିଏ ଧର୍ମ—ଗୋଟିଏ ମାତ୍ର ସାର୍ବଜନୀନ ପୂଜାପଦ୍ଧତିକୁ ଏବଂ ଗୋଟିଏ ମାତ୍ର ନୈତିକ ମାନଦଣ୍ଡକୁ ସ୍ୱୀକାର ଓ ଗ୍ରହଣ କରିବାକୁ ବାଧ୍ୟ ହୁଏ, ତେବେ ପୃଥିବୀ ଉପରକୁ କଠିନ ଦୁର୍ଭାଗ୍ୟ ଓହ୍ଲାଇ ଆସିବ। ସମସ୍ତ ଧର୍ମୀୟ ଏବଂ ଆଧ୍ୟାତ୍ମିକ ଉନ୍ନତି ପକ୍ଷରେ ଏହା ମୃତ୍ୟୁସଦୃଶ ଆଘାତ ହେବ। ନିଜ ନିଜର ମତାନୁଯାୟୀ ସର୍ବୋଚ୍ଚ ସତ୍ୟର ଆଦର୍ଶଟିକୁ ସତ୍ ବା ଅସତ୍ ଉପାୟରେ ସମସ୍ତଙ୍କୁ ଗ୍ରହଣ କରାଇବା ନିମିତ୍ତ ଉତ୍ସାହ ଦେଇ ଏହି ଧ୍ୱଂସକାରୀ ଘଟଣାଟିକୁ ବାସ୍ତବ ରୂପ ଦେବାର ଚେଷ୍ଟା ନ କରି ଆମର ଉଚିତ ହେବ—ଗନ୍ତବ୍ୟ ପଥର ସମସ୍ତ ଅନ୍ତରାୟଗୁଡ଼ିକୁ ଅପସାରଣ କରିବା ନିମିତ୍ତ ସଚେଷ୍ଟ ହେବା, ଯେଉଁଥିରେ ମନୁଷ୍ୟ ତା'ର ଶ୍ରେଷ୍ଠ ଆଦର୍ଶ ଅନୁଯାୟୀ ଅଗ୍ରସର ହୋଇପାରେ।

ସମଗ୍ର ମାନବଜାତିର ଶେଷ ପରିଣତି, ସର୍ବଧର୍ମର ଲକ୍ଷ୍ୟ ଓ ପରିସମାପ୍ତି ଏକ—ତା'ହେଲା ଈଶ୍ୱରଙ୍କ ସହିତ ପୁନର୍ମିଳନ ବା ଅନ୍ୟ ଭାଷାରେ କହିଲେ ମଣିଷର ଦେବତ୍ୱରେ ପୁନଃପ୍ରତିଷ୍ଠା—ଏହି ଦେବତ୍ୱ ହିଁ ମନୁଷ୍ୟର ପ୍ରକୃତ ସ୍ୱରୂପ। କିନ୍ତୁ ଲକ୍ଷ୍ୟ ଏକ ହେଲେ ମଧ୍ୟ ଉପଲବ୍ଧିର ପନ୍ଥା ମନୁଷ୍ୟର ରୁଚି ଅନୁଯାୟୀ ବିଭିନ୍ନ ହୋଇପାରେ।

ଦେବତ୍ୱରେ ପୁନଃପ୍ରତିଷ୍ଠିତ ହେବାର ଲକ୍ଷ୍ୟ ଓ ପଦ୍ଧତି ଉଭୟଙ୍କୁ ହିଁ 'ଯୋଗ' କୁହାଯାଏ। ଇଂରେଜୀ 'yoke' ଅର୍ଥାତ୍ ଯୁକ୍ତ ହେବା—ଏହି ଅର୍ଥରେ ହିଁ ସଂସ୍କୃତରେ ମଧ୍ୟ ଯୋଗ ଶବ୍ଦର ଉଦ୍‌ଭବ ହୋଇଅଛି। ଯୋଗ ଆମର ସ୍ୱରୂପ ସହିତ ଈଶ୍ୱରଙ୍କର ଯୋଗ ଘଟାଇଦିଏ। ଏହିପ୍ରକାର ଯୋଗ ବା ମିଳନର ପଦ୍ଧତି ଅନେକ ଅଛି। ସେଗୁଡ଼ିକ ମଧ୍ୟରେ ପ୍ରଧାନ ହେଉଛି କର୍ମଯୋଗ, ଭକ୍ତିଯୋଗ, ରାଜଯୋଗ ଏବଂ ଜ୍ଞାନଯୋଗ।

ପ୍ରତ୍ୟେକ ବ୍ୟକ୍ତି ତାହାର ସ୍ୱଭାବ ଅନୁଯାୟୀ ନିଜକୁ ବିକଶିତ କରିବାକୁ ବାଧ୍ୟ। ଯେପରି ପ୍ରତ୍ୟେକ ବିଜ୍ଞାନର ଗୋଟିଏ ସ୍ୱକୀୟ ପଦ୍ଧତି ଅଛି—ସେହିପରି ପ୍ରତ୍ୟେକ ଧର୍ମର ମଧ୍ୟ ନିଜସ୍ୱ ପଦ୍ଧତି ଅଛି। ଧର୍ମରେ ସିଦ୍ଧିପ୍ରାପ୍ତିର ଉପାୟକୁ 'ଯୋଗ' କୁହାଯାଏ। ମନୁଷ୍ୟର ବିଭିନ୍ନ ସ୍ୱଭାବ ଓ ପ୍ରକୃତି ଅନୁଯାୟୀ ଆମେ ଯୋଗଗୁଡ଼ିକୁ ଶିକ୍ଷା ଦେଉ। ଉକ୍ତ ଯୋଗଗୁଡ଼ିକୁ ଆମେ ନିମ୍ନଲିଖିତ ଉପାୟରେ ଚାରୋଟି ଶ୍ରେଣୀରେ ଭାଗ କରିପାରୁ।

୧—କର୍ମଯୋଗ—

ଯେଉଁ ପଦ୍ଧତି ଅବଲମ୍ବନ କରି ମନୁଷ୍ୟ କର୍ମ ଓ କର୍ତ୍ତବ୍ୟ ମାଧ୍ୟମରେ ସ୍ୱୀୟ ଦେବତ୍ୱ ଉପଲବ୍ଧି କରେ।

୨—ଭକ୍ତିଯୋଗ—

ସଗୁଣ ଭଗବାନଙ୍କ ପ୍ରତି ଭକ୍ତି ଓ ପ୍ରେମଦ୍ୱାରା ଦେବତ୍ୱର ଅନୁଭୂତି।

୩—ରାଜଯୋଗ—

ମନଃସଂଯୋଗଦ୍ୱାରା ଦେବତ୍ୱର ଉପଲବ୍ଧି।

୪—ଜ୍ଞାନଯୋଗ—

ଜ୍ଞାନଦ୍ୱାରା ଦେବତ୍ୱର ଉପଲବ୍ଧି ।

ଏହି ବିଭିନ୍ନ ପଥଗୁଡ଼ିକ ଗୋଟିଏ କେନ୍ଦ୍ରକୁ ଅର୍ଥାତ୍ ଈଶ୍ୱରଙ୍କ ସମୀପକୁ ନେଇ-ଯାଏ । ପ୍ରକୃତ ପକ୍ଷରେ ଧର୍ମବିଶ୍ୱାସର ବହୁଳତାରେ ସୁବିଧା ରହିଛି । ସବୁ ବିଶ୍ୱାସ ଶୁଭ, ଯେପର୍ଯ୍ୟନ୍ତ ସେଗୁଡ଼ିକ ଧର୍ମ-ଜୀବନଯାପନ କରିବାରେ ଉତ୍ସାହ ପ୍ରଦାନ କରନ୍ତି । ଧର୍ମମତ ଯେତେ ଅଧିକ ହେବ, ମନୁଷ୍ୟ ଭିତରେ ଯେଉଁ ଦେବତ୍ୱର ସଂସ୍କାର ରହିଛି, ତା' ପାଖରେ ଆବେଦନ କରିବାର ବେଶୀ ସୁଯୋଗ ମିଳିବ ।

Oak Beach Christian Unityର ସମକ୍ଷରେ ବିଶ୍ୱଜନୀନ ମିଳନ ପ୍ରସଙ୍ଗରେ ସ୍ୱାମୀଜୀ କହିଥିଲେ—

ଶେଷ ପର୍ଯ୍ୟନ୍ତ ସବୁ ଧର୍ମ ଏକ । ଏହା ଅତି ସତ୍ୟ କଥା, ଯଦିଓ ଖ୍ରୀଷ୍ଟାନ ସମ୍ପ୍ରଦାୟ ବାଇବେଲ୍‌ର ଉପାଖ୍ୟାନର ଫାରିଶୀମାନଙ୍କ ପରି ଭଗବାନଙ୍କୁ ଧନ୍ୟବାଦ ଦିଏ ଏବଂ ଭାବେ ଯେ, ଖ୍ରୀଷ୍ଟଧର୍ମ ହିଁ ଏକମାତ୍ର ସତ୍ୟ, ଅନ୍ୟ ଧର୍ମଗୁଡ଼ିକ ସବୁ ଭୁଲ ଏବଂ ଖ୍ରୀଷ୍ଟଧର୍ମର ଆଲୋକରେ ସେଗୁଡ଼ିକ ଆଲୋକିତ ହେବାର ପ୍ରୟୋଜନୀୟତା ରହିଛି—ତଥାପି ଏକଥା ସତ୍ୟ ଯେ ପରିଣାମରେ ସବୁ ଧର୍ମ ହିଁ ଏକ । ସାର୍ବଜନୀନ ଉଦାର ଭାବ ନିମିତ୍ତ ଜଗତ ଯେତିକି-ବେଳେ ଖ୍ରୀଷ୍ଟାନ ଚର୍ଚ୍ଚର ସହଯୋଗୀ ହେବାକୁ ଇଚ୍ଛୁକ ହେବ, ଯେତେବେଳେ ଖ୍ରୀଷ୍ଟଧର୍ମ ପରମତ ସହିଷ୍ଣୁ ହେବ । ଈଶ୍ୱର ସମସ୍ତଙ୍କ ହୃଦୟରେ ଅଛନ୍ତି । ଯେଉଁମାନେ ଯୀଶୁଖ୍ରୀଷ୍ଟଙ୍କ ଅନୁସରଣକାରୀ, ସେମାନେ ଏହି ତତ୍ତ୍ୱଟିକୁ ସ୍ୱୀକାର କରିବା ଲାଗି ସଂକୋଚ ବୋଧ କରିବା ଉଚିତ ନୁହେଁ । ପ୍ରକୃତ ପକ୍ଷରେ ଯୀଶୁଖ୍ରୀଷ୍ଟ ପ୍ରତ୍ୟେକ ସତ୍ ମାନବକୁ ଈଶ୍ୱରଙ୍କ ପରିବାରର ଅନ୍ତର୍ଭୁକ୍ତ କରିବା ଲାଗି ଚାହିଁଥିଲେ । ଯେଉଁ ମନୁଷ୍ୟ ସ୍ୱର୍ଗସ୍ଥ ପିତାଙ୍କର ଇଚ୍ଛା ପାଳନ କରନ୍ତି, ସେ ହିଁ ସତ୍ ଏବଂ ଯେ କେବଳ ବାହ୍ୟ ଅନୁଷ୍ଠାନରେ ବିଶ୍ୱାସ କରନ୍ତି, ସେ ସତ୍ ନୁହନ୍ତି । ସତ୍ ହେବା ଏବଂ ସତ୍‌କର୍ମ କରିବା ଏହି ଭିତ୍ତି ଉପରେ ହିଁ ସମଗ୍ର ଜଗତ ମିଳିତ ହୋଇପାରେ ।

## ଧର୍ମର ମୂଳସୂତ୍ର

[ଗୋଟିଏ ଅସମାପ୍ତ ପ୍ରବନ୍ଧ—ମିସ୍ ଓସ୍ୟାଲ୍‌ଡୋଙ୍କ କାଗଜପତ୍ର ମଧ୍ୟରୁ ପ୍ରାପ୍ତ]

ପୃଥିବୀର ପ୍ରାଚୀନ ବା ଆଧୁନିକ, ଲୁପ୍ତ ବା ଜୀବନ୍ତ ଧର୍ମଗୁଡ଼ିକୁ ଏହି ତ୍ରିବିଧ ପ୍ରକାର ବିଭାଗ ମଧ୍ୟ ଦେଇ ଭଲରୂପେ ଧାରଣା କରାଯାଇପାରେ ।

୧—ପ୍ରତୀକ—ମନୁଷ୍ୟର ଧର୍ମଭାବବୃଦ୍ଧି ଓ ସଂରକ୍ଷଣ ନିମିତ୍ତ ବିବିଧ ବାହ୍ୟ ସହାୟ ଅବଲମ୍ବନ ।

୨—ଇତିହାସ—ପ୍ରତ୍ୟେକ ଧର୍ମର ଦାର୍ଶନିକ ତତ୍ତ୍ୱ ଯେଉଁ ଜୀବନରେ ଦିବ୍ୟ ବା

ମାନବୀୟ ଆଚାର୍ଯ୍ୟମାନଙ୍କ ଜୀବନରେ ରୂପାୟିତ ହୋଇଛି । ପୁରାଣାଦି ଏହାର ଅନ୍ତର୍ଗତ । କାରଣ ଏକ ଜାତି ବା ଏକ ଯୁଗ ପକ୍ଷରେ ଯାହା ପୁରାଣ, ଅନ୍ୟ ଜାତି ବା ଯୁଗ ପକ୍ଷରେ ତାହା ହିଁ ଇତିହାସ । ଆଚାର୍ଯ୍ୟମାନଙ୍କ ସମ୍ବନ୍ଧରେ ମଧ୍ୟ ବୁଝାଯାଇଛି—ସେମାନଙ୍କ ଜୀବନର ବହୁ କଥାକୁ ପରବର୍ତ୍ତୀ କାଳର ମନୁଷ୍ୟମାନେ ପୌରାଣିକ କାହାଣୀରୂପେ ଗ୍ରହଣ କରନ୍ତି ।

୩—ଦର୍ଶନ—ପ୍ରତ୍ୟେକ ଧର୍ମର ଯୁକ୍ତିସିଦ୍ଧ ଭିତ୍ତିସମୂହ ।

୪—ଅତୀନ୍ଦ୍ରିୟବାଦ—ଇନ୍ଦ୍ରିୟଜ୍ଞାନ ଓ ଯୁକ୍ତି ଅପେକ୍ଷା ଏହା ଏପରି କିଛି ମହତ୍ତର ଯାହା କୌଣସି କୌଣସି ବିଶେଷ ଅବସ୍ଥାରେ କୌଣସି କୌଣସି ବିଶେଷ ବ୍ୟକ୍ତି ବା ସମସ୍ତ ବ୍ୟକ୍ତି ଲାଭ କରିଥାଆନ୍ତି । ଧର୍ମର ଅନ୍ୟାନ୍ୟ ବିଭାଗରେ ମଧ୍ୟ ଏହି ଅତୀନ୍ଦ୍ରିୟବାଦର କଥା ରହିଛି ।

ପୃଥିବୀର ପ୍ରାଚୀନ ବା ଆଧୁନିକ ସବୁ ଧର୍ମରେ ହିଁ ଏହି ମୂଳନୀତିଗୁଡ଼ିକର ଗୋଟିଏ, ଦୁଇଟି ବା ତିନୋଟି ବର୍ତ୍ତମାନ ଦେଖାଯାଏ । ଅତି ଉନ୍ନତ ଧର୍ମଗୁଡ଼ିକରେ ଚାରୋଟି ତତ୍ତ୍ୱ ରହିଛି । ଅତି ଉନ୍ନତ ଧର୍ମଗୁଡ଼ିକ ଭିତରେ କେତେକ ଧର୍ମର କୌଣସି ଧର୍ମଗ୍ରନ୍ଥ ବା ପୁସ୍ତକ ନ ଥିଲା ବା ସେଗୁଡ଼ିକ ଲୁପ୍ତ ହୋଇଯାଇଛି । କିନ୍ତୁ ଯେଉଁସବୁ ଧର୍ମ ପବିତ୍ର ଗ୍ରନ୍ଥ ଉପରେ ପ୍ରତିଷ୍ଠିତ, ସେଗୁଡ଼ିକ ଆଜି ମଧ୍ୟ ପ୍ରତିଷ୍ଠିତ ରହିଛନ୍ତି । ସୁତରାଂ ପୃଥିବୀର ଆଧୁନିକ ସବୁଧର୍ମ ହିଁ ପବିତ୍ର ଗ୍ରନ୍ଥ ଉପରେ ପ୍ରତିଷ୍ଠିତ ।

ବୈଦିକ ଧର୍ମ (ଭୁଲରେ କୁହାଯାଏ ହିନ୍ଦୁ ବା ବ୍ରାହ୍ମଣ୍ୟ ଧର୍ମ) ବେଦ ଉପରେ ହିଁ ପ୍ରତିଷ୍ଠିତ । ପାରସୀକ ଧର୍ମ ପ୍ରତିଷ୍ଠିତ ଆବେସ୍ତା ଉପରେ । ଓଲ୍ଡ଼ ଟେଷ୍ଟାମେଣ୍ଟ ଉପରେ ମୂସାଙ୍କ ଧର୍ମ ପ୍ରତିଷ୍ଠିତ । ବୌଦ୍ଧଧର୍ମ ତ୍ରିପିଟକ ଉପରେ, ଖ୍ରୀଷ୍ଟଧର୍ମ ନିଉ ଟେଷ୍ଟାମେଣ୍ଟ ଉପରେ ଏବଂ ଇସଲାମ୍ ଧର୍ମ କୋରାନ୍ ଉପରେ ପ୍ରତିଷ୍ଠିତ ।

ଚୀନ ଦେଶର ତାଓ ଏବଂ କନ୍‌ଫୁସିଅସ୍ ମତାବଲମ୍ବୀମାନଙ୍କର ମଧ୍ୟ ଧର୍ମଗ୍ରନ୍ଥ ଅଛି । କିନ୍ତୁ ଏଗୁଡ଼ିକ ବୌଦ୍ଧଧର୍ମ ସଙ୍ଗେ ଏପରି ନିବିଡ଼ଭାବେ ମିଶିଯାଇଛନ୍ତି ଯେ, ଏଗୁଡ଼ିକୁ ବୌଦ୍ଧଧର୍ମର ଅନ୍ତର୍ଗତ ବୋଲି ଗଣନା କରାଯାଏ ।

ପୁନଶ୍ଚ, ଯଦିଓ ଠିକ୍ ଠିକ୍ କହିବାକୁ ଗଲେ ସମ୍ପୂର୍ଣ୍ଣ ଭାବେ ଜାତିଗତ କୌଣସି ଧର୍ମ ନାହିଁ, ତଥାପି କୁହାଯାଏ, ଧର୍ମଗୋଷ୍ଠୀ ମଧ୍ୟରେ ବୈଦିକ, ଇହୁଦୀ ଓ ପାରସିକ ଧର୍ମ-ଗୁଡ଼ିକ ଯେଉଁସବୁ ଜାତି ମଧ୍ୟରେ ପୂର୍ବରୁ ପ୍ରଚଳିତ ଥିଲା, ସେହିସବୁ ଜାତି ମଧ୍ୟରେ ସୀମାବଦ୍ଧ ହୋଇ ରହିଛନ୍ତି ଏବଂ ବୌଦ୍ଧ, ଖ୍ରୀଷ୍ଟାନ ଓ ଇସଲାମ୍ ଧର୍ମ ପ୍ରଥମରୁ ପ୍ରଚାରଶୀଳ ।

ବୌଦ୍ଧ, ଖ୍ରୀଷ୍ଟାନ ଓ ମୁସଲମାନମାନଙ୍କ ମଧ୍ୟରେ ଜଗତ୍-ଜୟ ଲାଗି ସଂଗ୍ରାମ ଚାଲିବ ଏବଂ ଜାତିଗତ ଧର୍ମଗୁଡ଼ିକୁ ମଧ୍ୟ ଅନିବାର୍ଯ୍ୟ ଭାବେ ଏହି ସଂଗ୍ରାମରେ ଯୋଗ ଦେବାକୁ ପଡ଼ିବ । ଏହି ଜାତିଗତ ବା ପ୍ରଚାରଶୀଳ ଧର୍ମଗୁଡ଼ିକର ପ୍ରତ୍ୟେକଟି ଇତିମଧ୍ୟରେ ନାନା ଶାଖାରେ ବିଭକ୍ତ ହୋଇଛନ୍ତି ଏବଂ ନିଜକୁ ପରିବର୍ତ୍ତନଶୀଳ ଅବସ୍ଥା ସହିତ ଖାପ ଖୁଆଇବା ନିମିତ୍ତ ଜ୍ଞାତସାରରେ ବା ଅଜ୍ଞାତସାରରେ ବ୍ୟାପକଭାବେ ପରିବର୍ତ୍ତିତ ହୋଇଛନ୍ତି । ଏହାଦ୍ୱାରା

ପ୍ରମାଣିତ ହୁଏ ଯେ, ଧର୍ମଗୁଡ଼ିକ ଭିତରେ ଗୋଟିଏ ହେଲେ ଧର୍ମ ଏକକ ଭାବେ ସମଗ୍ର ମାନବଜାତିର ଧର୍ମ ହେବାର ଉପଯୋଗିତା ଅର୍ଜନ କରିନାହାନ୍ତି । ଯେଉଁ ଜାତି ଭିତରୁ ଯେଉଁ ଧର୍ମ ଉଦ୍‌ଭୂତ ହୋଇଅଛି, ସେହି ଜାତିର କେତେଗୁଡ଼ିଏ ବୈଶିଷ୍ଟ୍ୟ ନେଇ ଯେ ହେତୁ ଏ ଧର୍ମ ଗଠିତ ହୋଇଅଛି ଏବଂ ଏହି ଧର୍ମ ହିଁ ପୁନଶ୍ଚ ଏହି ବୈଶିଷ୍ଟ୍ୟଗୁଡ଼ିକର ସଂରକ୍ଷଣ ଓ ବୃଦ୍ଧିର କାରଣସ୍ୱରୂପ ହୋଇଛି, ସେହିହେତୁ ଏସବୁର କୌଣସିଟି ହିଁ ସମଗ୍ର ମାନବଜାତିର ଉପଯୋଗୀ ହୋଇପାରେ ନାହିଁ । କେବଳ ତାହା ନୁହେଁ, ଏହିସବୁ ଧର୍ମ ଭିତରେ ଗୋଟିଏ ନେତିବାଚକ ଭାବ ରହିଛି । ପ୍ରତ୍ୟେକ ଧର୍ମ ମାନବପ୍ରକୃତିର ଗୋଟିଏ ଅଂଶର ବିକାଶ-ସାଧନରେ ଅବଶ୍ୟ ସାହାଯ୍ୟ କରେ । କିନ୍ତୁ ଯାହା କିଛି ତା'ର ଧର୍ମ ଭିତରେ ନାହିଁ, ସେଗୁଡ଼ିକୁ ସେ ଦମନ କରିବାକୁ ଚେଷ୍ଟା କରିଥାଏ । ଏହିଭଳି ଗୋଟିଏ ଧର୍ମ ଯଦି ବିଶ୍ୱଜନୀନ ହୁଏ, ତା'ହେଲେ ତାହା ମାନବ-ଜାତିର ବିପଦ ଓ ଅବନତିର ସୂଚନା ଦେଇଥାଏ ।

ପୃଥିବୀର ଇତିହାସ ପଢ଼ିଲେ ଦେଖାଯାଏ, ସାର୍ବଭୌମ ରାଷ୍ଟ୍ର ଓ ବିଶ୍ୱବ୍ୟାପୀ ଧର୍ମରାଜ୍ୟ ବିଷୟକ ସ୍ୱପ୍ନ ଦୁଇଟି ମାନବଜାତିର ମନରେ ବହୁକାଳ ଯାବତ୍ କ୍ରିୟା କରି ଆସିଛି । କିନ୍ତୁ ପୃଥିବୀର ସାମାନ୍ୟ ଗୋଟିଏ ଅଂଶ ବିଜିତ ହେବାର ପୂର୍ବେ ହିଁ ଅଧିକୃତ ରାଜ୍ୟଗୁଡ଼ିକ ଶତଧା ଛିନ୍ନଭିନ୍ନ ହୋଇ ମହାନ୍ ଦିଗ୍‌ବିଜୟୀମାନଙ୍କର ପରିକଳ୍ପନାଗୁଡ଼ିକୁ ବ୍ୟର୍ଥ କରିଦେଇଛି । ସେହିଭଳି ପ୍ରତ୍ୟେକ ଧର୍ମ ହିଁ ତାର ଶୈଶବାବସ୍ଥା ଉତ୍ତୀର୍ଣ୍ଣ ହେବାର ପୂର୍ବେ ହିଁ ଭିନ୍ନ ଭିନ୍ନ ସମ୍ପ୍ରଦାୟରେ ବିଭକ୍ତ ହୋଇଯାଏ ।

ତଥାପି ଏହା ସତ୍ୟ ବୋଲି ମନେହୁଏ ଯେ, ସମାଜ ଓ ଧର୍ମକ୍ଷେତ୍ରରେ ମାନବ-ଜାତିର ଐକ୍ୟସାଧନ ହିଁ ପ୍ରକୃତିର ଉଦ୍ଦେଶ୍ୟ, ଯଦିଓ ସେ ଐକ୍ୟ ମଧ୍ୟରେ ବୈଚିତ୍ର୍ୟର ସମ୍ଭାବନା ରହିବ । ସର୍ବାପେକ୍ଷା ସ୍ୱଳ୍ପ ବାଧାବିଘ୍ନର ପଥରେ ଚାଲିବା ଯଦି କାର୍ଯ୍ୟସିଦ୍ଧିର ଯଥାଯଥ ଉପାୟ ହୁଏ, ତା'ହେଲେ ମୋର ମନେହୁଏ, ପ୍ରତ୍ୟେକ ଧର୍ମ ଯେ ଏହିଭାବରେ ବିଭକ୍ତ ହୋଇ ସମ୍ପ୍ରଦାୟରେ ପରିଣତ ହୁଏ, ତାହା ଧର୍ମ-ସଂରକ୍ଷଣର ହିଁ ଗୋଟିଏ ଉପାୟ; କାରଣ ତାହା ଫଳରେ କଠିନ ଏକତ୍ୱର ନିଗଡ଼ ଚୂର୍ଣ୍ଣ ହୋଇଯାଏ ଏବଂ ଏଥିରୁ ଆମେ ଯଥାର୍ଥ ପନ୍ଥାର ନିର୍ଦ୍ଦେଶ ପାଇଥାଉ ।

ଅତଏବ ମନେହୁଏ, ଉଦ୍ଦେଶ୍ୟ ସମ୍ପ୍ରଦାୟଗୁଡ଼ିକର ଧ୍ୱଂସ ନୁହେଁ—ବରଂ ଏଗୁଡ଼ିକର ସଂଖ୍ୟାବୃଦ୍ଧି, ଯେପର୍ଯ୍ୟନ୍ତ ପ୍ରତ୍ୟେକ ବ୍ୟକ୍ତି ନିଜେ ହିଁ ଗୋଟିଏ ସମ୍ପ୍ରଦାୟ ହୋଇ ଠିଆ ନ ହୁଏ । ଅନ୍ୟ ପକ୍ଷରେ ପୁଣି ସବୁ ଧର୍ମ ମିଳିତ ହୋଇ ଗୋଟିଏ ବିରାଟ ଦର୍ଶନରେ ପରିଣତ ହେଲେ ହିଁ ଐକ୍ୟର ପୃଷ୍ଠଭୂମିକା ସୃଷ୍ଟି ହୁଏ । ପୌରାଣିକ କାହାଣୀ ବା ଆନୁଷ୍ଠାନିକ କ୍ରିୟାକର୍ମଦ୍ୱାରା କେବେହେଲେ ଐକ୍ୟ ସାଧିତ ହୁଏ ନାହିଁ । କାରଣ ସୂକ୍ଷ୍ମ ବ୍ୟାପାର ଅପେକ୍ଷା ସ୍ଥୂଳ ବିଷୟରେ ହିଁ ଆମମାନଙ୍କର ମତଦ୍ୱୈଧ ହୁଏ । ଗୋଟିଏ ମୂଳତତ୍ତ୍ୱ ସ୍ୱୀକାର କଲେ ମଧ୍ୟ ମନୁଷ୍ୟ ତା'ର ଆଦର୍ଶସ୍ଥାନୀୟ ଧର୍ମଗୁରୁଙ୍କର ମହତ୍ତ୍ୱ ସମ୍ବନ୍ଧରେ ଭିନ୍ନ ଭିନ୍ନ ମତ ପୋଷଣ କରେ ।

ସୁତରାଂ ଏହି ମିଳନ ଫଳରେ ଏପରି ଗୋଟିଏ ଦାର୍ଶନିକ ଐକ୍ୟ ଆବିଷ୍କୃତ ହେବ, ଯାହାକି ଐକ୍ୟର ଭିତ୍ତି ହୋଇ ଠିଆ ହେବ, ଅଥଚ ପ୍ରତ୍ୟେକେ ନିଜ ନିଜ ଆଦର୍ଶ ବା ସାଧନପଦ୍ଧତି ନିର୍ବାଚନ କରିବାର ସ୍ୱାଧୀନତା ପାଇପାରିବେ । ସହସ୍ର ସହସ୍ର ବର୍ଷ ଧରି ଏହି ରୂପ ମିଳନ ସ୍ୱାଭାବିକ ଭାବରେ ଚାଲି ଆସିଛି । କେବଳ ପାରସ୍ପରିକ ବିରୁଦ୍ଧାଚରଣଦ୍ୱାରା ଏହି ମିଳନ ମଧ୍ୟେ ମଧ୍ୟେ ଶୋଚନୀୟ ଭାବେ ପ୍ରତିହତ ହୋଇଅଛି ।

ଅତଏବ ପରସ୍ପର ବିରୁଦ୍ଧାଚରଣ ନ କରି ପ୍ରତ୍ୟେକ ଜାତିର ଆଚାର୍ଯ୍ୟମାନଙ୍କୁ ଅନ୍ୟ ଜାତି ନିକଟକୁ ପଠାଇ ସମଗ୍ର ମାନବସମାଜକୁ ପୃଥିବୀର ବିଭିନ୍ନ ଧର୍ମଶିକ୍ଷା ଦେବା ଉଚିତ । ଏହାଦ୍ୱାରା ବିଭିନ୍ନ ଜାତି ମଧ୍ୟରେ ପରସ୍ପର ଭାବର ଆଦାନ-ପ୍ରଦାନର ସହାୟତା ହେବ । କିନ୍ତୁ ଖ୍ରୀ: ପୂ: ଦ୍ୱିତୀୟ ଶତକରେ ଭାରତର ମହାମତି ବୌଦ୍ଧସମ୍ରାଟ ଅଶୋକ ଯେପରି କରିଥିଲେ, ଆମେମାନେ ମଧ୍ୟ ଯେପରି ସେମିତି ଅନ୍ୟର ନିନ୍ଦାବାଦରୁ ବିରତ ରହୁ । ଅନ୍ୟର ଦୋଷାନୁସନ୍ଧାନ ନ କରି ତାକୁ ସାହାଯ୍ୟ କରୁ, ଏବଂ ତା' ପ୍ରତି ସହାନୁଭୂତି-ସମ୍ପନ୍ନ ହୋଇ ତା'ର ଜ୍ଞାନଲାଭରେ ସହାୟତା କରୁ ।

ଜଡ଼ବିଜ୍ଞାନର ବିପରୀତ ଅଧ୍ୟାତ୍ମବିଜ୍ଞାନ ବିରୋଧରେ ଆଜି ସାରା ବିଶ୍ୱରେ ଏକ ମହା ହଟ୍ଟଗୋଳ ପଡ଼ିଯାଇଛି । ଆମର ଐହିକ ଜୀବନ ଓ ଏହି ପରିଦୃଶ୍ୟମାନ ଜଗତକୁ ଦୃଢ଼-ଭିତ୍ତି ଉପରେ ପ୍ରତିଷ୍ଠିତ କରିବା ପାଇଁ ଆମର ଇନ୍ଦ୍ରିୟଜ୍ଞାନର ସୀମା-ବହିର୍ଭୂତ ସକଳ ଭାବ ବିରୋଧରେ ସଂଗ୍ରାମ କରିବା, ଅତି ଦ୍ରୁତ ଗୋଟିଏ ଫେସନ୍‌ରେ ପରିଣତ ହୋଇଯାଇଛି । ଏପରିକି ଧର୍ମପ୍ରଚାରକମାନେ ମଧ୍ୟ ଗୋଟିକ ପରେ ଗୋଟିଏ ହୋଇ ଏ ଫେସନ୍ ନିକଟରେ ଆତ୍ମସମର୍ପଣ କରୁଅଛନ୍ତି । ଅବଶ୍ୟ ଚିନ୍ତାହୀନ ଜନସାଧାରଣ ସର୍ବଦା ସୁଖାବହ ଭାବରାଶିକୁ ହିଁ ଅନୁସରଣ କରିଥାନ୍ତି । କିନ୍ତୁ ଯେଉଁମାନଙ୍କ ନିକଟରୁ ଅଧିକତର ଜ୍ଞାନ ଆଶା କରାଯାଏ, ସେମାନେ ଯେତେବେଳେ ନିଜ ନିଜକୁ ଦାର୍ଶନିକ ବୋଲି ପ୍ରଚାର କରନ୍ତି ଏବଂ ଏହି ଅର୍ଥହୀନ ଫେସନ୍ ଅନୁସରଣ କରନ୍ତି, ସେତେବେଳେ ଏହା ସତକୁ ସତ ଶୋଚନୀୟ ।

ଆମର ଇନ୍ଦ୍ରିୟଗୁଡ଼ିକ ଯେତେବେଳଯାଏ ସ୍ୱାଭାବିକ ଶକ୍ତିସମ୍ପନ୍ନ, ସେତେବେଳଯାଏ ସେଗୁଡ଼ିକ ଆମର ସର୍ବାପେକ୍ଷା ବିଶ୍ୱାସଯୋଗ୍ୟ ପଥପ୍ରଦର୍ଶକ ଏବଂ ସେଗୁଡ଼ିକ ଯେଉଁସବୁ ତଥ୍ୟ ସଂଗ୍ରହ କରି ଦିଅନ୍ତି, ସେଗୁଡ଼ିକ ଯେ ମାନବୀୟ ଜ୍ଞାନ-ସୌଧର ଭିତ୍ତି, ଏକଥା ମଧ୍ୟ କେହି ଅସ୍ୱୀକାର କରୁନାହିଁ । କିନ୍ତୁ କେହି ଯଦି ମନେକରେ ଯେ, ମନୁଷ୍ୟର ସମଗ୍ର ଜ୍ଞାନ କେବଳ ଇନ୍ଦ୍ରିୟାନୁଭୂତି ବ୍ୟତୀତ ଆଉ କିଛି ନୁହେଁ—ତେବେ ଆମେ ଏକଥା ଅସ୍ୱୀକାର କରିବୁ । ଯଦି ପ୍ରାକୃତିକ ବିଜ୍ଞାନ କହିଲେ ଏହି ଇନ୍ଦ୍ରିୟ-ଲବ୍ଧ ଜ୍ଞାନକୁ ବୁଝାଏ, ତା'ଠାରୁ ବେଶୀ ଆଉ କିଛିକୁ ବୁଝାଏ ନାହିଁ—ତେବେ ଆମେ କହିବୁ—ଏଭଳି ବିଜ୍ଞାନ କୌଣସି ଦିନ ନ ଥିଲା କି କୌଣସି ଦିନ ହେବ ନାହିଁ । ଅପର ପକ୍ଷରେ କେବଳ ଇନ୍ଦ୍ରିୟ-ଜ୍ଞାନ ଉପରେ ପ୍ରତିଷ୍ଠିତ କୌଣସି ଜ୍ଞାନ କେବେହେଲେ ବିଜ୍ଞାନ ବୋଲି ଗୃହୀତ ହୋଇପାରିବ ନାହିଁ ।

ଅବଶ୍ୟ ଇନ୍ଦ୍ରିୟଗୁଡ଼ିକ ଜ୍ଞାନର ଉପାଦାନ ସଂଗ୍ରହ କରେ ଏବଂ ସେଗୁଡ଼ିକର ସାଦୃଶ୍ୟ ଓ ବୈଷମ୍ୟ ଅନୁସନ୍ଧାନ କରେ । କିନ୍ତୁ ଏହିଠାରେ ହିଁ ଇନ୍ଦ୍ରିୟଗୁଡ଼ିକର କାର୍ଯ୍ୟ ଶେଷ ହେବା ଉଚିତ ।

ପ୍ରଥମତଃ ବାହ୍ୟ ତଥ୍ୟ ସଂଗ୍ରହ ବ୍ୟାପାର ମଧ୍ୟ ଅନ୍ତରର କେତେକ ଭାବ ଏବଂ ଧାରଣା ଉପରେ—ଯଥା, ଦେଶ ଓ କାଳ ଉପରେ ନିର୍ଭର କରେ । ଦ୍ୱିତୀୟତଃ ମାନସପୃଷ୍ଠଭୂମିକାରେ କିଛି ପରିମାଣରେ ବିମୂର୍ତ୍ତିଭାବ ବ୍ୟତୀତ ତଥ୍ୟଗୁଡ଼ିକର ବର୍ଗୀକରଣ ବା ସାମାନ୍ୟୀକରଣ ଅସମ୍ଭବ । ସାମାନ୍ୟୀକରଣ ଯେତେ ଉଚ୍ଚଧରଣର ହେବ, ବିମୂର୍ତ୍ତି ପୃଷ୍ଠଭୂମିକା ମଧ୍ୟ ସେତେ ଇନ୍ଦ୍ରିୟାନୁଭୂତର ବାହାରେ ରହିବ । ସେହିଠାରେ ହିଁ ଅସଂଲଗ୍ନ ତଥ୍ୟଗୁଡ଼ିକୁ ସଜଡ଼ା ଯାଏ । ବର୍ତ୍ତମାନ ଜଡ଼ ବସ୍ତୁ, ଶକ୍ତି, ମନ, ନିୟମ, କାରଣ, ଦେଶ, କାଳ ପ୍ରଭୃତି ଭାବଗୁଡ଼ିକ ଅତି ଉଚ୍ଚ ବିମୂର୍ତ୍ତନର ଫଳ । କେହି କୌଣସି ଦିନ ଏଗୁଡ଼ିକୁ ଇନ୍ଦ୍ରିୟଦ୍ୱାରା ଅନୁଭବ କରି ନାହାନ୍ତି । ଏକଥା ମଧ୍ୟ କୁହାଯାଇପାରେ ଯେ, ଏଗୁଡ଼ିକ ସମ୍ପୂର୍ଣ୍ଣଭାବେ ଅତିପ୍ରାକୃତିକ ବା ଅତୀନ୍ଦ୍ରିୟ ଅନୁଭୂତ । ଅଥଚ ଏଗୁଡ଼ିକ ବ୍ୟତୀତ କୌଣସି ପ୍ରାକୃତିକ ତଥ୍ୟ ବୁଝାଯାଏ ନାହିଁ ! ଗୋଟିଏ ଗତିକୁ ବୁଝାଯାଏ—ଗୋଟିଏ ଶକ୍ତିର ସାହାଯ୍ୟରେ । କୌଣସି ପ୍ରକାର ଇନ୍ଦ୍ରିୟର ଅନୁଭୂତ ହୁଏ ଜଡ଼ ବସ୍ତୁର ମାଧ୍ୟମରେ । ବାହ୍ୟ ପରିବର୍ତ୍ତନଗୁଡ଼ିକ ବୁଝାଯାଏ । ପ୍ରାକୃତିକ ନିୟମର ଭିତର ଦେଇ ମାନସିକ ପରିବର୍ତ୍ତନଗୁଡ଼ିକ ଧରାପଡ଼େ ଚିନ୍ତାରେ ବା ମନରେ । ବିଚ୍ଛିନ୍ନ ଘଟଣାଗୁଡ଼ିକ କେବଳ କାର୍ଯ୍ୟକାରଣର ଶୃଙ୍ଖଳଦ୍ୱାରା ହିଁ ବୁଝାଯାଏ । ଅଥଚ କେହି ଜଡ଼ ବା ଶକ୍ତି ନିୟମ ବା କାରଣ, ଦେଶ ବା କାଳ—କିଛି ଦେଖିପାରନ୍ତି ନାହିଁ—ଏପରିକି କଳ୍ପନା ମଧ୍ୟ କରିପାରନ୍ତି ନାହିଁ ।

ତର୍କସ୍ଥଳରେ କୁହାଯାଇପାରେ—ବିମୂର୍ତ୍ତି ଭାବରୂପରେ ଏଗୁଡ଼ିକର ଅସ୍ତିତ୍ୱ ନାହିଁ । ଏଗୁଡ଼ିକ ବର୍ଗ ବା ଶ୍ରେଣୀଠାରୁ କିଛି ପୃଥକ୍ ନୁହେଁ—ଏଥିରୁ ଏଗୁଡ଼ିକୁ ପୃଥକ୍ କରାଯାଏ ନାହିଁ । ଏଗୁଡ଼ିକୁ କେବଳ ଗୁଣ ବୋଲି କୁହାଯାଇପାରେ ।

ଏହି ବିମୂର୍ତ୍ତନ ( abstraction ) ସମ୍ଭବ କି ନୁହେଁ—କିମ୍ବା ସାମାନ୍ୟୀକୃତ ବର୍ଗ ବ୍ୟତୀତ ଏଗୁଡ଼ିକର ଆଉ କିଛି ଅସ୍ତିତ୍ୱ ଅଛି କି ନାହିଁ—ଏହି ପ୍ରଶ୍ନ ବ୍ୟତୀତ ଏକଥା ସ୍ପଷ୍ଟ ଯେ, ଜଡ଼ ବା ଶକ୍ତିର ଧାରଣା, କାଳ ବା ଦେଶର ଧାରଣା, ନିମିତ୍ତ ନିୟମ ବା ମନର ଧାରଣା—ଏଗୁଡ଼ିକର ପ୍ରତ୍ୟେକଟି ହିଁ ସ୍ୱସ୍ୱ ବର୍ଗ ମଧ୍ୟରେ ନିରପେକ୍ଷ ସ୍ୱୟଂସମ୍ପୂର୍ଣ୍ଣ—ଏଗୁଡ଼ିକୁ ଯେତେବେଳେ କେବଳ ଏହି ଭାବରେ—ବିମୂର୍ତ୍ତି ନିରପେକ୍ଷ ଭାବରେ ଚିନ୍ତା କରାଯାଏ, ସେତିକିବେଳେ ହିଁ ଏଗୁଡ଼ିକ ଇନ୍ଦ୍ରିୟାନୁଭୂତିଲବ୍ଧ ତଥ୍ୟଗୁଡ଼ିକର ବ୍ୟାଖ୍ୟା-ରୂପେ ପ୍ରତିଭାତ ହୁଏ । ଅର୍ଥାତ୍ ଏହି ଭାବ ବା ଧାରଣାଗୁଡ଼ିକ କେବଳ ଯେ ସତ୍ୟ ତାହା ନୁହେଁ, ଏହା ବ୍ୟତୀତ ଏଗୁଡ଼ିକ ବିଷୟରେ ଦୁଇଟି ତଥ୍ୟ ମିଳିଥାଏ । ପ୍ରଥମେ ଏଗୁଡ଼ିକ ଅତିପ୍ରାକୃତିକ; ଦ୍ୱିତୀୟରେ ଅତିପ୍ରାକୃତିକ ରୂପେ ହିଁ ଏଗୁଡ଼ିକ ପ୍ରାକୃତିକ ଘଟଣା-ଗୁଡ଼ିକର ବ୍ୟାଖ୍ୟା କରେ—ଅନ୍ୟ ରୂପରେ ନୁହେଁ ।

× × ×

ବାହ୍ୟଜଗତ ଅନ୍ତର୍ଜଗତର ଅନୁରୂପ ବା ଅନ୍ତର୍ଜଗତ ବାହ୍ୟଜଗତର ଅନୁରୂପ; ଜଡ଼ ବସ୍ତୁ ମନର ହିଁ ପ୍ରତିକୃତି ବା ମନ ଜଡ଼ଜଗତର ପ୍ରତିକୃତି; ପାରିପାର୍ଶ୍ୱିକ ଅବସ୍ଥା ମନକୁ ନିୟନ୍ତ୍ରିତ କରେ ଅଥବା ମନ ହିଁ ପାରିପାର୍ଶ୍ୱିକ ଅବସ୍ଥାକୁ ନିୟନ୍ତ୍ରିତ କରେ—ଏହା ଅତି ପୁରାତନ ପ୍ରାଚୀନ ପ୍ରଶ୍ନ; ତେବେ ସୁଦ୍ଧା ଏହା ବର୍ତ୍ତମାନ ବି ପୂର୍ବଭଳି ନୂତନ ଓ ସତେଜ । ଏହା ଭିତରେ କେଉଁଟା ପୂର୍ବେ ବା କେଉଁଟା ପରେ—କେଉଁଟା କାରଣ ଓ କେଉଁଟା କାର୍ଯ୍ୟ—ମନ ହିଁ ଜଡ଼ବସ୍ତୁର କାରଣ ବା ଜଡ଼ବସ୍ତୁ ମନର କାରଣ—ଏ ସମସ୍ୟା ସମାଧାନର ଚେଷ୍ଟା ନ କଲେ ମଧ୍ୟ ଏହା ସ୍ୱତଃସିଦ୍ଧ ଯେ, ବାହ୍ୟଜଗତ ଅନ୍ତର୍ଜଗତଦ୍ୱାରା ନିୟନ୍ତ୍ରିତ ନ ହେଲେ ବି ଏହା ଅନ୍ତର୍ଜଗତର ଅନୁରୂପ ହେବାକୁ ବାଧ୍ୟ । ତାହା ଯଦି ନ ହୁଏ, ତେବେ ତାକୁ ଜାଣିବାର ଅନ୍ୟ ଉପାୟ ଆମର ନାହିଁ । ଯଦି ଧରି ନିଆଯାଏ ଯେ, ବାହ୍ୟ ଜଗତ ହିଁ ଆମ ଅନ୍ତର୍ଜଗତର କାରଣ, ତେବେ କହିବାକୁ ହେବ, ଏହି ବାହ୍ୟଜଗତ, ଯାହାକୁ ଆମେ ମନର କାରଣ ବୋଲି କହୁଛୁ, ଏହା ଆମ ପାଖରେ ଅଜ୍ଞାତ ଓ ଅଜ୍ଞେୟ । କାହିଁକି ନା ଆମର ମନ ଏହାର ସେତିକି ବା ସେତିକି ମାତ୍ର ଭାବକୁ ଜାଣିପାରେ, ଯାହା ଏହା ସଙ୍ଗେ ଏହାର ପ୍ରତିବିମ୍ବରୂପେ ମିଳିଯାଏ । ପ୍ରତିବିମ୍ବ କେବେ ହେଲେ ବସ୍ତୁଟିର କାରଣ ହୋଇପାରେ ନାହିଁ । ସୁତରାଂ ବାହ୍ୟଜଗତର ଯେଉଁ ଅଂଶଟିକ—ଯେଉଁ ଅଂଶଟିକ ଏହାର ସମଗ୍ରତା ଭିତରୁ କାଟିନେଇ ଆମ ମନଦ୍ୱାରା ଜାଣିପାରୁଛୁ, ତାହା କେବେ ହେଲେ ଆମ ମନର କାରଣ ହୋଇପାରେ ନାହିଁ । କାରଣ, ଏହାର ଅସ୍ତିତ୍ୱ ଆମ ମନଦ୍ୱାରା ହିଁ ସୀମାବଦ୍ଧ । ମନଦ୍ୱାରା ହିଁ ଏହାକୁ ଜଣାଯାଏ ।

ଏଥିଲାଗି ମନକୁ ଜଡ଼ବସ୍ତୁରୁ ଉତ୍ପନ୍ନ ବୋଲି କହି ହେବ ନାହିଁ । ଏହା କହିବା ମଧ୍ୟ ଅସଙ୍ଗତ; କାହିଁକି ନା ଆମେ ଜାଣୁ ଯେ, ଏହି ବିଶ୍ୱ-ଅସ୍ତିତ୍ୱର ଯେଉଁ ଅଂଶ ଠିକ୍‌କରେ ଚିନ୍ତା ବା ଜୀବନୀଶକ୍ତି ନାହିଁ ଏବଂ ଯେଉଁଥିରେ ବାହ୍ୟ-ଅସ୍ତିତ୍ୱ ରହିଛି—ତାହାକୁ ଆମେ ଜଡ଼ ବସ୍ତୁ ବୋଲି କହିଥାଉଁ । ଏବଂ ଯେଉଁଠାରେ ଏହି ବାହ୍ୟ ଅସ୍ତିତ୍ୱ ନାହିଁ ଏବଂ ଯେଉଁଥିରେ ଚିନ୍ତା ବା ଜୀବନୀଶକ୍ତି ରହିଛି—ତାକୁ ହିଁ ଆମେ ମନ କହୁ । ସୁତରାଂ ବର୍ତ୍ତମାନ ଯଦି ଆମେ ଜଡ଼ରୁ ମନ ବା ମନରୁ ଜଡ଼ ବୋଲି ପ୍ରମାଣ କରିବାକୁ ଯାଉ, ତା' ହେଲେ ଯେଉଁସବୁ ଗୁଣଦ୍ୱାରା ଏ ଦୁଇଟିକୁ ପୃଥକ୍ କରାଯାଇଥିଲା, ତାହାକୁ ଅସ୍ୱୀକାର କରିବାକୁ ହେବ । ଅତଏବ ମନରୁ ଜଡ଼ ବା ଜଡ଼ରୁ ମନ ଉତ୍ପନ୍ନ ହୋଇଅଛି—ଏକଥା କହିବା କେବଳ କଥାର କଥା ମାତ୍ର ।

ଆମେ ଆହୁରି ମଧ୍ୟ ଦେଖିବାକୁ ପାଇବା ଯେ, ଏହି ବିତର୍କଟି ମନ ଓ ଜଡ଼ର ବିଭିନ୍ନ ସଂଜ୍ଞା—ବ୍ୟବହାର-ରୂପକ ଭ୍ରାନ୍ତି ଉପରେ ବହୁ ପରିମାଣରେ ନିର୍ଭର କରୁଅଛି । ଆମେ ମନକୁ କେବେ ବା ଜଡ଼ର ବିପରୀତ ଓ ଜଡ଼ରୁ ପୃଥକ୍ ବୋଲି ବର୍ଣ୍ଣନା କରିଥାଉ । ପୁଣି ବା କେବେ କେବେ କହୁ, ମନ ଓ ଜଡ଼ ଉଭୟ ହିଁ ମନର ଅନ୍ତର୍ଗତ, ଅର୍ଥାତ୍ ଜଡ଼ଜଗତର ଦୃଷ୍ଟିରେ ଅନ୍ତର୍ଜଗତ ଓ ବହିର୍ଜଗତ ଦୁଇ ହିଁ ମନର ଅଂଶବିଶେଷ । ଜଡ଼କୁ ମଧ୍ୟ ସେହିଭଳି କେବେ ବା ଆମର ଇନ୍ଦ୍ରିୟଗ୍ରାହ୍ୟ ବାହ୍ୟ ଜଗତରୂପେ ଅଥବା କେବେ

ପୁଣି ବାହ୍ୟ ଓ ଆନ୍ତର ଉଭୟ ଜଗତର କାରଣରୂପେ ବର୍ଣ୍ଣନା କରାଯାଇଛି । ଜଡ଼ବାଦୀଗଣ ଭାବବାଦୀମାନଙ୍କୁ ଆତଙ୍କିତ କରି ଯେତେବେଳେ କହନ୍ତି, "ସେମାନେ ସେମାନଙ୍କର ପରୀକ୍ଷାଗାରର ମୂଳତତ୍ତ୍ୱଗୁଡ଼ିକ ଭିତରୁ ମନକୁ ପ୍ରସ୍ତୁତ କରିବେ"—ସେତେବେଳେ ସେମାନେ କିନ୍ତୁ ଏପରି ଏକ ବସ୍ତୁକୁ ପ୍ରକାଶ କରିବାକୁ ଚାହାଁଛନ୍ତି, ଯାହା ସେମାନଙ୍କର ସକଳ ମୂଳତତ୍ତ୍ୱର ଊର୍ଦ୍ଧ୍ୱରେ—ବାହ୍ୟ ଓ ଅନ୍ତର୍ଜଗତ ଯାହା ଭିତରୁ ଉତ୍ପନ୍ନ, ଯାହାକୁ ସେମାନେ ଜଡ଼ ପ୍ରକୃତିରୂପେ ଆଖ୍ୟା ଦେଇଅଛନ୍ତି । ସେହିଭଳି ଯେତେବେଳେ ଜଡ଼ବାଦୀର ମୂଳତତ୍ତ୍ୱଗୁଡ଼ିକୁ ଭାବବାଦୀମାନେ ସେମାନଙ୍କ ଚିନ୍ତାତତ୍ତ୍ୱ ଭିତରୁ ଉତ୍ପନ୍ନ ବୋଲି ମନେ କରନ୍ତି, ସେତେବେଳେ କିନ୍ତୁ ସେମାନେ ଏପରି ଏକ ବସ୍ତୁର ଇଙ୍ଗିତ ପାଇଥାଆନ୍ତି, ଯାହା ଭିତରୁ ଜଡ଼ ଓ ଚେତନ ଉଭୟ ବସ୍ତୁ ହିଁ ଉତ୍ପନ୍ନ ହୋଇଛନ୍ତି । ତାକୁ ହିଁ ସେମାନେ ବହୁ ସମୟରେ 'ଈଶ୍ୱର' ଆଖ୍ୟା ମଧ୍ୟ ଦେଇଥାନ୍ତି । ଏହାର ଅର୍ଥ ଏହି ଯେ—ଦଳେ ବିଶ୍ୱବ୍ରହ୍ମାଣ୍ଡର ଏକ ଅଂଶ ମାତ୍ର ଜାଣି ତାହାକୁ 'ବାହ୍ୟ' ବୋଲି ବର୍ଣ୍ଣନା କରିଛନ୍ତି ଏବଂ ଅନ୍ୟ ଦଳ ଏହାର ଅପର ଅଂଶ ଜାଣି ଏହାକୁ ହିଁ 'ଆନ୍ତର' ଆଖ୍ୟା ଦେଇଅଛନ୍ତି । କିନ୍ତୁ ଏହି ଉଭୟ ପ୍ରୟାସ ହିଁ ନିଷ୍ଫଳ । ମନ ବା ଜଡ଼ କୌଣସିଟି ହିଁ ଅନ୍ୟଟିକୁ ବ୍ୟାଖ୍ୟା କରିପାରେ ନାହିଁ । ଏପରି ଆଉ ଗୋଟିଏ ବସ୍ତୁର ଆବଶ୍ୟକ, ଯାହା ଏହି ଉଭୟଙ୍କୁ ହିଁ ବ୍ୟାଖ୍ୟା କରିପାରେ ।

ଏହିପରି ଯୁକ୍ତି ଦିଆଯାଇପାରେ ଯେ, ଚିନ୍ତା ମଧ୍ୟ କେବେ ମନ ବ୍ୟତୀତ ରହିପାରେ ନାହିଁ । କାରଣ, ଯଦି ଏପରି ଏକ ସମୟ କଳ୍ପନା କରାଯାଏ, ଯେତେବେଳେ ଚିନ୍ତାର ଅସ୍ତିତ୍ୱ ନ ଥିଲା, ସେତେବେଳେ ଜଡ଼—ଯେଉଁ ରୂପରେ ଆମେ ଏହାକୁ ଜାଣୁ—କି ଭଳି ରହିବ ? ଅପର ପକ୍ଷରେ ଏହା କୁହାଯାଇପାରେ ଯେ, ଇନ୍ଦ୍ରିୟାନୁଭୂତ ବ୍ୟତୀତ ଜ୍ଞାନ ସମ୍ଭବ ନୁହେଁ ଏବଂ ଯେତେବେଳେ ଏହି ଅନୁଭୂତ ବାହ୍ୟଜଗତ ଉପରେ ନିର୍ଭର କରେ, ସେତେବେଳେ ଆମମାନଙ୍କ ମନର ଅସ୍ତିତ୍ୱ ମଧ୍ୟ ବାହ୍ୟଜଗତର ଅସ୍ତିତ୍ୱ ଉପରେ ନିର୍ଭର କରିଥାଏ ।

ଏହା ମଧ୍ୟ କୁହାଯାଇ ନ ପାରେ ଯେ, ଜଡ଼ ଓ ମନର ଗୋଟିଏ ଆରମ୍ଭ-କାଳ ( **beginning** ) ରହିଅଛି । ସାମାନ୍ୟୀକରଣ ବ୍ୟତୀତ ଜ୍ଞାନ ସମ୍ଭବ ନୁହେଁ । ସାମାନ୍ୟୀକରଣ ମଧ୍ୟ ପୁଣି କେତେଗୁଡ଼ିଏ ଦୃଷ୍ଟବସ୍ତୁର ପୂର୍ବାସ୍ତିତ୍ୱ ଉପରେ ନିର୍ଭର କରିଥାଏ । ପୂର୍ବ ଅନୁଭୂତି ବ୍ୟତୀତ ଗୋଟିକ ସହିତ ଆଉ ଗୋଟିକର ତୁଳନା ମଧ୍ୟ ସମ୍ଭବ ନୁହେଁ । ଜ୍ଞାନ ସେଥିପାଇଁ ପୂର୍ବ ଜ୍ଞାନର ଅପେକ୍ଷା କରିଥାଏ । ସେଥିପାଇଁ ଏହା ଚିନ୍ତା ଓ ଜଡ଼ର ପୂର୍ବାସ୍ତିତ୍ୱ ଉପରେ ହିଁ ନିର୍ଭର କରେ । ତେଣୁ ଏ ଦୁଇଟିର ଆରମ୍ଭକାଳ ସମ୍ଭବ ନୁହେଁ ।

ଇନ୍ଦ୍ରିୟଜ୍ଞାନ ଯାହା ଉପରେ ନିର୍ଭର କରେ, ସେହି ସାମାନ୍ୟୀକରଣର ପଶ୍ଚାତ୍‌ରେ ମଧ୍ୟ ଏପରି ଗୋଟିଏ ବସ୍ତୁ ଥିବା ଆବଶ୍ୟକ, ଯାହା ଉପରେ କ୍ଷୁଦ୍ର କ୍ଷୁଦ୍ର ଅସଂଲଗ୍ନ ଇନ୍ଦ୍ରିୟାନୁଭୂତଗୁଡ଼ିକ ଏକତ୍ର ହୋଇପାରନ୍ତି । ଚନ୍ଦ୍ରାଙ୍କନ ନିମିତ୍ତ ଯେପରି

ଚିନ୍ତାର ପଶ୍ଚାତ୍‌ରେ ଗୋଟିଏ ପୃଷ୍ଠଭୂମିର ଏକାନ୍ତ ଆବଶ୍ୟକ, ଆମର ବାହ୍ୟାନୁଭୂତି ଲାଗି ମଧ୍ୟ ସେହିଭଳି ଗୋଟିଏ କିଛିର ଏକାନ୍ତ ପ୍ରୟୋଜନ ରହିଛି—ଯାହା ଉପରେ ଇନ୍ଦ୍ରିୟାନୁଭୂତିଗୁଡ଼ିକ ଏକତ୍ର ହୋଇପାରେ । ଯଦି ଚିନ୍ତା ବା ମନକୁ ଏହି ବସ୍ତୁ ବୋଲି କୁହାଯାଏ, ତେବେ ଏହାର ଏକତ୍ରୀକରଣ ନିମିତ୍ତ ପୁନଶ୍ଚ ଆଉ ଗୋଟିଏ ବସ୍ତୁର ପ୍ରୟୋଜନ ହେବ । ମନ ଗୋଟିଏ ଅନୁଭୂତିର ପ୍ରବାହ ବ୍ୟତୀତ ଅନ୍ୟ କିଛି ନୁହେଁ । ସୁତରାଂ ଏଗୁଡ଼ିକର ଏକତ୍ରୀକରଣ ସକାଶେ ଏହିରୂପ ଗୋଟିଏ ପୃଷ୍ଠଭୂମିକାର ଏକାନ୍ତ ପ୍ରୟୋଜନ ରହିବ । ଏହି ପୃଷ୍ଠଭୂମିକାଟି ପାଇଲେ ହିଁ ଆମର ସବୁ ପ୍ରକାର ବିଶ୍ଳେଷଣ ବନ୍ଦ ହୋଇଯାଏ । ଏହି ଅବିଭାଜ୍ୟ ଏକତ୍ୱରେ ନ ପହଞ୍ଚିବା ପର୍ଯ୍ୟନ୍ତ ଆମେ ଚୁପ ରହି ନ ପାରୁ । ଏହି ଏକତ୍ୱ ହିଁ ଆମର ଜଡ଼ ଓ ଚିନ୍ତାର ଏକମାତ୍ର ପୃଷ୍ଠଭୂମି ।

× × ×

ଯେତେବେଳଯାଏ କୌଣସି ଅଖଣ୍ଡ ଅଦ୍ୱିତୀୟ ସତ୍ତାର ସନ୍ଧାନ ନ ମିଳିଛି—ସେତେବେଳଯାଏ ଯୌଗିକ ପଦାର୍ଥର ବିଶ୍ଳେଷଣ ସମ୍ଭବ ନୁହେଁ । ଯେଉଁ ସତ୍ତା ଆମ ନିକଟରେ 'ଜଡ଼ବସ୍ତୁ' ଓ 'ଚିନ୍ତା'—ଏହି ଉଭୟର ଏହି ପ୍ରକାର ଏକତ୍ୱ ଉପସ୍ଥାପିତ କରେ, ଏହା ହିଁ ସେହି ସଠିକ ଅଖଣ୍ଡ ଭିତ୍ତି, ଯାହା ଉପରେ ନିଖିଳ ପ୍ରପଞ୍ଚ ମଧ୍ୟ ଅଧିଷ୍ଠିତ । କାରଣ, ଏହା ପରେ ଆମେ ଆଉ କୌଣସି ବିଶ୍ଳେଷଣର କଥା ଚିନ୍ତା କରିପାରୁନାହିଁ । ଅଧିକନ୍ତୁ ଏହାର ଅଧିକ ବିଶ୍ଳେଷଣର ଆଉ ପ୍ରୟୋଜନ ମଧ୍ୟ ନ ଥାଏ, କାରଣ ବାହ୍ୟ ଓ ଅନ୍ତର ପ୍ରତ୍ୟକ୍ଷର ସବୁ ପ୍ରକାର ବିଶ୍ଳେଷଣ ଏହାର ଅନ୍ତର୍ଭୁକ୍ତ ହୋଇଯାଏ ।

ଏପର୍ଯ୍ୟନ୍ତ ଆମେ ଏତିକି ଦେଖିବାକୁ ପାଇଲୁ ଯେ 'ମନ' ଓ ଜଡ଼ପ୍ରପଞ୍ଚ ଏବଂ ସେହି ଦୁଇଟିର ଊର୍ଦ୍ଧ୍ୱରେ ସେହି ଅଦ୍ୱିତୀୟ ବସ୍ତୁ, ଯାହା ଉପରେ ଏହି ଦୁଇଟିଯାକ ନିଜ ନିଜର କ୍ରିୟା କରିଯାଉଛନ୍ତି—ଏହି ସମସ୍ତ ହିଁ ଆମମାନଙ୍କ ଅନୁସନ୍ଧାନର ଅନ୍ତର୍ଭୁକ୍ତ ।

ଏହି ଯେ ଊର୍ଦ୍ଧ୍ୱରେ ଅବସ୍ଥିତ ବସ୍ତୁଟି, ଏହା ଇନ୍ଦ୍ରିୟର ପ୍ରତ୍ୟକ୍ଷ-ବିଷୟ ହୁଏ ନାହିଁ । ଯୁକ୍ତିର ଅବର୍ଜନୀୟ ଅଙ୍ଗରୂପରେ ଏହା ଆସିଯାଏ—ଏବଂ ଏକ ଭାଷାତୀତ ଅନୁଭବ-ସ୍ୱରୂପରେ ଏହା ଆମର ପ୍ରତ୍ୟେକ ଇନ୍ଦ୍ରିୟ-ପ୍ରତ୍ୟକ୍ଷର ସଙ୍ଗେ ସଙ୍ଗେ ଆମ ନିକଟରେ ଉପସ୍ଥିତ ହୁଏ । ଆମେ ଏହା ମଧ୍ୟ ଦେଖିବାକୁ ପାଉ ଯେ ଯୁକ୍ତିର ସତତା ରକ୍ଷା କରିବାକୁ ହେଲେ ଏବଂ ଆମର ସାମାନ୍ୟୀକରଣର ସ୍ୱାଭାବିକ ପ୍ରବୃତ୍ତି ଅନୁସରଣ କରିବାକୁ ହେଲେ ଆମେ ବାଧ୍ୟ ହୋଇ ଏହି ଅନିର୍ବଚନୀୟ ବସ୍ତୁରେ ଉପନୀତ ହେଉ ।

ଏପରି ଯୁକ୍ତି ମଧ୍ୟ ଉଠିପାରେ ଯେ, ମାନସିକ ଓ ଜଡ଼-ପ୍ରାକୃତିକ ପ୍ରପଞ୍ଚର ଊର୍ଦ୍ଧ୍ୱରେ ଅନ୍ୟ କୌଣସି ସାରବସ୍ତୁ ବା ଚେତନସତ୍ତା ରହିଛି—ଏହା ମାନିନେବାର କୌଣସି ପ୍ରୟୋଜନ ନାହିଁ । ଆମେ କେବଳ ଏହି ନିଖିଳ ପ୍ରପଞ୍ଚକୁ ଜାଣିପାରୁ ବା ଜାଣୁ । ଏବଂ ଏହି ପ୍ରପଞ୍ଚର ବ୍ୟାଖ୍ୟା ନିମିତ୍ତ ପ୍ରପଞ୍ଚାତୀତ କୌଣସି ଅପର ବସ୍ତୁର ପ୍ରୟୋଜନ ହୁଏ ନାହିଁ । ବିଶ୍ଳେଷଣର ଧାରା ଇନ୍ଦ୍ରିୟକୁ ଅତିକ୍ରମ କରି ଯାଇପାରେ ନାହିଁ । କିନ୍ତୁ ସର୍ବବସ୍ତୁର

ସମନ୍ୱୟ-କ୍ଷେତ୍ରରୂପେ କୌଣସି ସାର ବସ୍ତୁ ଅଛି, ଏହିଭଳି ବୋଧ କରିବା ମାନସିକ ଭ୍ରାନ୍ତି ମାତ୍ର ।

ଆମେ ଦେଖିବାକୁ ପାଉ—ଅତି ପୁରାକାଳରୁ ଚିନ୍ତାଶୀଳ ବ୍ୟକ୍ତିମାନଙ୍କ ମଧ୍ୟରେ ଦୁଇଟି ଶ୍ରେଣୀ ବିରାଜମାନ । ଗୋଟିଏ ପକ୍ଷର ମତରେ ମନୁଷ୍ୟର ମନରେ ବସ୍ତୁ ସମ୍ବନ୍ଧରେ ପ୍ରତ୍ୟୟ ରଚନା କରିବାର ଏବଂ ବସ୍ତୁନିରପେକ୍ଷ ସୂକ୍ଷ୍ମଧାରଣାରେ ଉପସ୍ଥିତ ହେବାର ଯେ ଅନିବାର୍ଯ୍ୟ ପ୍ରୟୋଜନ ରହିଛି, ଏହା ହିଁ ଜ୍ଞାନାର୍ଜନର ସ୍ୱାଭାବିକ ପଥନିର୍ଦ୍ଦେଶକ, ଏବଂ ଯେତେବେଳଯାଏ ଆମେ ସମସ୍ତ ପ୍ରପଞ୍ଚକୁ ଅତିକ୍ରମ କରି ଏପରି ଏକ ବିଶୁଦ୍ଧ ପ୍ରତ୍ୟୟରେ ( ଯାହାକି ସବୁ ପ୍ରକାରେ ସ୍ୱତନ୍ତ୍ର ଏବଂ ଦେଶକାଳନିମିତ୍ତର ଅତୀତ ) ପହଞ୍ଚି ନ ପାରିଛୁ, ସେତେବେଳଯାଏ ଏହାର ବିରାମ ନାହିଁ । ବର୍ତ୍ତମାନ ଯଦି ଆମେ ସ୍ଥୂଳରୁ ଆରମ୍ଭ କରି କ୍ରମେ ସୂକ୍ଷ୍ମ ଏବଂ ସୂକ୍ଷ୍ମତର ଅବସ୍ଥାରେ ବିଲୀନ କରି କରି ଅଗ୍ରସର ହୋଇ ଚାଲୁ ଏବଂ ଏପରି ଗୋଟିଏ ଜାଗାରେ ପହଞ୍ଚି ଦେଖୁ ଯେ, ଅନ୍ୟ ସବୁ କିଛିର ସମାଧାନ ହୋଇଯାଉଛି—ଏବଂ ଏହି ପ୍ରଣାଳୀ ଅବଲମ୍ବନ କରି ଚିନ୍ତା ଓ ପଦାର୍ଥଦ୍ୱାରା ବିରଚିତ ନିଖିଳ ପ୍ରପଞ୍ଚର ବିଶ୍ଳେଷଣପୂର୍ବକ ପୂର୍ବୋକ୍ତ ଚରମ ଧାରଣାରେ ଉପସ୍ଥିତ ହେଉ, ତେବେ ଏହା ସ୍ୱତଃ ପ୍ରତିଭାତ ହେବ ଯେ, ଏହି ଚରମ ଫଳ ବ୍ୟତୀତ ଯାହା କିଛି ଅଛି, ସେ ସବୁ ହିଁ ଏହାର ବିବିଧ ବିକାଶ ମାତ୍ର । ତେଣୁ ଏହି ଚରମ ଫଳଟି ହିଁ ଏକମାତ୍ର ସତ୍ୟ ବସ୍ତୁ; ଆଉ ଯାହା କିଛି ସବୁ ଅଛି, ତାହା ଏହାର ଛାୟାମାତ୍ର । ଅତଏବ ଇନ୍ଦ୍ରିୟର ଗଣ୍ଡି ମଧ୍ୟରେ ସତ୍ୟ ନାହିଁ । ସତ୍ୟ ନିଶ୍ଚିତଭାବେ ଏହାର ଅତୀତ ।

ଅନ୍ୟ ଦିଗରେ ଅପରପକ୍ଷଙ୍କ ମତ ହେଲା—ଆମର ଇନ୍ଦ୍ରିୟଗୁଡ଼ିକ ଆମ ନିକଟରେ ଯାହା ଆଣି ଥୁଅନ୍ତି ଜଗତରେ କେବଳ ସେତିକି ହିଁ ସତ୍ୟ ଏବଂ ଯଦିଓ ଇନ୍ଦ୍ରିୟଲବ୍ଧ ଅନୁଭୂତି ସହିତ ତା'ର ଊର୍ଦ୍ଧ୍ୱରେ ଅବସ୍ଥିତ କୌଣସି ଗୋଟିଏ ବସ୍ତୁର ଆଭାସ ଅନୁସ୍ୟୂତ ରହିଛି ବୋଲି ବୋଧହୁଏ, ତଥାପି ଏହା ମନର ଛଳନା ମାତ୍ର—ଏବଂ ତେଣୁ ଏହା ମିଥ୍ୟା ।

ଅପରିବର୍ତ୍ତନୀୟ କୌଣସି କିଛିର ଧାରଣା ନ ରହିଲେ ପରିବର୍ତ୍ତନଶୀଳ କୌଣସି କିଛିର ଧାରଣା ହୋଇପାରେ ନାହିଁ । ବର୍ତ୍ତମାନ ଯଦି କୁହାଯାଏ ଯେ ଯେଉଁ ଅପରିବର୍ତ୍ତନୀୟର ପରିପ୍ରେକ୍ଷୀରେ ପରିବର୍ତ୍ତନଶୀଳ ବସ୍ତୁଟିକୁ ଦେଖାହୁଏ, ତାହା ମଧ୍ୟ ଗୋଟିଏ ଇନ୍ଦ୍ରିୟଗ୍ରାହ୍ୟ ଓ ପରିବର୍ତ୍ତନଶୀଳ ଘଟଣା ମାତ୍ର, ଏବଂ ଏହାର ଅପରିବର୍ତ୍ତନୀୟତା କେବଳ ଆପେକ୍ଷିକ ଏବଂ ଏଇଥି ପାଇଁ ଏହାକୁ ବୁଝିବାକୁ ହେଲେ ଏହାକୁ ମଧ୍ୟ ଆଉ ଗୋଟିଏ କିଛିର ପରିପ୍ରେକ୍ଷୀରେ ଦେଖିବାକୁ ହେବ ଏବଂ ତା' ପରେ ପରେ ଏହି ଭାବରେ ହିଁ ଚାଲିଥିବ; ତା' ହେଲେ ଆମେ କହୁ—ଏହି ଶୃଙ୍ଖଳା-ପରମ୍ପରାକୁ ଅନନ୍ତ ଧାରାରେ ଯେତେ ଦୀର୍ଘ କରାଯାଉ ନା କାହିଁକି, ପରିଶେଷରେ ଦେଖାଯିବ, ଆମେ ଯେହେତୁ ଅପରିବର୍ତ୍ତନୀୟ ସହିତ ସମ୍ବନ୍ଧ ବ୍ୟତୀତ ପରିବର୍ତ୍ତନଶୀଳ ବସ୍ତୁର ଧାରଣା କରିପାରୁ ନାହିଁ, ଅତଏବ ବାଧ୍ୟ ହୋଇ ଆମମାନଙ୍କୁ ଏପରି ଗୋଟିଏ ସତ୍ତାର ଅସ୍ତିତ୍ୱ ମାନିନେବାକୁ ପଡ଼ୁଛି, ଯାହାକି ସମସ୍ତ ପରିବର୍ତ୍ତନଶୀଳ ବସ୍ତୁର ପଶ୍ଚାତ୍‌ରେ ରହିଅଛି । ବିଭିନ୍ନ ଅଂଶର ମିଳନରେ ଯାହା

ପ୍ରସ୍ତୁତ ହୁଏ, ତାହାର ଏକାଂଶ ଗ୍ରହଣ କରିବାର ଏବଂ ଅପରାଂଶ ପରିତ୍ୟାଗ କରିବାର ଅଧିକାର କାହାର ହେଲେ ନାହିଁ । କେହି ଯଦି ମୁଦ୍ରାର ପ୍ରଧାନ-ନାମାଙ୍କିତ ଦିଗଟି ଗ୍ରହଣ କରେ, ତା' ହେଲେ ତାକୁ ଏହାର ଓଲଟା ଦିଗଟାକୁ ମଧ୍ୟ ଗ୍ରହଣ କରିବାକୁ ପଡ଼ିବ— ସେ ତାହା ପସନ୍ଦ କରୁ କି ଅପସନ୍ଦ କରୁ, ସେଥିରେ କିଛି ଯାଏ ଆସେ ନାହିଁ ।

ଅଧିକନ୍ତୁ ମନୁଷ୍ୟର ପ୍ରତ୍ୟେକ କ୍ରିୟା ସଙ୍ଗେ ଏହା ହିଁ ବିଘୋଷିତ ହୁଏ ଯେ, ସେ ସ୍ୱାଧୀନ । ସର୍ବଶ୍ରେଷ୍ଠ ମନୀଷୀଙ୍କଠାରୁ ଆରମ୍ଭ କରି ସର୍ବାପେକ୍ଷା ଅଶିକ୍ଷିତ ବ୍ୟକ୍ତି ପର୍ଯ୍ୟନ୍ତ ସମସ୍ତେ ଜାଣନ୍ତି—ସେ ସ୍ୱାଧୀନ । ଅଥଚ ପ୍ରତ୍ୟେକ ମନୁଷ୍ୟ ଟିକିଏ ମାତ୍ର ଚିନ୍ତା କଲେ ଦେଖିବାକୁ ପାଇବ ଯେ, ତା'ର ପ୍ରତ୍ୟେକ କର୍ମର ପଶ୍ଚାତ୍ତରେ କେତେଗୁଡ଼ିଏ ଅଭିପ୍ରାୟ ଓ ପାରିପାର୍ଶ୍ୱିକ ଅବସ୍ଥା ରହିଅଛି ଏବଂ ସେହି ଅବସ୍ଥା ଓ ଅଭିପ୍ରାୟଗୁଡ଼ିକ ଯେତେବେଳ-ଯାଏ ଅଛନ୍ତି, ସେତେବେଳଯାଏ ଜାଗତିକ କୌଣସି ଘଟଣାକୁ ଯେଉଁଭଳି କାର୍ଯ୍ୟକାରଣର ନିୟମାନୁସାରେ ନିର୍ଣ୍ଣୟ କରିଯାଇପାରେ, ଯେକୌଣସି ମନୁଷ୍ୟର ଜୀବନର ଯେକୌଣସି ଘଟଣାକୁ ମଧ୍ୟ ସେହିଭଳି ଏହି ଅଭିପ୍ରାୟ ଓ ଅବସ୍ଥାଗୁଡ଼ିକ ଭିତରୁ ହିଁ କାର୍ଯ୍ୟକାରଣର ସୁନିଶ୍ଚିତ ଧାରା ଅବଲମ୍ବନ କରି ନିର୍ଣ୍ଣୟ କରିଯାଇପାରେ ।

ଏଠାରେ ପୁନଶ୍ଚ ଠିକ୍ ସେହି ପୂର୍ବର ଅସୁବିଧାଗୁଡ଼ିକର ହିଁ ସୃଷ୍ଟି ହୋଇଗଲା । ମନୁଷ୍ୟର ଇଚ୍ଛା ଗୋଟିଏ କ୍ଷୁଦ୍ର ବୃକ୍ଷର ବୃଦ୍ଧି କିମ୍ବା ଖଣ୍ଡିଏ ପ୍ରସ୍ତରଖଣ୍ଡର ପତନ ଭଳି କାର୍ଯ୍ୟକାରଣର କଠିନ ନିଗଡ଼ରେ ଆବଦ୍ଧ, ଏବଂ ତଥାପି ଏହିସବୁ ବନ୍ଧନ ଭିତରେ ବି ମୁକ୍ତିର ଅବିନଶ୍ୱର ଧାରଣା ଅନୁସ୍ୟୂତ ରହିଅଛି । ଏ ସ୍ଥଳରେ ମଧ୍ୟ ଯେଉଁମାନେ ସମ୍ପୂର୍ଣ୍ଣ ଘଟଣାଗୁଡ଼ିକ ଆଡ଼େ ଦୃଷ୍ଟି ରଖନ୍ତି, ସେମାନେ ଘୋଷଣା କରିବେ ଯେ, ମୁକ୍ତିର ଧାରଣା ଭ୍ରାନ୍ତିମାତ୍ର—କାରଣ ମନୁଷ୍ୟ ସମ୍ପୂର୍ଣ୍ଣରୂପେ ପ୍ରୟୋଜନଗୁଡ଼ିକଦ୍ୱାରା ପରି-ଚାଳିତ ହୁଏ ।

ଏଣେ ପୁଣି ଅନ୍ୟ ଦିଗରେ ମୁକ୍ତିକୁ ଗୋଟାଏ ଭ୍ରାନ୍ତି ବା ମରୀଚିକା ବୋଲି କହି ଉଡ଼ାଇ ଦେଲେ ବ୍ୟାଖ୍ୟା ସମ୍ପୂର୍ଣ୍ଣ ହେଲା ନାହିଁ । ଅନ୍ୟ ଦିଗରେ ଏକଥା ବି କୁହାଯାଇ-ପାରେ ଯେ, ପ୍ରୟୋଜନର ଧାରଣା ବା ବନ୍ଧନ ବା କାର୍ଯ୍ୟକାରଣ ସମ୍ବନ୍ଧର ଧାରଣା ଅଜ୍ଞାନ-ପ୍ରସୂତ ଭ୍ରାନ୍ତି । କୌଣସି ମତବାଦ ଯେତେବେଳେ ଘଟଣାଗୁଡ଼ିକୁ ବ୍ୟାଖ୍ୟା କରିବାଲାଗି ଅଗ୍ରସର ହୁଏ, ସେତେବେଳେ ସେ ଘଟଣାଗୁଡ଼ିକର କେଉଁ କେଉଁ ଅଂଶ ଏହି ମତବାଦର ଅନୁରୂପ ହୋଇଅଛି, ତା' ନ ଦେଖି, ଯଦି ଏଗୁଡ଼ିକୁ ବାଦ ଦେଇ ବାକିଗୁଡ଼ିକ ସହିତ ନିଜର ସାମଞ୍ଜସ୍ୟ ସ୍ଥାପନ କରେ, ତେବେ ସେ ମତଟି ମୂଳରୁ ହିଁ ଭ୍ରମାତ୍ମକ । ବର୍ତ୍ତମାନ ଏତିକି ମାତ୍ର ପଥ ଉନ୍ମୁକ୍ତ ରହିଲା ଯେ, ଆମମାନଙ୍କୁ ପ୍ରଥମତଃ ସ୍ୱୀକାର କରିବାକୁ ହେବ —ଶରୀର ମୁକ୍ତ ନୁହେଁ, ଇଚ୍ଛା ମଧ୍ୟ ମୁକ୍ତ ନୁହେଁ । କିନ୍ତୁ ଶରୀର ମନର ଊର୍ଦ୍ଧ୍ୱରେ ଏପରି କିଛି ରହିଅଛି ଯାହା—ଏବଂ (ଅସମାପ୍ତ) ।

# ବେଦାନ୍ତଦର୍ଶନ ପ୍ରସଙ୍ଗ

ବେଦାନ୍ତବାଦୀ କହନ୍ତି, ମନୁଷ୍ୟ ଜନ୍ମେ ନାହିଁ, ମରେ ନାହିଁ ବା ସ୍ୱର୍ଗକୁ ମଧ୍ୟ ଯାଏ ନାହିଁ ଏବଂ ଆତ୍ମା ପକ୍ଷରେ ପୁନର୍ଜନ୍ମ କେବଳ ଏକ କଳ୍ପନା ମାତ୍ର । ଦୃଷ୍ଟାନ୍ତ ଦେଇ ବୁଝାଯାଇପାରେ ଯେ, ଯେପରି ଖଣ୍ଡିଏ ପୁସ୍ତକର ପୃଷ୍ଠା ଓଲଟା ହେଉଛି ଏବଂ ଫଳରେ ପୁସ୍ତକଟିର ପୃଷ୍ଠା ପରେ ପୃଷ୍ଠା ଶେଷ ହୋଇ ଯାଉଛି ସତ, କିନ୍ତୁ ପାଠକର କୌଣସି ପରିବର୍ତ୍ତନ ହେଉ ନାହିଁ । ପ୍ରତ୍ୟେକ ଆତ୍ମା ସର୍ବବ୍ୟାପୀ; ସୁତରାଂ ଏହା କେଉଁଠାକୁ ଯିବ ବା କେଉଁଠାରୁ ଆସିବ ? ଏହିସବୁ ଜନ୍ମ-ମୃତ୍ୟୁ ହେଉ ପ୍ରକୃତିର ହିଁ ପରିବର୍ତ୍ତନ ହୁଏ, ଯଦିଓ ଆମେ ଭ୍ରମବଶତଃ ତାହାକୁ ଆମମାନଙ୍କର ପରିବର୍ତ୍ତନ ବୋଲି ମନେକରୁ । ପୁନର୍ଜନ୍ମ ପ୍ରକୃତିର ଅଭିବ୍ୟକ୍ତି ଏବଂ ଅନ୍ତରସ୍ଥିତ ଭଗବାନଙ୍କର ବିକାଶ ।

ବେଦାନ୍ତ ମତରେ ପ୍ରତ୍ୟେକ ଜୀବନ ଅତୀତ ଉପରେ ଗଠିତ ଏବଂ ଯେତେବେଳେ ଆମେ ଆମର ସମଗ୍ର ଅତୀତକୁ ଦେଖିବାକୁ ପାଇବୁ, ସେତେବେଳେ ଆମେ ମୁକ୍ତ ହେବୁ । ଏହି ମୁକ୍ତ ହେବାର ଇଚ୍ଛା ଶୈଶବକାଳରେ ଧର୍ମପ୍ରବଣତାର ରୂପ ଗ୍ରହଣ କରେ । ସମଗ୍ର ସତ୍ୟ ମୁମୁକ୍ଷୁ ନିକଟରେ ପରିସ୍ଫୁଟ ହେବା ପାଇଁ ଦୀର୍ଘ ସମୟ ଲାଗିଥାଏ । ଏହି ଜନ୍ମ ପରିତ୍ୟାଗ କରିବା ପରେ ପରବର୍ତ୍ତୀ ଜନ୍ମ ପାଇଁ ଅପେକ୍ଷା କରିବାକୁ ପଡ଼େ । ସେତେବେଳେ ମଧ୍ୟ ମନୁଷ୍ୟ ମାୟା ଭିତରେ ଥାଏ ।

ଆମେ ଆତ୍ମାକୁ ଏହି ଭାବରେ ବର୍ଣ୍ଣନା କରିଥାଉଁ—ଶସ୍ତ୍ର ଏହାକୁ ଛେଦନ କରିପାରେ ନାହିଁ, ବର୍ଚ୍ଛା ବା କୌଣସି ତୀକ୍ଷ୍ଣଧାର ଅସ୍ତ୍ର ତାହାକୁ ଭେଦ କରିପାରେ ନାହିଁ, ଅଗ୍ନି ତାହାକୁ ଦହନ କରିପାରେ ନାହିଁ, ଜଳ ଏହାକୁ ଦ୍ରବୀଭୂତ କରିପାରେ ନାହିଁ, ତାହା ଅବିନାଶୀ, ସର୍ବବ୍ୟାପୀ; ସୁତରାଂ ତା' ପାଇଁ ଶୋକ କରିବା ଉଚିତ ନୁହେଁ ।

ଯଦି ଆମମାନଙ୍କ ଅବସ୍ଥା ବର୍ତ୍ତମାନ ମନ୍ଦ ହୋଇଥାଏ ତେବେ ଆମେମାନେ ବିଶ୍ୱାସ କରୁ ଯେ, ଭବିଷ୍ୟତରେ ତାହା ନିଶ୍ଚୟ ଭଲ ହେବ । ସମସ୍ତେ ଶାଶ୍ୱତ ମୁକ୍ତି ପାଇବେ—ଏହା ହିଁ ହେଲା ଆମମାନଙ୍କର ମୂଳନୀତି । ପ୍ରତ୍ୟେକଙ୍କୁ ତାହା ଲାଭ କରିବାକୁ ହେବ । ମୁକ୍ତି ବ୍ୟତୀତ ଅନ୍ୟ ସମସ୍ତ ବାସନା ହିଁ ଭ୍ରମ-ପ୍ରସୂତ । ବେଦାନ୍ତୀ କହନ୍ତି, ପ୍ରତ୍ୟେକ ସତ୍କର୍ମ ହିଁ ସେହି ମୁକ୍ତିର ପ୍ରକାଶ ।

ମୁଁ ବିଶ୍ୱାସ କରେ ନାହିଁ ଯେ, ଏପରି ଏକ ସମୟ ଆସିବ ଯେତେବେଳେ ଜଗତରୁ ସମସ୍ତ ଅଶୁଭ ଅନ୍ତର୍ହିତ ହେବ । ଏହା କିପରି ସମ୍ଭବ ହୋଇପାରେ ? ଏକ ପ୍ରବାହ ଚାଲିଛି । ଗୋଟିଏ ପ୍ରାନ୍ତ ଦେଇ ଜଳ ବାହାରୁ ଅଛି, ପୁଣି ଅନ୍ୟ ପ୍ରାନ୍ତ ଦେଇ

ତାହା ପୁନର୍ବାର ପ୍ରବେଶ କରୁଅଛ । ବେଦାନ୍ତୀ କହନ୍ତି, ତୁମେ ଶୁଦ୍ଧ ଓ ପୂର୍ଣ୍ଣ । ଏପରି ଗୋଟିଏ ଅବସ୍ଥା ଅଛି, ଯାହା ଶୁଭ ଓ ଅଶୁଭର ଊର୍ଦ୍ଧ୍ୱରେ ଏବଂ ତାହା ହିଁ ତୁମର ସ୍ୱରୂପ । ଆମେ ଯାହାକୁ ଶୁଭ କହୁ, ତାହା ଅପେକ୍ଷା ମଧ୍ୟ ଏହା ଉଚ୍ଚତର । ଅଶୁଭଠାରୁ କିଞ୍ଚିତ ଭିନ୍ନ ମାତ୍ର । ଅଶୁଭ (ପାପ) ବୋଲି ଆମମାନଙ୍କର କୌଣସି ତତ୍ତ୍ୱ ନାହିଁ । ଆମେ ଏହାକୁ 'ଅଜ୍ଞାନ' କହୁ ।

ଆମମାନଙ୍କର ନୀତିଶାସ୍ତ୍ର, ଆମମାନଙ୍କର ଲୋକ-ବ୍ୟବହାର—ତାହା ଯେତେଦୂର ପର୍ଯ୍ୟନ୍ତ ଯାଉ ନା କାହିଁକି ସମସ୍ତ ହିଁ ମାୟା-ଜଗତର ଅନ୍ତର୍ଗତ । ସତ୍ୟକୁ ପରିପୂର୍ଣ୍ଣଭାବରେ ପ୍ରକାଶ କଲାବେଳେ ଈଶ୍ୱରଙ୍କଠାରେ ଅଜ୍ଞାନାଦି ବିଶେଷଣ ପ୍ରୟୋଗ କରିବାର ଚିନ୍ତା ମଧ୍ୟ ଆମେ କରିପାରିବା ନାହିଁ । ତାଙ୍କ ସମ୍ବନ୍ଧରେ ଆମେ କହୁ—ସେ ସତ୍‌ସ୍ୱରୂପ, ଜ୍ଞାନସ୍ୱରୂପ ଓ ଆନନ୍ଦସ୍ୱରୂପ । ଚିନ୍ତା ଓ ବାକ୍ୟର ପ୍ରତ୍ୟେକ ପ୍ରୟାସ ଦ୍ରଷ୍ଟାଙ୍କୁ ଦୃଶ୍ୟରେ ପରିଣତ କରିବ ଏବଂ ତାହାଙ୍କ ସ୍ୱରୂପର ହାନି ଘଟାଇବ ।

ଗୋଟିଏ କଥା ଏହି ପ୍ରସଙ୍ଗରେ ସ୍ମରଣ ରଖିବାକୁ ହେବ : ମୁଁ ହିଁ ବ୍ରହ୍ମ—ଏହି କଥା ଇନ୍ଦ୍ରିୟ ସମ୍ବନ୍ଧରେ କୁହାଯାଇପାରେ ନାହିଁ । ଇନ୍ଦ୍ରିୟ ବିଷୟରେ ଯଦି ତୁମେ କୁହ—ମୁଁ ହିଁ ବ୍ରହ୍ମ, ତା'ହେଲେ ଅନ୍ୟାନ୍ୟ କର୍ମ କରିବା ପାଇଁ କିଏ ତୁମକୁ ବାଧା ଦେବ ? ସୁତରାଂ ତୁମର ଈଶ୍ୱରତ୍ୱ କେବଳ ମାୟା ଜଗତର ଊର୍ଦ୍ଧ୍ୱରେ ହିଁ ପ୍ରଯୁକ୍ତ ହୋଇପାରେ । ଯଦି ମୁଁ ଯଥାର୍ଥରେ ବ୍ରହ୍ମ, ତା'ହେଲେ ଇନ୍ଦ୍ରିୟମାନଙ୍କର ଆକ୍ରମଣର ଊର୍ଦ୍ଧ୍ୱରେ ମୁଁ ଅବଶ୍ୟ ରହିବି ଏବଂ କୌଣସି ଅସତ୍ କର୍ମ କରିପାରିବି ନାହିଁ । ନୈତିକତା ମନୁଷ୍ୟର ଲକ୍ଷ୍ୟ ନୁହେଁ, କିନ୍ତୁ ମୁକ୍ତିପ୍ରାପ୍ତିର ଏହା ଗୋଟିଏ ଉପାୟ । ବେଦାନ୍ତ କହେ, ଯୋଗ ମଧ୍ୟ ଗୋଟିଏ ପଥ, ଯେଉଁ ପଥରେ ମନୁଷ୍ୟ ଏହି ବ୍ରହ୍ମତ୍ୱ ଉପଲବ୍ଧି କରିପାରେ । ବେଦାନ୍ତ କହେ, ଅନ୍ତରରେ ଯେଉଁ ମୁକ୍ତି ଅଛି, ତାହା ଉପଲବ୍ଧି କରିପାରିଲେ ବ୍ରହ୍ମାନୁଭୂତି ହୁଏ । ନୈତିକତା ଓ ନୀତିଶାସ୍ତ୍ର ଏହି ଲକ୍ଷ୍ୟରେ ପହଞ୍ଚିବାର ବିଭିନ୍ନ ପଥ ମାତ୍ର । କେବଳ ଏସବୁକୁ ଯଥାଯଥ ସ୍ଥାନରେ ସ୍ଥାପିତ କରିବାକୁ ହେବ ।

ଅଦ୍ୱୈତ-ଦର୍ଶନ ବିରୋଧରେ ଯେତେ ସମାଲୋଚନା ହୁଏ ତା'ର ସାରମର୍ମ ହେଲା, ଅଦ୍ୱୈତ ବେଦାନ୍ତ ଇନ୍ଦ୍ରିୟଭୋଗ ପାଇଁ ଉତ୍ସାହ ଦିଏ ନାହିଁ । ଆମେମାନେ ଆନନ୍ଦର ସହିତ ଏହି ଅଭିଯୋଗକୁ ସ୍ୱୀକାର କରୁ । ବେଦାନ୍ତର ଆରମ୍ଭ ନିତାନ୍ତ ଦୁଃଖବାଦରୁ ଏବଂ ଶେଷ ଯଥାର୍ଥ ଆଶାବାଦରେ । ଇନ୍ଦ୍ରିୟଜ ଆଶାବାଦ ଆମେ ଅସ୍ୱୀକାର କରୁ । କିନ୍ତୁ ଅତୀନ୍ଦ୍ରିୟ ଆଶାବାଦ ଆମେ ଦୃଢ଼ତାର ସହିତ ଘୋଷଣା କରୁ । ପ୍ରକୃତ ସୁଖ ଇନ୍ଦ୍ରିୟ-ଭୋଗରେ ନାହିଁ—ତାହା ଇନ୍ଦ୍ରିୟର ଊର୍ଦ୍ଧ୍ୱରେ ଏବଂ ତାହା ପ୍ରତ୍ୟେକ ମନୁଷ୍ୟ ଭିତରେ ରହିଅଛି । ଜଗତରେ ଆମେ ଯେଉଁ ଆଶାବାଦର ନିଦର୍ଶନ ଦେଖୁ, ତାହା ଇନ୍ଦ୍ରିୟ ମାଧ୍ୟମରେ ଧ୍ୱଂସ ଅଭିମୁଖକୁ ନେଇ ଯାଉଅଛି । ଆମମାନଙ୍କ ଦର୍ଶନରେ ତ୍ୟାଗକୁ ସର୍ବାପେକ୍ଷା ଗୁରୁତ୍ୱ ଦିଆଯାଏ । କିନ୍ତୁ ଏହି ତ୍ୟାଗ ବା 'ନେତି'-ଭାବ ଆତ୍ମାର ଯଥାର୍ଥ ଅସ୍ତିତ୍ୱ ହିଁ ସୂଚିତ କରେ । ବେଦାନ୍ତ

ଇନ୍ଦ୍ରିୟ ଜଗତକୁ ଅସ୍ୱୀକାର କରେ—ଏହି ଅର୍ଥରେ ବେଦାନ୍ତ ନୈରାଶ୍ୟବାଦୀ, କିନ୍ତୁ ଏହା ପ୍ରକୃତ ଜଗତର ସନ୍ଧାନ ଦେଇଥାଏ ବୋଲି **ଆଶାବାଦୀ** ।

ବେଦାନ୍ତ ମନୁଷ୍ୟର ବସ୍ତୁରଣତକୁ ଯଥେଷ୍ଟ ସ୍ୱୀକୃତି ଦିଏ, ଯଦିଓ ବୁଦ୍ଧିର ଅତୀତ ଅନ୍ୟ ଗୋଟିଏ ସତ୍ତା ରହିଅଛି, ଯାହାର ଉପଲବ୍ଧି ବୁଦ୍ଧି ମାଧ୍ୟମରେ ହୋଇଥାଏ । ସମସ୍ତ ପୁରାତନ କୁସଂସ୍କାର ଦୂର କରିବା ପାଇଁ ଯୁକ୍ତି ଏକାନ୍ତ ପ୍ରୟୋଜନ । ତା'ପରେ ଯାହା ରହିବ ତାହା ହିଁ ବେଦାନ୍ତ । ଗୋଟିଏ ସୁନ୍ଦର ସଂସ୍କୃତ କବିତା ଅଛି, ଯେଉଁଥିରେ ଋଷି ନିଜକୁ ସମ୍ବୋଧନ କରି କହୁଛନ୍ତି, 'ହେ ସଖା ! କାହିଁକି ତୁମେ କ୍ରନ୍ଦନ କରୁଅଛ ? ତୁମର ଜନ୍ମ-ମରଣ-ଭୟ ନାହିଁ । ତୁମେ କାହିଁକି କାନ୍ଦୁଛ ? ତୁମର କୌଣସି ଦୁଃଖ ନାହିଁ—କାରଣ ତୁମେ ଅସୀମ ନୀଳ ଆକାଶ-ସଦୃଶ । ଅବିକାରୀ ତୁମର ସ୍ୱଭାବ । ଆକାଶ ଉପରକୁ ନାନା ବର୍ଣ୍ଣର ମେଘ ଆସେ, ମୁହୂର୍ତ୍ତିକ ପାଇଁ ତାହା ଖେଳ ବୁଲି ଚାଲିଯାଏ । କିନ୍ତୁ ଆକାଶର କୌଣସି ପରିବର୍ତ୍ତନ ହୁଏ ନାହିଁ । ତୁମକୁ କେବଳ ମେଘଗୁଡ଼ିକୁ ଘୁଞ୍ଚାଇ ଦେବାକୁ ହେବ ।[୧]

ଆମମାନଙ୍କୁ କେବଳ ଦୁଆର ଖୋଲି ଦେବାକୁ ହେବ ଏବଂ ପଥ ପରିଷ୍କାର କରିବାକୁ ହେବ । ଜଳ ନିଜ ବେଗରେ ଧାବିତ ହେବ ଏବଂ ନିଜ ସ୍ୱଭାବରେ ହିଁ କ୍ଷେତ୍ରଟିକୁ ଆପ୍ଲୁତ କରିବ, କାହିଁକି ନା ପୂର୍ବରୁ ସେଠାରେ ଜଳ ଥିଲା ।

ମନୁଷ୍ୟ କେତେକାଂଶରେ ଚେତନ ଏବଂ ଅଚେତନ ମଧ୍ୟ, ପୁନଶ୍ଚ ଚେତନର ଊର୍ଦ୍ଧ୍ୱକୁ ଯିବାର ସମ୍ଭାବନା ମଧ୍ୟ ତାହାର ଅଛି । ଆମେ ଯେତେବେଳେ ଯଥାର୍ଥ ମନୁଷ୍ୟ ହେବୁ, କେବଳ ସେତିକିବେଳେ ଆମେ ବସ୍ତୁରର ଊର୍ଦ୍ଧ୍ୱକୁ ଯାଇପାରିବୁ । 'ଉଚ୍ଚତର' ବା 'ନିମ୍ନତର' ଶବ୍ଦଗୁଡ଼ିକ କେବଳ ମାୟା-ଜଗତରେ ବ୍ୟବହୃତ ହୋଇପାରେ, କିନ୍ତୁ ସତ୍ୟ-ଜଗତରେ ସେମାନଙ୍କ ସମ୍ବନ୍ଧରେ କିଛି କହିବା ନିତାନ୍ତ ଅସଙ୍ଗତ, କାରଣ ସେଠାରେ କୌଣସି ଭେଦ ନାହିଁ । ମାୟାର ଜଗତରେ ମନୁଷ୍ୟ ହିଁ ସର୍ବଶ୍ରେଷ୍ଠ । ବେଦାନ୍ତୀ କହନ୍ତି, ମନୁଷ୍ୟ ଦେବତା ଅପେକ୍ଷା ବଡ଼ । ଦେବତାମାନଙ୍କୁ ମଧ୍ୟ ମରିବାକୁ ହେବ ଏବଂ ପୁନର୍ବାର ମାନବ ଦେହ ଧାରଣ କରିବାକୁ ହେବ । କେବଳ ମାତ୍ର ନରଦେହରେ ହିଁ ସେମାନେ ପୂର୍ଣ୍ଣତ୍ୱ ଲାଭ କରିପାରନ୍ତି ।

ଏହା ସତ୍ୟ ଯେ, ଆମେ ଗୋଟିଏ ମତବାଦ ସୃଷ୍ଟି କରିଅଛୁ । ଆମେ ସ୍ୱୀକାର କରୁ ଯେ, ଏହା ତ୍ରୁଟିହୀନ ନୁହେଁ, କାରଣ ସତ୍ୟ ସମସ୍ତ ମତବାଦର ଊର୍ଦ୍ଧ୍ୱରେ । କିନ୍ତୁ ଅନ୍ୟ ମତବାଦଗୁଡ଼ିକ ସହିତ ତୁଳନା କଲେ ଆମେ ଦେଖିବୁ ଯେ, ବେଦାନ୍ତ ହିଁ ଏକମାତ୍ର ଯୁକ୍ତିସଙ୍ଗତ ମତବାଦ ! ତଥାପି ଏହା ସମ୍ପୂର୍ଣ୍ଣ ନୁହେଁ । କାରଣ ଯୁକ୍ତି ଓ ବସ୍ତୁର ଅସମ୍ପୂର୍ଣ୍ଣ । ଏହା ହିଁ ଏକମାତ୍ର ସମ୍ଭାବ୍ୟ ଯୁକ୍ତିସଙ୍ଗତ ମତବାଦ, ଯାହା ମାନବ ମନ ଧାରଣା କରିପାରେ ।

---

[୧] ଦ୍ରଷ୍ଟବ୍ୟ—ଅବଧୂତଗୀତା, ୩।୩୪-୩୭

ଏହା ଅବଶ୍ୟ ସତ୍ୟ ଯେ, ଶକ୍ତିଶାଳୀ ହେବା ପାଇଁ ଗୋଟିଏ ମତବାଦକୁ ପ୍ରଚାରଶୀଳ ହେବାକୁ ପଡ଼ିବ । ବେଦାନ୍ତ ଭଳି କୌଣସି ମତବାଦ ଏତେ ପ୍ରଚାରଶୀଳ ହୋଇନାହିଁ । ଆଜି ପର୍ଯ୍ୟନ୍ତ ବ୍ୟକ୍ତିଗତ ସମ୍ପର୍କ ମାଧ୍ୟମରେ ଯଥାର୍ଥ ଶିକ୍ଷା ଦିଆଯାଇଥାଏ । ବହୁ ଅଧ୍ୟୟନଦ୍ୱାରା ପ୍ରକୃତ ମନୁଷ୍ୟତ୍ୱ ଲାଭ କରାଯାଏ ନାହିଁ । ଯେଉଁମାନେ ଯଥାର୍ଥ ମନୁଷ୍ୟ, ସେମାନେ ବ୍ୟକ୍ତିଗତ ସମ୍ପର୍କଦ୍ୱାରା ହିଁ ଏହା ଲାଭ କରିଛନ୍ତି । ଏହା ସତ୍ୟ ଯେ, ପ୍ରକୃତ ମନୁଷ୍ୟଙ୍କ ସଂଖ୍ୟା ଅତି ଅଳ୍ପ । କିନ୍ତୁ ଭବିଷ୍ୟତରେ ସେମାନଙ୍କର ସଂଖ୍ୟା ବଢ଼ିବ । ତୁମେମାନେ କିଅଣ ବିଶ୍ୱାସ କରିପାରିବ ଯେ, ଏପରି ସମୟ ଆସିବ, ଯେତେବେଳେ ଆମେ ସମସ୍ତେ ଦାର୍ଶନିକ ପର୍ଯ୍ୟାୟକୁ ଉନ୍ନୀତ ହେବୁ ? ଆମେ ବିଶ୍ୱାସ କରୁ ନା ଯେ, ଏପରି ଏକ ସମୟ ଆସିବ, ଯେତେବେଳେ କେବଳ ସୁଖ ହିଁ ରହିବ, କୌଣସି ଦୁଃଖ ରହିବ ନାହିଁ ।

ସମୟ ସମୟରେ ଆମମାନଙ୍କ ଜୀବନରେ ପରମ ଆନନ୍ଦର ମୁହୂର୍ତ୍ତି ଆସେ, ଯେତେବେଳେ ଆମେ ଆନନ୍ଦ ବ୍ୟତୀତ ଅନ୍ୟ କିଛି ଚାହୁଁ ନାହିଁ, ଆଉ କିଛି ଦେଉନାହିଁ ବା ଜାଣୁନାହିଁ । କିନ୍ତୁ ସେହି କ୍ଷଣଟି ଚାଲିଯାଏ ଏବଂ ଆମେ ପୁନର୍ବାର ବାସ୍ତବ ଜଗତର ସମ୍ମୁଖୀନ ହେଉ । ଆମେ ଜାଣୁ, ଈଶ୍ୱରଙ୍କୁ ଯେପରିକି ଆବୃତ କରି ରଖାଯାଇଅଛି ଏବଂ ଈଶ୍ୱର ହିଁ ସବୁ କିଛିର ପୃଷ୍ଠଭୂମିକା ରୂପେ ଅବସ୍ଥାନ କରୁଛନ୍ତି ।

ବେଦାନ୍ତ ଶିକ୍ଷା ଦିଏ ଯେ, ନିର୍ବାଣ ଏହି ଜୀବନରେ ହିଁ ସମ୍ଭବ, ତାହା ଲାଭ କରିବା ପାଇଁ ମୃତ୍ୟୁ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ହୁଏ ନାହିଁ । ଆତ୍ମାନୁଭୂତି ହିଁ ନିର୍ବାଣ ଏବଂ ତାହା ଥରେ ମାତ୍ର ମୁହୂର୍ତ୍ତିକ ପାଇଁ ସାକ୍ଷାତ୍ କଲେ, କେହି ବ୍ୟକ୍ତିତ୍ୱର ମରୀଚିକାରେ ପୁନରାୟ ମୋହଗ୍ରସ୍ତ ହେବେ ନାହିଁ । ଆମମାନଙ୍କର ଚକ୍ଷୁ ଅଛି, ସୁତରାଂ ଏହି ପରିଦୃଶ୍ୟମାନ ଜଗତ୍ ଆମେ ଅବଶ୍ୟ ହିଁ ଦେଖିବା, କିନ୍ତୁ ସର୍ବଦା ଆମେ ଜାଣିବା, ତାହା ଯଥାର୍ଥରେ କିଅଣ ? ଆମେମାନେ ଏହାର ପ୍ରକୃତ ସ୍ୱଭାବ ଜାଣିପାରିଛୁ । ଆବରଣ ହିଁ ଆତ୍ମାକୁ ଆଚ୍ଛାଦିତ କରେ । ଆତ୍ମା କିନ୍ତୁ ଅପରିବର୍ତ୍ତନୀୟ । ଆବରଣ ଯେତେବେଳେ ଖୋଲିଯାଏ, ସେତେବେଳେ ଆମେ ଆତ୍ମାକୁ ଏହାର ପଶ୍ଚାତ୍ତରେ ଦେଖିବାକୁ ପାଉ । ସବୁ ପରିବର୍ତ୍ତନ ହିଁ ଏହି ଆବରଣ ଭିତରେ । ମହାପୁରୁଷଙ୍କର ଆବରଣ ସୂକ୍ଷ୍ମ ଏବଂ ଆତ୍ମା ତାହା ମାଧ୍ୟମରେ ପ୍ରାୟ ସମ୍ପୂର୍ଣ୍ଣ ରୂପେ ପ୍ରକାଶିତ ହୁଏ । ପାପୀର ଆବରଣ କିନ୍ତୁ ଘନ, ଆମେ ଭୁଲିଯାଉ ଯେ, ଏହାର ଆବରଣର ପଶ୍ଚାତ୍ତରେ ଯେଉଁ ଆତ୍ମା ରହିଅଛି ସେହି ଆତ୍ମା ହିଁ ମହାପୁରୁଷଙ୍କ ଆବରଣର ପଶ୍ଚାତ୍ତରେ ମଧ୍ୟ ବିରାଜିତ । ଯେତେବେଳେ ଆବରଣଟି ଏକାବେଳକେ ଅପସାରିତ ହେବ, ସେତେବେଳେ ଆମେ ଦେଖିବୁ, ତାହା କେବେହେଲେ ନ ଥିଲା ଏବଂ ଆମେ ଆତ୍ମା ବ୍ୟତୀତ ଆଉ କିଛି ନୋହୁଁ । ଆବରଣର ଅସ୍ତିତ୍ୱ ମଧ୍ୟ ଆମର ସ୍ମରଣ ରହିବ ନାହିଁ ।

ଜୀବନରେ ଏହି ବୈଶିଷ୍ଟ୍ୟର ଦୁଇଟି ଦିଗ ଅଛି । ପ୍ରଥମତଃ ଜାଗତିକ କୌଣସି ବସ୍ତୁ ଦ୍ୱାରା ଆତ୍ମଜ୍ଞ ମହାପୁରୁଷ ପ୍ରଭାବିତ ହୁଅନ୍ତି ନାହିଁ । ଦ୍ୱିତୀୟତଃ

ଏକମାତ୍ର ସେ ଜଗତର କଲ୍ୟାଣ କରିବା ପାଇଁ ସମର୍ଥ । ପରୋପକାର କରିବାର ଯଥାର୍ଥ ପ୍ରେରଣା କେବଳ ସେ ଉପଲବ୍ଧି କରିଅଛନ୍ତି; କାରଣ ତାଙ୍କର ଦୃଷ୍ଟିରେ ଏକ ବ୍ୟତୀତ ଆଉ ଦ୍ୱିତୀୟ ସତ୍ତା ନାହିଁ । ଏହା ଅହଂକାର ନୁହେଁ, କାରଣ ତାହା ଭେଦାତ୍ମକ । ଏହା ହିଁ ଏକମାତ୍ର ନିଃସ୍ୱାର୍ଥପରତା । ତାଙ୍କର ଦୃଷ୍ଟି ବିଶ୍ୱଜନୀନ, ବ୍ୟକ୍ତି-ଗତସ୍ୱ ନୁହେଁ । ପ୍ରେମ ଓ ସହାନୁଭୂତିର ପ୍ରତ୍ୟେକ ଅଭିବ୍ୟକ୍ତି ଏହି ବିଶ୍ୱଜନୀନତାର ପ୍ରକାଶ ମାତ୍ର । 'ନାହଂ ତୁହୁଁ'—ତାଙ୍କର ଏହି ଭାବଟିକୁ ଦାର୍ଶନିକ ପରିଭାଷାରେ କୁହାଯାଇପାରେ, "ତୁମେ ଅନ୍ୟକୁ ସାହାଯ୍ୟ କର, କାରଣ ତୁମେ ତା'ଠାରେ ରହିଅଛ ଏବଂ ସେ ମଧ୍ୟ ତୁମ ମଧ୍ୟରେ ରହିଅଛି ।" ଏକମାତ୍ର ଯଥାର୍ଥ ବେଦାନ୍ତୀ ହିଁ ମନୁଷ୍ୟକୁ ଆତ୍ମଦୃଷ୍ଟିରେ ସାହାଯ୍ୟ କରିପାରିବେ, ଏପରି କି ବିନା ଦ୍ୱିଧାରେ ତାଙ୍କ ନିଜର ଜୀବନକୁ ଦାନ ମଧ୍ୟ କରିବେ, କାରଣ ସେ ଜାଣନ୍ତି ଯେ, ତାଙ୍କର ମୃତ୍ୟୁ ନାହିଁ । ଜଗତରେ ଯେପର୍ଯ୍ୟନ୍ତ ଗୋଟିଏ ମାତ୍ର କୀଟ ଜୀବିତ ରହିଥିବ, ସେପର୍ଯ୍ୟନ୍ତ ସେ ମଧ୍ୟ ଜୀବିତ ଥିବେ, ଯେତେବେଳେ କୌଣସି ଜୀବ ଭକ୍ଷଣ କରିବ, ସେତେବେଳେ ସେ ମଧ୍ୟ ଭକ୍ଷଣ କରିବେ । ସୁତରାଂ ସେ ପରୋପକାର କରିଯାଆନ୍ତି; ଦେହକୁ ସର୍ବାଗ୍ରେ ରକ୍ଷା କରିବାକୁ ହେବ—ଏହି ଆଧୁନିକ ଧାରଣା ତାଙ୍କୁ କେବେହେଲେ ବାଧା ଦେଇପାରିବ ନାହିଁ । ଯେତେବେଳେ ମନୁଷ୍ୟ ତ୍ୟାଗର ଏହି ଶୀର୍ଷଦେଶରେ ଉପନୀତ ହୁଏ, ସେତେବେଳେ ସେ ନୈତିକଦ୍ୱନ୍ଦ୍ୱର ଊର୍ଦ୍ଧ୍ୱରେ ପ୍ରତିଷ୍ଠିତ ହୁଏ । ସେତେବେଳେ ସେ ପଣ୍ଡିତ, ବ୍ରାହ୍ମଣ, ଗୋରୁ, କୁକୁର ଓ ଅତିଶୟ ଦୂଷିତ ସ୍ଥାନକୁ ଆଉ ବ୍ରାହ୍ମଣ, ଗୋରୁ, କୁକୁର ଓ ଦୂଷିତ ସ୍ଥାନ ରୂପେ ଦେଖେ ନାହିଁ । ସେ ଦେଖେ ଯେ ବ୍ରହ୍ମ ହିଁ ସ୍ୱୟଂ ସର୍ବତ୍ର ବିରାଜ କରୁଛନ୍ତି ।[୧]

ଏହିପରି ସମଦର୍ଶୀ ପୁରୁଷ ହିଁ ସୁଖୀ ଏବଂ ସେ ହିଁ ଇହଜୀବନରେ ସଂସାର ଜୟ କରିଛନ୍ତି, ଅର୍ଥାତ୍ ଜନ୍ମ-ମୃତ୍ୟୁର ଊର୍ଦ୍ଧ୍ୱକୁ ଯାଇଛନ୍ତି ।[୨] ଈଶ୍ୱର ଦ୍ୱନ୍ଦ୍ୱାଦି-ବର୍ଜିତ, ସୁତରାଂ ସମଦୃଷ୍ଟିସମ୍ପନ୍ନ ବ୍ୟକ୍ତି ହିଁ ଈଶ୍ୱରଲାଭ କରିଛନ୍ତି ବା ବ୍ରାହ୍ମୀସ୍ଥିତି ଲାଭ କରିଅଛନ୍ତି ଏପରି କୁହାଯାଇଥାଏ ।

ଯୀଶୁ କହିଛନ୍ତି, "ଆବ୍ରାହମଙ୍କ ପୂର୍ବେ ମଧ୍ୟ ମୁଁ ଥିଲି ।" ଏହାର ଅର୍ଥ ଯୀଶୁ ଏବଂ ତାଙ୍କ ଭଳି ଅବତାର-ପୁରୁଷଗଣ ମୁକ୍ତ ଆତ୍ମା । ନାଜାରେଥର ଯୀଶୁ ତାଙ୍କ ପ୍ରାରବ୍ଧର ବଶବର୍ତ୍ତୀ ହୋଇ ମାନବ-ଦେହ ଧାରଣ କରିନାହାନ୍ତି, କରିଛନ୍ତି କେବଳ ମାନବ-କଲ୍ୟାଣ ପାଇଁ । ଏହା ଭାବିବା ଉଚିତ ନୁହେଁ ଯେ, ମନୁଷ୍ୟ ଯେତେବେଳେ ମୁକ୍ତ ହୁଏ, ସେତେବେଳେ ସେ କର୍ମ କରିପାରେ ନାହିଁ—ସେ ଗୋଟିଏ ଜଡ଼ ମୃତ୍ପିଣ୍ଡରେ ପରିଣତ ହୁଏ । ବରଂ ସେହି ମନୁଷ୍ୟ ଅନ୍ୟଠାରୁ ଅଧିକତର ଉଦ୍ୟମୀ ହୁଅନ୍ତି, କାରଣ ଅନ୍ୟମାନେ ବାଧ୍ୟ ହୋଇ କର୍ମ କରନ୍ତି ଏବଂ ସେ ସ୍ୱାଧୀନ ଭାବରେ କର୍ମ କରନ୍ତି ।

---

୧ । ଗୀତା, ୫ । ୧୮    ୨ । ଗୀତା, ୫ । ୧୯

ଯଦି ଆମେ ଈଶ୍ୱରଙ୍କଠାରୁ ଅଭିନ୍ନ ହେଉ, ତା' ହେଲେ କଅଣ ଆମର କୌଣସି ସ୍ୱାତନ୍ତ୍ର୍ୟ ରହିବ ନାହିଁ ? ହଁ, ନିଶ୍ଚୟ ରହିବ । ଈଶ୍ୱର ହିଁ ଆମମାନଙ୍କର ସ୍ୱକୀୟତା । ବର୍ତ୍ତମାନ ତୁମର ଯେଉଁ ସ୍ୱାତନ୍ତ୍ର୍ୟ ଅଛି, ଏହା ଅବଶ୍ୟ ସେପରି ନୁହେଁ । ତୁମେ ସେହି ଦିଗରେ ଅଗ୍ରସର ହେଉଅଛ । ସ୍ୱକୀୟତାର ଅର୍ଥ ଏହି ଯେ, ତାହା ଏକ ଅବିଭାଜ୍ୟ ବସ୍ତୁ । ବର୍ତ୍ତମାନ ସ୍ୱାତନ୍ତ୍ର୍ୟକୁ କିପରି ତୁମେ ସ୍ୱକୀୟତା କହୁଥାଅ ? ବର୍ତ୍ତମାନ ତୁମେ ଏକ ପ୍ରକାର ଚିନ୍ତା କରୁଅଛ, ଘଣ୍ଟାଏ ପରେ ଅନ୍ୟ ପ୍ରକାର ଏବଂ ଦୁଇ ଘଣ୍ଟା ପରେ ପୁଣି ଅନ୍ୟ ପ୍ରକାର ଚିନ୍ତା କରିବ । ସ୍ୱକୀୟତାର ପରିବର୍ତ୍ତନ ନାହିଁ । ତାହା ସର୍ବାବସ୍ଥାରେ ଅପରିବର୍ତ୍ତନୀୟ । ଆମେ ବର୍ତ୍ତମାନ ଯେଉଁ ଅବସ୍ଥାରେ ଅଛୁ, ଏହି ଅବସ୍ଥାରେ ଚିରକାଳ ରହିବା ଅତ୍ୟନ୍ତ ବିପଜ୍ଜନକ । କାରଣ ତାହେଲେ ତସ୍କର ତସ୍କର ହିଁ ରହିଯିବ । ଦୁଷ୍ଟ ଦୁଷ୍ଟ ହୋଇ ରହିବ, ଅନ୍ୟ କିଛି ହୋଇପାରିବ ନାହିଁ । କିନ୍ତୁ ସ୍ୱକୀୟତାର କୌଣସି ପରିବର୍ତ୍ତନ ହୁଏ ନାହିଁ ଏବଂ କେବେ ହେବ ନାହିଁ ମଧ୍ୟ । ଯେ ଆମମାନଙ୍କ ଭିତରେ ନିତ୍ୟ ବିରାଜମାନ, ସେ ହିଁ ଈଶ୍ୱର ।

ବେଦାନ୍ତ ଏକ ବିଶାଳ ସମୁଦ୍ର ସଦୃଶ, ଯାହା ଉପରେ ଗୋଟିଏ ଯୁଦ୍ଧ ଜାହାଜ ଓ ଗୋଟିଏ ଭେଲାର ସ୍ଥାନ ପାଖାପାଖି ହୋଇପାରେ । ଏହି ବେଦାନ୍ତ-ମହାସାଗରରେ ଜଣେ ପ୍ରକୃତ ଯୋଗୀ—ଜଣେ ପୌତ୍ତଳିକ ବା ଏପରିକି ଜଣେ ନାସ୍ତିକଙ୍କ ସହିତ ମଧ୍ୟ ସହାବସ୍ଥାନ କରିପାରନ୍ତି । କେବଳ ସେତିକି ନୁହେଁ, ବେଦାନ୍ତ-ମହାସାଗରରେ ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟାନ, ପାର୍ଶୀ ସବୁ ଏକ—ସମସ୍ତେ ହିଁ ସର୍ବଶକ୍ତିମାନ୍ ଈଶ୍ୱରଙ୍କର ସନ୍ତାନ ।

# ସଭ୍ୟତାର ଅନ୍ୟତମ ଶକ୍ତି ବେଦାନ୍ତ

[ ଇଂଲଣ୍ଡ ଅନ୍ତର୍ଗତ ରକ୍‌ଓଏସ୍ ଗାର୍ଡ଼ନ୍‌ରେ ଅବସ୍ଥିତ ଏୟାର୍ଲି ଲଜ୍‌ରେ ପ୍ରଦତ୍ତ ବକ୍ତୃତାର ଅଂଶବିଶେଷ ]

ଯେଉଁମାନଙ୍କ ଦୃଷ୍ଟି କେବଳ ବସ୍ତୁର ସ୍ଥୂଳ ବହିରଙ୍ଗରେ ଆବଦ୍ଧ, ସେମାନେ ଭାରତୀୟ ଜାତି ମଧ୍ୟରେ ଦେଖିବାକୁ ପାଆନ୍ତି—କେବଳ ଗୋଟିଏ ବିଜିତ ଓ ନିର୍ଯ୍ୟାତିତ ଜନସମାଜ, ଏକ ଦାର୍ଶନିକ ଓ ସ୍ୱପ୍ନବିଳାସୀ ମାନବ-ଗୋଷ୍ଠୀ । ଭାରତବର୍ଷ ଯେ ଆଧ୍ୟାତ୍ମିକତା କ୍ଷେତ୍ରରେ ଜଗଜ୍ଜୟୀ ମନେହୁଏ—ସେମାନେ ଏହା ଅନୁଭବ କରିବାକୁ ଅକ୍ଷମ । ଅବଶ୍ୟ ଏକଥା ସତ୍ୟ ଯେ, ଯେପରି ଅତିମାତ୍ରାରେ କର୍ମଚଞ୍ଚଳ ପାଶ୍ଚାତ୍ୟ ଜାତି ପ୍ରାଚ୍ୟର ଅନ୍ତର୍ମୁଖୀନତା ଓ ଧ୍ୟାନମଗ୍ନତା ସାହାଯ୍ୟରେ ଲାଭବାନ ହୋଇପାରନ୍ତି, ସେହିପରି ପ୍ରାଚ୍ୟ ଜାତି ମଧ୍ୟ ଅଧିକତର କର୍ମୋଦ୍ୟମ ଓ ଶକ୍ତି-ଅର୍ଜନଦ୍ୱାରା ଲାଭବାନ ହୋଇପାରନ୍ତି । ଏହା ସତ୍ତ୍ୱେ ଏହି ପ୍ରଶ୍ନ ଅନିବାର୍ଯ୍ୟ ଯେ, ପୃଥିବୀର ଅନ୍ୟାନ୍ୟ ଜାତି ଗୋଟି ଗୋଟି ହୋଇ ଅବକ୍ଷୟର ସମ୍ମୁଖୀନ ହେଲେ ସୁଦ୍ଧା କେଉଁ ଶକ୍ତି ବଳରେ ନିପୀଡ଼ିତ ଏବଂ ନିର୍ଯ୍ୟାତିତ ହିନ୍ଦୁ ଓ ଇହୁଦୀ ଜାତି (ଯେଉଁ ଦୁଇଟି ଜାତିରୁ ପୃଥିବୀର ସବୁ ଧର୍ମମତର ସୃଷ୍ଟି ହୋଇଅଛି) ଆଜି ମଧ୍ୟ ବଞ୍ଚି ଅଛନ୍ତି ? ଏକମାତ୍ର ସେମାନଙ୍କର ଆଧ୍ୟାତ୍ମ-ଶକ୍ତି ହିଁ ଏହାର କାରଣ ହୋଇପାରେ । ନୀରବ ହେଲେ ବି ହିନ୍ଦୁଜାତି ଆଜି ମଧ୍ୟ ବଞ୍ଚିଛି, ଏବଂ ପାଲେଷ୍ଟାଇନରେ ବାସ କରିବା ସମୟରେ ଇହୁଦୀମାନଙ୍କର ଯେତିକ ସଂଖ୍ୟା ଥିଲା, ବର୍ତ୍ତମାନ ତାହା ବଢ଼ିଅଛି । ବସ୍ତୁତଃ ଭାରତର ଦର୍ଶନଚିନ୍ତା ସମଗ୍ର ସଭ୍ୟଜଗତ ମଧ୍ୟରେ ଅନୁପ୍ରବେଶ କରି ତାହାର ରୂପାନ୍ତର ସାଧନ କରି ଚାଲିଛି ଏବଂ ସେଥିରେ ଅନୁସ୍ୟୂତ ହୋଇ ରହିଛି । ପୂର୍ବକାଳରେ ଯେତେବେଳେ ଇଉରୋପର ଅସ୍ତିତ୍ୱ ଅଜ୍ଞାତ ଥିଲା, ସେତେବେଳେ ବି ଭାରତର ବାଣିଜ୍ୟ ସୁଦୂର ଆଫ୍ରିକା ଉପକୂଳରେ ଉପନୀତ ହୋଇ ପୃଥିବୀର ଅନ୍ୟାନ୍ୟ ଅଂଶ ସହିତ ଭାରତର ଯୋଗାଯୋଗ ସ୍ଥାପନ କରିଥିଲା । ଫଳରେ ଏଥିରୁ ପ୍ରମାଣିତ ହୁଏ ଯେ, ଭାରତୀୟଗଣ କେବେହେଲେ ସେମାନଙ୍କର ଦେଶ ବାହାରକୁ ଯାଇ ନାହାନ୍ତି, ଏପରି ବିଶ୍ୱାସର କୌଣସି ଭିତ୍ତି ନାହିଁ ।

ଏହା ମଧ୍ୟ ଲକ୍ଷଣୀୟ ଯେ, ଭାରତରେ କୌଣସି ବୈଦେଶିକ ଶକ୍ତିର ଆଧିପତ୍ୟ-ବିସ୍ତାର ଯେପରି ସେହି ବିଜୟୀ ଶକ୍ତିର ଇତିହାସରେ ଏକ ଶୁଭମୂହୂର୍ତ୍ତ, କାରଣ ସେହି ସନ୍ଧିକ୍ଷଣରେ ସେ ପାଇଅଛି ଐଶ୍ୱର୍ଯ୍ୟ, ଅଭ୍ୟୁଦୟ, ରାଜ୍ୟବିସ୍ତାର ଏବଂ ଅଧ୍ୟାତ୍ମ-ସମ୍ପଦ । ପାଶ୍ଚାତ୍ୟ ଦେଶର ଲୋକେ ସର୍ବଦା ଏହା ନିର୍ଣ୍ଣୟ କରିବା ପାଇଁ ସଚେଷ୍ଟ ଯେ, ଏ ଜଗତରେ କେତେ ଅଧିକ ବସ୍ତୁ ସେ ଆୟତ୍ତ କରି ଭୋଗ କରିପାରିବେ । ପ୍ରାଚ୍ୟ ଦେଶର ଲୋକେ ତାହାର ବିପରୀତ ପଥ ଅବଲମ୍ବନ କରନ୍ତି ଓ ପରୀକ୍ଷା କରି ଦେଖିବାକୁ ଚାହାଁନ୍ତି ଯେ,

କେତେ ଅଳ୍ପ ପାର୍ଥିବ ଦ୍ରବ୍ୟ ଦ୍ୱାରା ତାଙ୍କର ଦିନ ଅତିବାହିତ ହେବ । ବେଦରେ ଆମେ ଏହି ସୁପ୍ରାଚୀନ ଜାତିର ଈଶ୍ୱର-ଅନୁସନ୍ଧାନର ପ୍ରୟାସ ଦେଖିବାକୁ ପାଉ । ଈଶ୍ୱର-ଅନୁସନ୍ଧାନରେ ବ୍ରତୀ ହୋଇ ସେମାନେ ଧର୍ମର ବିଭିନ୍ନ ସ୍ତରରେ ଉପନୀତ ହୋଇଅଛନ୍ତି । ସେମାନେ ପୂର୍ବପୁରୁଷଙ୍କ ଉପାସନାରୁ ଆରମ୍ଭ କରି କ୍ରମେ ଅଗ୍ନି, ଅର୍ଥାତ୍ ଅଗ୍ନିର ଅଧିଷ୍ଠାତା ଦେବତା, ଇନ୍ଦ୍ର, ଅର୍ଥାତ୍ ବଜ୍ରର ଅଧିଷ୍ଠାତା ଦେବତା ଏବଂ ବରୁଣ, ଅର୍ଥାତ୍ ଦେବଗଣଙ୍କ ଦେବତାଙ୍କର ଉପାସନାରେ ଉପନୀତ ହୋଇଥିଲେ । ଈଶ୍ୱରଙ୍କ ସମ୍ବନ୍ଧରେ ଏହି ଧାରଣାର କ୍ରମବିକାଶ—ଏହି ବହୁ ଦେବତାଙ୍କଠାରୁ ଏକ ପରମ ଦେବତାଙ୍କ ଧାରଣାରେ ଉପନୀତ ହେବା ଆମେ ସକଳ ଧର୍ମମତରେ ଦେଖିବାକୁ ପାଉ । ଏହାର ପ୍ରକୃତ ତାତ୍ପର୍ଯ୍ୟ ଏହି ଯେ ଯିଏ ବିଶ୍ୱକୁ ସୃଷ୍ଟି ଓ ପାଳନ କରୁଛନ୍ତି ଏବଂ ଯିଏ ସମସ୍ତଙ୍କର ଅନ୍ତର୍ଯାମୀ, ସେ ହିଁ ହେଉଛନ୍ତି ସକଳ ଉପଜାତୀୟ ଦେବତାଙ୍କର ଅଧିନାୟକ । ଈଶ୍ୱରଙ୍କ ସମ୍ବନ୍ଧରେ ଧାରଣା କ୍ରମବିକାଶ ପଥରେ ଅଗ୍ରସର ହୋଇ ବହୁ ଦେବତାବାଦରୁ ଏକେଶ୍ୱରବାଦରେ ପରିଣତ ହୋଇଅଛି । କିନ୍ତୁ ଈଶ୍ୱରଙ୍କୁ ମନୁଷ୍ୟସୁଲଭ ରୂପଗୁଣରେ ବିଭୂଷିତ ଭାବି ହିନ୍ଦୁ ମନ ପରିତୃପ୍ତ ହୋଇନାହିଁ, କାରଣ ଯେଉଁମାନେ ଈଶ୍ୱରାନୁସନ୍ଧାନରେ ବ୍ୟାପୃତ, ସେମାନଙ୍କ ନିକଟରେ ଏହି ମତ ଅତ୍ୟନ୍ତ ମାନୁଷୀ ଭାବରେ ପୂର୍ଣ୍ଣ ।

ସୁତରାଂ ଅବଶେଷରେ ସେମାନେ ଏହି ଇନ୍ଦ୍ରିୟଗ୍ରାହ୍ୟ ବହିର୍ଜଗତ ଓ ଜଡ଼ବସ୍ତୁ ମଧ୍ୟରେ ଈଶ୍ୱରାନୁସନ୍ଧାନର ପ୍ରୟାସ ପରିତ୍ୟାଗ କରି ଅନ୍ତର୍ଜଗତରେ ସେମାନଙ୍କର ଦୃଷ୍ଟି ନିବଦ୍ଧ କଲେ । ଅନ୍ତର୍ଜଗତ ବୋଲି କିଛି ଅଛି କି ? ଯଦି ଥାଏ, ତାହାହେଲେ ତା'ର ସ୍ୱରୂପ କଅଣ ? ଏହା ସ୍ୱରୂପତଃ ଆତ୍ମା, ଏହା ସେମାନଙ୍କର ନିଜ ସତ୍ତା ସହିତ ଅଭିନ୍ନ ଏବଂ ଏକମାତ୍ର ଏହି ବସ୍ତୁ ସମ୍ବନ୍ଧରେ ହିଁ ମନୁଷ୍ୟ ନିଶ୍ଚିତ ହୋଇପାରେ । ନିଜକୁ ଜାଣି ପାରିଲେ ହିଁ ମନୁଷ୍ୟ ବିଶ୍ୱକୁ ଜାଣିପାରେ, ଅନ୍ୟଥା ନୁହେଁ । ଏହି ପ୍ରଶ୍ନ ସୃଷ୍ଟିର ଆଦି କାଳରେ ଋଗ୍‌ବେଦରେ ଭିନ୍ନଭାବରେ ଉଲ୍ଲିଖିତ ହୋଇଥିଲା—'ସୃଷ୍ଟିର ଆଦିରୁ କିଏ ବା କେଉଁ ତତ୍ତ୍ୱ ବିଦ୍ୟମାନ ?' ଏହି ପ୍ରଶ୍ନର ସମାଧାନ ବେଦାନ୍ତଦର୍ଶନଦ୍ୱାରା ସମ୍ପନ୍ନ ହୁଏ । ବେଦାନ୍ତଦର୍ଶନ କହେ—ଆତ୍ମା ଅଛନ୍ତି ଅର୍ଥାତ୍ ଯାହାଙ୍କୁ ଆମେ ପରମ ତତ୍ତ୍ୱ, ସର୍ବାତ୍ମା ବା ସ୍ୱ-ସ୍ୱରୂପ ବୋଲି ଅଭିହିତ କରୁ, ତାହା ସେହି ଶକ୍ତି, ଯାହାଦ୍ୱାରା ଆଦିକାଳରୁ ସବୁ କିଛି ପ୍ରକାଶିତ ।

ବୈଦାନ୍ତିକ ଯେପରି ଏହି ପ୍ରଶ୍ନର ସମାଧାନ କଲେ, ସେହିପରି ନୀତିଶାସ୍ତ୍ରର ଭିତ୍ତି ମଧ୍ୟ ଆବିଷ୍କାର କଲେ । ଯଦିଓ ସକଳ ଧର୍ମସମ୍ପ୍ରଦାୟ 'ହତ୍ୟା କର ନାହିଁ', 'ଅନିଷ୍ଟ କର ନାହିଁ', 'ପ୍ରତିବେଶୀକୁ ନିଜ ଭଳି ଭଲପାଅ', ଇତ୍ୟାଦି ନୀତିବାକ୍ୟ ଶିକ୍ଷା ଦେଇଛନ୍ତି, ତଥାପି କେହି ହେଲେ ସେଗୁଡ଼ିକର କାରଣ ନିର୍ଦ୍ଦେଶ କରି ନାହାନ୍ତି । 'କାହିଁକି ମୁଁ ମୋର ପ୍ରତିବେଶୀର କ୍ଷତିସାଧନ ନ କରିବି ?' ଏହି ପ୍ରଶ୍ନର ସନ୍ତୋଷଜନକ ବା ସର୍ବସ୍ୱୀକୃତ କୌଣସି ଉତ୍ତର ସେପର୍ଯ୍ୟନ୍ତ ମିଳିନଥିଲା, ଯେପର୍ଯ୍ୟନ୍ତ ହିନ୍ଦୁମାନେ

କେବଳ ମତବାଦକୁ ଧରି ତୃପ୍ତ ନ ରହି ଆଧ୍ୟାତ୍ମିକ ଗବେଷଣା ସାହାଯ୍ୟରେ ଏହାର ମୀମାଂସା କରିଥିଲେ । ହିନ୍ଦୁ କହନ୍ତି—ଆତ୍ମା ନିର୍ବିଶେଷ ଓ ସର୍ବବ୍ୟାପୀ ଏବଂ ସେଥିପାଇଁ ଅନନ୍ତ । ଅନନ୍ତ ବସ୍ତୁ କେବେହେଲେ ଦୁଇଟି ହୋଇ ନ ପାରେ, କାରଣ ତାହା ହେଲେ ଏକ ଅନନ୍ତଦ୍ୱାରା ଅପର ଅନନ୍ତ ସୀମାବଦ୍ଧ ହେବ । ଜୀବାତ୍ମା ସେହି ଅନନ୍ତ ସର୍ବବ୍ୟାପୀ ପରମାତ୍ମାଙ୍କର ଅଂଶବିଶେଷ, ଅତଏବ ପ୍ରତିବେଶୀଙ୍କୁ ଆଘାତ କଲେ ପ୍ରକୃତପକ୍ଷେ ନିଜକୁ ହିଁ ଆଘାତ କଲାଭଳି ହେବ । ଏହି ସ୍ପଷ୍ଟ ଆଧ୍ୟାତ୍ମିକ ତତ୍ତ୍ୱଟି ହିଁ ସର୍ବପ୍ରକାର ନୀତିବାକ୍ୟର ମୂଳରେ ନିହିତ ଅଛି । ଅନେକ ସମୟରେ ଆମେମାନେ ବିଶ୍ୱାସ କରୁ ଯେ, ପୂର୍ଣ୍ଣ ପରିଣତି-ପଥରେ ଅଗ୍ରଗତି ସମୟରେ ମନୁଷ୍ୟ ଭ୍ରମରୁ ସତ୍ୟରେ ଉପନୀତ ହୁଏ ଏବଂ ଏକ ଧାରଣାରୁ ଅନ୍ୟ ଧାରଣାରେ ଉପନୀତ ହେବା ପାଇଁ ପୂର୍ବଟିକୁ ବର୍ଜ୍ଜନ କରିବାକୁ ପଡ଼େ; କିନ୍ତୁ ଭ୍ରାନ୍ତି କେବେହେଲେ ସତ୍ୟର ସନ୍ଧାନ ଦେଇ ନ ପାରେ । ଆତ୍ମା ଯେତେବେଳେ ବିଭିନ୍ନ ସ୍ତର ମଧ୍ୟ ଦେଇ ଅଗ୍ରସର ହେଉଥାଏ, ସେତେବେଳେ ସେ ଏକ ସତ୍ୟରୁ ଅନ୍ୟ ସତ୍ୟରେ ଉପନୀତ ହୁଏ, ଏବଂ ତା' ପକ୍ଷରେ ପ୍ରତ୍ୟେକ ସ୍ତର ହିଁ ସତ୍ୟ । ଆତ୍ମା କ୍ରମେ ନିମ୍ନତର ସତ୍ୟରୁ ଊର୍ଦ୍ଧ୍ୱତର ସତ୍ୟରେ ଉପନୀତ ହୁଏ । ବିଷୟଟିକୁ ନିମ୍ନଲିଖିତ ଦୃଷ୍ଟାନ୍ତ-ଦ୍ୱାରା ବୁଝାଇ ଦିଆଯାଇପାରେ । ଜଣେ ବ୍ୟକ୍ତି ସୂର୍ଯ୍ୟଙ୍କ ଅଭିମୁଖେ ଯାତ୍ରା କଲା ଏବଂ ପ୍ରତି ପଦକ୍ଷେପରେ ସେ ଆଲୋକଚିତ୍ର ଗ୍ରହଣ କରିବାକୁ ଲାଗିଲା । ପ୍ରଥମ ଚିତ୍ରଟି ଦ୍ୱିତୀୟ ଚିତ୍ରଠାରୁ କେତେ ପୃଥକ୍ ନ ହେବ ଏବଂ ଦ୍ୱିତୀୟ ଚିତ୍ରଠାରୁ କିମ୍ବା ସୂର୍ଯ୍ୟଙ୍କଠାରେ ଉପନୀତ ହେଲେ ସର୍ବଶେଷ ଚିତ୍ର ଅପେକ୍ଷା ତାହା ଆହୁରି କେତେ ପୃଥକ୍ ନ ହେବ ! ଏହି ଚିତ୍ରଗୁଡ଼ିକ ପରସ୍ପର ଅତ୍ୟନ୍ତ ଭିନ୍ନ ହେଲେ ମଧ୍ୟ ପ୍ରତ୍ୟେକଟି ସତ୍ୟ; ପାର୍ଥକ୍ୟ କେବଳ ଏତିକି ଯେ, ଦେଶକାଳ ପରିବେଶ ପରିବର୍ତ୍ତିତ ହେବାରୁ ସେମାନେ ଭିନ୍ନ ପ୍ରତୀତ ହେଉଛନ୍ତି । ଏହି ସତ୍ୟର ସ୍ୱୀକୃତିଦ୍ୱାରା ହିଁ ହିନ୍ଦୁଗଣ ସର୍ବନିମ୍ନରୁ ସର୍ବୋଚ୍ଚ ଧର୍ମ ମଧ୍ୟରେ ନିହିତ ସାର୍ବଜନୀନ ସତ୍ୟକୁ ଉପଲବ୍ଧି କରିବାକୁ ସମର୍ଥ ହୋଇଅଛନ୍ତି ଏବଂ ଏଥିପାଇଁ ସକଳ ଜାତି ମଧ୍ୟରେ ଏକମାତ୍ର ହିନ୍ଦୁଗଣ ହିଁ ଧର୍ମ ନାମରେ କାହାରି ଉପରେ ଅତ୍ୟାଚାର କରିନାହାନ୍ତି । କୌଣସି ମୁସଲମାନ-ସାଧକର ସ୍ମୃତିସୌଧକୁ ମୁସଲମାନଗଣ ଭୁଲିଗଲେ ସୁଦ୍ଧା ହିନ୍ଦୁମାନଙ୍କଦ୍ୱାରା ତାହା ପୂଜିତ ହୁଏ । ହିନ୍ଦୁମାନଙ୍କର ଏହିପରି ପରଧର୍ମ-ସହିଷ୍ଣୁତାର ଅନେକ ଦୃଷ୍ଟାନ୍ତ ଉଲ୍ଲେଖ କରାଯାଇପାରେ ।

ପ୍ରାଚ୍ୟ ମନ ଯେପର୍ଯ୍ୟନ୍ତ ସମଗ୍ର ମାନବଜାତିର ବାଞ୍ଛିତ ଲକ୍ଷ୍ୟ—ଐକ୍ୟକୁ ନ ପାଏ ସେପର୍ଯ୍ୟନ୍ତ କୌଣସି ମତରେ ସନ୍ତୁଷ୍ଟ ହୁଏ ନାହିଁ । ପାଶ୍ଚାତ୍ୟ ବୈଜ୍ଞାନିକମାନେ ଏକମାତ୍ର ଅଣୁ ବା ପରମାଣୁ ମଧ୍ୟରେ ଐକ୍ୟର ସନ୍ଧାନ କରନ୍ତି । ଯେତେବେଳେ ସେ ଏହା ପ୍ରାପ୍ତ ହୁଅନ୍ତି, ସେତେବେଳେ ତାଙ୍କର କିଛି ଆବିଷ୍କାର କରିବାର ରହେ ନାହିଁ । ଅନ୍ୟ ପକ୍ଷରେ ଆମେ ଯେତେବେଳେ ଆତ୍ମା ବା ଆମ ସ୍ୱରୂପର ଐକ୍ୟ ଦର୍ଶନ କରୁ, ସେତେବେଳେ ଅଧିକ ଅଗ୍ରସର ହେବାର କିଛି ରହେ ନାହିଁ । ଆମମାନଙ୍କ ନିକଟରେ ସେତେବେଳେ ସ୍ପଷ୍ଟ ପ୍ରତିଭାତ ହୁଏ ଯେ, ସେହି ଏକମାତ୍ର ସତ୍ତା ହିଁ ଇନ୍ଦ୍ରିୟଗ୍ରାହ୍ୟ

ଜଗତର ଯାବତୀୟ ବସ୍ତୁରୂପେ ପ୍ରତୀତ ହେଉଛନ୍ତି । ଅଣୁର ନିଜସ୍ୱ ଦୈର୍ଘ୍ୟ ବା ବିସ୍ତୃତି ନ ଥିଲେ ମଧ୍ୟ ଅଣୁଗୁଡ଼ିକର ମିଶ୍ରଣ ଫଳରେ ଦୈର୍ଘ୍ୟ, ପ୍ରସ୍ଥ ଓ ବିସ୍ତୃତିର ଉଦ୍ଭବ ହୁଏ— ଏହି ଯୁକ୍ତିକୁ ସ୍ୱୀକାର କଲେ ବୈଜ୍ଞାନିକମାନଙ୍କୁ ବାଧ୍ୟ ହୋଇ ଅଧ୍ୟାତ୍ମଶାସ୍ତ୍ରର ସତ୍ୟାସତ୍ୟ ମଧ୍ୟ ସ୍ୱୀକାର କରିବାକୁ ପଡ଼ିବ । ଯେତେବେଳେ ଗୋଟିଏ ଅଣୁ ଅନ୍ୟ ଅଣୁ ଉପରେ କ୍ରିୟା କରେ, ସେତେବେଳେ ଗୋଟିଏ ଯୋଗସୂତ୍ରର ପ୍ରୟୋଜନ ହୁଏ । ଏହି ଯୋଗସୂତ୍ରଟି କିଅଣ ? ଯଦି ଏହା ଗୋଟିଏ ତୃତୀୟ ଅଣୁ ହୁଏ, ତାହାହେଲେ ପୂର୍ବ ପ୍ରଶ୍ନଟି ଅମୀମାଂସିତ ରହିଯାଏ, କାରଣ ପ୍ରଥମ ଓ ଦ୍ୱିତୀୟ ଅଣୁ କିପରି ତୃତୀୟ ଅଣୁ ଉପରେ କାର୍ଯ୍ୟ କରିବ ? ଏହି ପ୍ରକାର ଯୁକ୍ତି ଯେ ଅନବସ୍ଥାଦୋଷଦୁଷ୍ଟ, ତାହା ଅତି ସୁସ୍ପଷ୍ଟ । ସମସ୍ତ ବିଜ୍ଞାନ ଏହି ଏକ ଆପାତସତ୍ୟ ମତବାଦ ଉପରେ ନିର୍ଭର କରୁଅଛି ଯେ ବିନ୍ଦୁର ନିଜର କୌଣସି ପରିମାଣ ନାହିଁ । କିନ୍ତୁ ବିନ୍ଦୁମାନଙ୍କର ମିଳନରେ ଗଠିତ ରେଖାର ଦୈର୍ଘ୍ୟ ଅଛି । ଅଥଚ ପ୍ରସ୍ଥ ନାହିଁ—ଏହି ସ୍ୱୀକୃତିରେ ମଧ୍ୟ ପରସ୍ପରବିରୋଧ ରହିଯାଏ । ଏହା ଦେଖାଯାଏ ନାହିଁ, କିମ୍ବା ଧାରଣା ମଧ୍ୟ କରାଯାଏ ନାହିଁ । କାହିଁକି ? କାରଣ ଏହା ଇନ୍ଦ୍ରିୟଗ୍ରାହ୍ୟ ବସ୍ତୁ ନୁହେଁ, କେବଳ ଅଧ୍ୟାତ୍ମ ବା ତାତ୍ତ୍ୱିକ ଧାରଣା ମାତ୍ର । ସୁତରାଂ ପରିଶେଷରେ ଦେଖାଯାଏ ଯେ, ମନ ହିଁ ସକଳ ଅନୁଭବର ଆକାର ଦାନ କରେ । ମୁଁ ଯେତେବେଳେ ଗୋଟିଏ ଚଉକି ଦେଖେ, ସେତେବେଳେ ମୁଁ ମୋର ଦର୍ଶନେନ୍ଦ୍ରିୟର ବାହାରେ ଅବସ୍ଥିତ ବାସ୍ତବ ଚଉକିଟିକୁ ଦେଖେ ନାହିଁ, ବହିଃସ୍ଥ ବସ୍ତୁ ଏବଂ ତାହାର ମାନସ ପ୍ରତିଚ୍ଛାୟା—ଉଭୟଙ୍କୁ ଦେଖିଥାଏ; ଅତଏବ ଶେଷରେ ଜଡ଼ବାଦୀ ମଧ୍ୟ ଇନ୍ଦ୍ରିୟାତୀତ ଅଧ୍ୟାତ୍ମତତ୍ତ୍ୱରେ ଉପନୀତ ହେବାକୁ ବାଧ୍ୟ ହୁଅନ୍ତି ।

# ବେଦାନ୍ତଦର୍ଶନର ତାତ୍ପର୍ଯ୍ୟ ଓ ପ୍ରଭାବ

[ ବୋଷ୍ଟନର ଟ୍ୱେଣ୍ଟିଏଥ୍ ସେଞ୍ଚୁରି କ୍ଲବ୍‌ରେ ପ୍ରଦତ୍ତ ଭାଷଣ ]

ଆଜ ଯେତେବେଳେ ସୁଯୋଗ ପାଇଛୁ, ସେତେବେଳେ ଏହି ଅପରାହ୍ନର ଆଲୋଚ୍ୟ ବିଷୟ ଆରମ୍ଭ କରିବା ପୂର୍ବରୁ ସାମାନ୍ୟ ଧନ୍ୟବାଦ ପ୍ରକାଶର ଅନୁମତି ନିଶ୍ଚୟ ପାଇବି । ମୁଁ ଆପଣମାନଙ୍କ ସହିତ ତିନିବର୍ଷ ବାସ କରିଅଛି ଏବଂ ଆମେରିକାର ପ୍ରାୟ ସର୍ବତ୍ର ଭ୍ରମଣ କରିଅଛି । ବର୍ତ୍ତମାନ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରିବା ପୂର୍ବରୁ ଏଥେନ୍ସ ନଗରୀ ସଦୃଶ ଆମେରିକାର ଏହି ସହରରେ ମୋର କୃତଜ୍ଞତା ଜ୍ଞାପନ କରିଯିବା ଖୁବ୍ ଯୁକ୍ତିସଙ୍ଗତ ହେବ । ଏ ଦେଶରେ ପଦାର୍ପଣ ପରେ ମନେକରିଥିଲି, ଏହି ଜାତି ଉପରେ ଗୋଟିଏ ଗ୍ରନ୍ଥ ରଚନା କରିବି ବୋଲି । କିନ୍ତୁ ଆଜ ତିନିବର୍ଷ ଅତିବାହିତ କରିବା ପରେ ମଧ୍ୟ ଦେଖୁଛି ଯେ, ଏହି ବିଷୟରେ ଗୋଟିଏ ପୃଷ୍ଠା ଲେଖିବା ମଧ୍ୟ ମୋ ପକ୍ଷରେ ସମ୍ଭବ ନୁହେଁ । ପୃଥିବୀର ବହୁ ବିଭିନ୍ନ ଦେଶରେ ଭ୍ରମଣ କରି ମୁଁ ଦେଖିଛି ଯେ, ବେଶଭୂଷା ବା ଆହାର-ବିହାର ବା ଆଚାର-ବ୍ୟବହାରରେ ଯେତେ ପାର୍ଥକ୍ୟ ରହୁ ନା କାହିଁକି, ମନୁଷ୍ୟ ପୃଥିବୀରେ ସର୍ବତ୍ର ସମାନ । ମାନବପ୍ରକୃତି ସର୍ବତ୍ର ସମାନ । ତଥାପି ସମସ୍ତଙ୍କର ନିଜସ୍ୱ ବୈଶିଷ୍ଟ୍ୟ କିଛି ଅଛି ଏବଂ ଏ ଦେଶୀୟମାନଙ୍କ ସମ୍ବନ୍ଧରେ ମୋର ଅଭିଜ୍ଞତାର ସାର ମୁଁ ଏଠାରେ ସଂକ୍ଷେପରେ ବିବୃତ କରୁଅଛି । ଏହି ଆମେରିକା ମହାଦେଶରେ କେହି କାହାରି ବ୍ୟକ୍ତିଗତ ବ୍ୟବହାରାଦିର ସମାଲୋଚନା କରନ୍ତି ନାହିଁ । ମନୁଷ୍ୟକୁ ସେମାନେ କେବଳ ମନୁଷ୍ୟରୂପରେ ହିଁ ଦେଖନ୍ତି ଏବଂ ମନୁଷ୍ୟରୂପେ ହିଁ ଆନ୍ତରିକ ଭାବରେ ବରଣ କରନ୍ତି । ଏହି ଗୁଣ ମୁଁ ପୃଥିବୀର ଅନ୍ୟ କେଉଁଠି ହେଲେ ଦେଖି ନାହିଁ ।

ମୁଁ ଏହି ଦେଶକୁ ଏକ ଭାରତୀୟ ମତବାଦର ପ୍ରତିନିଧିରୂପେ ଆସିଥିଲି । ତାହା ବେଦାନ୍ତ ଦର୍ଶନ ନାମରେ ପରିଚିତ । ଏହି ଦର୍ଶନ ଅତି ପ୍ରାଚୀନ । ଏହା ବେଦ ନାମକ ଅତି ବୃହତ୍ ଆର୍ଯ୍ୟ-ସାହିତ୍ୟରୁ ସୃଷ୍ଟ । ବହୁ ଶତାବ୍ଦୀ ଧରି ସଂଗୃହୀତ ଏବଂ ସଙ୍କଳିତ ସେହି ବିଶାଳ ସାହିତ୍ୟରେ ଯେଉଁସବୁ ଉପଲବ୍ଧି, ତତ୍ତ୍ୱାଲୋଚନା, ବିଶ୍ଳେଷଣ ଏବଂ ଅନୁଧ୍ୟାନ ସନ୍ନିବିଷ୍ଟ ରହିଅଛି, ଏହା ଯେପରି ସେଥିରୁ ପ୍ରସ୍ଫୁଟିତ ଗୋଟିଏ ସୁକୋମଳ ପୁଷ୍ପ । ଏହି ବେଦାନ୍ତ ଦର୍ଶନର କେତୋଟି ବିଶେଷତ୍ୱ ଅଛି । ପ୍ରଥମତଃ ଏହା ସମ୍ପୂର୍ଣ୍ଣରୂପେ ଅପୌରୁଷେୟ; ଏହାର ଉଦ୍ଭବ ପାଇଁ ଏହା କୌଣସି ବ୍ୟକ୍ତି ବା ଧର୍ମଗୁରୁଙ୍କ ନିକଟରେ ଋଣୀ ନୁହେଁ: ଏହା କୌଣସି ବ୍ୟକ୍ତିବିଶେଷଙ୍କୁ କେନ୍ଦ୍ର କରି ଗଢ଼ି ଉଠିନାହିଁ । ଅଥଚ ଯେଉଁସବୁ ଧର୍ମମତ ବ୍ୟକ୍ତିବିଶେଷଙ୍କୁ କେନ୍ଦ୍ର କରି ଗଢ଼ି ଉଠେ, ସେମାନଙ୍କ ବିରୋଧରେ ଏହାର କୌଣସି ବିଦ୍ୱେଷ ନାହିଁ । ପରବର୍ତ୍ତୀ କାଳରେ ଭାରତବର୍ଷରେ ବ୍ୟକ୍ତିବିଶେଷଙ୍କୁ କେନ୍ଦ୍ର କରି ବହୁ ଦର୍ଶନମତ ଓ ଧର୍ମସମ୍ପ୍ରଦାୟ ଗଢ଼ିଉଠିଛି—ଯଥା ବୌଦ୍ଧଧର୍ମ କିମ୍ବା ଆଧୁନିକ ଯୁଗର କେତୋଟି ଧର୍ମମତ । ଖ୍ରୀଷ୍ଟ ଓ ମୁସଲମାନ ଧର୍ମାବଲମ୍ବୀମାନଙ୍କ ପରି ଏହି ସକଳ

ଧର୍ମସମ୍ପ୍ରଦାୟର ମଧ୍ୟ ଜଣେ ଜଣେ ଧର୍ମନେତା ଅଛନ୍ତି ଓ ସେମାନେ ତାଙ୍କର ସମ୍ପୂର୍ଣ୍ଣ ଅନୁଗତ; କିନ୍ତୁ ବେଦାନ୍ତ ଦର୍ଶନର ସ୍ଥାନ ଏହିସବୁ ଯାବତୀୟ ଧର୍ମମତର ପଛଭୂମିକାରେ ନିରୂପିତ । ବେଦାନ୍ତ ସହିତ ପୃଥିବୀର କୌଣସି ଧର୍ମ ବା ଦର୍ଶନର ବିବାଦ ବିସମ୍ବାଦ ନାହିଁ ।

ବେଦାନ୍ତ ଗୋଟିଏ ମୌଳିକ ତତ୍ତ୍ୱ ଉପସ୍ଥାପିତ କରିଅଛି ଏବଂ ବେଦାନ୍ତ ଦାବି କରେ ଯେ, ତାହା ପୃଥିବୀର ସବୁ ଧର୍ମମତ ମଧ୍ୟରେ ନିହିତ ରହିଅଛି । ଏହି ତତ୍ତ୍ୱଟି ହେଲା ମନୁଷ୍ୟ ବ୍ରହ୍ମ ସହିତ ଅଭିନ୍ନ; ଆମେ ଆମର ଚତୁଃପାର୍ଶ୍ୱରେ ଯାହା କିଛି ଦେଖୁଅଛୁ, ସବୁ ସେହି ଐଶୀ ଚେତନାରୁ ସୃଷ୍ଟ । ମାନବପ୍ରକୃତି ମଧ୍ୟରେ ଯାହାକିଛି ଶକ୍ତିଶାଳୀ, ମଙ୍ଗଳମୟ ଓ ଐଶ୍ୱର୍ଯ୍ୟବାନ୍, ତାହାସବୁ ଏହି ବ୍ରହ୍ମସତ୍ତାରୁ ଉଦ୍‌ଭୂତ; ଏବଂ ଯଦିଓ ତାହା ଅନେକଙ୍କ ମଧ୍ୟରେ ସୁପ୍ତଭାବରେ ବିରାଜମାନ, ତଥାପି ପ୍ରକୃତ ପକ୍ଷରେ ମନୁଷ୍ୟ ମନୁଷ୍ୟ ଭିତରେ କୌଣସି ପ୍ରଭେଦ ନାହିଁ, କାରଣ ସମସ୍ତେ ହିଁ ବ୍ରହ୍ମଙ୍କ ସହିତ ଅଭିନ୍ନ । ଯେପରି ଏକ ଅନନ୍ତ ମହାସମୁଦ୍ର ବିଦ୍ୟମାନ ରହିଅଛି ଏବଂ ମୁଁ ଓ ଆପଣମାନେ ସମସ୍ତେ ସେହି ଅନନ୍ତ ମହାସମୁଦ୍ରର ଗୋଟିଏ ଗୋଟିଏ ତରଙ୍ଗରୂପେ ଉତ୍ଥିତ ହୋଇଅଛୁ । ଆମେ ପ୍ରତ୍ୟେକେ ସେହି ଅନନ୍ତକୁ ବାହାରେ ପ୍ରକାଶ କରିବା ପାଇଁ ଆପ୍ରାଣ ଚେଷ୍ଟା କରୁଅଛୁ । ସୁତରାଂ ସମ୍ଭାବନା ଦୃଷ୍ଟିରୁ ଦେଖିଲେ ଯେଉଁ ସତ୍ ଚିତ୍ ଓ ଆନନ୍ଦମୟ ମହାସାଗର ସହିତ ଆମେ ସ୍ୱରୂପତଃ ଅଭିନ୍ନ, ସେଥିରେ ଆମର ଜନ୍ମଗତ ଅଧିକାର ଅଛି । ପରସ୍ପର ମଧ୍ୟରେ ଯେଉଁ ପାର୍ଥକ୍ୟ, ତାହା ସେହି ଐଶୀ ସମ୍ଭାବନାକୁ ପ୍ରକାଶ କରିବାର ତାରତମ୍ୟ ହେତୁ ଘଟିଅଛି । ଅତଏବ ବେଦାନ୍ତର ଅଭିମତ ଏହି ଯେ, ପ୍ରତ୍ୟେକ ମନୁଷ୍ୟ ଯେତିକି ବ୍ରହ୍ମଶକ୍ତି ପ୍ରକାଶ କରିବାକୁ ସମର୍ଥ, ସେହି ଦିଗରୁ ବିଚାର ନ କରି ତାହାର ସ୍ୱରୂପ ଦିଗରୁ ହିଁ ତାହାକୁ ବିଚାର କରିବାକୁ ହେବ । ସକଳ ମନୁଷ୍ୟ ସ୍ୱରୂପତଃ ବ୍ରହ୍ମ, ଅତଏବ ଯେତେବେଳେ କୌଣସି ଆଚାର୍ଯ୍ୟ କାହାକୁ ସାହାଯ୍ୟ କରିବା ପାଇଁ ଅଗ୍ରସର ହେବେ, ସେତେବେଳେ ତାହାର ନିନ୍ଦା ନ କରି ଏହି ବ୍ୟକ୍ତିର ଅନ୍ତର୍ନିହିତ ବ୍ରହ୍ମଶକ୍ତିକୁ ଜାଗ୍ରତ କରିବା ପାଇଁ ତାଙ୍କୁ ଚେଷ୍ଟା କରିବାକୁ ପଡ଼ିବ ।

ବେଦାନ୍ତ ଏକଥା ମଧ୍ୟ ପ୍ରଚାର କରେ ଯେ, ଆମ ସମାଜ-ଜୀବନରେ ଓ ପ୍ରତ୍ୟେକ କର୍ମକ୍ଷେତ୍ରରେ ଆମେ ଯେଉଁ ବିଶାଳ ଶକ୍ତିର ଅଭିବ୍ୟକ୍ତି ଦେଖିବାକୁ ପାଉ, ତାହା ପ୍ରକୃତରେ ଅନ୍ତରରୁ ବାହାରକୁ ଉତ୍ସାରିତ ହୁଏ । ଅତଏବ ଅନ୍ୟ ଧର୍ମ-ସମ୍ପ୍ରଦାୟ ଯାହାକୁ ଅନୁପ୍ରେରଣା ବା ଐଶୀଶକ୍ତିର ଅନ୍ତଃପ୍ରବେଶ ବୋଲି ମନେ କରିଥାଆନ୍ତି, ବେଦାନ୍ତବାଦୀ ତାହାକୁ ମାନବର ଐଶୀଶକ୍ତିର ବହିଃବିକାଶ ନାମରେ ଅଭିହିତ କରିଥାଆନ୍ତି; ଅଥଚ ସେ ଅପର ଧର୍ମ-ସମ୍ପ୍ରଦାୟ ସହିତ ବିବାଦ କରିବାକୁ ଚାହାଁନ୍ତି ନାହିଁ । ଯେଉଁମାନେ ମନୁଷ୍ୟର ଏହି ବ୍ରହ୍ମତ୍ୱ ଉପଲବ୍ଧି କରିପାରନ୍ତି ନାହିଁ ସେମାନଙ୍କ ସହିତ ବେଦାନ୍ତବାଦୀମାନଙ୍କର କୌଣସି ବିରୋଧ ନାହିଁ, କାରଣ ଜ୍ଞାତସାରରେ ହେଉ ବା ଅଜ୍ଞାତସାରରେ ହେଉ ପ୍ରତ୍ୟେକ ବ୍ୟକ୍ତି ସେହି ବ୍ରହ୍ମଶକ୍ତିର ଉନ୍ମେଷ ପାଇଁ ଯତ୍ନପର ।

ମନୁଷ୍ୟ ଯେପରି ଗୋଟିଏ କ୍ଷୁଦ୍ର ଆଧାରରେ ଆବଦ୍ଧ ହେଲେ ସୁଦ୍ଧା କ୍ରମଶଃ ପ୍ରସାରଣ-ଶୀଳ ଗୋଟିଏ ଅନନ୍ତ ଶକ୍ତିଶାଳୀ ସ୍ପ୍ରିଙ୍ଗ (**spring**) ସଦୃଶ । ପରିଦୃଶ୍ୟମାନ ସମଗ୍ର

ସାମାଜିକ ଘଟଣା-ପରମ୍ପରା ଏହି ମୁକ୍ତିପ୍ରସାରର ଫଳ ସଦୃଶ । ଆମମାନଙ୍କର ଆଖପାଖରେ ଯେତେ ପ୍ରତିଯୋଗିତା, ହଣାକଟା ଓ ଅଶୁଭ ଦେଖିବାକୁ ପାଉ, ତାହା ଏହି ମୁକ୍ତି-ପ୍ରସ୍ତାରର କାରଣ ବା ପରିଣାମ ନୁହେଁ । ଆମମାନଙ୍କର ଜନୈକ ପ୍ରଖ୍ୟାତ ଦାର୍ଶନିକଙ୍କର ଦୃଷ୍ଟାନ୍ତ ଅନୁସାରେ ଧରାଯାଉ—କୃଷିକ୍ଷେତ୍ରରେ ଜଳସେଚନ ନିମିତ୍ତ ଉଚ୍ଚ ସ୍ଥାନରେ ପରିପୂର୍ଣ୍ଣ ଜଳାଶୟ ରହିଅଛି, ଜଳପ୍ରବାହ କୃଷିକ୍ଷେତ୍ର ଅଭିମୁଖରେ ଧାବିତ ହେବାକୁ ଚେଷ୍ଟା କରେ, କିନ୍ତୁ ଦ୍ୱାରରୁଦ୍ଧ ଥିବାରୁ ତାହା ପ୍ରତିହତ ହୁଏ; କିନ୍ତୁ ଦ୍ୱାରଟି ଯେତେବେଳେ ଖୋଲି ହେବ ସେତେବେଳେ ଜଳରାଶି ବେଗରେ ପ୍ରବାହିତ ହେବ । ପଥରେ ଆବର୍ଜନା ବା ମଳିନତା ଥିଲେ ପ୍ରବହମାନ ଜଳଧାରା ତା' ଉପର ଦେଇ ଗ୍ରଳିଯିବ । କିନ୍ତୁ ଏହି ସକଳ ଆବର୍ଜନା ଓ ମଳିନତା ମାନବର ଏହି ଦେବତ୍ୱ-ବିକାଶର ପରିଣାମ ନୁହେଁ କିମ୍ବା କାରଣ ମଧ୍ୟ ନୁହେଁ—ଏଗୁଡ଼ିକ ଆନୁସଙ୍ଗିକ ଅବସ୍ଥା ମାତ୍ର । ଅତଏବ ଏଗୁଡ଼ିକର ପ୍ରତିକାର ସମ୍ଭବ ।

ବେଦାନ୍ତର ଦାବି ଏହି ଯେ, ଏହି ଚିନ୍ତାଧାରା ଭାରତ ଓ ବାହାରର ସକଳ ଧର୍ମମତ ମଧ୍ୟରେ ହିଁ ପରିଲକ୍ଷିତ ହୁଏ । ତେବେ କେଉଁଠାରେ ତାହା ପୁରାଣର ରୂପକ ଆକାରରେ ପ୍ରକାଶିତ, ଅଥବା କେଉଁଠାରେ ପ୍ରତୀକ ମାଧ୍ୟମରେ ଉପସ୍ଥାପିତ । ବେଦାନ୍ତର ଦୃଢ଼ ଅଭିମତ ଏହି ଯେ, ଏପରି କୌଣସି ଧର୍ମପ୍ରେରଣା ଏପର୍ଯ୍ୟନ୍ତ ପ୍ରକଟିତ ହୋଇ ନାହିଁ, କିମ୍ବା ଏପରି କୌଣସି ମହାନ୍ ଦେବମାନବଙ୍କର ଅଭ୍ୟୁଦୟ ଘଟିନାହିଁ, ଯାହାଙ୍କୁ ମାନବ-ପ୍ରକୃତିର ଏହି ସ୍ୱତଃସିଦ୍ଧ ଅସୀମ ଏକତ୍ୱର ଅଭିବ୍ୟକ୍ତି ବୋଲି ଗ୍ରହଣ କରିବା ନ ଚଳିବ । ନୈତିକତା, ସତତା ଓ ପରୋପକାର ବୋଲି ଯାହା କିଛି ଆମମାନଙ୍କ ନିକଟରେ ପରିଚିତ, ତାହା ମଧ୍ୟ ଏହି ଏକତ୍ୱର ପ୍ରକାଶ ବ୍ୟତୀତ ଅନ୍ୟ କିଛି ନୁହେଁ । ଜୀବନରେ ଏପରି ଅନେକ ମୁହୂର୍ତ୍ତ ଆସେ, ଯେତେବେଳେ ପ୍ରତ୍ୟେକ ମନୁଷ୍ୟ ଅନୁଭବ କରେ ଯେ, ସେ ବିଶ୍ୱ ସହିତ ଏକ ଓ ଅଭିନ୍ନ ଏବଂ ସଜ୍ଞାନରେ ହେଉ ବା ଅଜ୍ଞାନରେ ହେଉ ସେ ଏହି ଅନୁଭୂତିକୁ ଜୀବନରେ ପ୍ରକାଶ କରିବା ପାଇଁ ବ୍ୟଗ୍ର ହୋଇପଡ଼େ । ଏହି ଐକ୍ୟର ପ୍ରକାଶକୁ ହିଁ ଆମେ ପ୍ରେମ ଓ କରୁଣା ନାମରେ ଅଭିହିତ କରିଥାଉ ଏବଂ ଏହା ହିଁ ଆମମାନଙ୍କର ସମସ୍ତ ନୀତିଶାସ୍ତ୍ର ଓ ସତତାର ମୂଳଭିତ୍ତି । ବେଦାନ୍ତ ଦର୍ଶନରେ ଏହି ସତ୍ୟକୁ ହିଁ – 'ତତ୍ତ୍ୱମସି' ବା 'ତୁମେ ହିଁ ତାହା'—ଏହି ମହାବାକ୍ୟଦ୍ୱାରା ସୂତ୍ରାକାରରେ ବ୍ୟକ୍ତ କରାଯାଇଅଛି ।

ପ୍ରତ୍ୟେକ ମନୁଷ୍ୟକୁ ବେଦାନ୍ତ ଏହି ଶିକ୍ଷା ଦିଏ—ସେ ଏହି ବିଶ୍ୱସତ୍ତା ସହିତ ଏକ ଓ ଅଭିନ୍ନ; ସେଥିପାଇଁ ସବୁ ଆତ୍ମା ତୁମର ହିଁ ଆତ୍ମା; ଯେତେ ଜୀବଦେହ ଅଛି, ସବୁ ତୁମର ହିଁ ଦେହ; କାହାରିକୁ ଆଘାତ କରିବା ଅର୍ଥ ନିଜକୁ ହିଁ ଆଘାତ କରିବା ଏବଂ କାହାକୁ ଭଲପାଇବା ଅର୍ଥ ନିଜକୁ ହିଁ ଭଲ ପାଇବା । ତୁମ ଅନ୍ତରରୁ ଘୃଣାରାଶି ବାହାରକୁ ନିକ୍ଷିପ୍ତ ହେଲେ ଅନ୍ୟ କାହାକୁ ତାହା ଆଘାତ କରୁ ବା ନ କରୁ ତୁମକୁ ତାହା ନିଶ୍ଚୟ ଆଘାତ କରିବ । ପୁନଶ୍ଚ ତୁମ ଅନ୍ତରରୁ ପ୍ରେମ ନିର୍ଗତ ହେଲେ ପ୍ରତିଦାନରେ ତୁମେ ପ୍ରେମ ହିଁ ପାଇବ, କାରଣ ମୁଁ ହିଁ ବିଶ୍ୱ—ସମଗ୍ର ବିଶ୍ୱ ହିଁ ମୋର ଦେହ । ମୁଁ ଅସୀମ,

ତେବେ ସମ୍ପ୍ରତି ମୋର ସେ ଅନୁଭୂତି ନାହିଁ । ମୁଁ ସେହି ଅସୀମତାର ଅନୁଭୂତି ପାଇଁ ସାଧନାରେ ପ୍ରବୃତ୍ତ ହୋଇଅଛି ଏବଂ ଯେତେବେଳେ ମୋ ମଧ୍ୟରେ ସେହି ଅସୀମତାର ପୂର୍ଣ୍ଣଚେତନା ଜାଗରିତ ହେବ, ସେତେବେଳେ ମୋର ପୂର୍ଣ୍ଣତାପ୍ରାପ୍ତି ହେବ ।

ବେଦାନ୍ତର ଅନ୍ୟ ଗୋଟିଏ ବିଶେଷ ଭାବ ଏହି ଯେ, ଧର୍ମଚିନ୍ତା କ୍ଷେତ୍ରରେ ଏହି ଅସୀମ ବୈଚିତ୍ର୍ୟକୁ ମାନି ଚଳିବାକୁ ହେବ ଏବଂ ସମସ୍ତଙ୍କୁ ଗୋଟିଏ ମତକୁ ଆନୟନ କରିବାର ଚେଷ୍ଟା ଛାଡ଼ିଦେବାକୁ ହେବ; କାରଣ ଲକ୍ଷ୍ୟ ସମସ୍ତଙ୍କର ଏକ । ବେଦାନ୍ତବାଦୀଙ୍କ କବିତ୍ୱମୟ ଭାଷାରେ କୁହାଯାଏ, ଯେପରି ବିଭିନ୍ନ ନଦୀ ବିଭିନ୍ନ ପର୍ବତରୁ ବାହାରି ଜନ୍ମଭୂମିକୁ ଅବତରଣ କରନ୍ତି ଏବଂ ସରଳ ବା ବକ୍ର ଗତିରେ ସେଥିରୁ ପ୍ରବାହିତ ହୋଇ ପରିଶେଷରେ ସାଗରରେ ଆସି ଉପନୀତ ହୁଅନ୍ତି, ସେହିପରି ହେ ଭଗବାନ, ଏହି ସକଳ ବିଭିନ୍ନ-ବିଚିତ୍ର ଧର୍ମବିଶ୍ୱାସ ଓ ପଥ ବିଭିନ୍ନ ଦୃଷ୍ଟିଭଙ୍ଗୀରୁ ଜନ୍ମଲାଭ କରି ସରଳ ବା କୁଟିଳ ପଥରେ ଧାବିତ ହୋଇ ଅବଶେଷରେ ତୁମଠାରେ ହିଁ ଆସି ଉପନୀତ ହୁଅନ୍ତି ।

ବାସ୍ତବ ରୂପାୟନ କ୍ଷେତ୍ରରେ ଆମେମାନେ ଦେଖିବାକୁ ପାଉ, ଏହି ଅଭିନବ ଭାବରାଶିର ଆଧାରଭୂତ ଏହି ପ୍ରାଚୀନ ଦାର୍ଶନିକ ମତଟି ସର୍ବତ୍ର ନିଜର ପ୍ରଭାବ ବିସ୍ତାର କରି ପ୍ରତ୍ୟକ୍ଷ ଭାବରେ ପୃଥିବୀର ପ୍ରଥମ ପ୍ରଗତିଶୀଳ ଧର୍ମମତ ବୌଦ୍ଧଧର୍ମକୁ ଅନୁପ୍ରାଣିତ କରିଅଛି ଏବଂ ଆଲେକ୍‌ଜାଣ୍ଡ୍ରିୟାବାସୀ, ଅଜ୍ଞେୟବାଦୀ ଓ ମଧ୍ୟଯୁଗର ଇଉରୋପୀୟ ଦାର୍ଶନିକଙ୍କ ମାଧ୍ୟମରେ ଖ୍ରୀଷ୍ଟଧର୍ମକୁ ମଧ୍ୟ ପ୍ରଭାବିତ କରିଅଛି । ପରବର୍ତ୍ତୀ କାଳରେ ଏହା ଜର୍ମାନଦେଶୀୟ ଚିନ୍ତାଧାରାକୁ ପ୍ରଭାବିତ କରି ଦର୍ଶନ ଓ ମନୋବିଜ୍ଞାନର କ୍ଷେତ୍ରରେ ଏକ ବିପ୍ଳବ ଘଟାଇଅଛି । ଅଥଚ ଏହି ଅସୀମ ପ୍ରଭାବ ପ୍ରାୟ ଅଲକ୍ଷିତ ଭାବରେ ପୃଥିବୀରେ ପ୍ରସାରିତ ହୋଇଅଛି । ରାତ୍ରିର ମୃଦୁ ଶିଶିରସମ୍ପାତରେ ଯେପରି ଶସ୍ୟକ୍ଷେତ୍ରରେ ପ୍ରାଣ ସଞ୍ଚାରିତ ହୁଏ, ଠିକ୍ ସେହିପରି ଅତି ଧୀରଗତିରେ ଏବଂ ଅଲକ୍ଷ୍ୟରେ ଏହି ଅଧ୍ୟାତ୍ମ୍ୟଦର୍ଶନ ମାନବର କଲ୍ୟାଣ ପାଇଁ ସର୍ବତ୍ର ପ୍ରସାରିତ ହୋଇଅଛି । ଏହି ଧର୍ମର ପ୍ରଚାର ପାଇଁ ସୈନ୍ୟ-ମାନଙ୍କୁ ରଣକ୍ଷେତ୍ରକୁ ଯିବାକୁ ପଡ଼ିବ ନାହିଁ । ପୃଥିବୀର ଅନ୍ୟତମ ପ୍ରଧାନ ପ୍ରଗତିଶୀଳ ଧର୍ମ ବୌଦ୍ଧଧର୍ମରେ ଆମେ ଦେଖୁ—ଯଶସ୍ୱୀ ସମ୍ରାଟ ଅଶୋକଙ୍କର ଶିଳାଲିପିସମୂହ ସାକ୍ଷ୍ୟ ପ୍ରଦାନ କରୁଅଛି—କିପରି ଏକଦା ବୌଦ୍ଧଧର୍ମର ପ୍ରଚାରକଗଣ ଆଲେକ୍‌ଜାଣ୍ଡ୍ରିୟା, ଆଣ୍ଟିଓକ୍, ପାରସ୍ୟ, ଚୀନ ପ୍ରଭୃତି ତଦାନୀନ୍ତନ ସଭ୍ୟ ଜଗତର ଅନେକ ଦେଶକୁ ପ୍ରେରିତ ହୋଇ-ଥିଲେ । ଏହି ଶିଳାଲିପିରେ ଖ୍ରୀଷ୍ଟଙ୍କ ଆବିର୍ଭାବର ତିନିଶତ ବର୍ଷ ପୂର୍ବେ ସେମାନଙ୍କୁ ସାବଧାନ କରି ଦିଆଯାଇଥିଲା, ସେମାନେ ଯେପରି ଅନ୍ୟ ଧର୍ମକୁ ନିନ୍ଦା ନ କରନ୍ତି । କୁହା ହୋଇଥିଲା, 'ସକଳ ଧର୍ମର ଭିତ୍ତି ଏକ; ସମସ୍ତଙ୍କୁ ଯଥାସାଧ୍ୟ ସାହାଯ୍ୟ କରିବାକୁ ଚେଷ୍ଟା କର; ତୁମର ଯାହା କହିବାର ଅଛି, ତାହା ଶିକ୍ଷା ଦିଅ; କିନ୍ତୁ ଏପରି କିଛି କର ନାହିଁ, ଯାହାଦ୍ୱାରା କାହାରି କ୍ଷତି ହେବ ।'

ତେଣୁ ଆମେ ଦେଖିବାକୁ ପାଉ, ଭାରତରେ ହିନ୍ଦୁମାନଙ୍କ ଦ୍ୱାରା ଅନ୍ୟ ଧର୍ମାବଲମ୍ବୀ-ମାନେ କେବେହେଲେ ନିର୍ଯ୍ୟାତିତ ହୋଇ ନାହାନ୍ତି । ହିନ୍ଦୁମାନେ ଯାବତୀୟ ଧର୍ମମତ

ସମ୍ବନ୍ଧରେ ଏକ ଅସାଧାରଣ ଶ୍ରଦ୍ଧାର ଭାବ ଅଧିକନ୍ତୁ ପୋଷଣ କରିଥାଆନ୍ତି । ବିତାଡ଼ିତ ଇହୁଦୀମାନଙ୍କର ଏକାଂଶକୁ ସେମାନେ ଆଶ୍ରୟ ଦେଇଥିଲେ; ତାହାର ଫଳରେ ମାଲବାରରେ ଆଜି ମଧ୍ୟ ଇହୁଦୀଗଣ ଅଛନ୍ତି । ଅନ୍ୟ ଏକ ସମୟରେ ସେମାନେ ଧ୍ୱଂସପ୍ରାୟ ପାରସୀକ ଜାତିର ଯେଉଁମାନଙ୍କୁ ଆଦର ସହକାରେ ଗ୍ରହଣ କରିଥିଲେ, ଆଜି ମଧ୍ୟ ସେମାନେ ଆମ ଜାତିର ଏକ ଅଂଶରୂପେ ଆଧୁନିକ ବମ୍ବେ ପ୍ରଦେଶରେ ବାସ କରୁଛନ୍ତି । ଯୀଶୁଶିଷ୍ୟ ସେଣ୍ଟ ଟମାସ୍‌ଙ୍କ ସହିତ ଏ ଦେଶକୁ ଆଗମନ କରିଅଛନ୍ତି ବୋଲି ଦାବି କରୁଥିବା ଖ୍ରୀଷ୍ଟଧର୍ମାବଲମ୍ବୀମାନେ ମଧ୍ୟ ଏ ଦେଶରେ ଅଛନ୍ତି । ସେମାନେ ଭାରତରେ ବସବାସ କରିବା ପାଇଁ ଏବଂ ନିଜର ଧର୍ମମତ ସ୍ୱାଧୀନଭାବେ ପୋଷଣ କରିବା ପାଇଁ ଅନୁମତି ପାଇଥିଲେ । ସେମାନଙ୍କର ଗୋଟିଏ ପଲ୍ଲୀ ଆଜି ମଧ୍ୟ ଏ ଦେଶରେ ବିଦ୍ୟମାନ । ପରଧର୍ମ ପ୍ରତି ବିଦ୍ୱେଷଶୂନ୍ୟତାର ଏହି ମନୋଭାବ ଆଜି ମଧ୍ୟ ଭାରତରେ ବିନଷ୍ଟ ହୋଇନାହିଁ, କୌଣସି ଦିନ ହେବ ନାହିଁ ଏବଂ ହୋଇ ନ ପାରେ ମଧ୍ୟ ।

ବେଦାନ୍ତ ଯେଉଁସବୁ ମହତ୍ତ୍ୱ ବାଣୀ ପ୍ରଚାର କରେ, ସେଗୁଡ଼ିକ ମଧ୍ୟରେ ଏହା ଅନ୍ୟତମ । ତେଣୁ ଆମେ ଜାଣୁ ବା ନ ଜାଣୁ ଯେତେବେଳେ ସମସ୍ତେ ଏକ ଲକ୍ଷ୍ୟ ଦିଗକୁ ଅଗ୍ରସର ହେଉଛନ୍ତି, ସେତେବେଳେ ଅନ୍ୟର ଅକ୍ଷମତା ହେତୁ ଧୈର୍ଯ୍ୟ ହରାଇବାର କାରଣ କଅଣ ? କେହି ଗତିରେ ଅନ୍ୟ ତୁଳନାରେ ମନ୍ଥର ହେଲେ ମଧ୍ୟ ଆମର ତ ଧୈର୍ଯ୍ୟ ହରାଇବାର କୌଣସି କାରଣ ନାହିଁ । ତାହାକୁ ଆମର ଅଭିଶାପ ଦେବାର ଅଥବା ନିନ୍ଦା କରିବାର ମଧ୍ୟ ପ୍ରୟୋଜନ ନାହିଁ । ଆମମାନଙ୍କର ଜ୍ଞାନଚକ୍ଷୁ ଉନ୍ମୀଳିତ ହେଲେ, ଚିତ୍ତଶୁଦ୍ଧି ହେଲେ ଦେଖିବାକୁ ପାଇବୁ—ସବୁଥିରେ ସେହି ଏକ ବ୍ରହ୍ମଶକ୍ତିର ପ୍ରଭାବ ବିଦ୍ୟମାନ, ସମସ୍ତଙ୍କ ହୃଦୟରେ ସେହି ଏକ ବ୍ରହ୍ମସତ୍ତା ହିଁ ବିକଶିତ; କେବଳ ସେହି ଅବସ୍ଥାରେ ହିଁ ଆମେ ବିଶ୍ୱଭ୍ରାତୃତ୍ୱର ଦାବି କରିପାରିବୁ ।

ମନୁଷ୍ୟ ଯେତେବେଳେ ତାହାର ବିକାଶର ଉଚ୍ଚତମ ସ୍ତରରେ ଉପନୀତ ହୁଏ, ଯେତେବେଳେ ନରନାରୀର ଭେଦ, ମତଭେଦ, ବର୍ଣ୍ଣଭେଦ, ଜାତିଭେଦ, ପ୍ରଭୃତି କୌଣସି ଭେଦ ତା' ନିକଟରେ ପ୍ରତିଭାତ ହୁଏ ନାହିଁ, ଯେତେବେଳେ ସେ ଏହି ସକଳ ଭେଦବୈଷମ୍ୟର ଊର୍ଦ୍ଧ୍ୱକୁ ଉଠି ସବମାନବର ମିଳନଭୂମି ମହାମାନବତା ବା ଏକମାତ୍ର ବ୍ରହ୍ମସତ୍ତାର ସାକ୍ଷାତ୍କାର ଲାଭ କରେ, କେବଳ ସେତିକି ବେଳେ ହିଁ ସେ ବିଶ୍ୱଭ୍ରାତୃତ୍ୱରେ ପ୍ରତିଷ୍ଠିତ ହୁଏ । ଏକମାତ୍ର ଏହିପରି ବ୍ୟକ୍ତିଙ୍କୁ ହିଁ ପ୍ରକୃତ ବୈଦାନ୍ତିକ କୁହାଯାଇପାରେ ।

ଇତିହାସରେ ବେଦାନ୍ତ ଦର୍ଶନର ବାସ୍ତବିକ କାର୍ଯ୍ୟକାରିତାର ଯେଉଁ ସକଳ ସାକ୍ଷ୍ୟ ମିଳେ, ସେଗୁଡ଼ିକ ମଧ୍ୟରୁ କେତୋଟି ମାତ୍ର ଏଠାରେ ଉଲ୍ଲିଖିତ ହେଲା ।

# ବେଦାନ୍ତ ଓ ଅଧିକାର

[ ଲଣ୍ଡନରେ ପ୍ରଦତ୍ତ ]

ଆମେ ଅଦ୍ୱୈତ ବେଦାନ୍ତର ତତ୍ତ୍ୱାଂଶ ପ୍ରାୟ ଶେଷ କରିଅଛୁ । ଗୋଟିଏ ବିଷୟ ବର୍ତ୍ତମାନ ମଧ୍ୟ ବାକି ଅଛି, ବୋଧହୁଏ ଏହା ସର୍ବାପେକ୍ଷା ଦୁରୂହ । ଏପର୍ଯ୍ୟନ୍ତ ଆମେ ଦେଖିଅଛୁ, ଅଦ୍ୱୈତ ବେଦାନ୍ତ ଅନୁସାରେ ଆମମାନଙ୍କର ଚତୁର୍ଦ୍ଦିଗରେ ଦୃଶ୍ୟମାନ ସମଗ୍ର ଜଗତ ସେହି ଏକ ସତ୍ତ୍ୱର ବିବର୍ତ୍ତନ । ସଂସ୍କୃତରେ ଏହି ସତ୍ତ୍ୱକୁ 'ବ୍ରହ୍ମ' କୁହାଯାଏ । ବ୍ରହ୍ମ ପ୍ରପଞ୍ଚରେ ପରିବର୍ତ୍ତିତ ହୋଇଛନ୍ତି । କିନ୍ତୁ ଏଥିରେ ଗୋଟିଏ ଅସୁବିଧା ମଧ୍ୟ ଅଛି । ବ୍ରହ୍ମଙ୍କ ପକ୍ଷରେ ବିଶ୍ୱପ୍ରକୃତିରେ ରୂପାନ୍ତରିତ ହେବା କିପରି ସମ୍ଭବ ? କାହିଁକି ବା ବ୍ରହ୍ମ ବିବର୍ତ୍ତିତ ହେଲେ ? ସଙ୍କାରୁ ହିଁ ବୁଝାଯାଏ ଯେ ବ୍ରହ୍ମ ଅପରିଣାମୀ । ଅପରିବର୍ତ୍ତନୀୟ ବସ୍ତୁର ପରିବର୍ତ୍ତନ ଗୋଟିଏ ସ୍ୱବିରୋଧୀ ଉକ୍ତି । ଯେଉଁମାନେ ସଗୁଣ ଈଶ୍ୱରରେ ବିଶ୍ୱାସୀ, ସେମାନଙ୍କର ମଧ୍ୟ ସେହି ଗୋଟିଏ ଅସୁବିଧା । ଦୃଷ୍ଟାନ୍ତସ୍ୱରୂପ ସେମାନଙ୍କୁ ମଧ୍ୟ ଆମେ ପଚାରିପାରୁ—କିପରି ଭାବରେ ଏ ସୃଷ୍ଟିର ଉଦ୍ଭବ ହେଲା ? ଏହା ନିଶ୍ଚୟ କୌଣସି ସତ୍ତ୍ୱଶୂନ୍ୟ ପଦାର୍ଥରୁ ଉତ୍ପନ୍ନ ହୋଇନାହିଁ; ତା ହେଲେ ଏହା ସ୍ୱବିରୋଧୀ ହେବ । ଗୋଟିଏ ସତ୍ତ୍ୱଶୂନ୍ୟ ପଦାର୍ଥରୁ କୌଣସି ବସ୍ତୁର ଉଦ୍ଭବ ହେବା ଅସମ୍ଭବ । କାର୍ଯ୍ୟ ହିଁ କାରଣର ଅନ୍ୟତମ ରୂପମାତ୍ର । ବୀଜରୁ ବୃକ୍ଷ ଉତ୍ପନ୍ନ ହୁଏ । ବୃକ୍ଷଟି ବାୟୁ ଓ ଜଳଦ୍ୱାରା ପରିପୁଷ୍ଟ ବୀଜ ବ୍ୟତୀତ ଅନ୍ୟ କିଛି ନୁହେଁ । ବୃକ୍ଷ-ଉପାଦାନର ଗଠନ ନିମିତ୍ତ ଯେଉଁ ପରିମାଣର ବାୟୁ ଓ ଜଳର ପ୍ରୟୋଜନ, ତାହା ନିର୍ଦ୍ଧାରଣ କରିବାର ଯଦି କୌଣସି ଉପାୟ ଥାଆନ୍ତା, ତା'ହେଲେ ଆମେ ଦେଖନ୍ତୁ—କାର୍ଯ୍ୟରୂପକ ବୃକ୍ଷରେ ଯେଉଁ ପରିମାଣ ଜଳ ଓ ବାୟୁ ଅଛି, ତାହାର କାରଣସ୍ୱରୂପ ଜଳ ଓ ବାୟୁର ପରିମାଣ ମଧ୍ୟ ଠିକ୍ ତଦ୍ରୂପ । ଆଧୁନିକ ବିଜ୍ଞାନ ମଧ୍ୟ ନିଃସନ୍ଦେହରେ ପ୍ରମାଣ କରିଅଛି ଯେ, କାରଣ ହିଁ ଅନ୍ୟ ଆକାରରେ କାର୍ଯ୍ୟରେ ପରିଣତ ହେଉଅଛି । କାରଣର ବିଭିନ୍ନ ସମନ୍ୱିତ ଅଂଶ ପରିବର୍ତ୍ତନ ମଧ୍ୟଦେଇ କାର୍ଯ୍ୟରେ ପରିଣତ ହୁଏ । ଜଗତ କାରଣହୀନ—ଏପରି ଅବାସ୍ତବ କଳ୍ପନା ଆମମାନଙ୍କୁ ବର୍ଜନ କରିବାକୁ ହେବ । ସୁତରାଂ ଆମମାନଙ୍କୁ ସ୍ୱୀକାର କରିବାକୁ ହେବ ଯେ, ଈଶ୍ୱର ହିଁ ଜଗଦ୍‌ରୂପେ ପରିଣତ ହୋଇଛନ୍ତି ।

କିନ୍ତୁ ଆମେମାନେ ଗୋଟିଏ ସଙ୍କଟରୁ ନିଷ୍କୃତି ପାଇ ଅନ୍ୟ ଗୋଟିଏ ସଙ୍କଟରେ ପତିତ ହେଲୁ । ପ୍ରତ୍ୟେକ ମତବାଦରେ ହିଁ ଈଶ୍ୱରଙ୍କ ଧାରଣା ସହିତ ତାଙ୍କର ଅପରିଣାମିତ୍ୱର ଧାରଣା ଓତଃପ୍ରୋତଭାବେ ଜଡ଼ିତ—ଗୋଟିଏ ମାଧ୍ୟମରେ ଅନ୍ୟଟି ଆସି ପହଞ୍ଚେ । ଅତି ଆଦିମ ଧରଣର ଈଶ୍ୱରାନୁସନ୍ଧାନରେ ମଧ୍ୟ ଗୋଟିଏ ଧାରଣା ଆମେ ଲକ୍ଷ୍ୟ କରୁ—ତାହା ହେଲ ମୁକ୍ତି । ଏ ଧାରଣା କିପରି ଭାବରେ ଆସିଲା ? ତାହାର ଐତିହାସିକ କ୍ରମ-ପରିଣତି ଆମେ ଦେଖିଅଛୁ । ମୁକ୍ତି ଓ ଅପରିଣାମିତ୍ୱ ଏକ କଥା । ଯାହା ମୁକ୍ତ, ତାହା ହିଁ

ଅପରିଣାମୀ । ଯାହା ଅପରିଣାମୀ, ତାହା ହିଁ ମୁକ୍ତ । କୌଣସି ଜିନିଷର କୌଣସି ପ୍ରକାର ପରିବର୍ତ୍ତନ ହେଲେ ତା' ଭିତରେ ବା ବାହାରେ ଏପରି କିଛି ଅଛି, ଯାହା ଏହି ବସ୍ତୁର ପାରିପାର୍ଶ୍ୱିକ ଅବସ୍ଥା ବା ଏହି ବସ୍ତୁ ଅପେକ୍ଷା ଅଧିକତର ଶକ୍ତିଶାଳୀ । ଯାହା ପରିବର୍ତ୍ତନଶୀଳ, ତାହା ଏହିପରି ଏକ ବା ଏକାଧିକ କାରଣଦ୍ୱାରା ବଦ୍ଧ, ଯାହା ସ୍ୱୟଂ ପରିବର୍ତ୍ତନଶୀଳ । ଯଦି ମନେ କରାହୁଏ ଯେ ଈଶ୍ୱର ହିଁ ଜଗତ୍ ହୋଇଛନ୍ତି, ତା'ହେଲେ ଈଶ୍ୱର ତାଙ୍କର ସ୍ୱରୂପ ପରିବର୍ତ୍ତନ କରିଛନ୍ତି । ପୁଣି ଯଦି ମନେ କରୁ, ଅନନ୍ତ ବ୍ରହ୍ମ ଏହି ସାନ୍ତ ଜଗତ ହୋଇ-ଅଛନ୍ତି, ତା'ହେଲେ ବ୍ରହ୍ମଙ୍କର ଅସୀମତ୍ୱ ମଧ୍ୟ ତଦନୁସାରେ ହ୍ରାସପ୍ରାପ୍ତ ହେଲା; ସୁତରାଂ ତାଙ୍କର ଅସୀମତ୍ୱରୁ ଏହି ଜଗତ୍ ଅଲଗା ବୋଲି ବୁଝିବାକୁ ହେବ । ପରିଣାମୀ ଈଶ୍ୱର ଈଶ୍ୱର ହୋଇପାରନ୍ତି ନାହିଁ । ଈଶ୍ୱର ଜଗତରେ ପରିଣତ ହୁଅନ୍ତି—ଏହି ମତବାଦର ଦାର୍ଶନିକ ବ୍ୟାଖ୍ୟା କରିବା ପାଇଁ ବେଦାନ୍ତର ଗୋଟିଏ ନିର୍ଭୀକ ମତବାଦ ଅଛି । ତାହା ହେଉଛି, ଜଗତକୁ ଆମେ ଯେଉଁ ଭାବରେ ଜାଣୁ ବା ତା' ସମ୍ବନ୍ଧରେ ଯେଉଁ ଭାବରେ ଆମେ ଚିନ୍ତା କରୁ, ସେହିଭାବରେ ତା'ର କୌଣସି ଅସ୍ତିତ୍ୱ ନାହିଁ । ବେଦାନ୍ତ କହେ, ସେହି ଅପରିଣାମୀର କୌଣସି ପରିବର୍ତ୍ତନ ହୋଇ ନାହିଁ, ଏହି ସମଗ୍ର ଜଗତ୍ ଗୋଟିଏ ପ୍ରାତିଭାସିକ ସତ୍ତା ମାତ୍ର, ଏହାର କୌଣସି ବାସ୍ତବ ସତ୍ତା ନାହିଁ । ବେଦାନ୍ତ କହେ, ଆମମାନଙ୍କର ଏହି ଅଂଶର ଧାରଣା, କ୍ଷୁଦ୍ର କ୍ଷୁଦ୍ର ବସ୍ତୁର ଧାରଣା ଏବଂ ସେମାନଙ୍କର ପାରସ୍ପରିକ ପୃଥକ୍ତ୍ୱର ଧାରଣା ବାହ୍ୟିକ, ଏଗୁଡ଼ିକର କୌଣସି ପାରମାର୍ଥିକ ସତ୍ତା ନାହିଁ । ଈଶ୍ୱରଙ୍କର କୌଣସି ପରିବର୍ତ୍ତନ ହୋଇନାହିଁ, ସେ ଜଗତରୂପେ କେବେହେଲେ ପରିଣତ ହୁଅନ୍ତି ନାହିଁ । ଆମେ ଈଶ୍ୱରଙ୍କୁ ଯେ ଜଗତରୂପେ ଦେଖିଥାଉ, ତାହାର କାରଣ ଆମେ ଦେଶ, କାଳ ଓ ନିମିତ୍ତର ମାଧ୍ୟମରେ ତାହାଙ୍କୁ ଦେଖୁ । ଏହି ଦେଶ କାଳ ଓ ନିମିତ୍ତ ହିଁ ଏହି ଆପାତ-ପ୍ରତୀୟମାନ ପାର୍ଥକ୍ୟ ସୃଷ୍ଟି କରେ, କିନ୍ତୁ ତାହା ପାରମାର୍ଥିକ ନୁହେଁ । ଏହା ପ୍ରକୃତ ପକ୍ଷରେ ଏକ ନିର୍ଭୀକ ମତବାଦ । ବର୍ତ୍ତମାନ ଏହି ମତବାଦଟି ଆମକୁ ଆହୁରି ପରିଷ୍କାର ଭାବରେ ବୁଝିବାକୁ ହେବ । ଭାବବାଦ (Idealism) ସାଧାରଣତଃ ଯେଉଁ ଅର୍ଥରେ ଗୃହୀତ ହୁଏ, ଏହା ସେପରି ନୁହେଁ । ଏହା କହେ ନାହିଁ ଯେ, ଏ ଜଗତର କୌଣସି ଅସ୍ତିତ୍ୱ ନାହିଁ; ଏହା କହେ ଯେ, ଏହାର ଅସ୍ତିତ୍ୱ ଅଛି ସତ୍ୟ, କିନ୍ତୁ ଏହାକୁ ଆମେ ଯେଉଁ ଭାବରେ ଦେଖୁଅଛୁ ଏହା ଠିକ୍ ତାହା ନୁହେଁ । ଏହି ତତ୍ତ୍ୱଟି ବୁଝାଇବା ପାଇଁ ଅଦ୍ୱୈତ ବେଦାନ୍ତ ଗୋଟିଏ ସୁବିଦିତ ଉଦାହରଣ ଦିଅନ୍ତି । ଅନ୍ଧାରରେ ପଡ଼ିଥିବା ଗୋଟିଏ ଗଛର ଗଣ୍ଡିକୁ କୁସଂସ୍କାରାଚ୍ଛନ୍ନ ବ୍ୟକ୍ତି ଭୂତ ବୋଲି ମନେକରେ, ଦସ୍ୟୁ ମନେକରେ ଏହା ପୁଲିସ, ବନ୍ଧୁ ପାଇଁ ଅପେକ୍ଷମାଣ ବ୍ୟକ୍ତି ମନେ କରେ ଏହା ତାଙ୍କର ବନ୍ଧୁ । ଏଥିପାଇଁ କିନ୍ତୁ କାଠଗଣ୍ଡିର କୌଣସି ପରିବର୍ତ୍ତନ ହୁଏ ନାହିଁ, ଯଦିଓ କେତେଗୁଡ଼ିଏ ଆପାତ-ପ୍ରତୀୟମାନ ପରିବର୍ତ୍ତନ ଭିନ୍ନ ଭିନ୍ନ ଦର୍ଶକଙ୍କ ମନରେ ଘଟିଥାଏ । ମନୋବିଜ୍ଞାନର ସାହାଯ୍ୟରେ ନିଜ ଅନୁଭୂତ (subjective) ଦିଗରୁ ଏହା ଆମେ ଆହୁରି ସ୍ପଷ୍ଟ ଭାବରେ ବୁଝିପାରୁ । ଆମମାନଙ୍କ ବାହାରେ ଏପରି ଗୋଟିଏ

କିଛି ଅଛି, ଯାହାର ଯଥାର୍ଥ ସ୍ୱରୂପ ଆମମାନଙ୍କ ନିକଟରେ ଅଜ୍ଞାତ ଓ ଅଜ୍ଞେୟ; ମନେକର ଏହା 'କ' । ଆମମାନଙ୍କ ଭିତରେ ମଧ୍ୟ ଏପରି କିଛି ଅଛି ଯାହା ଆମମାନଙ୍କ ନିକଟରେ ଅଜ୍ଞାତ ଓ ଅଜ୍ଞେୟ, ଏହାକୁ କୁହାଯାଉ 'ଖ' । ଜ୍ଞେୟ ବସ୍ତୁ ମାତ୍ରେ ହିଁ ଏହି 'କ' ଏବଂ 'ଖ'ର ସମଷ୍ଟି; ସୁତରାଂ ଆମେ ଯେଉଁସବୁ ବସ୍ତୁ ଜାଣୁ, ସେଗୁଡ଼ିକର ଦୁଇଟି ଅଂଶ ଅବଶ୍ୟ ହିଁ ରହିବ—'କ' ବହିର୍ଭାଗରେ ଏବଂ 'ଖ' ଅନ୍ତର୍ଭାଗରେ ଏବଂ 'କ' ଓ 'ଖ'-ର ସମଷ୍ଟିଲବ୍ଧ ବସ୍ତୁକୁ ହିଁ ଆମେ ଜାଣିବାକୁ ସମର୍ଥ ହେଉ । ଅତଏବ ଜଗତର ପ୍ରତ୍ୟେକ ଦୃଶ୍ୟମାନ ବସ୍ତୁ ଆଂଶିକଭାବେ ଆମମାନଙ୍କର ନିଜର ସୃଷ୍ଟି ଏବଂ ତାହାର ଅପର ଅଂଶଟି ବାହ୍ୟ । ବେଦାନ୍ତ କହେ, ଏହି 'କ' ଏବଂ 'ଖ' ଏକ ଅଖଣ୍ଡ ସତ୍ତା ।

ହାର୍ବର୍ଟ ସ୍ପେନ୍ସର୍ ପ୍ରମୁଖ କୌଣସି କୌଣସି ପାଶ୍ଚାତ୍ୟ ଦାର୍ଶନିକ ଓ ଅନ୍ୟ କେତେଜଣ ଆଧୁନିକ ଦାର୍ଶନିକ ମଧ୍ୟ ଠିକ୍ ଏହିପରି ସିଦ୍ଧାନ୍ତରେ ଉପନୀତ ହୋଇଅଛନ୍ତି । ଜଣେ ଦାର୍ଶନିକ ଯେତେବେଳେ କହନ୍ତି ଯେ, ଯେଉଁ ଶକ୍ତି ପୁଷ୍ପ ମଧ୍ୟରେ ଆତ୍ମପ୍ରକାଶ କରୁଅଛି, ତାହା ହିଁ ମୋର ଚେତନା ମଧ୍ୟରେ ସ୍ପନ୍ଦିତ ହେଉଛି, ସେତେବେଳେ ଜଣେ ବୈଦାନ୍ତିକଙ୍କର ମତ ମଧ୍ୟ ଏହିପରି, ତାହା ବୁଝିବାକୁ ହେବ । ସେମାନେ କହନ୍ତି, ବହିର୍ଜଗତର ସତ୍ୟତା ଏବଂ ଅନ୍ତର୍ଜଗତର ସତ୍ୟତା ଏକ । ଏପରି କି ବହିର୍ଜଗତ ଓ ଅନ୍ତର୍ଜଗତ ସମ୍ବନ୍ଧରେ ଆମର ଯେଉଁ ଧାରଣା, ତାହା ଆମମାନଙ୍କର ହିଁ ସୃଷ୍ଟି । ଆମେ ସେମାନଙ୍କୁ ପରସ୍ପରଠାରୁ ପୃଥକ୍ କରିଅଛୁ । ବସ୍ତୁତଃ ବାହ୍ୟଜଗତର ବା ଅନ୍ତର୍ଜଗତର କୌଣସି ସ୍ୱତନ୍ତ୍ର ଅସ୍ତିତ୍ୱ ନାହିଁ । ଉଦାହରଣସ୍ୱରୂପ କୁହାଯାଇପାରେ, ଆମର ଯଦି ଆଉ ଗୋଟିଏ ଅଧିକା ଇନ୍ଦ୍ରିୟ ଆଆନ୍ତା, ତେବେ ସମଗ୍ର ଜଗତ୍ ଆମମାନଙ୍କ ନିକଟରେ ପରିବର୍ତ୍ତିତ ହୋଇଯାଆନ୍ତା । ଏହାଦ୍ୱାରା ପ୍ରମାଣିତ ହୁଏ, ଆମର ମନ ଆମର ଅନୁଭୂତ ବିଷୟକୁ ପରିବର୍ତ୍ତିତ କରେ । ମୁଁ ଯଦି ପରିବର୍ତ୍ତିତ ହୁଏ, ତେବେ ବାହ୍ୟଜଗତ ମଧ୍ୟ ପରିବର୍ତ୍ତିତ ହେବ । ସୁତରାଂ ବେଦାନ୍ତର ସିଦ୍ଧାନ୍ତ ହେଉଛି ତୁମେ, ମୁଁ ଏବଂ ବିଶ୍ୱର ସର୍ବବସ୍ତୁ ହିଁ ସେହି ନିରତିଶୟ ବ୍ରହ୍ମ, ଆମେ ବ୍ରହ୍ମଙ୍କ ଅଂଶବିଶେଷ ନୋହୁଁ, ଆମେ ପୂର୍ଣ୍ଣ ବ୍ରହ୍ମ । ତୁମେ ସମ୍ପୂର୍ଣ୍ଣଭାବେ ସେହି ବ୍ରହ୍ମ, ଅନ୍ୟ ସମସ୍ତେ ମଧ୍ୟ ତାହା । କାରଣ ଏହି ଅଖଣ୍ଡ ସତ୍ତାର ଅଂଶ ରହି ନ ପାରେ । ଏହି ସକଳ ଜାଗତିକ ବିଭାଗ, ଏହି ସକଳ ସସୀମତ୍ୱ ପ୍ରତୀତି ମାତ୍ର, ସ୍ୱରୂପତଃ ଅସମ୍ଭବ । ମୁଁ ସ୍ୱୟଂସମ୍ପୂର୍ଣ୍ଣ, ସର୍ବାଙ୍ଗସୁନ୍ଦର; ମୁଁ କେବେହେଲେ ବଦ୍ଧ ହୋଇ ନାହିଁ । ବେଦାନ୍ତ ନିର୍ଭୀକଭାବେ ପ୍ରଚାର କରନ୍ତି : ତୁମେ ଯଦି ମନେକର—ତୁମେ ବଦ୍ଧ, ତା' ହେଲେ ତୁମେ ବଦ୍ଧ ରହିଯିବ; ତୁମେ ଯଦି ବୁଝିଥାଅ—ତୁମେ ମୁକ୍ତ, ତେବେ ତୁମେ ମୁକ୍ତ ହେବ । ସୁତରାଂ ଏ ଦର୍ଶନର ଏକମାତ୍ର ଲକ୍ଷ୍ୟ ହେଲା, ଆମମାନଙ୍କୁ ବୁଝାଇ ଦେବା ଯେ, ଆମେମାନେ ସର୍ବଦା ହିଁ ମୁକ୍ତ ଥିଲୁ ଏବଂ ଚିରଦିନ ମୁକ୍ତ ହିଁ ରହିବୁ । ଆମମାନଙ୍କର କୌଣସି ପରିବର୍ତ୍ତନ ହୁଏ ନାହିଁ । ଆମମାନଙ୍କର ମୃତ୍ୟୁ ନାହିଁ । ଆମେ କେବେହେଲେ ଜନ୍ମଗ୍ରହଣ କରୁ ନାହୁଁ । ତା'ହେଲେ ଏହି ପରିବର୍ତ୍ତନସମୂହ କଅଣ ? ଏହି ବାହ୍ୟଜଗତର ଅବସ୍ଥା କଅଣ ହେବ ? ଏହି ଜଗତ୍ ଗୋଟିଏ ପ୍ରାତିଭାସିକ ଜଗତ୍‌ମାତ୍ର—ଏହା ଦେଶ,

କାଳ ଓ ନିମିତ୍ତଦ୍ୱାରା ବଦ୍ଧ । ବେଦାନ୍ତ ଦର୍ଶନରେ ଏହାକୁ 'ବିବର୍ତ୍ତବାଦ' କୁହାଯାଏ । ପ୍ରକୃତିର ଏହି କ୍ରମବିକାଶ ମଧ୍ୟ ଦେଇ ବ୍ରହ୍ମ ପ୍ରକାଶିତ ହେଉଅଛନ୍ତି । ବ୍ରହ୍ମଙ୍କର କୌଣସି ପରିବର୍ତ୍ତନ ନାହିଁ । ତାଙ୍କର କୌଣସି ପରିଣାମ ମଧ୍ୟ ନାହିଁ । ଅତି କ୍ଷୁଦ୍ର ଜୀବକୋଷରେ ମଧ୍ୟ ସେହି ଅନନ୍ତ ପୂର୍ଣ୍ଣବ୍ରହ୍ମ ହିଁ ଅନ୍ତର୍ନିହିତ । ବାହ୍ୟ ଆବରଣ ହେତୁ ଏହାକୁ 'ଜୀବକୋଷ' କୁହାଯାଏ । କିନ୍ତୁ ଜୀବକୋଷରୁ ଆରମ୍ଭ କରି ମହାମାନବ ପର୍ଯ୍ୟନ୍ତ ସମସ୍ତଙ୍କର ଆଭ୍ୟନ୍ତରସ୍ଥ ବସ୍ତୁର କୌଣସି ପରିବର୍ତ୍ତନ ନାହିଁ—ଏହା ଏକ ଓ ଅପରିବର୍ତ୍ତିନୀୟ; କେବଳ ବାହାରର ଆବରଣରେ ହିଁ ପରିବର୍ତ୍ତନ ଘଟିଥାଏ ।

ଧରିଯାଉ—ଏଠାରେ ଗୋଟିଏ ପର୍ଦ୍ଦା ରହିଛି ଏବଂ ତା' ବାହାରେ ରହିଛି ଅତି ସୁନ୍ଦର ଦୃଶ୍ୟ । ପର୍ଦ୍ଦା ମଧ୍ୟରେ ଅଛି ଗୋଟିଏ ସୂକ୍ଷ୍ମ ଛିଦ୍ର; ଏହା ମଧ୍ୟ ଦେଇ ଆମେ ବାହାର ଦୃଶ୍ୟର କେତେକାଂଶ ଦେଖିପାରୁଛୁ । ମନେ କରନ୍ତୁ—ଏହି ଛିଦ୍ରଟି ବଢ଼ିବାକୁ ଲାଗିଲା, ଏହା ଯେତେ ବଡ଼ ହେବାକୁ ଲାଗିଲା ଦୃଶ୍ୟଟି ସେତେ ଅଧିକ ଆମ ଦୃଷ୍ଟିକୁ ଆସିବାକୁ ଲାଗିଲା । ପର୍ଦ୍ଦାଟି ଯେତେବେଳେ ତିରୋହିତ ହେଲା, ସେତେବେଳେ ଆମେ ସମଗ୍ର ଦୃଶ୍ୟଟିର ସମ୍ମୁଖୀନ ହେଲୁ । ବାହାରର ଦୃଶ୍ୟଟି ହେଲା ଆତ୍ମା, ଆମେ ଓ ଦୃଶ୍ୟ ମଧ୍ୟରେ ଯେଉଁ ପର୍ଦ୍ଦାଟି ଅଛି ତାହା ମାୟା—ଅର୍ଥାତ୍ ଦେଶ, କାଳ ଓ ନିମିତ୍ତ । ତାହାର କେଉଁଠି ଟିକିଏ ଛିଦ୍ର ଅଛି, ଯାହା ଭିତର ଦେଇ ମୁଁ ଆତ୍ମାକୁ ଝଲକେ ମାତ୍ର ଦେଖିବାକୁ ପାଉଅଛି । ଛିଦ୍ରଟି ବଡ଼ ହେଲେ ମୁଁ ଆତ୍ମାକୁ ଆହୁରି ପରିଷ୍କାର ଭାବରେ ଦେଖିପାରିବି; ପୁଣି ଯେତେବେଳେ ପର୍ଦ୍ଦାଟି ସମ୍ପୂର୍ଣ୍ଣ ତିରୋହିତ ହୋଇଯିବ, ସେତେବେଳେ ମୁଁ ଅନୁଭବ କରିବି ଯେ ମୁଁ ଆତ୍ମସ୍ୱରୂପ । ସୁତରାଂ ନିର୍ଗୁଣ ବ୍ରହ୍ମଙ୍କର କୌଣସି ଜାଗତିକ ପରିବର୍ତ୍ତନ ହୁଏ ନାହିଁ—ତାହା ହୁଏ ପ୍ରକୃତିର । ଯେତେବେଳେଯାଏ ବ୍ରହ୍ମ ସ୍ୱ ସ୍ୱରୂପରେ ପ୍ରକାଶିତ ନ ହୁଅନ୍ତି, ସେତେବେଳେଯାଏ ପ୍ରକୃତିର କ୍ରମବିବର୍ତ୍ତନ ଚାଲୁଥାଏ । ସମସ୍ତଙ୍କ ମଧ୍ୟରେ ବ୍ରହ୍ମ ରହିଅଛନ୍ତି, କେବଳ କାହାର କାହାର ମଧ୍ୟରେ ଅନ୍ୟମାନଙ୍କ ତୁଳନାରେ ସେ ଅଧିକ ପ୍ରକାଶିତ । ସମଗ୍ର ଜଗତ ପରମାର୍ଥତଃ ଏକ । ଏକ ଆତ୍ମା ଅନ୍ୟ ଆତ୍ମା ଅପେକ୍ଷା ବଡ଼—ଏପରି କହିବା ନିରର୍ଥକ । ଇତରପ୍ରାଣୀ ବା ଉଦ୍ଭିଦ ଅପେକ୍ଷା ମନୁଷ୍ୟ ବଡ଼, ଏକଥା କହିବା ନିରର୍ଥକ । ସମଗ୍ର ଜଗତ୍ ଏକ । ଉଦ୍ଭିଦ ମଧ୍ୟରେ ତା'ର ଆତ୍ମପ୍ରକାଶର ବାଧା ଖୁବ୍ ବେଶୀ, ଇତର ପ୍ରାଣୀ ମଧ୍ୟରେ ଏହା ଟିକିଏ କମ୍ ; ମନୁଷ୍ୟ ମଧ୍ୟରେ ଆହୁରି କମ୍, ସଂସ୍କୃତିସମ୍ପନ୍ନ ଆଧ୍ୟାତ୍ମିକ ବ୍ୟକ୍ତିଙ୍କଠାରେ ତଦପେକ୍ଷା କମ୍, କେବଳ ପୂର୍ଣ୍ଣ ବ୍ୟକ୍ତିଙ୍କଠାରେ ଆତ୍ମପ୍ରକାଶର ବାଧା ସମ୍ପୂର୍ଣ୍ଣରୂପେ ତିରୋହିତ ହୋଇଅଛି । ଆମମାନଙ୍କର ସମ୍ପୂର୍ଣ୍ଣ ସଂଗ୍ରାମ, ପ୍ରଚେଷ୍ଟା, ସୁଖଦୁଃଖ, ହସକାନ୍ଦ, ଆମର ସକଳ ଚିନ୍ତା ଓ କାର୍ଯ୍ୟର ଲକ୍ଷ୍ୟ ସେହି ଏକ—ପର୍ଦ୍ଦାଟିକୁ ଛିନ୍ନ କରିବା, ଛିଦ୍ରଟିକୁ ବୃହତ୍ତର କରିବା, ଅଭିବ୍ୟକ୍ତ ଓ ଅନ୍ତରାଳରେ ଅବସ୍ଥିତ ସତ୍ୟ ମଧ୍ୟରେ ଥିବା ଆବରଣକୁ କ୍ଷୀଣରୁ କ୍ଷୀଣତର କରିବା । ସୁତରାଂ ଆମମାନଙ୍କର କାର୍ଯ୍ୟ, ଆତ୍ମାର ମୁକ୍ତିସାଧନ ନୁହେଁ, ଆମ ନିଜକୁ ବନ୍ଧନମୁକ୍ତ କରିବା । ସୂର୍ଯ୍ୟ ମେଘସ୍ତରଦ୍ୱାରା ଆବୃତ, କିନ୍ତୁ ମେଘ ସୂର୍ଯ୍ୟଙ୍କର

କୌଣସି ପରିବର୍ତ୍ତନ କରିପାରେ ନାହିଁ । ବାୟୁର କାର୍ଯ୍ୟ ମେଘଗୁଡ଼ିକୁ ଘୁଞ୍ଚାଇ ଦେବା; ମେଘଗୁଡ଼ିକ ଯେତେ ଘୁଞ୍ଚିଯିବ ସୂର୍ଯ୍ୟାଲୋକ ସେତେ ପ୍ରକାଶ ପାଇବ । ଆତ୍ମାର କୌଣସି ପରିବର୍ତ୍ତନ ନାହିଁ—ଏହା ଅନନ୍ତ, ନିତ୍ୟ, ନିରତିଶୟ ସଚ୍ଚିଦାନନ୍ଦସ୍ୱରୂପ । ଆତ୍ମାର କୌଣସି ଜନ୍ମ ବା ମୃତ୍ୟୁ ହୋଇପାରେ ନାହିଁ । ଜନ୍ମ, ମୃତ୍ୟୁ, ପୁନର୍ଜନ୍ମ, ସ୍ୱର୍ଗଗମନ—ଏସବୁ ଆତ୍ମାର ଧର୍ମ ନୁହେଁ । ଏଗୁଡ଼ିକ କେବଳ ଆପାତପ୍ରତୀୟମାନ ଅଭିବ୍ୟକ୍ତି ମାତ୍ର—ଏହା ମରୀଚିକା ବା ସ୍ୱପ୍ନତୁଲ୍ୟ । ଧରିଯାଉ, ଜଣେ ବ୍ୟକ୍ତି ସ୍ୱପ୍ନ ଦେଖୁଛନ୍ତି—ସେ ବର୍ତ୍ତମାନ ଦୁର୍ଭାବନା ଏବଂ ଦୁଷ୍କର୍ମର ସ୍ୱପ୍ନ ଦେଖୁଛନ୍ତି; କିଛି ସମୟ ପରେ ସେହି ସ୍ୱପ୍ନର ଭାବନା ହିଁ ପରବର୍ତ୍ତୀ ସ୍ୱପ୍ନର ସୃଷ୍ଟି କରିବ; ସେ ଦେଖିବ, ସେ ଗୋଟିଏ ଭୟଙ୍କର ସ୍ଥାନରେ ରହିଅଛି ଏବଂ ନିର୍ଯ୍ୟାତିତ ହେଉଅଛି । ଯେଉଁ ବ୍ୟକ୍ତି ଶୁଭଭାବନା ଓ ଶୁଭକର୍ମର ସ୍ୱପ୍ନ ଦେଖୁଅଛି, ସେ ଏହି ସ୍ୱପ୍ନର ଅବସାନାନ୍ତେ ଦେଖିବ ଯେ, ସେ ଆହୁରି ଭଲ ସ୍ଥାନରେ ରହିଅଛି । ଏହିପରି ସ୍ୱପ୍ନ ପରେ ସ୍ୱପ୍ନ ଆସିଥାଏ । କିନ୍ତୁ ଏପରି ଏକ ସମୟ ଆସିବ, ଯେତେବେଳେ ଏ ସ୍ୱପ୍ନଗୁଡ଼ିକ ଲୋପ ପାଇଯିବ । ଆମସ୍ତଙ୍କର ଏପରି ଏକ ସମୟ ନିଶ୍ଚୟ ଆସିବ, ଯେତେବେଳେ ମନେ ହେବ ସମଗ୍ର ଜଗତ ସ୍ୱପ୍ନମାତ୍ର; ସେତେବେଳେ ଆମେ ଦେଖିବାକୁ ପାଇବା—ଆତ୍ମା ତାହାର ଏହି ପରିବେଶରୁ ଅନନ୍ତ ଗୁଣରେ ବଡ଼ । ଏହି ପରିବେଶ ମଧ୍ୟଦେଇ ସଂଗ୍ରାମ କରୁ କରୁ ଏପରି ଏକ ସମୟ ଆସିବ, ଯେତେବେଳେ ଆମେ ଦେଖିବୁ—ଅନନ୍ତ ଶକ୍ତିସମ୍ପନ୍ନ ଆତ୍ମାଙ୍କ ତୁଳନାରେ ଏହି ପରିବେଶଗୁଡ଼ିକ ଅର୍ଥହୀନ । ଅବଶ୍ୟ ଏ ପ୍ରକାର ଅନୁଭୂତି ସମୟସାପେକ୍ଷ । ଅନନ୍ତଙ୍କ ତୁଳନାରେ କାଳ କିଛି ନୁହେଁ, ଏହା ସମୁଦ୍ର ମଧ୍ୟରେ ବିନ୍ଦୁ ତୁଲ୍ୟ । ସୁତରାଂ ଶାନ୍ତ ଭାବରେ ଆମେ ଅପେକ୍ଷା କରିବା ।

ଅତଏବ ଆମର ଜ୍ଞାତ ବା ଅଜ୍ଞାତସାରରେ ସମଗ୍ର ଜଗତ୍ ସେହି ଲକ୍ଷ୍ୟ ଦିଗକୁ ଅଗ୍ରସର ହେଉଅଛି । ଚନ୍ଦ୍ର ଅନ୍ୟାନ୍ୟ ଗ୍ରହମାନଙ୍କର ମାଧ୍ୟାକର୍ଷଣ-କ୍ଷେତ୍ରରୁ ବାହାରି ଯିବା ପାଇଁ ଚେଷ୍ଟା କରୁଅଛି; ଦିନେ ନା ଦିନେ ଏହା ନିଶ୍ଚୟ ବାହାରିଯିବ । କିନ୍ତୁ ଯେଉଁମାନେ ଜ୍ଞାତସାରରେ ମୁକ୍ତ ହେବା ପାଇଁ ଚେଷ୍ଟା କରୁଛନ୍ତି, ସେମାନେ ଅତିଶୀଘ୍ର କୃତକାର୍ଯ୍ୟ ହେବେ । କାର୍ଯ୍ୟତଃ ଏହି ବୈଦାନ୍ତିକ ମତବାଦର ଗୋଟିଏ ସୁବିଧା ଏହି ଯେ, ଯଥାର୍ଥ ବିଶ୍ୱପ୍ରେମର ଧାରଣା କେବଳ ଏହି ଦୃଷ୍ଟିକୋଣରୁ ହିଁ ସମ୍ଭବ । ସମସ୍ତେ ହିଁ ଆମର ସହଯାତ୍ରୀ, ସମସ୍ତେ ହିଁ ଏକ ପଥର ପଥିକ—ସକଳ ଜୀବନ, ସକଳ ଉଦ୍ଭିଦ, ସକଳ ପ୍ରାଣୀ—ସମସ୍ତେ ସେହି ଦିଗକୁ ଯାଉଛନ୍ତି । କେବଳ ମଣିଷ ଯେ ମୋର ଭାଇ ତାହା ନୁହେଁ, ବରଂ ଜୀବଜନ୍ତୁଗଣ, ବୃକ୍ଷଲତାଦି ଉଦ୍ଭିଦସକଳ ମଧ୍ୟ ସମସ୍ତେ ସେହି ଦିଗକୁ ହିଁ ଗ୍ଲୁଛନ୍ତି; କେବଳ ମୋର ଭଲ ଭାଇଟି ନୁହେଁ, ମୋର ଖରାପ ଭାଇଟି ମଧ୍ୟ । କେବଳ ମୋର ଧାର୍ମିକ ଭାଇଟି ନୁହେଁ, ମୋର ଦୁର୍ବୃତ୍ତ ଭାଇଟି ମଧ୍ୟ—ସମସ୍ତେ ସେହି ଏକ ଲକ୍ଷ୍ୟକୁ ଯାଉଛନ୍ତି । ପ୍ରତ୍ୟେକେ ଏକ ପ୍ରବାହରେ ଭାସମାନ, ପ୍ରତ୍ୟେକେ ହିଁ ଅନନ୍ତ ମୁକ୍ତି ଦିଗକୁ ଦୌଡ଼ୁଛନ୍ତି । ଆମେ ଏ ଗତି ବନ୍ଦ କରି ନ ପାରୁ, କେହି ପାରିବ ନାହିଁ, ହଜାର ଚେଷ୍ଟା କଲେ ମଧ୍ୟ କେହି ସେଥିରୁ ଫେରି ଯାଇପାରିବ ନାହିଁ; ମନୁଷ୍ୟକୁ ଅଗ୍ରସର ହେବାକୁ ପଡ଼ିବ ଏବଂ ପରିଣାମରେ

ସେ ମୁକ୍ତିଲାଭ କରିବ ହିଁ କରିବ । ସୃଷ୍ଟିର ଅର୍ଥ ମୁକ୍ତ-ଅବସ୍ଥାକୁ ପୁନର୍ବାର ଫେରିଯିବା ପାଇଁ ସଂଗ୍ରାମ । ମୁକ୍ତି ହିଁ ଆମ ସତ୍ତାର କେନ୍ଦ୍ରସ୍ଥଳ; ଏଥିରୁ ଆମେ ଯେପରି ଉତ୍କ୍ଷିପ୍ତ ହୋଇଛୁ । ଆମର ବର୍ତ୍ତମାନ ଅବସ୍ଥା ପ୍ରମାଣିତ କରେ ଯେ, ଆମେ କେନ୍ଦ୍ରାଭିମୁଖରେ ଅଗ୍ରସର ହେଉଅଛୁଁ ଏବଂ ଏହି କେନ୍ଦ୍ରାଭିମୁଖୀ ଆକର୍ଷଣର ଅଭିବ୍ୟକ୍ତିକୁ ହିଁ ଆମେ କହୁ 'ପ୍ରେମ' ।

ଏପରି ପ୍ରଶ୍ନ ମଧ୍ୟ ହୁଏ—ଏ ଜଗତ୍ କେଉଁଠାରୁ ଆସିଲା ? କେଉଁଠି ଏହାର ସ୍ଥିତି ? କେଉଁଠାକୁ ବା ଏହା ଫେରିଯାଏ ? ଉତ୍ତର ହେଲା—ପ୍ରେମରୁ ହିଁ ଏହାର ଉତ୍ପତ୍ତି । ପ୍ରେମରେ ହିଁ ଏହାର ସ୍ଥିତି, ପ୍ରେମକୁ ହିଁ ଏହାର ପ୍ରତ୍ୟାବର୍ତ୍ତନ । ବର୍ତ୍ତମାନ ଆମେମାନେ ବୁଝିପାରିବା ଯେ, କେହି ପସନ୍ଦ କରନ୍ତୁ ବା ନ କରନ୍ତୁ, କାହାରି ପକ୍ଷରେ ପଶ୍ଚାଦପସରଣ ସମ୍ଭବ ନୁହେଁ । ଯେତେ ପଶ୍ଚାଦପସରଣର ଚେଷ୍ଟା କରିଯାଉ ନା କାହିଁକି, ସମସ୍ତଙ୍କୁ କେନ୍ଦ୍ରସ୍ଥଳରେ ଉପନୀତ ହେବାକୁ ପଡ଼ିବ । ତଥାପି ଆମେ ଯଦି ଜ୍ଞାତସାରରେ ଚେଷ୍ଟା କରୁ—ତା'ହେଲେ ଆମମାନଙ୍କ ଗତିପଥ ସହଜ ହେବ । ଘାତପ୍ରତିଘାତର ବାଧା ଅନେକ ପରିମାଣରେ କମିଯିବ ଏବଂ ଆମମାନଙ୍କ ଲକ୍ଷ୍ୟପ୍ରାପ୍ତି ତ୍ୱରାନ୍ୱିତ ହେବ । ଏଥିରୁ ଆମେ ସ୍ୱଭାବତଃ ଅନ୍ୟ ଗୋଟିଏ ସିଦ୍ଧାନ୍ତରେ ଉପନୀତ ହେଉ—ସମସ୍ତ ଜ୍ଞାନ ଓ ସମସ୍ତ ଶକ୍ତି ଆମ ଭିତରେ ରହିଛି—ବାହାରେ ନୁହେଁ । ଯାହାକୁ ଆମେ ପ୍ରକୃତି କହୁ, ତାହା ଗୋଟିଏ ପ୍ରତିଫଳକ କାଚମାତ୍ର । ଆମମାନଙ୍କର ସମସ୍ତ ଜ୍ଞାନ ଆମ ଭିତରୁ ଆସି ପ୍ରକୃତିରୂପକ ଏହି କାଚ ଉପରେ ପ୍ରତିଫଳିତ ହୁଏ । ପ୍ରକୃତରେ ଏତିକି ମାତ୍ର ପ୍ରୟୋଜନ, ଯାହାକୁ ଆମେ ଶକ୍ତି କହୁ, ପ୍ରାକୃତିକ ରହସ୍ୟ କହୁ, ବେଗ କହୁ—ସେସବୁ ହିଁ ଆମ ଭିତରେ । ବାହ୍ୟଜଗତରେ ରହିଅଛି କେବଳ ଏକ ପରିବର୍ତ୍ତନର ପରମ୍ପରା । ପ୍ରକୃତିରେ କୌଣସି ଜ୍ଞାନ ନାହିଁ; ଆତ୍ମାରୁ ହିଁ ଆସେ ସମସ୍ତ ଜ୍ଞାନ । ମନୁଷ୍ୟ ହିଁ ନିଜ ମଧ୍ୟରେ ଜ୍ଞାନକୁ ଆବିଷ୍କାର କରେ, ତାହାକୁ ପ୍ରକାଶ କରେ । ଏହି ଜ୍ଞାନ ଅନନ୍ତ କାଳ ଧରି ସେଠାରେ ରହିଅଛି । ପ୍ରତ୍ୟେକେ ହିଁ ଜ୍ଞାନସ୍ୱରୂପ, ଅନନ୍ତ ଆନନ୍ଦସ୍ୱରୂପ ଏବଂ ଅନନ୍ତ ସତ୍ତାସ୍ୱରୂପ । ଅନ୍ୟାନ୍ୟ ଆମେ ଯେପରି ଦେଖୁଅଛୁ ସାମ୍ୟର ନୈତିକ ଫଳ ଯାହା, ଏ ପ୍ରକାର ବୋଧର ମଧ୍ୟ ଫଳ ତଦ୍ରୂପ ।

ବିଶେଷ ସୁବିଧା ଭୋଗ କରିବାର ଇଚ୍ଛା ମନୁଷ୍ୟ-ଜୀବନର କଳଙ୍କ । ଦୁଇଟି ଶକ୍ତି ଯେପରି ସର୍ବଦା କ୍ରିୟା କରୁଅଛି; ଗୋଟିଏ ଶକ୍ତି ବର୍ଣ୍ଣ ଓ ଜାତିଭେଦ ସୃଷ୍ଟି କରୁଅଛି ଏବଂ ଅନ୍ୟଟି ଏହାକୁ ଭାଙ୍ଗୁଅଛି । ଅନ୍ୟ ଭାବରେ କହିବାକୁ ଗଲେ, ଗୋଟିଏ ସୁବିଧା ସୃଷ୍ଟି କରୁଅଛି ଏବଂ ଅପରଟି ତାହା ଭାଙ୍ଗୁଅଛି । ବ୍ୟକ୍ତିଗତ ସୁବିଧା ଯେତେ ଭାଙ୍ଗିବ ସେହି ସମାଜରେ ସେତିକି ଜ୍ଞାନର ଦୀପ୍ତି ଓ ପ୍ରଗତି ଆସିବାକୁ ଆରମ୍ଭ କରିବ । ଏହିପରି ସଂଗ୍ରାମ ଆମେ ସର୍ବତ୍ର ଦେଖିଥାଉ । ପ୍ରଥମେ ଆସେ ପାଶବ ସୁବିଧାର ଧାରଣା—ଦୁର୍ବଳ ଉପରେ ସବଳର ଅଧିକାରର ଚେଷ୍ଟା । ଧନର ଅଧିକାର ମଧ୍ୟ ସେହିପରି । ଜଣେ ଲୋକର ଅନ୍ୟ ଜଣଙ୍କ ତୁଳନାରେ ଯଦି ଅଧିକ ଅର୍ଥ ହୁଏ, ତା'ହେଲେ ଯେଉଁମାନେ କମ୍ ଅର୍ଥଶାଳୀ, ସେମାନଙ୍କ ଉପରେ ସେ ବିଶେଷ ଅଧିକାର

ସ୍ଥାପନ ବା ସୁବିଧା ଭୋଗ କରିବାକୁ ଇଚ୍ଛା କରେ । ବୁଦ୍ଧିମାନ ବ୍ୟକ୍ତିଗଣଙ୍କର ଅଧିକାର-ଲିପ୍ସା ସୂକ୍ଷ୍ମତର ଏବଂ ଅଧିକତର ପ୍ରଭାବଶାଳୀ । ଯେହେତୁ ଜଣେ ଲୋକ ଅନ୍ୟମାନଙ୍କ ତୁଳନାରେ ଅଧିକ ଜାଣେ, ସେଥିପାଇଁ ସେ ଅଧିକତର ସୁବିଧା ଦାବି କରେ । ସର୍ବଶେଷ ଏବଂ ସର୍ବନିକୃଷ୍ଟ ଅଧିକାର ହେଲା ଆଧ୍ୟାତ୍ମିକ ସୁବିଧାର ଅଧିକାର । ଏହା ନିକୃଷ୍ଟତମ, କାହିଁକି ନା ଏହା ସର୍ବାଧିକ ପରପୀଡ଼କ । ଯେଉଁମାନେ ମନେ କରନ୍ତି 'ଆଧ୍ୟାତ୍ମିକତା' ବା ଈଶ୍ୱରଙ୍କ ସମ୍ବନ୍ଧରେ ଆମେ ଅଧିକ ଜାଣୁ, ସେମାନେ ଅନ୍ୟ ଉପରେ ଅଧିକତର ଦାବି କରନ୍ତି । ସେମାନେ କହନ୍ତି, 'ହେ ସାଧାରଣ ବ୍ୟକ୍ତିଗଣ, ଆସ ଆମମାନଙ୍କୁ ପୂଜା କର । ଆମେ ଈଶ୍ୱରଙ୍କ ଦୂତ; ତୁମମାନଙ୍କୁ ଆମର ପୂଜା କରିବାକୁ ହିଁ ହେବ ।' କିନ୍ତୁ ବୈଦାନ୍ତିକ କାହାରିକୁ ଶାରୀରିକ, ମାନସିକ ବା ଆଧ୍ୟାତ୍ମିକ କୌଣସି ପ୍ରକାର ଅଧିକାର ଆଦୌ ଦେଇ-ପାରନ୍ତି ନାହିଁ । ଏକ ଶକ୍ତି ହିଁ ସମସ୍ତଙ୍କ ମଧ୍ୟରେ ବିଦ୍ୟମାନ, କେଉଁଠାରେ ସେ ଶକ୍ତିର ଅଧିକ ପ୍ରକାଶ, କେଉଁଠାରେ ଅବା ଅଳ୍ପ ପ୍ରକାଶ । ସେହି ଏକ ଶକ୍ତି ହିଁ ସୁପ୍ତାବସ୍ଥାରେ ପ୍ରତ୍ୟେକଙ୍କ ମଧ୍ୟରେ ରହିଅଛି । ଅଧିକାରର ଦାବି ତେବେ କେଉଁଠାରେ ? ପ୍ରତ୍ୟେକ ଜୀବରେ ପୂର୍ଣ୍ଣଜ୍ଞାନ ବିଦ୍ୟମାନ । ଅତି ମୂର୍ଖର ମଧ୍ୟ ତାହା ରହିଅଛି; କେବଳ ସେ ତାହାକୁ ପ୍ରକାଶ କରିପାରି ନାହିଁ, ସମ୍ଭବତଃ, ପ୍ରକାଶର ସୁଯୋଗ ପାଇ ନାହିଁ, ପରିବେଶ ହୁଏତ ତା'ର ଅନୁକୂଳ ହୋଇ ନାହିଁ । ଯେତେବେଳେ ସେ ସୁଯୋଗ ପାଇବ, ସେତେବେଳେ ସେ ତାହା ପ୍ରକାଶ କରିବ । ଜଣେ ଲୋକ ଅନ୍ୟ ଜଣଙ୍କ ଅପେକ୍ଷା ବଡ଼ ହୋଇ ଜନ୍ମିଛି—ବେଦାନ୍ତ କେବେହେଲେ ଏ ଧାରଣା ପୋଷଣ କରେ ନାହିଁ । ଦୁଇଟି ଜାତି ମଧ୍ୟରେ ଗୋଟିଏ ଅନ୍ୟଟି ଅପେକ୍ଷା ସ୍ୱଭାବତଃ ହିଁ ଉନ୍ନତତର—ବୈଦାନ୍ତିକଙ୍କ ନିକଟରେ ଏ ଧାରଣା ମଧ୍ୟ ନିରର୍ଥକ । ସେମାନଙ୍କୁ ଏକ ପ୍ରକାର ପରି-ବେଶରେ ରଖି ଦେଖାଯାଉ—ସମାନ ବୁଦ୍ଧିବୃତ୍ତି ସେମାନଙ୍କ ମଧ୍ୟରେ ପ୍ରକାଶ ପାଏ କି ନାହିଁ । ତତ୍ପୂର୍ବେ ଏକ ଜାତି ଅପର ଜାତି ଅପେକ୍ଷା ବଡ଼—ଏ କଥା କହିବାର ତୁମର କୌଣସି ଅଧିକାର ନାହିଁ । ଆଧ୍ୟାତ୍ମିକତାର ପ୍ରଶ୍ନ ଉଠିଲେ କହିବାକୁ ହେବ, ଏ ବିଷୟରେ କାହାରି କୌଣସି ବିଶେଷ ଅଧିକାର ଦାବି କରିବା ଉଚିତ ନୁହେଁ । ମନୁଷ୍ୟ-ଜାତିର ସେବା କରିବା ହିଁ ଗୋଟିଏ ଅଧିକାର, ଏହା ହିଁ ତ ଈଶ୍ୱରଙ୍କର ଆରାଧନା । ଈଶ୍ୱର ଏଠାରେ ହିଁ ଅଛନ୍ତି, ସମସ୍ତଙ୍କ ମଧ୍ୟରେ ଅଛନ୍ତି । ସେ ମନୁଷ୍ୟର ଅନ୍ତରାତ୍ମା । ମନୁଷ୍ୟ ଅଧିକ କେଉଁ ଅଧିକାର ମାଗିବ ? ଈଶ୍ୱରଙ୍କର କୌଣସି ବିଶେଷ ଦୂତ ନାହିଁ, କେବେ-ହେଲେ ନ ଥିଲେ ଏବଂ କେବେହେଲେ ହେବେ ନାହିଁ । ଶ୍ରେଷ୍ଠ ବା ବଡ଼ ସମସ୍ତ ପ୍ରାଣୀ ସମଭାବେ ଈଶ୍ୱରଙ୍କର ପ୍ରତିରୂପ—ପାର୍ଥକ୍ୟ କେବଳ ତାହାର ପ୍ରକାଶ ମଧ୍ୟରେ । ଚିର-ପ୍ରଚ୍ଛନ୍ନ ସେହି ଏକ ଶାଶ୍ୱତ ବାଣୀ ସେମାନଙ୍କ ନିକଟକୁ କ୍ରମେ କ୍ରମେ ଆସୁଅଛି । ସେହି ଶାଶ୍ୱତ ବାଣୀ ପ୍ରତ୍ୟେକ ପ୍ରାଣୀର ହୃଦୟରେ ଲିଖିତ ଅଛି । ତାହା ସେଠାରେ ହିଁ ବିରାଜମାନ, ଏବଂ ସମସ୍ତେ ତାହା ପ୍ରକାଶ କରିବା ପାଇଁ ସଚେଷ୍ଟ । ଅନୁକୂଳ ପରିବେଶରେ କେହି କେହି ଅନ୍ୟ ତୁଳନାରେ ଏହା କେତେକ ପରିମାଣରେ ପ୍ରକାଶ କରିପାରୁଛନ୍ତି ।

କିନ୍ତୁ ବାଣୀର ବାହକ ହିସାବରେ ସେମାନେ ଏକ । ଏ ବିଷୟରେ ଶ୍ରେଷ୍ଠତ୍ୱର କଅଣ ଦାବି ହୋଇପାରେ ? ଅତୀତର ମହାପୁରୁଷଙ୍କ ପରି ଜଣେ ମୂର୍ଖ, ଅଜ୍ଞାନ ଶିଶୁ ମଧ୍ୟ ଈଶ୍ୱର-ପ୍ରେରିତ, ଏବଂ ଭବିଷ୍ୟତରେ ଯେଉଁମାନେ ମହାମାନବ ହେବେ ସେମାନେ ମଧ୍ୟ ତାହା ହିଁ; ମୂର୍ଖତମ ଓ ଅଜ୍ଞାନିତମ ମାନବ ମଧ୍ୟ ସମଭାବେ ମହାନ୍ । ପ୍ରତ୍ୟେକ ଜୀବର ଅନ୍ତସ୍ଥଳରେ ଚିରକାଳ ପାଇଁ ସେହି ଅନନ୍ତ ଶାଶ୍ୱତ ବାଣୀ ରକ୍ଷିତ ଅଛି । ପ୍ରତ୍ୟେକ ଜୀବ ମଧ୍ୟରେ ସେହି 'ମହତୋ ମହୀୟାନ୍' ବ୍ରହ୍ମଙ୍କ ଅନନ୍ତ ବାଣୀ ନିହିତ ରହିଅଛି । ଏହା ସଦା ବିଦ୍ୟମାନ । ସୁତରାଂ ଅଦ୍ୱୈତ ବେଦାନ୍ତର କାର୍ଯ୍ୟ ହେଲା ଏହି ସକଳ ଅଧିକାରକୁ ଭାଙ୍ଗି ଦେବା । ଆଶ୍ଚର୍ଯ୍ୟର ବିଷୟ—ଅନ୍ୟ ଦେଶ ତୁଳନାରେ ସ୍ୱୀୟ ଜନ୍ମଭୂମିରେ ହିଁ ଏହାର ପ୍ରଭାବ ଅତି ଅଳ୍ପ । ଅଧିକାରବାଦର ସ୍ଥିତି ଯଦି କେଉଁଠାରେ ଥାଏ, ତେବେ ତାହା ଆମରି ଦେଶରେ । ଏହି ଦେଶରେ ହିଁ ଅଧ୍ୟାତ୍ମନିଷ୍ଠ ବ୍ୟକ୍ତିଙ୍କର ଏବଂ ଉଚ୍ଚବଂଶଜାତ ବ୍ୟକ୍ତିଙ୍କର ବିଶେଷ ଅଧିକାର ରହିଅଛି । ସେଠାରେ ଅବଶ୍ୟ ଆର୍ଥିକ ଅଧିକାରବାଦ ସେତେ ନାହିଁ; (ମୋ ମତରେ, ଏହା ହିଁ ତାହାର ଭଲ ଦିଗ) କିନ୍ତୁ ଜନ୍ମଗତ ଓ ଧର୍ମଗତ ଅଧିକାର ସେଠାରେ ସର୍ବତ୍ର ବିଦ୍ୟମାନ ।

ଥରେ ଏହି ବୈଦାନ୍ତିକ ନୀତିପ୍ରଚାର ପାଇଁ ପ୍ରଚଣ୍ଡ ଚେଷ୍ଟା ହୋଇଥିଲା । ତାହା ଶତ ଶତ ବର୍ଷ ଧରି ସଫଳ ମଧ୍ୟ ହୋଇଥିଲା । ଆମେ ଜାଣୁ, ଇତିହାସରେ ସେହି ସମୟଟି ଏ ଜାତିର ସର୍ବଶ୍ରେଷ୍ଠ ସମୟ । ମୁଁ ବୌଦ୍ଧଗଣଙ୍କ ଅଧିକାରବାଦ ଖଣ୍ଡନ ବିଷୟରେ କହୁଅଛି । ବୁଦ୍ଧଙ୍କ ପ୍ରତି ପ୍ରଯୁକ୍ତ କେତୋଟି ଅତି ସୁନ୍ଦର ବିଶେଷଣ ମୋର ମନେ ଅଛି । ଏଗୁଡ଼ିକ ହେଉଛି—'ହେ ତଥାଗତ, ତୁମେ ବର୍ଣ୍ଣାଶ୍ରମ-ଖଣ୍ଡନକାରୀ, ତୁମେ ସର୍ବ-ଅଧିକାର-ବିଧ୍ୱଂସୀ, ତୁମେ ସର୍ବ ପ୍ରାଣୀର ଐକ୍ୟ-ବିଧାୟକ ।' ତା'ହେଲେ ଦେଖାଯାଉଛି, ସେ ଏକମାତ୍ର ଐକ୍ୟର ଭାବକୁ ହିଁ ପ୍ରଚାର କରିଥିଲେ । ଏହି ଐକ୍ୟଭାବର ଅନ୍ତର୍ନିହିତ ଶକ୍ତି ବୌଦ୍ଧ ଶ୍ରମଣମାନେ ଯଥାର୍ଥ ବୁଝିପାରି ନାହାନ୍ତି । ଆମେ ଦେଖିବାକୁ ପାଉ, ଏହି ସଙ୍ଘକୁ ଗୋଟିଏ ଉଚ୍ଚ ଓ ନୀଚ ଶ୍ରେଣୀସମ୍ପନ୍ନ ଯାଜକସମ୍ପ୍ରଦାୟରେ ପରିଣତ କରିବା ପାଇଁ ବହୁ ଚେଷ୍ଟା ହୋଇଅଛି । ମନୁଷ୍ୟକୁ ଯେତେବେଳେ ସମ୍ବୋଧନ କରି କୁହାଯାଏ, 'ତୁମେମାନେ ସମସ୍ତେ ଦେବତା'—ସେତେବେଳେ କୌଣସି ସଙ୍ଘ ଗଠନ କରିବା ସମ୍ଭବ ନୁହେଁ; କାରଣ ସେ କ୍ଷେତ୍ରରେ ସଙ୍ଘ ଉପରେ ବିଶେଷ ଗୁରୁତ୍ୱ ଦେବା ସମ୍ଭବ ନୁହେଁ । ବେଦାନ୍ତର ଅନ୍ୟତମ ଶୁଭ ଫଳ ହେଲା, ଧର୍ମଚିନ୍ତାର କ୍ଷେତ୍ରରେ ସମସ୍ତଙ୍କୁ ସ୍ୱାଧୀନତା ଦେବା; ଭାରତବର୍ଷ ତା'ର ଇତିହାସରେ ସର୍ବଦା ଏହି ସ୍ୱାଧୀନତା ପାଇ ଆସିଛି । ଏହା ଗୌରବର ବିଷୟ ଯେ, ଭାରତବର୍ଷ ଏପରି ଗୋଟିଏ ଦେଶ, ଯେଉଁଠାରେ କେବେହେଲେ ଧର୍ମ ପାଇଁ ଉତ୍ପୀଡ଼ନ ହୋଇ ନାହିଁ, ଯେଉଁଠାରେ ଧର୍ମ ବିଷୟରେ ମନୁଷ୍ୟକୁ ପୂର୍ଣ୍ଣ ସ୍ୱାଧୀନତା ଦିଆଯାଇଛି ।

ପୂର୍ବେ ବୈଦାନ୍ତିକ ନୀତିର ଏହି ବହିର୍ବିକରଣର ଯେପରି ପ୍ରୟୋଜନ ଥିଲା, ବର୍ତ୍ତମାନ ମଧ୍ୟ ସେହିପରି ରହିଅଛି; ବରଂ ଅତୀତ ତୁଳନାରେ ଏହା ବୋଧହୁଏ

ଅଧିକତର ପ୍ରୟୋଜନୀୟ ହୋଇପଡ଼ିଛି; କାରଣ ଜ୍ଞାନର ବିସ୍ତୃତ ହେବା ସଙ୍ଗେ ସଙ୍ଗେ ସର୍ବପ୍ରକାର ଅଧିକାର ଦାବି କରିବା ମଧ୍ୟ ବଢ଼ି ଯାଇଛି । ଈଶ୍ୱର ଓ ସଇତାନର ଧାରଣା, ଅଥବା ଆହୁରମାଜ୍‌ଦା ଓ ଅହ୍ରିମାନର ଧାରଣା ଅନେକାଂଶ ଅନ୍ତରଙ୍ଗିତ । ଈଶ୍ୱର ଓ ସଇତାନ ମଧ୍ୟରେ ପାର୍ଥକ୍ୟ ଅନ୍ୟ କିଛି ନୁହେଁ, କେବଳ ସ୍ୱାର୍ଥଶୂନ୍ୟତା ଓ ସ୍ୱାର୍ଥପରତାର ପାର୍ଥକ୍ୟ । ଈଶ୍ୱର ଯେତେ ଜାଣନ୍ତି, ସଇତାନ ମଧ୍ୟ ସେତିକି ଜାଣେ । ସେ ଈଶ୍ୱରଙ୍କ ଭଳି ଶକ୍ତିଶାଳୀ, କେବଳ ସେ ପବିତ୍ର ନୁହେଁ—ଏହି ପବିତ୍ରତାର ଅଭାବ ହିଁ ତାହାକୁ ସଇତାନ କରିଅଛି । ଏହି ମାପକାଠିକୁ ଆମ କ୍ଷେତ୍ରରେ ପ୍ରୟୋଗ କଲେ ଆମେ ଦେଖିବା, ପବିତ୍ରତା ନ ଥିଲେ ଜ୍ଞାନ ଓ ଶକ୍ତିର ଆଧିକ୍ୟ ମନୁଷ୍ୟକୁ ସଇତାନରେ ପରିଣତ କରେ । ଏବେ ଯନ୍ତ୍ର ଇତ୍ୟାଦିର ନିର୍ମାଣଦ୍ୱାରା ଅସାଧାରଣ ଶକ୍ତିର ବିକାଶ ହେଉଅଛି ଏବଂ ଏପରି ସବୁ ଅଧିକାର ଦାବି କରାହେଉଛି, ଯାହା ପୃଥିବୀର ଇତିହାସରେ ପୂର୍ବେ କେବେ କରାହୋଇ ନାହିଁ । ଏହି କାରଣରୁ ହିଁ ବେଦାନ୍ତ ଏହି ଅଧିକାରବାଦ ବିରୋଧରେ ପ୍ରଚାର କରିବାକୁ ଇଚ୍ଛା କ, ଏହା ମାନବାତ୍ମା ଉପରେ ଏହି ଉତ୍ପୀଡ଼ନକୁ ଚୂର୍ଣ୍ଣବିଚୂର୍ଣ୍ଣ କରିବାକୁ ଚାହେଁ ।

ତୁମମାନଙ୍କ ମଧ୍ୟରୁ ଯେଉଁମାନେ ଗୀତା ଅଧ୍ୟୟନ କରିଅଛ, ଏହି ସ୍ମରଣୀୟ ଉକ୍ତିଗୁଡ଼ିକ ନିଶ୍ଚୟ ତୁମମାନଙ୍କର ମନେ ଅଛି: ଯେଉଁମାନେ ବିଦ୍ୟାବିନୟ-ସମ୍ପନ୍ନ ବ୍ରାହ୍ମଣ, ଗୋ, ହସ୍ତୀ, କୁକୁର ଅଥବା ଚଣ୍ଡାଳରେ ସମଦର୍ଶୀ, ସେହିମାନେ ହିଁ ଯଥାର୍ଥ ଜ୍ଞାନୀ, ସେହିମାନେ ହିଁ ଯଥାର୍ଥ ପଣ୍ଡିତ ବ୍ୟକ୍ତି । ଯେଉଁମାନଙ୍କର ମନ ସର୍ବଦା ସମଭାବରେ ଅବସ୍ଥାନ କରେ, ସେମାନେ ଇହଜୀବନରେ ହିଁ ଜନ୍ମାନ୍ତର ଜୟ କରନ୍ତି । ଯେହେତୁ ବ୍ରହ୍ମ ସର୍ବଦା ଏକ ଓ ଗୁଣଦୋଷାଦିବର୍ଜିତ, ସେହିହେତୁ ସେମାନେ ମଧ୍ୟ ବ୍ରହ୍ମରେ ଅବସ୍ଥିତ ହୁଅନ୍ତି ଅର୍ଥାତ୍ ସେମାନେ ଜୀବନ୍ମୁକ୍ତ ହୁଅନ୍ତି । ସମସ୍ତଙ୍କ ପ୍ରତି ଏହି ସମଭାବ—ଏହା ହିଁ ବୈଦାନ୍ତିକ ନୀତିର ସାରମର୍ମ । ଆମେ ଦେଖିଅଛୁ, ଆମମାନଙ୍କ ମନ ହିଁ ବାହ୍ୟଜଗତ ଉପରେ ପ୍ରଭୁତ୍ୱ କରେ । ବିଷୟୀକୁ ( subject ) ପରିବର୍ତ୍ତନ କର, ବିଷୟ ( object ) ମଧ୍ୟ ପରିବର୍ତ୍ତିତ ହୋଇଯିବ । ନିଜକୁ ପବିତ୍ର କର, ତାହା ହେଲେ ଜଗତ୍ ପରିବର୍ତ୍ତିତ ହେବାକୁ ବାଧ୍ୟ । ଏହି ବିଷୟ ହିଁ ବର୍ତ୍ତମାନ ସର୍ବାପେକ୍ଷା ଅଧିକ ଶିକ୍ଷା ଦେବା ପ୍ରୟୋଜନ । ଆମେ ଆମର ପ୍ରତିବେଶୀମାନଙ୍କର ବ୍ୟାପାରରେ ବ୍ୟସ୍ତ ହୋଇ ପଡ଼ୁଛୁ । କିନ୍ତୁ ନିଜ ବିଷୟରେ ସମୀକ୍ଷା କ୍ରମଶଃ କମିବାରେ ଲାଗିଛି । ଆମେ ପରିବର୍ତ୍ତିତ ହେଲେ ଆମର ଦୃଷ୍ଟିରେ ଜଗତ ମଧ୍ୟ ପରିବର୍ତ୍ତିତ ହେବ—ଆମେ ପବିତ୍ର ହେଲେ ଜଗତ ମଧ୍ୟ ପବିତ୍ର ହେବ । ଅନ୍ୟ ଭିତରେ ମୁଁ ମନ୍ଦ ଦେଖିବି କାହିଁକି ? ମୁଁ ନିଜେ ମନ୍ଦ ନ ହେଲେ କେବେହେଲେ ମନ୍ଦ ଦେଖି ନ ପାରେ । ମୁଁ ନିଜେ ଦୁର୍ବଳ ନ ହେଲେ କେବେ କଷ୍ଟ ପାଇ ନ ପାରେ । ମୋ ଶୈଶବରେ ଯେଉଁ ସକଳ ବସ୍ତୁ ମୋତେ କଷ୍ଟ ଦେଉଥିଲ, ବର୍ତ୍ତମାନ ସେମାନେ ଆଉ କଷ୍ଟ ଦେଉ ନାହାନ୍ତି । ବେଦାନ୍ତ କହେ—ବିଷୟୀର ପରିବର୍ତ୍ତନ ହେଲେ ବିଷୟ ମଧ୍ୟ ପରିବର୍ତ୍ତିତ ହେବାକୁ ବାଧ୍ୟ । ଯେତେବେଳେ ଆମେମାନେ ଏପ୍ରକାର

ଅତ୍ୟାଶ୍ଚର୍ଯ୍ୟ ଐକ୍ୟ ଓ ସାମ୍ୟ ଅବସ୍ଥାରେ ଉପନୀତ ହେବା, ସେତେବେଳେ ଯେଉଁ ସକଳ ବସ୍ତୁକୁ ଆମେ ଦୁଃଖ ଓ ମନ୍ଦର କାରଣ କହୁଛୁ, ସେଗୁଡ଼ିକୁ ଉପେକ୍ଷା କରିବା; ସେଗୁଡ଼ିକୁ ଆମେ ଉପହାସ କରିବା । ବେଦାନ୍ତ ଏହାକୁ ହିଁ ମୁକ୍ତିଲାଭ କହେ । ମୁକ୍ତି ଯେ କ୍ରମଶଃ ଆସୁଅଛି, ଏହି ସମଭାବ ଓ ଐକ୍ୟବୋଧର ଉତ୍ତରୋତ୍ତର ବୃଦ୍ଧି ହିଁ ତାହାର ସୂଚନା । ସୁଖ ଓ ଦୁଃଖରେ ସମଭାବ, ଜୟ ଓ ପରାଜୟରେ ତୁଲ୍ୟଭାବ—ଏହି ପ୍ରକାର ମନ ହିଁ ମୁକ୍ତି ଦିଗକୁ ଅଗ୍ରସର ହେଉଅଛି ବୋଲି ବୁଝିବାକୁ ହେବ ।

ମନକୁ ସହଜରେ ଜୟ କରିଯାଏ ନାହିଁ । ପ୍ରତିଟି କ୍ଷୁଦ୍ର ଘଟଣାରେ, ଟିକିଏ ଉତ୍ତେଜନାରେ ବା ବିପଦରେ ଯେଉଁ ମନ ତରଙ୍ଗାୟିତ ହୁଏ, ତାହାର ଅବସ୍ଥା ଥରେ ଭାବି ଦେଖନ୍ତୁ । ମନ ଉପରେ ଯେତେବେଳେ ଏହି ପରିବର୍ତ୍ତନଗୁଡ଼ିକ ଆସେ, ସେତେବେଳେ ମହତ୍ତ୍ୱ ବା ଆଧ୍ୟାତ୍ମିକ ସମ୍ବନ୍ଧରେ କିଛି କହିବା ନିରର୍ଥକ । ମନର ଏହି ଅସ୍ଥିର ଅବସ୍ଥାର ପରିବର୍ତ୍ତନ କରିବାକୁ ହେବ । ଆମେ ବିଚାର କରି ଦେଖିବୁ ବିରୁଦ୍ଧ ଶକ୍ତିଦ୍ୱାରା ଆମେ କେତେ ଦୂର ପ୍ରଭାବିତ ହେଉ ଏବଂ ନିଜର ଭାବକୁ ବଜାୟ ରଖିପାରୁ । ବହିଃପ୍ରକୃତିର ଶକ୍ତିକୁ ଯେତେବେଳେ ଆମେ ବାଧା ଦେଇପାରିବୁ, ସେତେବେଳେ ଆମେ ମୁକ୍ତିଲାଭ କରିବୁ । ଏହା ପୂର୍ବରୁ ନୁହେଁ । ଏହି ଅବ୍ୟାହତ ସାମ୍ୟ ହିଁ ମୁକ୍ତି । ଏହା ହିଁ ମୁକ୍ତି; ଏହି ଅବସ୍ଥା ବ୍ୟତୀତ ଅନ୍ୟ କିଛିକୁ ମୁକ୍ତି କୁହାଯାଇ ନ ପାରେ । ଏହି ଧାରଣାରୁ—ଏହି ଉତ୍ସରୁ ସର୍ବପ୍ରକାର ସୁନ୍ଦର ଭାବଧାରା ଏହି ଜଗତରେ ପ୍ରବାହିତ ହୋଇଅଛି; ପ୍ରକାଶଭଙ୍ଗୀରେ ଆପାତତଃ ପରସ୍ପରବିରୋଧୀ ହେବାରୁ ସାଧାରଣତଃ ଏଗୁଡ଼ିକ ସମ୍ବନ୍ଧରେ ଆମର ଭ୍ରାନ୍ତ ଧାରଣା ଜାତ ହୁଏ । ପ୍ରତ୍ୟେକ ଜାତିରେ ଆମେ ଦେଖିବାକୁ ପାଉ ଯେ, ବହୁ ନିର୍ଭୀକ ଓ ଅଧ୍ୟାତ୍ମଜ୍ଞାନସମ୍ପନ୍ନ ବ୍ୟକ୍ତି ଜଗତର ସମ୍ପର୍କ ଛିନ୍ନ କରି ଧ୍ୟାନଧାରଣା ନିମିତ୍ତ ଗିରିଗୁହାରେ ବା ଅରଣ୍ୟରେ ବାସ କରୁଛନ୍ତି । ମୁକ୍ତିଲାଭ ହିଁ ସେମାନଙ୍କର ଏକମାତ୍ର ଲକ୍ଷ୍ୟ । ପକ୍ଷାନ୍ତରେ ଅନ୍ୟ ଏକ ଶ୍ରେଣୀର ପ୍ରତିଭାବାନ୍ ବରଣୀୟ ବ୍ୟକ୍ତି ଦେଖାଯାଆନ୍ତି, ଯେଉଁମାନେ ଦୁର୍ବଳ ଦୁର୍ଦ୍ଦଶାଗ୍ରସ୍ତ ମାନବଜାତିକୁ ଉଦ୍ଧାର କରିବା ପାଇଁ ସଚେଷ୍ଟ । ଆପାତତଃ ଏହି ଦୁଇପନ୍ଥା ପରସ୍ପରବିରୋଧୀ ବୋଲି ବୋଧ ହୁଏ । ଯେଉଁ ବ୍ୟକ୍ତି ମାନବ-ସମାଜରୁ ଦୂରକୁ ଯାଇ ଗିରିଗୁହାରେ ବାସ କରନ୍ତି, ସେ ମାନବଜାତିର ଅଭ୍ୟୁତ୍ଥାନ ପାଇଁ ବ୍ୟାପୃତ ବ୍ୟକ୍ତିମାନଙ୍କୁ ନିତାନ୍ତ କରୁଣା ଓ ଉପହାସର ପାତ୍ର ବୋଲି ମନେକରନ୍ତି । ସେ କହନ୍ତି, 'ମୂର୍ଖ ! ଜଗତରେ କରଣୀୟ କଅଣ ଅଛି ? ମାୟାର ଜଗତ ସର୍ବଦା ଏହିପରି ରହିବ । ଏହାର ପରିବର୍ତ୍ତନ ହୋଇ ନ ପାରେ ।' ଭାରତବର୍ଷରେ ମୁଁ ଯଦି ଆମର କୌଣସି ପୁରୋହିତଙ୍କୁ ପଚାରେ, 'ଆପଣ କଅଣ ବେଦାନ୍ତରେ ବିଶ୍ୱାସୀ ?' ସେ କହିବେ, 'ତାହା ହିଁ ମୋର ଧର୍ମ, ମୁଁ ନିଶ୍ଚୟ ବିଶ୍ୱାସ କରେ; ବେଦାନ୍ତ ହିଁ ମୋର ପ୍ରାଣ ।' 'ଆଚ୍ଛା, ତେବେ କ'ଣ ଆପଣ ସର୍ବବସ୍ତୁର ସାମ୍ୟରେ—ସର୍ବପ୍ରାଣୀର ଐକ୍ୟରେ ବିଶ୍ୱାସୀ ?' ସେ କହିବେ, 'ମୁଁ ଅବଶ୍ୟ ବିଶ୍ୱାସ କରେ ।' ପରମୁହୂର୍ତ୍ତରେ ଯେତେବେଳେ ଗୋଟିଏ ନୀଚଜାତିର ଲୋକ ଏହି ପୁରୋହିତଙ୍କ ନିକଟକୁ ଆସିବ, ସେତେବେଳେ ଲୋକଟିର ସ୍ପର୍ଶ ଏଡ଼ାଇବା ପାଇଁ

ସେ ଲମ୍ଫ ଦେଇ ରାସ୍ତାର ଅନ୍ୟ କଡ଼କୁ ଚାଲିଯିବେ । ଯଦି ପ୍ରଶ୍ନ କରନ୍ତି, 'ଆପଣ ଲମ୍ଫ ଦେଉଛନ୍ତି କାହିଁକି ?' ସେ କହିବେ, 'କାରଣ ତାହାର ସ୍ପର୍ଶ ମୋତେ ଅପବିତ୍ର କରିଦେବ ।' 'କିନ୍ତୁ ଆପଣ ତ ବର୍ତ୍ତମାନ କହିଲେ ଆମେ ସମସ୍ତେ ସମାନ । ଆପଣ ତ ସ୍ୱୀକାର କରନ୍ତି, ଆତ୍ମା ଆତ୍ମା ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ !' ଉତ୍ତରରେ ସେ କହିବେ, 'ଠିକ୍ କଥା, ତେବେ ଗୃହସ୍ଥମାନଙ୍କ ପକ୍ଷରେ ଏହା ଗୋଟିଏ ତତ୍ତ୍ୱ କଥା ମାତ୍ର । ଯେତେବେଳେ ବଣକୁ ଯିବି, ସେତେବେଳେ ମୁଁ ସମସ୍ତଙ୍କୁ ସମାନ ଜ୍ଞାନ କରିବି ।' ତୁମ ଦେଶରେ (ଇଂଲଣ୍ଡରେ) ବଂଶମର୍ଯ୍ୟାଦା ଓ ଧନକୌଳୀନ୍ୟରେ ଶ୍ରେଷ୍ଠ କୌଣସି ବ୍ୟକ୍ତିକୁ ଯଦି ପଚାରିବ, ଜଣେ ଖ୍ରୀଷ୍ଟିଆନ ହିସାବରେ ସେ ମାନବଭ୍ରାତୃତ୍ୱରେ ବିଶ୍ୱାସୀ କି ନା, କାରଣ ସମସ୍ତେ ଈଶ୍ୱରଙ୍କଠାରୁ ଆସିଛନ୍ତି । ସେ କହିବେ 'ନିଶ୍ଚୟ'; କିନ୍ତୁ ପାଞ୍ଚ ମିନିଟ ମଧ୍ୟରେ ହିଁ ସେ ସାଧାରଣ ଲୋକମାନଙ୍କ ସମ୍ବନ୍ଧରେ ଗୋଟାଏ କିଛି ଅଶୋଭନ ମନ୍ତବ୍ୟ କରି ଚିତ୍କାର କରି ଉଠିବେ । ତା'ହେଲେ ଦେଖାଯାଉଛି, ହଜାର ହଜାର ବର୍ଷ ଧରି ମାନବଭ୍ରାତୃତ୍ୱ ଗୋଟିଏ କଥା ମାତ୍ର ହୋଇ ରହିଯାଇଛି; କେବେହେଲେ ଏହା କାର୍ଯ୍ୟରେ ପରିଣତ ହୋଇ ନାହିଁ । ସମସ୍ତେ ଏହା ବୁଝନ୍ତି, ସତ୍ୟ ବୋଲି ଘୋଷଣା କରନ୍ତି । କିନ୍ତୁ ଯେତେବେଳେ ତୁମେ ସେମାନଙ୍କୁ ଏହା କାର୍ଯ୍ୟରେ ପରିଣତ କରିବାକୁ କହିବ, ସେତେବେଳେ ସେମାନେ କହିବେ, ଏହାକୁ କାର୍ଯ୍ୟରେ ପରିଣତ କରିବା ପାଇଁ ଲକ୍ଷ ଲକ୍ଷ ବର୍ଷ ଲାଗିବ ।

ଜଣେ ରାଜାଙ୍କର ବହୁସଂଖ୍ୟକ ସଭାସଦ୍ ଥିଲେ । ସେମାନଙ୍କ ମଧ୍ୟରୁ ପ୍ରତ୍ୟେକେ କହନ୍ତି, ପ୍ରଭୁଙ୍କ ପାଇଁ ମୁଁ ଜୀବନ ବିସର୍ଜନ କରିବାକୁ ପ୍ରସ୍ତୁତ; ମୋ ଭଳିଆ ଅକପଟ ବ୍ୟକ୍ତି କେବେ ହେଲେ ଜନ୍ମଗ୍ରହଣ କରି ନାହିଁ । ଥରେ ଜଣେ ସନ୍ନ୍ୟାସୀ ରାଜାଙ୍କ ନିକଟକୁ ଆସିଲେ । ରାଜା ତାହାଙ୍କୁ କହିଲେ, 'କେବେହେଲେ ଅନ୍ୟ କୌଣସି ରାଜାର ମୋ ଭଳି ଏତେ ସଂଖ୍ୟକ ବିଶ୍ୱସ୍ତ ସଭାସଦ୍ ନ ଥିଲେ ।' ସନ୍ନ୍ୟାସୀ ହସି ହସି ଉତ୍ତର ଦେଲେ, 'ମୁଁ ଏହା ବିଶ୍ୱାସ କରେ ନାହିଁ ।' ରାଜା କହିଲେ, 'ଆପଣ ଇଚ୍ଛା କଲେ ପରୀକ୍ଷା କରି ଦେଖିପାରନ୍ତି ।' ଏହା ଶୁଣି ସନ୍ନ୍ୟାସୀ ଘୋଷଣା କଲେ, 'ମୁଁ ଗୋଟିଏ ବିରାଟ ଯଜ୍ଞ କରିବି, ଯାହାଦ୍ୱାରା ରାଜାଙ୍କର ରାଜତ୍ୱ ଦୀର୍ଘକାଳ ସ୍ଥାୟୀ ହେବ । ଅବଶ୍ୟ ଗୋଟିଏ ସର୍ତ୍ତ ଅଛି— ଯଜ୍ଞ ପାଇଁ ଗୋଟିଏ କ୍ଷୁଦ୍ର ଦୁଗ୍ଧପୁଷ୍କରିଣୀ ସୃଷ୍ଟି କରିବାକୁ ହେବ । ସେଥିରେ ରାଜାଙ୍କର ପ୍ରତ୍ୟେକ ସଭାସଦ୍‌ଙ୍କୁ ରାତିରେ ଆସି କଳସିଏ ଲେଖାଏଁ ଦୁଧ ଢାଳିଦେଇ ଯିବାକୁ ପଡ଼ିବ ।' ରାଜା ହସି ଦେଇ କହିଲେ, 'ଏହା ପୁଣି କି ପରୀକ୍ଷା !' ସେ ତାଙ୍କ ସଭାସଦ୍‌ଗଣଙ୍କୁ ତାଙ୍କ ନିକଟକୁ ଆସିବାକୁ କହିଲେ ଏବଂ କ'ଣ କରିବାକୁ ହେବ ନିର୍ଦ୍ଦେଶ ଦେଲେ । ସେମାନେ ସମସ୍ତେ ସେ ପ୍ରସ୍ତାବରେ ସାନନ୍ଦ ସମ୍ମତି ଜ୍ଞାପନ କରି ଗୃହକୁ ପ୍ରତ୍ୟାବର୍ତ୍ତନ କଲେ । ନିଶୀଥ ରାତ୍ରିରେ ସେମାନେ ଆସି ପୁଷ୍କରିଣୀରେ ସ୍ୱ ସ୍ୱ କଳସୀ ଶୂନ୍ୟ କଲେ । କିନ୍ତୁ ପ୍ରଭାତରେ ଦେଖାଗଲା ପୁଷ୍କରିଣୀଟି କେବଳ ଜଳରେ ପୂର୍ଣ୍ଣ ହୋଇ ରହିଛି । ସଭାସଦ୍‌ଗଣଙ୍କୁ ଏକତ୍ର ବସାଇ ଏ ବିଷୟରେ ପଚରାଗଲା । ସେମାନେ ପ୍ରତ୍ୟେକେ ଭାବିଥିଲେ, ଯେତେ-ବେଳେ ଏତେ କଳସୀ ଦୁଧ ଢଳା ହେଉଛି, ସେତେବେଳେ ସେ କେବଳ ପାଣି

କଲସିଏ ଛାଲଥିବା କଥା କେହି ଜାଣିପାରିବେ ନାହିଁ । ଦୁର୍ଭାଗ୍ୟକ୍ରମେ ଆମମାନଙ୍କ ମଧ୍ୟରୁ ଅଧିକାଂଶଙ୍କର ଏହିପରି ଧାରଣା । ସମ୍ପଦ୍‌ଗଣଙ୍କ ପରି ଆମେ ମଧ୍ୟ ନିଜ ନିଜ ଭାଗର କାର୍ଯ୍ୟ ଏହିପରି କରିଯାଉଛୁ ।

ପୁରୋହିତ କହନ୍ତି, ଜଗତରେ ଏତେ ଦୂର ଐକ୍ୟବୋଧ ଅଛି ଯେ, ମୁଁ ଯଦି ମୋର କ୍ଷୁଦ୍ର ସ୍ୱାର୍ଥକୁ ତ୍ୟାଗ ନ କରେ, ତାହା କେହି ଜାଣିପାରିବେ ନାହିଁ । ଆମର ଧନୀକଗଣ ମଧ୍ୟ ସେହି କଥା କହିଥାଆନ୍ତି; ପ୍ରତ୍ୟେକ ଦେଶର ଉତ୍ପୀଡ଼କମାନେ ମଧ୍ୟ ଏହିପରି କହିଥାଆନ୍ତି । ଉତ୍ପୀଡ଼କମାନଙ୍କ ତୁଳନାରେ ଉତ୍ପୀଡ଼ିତମାନଙ୍କର ଜୀବନରେ ବେଶୀ ଆଶା ଅଛି । ଉତ୍ପୀଡ଼କମାନଙ୍କ ପକ୍ଷରେ ମୁକ୍ତିଲାଭ କରିବାକୁ ଅନେକ ଅଧିକ ସମୟ ଲାଗିବ, ଅନ୍ୟମାନଙ୍କ ପକ୍ଷରେ ଅଳ୍ପ ସମୟ ଲାଗିବ । କୋକଶିଆଳୀର ନିଷ୍ଠୁରତା ସିଂହର ନିଷ୍ଠୁରତା ଅପେକ୍ଷା ଭୀଷଣତର । ସିଂହ ଥରେ ଆଘାତ କରି କିଛି କାଳ ପାଇଁ ଶାନ୍ତ ରହେ; କିନ୍ତୁ କୋକଶିଆଳୀ ବାରମ୍ବାର ତା' ଶିକାରକୁ ଆକ୍ରମଣ କରିବାକୁ ଚେଷ୍ଟା କରେ । ପୌରୋହିତ୍ୟପ୍ରଥା ଅତି ନିଷ୍ଠୁର । ତେଣୁ ଯେଉଁଠାରେ ପୌରୋହିତ୍ୟପ୍ରଥାର ଉଦ୍ଭବ ହୁଏ, ସେଠାରେ ଧର୍ମର ପତନ ହୋଇଥାଏ । ବେଦାନ୍ତ କହେ, ଆମମାନଙ୍କୁ ଅଧିକାରବାଦ ଛାଡ଼ିଦେବାକୁ ହେବ, ତେବେ ଯାଇ ଧର୍ମ ଆସିବ ।

ତୁମେ କଅଣ ଖ୍ରୀଷ୍ଟଙ୍କର ଏକଥା ବିଶ୍ୱାସ କର—'ତୁମର ଯାହା କିଛି ଅଛି, ବିକ୍ରୟ କରିଦିଅ ଏବଂ ଏ ଅର୍ଥ ଦରିଦ୍ରଗଣଙ୍କୁ ଦାନ କର ।' ଏହି ବାକ୍ୟରେ ଯଥାର୍ଥ ଐକ୍ୟ ରହିଛି; ଶାସ୍ତ୍ରବାକ୍ୟକୁ ନିଜ ଇଚ୍ଛାନୁସାରେ ବ୍ୟାଖ୍ୟା କରିବାକୁ ଯୀଶୁ ଚେଷ୍ଟା କରି ନାହାନ୍ତି, ଏଠାରେ ସତ୍ୟକୁ ଯଥାର୍ଥ ଭାବରେ ଗ୍ରହଣ କରାହୋଇଅଛି । ଶାସ୍ତ୍ରବାକ୍ୟକୁ ଇଚ୍ଛାନୁରୂପ ବ୍ୟାଖ୍ୟା କରିବା ପାଇଁ ଚେଷ୍ଟା କର ନାହିଁ । ମୁଁ ଶୁଣିଅଛି, ଏପରି କୁହାଯାଏ ଯେ, ମୁଷ୍ଟିମେୟ ଇହୁଦୀ—ଯେଉଁମାନେ ଯୀଶୁଙ୍କ ଉପଦେଶ ମାନୁଥିଲେ, ସେହିମାନଙ୍କୁ ହିଁ କେବଳ ଏହି ଉପଦେଶ ଦିଆଯାଇଥିଲା । କିନ୍ତୁ ତାହା ହେଲେ ଅନ୍ୟାନ୍ୟ ବିଷୟରେ ମଧ୍ୟ ଠିକ୍ ଏହି ଯୁକ୍ତି ପ୍ରୟୋଗ କରାଯାଇପାରେ । ତେବେ ତାଙ୍କର ଅନ୍ୟାନ୍ୟ ଉପଦେଶ ମଧ୍ୟ କେବଳ ଇହୁଦୀମାନଙ୍କ ନିମିତ୍ତ, ଏହା କହିବାକୁ ହେବ । ଇଚ୍ଛାନୁରୂପ ଶାସ୍ତ୍ରର ବ୍ୟାଖ୍ୟା କର ନାହିଁ, ଯଥାର୍ଥ ସତ୍ୟକୁ ସମ୍ମୁଖୀନ ହେବାର ସାହସ ଅବଲମ୍ବନ କର । ଯଦିଓ ଆମେ ସତ୍ୟରେ ଉପନୀତ ହୋଇ ନ ପାରୁ, ଆମେ ଯେପରି ଆମର ଦୁର୍ବଳତା ଓ ଅକ୍ଷମତା ସ୍ୱୀକାର କରୁ । ଆମେ ଯେପରି ଆଦର୍ଶକୁ ନଷ୍ଟ ନ କରୁ । ଆମେ ଯେପରି ଅନ୍ତରରେ ଏହି ଆଶା ପୋଷଣ କରୁ ଯେ, ଦିନେ ନା ଦିନେ ଆମେ ସତ୍ୟରେ ଉପନୀତ ହେବୁ । ଆମେ ଏଥିପାଇଁ ଯେପରି ସଚେଷ୍ଟ ରହୁ । ଆଦର୍ଶଟି ଏହି—ତୁମର ଯାହା କିଛି ଅଛି, ବିକ୍ରୟ କରି ଦରିଦ୍ରଗଣଙ୍କୁ ଦାନ କରିଦିଅ ଏବଂ ମୋତେ ଅନୁସରଣ କର । ଏହିପରି ସକଳ ଅଧିକାରକୁ ଏବଂ ଆମମାନଙ୍କ ମଧ୍ୟରେ ଅଧିକାରର ପରିପୋଷକ ସବୁ କିଛିକୁ ବିନଷ୍ଟ କରି ଆମେ ଯେପରି ସେହି ଜ୍ଞାନଲାଭ ପାଇଁ ଚେଷ୍ଟା କରୁ, ଯାହା ସକଳ ମାନବଜାତି ପ୍ରତି ସାମ୍ୟବୋଧ ଆନୟନ କରିବ । ତୁମେ ମନେ କର ଯେ, ତୁମେ ଟିକିଏ ଅଧିକ ମାର୍ଜିତ ଭାଷାରେ କଥା

କୁହ ବୋଲି ଜଣେ ସାଧାରଣ ଲୋକ ଅପେକ୍ଷା ତୁମେ ଉଚ୍ଚତର ? ସ୍ମରଣ ରଖ, ତୁମେ ଯେତେବେଳେ ଏହିପରି ଭାବୁଥାଅ, ସେତେବେଳେ ତୁମେ ମୁକ୍ତି ଦିଗକୁ ଅଗ୍ରସର ନ ହୋଇ ବରଂ ତୁମ ପାଇଁ ନୂତନ ବନ୍ଧନର ସୃଷ୍ଟି କରୁଅଛ । ସର୍ବୋପରି ଆଧ୍ୟାତ୍ମିକତାର ଅହଂକାର ଯଦି ତୁମ ମଧ୍ୟରେ ପ୍ରବେଶ କରେ, ତେବେ ତୁମର ସର୍ବନାଶ ଅନିବାର୍ଯ୍ୟ । ଏହା ହିଁ ସର୍ବାପେକ୍ଷା କଠିନ ବନ୍ଧନ । ଐଶ୍ୱର୍ଯ୍ୟ ବା ଅନ୍ୟ କୌଣସି ବନ୍ଧନ ମାନବାତ୍ମାକୁ ଏତେଦୂର ଶୃଙ୍ଖଳିତ କରି ନ ପାରେ । 'ମୁଁ ଅନ୍ୟ ଅପେକ୍ଷା ପବିତ୍ରତର'—ଏହା ଅପେକ୍ଷା ସର୍ବନାଶକାରୀ ଅନ୍ୟ କୌଣସି ଚିନ୍ତା ମନୁଷ୍ୟ କରି ନ ପାରେ । ତୁମେ କେଉଁ ଅର୍ଥରେ ପବିତ୍ର ? ତୁମର ଅନ୍ତଃସ୍ଥିତ ଈଶ୍ୱର ସମସ୍ତଙ୍କ ଅନ୍ତରରେ ଅବସ୍ଥିତ । ତୁମେ ଯଦି ଏହି ତତ୍ତ୍ୱ ନ ଜାଣିଥାଅ, ତାହାହେଲେ ତୁମେ କିଛି ଜାଣ ନାହିଁ । ପାର୍ଥକ୍ୟ କିପରି ରହିବ ? ସବୁ ବସ୍ତୁ ହିଁ ଏକ । ପ୍ରତ୍ୟେକ ଜୀବ ହିଁ ସେହି 'ମହତୋ ମହୀୟାନ୍' ଈଶ୍ୱରଙ୍କ ମନ୍ଦିର ତୁଲ୍ୟ । ତୁମେ ଯଦି ଏହା ଅନୁଭବ କରିପାର, ତେବେ ଭଲ, ଯଦି ନ ପାର, ତେବେ ଆଧ୍ୟାତ୍ମିକତା ଲାଭ କରିବାରେ ତୁମର ଅନେକ ବିଳମ୍ବ ଅଛି ।

# ଅଧିକାର

[ ଲଣ୍ଡନର ସିସେମ୍ କ୍ଲବ୍‌ରେ ପ୍ରଦତ୍ତ ବକ୍ତୃତା ]

ସମଗ୍ର ପ୍ରକୃତିରେ ଦୁଇଟି ଶକ୍ତି କ୍ରିୟା କରୁଅଛି ବୋଲି ମନେହୁଏ । ଗୋଟିଏ ସର୍ବଦା ଏକ ବସ୍ତୁରୁ ଅପର ବସ୍ତୁକୁ ପୃଥକ୍ କରୁଅଛି ଏବଂ ଅନ୍ୟଟି ପ୍ରତି ମୁହୂର୍ତ୍ତରେ ବସ୍ତୁଗୁଡ଼ିକୁ ଏକ ସୂତ୍ରରେ ବାନ୍ଧିବାର ଚେଷ୍ଟା କରୁଅଛି । ପ୍ରଥମ ଶକ୍ତିଟି ପୃଥକ୍ ପୃଥକ୍ ସତ୍ତା ସୃଷ୍ଟି କରୁଅଛି, ଅନ୍ୟଟି ଯେପରି ସତ୍ତାଗୁଡ଼ିକୁ ଗୋଟିଏ ଗୋଷ୍ଠୀରେ ପରିଣତ କରୁଅଛି; ଏବଂ ଏହି ପରିଦୃଶ୍ୟମାନ ପୃଥକ୍‌ତ୍ୱ ମଧ୍ୟରେ ଐକ୍ୟ ଓ ସାମ୍ୟ ଆନୟନ କରୁଅଛି । ମନେହୁଏ, ଏହି ଦୁଇଟି ଶକ୍ତିର କ୍ରିୟା ପ୍ରକୃତି ଓ ମନୁଷ୍ୟ-ଜୀବନର ପ୍ରତ୍ୟେକ ବିଭାଗରେ ବିଦ୍ୟମାନ । ଆମେ ଦେଖିବାକୁ ପାଉ, ବାହ୍ୟଜଗତରେ ବା ଭୌତିକ ଜଗତରେ ଏହି ଦୁଇଟି ଶକ୍ତି ଅତି ସ୍ପଷ୍ଟଭାବେ ସକ୍ରିୟ । ଏଗୁଡ଼ିକ ବ୍ୟକ୍ତିଭାବସମୂହକୁ ସର୍ବଦା ପୃଥକ୍ ପୃଥକ୍ କରୁଛନ୍ତି, ଅନ୍ୟଗୁଡ଼ିକରୁ ସ୍ପଷ୍ଟତର କରିଦେଉଛନ୍ତି; ପୁଣି ଏଗୁଡ଼ିକୁ ବିଭିନ୍ନ ବିଭାଗ ଓ ଶ୍ରେଣୀରେ ବିଭକ୍ତ କରୁଛନ୍ତି ଏବଂ ଅଭିବ୍ୟକ୍ତି ଓ ଆକୃତିର ସାଦୃଶ୍ୟ ପ୍ରକାଶ କରୁଛନ୍ତି । ମନୁଷ୍ୟର ସାମାଜିକ ଜୀବନରେ ମଧ୍ୟ ଏହି ଏକ ନିୟମ ଦେଖିବାକୁ ମିଳେ । ସାମାଜିକ ଜୀବନ ଗଢ଼ିଉଠିବା ସମୟଠାରୁ ଏହି ଦୁଇଟି ଶକ୍ତି କାମ କରି ଆସୁଛନ୍ତି— ଗୋଟିଏ ଭେଦ ସୃଷ୍ଟି କରୁଅଛି, ଅପରଟି ଐକ୍ୟ ସ୍ଥାପନ କରୁଅଛି । ଏମାନଙ୍କର କ୍ରିୟା ବିଭିନ୍ନ ଆକାରରେ ଦେଖାଦିଏ ଏବଂ ଏହା ବିଭିନ୍ନ ଦେଶ ଓ ବିଭିନ୍ନ କାଳରେ ବିଭିନ୍ନ ନାମରେ ଅଭିହିତ ହୁଏ । କିନ୍ତୁ ମୂଳ ଉପାଦାନ ସମସ୍ତଙ୍କ ମଧ୍ୟରେ ବିଦ୍ୟମାନ । ଗୋଟିକର କାମ ବସ୍ତୁଗୁଡ଼ିକୁ ପୃଥକ୍ ପୃଥକ୍ କରିବା ଏବଂ ଅନ୍ୟଟିର କାମ ଏଗୁଡ଼ିକୁ ଐକ୍ୟବଦ୍ଧ କରିବା । ଗୋଟିଏ ବର୍ଣ୍ଣବୈଷମ୍ୟ ସୃଷ୍ଟି କରୁଅଛି, ଅନ୍ୟଟି ତାହା ଭାଙ୍ଗୁଅଛି; ଗୋଟିଏ ଶ୍ରେଣୀ ଓ ଅଧିକାର ସୃଷ୍ଟି କରୁଛି, ଅନ୍ୟଟି ସେଗୁଡ଼ିକୁ ଧ୍ୱଂସ କରୁଛି । ସମଗ୍ର ବିଶ୍ୱ ଏହି ଦୁଇଟି ଶକ୍ତିର ଦ୍ୱନ୍ଦ୍ୱକ୍ଷେତ୍ର ବୋଲି ମନେହୁଏ । ଗୋଟିଏ ପକ୍ଷ କହେ, ଏହି ଏକୀକରଣ-ଶକ୍ତିକୁ ସର୍ବଶକ୍ତି ପ୍ରୟୋଗ କରି ପ୍ରତିରୋଧ କରିବାକୁ ହେବ, କାରଣ ଏହା ଆମକୁ ମୃତ୍ୟୁ ଆଡ଼କୁ ନେଇଯାଏ । ପୂର୍ଣ୍ଣ ଐକ୍ୟ ଓ ପୂର୍ଣ୍ଣ ବିଲୟ ଗୋଟିଏ କଥା; ଜଗତରେ ଏହି ନିତ୍ୟ କ୍ରିୟାଶୀଳ ବୈଷମ୍ୟ-ଉତ୍ପାଦିକା ଶକ୍ତି ଯେତେବେଳେ ବନ୍ଦ ହୋଇଯିବ, ସେତେବେଳେ ଜଗତ ଲୋପ ହେବ । ବୈଷମ୍ୟ ବା ବୈଚିତ୍ର୍ୟ ହିଁ ଦୃଶ୍ୟମାନ ଜଗତର କାରଣ; ଏକୀକରଣ ବା ଐକ୍ୟ ଦୃଶ୍ୟମାନ ଜଗତକୁ ପ୍ରାଣହୀନ ଜଡ଼-ପିଣ୍ଡରେ ପରିଣତ କରେ । ମାନବଜାତି ଅବଶ୍ୟ ହିଁ ଏହି ଅବସ୍ଥା ପରିହାର କରିବାକୁ ଇଚ୍ଛା କରେ । ଆମେ ଆମର ପାଖଆଖରେ ଯେଉଁ ସକଳ ବସ୍ତୁ ଓ ଘଟଣା ଦେଖୁ, ସବୁକ୍ଷେତ୍ରରେ ସେହି ଏକ ଯୁକ୍ତିକୁ ପ୍ରୟୋଗ କରାହୁଏ । ଆମେ ନିଃସନ୍ଦେହରେ କହିପାରୁ ଯେ, ଶାରୀରିକ ଏବଂ ସାମାଜିକ ଶ୍ରେଣୀବିଭାଗ କ୍ଷେତ୍ରରେ ସମ୍ପୂର୍ଣ୍ଣ ସମତା ସ୍ୱାଭାବିକ ମୃତ୍ୟୁ ଆଣିଥାଏ ଏବଂ ସମାଜର ବିଲୋପ ସାଧନ କରିଥାଏ ।

ଚିନ୍ତା ଓ ଅନୁଭୂତ କ୍ଷେତ୍ରରେ ମଧ୍ୟ ସମ୍ପୂର୍ଣ୍ଣ ସମତା ମନନଶକ୍ତିର ଅପଚୟ ଓ ଅବନତି ଘଟାଏ । ସୁତରାଂ ସମ୍ପୂର୍ଣ୍ଣ ସମତା ପରିହାର କରିବା ବାଞ୍ଛନୀୟ । ଏହା ଗୋଟିଏ ପକ୍ଷର ଯୁକ୍ତି, ପ୍ରତ୍ୟେକ ଦେଶରେ ବିଭିନ୍ନ ସମୟରେ କେବଳ ଭାଷାର ପରିବର୍ତ୍ତନଦ୍ୱାରା ଏହା ପ୍ରଦର୍ଶିତ ହୋଇଅଛି । ଭାରତବର୍ଷରେ ବ୍ରାହ୍ମଣଗଣ ଯେତେବେଳେ ଜାତିବିଭାଗ ସମର୍ଥନ କରିଥାଆନ୍ତି, ଯେତେବେଳେ ସମାଜର ସ୍ୱାର୍ଥ ବିରୋଧରେ ଏକ ବିଶେଷ ଶ୍ରେଣୀର ଅଧିକାର ରକ୍ଷା କରିବାକୁ ଉଦ୍ୟତ ହୁଅନ୍ତି, ସେତେବେଳେ କାର୍ଯ୍ୟତଃ ସେମାନେ ମଧ୍ୟ ଏହି ଯୁକ୍ତି ଉପରେ ହିଁ ଜୋର୍ ଦେଇଥାଆନ୍ତି । ବ୍ରାହ୍ମଣମାନେ କହନ୍ତି, ଜାତିବିଭାଗ ବିଲୁପ୍ତ ହେଲେ ସମାଜ ଧ୍ୱଂସ ହେବ ଏବଂ ସଗର୍ବେ ଏହି ଐତିହାସିକ ସତ୍ୟ ଉପସ୍ଥାପିତ କରନ୍ତି ଯେ, ଭାରତୀୟ ବ୍ରାହ୍ମଣଶାସିତ ସମାଜ ହିଁ ସର୍ବାଧିକ ଦୀର୍ଘାୟୁ । ସୁତରାଂ ଦୃଢ଼ତାର ସହିତ ସେମାନେ ତାଙ୍କର ଏହି ଯୁକ୍ତି ପ୍ରଦର୍ଶନ କରନ୍ତି । ଦୃଢ଼ ପ୍ରତ୍ୟୟ ସହିତ ସେମାନେ କହନ୍ତି, ଯେଉଁ ସମାଜ-ବ୍ୟବସ୍ଥା ମନୁଷ୍ୟକୁ ଅପେକ୍ଷାକୃତ ଅଳ୍ପାୟୁ କରେ, ତାହା ଅପେକ୍ଷା ଯେଉଁ ବ୍ୟବସ୍ଥାରେ ସେ ଦୀର୍ଘତମ ଜୀବନଲାଭ କରିପାରେ ତାହା ଅବଶ୍ୟ ହିଁ ଶ୍ରେୟଃ ।

ପକ୍ଷାନ୍ତରେ ସର୍ବଦା ଐକ୍ୟର ସମର୍ଥକ ଦଳେ ଲୋକ ଦେଖିବାକୁ ମିଳନ୍ତି । ଉପନିଷଦ୍, ବୁଦ୍ଧ, ଖ୍ରୀଷ୍ଟ ଏବଂ ଅନ୍ୟାନ୍ୟ ମହାନ୍ ଧର୍ମପ୍ରଚାରକଗଣଙ୍କ ଯୁଗରୁ ଆରମ୍ଭ କରି ବର୍ତ୍ତମାନ ଯୁଗ ପର୍ଯ୍ୟନ୍ତ ନୂତନ ରାଜନୈତିକ ଉଚ୍ଚାକାଙ୍କ୍ଷା ଏବଂ ନିପୀଡ଼ିତ ଓ ଅଧିକାରବଞ୍ଚିତମାନଙ୍କ ଦାବିରେ ମଧ୍ୟ ଏହି ଐକ୍ୟ ଓ ସମତାର ବାଣୀ ହିଁ ବିଘୋଷିତ ହେଉଅଛି । କିନ୍ତୁ ମାନବପ୍ରକୃତି ନିଜସ୍ୱ ଆତ୍ମପ୍ରକାଶ କରିବ । ଯେଉଁମାନଙ୍କର ବ୍ୟକ୍ତିଗତ ସୁବିଧା ଅଛି, ସେମାନେ ତାହା ରଖିବାକୁ ଚାହାଁନ୍ତି ଏବଂ ଏହା ସପକ୍ଷରେ କୌଣସି ଯୁକ୍ତି ପାଇଲେ ଏହି ଯୁକ୍ତି ଯେତେ ଅଦ୍ଭୁତ ଓ ଏକଦେଶଦର୍ଶୀ ହେଉ ନା କାହିଁକି ତାହାକୁ ଜାବୁଡ଼ି ଧରିଥାଆନ୍ତି । ଏହି ମନ୍ତବ୍ୟ ଉଭୟ ପକ୍ଷ ପାଇଁ ପ୍ରଯୋଜ୍ୟ ।

ଦର୍ଶନ କ୍ଷେତ୍ରରେ ଏହି ପ୍ରଶ୍ନ ଅନ୍ୟ ଗୋଟିଏ ରୂପ ଧାରଣ କରେ । ବୌଦ୍ଧଗଣ କହନ୍ତି ପରିଦୃଶ୍ୟମାନ ଘଟଣା-ବୈଚିତ୍ର୍ୟ ମଧ୍ୟରେ ଐକ୍ୟସ୍ଥାପନକାରୀ କୌଣସି ପଦାର୍ଥର ସନ୍ଧାନ କରିବାର ପ୍ରୟୋଜନ ନାହିଁ; ଏହି ଜଗତ୍-ପ୍ରପଞ୍ଚରେ ଆମେ ସନ୍ତୁଷ୍ଟ ରହିବା ଉଚିତ । ବୈଚିତ୍ର୍ୟ ଯେତେ ଦୁଃଖଜନକ ଓ ଦୁର୍ବଳ ବୋଲି ମନେହେଉନା କାହିଁକି, ଏହା ହିଁ ଜୀବନର ସାର ବସ୍ତୁ; ଏହା ଅପେକ୍ଷା ଆମେ ଅଧିକ କିଛି ପାଇ ନ ପାରୁ । ବୈଦାନ୍ତିକ କହନ୍ତି ଏକମାତ୍ର ଏକତ୍ୱ ହିଁ ବିଦ୍ୟମାନ ରହିଛି; ବୈଚିତ୍ର୍ୟ କେବଳ ବହିଃ-ବିଷୟକ, କ୍ଷଣସ୍ଥାୟୀ ଏବଂ ଆପାତପ୍ରତୀୟମାନ । ବୈଦାନ୍ତିକ କହନ୍ତି, ବୈଚିତ୍ର୍ୟ ଆଡ଼କୁ ଦୃଷ୍ଟିପାତ କର ନାହିଁ, ଏକତ୍ୱ ନିକଟକୁ ଫେରିଯାଅ । ବୌଦ୍ଧ କହନ୍ତି ଐକ୍ୟ ପରିହାର କର, ଏହା ଗୋଟିଏ ଭ୍ରମ । ବୈଚିତ୍ର୍ୟ ଦିଗକୁ ଯାଅ । ଧର୍ମ ଓ ଦର୍ଶନ କ୍ଷେତ୍ରରେ ମତର ଏହି ପାର୍ଥକ୍ୟ ବର୍ତ୍ତମାନ କାଳ ପର୍ଯ୍ୟନ୍ତ ଚାଲିଅଛି; କାରଣ ପ୍ରକୃତପକ୍ଷେ ଦାର୍ଶନିକ ତତ୍ତ୍ୱର ସଂଖ୍ୟା ଅତି ଅଳ୍ପ । ଦର୍ଶନ ଓ ଦାର୍ଶନିକ ଭାବଧାରା, ଧର୍ମ ଓ ଧର୍ମବିଷୟକ ଜ୍ଞାନ ପାଞ୍ଚହଜାର ବର୍ଷ ପୂର୍ବେ ଚୂଡ଼ାନ୍ତ ପରିଣତି ଲାଭ କରିଥିଲା; ଆମେ ବିଭିନ୍ନ ଭାଷାରେ ଏକ

ସତ୍ୟର ହିଁ ପୁନରାବୃତ୍ତି କରୁଅଛୁ ମାତ୍ର; କେତେବେଳେ ବା ଅଭିନବ ଉଦାହରଣ ପ୍ରଦର୍ଶନ କରି ସେଗୁଡ଼ିକୁ ସମୃଦ୍ଧ କରୁଅଛୁ । ସୁତରାଂ ଦେଖାଯାଉଛି, ଆଜି ପର୍ଯ୍ୟନ୍ତ ସେହି ସଂଗ୍ରାମ ହିଁ ଚାଲିଛି । ଗୋଟିଏ ପକ୍ଷ ଚାହାଁନ୍ତି—ଆମେ ଜଗତପ୍ରପଞ୍ଚ ଓ ତାହାର ଏହିସବୁ ବିଭିନ୍ନ ବୈଚିତ୍ର୍ୟକୁ ଧରି ରଖିଥାଉ । ବହୁ ଯୁକ୍ତିଦ୍ୱାରା ସେମାନେ ଦେଖାଇଥାଆନ୍ତି, ବୈଚିତ୍ର୍ୟ ରହିବ ହିଁ ରହିବ, ଏହା ବନ୍ଦ ହୋଇଗଲେ ସବୁ ଲୁପ୍ତ ହେବ । ଜୀବନ କହିଲେ ଆମେ ଯାହା ବୁଝୁ, ତାହା ପରିବର୍ତ୍ତନ ବା ବୈଚିତ୍ର୍ୟଦ୍ୱାରା ହିଁ ସଂଗଠିତ ହୁଏ । ଅପର ପକ୍ଷ ପୁଣି ନିଃସଂକୋଚରେ ଏକତ୍ୱ ଦିଗକୁ ଆମର ଦୃଷ୍ଟି ଆକର୍ଷଣ କରନ୍ତି ।

ନୀତିଶାସ୍ତ୍ର ଓ ଆଚରଣ କ୍ଷେତ୍ରରେ ଆମେ ଏକ ବିରାଟ ପାର୍ଥକ୍ୟ ଲକ୍ଷ୍ୟ କରିଥାଉ । ସମ୍ଭବତଃ ନୀତିଶାସ୍ତ୍ର ହିଁ ଏକମାତ୍ର ବିଜ୍ଞାନ, ଯାହା ଏହି ଦ୍ୱନ୍ଦ୍ୱଠାରୁ ଦୃଢ଼ତାର ସହିତ ଦୂରରେ ରହିଅଛି; କାହିଁକି ନା ଐକ୍ୟ ହିଁ ଯଥାର୍ଥ ନୀତି, ପ୍ରେମ ହିଁ ଏହାର ଭିତ୍ତି । ଏହା ବୈଚିତ୍ର୍ୟ କିମ୍ବା ପରିବର୍ତ୍ତନକୁ ଲକ୍ଷ୍ୟ କରିବ ନାହିଁ । ନୈତିକତାର ଏକମାତ୍ର ଲକ୍ଷ୍ୟ ଏହି ଐକ୍ୟ—ସମତା । ଆଜି ପର୍ଯ୍ୟନ୍ତ ମାନବଜାତି ଯେଉଁସବୁ ମହାନ୍ ନୈତିକ ନିୟମାବଳୀ ଆବିଷ୍କାର କରିଅଛି, ସେଗୁଡ଼ିକର କୌଣସି ପରିବର୍ତ୍ତନ ହେବ ନାହିଁ । ତାଙ୍କ ନିକଟରେ ପରିବର୍ତ୍ତନର କୌଣସି ମୂଲ୍ୟ ନାହିଁ । ଏହି ନୈତିକ ନିୟମଗୁଡ଼ିକର ଗୋଟିଏ ଉଦ୍ଦେଶ୍ୟ ଏହି ଏକତ୍ୱ ବା ସାମ୍ୟର ବୋଧକୁ ସୁଗମ କରିବା । ଭାରତୀୟ ମନ—(ବୈଦାନ୍ତିକ ମନକୁ ହିଁ ମୁଁ ଭାରତୀୟ ମନ ବୋଲି ମନେକରେ)—ଅଧିକତର ବିଶ୍ଳେଷଣପ୍ରବଣ ବୋଲି ସକଳ ବିଶ୍ଳେଷଣର ଫଳସ୍ୱରୂପ ଏହି ଐକ୍ୟକୁ ଆବିଷ୍କାର କରିଅଛି ଏବଂ ସମସ୍ତ ବିଷୟର ସମାଧାନ ଏହି ଐକ୍ୟର ଧାରଣା ଉପରେ ସ୍ଥାପନ କରିବାକୁ ଚେଷ୍ଟା କରିଅଛି । କିନ୍ତୁ ଆମେ ଦେଖିଛୁ ଆମର ଦେଶର ଅନ୍ୟ ମତବାଦୀମାନେ (ଯେପରି ବୌଦ୍ଧଗଣ) କେଉଁଠି ହେଲେ ଏହି ଐକ୍ୟର ସନ୍ଧାନ ପାଇ ନାହାନ୍ତି । ସେମାନଙ୍କ ନିକଟରେ ସକଳ ସତ୍ୟ କେତେଗୁଡ଼ିଏ ବୈଚିତ୍ର୍ୟର ସମଷ୍ଟି ମାତ୍ର, ଗୋଟିଏ ବସ୍ତୁ ସହିତ ଅନ୍ୟ ବସ୍ତୁର କୌଣସି ସମ୍ପର୍କ ନାହିଁ ।

ଅଧ୍ୟାପକ ମ୍ୟାକ୍ସ ମୁଲର୍‌ଙ୍କର ଏକ ପୁସ୍ତକରେ ବର୍ଣ୍ଣିତ ଗୋଟିଏ ଗଳ୍ପ ମୋର ମନେ ପଡ଼ୁଅଛି । ଏହା ଗୋଟିଏ ଗ୍ରୀକ୍ ଗଳ୍ପ—କିପରି ଜଣେ ବ୍ରାହ୍ମଣ ଏଥେନସ୍‌ରେ ସକ୍ରେଟିସ୍‌ଙ୍କ ସହିତ ସାକ୍ଷାତ୍ କରିଥିଲେ । ବ୍ରାହ୍ମଣ ପଚାରିଲେ, 'ଶ୍ରେଷ୍ଠ ଜ୍ଞାନ କଅଣ ?' ସକ୍ରେଟିସ୍ ଉତ୍ତର ଦେଲେ, 'ମନୁଷ୍ୟକୁ ଜାଣିବା ହିଁ ସକଳ ଜ୍ଞାନର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ।' ବ୍ରାହ୍ମଣ କହିଲେ, 'କିନ୍ତୁ ଈଶ୍ୱରଙ୍କୁ ନ ଜାଣି ଆପଣ ମନୁଷ୍ୟକୁ କିପରି ଜାଣିପାରିବେ ?' ଏକ ପକ୍ଷ—ଅର୍ଥାତ୍ ବର୍ତ୍ତମାନ ଇଉରୋପର ପ୍ରତିନିଧି ଗ୍ରୀକ୍‌ପକ୍ଷ ମନୁଷ୍ୟକୁ ଜାଣିବା ଉପରେ ଜୋର୍ ଦେଇଛନ୍ତି । ପୃଥିବୀର ପ୍ରାଚୀନ ଧର୍ମସମୂହର ପ୍ରତିନିଧି, ପ୍ରଧାନତଃ ଭାରତୀୟ ପକ୍ଷ ଈଶ୍ୱରଙ୍କୁ ଜାଣିବା ଉପରେ ଜୋର୍ ଦେଇଛନ୍ତି । ଏକ ପକ୍ଷ ପ୍ରକୃତି ମଧ୍ୟରେ ଈଶ୍ୱରଙ୍କୁ ଦର୍ଶନ କରନ୍ତି । ଅପର ପକ୍ଷ ଈଶ୍ୱରଙ୍କ ମଧ୍ୟରେ ପ୍ରକୃତିକୁ ଦର୍ଶନ କରନ୍ତି । ବର୍ତ୍ତମାନ ହୁଏତ

ଏହି ଉଭୟ ଦୃଷ୍ଟିଭଙ୍ଗୀରୁ ଦୂରରେ ରହି ସମଗ୍ର ସମସ୍ୟା ପ୍ରତି ନିରପେକ୍ଷ ଦୃଷ୍ଟି ଅବଲମ୍ବନ କରିବାର ଅଧିକାର ଆମମାନଙ୍କୁ ଦିଆହୋଇଛି । ଏହା ସତ୍ୟ ଯେ, ବୈଚିତ୍ର୍ୟ ଅଛି ଏବଂ ଜୀବନ ପକ୍ଷରେ ଏହା ଅପରିହାର୍ଯ୍ୟ । ଏହା ମଧ୍ୟ ସତ୍ୟ ଯେ, ଏହି ବୈଚିତ୍ର୍ୟ ମଧ୍ୟଦେଇ ଐକ୍ୟ ଅନୁଭବ କରିବାକୁ ହେବ । ଏହା ସତ୍ୟ ଯେ, ପ୍ରକୃତି ମଧ୍ୟରେ ଈଶ୍ୱରଙ୍କୁ ଉପଲବ୍ଧି କରାଯାଏ । ପୁଣି ଏହା ମଧ୍ୟ ସତ୍ୟ ଯେ, ଈଶ୍ୱରଙ୍କ ଆଶ୍ରିତ ରୂପେ ପ୍ରକୃତିକୁ ମଧ୍ୟ ଉପଲବ୍ଧି କରାଯାଏ । ମନୁଷ୍ୟ ସମ୍ବନ୍ଧରେ ଜ୍ଞାନ ଶ୍ରେଷ୍ଠ-ଜ୍ଞାନ ଏବଂ ମନୁଷ୍ୟକୁ ଜାଣିବା ପରେ ଆମେ ଈଶ୍ୱରଙ୍କୁ ଜାଣିପାରୁ । ପୁଣି ଏହା ମଧ୍ୟ ସତ୍ୟ ଯେ, ଈଶ୍ୱରବିଷୟକ ଜ୍ଞାନ ହିଁ ଶ୍ରେଷ୍ଠ-ଜ୍ଞାନ ଏବଂ ଈଶ୍ୱରଙ୍କୁ ଜାଣିବାଦ୍ୱାରା ଆମେ ମନୁଷ୍ୟକୁ ଜାଣିପାରୁ । ଏହି ଉକ୍ତିଗୁଡ଼ିକ ଆପାତ-ବିରୋଧୀ ବୋଲି ପ୍ରତୀୟମାନ ହେଲେ ହେଁ ମନୁଷ୍ୟ-ପ୍ରକୃତି ଦୃଷ୍ଟିରୁ ଅପରିହାର୍ଯ୍ୟ । ସମଗ୍ର ବିଶ୍ୱ—ବୈଚିତ୍ର୍ୟ ମଧ୍ୟରେ ଐକ୍ୟର ଏବଂ ଐକ୍ୟ ମଧ୍ୟରେ ବୈଚିତ୍ର୍ୟର କ୍ରୀଡ଼ାକ୍ଷେତ୍ର; ସମଗ୍ର ଜଗତ ସାମ୍ୟ ଓ ବୈଷମ୍ୟର ଖେଳ, ସମଗ୍ର ବିଶ୍ୱ ଅସୀମ ମଧ୍ୟରେ ସସୀମର କ୍ରୀଡ଼ାଭୂମି । ଗୋଟିଏକୁ ଗ୍ରହଣ ନ କରି ଆମେ ଅନ୍ୟଟିକୁ ଗ୍ରହଣ କରି ନ ପାରୁ । କିନ୍ତୁ ଆମେ ଏହି ଦୁଇଟିକୁ ଗୋଟିଏ ଅନୁଭୂତିର—ଗୋଟିଏ ପ୍ରତ୍ୟକ୍ଷର ବିଷୟ ବୋଲି ଗ୍ରହଣ କରି ନ ପାରୁ । ଜଗତ କିନ୍ତୁ ସର୍ବଦା ଏହି ଭାବରେ ହିଁ ଚାଲିଥିବ ।

ଆମର ଆଉ ଗୋଟିଏ ଉଦ୍ଦେଶ୍ୟ ଧର୍ମ ବିଷୟରେ (ନୀତି ନୁହେଁ) ଆମକୁ କହିବାକୁ ହେବ ଯେ, ଯେତେଦିନ ପର୍ଯ୍ୟନ୍ତ ସୃଷ୍ଟିରେ ପ୍ରାଣର କ୍ରିୟା ରହିବ, ସେତେଦିନ ସର୍ବ-ପ୍ରକାର ଭେଦ ଓ ପାର୍ଥକ୍ୟର ବିଲୟ ଅର୍ଥାତ୍ ଏକ ନିଷ୍କ୍ରିୟ ସାମ୍ୟାବସ୍ଥା ଅସମ୍ଭବ । ଏପରି ଅବସ୍ଥା ବାଞ୍ଛନୀୟ ନୁହେଁ । ପୁଣି ଏହି ସତ୍ୟର ଅନ୍ୟ ଗୋଟିଏ ଦିଗ ଅଛି, ଅର୍ଥାତ୍ ଏହି ଐକ୍ୟ ପୂର୍ବରୁ ହିଁ ବିଦ୍ୟମାନ ରହିଅଛି । ଏହି ଐକ୍ୟ ସ୍ଥାପନ କରିବାକୁ ହେବ ନାହିଁ, ଏହା ପୂର୍ବରୁ ହିଁ ରହିଅଛି । ଏହି ଐକ୍ୟ ବ୍ୟତୀତ ବୈଚିତ୍ର୍ୟ ତୁମେମାନେ ଆଦୌ ଅନୁଭବ କରିପାରିବ ନାହିଁ । ଈଶ୍ୱରଙ୍କୁ ସୃଷ୍ଟି କରିବାକୁ ହେବ ନାହିଁ । ଈଶ୍ୱର ପୂର୍ବରୁ ହିଁ ଅଛନ୍ତି । ସକଳ ଧର୍ମ ଏହି ଦାବୀ କରି ଆସୁଅଛନ୍ତି । ଯେତେବେଳେ କେହି ସାନ୍ତକୁ ଉପଲବ୍ଧି କରି-ଅଛନ୍ତି, ସେତେବେଳେ ସେ ଅନନ୍ତଙ୍କୁ ହିଁ ଉପଲବ୍ଧି କରିଛନ୍ତି । କେହି କେହି ସାନ୍ତ ଉପରେ ଜୋର୍ ଦେଇ ହୁଏତ ଘୋଷଣା କରିବେ, ଆମେ ବହିର୍ଜଗତରେ କେବଳ ସାନ୍ତଙ୍କୁ ହିଁ ଉପଲବ୍ଧି କରିଅଛୁ । ଅନ୍ୟ କେହି କେହି ହୁଏତ ଅନନ୍ତ ଉପରେ ଜୋର୍ ଦେଇ କହିବେ, ଆମେ କେବଳ ଅନନ୍ତଙ୍କୁ ହିଁ ଉପଲବ୍ଧି କରିଅଛୁ । କିନ୍ତୁ ଆମେ ଜାଣୁ, ଗୋଟିଏ ବ୍ୟତୀତ ଅନ୍ୟକୁ ଉପଲବ୍ଧି କରି ହୁଏ ନାହିଁ—ଏହା ଯୁକ୍ତିଦିଗରୁ ଅପରିହାର୍ଯ୍ୟ । ସୁତରାଂ ଦାବି କରାହେଉଛି—ଏହି ସମତା, ଏହି ଐକ୍ୟ, ଏହି ପୂର୍ଣ୍ଣତା—ଯେକୌଣସି ନାମରେ ଏହାକୁ ଅଭିହିତ କର ନା କାହିଁକି—କେବେ ସୃଷ୍ଟି ହୋଇପାରେ ନାହିଁ; ଏହା ତ ପୂର୍ବରୁ ହିଁ ବିଦ୍ୟମାନ ଏବଂ ବର୍ତ୍ତମାନ ମଧ୍ୟ ରହିଅଛି । ଆମମାନଙ୍କୁ ଏହା ବୁଝିବାକୁ ହେବ ଏବଂ ଉପଲବ୍ଧି କରିବାକୁ ହେବ । ଆମେ ଏହା ଜାଣୁ ବା ନ ଜାଣୁ ପ୍ରାଞ୍ଜଳ ଭାଷାରେ ପ୍ରକାଶ କରିପାରୁ ବା ନ ପାରୁ ଏହି ଉପଲବ୍ଧି ଇନ୍ଦ୍ରିୟାନୁଭୂତି ସଦୃଶ ଶକ୍ତି ବା ସ୍ୱଚ୍ଛତା ଲାଭ କରୁ

ବା ନ କରୁ, ଏହା ବିଦ୍ୟମାନ ରହିଅଛି । ଯୁକ୍ତିବର୍ଗର ଦିଗରୁ ଆମେ ସ୍ୱୀକାର କରିବାକୁ ବାଧ୍ୟ ଯେ, ଏହି ଐକ୍ୟ ବିଦ୍ୟମାନ ରହିଅଛି, ତାହା ନ ହେଲେ ସସୀମର ଉପଲବ୍ଧି ସମ୍ଭବ ହୁଅନ୍ତା ନାହିଁ । ମୁଁ 'ଦ୍ରବ୍ୟ' ଓ 'ଗୁଣ'ର ସ୍ୱତନ୍ତ୍ର ଧାରଣା କଥା କହୁ ନାହିଁ, ମୁଁ ଏକତ୍ୱ ବିଷୟରେ କହୁଅଛି । ଏହିସବୁ ଜାଗତିକ ବୈଚିତ୍ର୍ୟ ମଧ୍ୟରେ ଯେତେବେଳେ, ଆମେ 'ତୁମେ' ଓ 'ମୁଁ' ପୃଥକ୍—ଏହି ଉପଲବ୍ଧି କରୁଛୁ, ସେତେବେଳେ 'ତୁମର' ଓ 'ମୋର' ଅଭିନ୍ନତାର ଉପଲବ୍ଧି ମଧ୍ୟ ସ୍ୱତଃ ଆମ ମନକୁ ଆସୁଛି । ଏହି ଐକ୍ୟବୋଧ ବ୍ୟତୀତ ଜ୍ଞାନ କେବେହେଲେ ସମ୍ଭବ ହୁଅନ୍ତା ନାହିଁ । ସମତାର ଧାରଣା ବ୍ୟତୀତ ଅନୁଭୂତି ବା ଜ୍ଞାନ କିଛିହେଲେ ସମ୍ଭବ ହୁଅନ୍ତା ନାହିଁ । ସୁତରାଂ ଉଭୟ ଧାରଣା ହିଁ ଏକାଧାରେ ଭାବରେ ଚାଲିଛି ।

ସୁତରାଂ ଅବସ୍ଥାର ପୂର୍ଣ୍ଣ ସମତା ନୈତିକ ଆଚରଣର ଲକ୍ଷ୍ୟ ହେଲେହେଁ ତାହା ଅସମ୍ଭବ ବୋଲି ମନେହୁଏ । ଆମେ ଯେତେ ଚେଷ୍ଟା କରୁନା କାହିଁକି, ସବୁ ମନୁଷ୍ୟ ଏକପ୍ରକାର ହେବେ—ଏହା କେବେହେଲେ ସମ୍ଭବ ହେବ ନାହିଁ । ମନୁଷ୍ୟ ପରସ୍ପରଠାରୁ ପୃଥକ୍ ହୋଇ ଜନ୍ମଗ୍ରହଣ କରେ । କେହି କେହି ଅନ୍ୟ ଲୋକ ତୁଳନାରେ ଅଧିକତର ଶକ୍ତିଶାଳୀ; କେହି କେହି ସ୍ୱଭାବତଃ ହିଁ କ୍ଷମତାସମ୍ପନ୍ନ ହେବେ, ପୁଣି କେହି କେହି ଏପରି ହେବେ ନାହିଁ । କେହି କେହି ସର୍ବାଙ୍ଗସୁନ୍ଦର ହେବେ, କେହି କେହି ହେବେ ନାହିଁ । ଆମେ କେବେହେଲେ ଏ ପାର୍ଥକ୍ୟ ବନ୍ଦ କରିପାରିବା ନାହିଁ । ପୁଣି ବିଭିନ୍ନ ଆଚାର୍ଯ୍ୟଙ୍କଦ୍ୱାରା ଘୋଷିତ ଏହି ସକଳ ଆଶ୍ଚର୍ଯ୍ୟ ନୀତିବାକ୍ୟ ଆମମାନଙ୍କ କର୍ଣ୍ଣରେ ଧ୍ୱନିତ ହୁଏ । ଏହି ଭାବରେ ମୁନି ସର୍ବତ୍ର ସମଭାବରେ ଅବସ୍ଥିତ ପରମାତ୍ମାଙ୍କୁ ଦର୍ଶନ କରି ଆତ୍ମାଦ୍ୱାରା ଆତ୍ମାକୁ ହିଂସା କରନ୍ତି ନାହିଁ ଏବଂ ସେହିହେତୁ ସେ ପରମ ଗତି ପ୍ରାପ୍ତ ହୁଅନ୍ତି । ଯେଉଁମାନଙ୍କ ମନ ସର୍ବଭୂତସ୍ଥ ବ୍ରହ୍ମଙ୍କଠାରେ ନିଶ୍ଚଳ, ଇହଜୀବନରେ ହିଁ ସେମାନେ ଜନ୍ମମୃତ୍ୟୁ ଉଭୟକୁ ଜୟ କରିଅଛନ୍ତି; କାରଣ ବ୍ରହ୍ମ ନିର୍ଦ୍ଦୋଷ ଓ ସମଦର୍ଶୀ । ଅତଏବ ସେମାନେ ବ୍ରହ୍ମଙ୍କଠାରେ ହିଁ ଅବସ୍ଥିତ । ଏହା ହିଁ ଯେ ଯଥାର୍ଥ ଭାବ ତାହା ଆମେ ଅସ୍ୱୀକାର କରି ନ ପାରୁ; ତଥାପି ଅସୁବିଧା ଏହି ଯେ, ବିଭିନ୍ନ ବସ୍ତୁର ଆକୃତି ଓ ଅବସ୍ଥାନୁଗତ ସମତା ଅସମ୍ଭବ ।

କିନ୍ତୁ ଅଧିକାରବାଦକୁ ଆମେ ନିଶ୍ଚିତ ଭାବରେ ରୋଧ କରିପାରୁ । ସମଗ୍ର ଜଗତ ସମ୍ପର୍କରେ ଏହା ହିଁ ଯଥାର୍ଥ କାର୍ଯ୍ୟ । ପ୍ରତ୍ୟେକ ଜାତି ଓ ପ୍ରତ୍ୟେକ ଦେଶର ସାମାଜିକ ଜୀବନରେ ଏହା ହିଁ ଏକମାତ୍ର ସଂଗ୍ରାମ । ଏକ ଶ୍ରେଣୀର ଲୋକେ ଅପର-ଶ୍ରେଣୀର ଲୋକଙ୍କଠାରୁ ସ୍ୱାଭାବିକ ଭାବରେ ଅଧିକ ବୁଦ୍ଧିମାନ୍—ଏହା ଆମମାନଙ୍କର ଚିନ୍ତାର ବିଷୟ ନୁହେଁ; ବରଂ ଆମର ସମସ୍ୟା ହେଉଛି, ବୁଦ୍ଧିର ଆଧିକ୍ୟର ସୁଯୋଗ ନେଇ ଏହି ଶ୍ରେଣୀର ଲୋକେ ଅଳ୍ପବୁଦ୍ଧି ଲୋକଙ୍କ ନିକଟରୁ ସେମାନଙ୍କର ଦୈହିକ ସୁଖସ୍ୱାଚ୍ଛନ୍ଦ୍ୟ କାଢ଼ିନେବେ କାହିଁକି ? ଏହି ବୈଷମ୍ୟକୁ ଧ୍ୱଂସ କରିବା ପାଇଁ ସଂଗ୍ରାମ ଚାଲିଛି । କେହି କେହି ଅନ୍ୟାନ୍ୟ ବ୍ୟକ୍ତି ଅପେକ୍ଷା ଅଧିକତର ବଳଶାଳୀ ହେବେ, ତେଣୁ ଅନ୍ୟମାନଙ୍କୁ ଦମନ ବା ପରାଜିତ କରିବାରେ ସମର୍ଥ ହେବେ—ଏହା ସ୍ୱତଃସିଦ୍ଧ

ଘଟଣା; କିନ୍ତୁ ଏହି ଶାରୀରିକ ଶକ୍ତି ହେତୁ ସେମାନେ ଜୀବନର ସକଳ ସୁଖସ୍ୱାଚ୍ଛନ୍ଦ୍ୟ କେବଳ ନିଜ ପାଇଁ କାଢ଼ିନେବେ—ଏ ପ୍ରକାର ଅଧିକାରବାଦ କେବେହେଲେ ନୀତିସମ୍ମତ ହୋଇ ନ ପାରେ—ଏବଂ ଏହାର ବିରୋଧରେ ହିଁ ସଂଗ୍ରାମ ଚାଲିଅଛି । ଦଳେ ଲୋକ ସ୍ୱଭାବସିଦ୍ଧ ଦକ୍ଷତା ହେତୁ ଅନ୍ୟମାନଙ୍କ ଅପେକ୍ଷା ଅଧିକ ଧନସଞ୍ଚୟ କରିପାରିବେ, କିନ୍ତୁ ଧନସଞ୍ଚୟର ଏହି ସାମର୍ଥ୍ୟ ହେତୁ ସେମାନେ ଅସମର୍ଥ ବ୍ୟକ୍ତିମାନଙ୍କୁ ଉତ୍ପୀଡ଼ନ ଏବଂ ନିଷ୍ଠୁର ଭାବେ ପଦଦଳିତ କରିବେ—ଏହା କେବେହେଲେ ନୀତିସଙ୍ଗତ ନୁହେଁ, ଏହି ଅଧିକାର ବିରୋଧରେ ହିଁ ସଂଗ୍ରାମ ଚାଲିଛି । ଅନ୍ୟମାନଙ୍କୁ ବଞ୍ଚିତ କରି ନିଜେ ସୁବିଧା ଭୋଗ କରିବାର ନାମ ହିଁ ଅଧିକାରବାଦ ଏବଂ ଯୁଗଯୁଗାନ୍ତର ଧରି ନୀତିଧର୍ମର ଲକ୍ଷ୍ୟ ଏହି ଅଧିକାରବାଦକୁ ଧ୍ୱଂସ କରିବା । ବୈଚିତ୍ର୍ୟକୁ ନଷ୍ଟ ନ କରି ସାମ୍ୟ ଓ ଐକ୍ୟଦିଗକୁ ଅଗ୍ରସର ହେବା ହିଁ ଆମର ଲକ୍ଷ୍ୟ ।

ଏହି ସକଳ ବୈଚିତ୍ର୍ୟ ଅନନ୍ତକାଳ ଧରି ବିରାଜ କରୁ । ଏହି ବୈଚିତ୍ର୍ୟ ଜୀବନର ଅପରିହାର୍ଯ୍ୟ ସାରବସ୍ତୁ । ଏହି ଭାବରେ ହିଁ ଆମେ ଅନନ୍ତକାଳ ଧରି ଖେଳିବୁ । ତୁମେ ହେବ ଧନୀ ଏବଂ ମୁଁ ହେବି ଦରିଦ୍ର, ତୁମେ ହେବ ବଳବାନ୍ ଏବଂ ମୁଁ ହେବି ଦୁର୍ବଳ, ତୁମେ ହେବ ବିଦ୍ୱାନ୍ ଏବଂ ମୁଁ ହେବି ମୂର୍ଖ, ତୁମେ ହେବ ଅତ୍ୟନ୍ତ ଆଧ୍ୟାତ୍ମିକଭାବାପନ୍ନ, ମୁଁ ହେବି ଅଳ୍ପ ଆଧ୍ୟାତ୍ମିକ । ସେଥିରେ କଅଣ ଯାଏ ଆସେ ! ଆମମାନଙ୍କୁ ଏହିପରି ରହିବାକୁ ଦିଅ । କିନ୍ତୁ ତୁମେ ମୋ ଅପେକ୍ଷା ଶାରୀରିକ ଓ ମାନସିକ ଶକ୍ତିରେ ଅଧିକତର ବଳବାନ୍ ବୋଲି ମୋ ଅପେକ୍ଷା ଅଧିକତର ଅଧିକାର ଉପଭୋଗ କରିବ—ଏହା ହୋଇ ନ ପାରେ । ମୋ ଅପେକ୍ଷା ତୁମର ଧନୈଶ୍ୱର୍ଯ୍ୟ ଅଧିକ ଅଛି ବୋଲି ତୁମେ ମୋ ଅପେକ୍ଷା ବଡ଼ ବିବେଚିତ ହେବ—ଏହା ମଧ୍ୟ ହୋଇ ନ ପାରେ । କାରଣ ଅବସ୍ଥାର ପାର୍ଥକ୍ୟ ସତ୍ତ୍ୱେ ଆମମାନଙ୍କ ଭିତରେ ସେହି ଏକ ସମତା ହିଁ ବିଦ୍ୟମାନ ।

ବାହ୍ୟ ଜଗତରେ ପାର୍ଥକ୍ୟର ବିନାଶ ଏବଂ ସମତାର ପ୍ରତିଷ୍ଠା କେବେହେଲେ ନୈତିକ ଆଚରଣର ଆଦର୍ଶ ନୁହେଁ ଏବଂ କେବେହେଲେ ତାହା ହେବ ନାହିଁ । ଏହା ଅସମ୍ଭବ, ଏହା ମୃତ୍ୟୁ ଓ ଧ୍ୱଂସର କାରଣ ହେବ । ଯଥାର୍ଥ ନୈତିକ ଆଦର୍ଶ ହେଉଛି ସକଳ ବୈଚିତ୍ର୍ୟ ଥିବା ସତ୍ତ୍ୱେ ଅନ୍ତର୍ନିହିତ ଐକ୍ୟକୁ ସ୍ୱୀକାର କରିବା । ସର୍ବପ୍ରକାର ବିଭୀଷିକା ସତ୍ତ୍ୱେ ଅନ୍ତର୍ଯାମୀ ଈଶ୍ୱରଙ୍କୁ ସ୍ୱୀକାର କରିବା, ସର୍ବପ୍ରକାର ଆପାତଦୁର୍ବଳତା ସତ୍ତ୍ୱେ ସେହି ଅନନ୍ତ ଶକ୍ତିକୁ ସମସ୍ତଙ୍କର ନିଜସ୍ୱ ସମ୍ପତ୍ତି ବୋଲି ସ୍ୱୀକାର କରିବା ଏବଂ ସର୍ବପ୍ରକାର ବିରୁଦ୍ଧ ପ୍ରତୀୟମାନ ପରିସ୍ଥିତି ସତ୍ତ୍ୱେ ଆତ୍ମାର ଅନନ୍ତ ଅସୀମ ଶୁଦ୍ଧସ୍ୱରୂପକୁ ସ୍ୱୀକାର କରିବା । ଏହି ତତ୍ତ୍ୱ ଆମମାନଙ୍କୁ ସ୍ୱୀକାର କରିବାକୁ ହିଁ ହେବ । ଏହି ତତ୍ତ୍ୱର ଏକାଂଶ ମାତ୍ର ସ୍ୱୀକାର କରିବା ବିପଜ୍ଜନକ—ଏହା କେବଳ କଳହର ପଥ ପ୍ରଶସ୍ତ କରିବ । ସମଗ୍ର ତତ୍ତ୍ୱଟି ଆମମାନଙ୍କୁ ଯଥାଯଥ ଭାବରେ ଗ୍ରହଣ କରିବାକୁ ହେବ ଏବଂ ଏହାକୁ ଭିତ୍ତି କରି ବ୍ୟଷ୍ଟିଗତ ଓ ସମଷ୍ଟିଗତ ଭାବେ ଆମ ଜୀବନର ସକଳ କ୍ଷେତ୍ରରେ ଏହାକୁ ପ୍ରୟୋଗ କରିବାକୁ ହେବ ।

# ହିନ୍ଦୁ ଦାର୍ଶନିକ ଚିନ୍ତାର ବିଭିନ୍ନ ସ୍ତର

ଯେଉଁ ଶ୍ରେଣୀର ଧର୍ମଚିନ୍ତାର ଉନ୍ମେଷ ସର୍ବପ୍ରଥମ ଆମମାନଙ୍କର ଦୃଷ୍ଟି ଆକର୍ଷଣ କରେ—ମୁଁ ଅବଶ୍ୟ ସ୍ୱୀକୃତଯୋଗ୍ୟ ଧର୍ମଚିନ୍ତାର କଥା କହୁଛି, ଯେଉଁସବୁ ନିମ୍ନସ୍ତରର ଚିନ୍ତା ଧର୍ମସଂଜ୍ଞାଲାଭର ଅଯୋଗ୍ୟ, ମୁଁ ସେଗୁଡ଼ିକର କଥା କହୁ ନାହିଁ—ଏହି ଉଚ୍ଚତର ଚିନ୍ତାରାଶି ମଧ୍ୟରେ ଭଗବତ୍-ପ୍ରେରଣା, ଶାସ୍ତ୍ରର ଅଲୌକିକତା ଇତ୍ୟାଦି ଭାବ ସ୍ୱୀକୃତ ହୁଏ । ଈଶ୍ୱର-ବିଶ୍ୱାସରୁ ହିଁ ଆଦିମ ଧର୍ମଚିନ୍ତାସମୂହ ଆରମ୍ଭ ହୋଇଛି । ଏହି ବିଶ୍ୱକୁ ଆମେ ଦେଖୁଅଛୁ; ଏହାର ସ୍ରଷ୍ଟା ନିଶ୍ଚୟ କେହି ଅଛନ୍ତି । ଜଗତରେ ଯାହା କିଛି ଅଛି, ସମସ୍ତ ହିଁ ତାଙ୍କର ସୃଷ୍ଟି । ଏହି ଧାରଣା ସହିତ ପରବର୍ତ୍ତୀ ସ୍ତରର ଚିନ୍ତାଧାରାରେ ଆତ୍ମାର ଧାରଣା ସମ୍ମିଳିତ ହୋଇଅଛି । ଆମର ଏହି ଦେହ ଚକ୍ଷୁ ସମ୍ମୁଖରେ ବିଦ୍ୟମାନ; ଏହା ଅଭ୍ୟନ୍ତରରେ ଏପରି କିଛି ଅଛି, ଯାହା ଦେହ ନୁହେଁ । ଧର୍ମର ଆଦିମ ଅବସ୍ଥା ସମ୍ବନ୍ଧରେ ଆମେ ଯାହା କିଛି ଜାଣୁ, ତାହା ମଧ୍ୟରେ ଏହା ହିଁ ପ୍ରାଚୀନତମ । ଭାରତରେ ମଧ୍ୟ ଏପରି ଅନେକ ଲୋକ ଥିଲେ, ଯେଉଁମାନେ ଏହି ଚିନ୍ତାଧାରାର ଅନୁସରଣ କରିଥିଲେ; କିନ୍ତୁ ଏହା ଅତି ଅଳ୍ପ ସମୟ ମଧ୍ୟରେ ହିଁ ପରିତ୍ୟକ୍ତ ହୋଇଥିଲା । ବସ୍ତୁତଃ ଭାରତୀୟ ଧର୍ମଚିନ୍ତାସମୂହ ଏକ ଅନନ୍ୟ ସାଧାରଣ ସ୍ଥାନକୁ ଯାଇ ଆରମ୍ଭ କରିଥିଲା । ସେଥିପାଇଁ ବର୍ତ୍ତମାନ କାଳରେ ଏକମାତ୍ର ଅତି ସୂକ୍ଷ୍ମ ବିଶ୍ଳେଷଣ, ବିଚାର ଓ ଅନୁମାନ ସାହାଯ୍ୟରେ ଆମେ ବୁଝିବାକୁ ସମର୍ଥ ହେଉ ଯେ, ଏପରି ଗୋଟିଏ ସ୍ତର ଭାରତୀୟ ଚିନ୍ତାଧାରାରେ ମଧ୍ୟ ବିଦ୍ୟମାନ ଥିଲା । ସହଜବୋଧ ଯେଉଁ ସ୍ତରରେ ଆମେ ଭାରତୀୟ ଧର୍ମଚିନ୍ତାର ପରିଚୟ ଲାଭ କରୁ, ତାହା କିନ୍ତୁ ପରବର୍ତ୍ତୀ ସ୍ତର, ପ୍ରଥମ ସ୍ତର ନୁହେଁ । ଅତି ଆଦିମ ସ୍ତରରେ ସୃଷ୍ଟିର ଧାରଣା ଅତୀବ ବିଚିତ୍ର । ସେତେବେଳେ ଏହି ଧାରଣା ଥିଲା ଯେ, ସମଗ୍ର ବିଶ୍ୱ ଶୂନ୍ୟାବସ୍ଥାରୁ ଈଶ୍ୱରେଚ୍ଛାରୁ ସୃଷ୍ଟ ହୋଇଅଛି । ଏକଦା ଏ ବିଶ୍ୱ ନ ଥିଲା ଏବଂ ସେହି ସମ୍ପୂର୍ଣ୍ଣ ଅଭାବରୁ ଏହାର ଆବିର୍ଭାବ ଘଟିଅଛି । ପରବର୍ତ୍ତୀ ସ୍ତରରେ ଆମେ ଦେଖୁ—ଏହି ସିଦ୍ଧାନ୍ତ ସମ୍ପର୍କରେ ସଂଶୟ ଉତ୍ଥିତ ହୋଇଅଛି—'ଅଭାବରୁ କିପରି ଭାବର ଉତ୍ପତ୍ତି ହୋଇପାରେ ?' ବେଦାନ୍ତରେ ପ୍ରଥମରୁ ଏହି ପ୍ରଶ୍ନ ଉଠିଅଛି । ଏ ବିଶ୍ୱରେ ଯଦି କୌଣସି ସତ୍ୟ ନିହିତ ଥାଏ, ତା'ହେଲେ ଏହା ନିଶ୍ଚୟ କୌଣସି ଭାବବସ୍ତୁରୁ ହିଁ ଉଦ୍‌ଗତ ହୋଇଅଛି । କାରଣ ଏହା ଅତି ସହଜରେ ହିଁ ଅନୁଭୂତ ହୁଏ ଯେ, ଅଭାବରୁ କୌଣସି ଭାବବସ୍ତୁର ଉତ୍ପତ୍ତି ହୁଏ ନାହିଁ । ମନୁଷ୍ୟ ଯେକୌଣସି ଜିନିଷ ଗଢ଼େ, ତାହା ଉପାଦାନସାପେକ୍ଷ । କୌଣସି ଗୃହ ନିର୍ମିତ ହେଲେ ତାହାର ଉପାଦାନ ନିଶ୍ଚୟ ପୂର୍ବରୁ ଥିଲା । କୌଣସି ନୌକା ଥିଲେ ତା'ର ଉପାଦାନ ମଧ୍ୟ ପୂର୍ବରୁ ଥିଲା, ଯଦି କୌଣସି ଯନ୍ତ୍ର ପ୍ରସ୍ତୁତ ହୋଇଥାଏ, ତା'ର ଉପାଦାନ ମଧ୍ୟ ପୂର୍ବରୁ ହିଁ ଥିଲା । ପ୍ରତ୍ୟେକ କାର୍ଯ୍ୟ-ବସ୍ତୁ ଏହି ଭାବରେ ହିଁ ଉତ୍ପନ୍ନ ହୁଏ । ଅତଏବ

ଅଜ୍ଞବରୁ ଯେ ଜଗତ ଉତ୍ପନ୍ନ ହୋଇଅଛି—ଏହି ଆଦିମ ଧାରଣାଟି ବର୍ଜିତ ହେଲ ଏବଂ ଏହି ବିଶ୍ୱ ଯେ ଏକ ମୂଳ ଉପାଦାନରୁ ସୃଷ୍ଟ ହୋଇଅଛି, ତା'ର ଅନୁସନ୍ଧାନ ଆବଶ୍ୟକ ହେଲ । ବସ୍ତୁତଃ ସକଳ ଧର୍ମଚିନ୍ତାର ଇତିହାସ ଏହି ଉପାଦାନର ଅନୁସନ୍ଧାନରେ ହିଁ ପର୍ଯ୍ୟବସିତ ।

କେଉଁ ବସ୍ତୁରୁ ଏହି ସକଳ ଉତ୍ପନ୍ନ ହୋଇଅଛି ? ଏହି ସୃଷ୍ଟିର ନିମିତ୍ତକାରଣ ବା ଈଶ୍ୱରଙ୍କ ସମ୍ବନ୍ଧରେ ପ୍ରଶ୍ନ ବ୍ୟତୀତ ଭଗବାନଙ୍କ ବିଶ୍ୱ-ସୃଷ୍ଟି-ବିଷୟକ ପ୍ରଶ୍ନ ବ୍ୟତୀତ ସର୍ବାପେକ୍ଷା ବଡ଼ ପ୍ରଶ୍ନ ହେଲ—କଅଣ ସେହି ଉପାଦାନ, ଯେଉଁଥିରୁ ସେ ସୃଷ୍ଟି କଲେ ? ସକଳ ଦର୍ଶନମତ ଯେପରି ଏହି ଗୋଟିଏ ପ୍ରଶ୍ନର ସମାଧାନରେ ହିଁ ବ୍ୟାପୃତ । ଏହାର ଗୋଟିଏ ସମାଧାନ ହେଲ ଏହି ଯେ—ପ୍ରକୃତି, ଈଶ୍ୱର ଏବଂ ଆତ୍ମା ଏହି ତିନୋଟି ହିଁ ଶାଶ୍ୱତ ସନାତନ ସତ୍ତା, ଯେପରି ତିନୋଟି ସମାନ୍ତର ରେଖା ଅନନ୍ତକାଳ ଧରି ପାଖ ପାଖ ଚ୍ଲଛନ୍ତି; ଏହି ସକଳ ଦାର୍ଶନିକଙ୍କ ମତରେ ଏହି ତିନୋଟି ମଧ୍ୟରୁ ପ୍ରକୃତି ଓ ଆତ୍ମାର ଅସ୍ତିତ୍ୱ ପରତନ୍ତ୍ର, କିନ୍ତୁ ଭଗବାନଙ୍କ ସତ୍ତା ସ୍ୱତନ୍ତ୍ର । ପ୍ରତ୍ୟେକ ଅଣୁ ପରମାଣୁ ଯେପରି ଈଶ୍ୱରଙ୍କ ଇଚ୍ଛାଧୀନ, ସେହିପରି ପ୍ରତ୍ୟେକ ଆତ୍ମା ମଧ୍ୟ ତାଙ୍କର ଇଚ୍ଛାଧୀନ । ଧର୍ମଚିନ୍ତା ସମ୍ପର୍କରେ ଅନ୍ୟାନ୍ୟ ସ୍ତରର ଆଲୋଚନା ପୂର୍ବରୁ ଆମେ ଆତ୍ମାର ଧାରଣା ସମ୍ପର୍କରେ ଆଲୋଚନା କରିବା ଏବଂ ଦେଖିବା ଯେ, ସକଳ ପାଶ୍ଚାତ୍ୟ ଦର୍ଶନମତ ସହିତ ବୈଦାନ୍ତିକ ଦର୍ଶନର ଏକ ବିରାଟ ପାର୍ଥକ୍ୟ ରହିଅଛି । ବୈଦାନ୍ତିକଗଣ ସମସ୍ତେ ଗୋଟିଏ ସାଧାରଣ ମନୋବିଜ୍ଞାନ ମାନି ଚଳନ୍ତି । ଦାର୍ଶନିକ ମତବାଦ ଯାହାର ଯାହା ହେଉନା କାହିଁକି, ଭାରତର ଯାବତୀୟ ମନୋବିଜ୍ଞାନ ଏକ ପ୍ରକାରର, ତାହା ପ୍ରାଚୀନ ସାଂଖ୍ୟ ମନସ୍ତତ୍ତ୍ୱର ଅନୁରୂପ । ଏହି ମନସ୍ତତ୍ତ୍ୱ ଅନୁଯାୟୀ ପ୍ରତ୍ୟକ୍ଷାନୁଭୂତିର ଧାରା ଏହି ବାହ୍ୟ ଇନ୍ଦ୍ରିୟଗୋଲକ ଉପରେ ବିଷୟଗୁଡ଼ିକରୁ ଯେଉଁ କମ୍ପନ ଆସେ, ତାହା ବାହାରର ଇନ୍ଦ୍ରିୟଗୋଲକରୁ ଭିତରର ଇନ୍ଦ୍ରିୟସମୂହକୁ ସଞ୍ଚାରିତ ହୁଏ; ଅନ୍ତରିନ୍ଦ୍ରିୟରୁ ତାହା ମନକୁ ଏବଂ ମନରୁ ବୁଦ୍ଧିକୁ ପ୍ରେରିତ ହୁଏ; ବୁଦ୍ଧିରୁ ଏହା ଏପରି ଏକ ସତ୍ତା ନିକଟରେ ଉପସ୍ଥିତ ହୁଏ, ଯାହା ଏକ ଏବଂ ଯାହାକୁ ସେମାନେ ଆତ୍ମା ନାମରେ ଅଭିହିତ କରି-ଥାଆନ୍ତି । ଆଧୁନିକ ଶରୀରବିଜ୍ଞାନ କ୍ଷେତ୍ରକୁ ଆସିଲେ ଆମେ ଦେଖିବାକୁ ପାଉ ଯେ, ଉକ୍ତ ବିଜ୍ଞାନ ବିଭିନ୍ନ ସମ୍ବେଦନର କେନ୍ଦ୍ରସ୍ଥଳଗୁଡ଼ିକୁ ଆବିଷ୍କାର କରିଅଛି । ପ୍ରଥମତଃ ଏହା ନିମ୍ନସ୍ତରର କେନ୍ଦ୍ରଗୁଡ଼ିକର ସନ୍ଧାନ ପାଇଅଛି, ତଦୁପରି ଉଚ୍ଚସ୍ତରର କେନ୍ଦ୍ର-ଗୁଡ଼ିକର ଅବସ୍ଥାନ ଆବିଷ୍କାର କରିଅଛି । ଏହି ଉଭୟ ଜାତୀୟ କେନ୍ଦ୍ରକୁ ଭାରତୀୟ ଦର୍ଶନରେ ଅନ୍ତରିନ୍ଦ୍ରିୟ ଏବଂ ମନର ଅନୁରୂପ ବୋଲି କୁହାଯାଇପାରେ; କିନ୍ତୁ ଏହି ସକଳ ବିଭିନ୍ନ କେନ୍ଦ୍ରକୁ ନିୟନ୍ତ୍ରଣ କରିପାରେ, ଏହିପରି କୌଣସି ଗୋଟିଏ ବିଶେଷ କେନ୍ଦ୍ର ଶରୀରବିଜ୍ଞାନରେ ଆବିଷ୍କୃତ ହୋଇ ନାହିଁ; ସୁତରାଂ ଏହି ସକଳ ବିଭିନ୍ନ କେନ୍ଦ୍ରର ଐକ୍ୟ କେଉଁଠି, ତାହା ଶରୀରବିଜ୍ଞାନ କ୍ଷେତ୍ରରେ ଅଜ୍ଞାତ । ଏହି ସକଳ କେନ୍ଦ୍ରର ଐକ୍ୟ କେଉଁଠାରେ ? ମସ୍ତିଷ୍କସ୍ଥ କେନ୍ଦ୍ରଗୁଡ଼ିକ ପରସ୍ପର-ବିଚ୍ଛିନ୍ନ, ଏବଂ ସକଳ କେନ୍ଦ୍ରକୁ ନିୟନ୍ତ୍ରଣ

କରିପାରେ—ଏପରି କୌଣସି କେନ୍ଦ୍ର ସେଠାରେ ନାହିଁ । ସୁତରାଂ ଭାରତୀୟ ମନସ୍ତତ୍ତ୍ୱ ଯେତିକି ତଥ୍ୟ ଆବିଷ୍କାର କରିଅଛି, ତାହା ବିରୋଧରେ ଆପତ୍ତି କରିବା ଅନାବଶ୍ୟକ । ଆମର ଏପରି ଗୋଟିଏ ଐକ୍ୟର ପ୍ରୟୋଜନ, ଯାହା ଉପରେ ସମ୍ବେଦନଗୁଡ଼ିକ ପ୍ରତିଫଳିତ ହେବ ଏବଂ ଯାହା ଗୋଟିଏ ପୂର୍ଣ୍ଣ ଅନୁଭବ ଗଢ଼ିପାରିବ । ଯେପର୍ଯ୍ୟନ୍ତ ସେହି ବସ୍ତୁଟିକୁ ସ୍ୱୀକାର ନ କରୁଛୁ, ସେପର୍ଯ୍ୟନ୍ତ ନିଜ ସମ୍ପର୍କରେ କିମ୍ବା ଅନ୍ୟ କିଛି ସମ୍ପର୍କରେ ଆମେ କୌଣସି ଐକ୍ୟବଦ୍ଧ ଧାରଣା କରିପାରୁ ନାହିଁ । ଯଦି ଏହି ଐକ୍ୟସ୍ଥଳଟି ନ ଥାଏ, ତା'ହେଲେ ଆମେ ହୁଏତ କେବଳ ଦେଖିବା କିମ୍ବା କିଛି ସମୟ ପରେ ହୁଏତ ନିଃଶ୍ୱାସ ଗ୍ରହଣ କରିବା, ତା'ପରେ ଶୁଣିବା ଇତ୍ୟାଦି । ଫଳରେ ଯେତେବେଳେ କାହା କଥା ଶୁଣିବା ସେତେବେଳେ ତାକୁ ଆଦୌ ଦେଖିପାରିବା ନାହିଁ, କାରଣ ସମ୍ବେଦନର କେନ୍ଦ୍ରଗୁଡ଼ିକ ପରସ୍ପର ବିଚ୍ଛିନ୍ନ ।

ଆମମାନଙ୍କର ଏହି ଶରୀର ଜଡ଼ବସ୍ତୁ ନାମରେ ପରିଚିତ କେତେଗୁଡ଼ିଏ କଣିକାର ସମଷ୍ଟି ମାତ୍ର । ଏହା ଅନୁଭୂତିହୀନ ଓ ଅଚେତନ । ବୈଦାନ୍ତିକଗଣ ଯାହାକୁ ସୂକ୍ଷ୍ମଶରୀର କହନ୍ତି, ତାହା ମଧ୍ୟ ଏହିପରି । ସେମାନଙ୍କ ମତରେ ଏହି ସୂକ୍ଷ୍ମଦେହଟି ସ୍ୱଚ୍ଛ ହେଲେ ମଧ୍ୟ ଜଡ଼; ଏହା ଅତି କ୍ଷୁଦ୍ର କଣିକାଦ୍ୱାରା ଗଠିତ; ଏହି କଣିକାଗୁଡ଼ିକ ଏତେ ସୂକ୍ଷ୍ମ ଯେ, ଅଣୁବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ମଧ୍ୟ ସେଗୁଡ଼ିକ ଦେଖାଯାଏ ନାହିଁ । ଏହି ସୂକ୍ଷ୍ମ ଦେହର ପ୍ରୟୋଜନ କଅଣ ? ଏହା ଅତି ସୂକ୍ଷ୍ମ ଶକ୍ତିର ଆଧାର । ଏହି ସ୍ଥୂଳଦେହ ଯେପରି ସ୍ଥୂଳଶକ୍ତିର ଆଧାର, ସୂକ୍ଷ୍ମ ଦେହ ମଧ୍ୟ ସେହିପରି ସକଳ ସୂକ୍ଷ୍ମଶକ୍ତିର ଆଧାର, ଯାହାକୁ ଆମେ 'ଚିନ୍ତା' ନାମରେ ଅଭିହିତ କରୁ । ପ୍ରଥମେ ଥାଉ ସ୍ଥୂଳଶକ୍ତିସହ ସ୍ଥୂଳ ମାନବ-ଦେହ । ଆଧାର ବ୍ୟତୀତ ଶକ୍ତି ରହି ନ ପାରେ । ଶକ୍ତି ନିଜ ଅବସ୍ଥାନ ପାଇଁ ଜଡ଼ର ମୁଖାପେକ୍ଷୀ । ଫଳତଃ ସ୍ଥୂଳତର ଶକ୍ତି ଆମମାନଙ୍କର ଏହି ଦେହକୁ ଅବଲମ୍ବନ କରି କାର୍ଯ୍ୟ କରେ ଏବଂ ଏହି ଶକ୍ତିଗୁଡ଼ିକ ହିଁ ପୁନଶ୍ଚ ସୂକ୍ଷ୍ମାକାର ଧାରଣ କରନ୍ତି । ଯେଉଁ ଶକ୍ତି ସ୍ଥୂଳାକାରରେ କାର୍ଯ୍ୟ କରୁଅଛି, ତାହା ହିଁ ପୁଣି ସୂକ୍ଷ୍ମାକାର କାର୍ଯ୍ୟର ଆକାର ହୁଏ ଏବଂ ଚିନ୍ତା ଆକାରରେ ପରିଣତ ହୁଏ । ସେ ଉଭୟଙ୍କ ମଧ୍ୟରେ ବାସ୍ତବିକ୍ କୌଣସି ଭେଦ ନାହିଁ । ସେମାନେ ଏକ ଶକ୍ତିର ସ୍ଥୂଳ ଓ ସୂକ୍ଷ୍ମ ବିକାଶ ମାତ୍ର । ସ୍ଥୂଳଶରୀର ଓ ସୂକ୍ଷ୍ମଶରୀର ମଧ୍ୟରେ ମଧ୍ୟ କୌଣସି ଭେଦ ନାହିଁ । ସୂକ୍ଷ୍ମଦେହ ମଧ୍ୟ ଜଡ଼-ବସ୍ତୁଦ୍ୱାରା ଗଠିତ, ଯଦିଓ ଏହା ଅତି ସୂକ୍ଷ୍ମ । ପୁଣି ଏହି ସ୍ଥୂଳଦେହ ଯେପରି ସ୍ଥୂଳଶକ୍ତିର କ୍ରିୟାର ଯନ୍ତ୍ର, ସେହିପରି ଏହି ସୂକ୍ଷ୍ମଦେହ ମଧ୍ୟ ସୂକ୍ଷ୍ମଶକ୍ତିର କ୍ରିୟାର ଯନ୍ତ୍ର । କେଉଁଠାରୁ ଏହି ଶକ୍ତିସବୁ ଆସେ ? ବେଦାନ୍ତ ଦର୍ଶନ ମତରେ ପ୍ରକୃତିରେ ଦୁଇଟି ବସ୍ତୁ ଅଛି, ଗୋଟିଏକୁ ସେମାନେ 'ଆକାଶ' କହନ୍ତି; ତାହା ହିଁ ଉପାଦାନ ପଦାର୍ଥ ଏବଂ ତାହା ଅତି ସୂକ୍ଷ୍ମ । ଅପରଟିକୁ ସେମାନେ କହନ୍ତି 'ପ୍ରାଣ'; ଏହା ହିଁ ହେଲା ଶକ୍ତି । ବାୟୁ, ମାଟି ବା ଅନ୍ୟ ଯେ କୌଣସି ପଦାର୍ଥକୁ ଆପଣ ଦେଖନ୍ତି, ସ୍ପର୍ଶ କରନ୍ତି ଅଥବା ଶୁଣନ୍ତି, ତାହା ସବୁ ଜଡ଼-ବସ୍ତୁ, ଆକାଶରୁ ଉତ୍ପନ୍ନ । ଏଗୁଡ଼ିକ ପ୍ରାଣର କ୍ରିୟା ଫଳରେ ପରିବର୍ତ୍ତିତ ହୋଇ କ୍ରମଶଃ ସୂକ୍ଷ୍ମରୁ

ସୂକ୍ଷ୍ମତର ଅଥବା ସ୍ଥୂଳରୁ ସ୍ଥୂଳତର ହୋଇଥାଆନ୍ତି । ଆକାଶ ପରି ପ୍ରାଣ ମଧ୍ୟ ସର୍ବବ୍ୟାପୀ ଏବଂ ସର୍ବାନୁସ୍ୟୂତ । ଆକାଶକୁ ଯଦି ଜଳ ସହିତ ତୁଳନା କରାଯାଏ, ତେବେ ବିଶ୍ୱର ଅନ୍ୟାନ୍ୟ ପଦାର୍ଥସକଳକୁ ଜଳରୁ ଉତ୍ପନ୍ନ ଏବଂ ଜଳ ଉପରେ ଭାସମାନ ତୁଷାରଖଣ୍ଡ କହିଲେ ଚଳେ । ଯେଉଁ ଶକ୍ତି ଆକାଶକୁ ଏହି ବିବିଧ ଆକାରରେ ପରିବର୍ତ୍ତିତ କରେ, ତାହା ପ୍ରାଣ । ପେଶୀ ଚାଳନା, ଚାଲିବା, ବସିବା, କଥା କହିବା ଇତ୍ୟାଦି ପ୍ରାଣର ସ୍ଥୂଳ ବିକାଶ ପାଇଁ ଆକାଶରୁ ଏହି ସ୍ଥୂଳଦେହରୂପକ ଯନ୍ତ୍ରଟି ଗଠିତ ହୋଇଅଛି, ଯାହା ଫଳରେ ଏହି ପ୍ରାଣ ସୂକ୍ଷ୍ମାକାରରେ ଚିନ୍ତାରୂପେ ବିକଶିତ ହୋଇପାରେ । ସେଥିପାଇଁ ସୂକ୍ଷ୍ମଦେହଟି ମଧ୍ୟ ଆକାଶ ଅର୍ଥାତ୍ ଆକାଶର ଅତି ସୂକ୍ଷ୍ମାବସ୍ଥାରୁ ଗଠିତ ହୋଇଅଛି । ସୁତରାଂ ସର୍ବାଗ୍ରେ ସ୍ଥୂଳଦେହ—ପରେ ସୂକ୍ଷ୍ମଦେହ । ତାର ଊର୍ଦ୍ଧ୍ୱରେ ଅଛି ଜୀବ ବା ପ୍ରକୃତ ମନୁଷ୍ୟ । ନଖଗୁଡ଼ିକ ଯେପରି ଦେହର ଅଂଶ ହେଲେ ମଧ୍ୟ ଏଗୁଡ଼ିକୁ ବାରମ୍ବାର କାଟି ଦିଆଯାଏ, ସ୍ଥୂଳଦେହ ଓ ସୂକ୍ଷ୍ମଦେହର ସମ୍ବନ୍ଧ ମଧ୍ୟ ତଦନୁରୂପ । ଏହା ଠିକ୍ ନୁହେଁ ଯେ, ମାନବର ଦୁଇଟି ଦେହ ଅଛି—ଗୋଟିଏ ସୂକ୍ଷ୍ମ ଓ ଅନ୍ୟଟି ସ୍ଥୂଳ । ପ୍ରକୃତରେ ଗୋଟିଏ ମାତ୍ର ଦେହ ଅଛି, ଯେଉଁ ଅଂଶ ଦୀର୍ଘସ୍ଥାୟୀ ତାହାକୁ ସୂକ୍ଷ୍ମଶରୀର ଏବଂ ଯାହା ଦ୍ରୁତବିନାଶୀ ତାହାକୁ ସ୍ଥୂଳଦେହ କହନ୍ତି । ଯେପରି ମୁଁ ଏହି ନଖଗୁଡ଼ିକୁ ଯେତେଥର ଇଚ୍ଛା କାଟି ଦେଇପାରେ, ସେହିପରି ଲକ୍ଷ ଲକ୍ଷ ଥର ମୁଁ ଏହି ସ୍ଥୂଳଶରୀର ତ୍ୟାଗ କରିପାରେ; କିନ୍ତୁ ଏହି ସୂକ୍ଷ୍ମ ଶରୀରଟି ସର୍ବଦା ରହିଥାଏ । ଦ୍ୱୈତବାଦୀଙ୍କ ମତରେ ଏହି ଜୀବ ବା ପ୍ରକୃତ ମାନବ ଅତ୍ୟନ୍ତ ସୂକ୍ଷ୍ମ ।

ଅତଏବ 'ମନୁଷ୍ୟ' କହିଲେ ଏପରି ଗୋଟିଏ ବ୍ୟକ୍ତିକୁ ବୁଝାଏ, ଯାହାର ପ୍ରଥମତଃ ଅଛି—ଗୋଟିଏ ଦ୍ରୁତ ଧ୍ୱଂସଶୀଳ ସ୍ଥୂଳଦେହ, ତା'ପରେ ଅଛି ଗୋଟିଏ ଦୀର୍ଘସ୍ଥାୟୀ ସୂକ୍ଷ୍ମଦେହ, ସର୍ବୋପରି ଗୋଟିଏ ଜୀବାତ୍ମା । ବେଦାନ୍ତ ମତରେ ଏହି ଜୀବାତ୍ମା ଈଶ୍ୱରଙ୍କ ପରି ନିତ୍ୟ । ପ୍ରକୃତି ମଧ୍ୟ ନିତ୍ୟ, କିନ୍ତୁ ପରିଣାମୀ ନିତ୍ୟ । ପ୍ରକୃତିର ଯାହା ଉପାଦାନ—ଅର୍ଥାତ୍ ପ୍ରାଣ ଏବଂ ଆକାଶ—ତାହା ମଧ୍ୟ ନିତ୍ୟ; କିନ୍ତୁ ସେମାନେ ଅନନ୍ତକାଳ ଧରି ବିଭିନ୍ନ ରୂପରେ ପରିବର୍ତ୍ତିତ ହେଉଛନ୍ତି । ଆକାଶ କିମ୍ବା ପ୍ରାଣଦ୍ୱାରା ଜୀବ ନିର୍ମିତ ନୁହେଁ; ଏହା ଜଡ଼ସମ୍ଭୂତ ନୁହେଁ ବୋଲି ନିତ୍ୟ । ଏହା ପ୍ରାଣ ଓ ଆକାଶର କୌଣସି ମିଳନ ଫଳରେ ଉତ୍ପନ୍ନ ହୋଇ ନାହିଁ । ଯାହା ଯୌଗିକ ପଦାର୍ଥ ନୁହେଁ ତାହା କେବେହେଲେ ଧ୍ୱଂସ ହେବ ନାହିଁ । କାରଣ ଧ୍ୱଂସର ଅର୍ଥ ହେଲା କାରଣ ଭିତରକୁ ପ୍ରତ୍ୟାବର୍ତ୍ତନ । ସ୍ଥୂଳଦେହ ଆକାଶ ଏବଂ ପ୍ରାଣର ମିଳନରେ ଗଠିତ, ଅତଏବ ଏହାର ଧ୍ୱଂସ ଅନିବାର୍ଯ୍ୟ । କିନ୍ତୁ ଜୀବ ଯୌଗିକ ପଦାର୍ଥ ନୁହେଁ, କାର୍ଯ୍ୟତଃ ତାହାର ଧ୍ୱଂସ ନାହିଁ । ସେହି କାରଣ ହେତୁ ଏହାର ଜନ୍ମ ମଧ୍ୟ ନାହିଁ । କୌଣସି ଅଯୌଗିକ ପଦାର୍ଥର ଜନ୍ମ ହୋଇପାରେ ନାହିଁ । ସେହି ଏକ ଯୁକ୍ତି ଏ କ୍ଷେତ୍ରରେ ମଧ୍ୟ ପ୍ରଯୋଜ୍ୟ । ଏକମାତ୍ର ଯୌଗିକ ପଦାର୍ଥର ହିଁ ଆରମ୍ଭ ସମ୍ଭବ । ଲକ୍ଷ ଲକ୍ଷ ଆତ୍ମା ସହ ଏହି ପ୍ରକୃତି ସମ୍ପୂର୍ଣ୍ଣ ରୂପେ ଈଶ୍ୱରଙ୍କର ନିୟନ୍ତ୍ରଣାଧୀନ । ଈଶ୍ୱର ସର୍ବବ୍ୟାପୀ ସର୍ବଜ୍ଞ, ନିରାକାର ଏବଂ ସେ ପ୍ରକୃତି ସାହାଯ୍ୟରେ ସଦାସର୍ବଦା

କାର୍ଯ୍ୟ କରୁଛନ୍ତି । ଏହାର ସମସ୍ତ ଅଂଶ ତାଙ୍କର ନିୟନ୍ତ୍ରଣାଧୀନ । ଈଶ୍ୱର ବିଶ୍ୱର ଚିରନ୍ତନ ଅଧିପତି । ଏହା ହିଁ ହେଲା ଦ୍ୱୈତବାଦୀଙ୍କର ମତ । ବର୍ତ୍ତମାନ ପ୍ରଶ୍ନ ହେଲା—ଈଶ୍ୱର ହିଁ ଯଦି ବିଶ୍ୱର ନିୟନ୍ତା ହୁଅନ୍ତି, ତେବେ କାହିଁକି ସେ ଏହି ପାପମୟ ବିଶ୍ୱ ସୃଷ୍ଟି କଲେ ? କାହିଁକି ଆମେ ଏତେ ଦୁଃଖକଷ୍ଟ ପାଇବୁ ? ଦ୍ୱୈତବାଦୀଙ୍କ ମତରେ ଏଥିରେ ଈଶ୍ୱରଙ୍କର କୌଣସି ଦୋଷ ନାହିଁ । ଆମ ନିଜ ଦୋଷରୁ ହିଁ ଆମେ କଷ୍ଟ ପାଉ । ଯେପରି କର୍ମ, ସେହିପରି ଫଳ । ସେ ମନୁଷ୍ୟକୁ ଦଣ୍ଡ ଦେବା ପାଇଁ କିଛି କରିନାହାନ୍ତି । ମନୁଷ୍ୟ ଦରିଦ୍ର ବା ଅନ୍ଧ ବା ଅନ୍ୟ କୌଣସି ଦୁରବସ୍ଥାରେ ଜନ୍ମଗ୍ରହଣ କରେ, ତାହାର କାରଣ କଅଣ ? ଏପରି ଭାବରେ ଜନ୍ମଗ୍ରହଣ କରିବା ପୂର୍ବରୁ ସେ ନିଶ୍ଚୟ ତଦନୁଯାୟୀ କର୍ମ କରିଛି । ଜୀବ ଅନନ୍ତ କାଳ ଧରି ବର୍ତ୍ତମାନ ରହିଅଛି ଏବଂ କେବେହେଲେ ସୃଷ୍ଟି ହୋଇ ନାହିଁ । ଏହି ଦୀର୍ଘକାଳ ଧରି ସେ କେତେ କର୍ମ କରିଅଛି । ଯାହା କିଛି ଆମେ କରୁ ନା କାହିଁକି ତାହାର ଫଳ ଆମକୁ ହିଁ ଭୋଗ କରିବାକୁ ପଡ଼େ । ଭଲ କାମ କଲେ ଆମେ ସୁଖୀ ହେଉ ଏବଂ ମନ୍ଦ କାମ କଲେ ଦୁଃଖ ପାଉ । ଏହିପରି ଜୀବ ଦୁଃଖକଷ୍ଟ ଭୋଗ କରୁଥାଏ ଏବଂ ନାନାପ୍ରକାର କର୍ମ ମଧ୍ୟ କରୁଥାଏ ।

ମୃତ୍ୟୁ ପରେ କଅଣ ହୁଏ ? ଏହିସବୁ ବେଦାନ୍ତ ସମ୍ପ୍ରଦାୟଭୁକ୍ତ ସମସ୍ତେ ସ୍ୱୀକାର କରନ୍ତି ଯେ, ଜୀବ ସ୍ୱରୂପତଃ ପବିତ୍ର, କିନ୍ତୁ ଜୀବର ସ୍ୱରୂପକୁ ଅଜ୍ଞାନ ଆବୃତ କରି ରଖେ । ପାପକର୍ମ କଲେ ଯେପରି ସେ ଅଜ୍ଞାନଦ୍ୱାରା ଆବୃତ ହୁଏ, ପୁଣ୍ୟକର୍ମ ଫଳରେ ସେହିପରି ତାହାର ସ୍ୱରୂପ-ଚେତନା ଜାଗ୍ରତ ହୁଏ । ଜୀବ ଏକ ଦିଗରେ ଯେପରି ନିତ୍ୟ, ଅନ୍ୟ ଦିଗରେ ସେହିପରି ବିଶୁଦ୍ଧ । ପ୍ରତ୍ୟେକ ବ୍ୟକ୍ତି ହିଁ ସ୍ୱରୂପତଃ ବିଶୁଦ୍ଧ ।

ଯେତେବେଳେ ପୁଣ୍ୟକର୍ମଦ୍ୱାରା ତାହାର ସମସ୍ତ ପାପକର୍ମର ବିଲୋପ ହୁଏ, ସେତେବେଳେ ଜୀବ ପୁନର୍ବାର ବିଶୁଦ୍ଧ ହୋଇ 'ଦେବଯାନ' ନାମକ ପଥରେ ଊର୍ଦ୍ଧ୍ୱକୁ ଗମନ କରେ । ସେତେବେଳେ ତାହାର ବାଗିନ୍ଦ୍ରିୟ ମନରେ ପ୍ରବେଶ କରେ । ଶବ୍ଦର ସାହାଯ୍ୟ ବ୍ୟତୀତ କେହି ଚିନ୍ତା କରିପାରେ ନାହିଁ । ଚିନ୍ତା ରହିଲେ ଶବ୍ଦ ଅବଶ୍ୟ ହିଁ ରହିବ । ଶବ୍ଦ ଯେପରି ମନରେ ପ୍ରବେଶ କରେ, ମନ ମଧ୍ୟ ସେହିପରି ପ୍ରାଣରେ ଏବଂ ପ୍ରାଣ ଜୀବଠାରେ ବିଲୀନ ହୁଏ । ସେତେବେଳେ ଜୀବ ଏହି ଶରୀରରୁ ଦ୍ରୁତ ବହିର୍ଗତ ହୁଏ ଓ ସୂର୍ଯ୍ୟଲୋକକୁ ଗମନ କରେ । ଏହି ବିଶ୍ୱଜଗତ୍ ମଣ୍ଡଳାକାରରେ ବିଭକ୍ତ । ଏହି ପୃଥିବୀକୁ କହନ୍ତି ଭୂମଣ୍ଡଳ, ଯେଉଁଠି ଚନ୍ଦ୍ର, ସୂର୍ଯ୍ୟ ଓ ତାରକାରାଜି ଦେଖାଯାଆନ୍ତି । ତା'ର ଊର୍ଦ୍ଧ୍ୱରେ ସୂର୍ଯ୍ୟଲୋକ ଅବସ୍ଥିତ, ତା'ପରେ ଅଛି ଆଉ ଗୋଟିଏ ଲୋକ, ଯାହାକୁ ଚନ୍ଦ୍ରଲୋକ କହନ୍ତି । ତା'ପରେ ବିଦ୍ୟୁଲ୍ଲୋକ ନାମରେ ଆଉ ଗୋଟିଏ ଲୋକ । ଜୀବ ଏହି ବିଦ୍ୟୁଲ୍ଲୋକରେ ଉପସ୍ଥିତ ହେଲେ ପୂର୍ବରୁ ସିଦ୍ଧିପ୍ରାପ୍ତ ଏକ ବ୍ୟକ୍ତି ତାଙ୍କର ଅଭ୍ୟର୍ଥନା ପାଇଁ ସେଠାରେ ଉପସ୍ଥିତ ହୁଅନ୍ତି ଏବଂ ସେ ତାହାକୁ ଅନ୍ୟ ଗୋଟିଏ ଲୋକକୁ ଅର୍ଥାତ୍ ବ୍ରହ୍ମଲୋକ ନାମକ ସର୍ବୋତ୍ତମ ସ୍ୱର୍ଗକୁ ନେଇଯାଆନ୍ତି । ସେଠାରେ ଜୀବ ଅନନ୍ତକାଳ

ପର୍ଯ୍ୟନ୍ତ ବାସ କରେ; ତାର ଆଉ ଜନ୍ମ ମୃତ୍ୟୁ କିଛି ହୁଏ ନାହିଁ । ଏହି ଭାବରେ ଜୀବ ଅନନ୍ତକାଳ ଧରି ଆନନ୍ଦ ଭୋଗ କରେ ଏବଂ ଏକମାତ୍ର ସୃଷ୍ଟିଶକ୍ତି ବ୍ୟତୀତ ଈଶ୍ୱରଙ୍କର ଅନ୍ୟ ସର୍ବବିଧ ଐଶ୍ୱର୍ଯ୍ୟରେ ଭୂଷିତ ହୁଏ । ଈଶ୍ୱର ଏକମାତ୍ର ନିୟନ୍ତା ଈଶ୍ୱର । ଅନ୍ୟ କେହି ତାଙ୍କର ସ୍ଥାନ ଗ୍ରହଣ କରିପାରେ ନାହିଁ, କେହି ଯଦି ଈଶ୍ୱରତ୍ୱ ଦାବୀ କରେ, ତା'ହେଲେ ଦ୍ୱୈତବାଦୀମାନଙ୍କ ମତରେ ସେ ଘୋର ନାସ୍ତିକ । ସୃଷ୍ଟିଶକ୍ତି ବ୍ୟତୀତ ଈଶ୍ୱରଙ୍କର ଅନ୍ୟ ଶକ୍ତିସମୂହ ଜୀବଠାରେ ସଞ୍ଚାରିତ ହୁଏ । ଉକ୍ତ ଜୀବାତ୍ମା ଯଦି ଶରୀର ଗ୍ରହଣ କରିବାକୁ ଇଚ୍ଛା କରେ ଏବଂ ପୃଥିବୀର ବିଭିନ୍ନ ଅଂଶରେ କର୍ମ କରିବାକୁ ଚାହେଁ, ତାହାହେଲେ ତାହା ମଧ୍ୟ ସେ କରିପାରେ । ସେ ଯଦି ସକଳ ଦେବଦେବୀଙ୍କୁ ନିଜ ସମ୍ମୁଖକୁ ଆସିବା ପାଇଁ ନିର୍ଦ୍ଦେଶ କରେ କିମ୍ବା ଯଦି ପିତୃପୁରୁଷଗଣଙ୍କୁ ଆନୟନ କରିବାକୁ ଇଚ୍ଛା କରେ, ତା'ହେଲେ ସେମାନେ ତା'ର ଇଚ୍ଛାନୁସାରେ ସେଠାରେ ଉପସ୍ଥିତ ହୁଅନ୍ତି । ତା'ର ସେତେବେଳେ ଏପରି ଶକ୍ତିଲାଭ ହୁଏ ଯେ, ତାକୁ ଆଉ ଦୁଃଖଭୋଗ କରିବାକୁ ହୁଏ ନାହିଁ ଏବଂ ସେ ଇଚ୍ଛା କଲେ ଅନନ୍ତକାଳ ପର୍ଯ୍ୟନ୍ତ ବ୍ରହ୍ମଲୋକରେ ଅବସ୍ଥାନ କରିପାରେ । କେବଳ ତାହାଙ୍କୁ ଆମେ ଶ୍ରେଷ୍ଠମାନବ କହିବା, ଯିଏ ଈଶ୍ୱରଙ୍କର ସ୍ନେହ ଅର୍ଜ୍ଜନ କରିଛନ୍ତି, ଯିଏ ସମ୍ପୂର୍ଣ୍ଣରୂପେ ନିଃସ୍ୱାର୍ଥ, ସମ୍ପୂର୍ଣ୍ଣ ପବିତ୍ରତା ଅର୍ଜନ କରିଛନ୍ତି, ସକଳ ବାସନା ତ୍ୟାଗ କରିଛନ୍ତି, ଯିଏ ଈଶ୍ୱରଙ୍କୁ ଭଲ ପାଆନ୍ତି ଏବଂ ଉପାସନା ବ୍ୟତୀତ ଅନ୍ୟ କୌଣସି କର୍ମ କରିବାକୁ ଚାହାଁନ୍ତି ନାହିଁ ।

ଅନ୍ୟ ଏକ ଶ୍ରେଣୀର ଜୀବ ଅଛନ୍ତି, ଯେଉଁମାନେ ଏତେ ଉନ୍ନତ ନୁହନ୍ତି, ସେମାନେ ସତ୍କର୍ମ କରନ୍ତି ଅଥଚ ପୁରସ୍କାରର ପ୍ରତ୍ୟାଶା କରନ୍ତି । ସେମାନେ କହନ୍ତି—ଦରିଦ୍ରକୁ ସେମାନେ କିଛି ଦାନ କରିବେ, କିନ୍ତୁ ବିନିମୟରେ ସେମାନେ ସ୍ୱର୍ଗଲାଭର କାମନା କରନ୍ତି । ମୃତ୍ୟୁ ପରେ ସେମାନଙ୍କର କଅଣ ଗତି ହୁଏ ? ସେମାନଙ୍କ ବାକ୍ୟ ମନରେ ଲୀନ ହୁଏ, ମନ ପ୍ରାଣରେ ଲୟ ହୁଏ, ପ୍ରାଣ ଜୀବାତ୍ମାରେ ଲୀନ ହୁଏ, ଜୀବାତ୍ମା ଦେହତ୍ୟାଗ କରି ବହିର୍ଗତ ହୁଏ ଏବଂ ଚନ୍ଦ୍ରଲୋକକୁ ଗମନ କରେ । ଜୀବ ସେଠାରେ ଦୀର୍ଘକାଳ ଧରି ଅତ୍ୟନ୍ତ ସୁଖରେ ସମୟ ଅତିବାହିତ କରେ । ତା'ର ସତ୍କର୍ମର ଫଳ ଯେତେଦିନ ଥାଏ, ସେତେଦିନ ଧରି ସେ ସୁଖଭୋଗ କରେ । ଯେତେବେଳେ ସମସ୍ତ କର୍ମ ନିଃଶେଷିତ ହୋଇଯାଏ, ସେତେବେଳେ ସେ ପୁନର୍ବାର ଧରାତଳରେ ଅବତୀର୍ଣ୍ଣ ହୁଏ ଏବଂ ନିଜ ବାସନାନୁଯାୟୀ ଧରାଧାମରେ ନୂତନ ଜୀବନ ଯାପନ କରେ । ଚନ୍ଦ୍ରଲୋକରେ ଜୀବଗଣ ଦେବଜନ୍ମ ପ୍ରାପ୍ତ ହୁଅନ୍ତି । କିମ୍ବା ଖ୍ରୀଷ୍ଟଧର୍ମ ଏବଂ ମୁସଲମାନ ଧର୍ମରେ ଉଲ୍ଲିଖିତ ଦେବଦୂତରୂପେ ଜନ୍ମଗ୍ରହଣ କରନ୍ତି । ଦେବତା ଅର୍ଥ କେତେଗୁଡ଼ିକ ଉଚ୍ଚପଦ ମାତ୍ର । ଦେବଗଣଙ୍କ ଆଧିପତ୍ୟ ବା ଇନ୍ଦ୍ରତ୍ୱ ଗୋଟିଏ ଉଚ୍ଚପଦର ନାମ । ସହସ୍ର ସହସ୍ର ମନୁଷ୍ୟ ସେହି ପଦ ଲାଭ କରିପାରନ୍ତି । ସର୍ବୋତ୍ତମ ବୈଦିକ କ୍ରିୟାକର୍ମର ଅନୁଷ୍ଠାନକାରୀ କୌଣସି ପୁଣ୍ୟବାନ୍ ବ୍ୟକ୍ତିଙ୍କ ମୃତ୍ୟୁ ହେଲେ ସେ ଦେବତାମାନଙ୍କ ମଧ୍ୟରେ ଇନ୍ଦ୍ରତ୍ୱପଦ ପ୍ରାପ୍ତ ହୁଅନ୍ତି । ଏଣେ ଯେତେବେଳେ ପୂର୍ବୋକ୍ତ ଇନ୍ଦ୍ରଙ୍କର ପତନ ହୁଏ ଏବଂ ତାଙ୍କର

ପୁନର୍ବାର ମର୍ତ୍ତ୍ୟଲୋକରେ ଜନ୍ମଲାଭ କରିବାର ସମୟ ଆସିଯାଇଥାଏ ସେତେବେଳେ ଇହଲୋକରେ ଯେପରି ରାଜାଙ୍କ ପରିବର୍ତ୍ତନ ହୁଏ, ସେହିପରି ଦେବତାମାନଙ୍କର ମଧ୍ୟ ପରିବର୍ତ୍ତନ ହୁଏ, ସେମାନଙ୍କର ମଧ୍ୟ ମୃତ୍ୟୁ ହୁଏ । ସ୍ୱର୍ଗବାସୀ ସମସ୍ତଙ୍କର ହିଁ ମୃତ୍ୟୁ ଅଛି । ଏକମାତ୍ର ମୃତ୍ୟୁହୀନ ସ୍ଥାନ ହେଲା ବ୍ରହ୍ମଲୋକ; ସେଠାରେ ଜନ୍ମ ନାହିଁ କି ମୃତ୍ୟୁ ନାହିଁ ।

ଅତଏବ ଜୀବଗଣ ସ୍ୱର୍ଗକୁ ଗମନ କରନ୍ତି ଏବଂ ମଧ୍ୟେ ମଧ୍ୟେ ଦୈତ୍ୟମାନଙ୍କ ଉତ୍ପାତ କଥା ଛାଡ଼ିଦେଲେ ମଧ୍ୟ ସ୍ୱର୍ଗପ୍ରାପ୍ତି ସେମାନଙ୍କ ପକ୍ଷରେ ଅତ୍ୟନ୍ତ ସୁଖକର ହୋଇଥାଏ । ପୁରାଣ ମତରେ ଦୈତ୍ୟ ଅଛନ୍ତି, ସେମାନେ ସମୟେ ସମୟେ ଦେବତାମାନଙ୍କୁ ନାନାରୂପେ ନିର୍ଯ୍ୟାତିତ କରନ୍ତି । ପୃଥିବୀର ଯାବତୀୟ ପୁରାଣରେ ଏହି ଦେବଦାନବ-ସଂଗ୍ରାମର ବିବରଣ ଦେଖିବାକୁ ମିଳେ । ଆହୁରି ଦେଖାଯାଏ ଯେ, ଅନେକ ସମୟରେ ଦୈତ୍ୟଗଣ ଦେବଗଣଙ୍କୁ ଜୟ କରନ୍ତି ଏବଂ ଅନେକ ସମୟରେ ମନେହୁଏ, ଦେବଗଣଙ୍କ ଅପେକ୍ଷା ଦୈତ୍ୟଗଣଙ୍କ ଦୁଷ୍କର୍ମ ବରଂ କିଛି କମ୍ । ଦୃଷ୍ଟାନ୍ତସ୍ୱରୂପ ସକଳ ପୁରାଣରେ ଦେବଗଣ ଅତ୍ୟନ୍ତ କାମପରାୟଣ ବୋଲି ମନେହୁଅନ୍ତି । ଏହିରୂପେ ନିଜର ପୁଣ୍ୟକର୍ମର ଫଳଭୋଗ ଶେଷ ହେଲେ ଦେବଗଣଙ୍କର ପତନ ହୁଏ । ସେତେବେଳେ ସେମାନେ ମେଘ ଏବଂ ବାରିବିନ୍ଦୁ ଅବଲମ୍ବନ କରି କୌଣସି ଶସ୍ୟ ବା ଉଦ୍ଭିଦରେ ସଞ୍ଚାରିତ ହୁଅନ୍ତି ଏବଂ ମାନବଦ୍ୱାରା ଭକ୍ଷିତ ଖାଦ୍ୟ ମାଧ୍ୟମରେ ମାନବଶରୀରରେ ପ୍ରବେଶ କରନ୍ତି । ପିତାଙ୍କ ନିକଟରୁ ସେମାନେ ଉପଯୁକ୍ତ ଦେହ ଗଠନର ଉପାଦାନ ପାଆନ୍ତି । ଯେତେବେଳେ ସେହି ଉପାଦାନର ଉପଯୋଗିତା ଶେଷ ହୋଇଯାଏ, ସେତେବେଳେ ସେମାନଙ୍କୁ ନୂତନ ଦେହ ସୃଷ୍ଟି କରିବାକୁ ପଡ଼େ । ଏପରି ଅନେକ ଦୁଷ୍ଟ ପ୍ରକୃତିର ଲୋକ ଅଛନ୍ତି, ଯେଉଁମାନେ ନାନାପ୍ରକାର ଦାନବୀୟ କାର୍ଯ୍ୟ ସାଧନ କରନ୍ତି ଏବଂ ମୃତ୍ୟୁପରେ ଇତରଯୋନିରେ ଜନ୍ମଗ୍ରହଣ କରନ୍ତି । ଅତ୍ୟନ୍ତ ହୀନକର୍ମୀ ହେଲେ ଅତି ନିମ୍ନସ୍ତରର ପ୍ରାଣୀରୂପେ ଜନ୍ମଗ୍ରହଣ କରନ୍ତି ଅଥବା ବୃକ୍ଷଲତା କିମ୍ବା ପ୍ରସ୍ତରାଦିରେ ପରିଣତ ହୁଅନ୍ତି ।

ଦେବଜନ୍ମରେ କୌଣସି ନୂତନ କର୍ମଫଳ ଅର୍ଜିତ ହୁଏ ନାହିଁ । ଏକମାତ୍ର ମନୁଷ୍ୟ ହିଁ କର୍ମଫଳ ଅର୍ଜନ କରିପାରେ । କର୍ମ କହିଲେ ଏପରି କାର୍ଯ୍ୟକୁ ବୁଝାଏ, ଯାହାର ଫଳ ଅଛି । ଯେତେବେଳେ ମନୁଷ୍ୟ ମରି ଦେବତା ହୁଏ, ସେତେବେଳେ ସେମାନଙ୍କର କେବଳ ସୁଖଭୋଗର ସମୟ; ସେ ସମୟରେ ସେମାନେ ନୂତନ କର୍ମ କରନ୍ତି ନାହିଁ । ସ୍ୱର୍ଗ ସେମାନଙ୍କର ଅତୀତ ସତ୍‌କର୍ମର ପୁରସ୍କାର ମାତ୍ର । ଯେତେବେଳେ ସତ୍‌କର୍ମର ଫଳ ନିଃଶେଷିତ ହୁଏ, ସେତେବେଳେ ଅବଶିଷ୍ଟ କର୍ମ ତା'ର ଫଳ ପ୍ରସବ କରିବାକୁ ଉଦ୍ୟତ ହୁଏ ଏବଂ ସେହି ଜୀବ ପୁନରାୟ ପୃଥିବୀକୁ ଆଗମନ କରେ । ଯଦି ସେ ଅତିଶୟ ଶୁଭ କର୍ମର ଅନୁଷ୍ଠାନ କରି ପୁଣି ନିଜକୁ ଶୁଦ୍ଧ ପବିତ୍ର କରିପାରେ, ତାହାହେଲେ ସେ ବ୍ରହ୍ମଲୋକକୁ ଗମନ କରେ ଏବଂ ପୃଥିବୀକୁ ଫେରି ଆସେ ନାହିଁ ।

ନିମ୍ନତର ସ୍ତରଗୁଡ଼ିକରୁ ଉଚ୍ଚ ସ୍ତରକୁ କ୍ରମବିକାଶର ପଥରେ ପଶୁତ୍ୱ ଗୋଟିଏ ସାମୟିକ ଅବସ୍ଥା ମାତ୍ର । କାଳକ୍ରମେ ପଶୁ ମଧ୍ୟ ମନୁଷ୍ୟ ହୁଏ । ଏହା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ

ଲକ୍ଷଣୀୟ ବିଷୟ ଯେ, ମନୁଷ୍ୟର ସଂଖ୍ୟାବୃଦ୍ଧି ସଙ୍ଗେ ସଙ୍ଗେ ପଶୁମାନଙ୍କର ସଂଖ୍ୟା ହ୍ରାସ ପାଉଅଛି, ପଶୁମାନଙ୍କ ଆତ୍ମା ମନୁଷ୍ୟରେ ରୂପାନ୍ତରିତ ହେଉଅଛି । ବିଭିନ୍ନ ଶ୍ରେଣୀର ପଶୁପକ୍ଷୀ ଇତିପୂର୍ବେ ମାନବରେ ପରିଣତ ହୋଇଯାଇଛନ୍ତି । ବାସ୍ତବିକ ବିଲୁପ୍ତ ପଶୁପକ୍ଷୀ ଆଉ କେଉଁଠାକୁ ବା ଯିବେ ?

ବେଦରେ ନରକର କୌଣସି ଉଲ୍ଲେଖ ନାହିଁ । କିନ୍ତୁ ଆମମାନଙ୍କ ଶାସ୍ତ୍ରର ପରବର୍ତ୍ତୀ କାଳକୁ ଉକ୍ତ ପୁରାଣର ରଚୟିତାମାନଙ୍କର ମନେହେଲା ଯେ, ନରକର କଳ୍ପନାକୁ ବାଦ୍ ଦେଇ କୌଣସି ଧର୍ମ ପୂର୍ଣ୍ଣାଙ୍ଗ ହୋଇ ନ ପାରେ । ସେଥିପାଇଁ ସେମାନେ ନାନା ପ୍ରକାର ନରକର କଳ୍ପନା କରିଛନ୍ତି । ଏହିସବୁ ନରକ ମଧ୍ୟରୁ କେତେଗୁଡ଼ିକରେ ମନୁଷ୍ୟକୁ କରତଦ୍ୱାରା କାଟି ବିଖଣ୍ଡିତ କରାହେଉଛି ଏବଂ ସେମାନଙ୍କ ଉପରେ ଅବିରାମ ଯାତନା ଚାଲିଛି, ତଥାପି ସେମାନଙ୍କର ମୃତ୍ୟୁ ନାହିଁ । ସେମାନେ ପ୍ରତି ମୁହୂର୍ତ୍ତରେ ତୀବ୍ର ଯନ୍ତ୍ରଣାରେ ଜର୍ଜରିତ ହେଉଛନ୍ତି । ତେବେ ଦୟା ପ୍ରଦର୍ଶନପୂର୍ବକ ଏହି ସକଳ ଗ୍ରନ୍ଥରେ କୁହାଯାଇଛି ଯେ, ଏହିସବୁ ଯନ୍ତ୍ରଣା ଚିରସ୍ଥାୟୀ ନୁହେଁ । ଏହି ଅବସ୍ଥାରେ ସେମାନଙ୍କର ଅସତ୍ କର୍ମର କ୍ଷୟ ହୁଏ ଏବଂ ସେମାନେ ମର୍ତ୍ତ୍ୟକୁ ପୁନରାଗମନ କରନ୍ତି, ନୂତନ ସୁଯୋଗ ପାଆନ୍ତି । ସୁତରାଂ ମାନବଦେହରେ ଏହି ମହତ୍ ସୁଯୋଗ ଲାଭ ହୋଇଥାଏ ବୋଲି ଏହାକୁ କର୍ମଶରୀର କହନ୍ତି । ଏହା ସାହାଯ୍ୟରେ ଆମେ ଆମର ନିଜ ଭାଗ୍ୟ ନିର୍ଦ୍ଧାରଣ କରୁ । ଆମେ ଗୋଟିଏ ବିରାଟ ଚକ୍ରରେ ଘୂରୁଅଛୁ ଏବଂ ଏହି ଚକ୍ରରେ ଏହା ହିଁ ହେଲା ଆମର ଭବିଷ୍ୟତ-ନିର୍ଦ୍ଧାରକ ବିନ୍ଦୁ । ସୁତରାଂ ଏହି ଦେହଟିକୁ ସର୍ବାପେକ୍ଷା ଗୁରୁତ୍ୱପୂର୍ଣ୍ଣ ଆଧାର ବୋଲି ବିବେଚନା କରାହୁଏ । ମନୁଷ୍ୟ ଦେବତା ଅପେକ୍ଷା ମଧ୍ୟ ଶ୍ରେଷ୍ଠ ।

ବର୍ତ୍ତମାନ ଆମେ ସହଜ ଓ ଶୁଦ୍ଧ ଦ୍ୱୈତବାଦର ବ୍ୟାଖ୍ୟା କଲୁ । ଏଥର ଆମେ ଉଚ୍ଚତର ବେଦାନ୍ତ-ଦର୍ଶନକୁ ଯିବା, ଯାହା ପୂର୍ବୋକ୍ତ ମତବାଦକୁ ଅଯୌକ୍ତିକ ମନେକରେ । ଏହି ମତାନୁସାରେ ଈଶ୍ୱର ଏହି ବିଶ୍ୱର ଉପାଦାନ ଏବଂ ନିମିତ୍ତ କାରଣ ମଧ୍ୟ । ଈଶ୍ୱରଙ୍କୁ ଯଦି ଆପଣମାନେ ଏକ ଅସୀମ ପୁରୁଷ ବୋଲି ମାନନ୍ତି ଏବଂ ଜୀବାତ୍ମା ଓ ପ୍ରକୃତିକୁ ଅସୀମ କହନ୍ତି, ତେବେ ଆପଣମାନେ ଏହି ଅସୀମ ବସ୍ତୁଗୁଡ଼ିକର ସଂଖ୍ୟା ଯଥେଚ୍ଛା ବଢ଼ାଇପାରନ୍ତି, ଯାହା ଅତି ଅସମ୍ଭବ କଥା । ଏହି ଭାବରେ ଅଗ୍ରସର ହେଲେ ଆପଣମାନେ ସମଗ୍ର ନ୍ୟାୟଶାସ୍ତ୍ରକୁ ଧୂଳିସାତ୍ କରିଦେବେ । ସୁତରାଂ ଈଶ୍ୱର ଏହି ବିଶ୍ୱର ଅଭିନ୍ନ ନିମିତ୍ତ-ଉପାଦାନ କାରଣ; ସେ ନିଜ ମଧ୍ୟରୁ ଏହି ବିଶ୍ୱକୁ ବିକଶିତ କରିଛନ୍ତି । ତା'ହେଲେ କ'ଣ ଈଶ୍ୱର ଏହି କାନ୍ଥ, ଏହି ଟେବୁଲ ହୋଇଛନ୍ତି ? ସେ କଅଣ ଶୂକର ଏବଂ ହତ୍ୟାକାରୀ ଇତ୍ୟାଦି ଜଗତର ଯାବତୀୟ ହୀନ ବସ୍ତୁ ହୋଇଛନ୍ତି ? ଆମେ କହିଥାଉ, ଈଶ୍ୱର ଶୁଦ୍ଧ-ସ୍ୱଭାବ । ସେ କିପରି ଏହି ସକଳ ହୀନ ବସ୍ତୁରେ ପରିଣତ ହୋଇପାରନ୍ତି ? ଆମର ଉତ୍ତର ଏହି– ଧରନ୍ତୁ ମୁଁ ଜଣେ ଦେହଧାରୀ ଆତ୍ମା । ଗୋଟିଏ ଅର୍ଥରେ ଏହି ଦେହ ମୋଠାରୁ ପୃଥକ୍ ନୁହେଁ, ତଥାପି ମୁଁ—ପ୍ରକୃତ ମୁଁ—ଏ ଦେହ ନୁହେଁ; ଦୃଷ୍ଟାନ୍ତସ୍ୱରୂପ କୁହାଯାଇପାରେ, ମୁଁ ନିଜକୁ ଶିଶୁ, ତରୁଣ, ଯୁବକ ବା ବୃଦ୍ଧ ବୋଲି ପରିଚୟ ଦିଏ,

ଅଥଚ ଏଥିରେ ମୋର ଆତ୍ମାର କୌଣସି ପରିବର୍ତ୍ତନ ହୁଏ ନାହିଁ; ତାହା ସର୍ବଦା ସେହି ଏକ ଆତ୍ମା ରୂପେ ଅବସ୍ଥାନ କରେ । ଠିକ୍ ସେହିପରି ପ୍ରକୃତିସମନ୍ୱିତ ସମଗ୍ର ବିଶ୍ୱ ଏବଂ ଅଗଣିତ ଆତ୍ମା ଯେପରି ଈଶ୍ୱରଙ୍କର ଅସୀମ ଦେହ । ସେ ସବୁଥିରେ ଓତଃପ୍ରୋତ ହୋଇ ଅଛନ୍ତି । ଏକମାତ୍ର ସେ ହିଁ ଅପରିବର୍ତ୍ତନୀୟ, କିନ୍ତୁ ପ୍ରକୃତି ପରିବର୍ତ୍ତିତ ହୁଏ, ଆତ୍ମା ମଧ୍ୟ ପରିବର୍ତ୍ତିତ ହୁଏ । ପ୍ରକୃତି ଏବଂ ଆତ୍ମାର ପରିବର୍ତ୍ତନଦ୍ୱାରା ସେ ପ୍ରଭାବିତ ହୁଅନ୍ତି ନାହିଁ । ପ୍ରକୃତିର ପରିବର୍ତ୍ତନ କିପରି ହୁଏ ? ପ୍ରକୃତିର ପରିବର୍ତ୍ତନ କହିଲେ ରୂପର (ଆକୃତିର) ପରିବର୍ତ୍ତନକୁ ବୁଝାଏ । ଏହା ନୂତନ ରୂପ ଗ୍ରହଣ କରେ । କିନ୍ତୁ ଆତ୍ମାର ଅନୁରୂପ ପରିବର୍ତ୍ତନ ହୁଏ ନାହିଁ । ଆତ୍ମାର ଜ୍ଞାନର ସଂକୋଚନ ଏବଂ ସମ୍ପ୍ରସାରଣ ହୁଏ । ଅସତ୍ କର୍ମଦ୍ୱାରା ଏହା'ର ସଙ୍କୋଚନ ଘଟେ । ଯେଉଁ କର୍ମଦ୍ୱାରା ଆତ୍ମାର ସ୍ୱାଭାବିକ ପବିତ୍ରତା ଓ ଜ୍ଞାନର ସଙ୍କୋଚନ ଘଟେ, ତାହାକୁ ଅଶୁଭ କର୍ମ କହନ୍ତି । ପୁନଶ୍ଚ ଯେଉଁ ସକଳ କର୍ମ ଫଳରେ ଆତ୍ମାର ମହିମା ପ୍ରକାଶିତ ହୁଏ, ତାହାକୁ ଶୁଭ କର୍ମ କହନ୍ତି । ପୂର୍ବେ ଆତ୍ମା ପବିତ୍ର ଥିଲା, କିନ୍ତୁ ତାହାର ସଂକୋଚନ ହୋଇଅଛି । ଈଶ୍ୱର-କୃପା ଏବଂ ସତ୍ କର୍ମାନୁଷ୍ଠାନଦ୍ୱାରା ପୁଣି ତାହା ସମ୍ପ୍ରସାରିତ ହେବ ଏବଂ ସ୍ୱାଭାବିକ ପବିତ୍ରତା ଲାଭ କରିବ । ସମସ୍ତଙ୍କର ସମାନ ସୁଯୋଗ ଅଛି ଏବଂ ଅବଶେଷରେ ସେମାନେ ମୁକ୍ତିର ଅଧିକାରୀ ହେବେ । କିନ୍ତୁ ଏ ଜଗତ-ସଂସାରର କେବେହେଲେ ଅବସାନ ହେବ ନାହିଁ, କାରଣ ଏହା ଶାଶ୍ୱତ । ଏହା ହିଁ ହେଲା ଦ୍ୱିତୀୟ ମତବାଦ । ପ୍ରଥମଟିକୁ କୁହାଯାଏ 'ଦ୍ୱୈତବାଦ' । ଦ୍ୱିତୀୟ ମତରେ ଈଶ୍ୱର, ଆତ୍ମା ଏବଂ ପ୍ରକୃତି—ଏହି ତିନୋଟିର ଅସ୍ତିତ୍ୱ ଅଛି, ଏବଂ ଆତ୍ମା ଓ ପ୍ରକୃତି ଈଶ୍ୱରଙ୍କର ଦେହ, ଏହି ତିନ ମିଶି ଗୋଟିଏ ଅଭିନ୍ନ ସତ୍ତା ଗଠନ କରିଛନ୍ତି । ଏହା ଧର୍ମ-ବିକାଶର ଗୋଟିଏ ଉଚ୍ଚତର ସ୍ତରର ନିଦର୍ଶନ ଏବଂ ଏହାକୁ 'ବିଶିଷ୍ଟାଦ୍ୱୈତବାଦ' କୁହାଯାଏ । ଦ୍ୱୈତବାଦରେ ଏହି ବିଶ୍ୱକୁ ଈଶ୍ୱର-କର୍ତ୍ତୃକ ଚାଳିତ ଗୋଟିଏ ସୁବୃହତ୍ ଯନ୍ତ୍ରରୂପ କଳ୍ପନା କରାହୁଏ ଏବଂ ବିଶିଷ୍ଟାଦ୍ୱୈତବାଦରେ ଏହାକୁ ଜୀବଦେହ ଭଳି ଗୋଟିଏ ଜୀବନ୍ତ ଓ ପରମାତ୍ମାଙ୍କଦ୍ୱାରା ଅନୁସ୍ୟୂତ ଅଖଣ୍ଡ ସତ୍ତାରୂପେ କଳ୍ପନା କରାଯାଏ ।

ସର୍ବଶେଷରେ ଅଛନ୍ତି ଅଦ୍ୱୈତବାଦୀମାନେ । ସେମାନେ ମଧ୍ୟ ସେହି ସମସ୍ୟାର ସମ୍ମୁଖୀନ ହୋଇଅଛନ୍ତି ଯେ, ଈଶ୍ୱରଙ୍କୁ ବ୍ରହ୍ମାଣ୍ଡର ଉପାଦାନ ଓ ନିମିତ୍ତ କାରଣ—ଉଭୟ ହେବାକୁ ହେବ । ଏହି ମତରେ ଈଶ୍ୱର ହିଁ ଏହି ସମଗ୍ର ବିଶ୍ୱ ହୋଇଅଛନ୍ତି ଏବଂ ଏହି କଥା ଆଦୌ ଅସ୍ୱୀକାର କରିହେବ ନାହିଁ । ଅନ୍ୟମାନେ ଯେତେବେଳେ କହନ୍ତି, ଈଶ୍ୱର ଏହି ବିଶ୍ୱର ଆତ୍ମା, ବିଶ୍ୱ ତାଙ୍କର ଦେହ ଏବଂ ସେହି ଦେହ ପରିବର୍ତ୍ତନଶୀଳ ହେଲେ ମଧ୍ୟ ଈଶ୍ୱର କୂଟସ୍ଥ ନିତ୍ୟ, ସେତେବେଳେ ଅଦ୍ୱୈତବାଦୀମାନେ କହନ୍ତି, ଏହା ଅର୍ଥହୀନ କଥା । ତାହା ଯଦି ହୁଏ, ତେବେ ଈଶ୍ୱରଙ୍କୁ ଉପାଦାନ-କାରଣ କହି ଲାଭ କଅଣ ? ଉପାଦାନ-କାରଣ ଆମେ ତାହାକୁ ହିଁ କହୁଥାଉ, ଯାହା କାର୍ଯ୍ୟରେ ପରିଣତ ହୁଏ; କାର୍ଯ୍ୟ କହିଲେ କାରଣର ରୂପାନ୍ତର ବ୍ୟତୀତ ଅନ୍ୟ କିଛି ନୁହେଁ । କାର୍ଯ୍ୟ ଦେଖିଲେ ବୁଝିବାକୁ ହେବ, ତାହା କାରଣର ହିଁ ଅନ୍ୟ ଏକ ରୂପ । ଏହି ବିଶ୍ୱ ଯଦି କାର୍ଯ୍ୟ ହୁଏ, ଏବଂ ଈଶ୍ୱର ଯଦି

କାରଣ ହୁଅନ୍ତି, ତେବେ ଏହି ବିଶ୍ୱ ଈଶ୍ୱରଙ୍କର ହିଁ ଅନ୍ୟ ଏକ ରୂପ ବ୍ୟତୀତ କିଛି ନୁହେଁ । କେହି ଯଦି କହନ୍ତି, ଏହି ବିଶ୍ୱ ଈଶ୍ୱରଙ୍କର ଶରୀର, ଏ ଶରୀର ସଙ୍କୁଚିତ ଓ ସୂକ୍ଷ୍ମାକାର ହୋଇ କାରଣାବସ୍ଥାପ୍ରାପ୍ତ ହୁଏ ଏବଂ ଏହି କାରଣରୁ ଏହି ବିଶ୍ୱର ଉଦ୍ଭବ ହୁଏ, ତେବେ ଅଦ୍ୱୈତବାଦୀ କହିବେ, ଫଳତଃ ଭଗବାନ ନିଜେ ହିଁ ଏହି ବିଶ୍ୱରୂପ ଧାରଣ କରନ୍ତି । ଏଠାରେ ଗୋଟିଏ ଅତି ସୂକ୍ଷ୍ମ ପ୍ରଶ୍ନର ସମ୍ମୁଖୀନ ହେବାକୁ ପଡ଼ିବ । ଭଗବାନ ଯଦି ନିଖିଳ ବିଶ୍ୱ ହୋଇଥାଆନ୍ତି, ତା'ହେଲେ ଏହା ଅବଶ୍ୟ ସ୍ୱୀକାର୍ଯ୍ୟ ଯେ, ଆପଣମାନେ ସମସ୍ତେ ଏବଂ ଜଗତର ଅନ୍ୟ ସବୁ କିଛି ଈଶ୍ୱର । ଏହି ପୁସ୍ତକଖଣ୍ଡିକ ଈଶ୍ୱର ଏବଂ ପ୍ରତ୍ୟେକ ବସ୍ତୁ ମଧ୍ୟ ଈଶ୍ୱର । ମୋର ଦେହ ଈଶ୍ୱର, ମନ ଈଶ୍ୱର, ଆତ୍ମା ମଧ୍ୟ ଈଶ୍ୱର । ତାହା ଯଦି ହୁଏ, ତେବେ ଏ ଜୀବାତ୍ମା ଆସିଲା କେଉଁଠାରୁ ? ଈଶ୍ୱର କଅଣ ତେବେ ଲକ୍ଷ ଲକ୍ଷ ଜୀବରୂପେ ବିଭକ୍ତ ହୋଇଛନ୍ତି ? ସେହି ଏକ ଈଶ୍ୱର କ'ଣ ଏହି ଲକ୍ଷ ଲକ୍ଷ ଜୀବରେ ପରିଣତ ହୋଇଛନ୍ତି ? ଏହା କିପରି ସମ୍ଭବ ? କିପରି ସେହି ଅନନ୍ତ ଶକ୍ତି ଓ ଅସୀମ ବସ୍ତୁ—ଈଶ୍ୱର ସେହି ଅଖଣ୍ଡ ସତ୍ତା ବିଖଣ୍ଡିତ ହୋଇପାରନ୍ତି ? ଅସୀମ ବସ୍ତୁର ବିଭାଜନ ସମ୍ଭବ ନୁହେଁ । ସେହି ଅଖଣ୍ଡ ଅବିମିଶ୍ର ସତ୍ତା କିପରି ଏହି ବିଶ୍ୱ ହୋଇପାରେ ? ଯଦି ସେ ଏହି ବିଶ୍ୱ ହୋଇଥାଆନ୍ତି, ତା'ହେଲେ ସେ ପରିବର୍ତ୍ତନଶୀଳ ଏବଂ ଯଦି ସେ ପରିବର୍ତ୍ତନଶୀଳ ହୁଅନ୍ତି, ତା'ହେଲେ ସେ ପ୍ରକୃତିର ଅଂଶବିଶେଷ ଏବଂ ଯାହା ପ୍ରକୃତିର ଅଂଶ, ତା'ର ପରିବର୍ତ୍ତନ ଅଛି, ଜନ୍ମ ଅଛି, ମୃତ୍ୟୁ ମଧ୍ୟ ଅଛି । ଯଦି ଆମମାନଙ୍କ ଈଶ୍ୱର ପରିବର୍ତ୍ତନଶୀଳ ହୁଅନ୍ତି, ତା'ହେଲେ ତାଙ୍କର ମଧ୍ୟ ଦିନେ ନା ଦିନେ ମୃତ୍ୟୁ ହେବ । ଏହି ତଥ୍ୟଟି ସର୍ବଦା ମନେରଖିବା ଆବଶ୍ୟକ । ପୁନଶ୍ଚ ପ୍ରଶ୍ନ, ଏହି ଈଶ୍ୱରଙ୍କର କେତେ ଅଂଶ ଏହି ବିଶ୍ୱରୂପେ ପରିଣତ ହୋଇଅଛି ? ଯଦି ଏହି ଅଂଶ ବୀଜଗଣିତର ଅଜ୍ଞାତ ପରିମାଣ ହୁଏ, ତାହାହେଲେ ସେହି ଅଂଶକୁ ବାଦ ଦେଇ ଅବଶିଷ୍ଟ ପରିମାଣ ଈଶ୍ୱର ବର୍ତ୍ତମାନ ରହିଲେ । କାର୍ଯ୍ୟତଃ ସୃଷ୍ଟିପୂର୍ବେ ଈଶ୍ୱର ଯେପରି ଥିଲେ, ବର୍ତ୍ତମାନ ସେପରି ରହିଲେ ନାହିଁ, କାରଣ କେତେକ ଅଂଶ ବର୍ତ୍ତମାନ ବିଶ୍ୱରେ ପରିଣତ ହୋଇଛି ।

ଅତଏବ ଅଦ୍ୱୈତବାଦୀଗଣ କହନ୍ତି, ବାସ୍ତବିକ ଏ ବିଶ୍ୱର ଅସ୍ତିତ୍ୱ ନାହିଁ, ସବୁ ମାୟା । ସମଗ୍ର ବ୍ରହ୍ମାଣ୍ଡ ଦେବଗଣ, ଦେବଦୂତଗଣ, ଜନ୍ମମୃତ୍ୟୁର ଅଧୀନ ଅନ୍ୟାନ୍ୟ ପ୍ରାଣୀ, ଏବଂ ଚକ୍ରବତ୍ ଭ୍ରାମ୍ୟମାଣ ଏହି ଅନନ୍ତକୋଟି ଆତ୍ମା—ସବୁ କିଛି ସ୍ୱପ୍ନମାତ୍ର । ଜୀବ ବୋଲି ଆଦୌ କିଛି ନାହିଁ; ଅତଏବ ସେମାନଙ୍କର ଅଗଣିତ ସଂଖ୍ୟା ବା କିପରି ହେବ ? ଏକମାତ୍ର ସେହି ଅନନ୍ତ ସତ୍ତା ଅଛନ୍ତି । ଯେପରି ଏକ ସୂର୍ଯ୍ୟ ବିଭିନ୍ନ ଜଳବିନ୍ଦୁ ଉପରେ ପ୍ରତିବିମ୍ବିତ ହୋଇ ବହୁରୂପେ ପ୍ରତିଭାତ ହୁଅନ୍ତି, କୋଟି କୋଟି ଜଳକଣିକା ଯେପରି କୋଟି କୋଟି ସୂର୍ଯ୍ୟଙ୍କୁ ପ୍ରତିଫଳିତ କରନ୍ତି ଏବଂ ପ୍ରତ୍ୟେକ ଜଳକଣିକା ସୂର୍ଯ୍ୟଙ୍କର ପରିପୂର୍ଣ୍ଣ ପ୍ରତିମୂର୍ତ୍ତି ଧାରଣ କରିଥାଏ, ଠିକ୍ ସେହିପରି ସକଳ ଜୀବଗଣ ବିଭିନ୍ନ ଅନ୍ତଃକରଣରେ ପ୍ରତିଫଳିତ ପ୍ରତିବିମ୍ବ ମାତ୍ର । ଏହିସବୁ ଅନ୍ତଃକରଣ ଯେପରି ବିଭିନ୍ନ ଜଳବିନ୍ଦୁ ଭଳି ସେହି ଏକ ସତ୍ତାକୁ ପ୍ରତିଫଳିତ କରୁଛନ୍ତି । ଈଶ୍ୱର ଏହିସବୁ ବିଭିନ୍ନ ଜୀବଙ୍କ ମଧ୍ୟରେ ପ୍ରତିଫଳିତ ହୋଇଛନ୍ତି ।

କିନ୍ତୁ ସତ୍ୟ ଭିନ୍ନ କୌଣସି ଅବିମିଶ୍ର ସ୍ୱପ୍ନ ରହି ନ ପାରେ, ଅନନ୍ତସତ୍ତା ହିଁ ସେହି ସତ୍ୟ । ଏହି ଶରୀର-ମନ ଓ ଆତ୍ମାରୂପେ ଆପଣ ଗୋଟିଏ ସ୍ୱପ୍ନମାତ୍ର; କିନ୍ତୁ ସ୍ୱରୂପତଃ ଆପଣ ସେହି ସଚ୍ଚିଦାନନ୍ଦ, ଆପଣ ହିଁ ସେହି ଈଶ୍ୱର; ଆପଣ ହିଁ ସମଗ୍ର ବିଶ୍ୱକୁ ସୃଷ୍ଟି କରୁଅଛନ୍ତି, ପୁନର୍ବାର ନିଜ ମଧ୍ୟକୁ ଟାଣି ନେଉଛନ୍ତି । ଏହା ହିଁ ହେଲା ଅଦ୍ୱୈତବାଦୀମାନଙ୍କର ମତ । ସୁତରାଂ ଏହି ଜନ୍ମ ଓ ପୁନର୍ଜନ୍ମ, ଏହି ଯିବା ଆସିବା ମାୟାସୃଷ୍ଟି ଅଳୀକ କଳ୍ପନା ମାତ୍ର । ଆପଣ ଅସୀମ, ଆପଣ ପୁଣି କୁଆଡ଼େ ଯିବେ ? ଏହି ସୂର୍ଯ୍ୟ, ଏହି ଚନ୍ଦ୍ର, ଏହି ନିଖିଳ ବିଶ୍ୱବ୍ରହ୍ମାଣ୍ଡ ଆପଣଙ୍କ ସର୍ବାତୀତ ସ୍ୱରୂପ ମଧ୍ୟରୁ ଯେପରି କେତୋଟି କଣିକାମାତ୍ର । ଅତଏବ ଆପଣଙ୍କର କିପରି ଜନ୍ମମୃତ୍ୟୁ ହେବ ? ମୁଁ କେବେହେଲେ ଜନ୍ମଗ୍ରହଣ କରି ନାହିଁ ଏବଂ କେବେ କରିବି ନାହିଁ ମଧ୍ୟ । ମୋର କୌଣସି ଜନକ ପିତାମାତା ବନ୍ଧୁ ଶତ୍ରୁ କେହି ନ ଥିଲେ, କାରଣ ମୁଁ ସେହି ସଚ୍ଚିଦାନନ୍ଦ । ମୁଁ ହିଁ ସେ, ମୁଁ ହିଁ ସେ । ତା'ହେଲେ ଏହି ଦର୍ଶନ ମତରେ ମାନବ-ଜୀବନର ଲକ୍ଷ୍ୟ କଅଣ ? ଯେଉଁମାନେ ଉକ୍ତ ଜ୍ଞାନ ଲାଭ କରନ୍ତି, ସେମାନେ ବିଶ୍ୱ ସହିତ ଅଭିନ୍ନ ହୋଇଯାଆନ୍ତି; ସେମାନଙ୍କ ପକ୍ଷରେ ସବୁ ସ୍ୱର୍ଗ, ଏପରିକି ବ୍ରହ୍ମଲୋକ ମଧ୍ୟ ଲୟ ହୁଏ, ସମସ୍ତ ସ୍ୱପ୍ନ ବିଲୀନ ହୋଇଯାଏ ଏବଂ ସେମାନେ ନିଜକୁ ଏହି ବିଶ୍ୱର ସନାତନ ଈଶ୍ୱରରୂପେ ଦେଖନ୍ତି । ସେମାନେ ଅନନ୍ତ ଜ୍ଞାନ ଓ ଶାନ୍ତି-ମଣ୍ଡିତ ପ୍ରକୃତ ନିଜସ୍ୱ ବ୍ୟକ୍ତିତ୍ୱ ଖୋଜି ପାଆନ୍ତି ଏବଂ ମୁକ୍ତିଲାଭ କରନ୍ତି । ସେମାନଙ୍କର ସେତେବେଳେ ତୁଚ୍ଛ ବସ୍ତୁରେ ଆନନ୍ଦର ଅବସାନ ଘଟେ । ଆମେ ଏହି କ୍ଷୁଦ୍ର ଦେହରେ ଏବଂ କ୍ଷୁଦ୍ର ବ୍ୟକ୍ତିତ୍ୱରେ ଆନନ୍ଦ ପାଉ । ଯେତେବେଳେ ଏହି ସମଗ୍ର ବିଶ୍ୱ ମୋର ଦେହ ହେବ, ସେତେବେଳେ ଆନନ୍ଦ ଆହୁରି କେତେ ବୃଦ୍ଧି ନ ପାଇବ ! ଶରୀର ଯଦି ସୁଖର ଆକର ହୁଏ, ତେବେ ନିଖିଳ ବିଶ୍ୱ ମୋର ଶରୀର ହେଲେ ସୁଖ ମଧ୍ୟ ଯେ ଅପରିମିତ ହେବ, ତାହା କହିବା ନିଷ୍ପ୍ରୟୋଜନ । ସେହି ଅବସ୍ଥାରେ ମୁକ୍ତିଲାଭ ହେବ । ଏହାକୁ ହିଁ ଅଦ୍ୱୈତବାଦ ବା ଦ୍ୱୈତାତୀତ ବେଦାନ୍ତଦର୍ଶନ କୁହାଯାଏ ।

ବେଦାନ୍ତ ଦର୍ଶନ ଏହି ତିନୋଟି ସ୍ତର ମଧ୍ୟଦେଇ ଅଗ୍ରସର ହୋଇଅଛି; ଆମେ ଏହାଠାରୁ ଆଉ ଅଧିକ ଅଗ୍ରସର ହୋଇ ନ ପାରୁ; କାରଣ ଏକତ୍ୱର ଊର୍ଦ୍ଧ୍ୱକୁ ଗମନ କରିବା ସାଧ୍ୟାତୀତ । କୌଣସି ବିଜ୍ଞାନ ଥରେ ଏହି ଏକତ୍ୱର ଧାରଣାରେ ଉପନୀତ ହେଲେ ଆଉ କୌଣସି ଉପାୟରେ ଏକତ୍ୱକୁ ଅତିକ୍ରମ କରି ଅଗ୍ରସର ହୋଇପାରେ ନାହିଁ । ମନୁଷ୍ୟ ଏହି ପରମ ଅଖଣ୍ଡ ବସ୍ତୁର ଅତୀତ ଅନ୍ୟ କିଛିର ଧାରଣା କରି ନ ପାରେ ।

ସମସ୍ତଙ୍କ ପକ୍ଷରେ ଏହି ଅଦ୍ୱୈତବାଦକୁ ସ୍ୱୀକାର କରିବା ସମ୍ଭବ ନୁହେଁ, କାରଣ ଏହା ଅତି ଦୁରୂହ । ପ୍ରଥମତଃ ଏହାକୁ ବୁଦ୍ଧିଦ୍ୱାରା ଅନୁଧ୍ୟାନ କରିବା କଠିନ । ବୁଝିବା ପାଇଁ ସୂକ୍ଷ୍ମବୁଦ୍ଧି ଏବଂ ଭୟଶୂନ୍ୟ ଅନୁଭବ-ଶକ୍ତିର ପ୍ରୟୋଜନ । ଦ୍ୱିତୀୟତଃ ଏହା ଅଧିକାଂଶଙ୍କ ପକ୍ଷରେ ଉପଯୋଗୀ ନୁହେଁ । କାର୍ଯ୍ୟତଃ ତିନୋଟି ପୃଥକ୍ ସ୍ତରର ସୃଷ୍ଟି ହୋଇଅଛି । ପ୍ରଥମ ସ୍ତରରୁ ଆରମ୍ଭ କଲେ ମନନ ଏବଂ ନିଦିଧ୍ୟାସନଦ୍ୱାରା ଦ୍ୱିତୀୟଟି ସ୍ୱୟଂ ଉଦ୍‌ଘାଟିତ ହେବ । ଜାତିଭଳି ବ୍ୟକ୍ତିକୁ ମଧ୍ୟ ସ୍ତର ସ୍ତର ଦେଇ ଅଗ୍ରସର ହେବାକୁ ପଡ଼ିବ । ଯେଉଁ ସକଳ ସ୍ତରର ମାଧ୍ୟମରେ ମାନବଜାତି ଉଚ୍ଚତମ ଧର୍ମଚିନ୍ତାରେ ଉପନୀତ ହୋଇଅଛି, ପ୍ରତ୍ୟେକ ବ୍ୟକ୍ତିକୁ

ତାର ଅନୁସରଣ କରିବାକୁ ହେବ । ତେବେ ଗୋଟିଏ ସ୍ତରରୁ ଅନ୍ୟ ସ୍ତରକୁ ଉଠିବା ପାଇଁ ଯେଉଁଠି ମାନବ-ଜାତିକୁ ହଜାର ହଜାର ବର୍ଷ କଟାଇବାକୁ ପଡ଼ୁଅଛି, ଜଣେ ବ୍ୟକ୍ତି ତଦପେକ୍ଷା ଅତି ଅଳ୍ପ ସମୟରେ ତାହା ଉଦ୍‌ଯାପିତ କରିପାରେ । ତଥାପି ଆମମାନଙ୍କ ମଧ୍ୟରୁ ସମସ୍ତଙ୍କୁ ପ୍ରତ୍ୟେକ ସ୍ତର ମଧ୍ୟ ଦେଇ ଯିବାକୁ ହେବ । ଯେଉଁମାନେ ଅଦ୍ୱୈତବାଦୀ, ସେମାନେ ନିଜ ଜୀବନର ସେହି ସମୟକୁ ସ୍ମରଣ କରନ୍ତୁ, ଯେତେବେଳେ ଆପଣମାନେ ଘୋର ଦ୍ୱୈତବାଦୀ ଥିଲେ । ଯେଉଁ ମୁହୂର୍ତ୍ତରେ ଆପଣ ନିଜକୁ ଦେହ ଓ ମନରୂପେ ଚିନ୍ତା କରିବେ, ସେହି ମୁହୂର୍ତ୍ତରେ ଏହି ସମଗ୍ର ସ୍ୱପ୍ନ ଆପଣଙ୍କୁ ସ୍ୱୀକାର କରିବାକୁ ହେବ । ଅଂଶମାତ୍ରକୁ ସ୍ୱୀକାର କଲେ ସମଗ୍ରକୁ ମଧ୍ୟ ସ୍ୱୀକାର କରିବାକୁ ହେବ । ଯେ କହେ ଯେ, ଏହି ବିଶ୍ୱ ଅଛି ଅଥଚ ତାହାର ନିୟାମକ ଈଶ୍ୱର ନାହାନ୍ତି, ସେ ନିର୍ବୋଧ; କାରଣ ଜଗତ୍ ଥିଲେ ତାହାର କାରଣ ମଧ୍ୟ ରହିବା ଆବଶ୍ୟକ ଏବଂ ସେହି କାରଣକୁ ହିଁ ଆମେ ଈଶ୍ୱର ବୋଲି ମାନୁ । କାରଣର ଅସ୍ତିତ୍ୱ ନ ମାନି କୌଣସି କାର୍ଯ୍ୟକୁ ସ୍ୱୀକାର କରିବା ଅସମ୍ଭବ । ଭଗବାନଙ୍କ ଅସ୍ତିତ୍ୱ କେବଳ ସେତିକିବେଳେ ଲୋପ ପାଇବ, ଯେତେବେଳେ ଜଗତର କୌଣସି ଅସ୍ତିତ୍ୱ ରହିବ ନାହିଁ । ସେତେବେଳେ ଆପଣ ଅଖଣ୍ଡ ବ୍ରହ୍ମଙ୍କ ସହିତ ଅଭିନ୍ନ ହେବେ ଏବଂ ଜଗତ୍ ଆପଣଙ୍କ ନିକଟରେ ମିଥ୍ୟା ହୋଇଯିବ । ଯେତେ ସମୟ ପର୍ଯ୍ୟନ୍ତ ଏହି ମିଥ୍ୟାବୋଧ ଥିବ ଯେ ଆପଣ ଗୋଟିଏ ଦେହ ସହିତ ଅଭିନ୍ନ, ସେତେବେଳ ପର୍ଯ୍ୟନ୍ତ ଆପଣଙ୍କୁ ଆପଣଙ୍କର ଜନ୍ମ-ମୃତ୍ୟୁ ମାନିବାକୁ ହେବ; କିନ୍ତୁ ଯେତେବେଳେ ଏହି ସ୍ୱପ୍ନ ଦୂର ହେବ, ସେତେବେଳେ ଜନ୍ମ-ମୃତ୍ୟୁର ସ୍ୱପ୍ନ ମଧ୍ୟ ବିଲୀନ ହେବ ଏବଂ ବିଶ୍ୱର ଅସ୍ତିତ୍ୱର ସ୍ୱପ୍ନ ମଧ୍ୟ ଭଙ୍ଗ ହେବ । ଯେଉଁ ବସ୍ତୁକୁ ଆମେ ବର୍ତ୍ତମାନ ବିଶ୍ୱରୂପେ ଦେଖୁଅଛୁ, ତାହା ହିଁ ସେତେବେଳେ ପରମାତ୍ମାରୂପେ ପ୍ରତିଭାତ ହେବ ଏବଂ ଯେଉଁ ଈଶ୍ୱରଙ୍କୁ ଏତେ ସମୟ ପର୍ଯ୍ୟନ୍ତ ବାହାରେ ଦେଖିଥିଲୁ, ତାଙ୍କୁ ହିଁ ବର୍ତ୍ତମାନ ନିଜ ହୃଦୟରେ ସ୍ୱୀୟ ଆତ୍ମାରୂପେ ଦେଖିବୁ ।

# ବୌଦ୍ଧଧର୍ମ ଓ ବେଦାନ୍ତ

ବୌଦ୍ଧଧର୍ମ ଓ ଭାରତର ଅନ୍ୟାନ୍ୟ ସକଳ ଧର୍ମମତର ଭିତ୍ତି ବେଦାନ୍ତ । କିନ୍ତୁ ଯାହାକୁ ଆମେ ଆଧୁନିକ ଯୁଗର ଅଦ୍ୱୈତ ଦର୍ଶନ କହୁ, ତାହାର ଅନେକଗୁଡ଼ିଏ ସିଦ୍ଧାନ୍ତ ବୌଦ୍ଧମାନଙ୍କ ନିକଟରୁ ଗୃହୀତ ହୋଇଅଛି । ହିନ୍ଦୁମାନେ ଅର୍ଥାତ୍ ସନାତନ-ପନ୍ଥୀ ହିନ୍ଦୁଗଣ ଅବଶ୍ୟ ଏହା ସ୍ୱୀକାର କରିବେ ନାହିଁ । ସେମାନଙ୍କ ନିକଟରେ ବୌଦ୍ଧଗଣ ବିରୁଦ୍ଧବାଦୀ ପାଷଣ୍ଡ । କିନ୍ତୁ ବିରୁଦ୍ଧବାଦୀ ବୌଦ୍ଧଗଣଙ୍କୁ ମଧ୍ୟ ଅନ୍ତର୍ଭୁକ୍ତ କରିବା ପାଇଁ ସମଗ୍ର ମତବାଦଟିକୁ ପ୍ରସାରିତ କରିବାର ଗୋଟିଏ ସଚେତନ ପ୍ରୟାସ ରହିଛି ।

ବୌଦ୍ଧଧର୍ମ ସହିତ ବେଦାନ୍ତର କୌଣସି ବିବାଦ ନାହିଁ । ବେଦାନ୍ତର ଉଦ୍ଦେଶ୍ୟ ସକଳ ମତର ସମନ୍ୱୟ କରିବା । ମହାଯାନୀ ବୌଦ୍ଧମାନଙ୍କ ସହିତ ଆମମାନଙ୍କର କୌଣସି କଳହ ନାହିଁ, କିନ୍ତୁ ବର୍ମୀ, ଶ୍ୟାମଦେଶୀୟ ଓ ସମସ୍ତ ହୀନଯାନୀମାନେ କହନ୍ତି ଯେ, ପରିଦୃଶ୍ୟମାନ ଜଗତ ଗୋଟିଏ ଅଛି ଏବଂ କହନ୍ତି ଏହି ଦୃଶ୍ୟଜଗତର ପଶ୍ଚାତ୍ତରେ ଗୋଟିଏ ଅତୀନ୍ଦ୍ରିୟ ଜଗତ୍ ସୃଷ୍ଟି କରିବାର କି ଅଧିକାର ଆମମାନଙ୍କର ଅଛି ? ବେଦାନ୍ତର ଉତ୍ତର—ଏହି ଉକ୍ତି ମିଥ୍ୟା । ବେଦାନ୍ତ କେବେହେଲେ ସ୍ୱୀକାର କରେ ନାହିଁ ଯେ, ଗୋଟିଏ ଦୃଶ୍ୟ ଜଗତ୍ ଏବଂ ଏତଦ୍ ବ୍ୟତୀତ ଗୋଟିଏ ଅତୀନ୍ଦ୍ରିୟ ଜଗତ ଅଛି; ସେମାନଙ୍କ ମତରେ ଗୋଟିଏ ମାତ୍ର ଜଗତ୍ ଅଛି । ଇନ୍ଦ୍ରିୟ ମାଧ୍ୟମରେ ଦେଖିଲେ, ଏହା ଇନ୍ଦ୍ରିୟଗ୍ରାହ୍ୟ ବୋଲି ମନେହୁଏ; କିନ୍ତୁ ପ୍ରକୃତରେ ଏହା ସବୁ ସମୟରେ ଇନ୍ଦ୍ରିୟାତୀତ । ଯିଏ ରଜ୍ଜୁ ଦେଖେ, ସେ ସର୍ପ ଦେଖେ ନାହିଁ—ତାହା ହୁଏତ ରଜ୍ଜୁ, ନଚେତ୍ ସର୍ପ; ଉଭୟର ଏକତ୍ର ଅବସ୍ଥାନ ଅସମ୍ଭବ । ସୁତରାଂ ବୌଦ୍ଧଗଣ ଯେ କହନ୍ତି, ହିନ୍ଦୁମାନେ ଦୁଇଟି ଜଗତର ଅସ୍ତିତ୍ୱରେ ବିଶ୍ୱାସ କରନ୍ତି, ତାହା ସମ୍ପୂର୍ଣ୍ଣଭାବେ ଭୁଲ । ଇଚ୍ଛା କଲେ ଜଗତକୁ ଇନ୍ଦ୍ରିୟଗ୍ରାହ୍ୟ କହିବାର ଅଧିକାର ସେମାନଙ୍କର ଅଛି, କିନ୍ତୁ ଏହାକୁ ଇନ୍ଦ୍ରିୟା-ତୀତ କହିବାର କୌଣସି ଅଧିକାର ଅନ୍ୟର ନାହିଁ—ଏକଥା କହି ବିବାଦ କରିବାର କୌଣସି ଅଧିକାର ସେମାନଙ୍କର ନାହିଁ ।

ବୌଦ୍ଧଧର୍ମ ଦୃଶ୍ୟ ଜଗତ୍ ବ୍ୟତୀତ ଅନ୍ୟ କିଛି ସ୍ୱୀକାର କରିବାକୁ ଚାହେଁ ନାହିଁ । ଏକମାତ୍ର ଦୃଶ୍ୟ ଜଗତରେ ହିଁ ତୃଷ୍ଣା ଅଛି । ତୃଷ୍ଣା ହିଁ ଏହିସବୁ କିଛି ସୃଷ୍ଟି କରୁଅଛି । ଆଧୁନିକ ବୈଦାନ୍ତିକଗଣ କିନ୍ତୁ ଏହି ମତ ଆଦୌ ଗ୍ରହଣ କରନ୍ତି ନାହିଁ । ଆମେମାନେ କହୁ, ଗୋଟାଏ କିଛି ଅଛି, ଯାହା ଇଚ୍ଛାରେ ପରିଣତ ହୋଇଅଛି । ଇଚ୍ଛା ଗୋଟିଏ ଉତ୍ପନ୍ନ ବସ୍ତୁ—ଯୌଗିକ ପଦାର୍ଥ, ମୌଳିକ ନୁହେଁ । ଗୋଟିଏ ବାହ୍ୟବସ୍ତୁ ନ ଥିଲେ କୌଣସି ଇଚ୍ଛା ହୋଇ ନ ପାରେ । ଇଚ୍ଛାରୁ ହିଁ ଜଗତର ସୃଷ୍ଟି—ଏହି ସିଦ୍ଧାନ୍ତର ଅସମ୍ଭବତା ଆମେ ସହଜରେ ଦେଖିପାରୁ । ଏହା କିପରି ହୋଇପାରେ । ବାହାରର

ପ୍ରେରଣା ଛଡ଼ା ଇଚ୍ଛାର ଉତ୍ପତ୍ତି ହେବାର କେବେ କଅଣ କେହି ଦେଖିଛ କି ? ଉତ୍ତେଜନା ବ୍ୟତୀତ, ଅଥବା ଆଧୁନିକ ଦର୍ଶନର ପରିଭାଷାରେ ସ୍ନାୟବିକ ଉତ୍ତେଜନା ବ୍ୟତୀତ ବାସନା ଜାଗ୍ରତ ହୋଇ ନ ପାରେ । ଇଚ୍ଛା ମସ୍ତିଷ୍କର ଏକ ପ୍ରକାର ପ୍ରତିକ୍ରିୟା ବିଶେଷ । ସାଂଖ୍ୟବାଦୀମାନେ ଏହାକୁ କହନ୍ତି 'ବୁଦ୍ଧି' । ଏହି ପ୍ରତିକ୍ରିୟା ପୂର୍ବରୁ କ୍ରିୟା ନିଶ୍ଚୟ ଥିବ ଏବଂ କ୍ରିୟା ଥିଲେ ହିଁ ଗୋଟିଏ ବାହ୍ୟ ଜଗତର ଅସ୍ତିତ୍ୱ ସ୍ୱୀକାର କରିବାକୁ ପଡ଼ିବ । ଯେତେବେଳେ ସ୍ଥୂଳଜଗତ ନ ଥାଏ, ସେତେବେଳେ ସ୍ୱଭାବତଃ ଇଚ୍ଛା ମଧ୍ୟ ରହିବ ନାହିଁ; କିନ୍ତୁ ତୁମମାନଙ୍କ ମତରେ ଇଚ୍ଛା ହିଁ ଜଗତ୍ ସୃଷ୍ଟି କରିଅଛି । ଇଚ୍ଛା ସୃଷ୍ଟି କରେ କିଏ ? ଇଚ୍ଛା ଜଗତ୍ ସହିତ ସହାବସ୍ଥିତ । ଯେଉଁ ଉତ୍ତେଜନା ଜଗତକୁ ସୃଷ୍ଟି କରିଅଛି, ତାହା ହିଁ ଇଚ୍ଛା ନାମକ ପଦାର୍ଥ ମଧ୍ୟ ସୃଷ୍ଟି କରିଅଛି । କିନ୍ତୁ ଦର୍ଶନ ନିଶ୍ଚୟ ଏଠାରେ ସ୍ଥିର ରହିବ ନାହିଁ । ଇଚ୍ଛା ସମ୍ପୂର୍ଣ୍ଣ ବ୍ୟକ୍ତିଗତ । ସୁତରାଂ ଜର୍ମାନ ଦାର୍ଶନିକ ଶୋପେନ୍‌ହାଓଆରଙ୍କ ସହିତ ଆମେ ସମ୍ପୂର୍ଣ୍ଣ ଏକମତ ହୋଇ ନ ପାରୁ । ଇଚ୍ଛା ଗୋଟିଏ ଯୌଗିକ-ପଦାର୍ଥ—ବାହାର ଓ ଭିତରର ମିଶ୍ରଣ । ମନେକର ଗୋଟିଏ ମନୁଷ୍ୟ କୌଣସି ଏକ ଇନ୍ଦ୍ରିୟ ବ୍ୟତୀତ ଜନ୍ମଗ୍ରହଣ କରିଅଛି, ସେ ଲୋକଟିର ଆଦୌ ଇଚ୍ଛା ରହିବ ନାହିଁ । ଇଚ୍ଛା ପାଇଁ ପ୍ରୟୋଜନ—କୌଣସି ଏକ ବାହ୍ୟ ବିଷୟର ଏବଂ ମସ୍ତିଷ୍କ ଭିତରୁ କିଛି ଶକ୍ତି ଲାଭ କରିବା । କାର୍ଯ୍ୟତଃ କାନ୍ଥ ବା ଅନ୍ୟ ଯେକୌଣସି ବସ୍ତୁ ଯେତେଦୂର ଯୌଗିକ ପଦାର୍ଥ, ଇଚ୍ଛା ମଧ୍ୟ ଠିକ୍ ସେତିକି ଯୌଗିକ ପଦାର୍ଥ । ଜର୍ମାନ୍ ଦାର୍ଶନିକମାନଙ୍କର ଇଚ୍ଛାଶକ୍ତି ବିଷୟକ ମତବାଦ ସହିତ ଆମେ ଆଦୌ ଏକମତ ହୋଇ ନ ପାରୁ । ଇଚ୍ଛା ମଧ୍ୟ ଜ୍ଞେୟ ପଦାର୍ଥ, କାର୍ଯ୍ୟତଃ ତାହା ପରମ ସତ୍ୟ ହୋଇ ନ ପାରେ । ଏହା ବହୁ ଅଭିକ୍ଷେପରୁ ଅନ୍ୟତମ । ଏପରି କିଛି ଅଛି, ଯାହା ଇଚ୍ଛା ନୁହେଁ, କିନ୍ତୁ ଇଚ୍ଛାରୂପେ ପ୍ରକାଶିତ ହେଉଅଛି—ଏକଥା ମୁଁ ବୁଝିପାରେ; କିନ୍ତୁ ଇଚ୍ଛା ସ୍ୱୟଂ ପ୍ରତ୍ୟେକ ବସ୍ତୁରୂପେ ପ୍ରକାଶିତ ହେଉଅଛି—ଏକଥା ବୁଝିପାରେ ନାହିଁ; କାରଣ ଆମେ ଦେଖୁଛୁ ଯେ, ଜଗତ୍‌ଠାରୁ ସ୍ୱତନ୍ତ୍ର ଇଚ୍ଛାର କୌଣସି ଧାରଣା ଆମର ରହିପାରେ ନାହିଁ । ଯେତେବେଳେ ସେହି ମୁକ୍ତସ୍ୱରୂପ ସତ୍ତା ଇଚ୍ଛାରେ ରୂପାନ୍ତରିତ ହୁଏ, ସେତେବେଳେ ଦେଶ, କାଳ ଓ ନିମିତ୍ତଦ୍ୱାରା ସେହି ରୂପାନ୍ତର ଘଟିଥାଏ । କାଣ୍ଟଙ୍କ ବିଶ୍ଳେଷଣ କଥା ଧର । ଇଚ୍ଛା – ଦେଶ, କାଳ ଓ ନିମିତ୍ତ ମଧ୍ୟରେ ଆବଦ୍ଧ । ତା'ହେଲେ ଏହା କିପରି ପରମ ସତ୍ତା ହେବ ? କାଳ ମଧ୍ୟରେ ସୀମିତ ନ ଥିଲେ କେହି ଇଚ୍ଛା କରି ନ ପାରେ ।

ସମସ୍ତ ଚିନ୍ତାକୁ ରୁଦ୍ଧ କରିପାରିଲେ ବୁଝି ହୁଏ ଯେ, ଆମେ ଚିନ୍ତାର ଅତୀତ । ନେତି ନେତି ବିଚାର କରି ଯେତେବେଳେ ସବୁ ଦୃଶ୍ୟ ଜଗତକୁ ଅସ୍ୱୀକାର କରାଯାଏ, ସେତେବେଳେ ଯାହା କିଛି ରହେ, ତାହା ହିଁ ଏହି ପରମ ସତ୍ତା । ଏହାକୁ ପ୍ରକାଶ କରାଯାଇପାରେ ନାହିଁ, ଏହା ଅଭିବ୍ୟକ୍ତ ହୁଏ ନାହିଁ; କାରଣ ଅଭିବ୍ୟକ୍ତ ପୁନରାୟ ଇଚ୍ଛାରେ ପରିଣତ ହେବ ।

# ବେଦାନ୍ତଦର୍ଶନ ଏବଂ ଖ୍ରୀଷ୍ଟଧର୍ମ

[୧୯୦୦ ଖ୍ରୀଷ୍ଟାବ୍ଦ ୨୮ ଫେବୃଆରି କାଲିଫର୍ଣ୍ଣିଆ ଅନ୍ତର୍ଗତ ଓକ୍ ଲ୍ୟାଣ୍ଡର ଇଉନିଟେରିଆନ୍ ଚର୍ଚ୍ଚ ରେ ପ୍ରଦତ୍ତ ବକ୍ତୃତାର ସାରାଂଶ]

ପୃଥିବୀର ମହାନ୍ ଧର୍ମସମୂହ ମଧ୍ୟରେ ଅନେକ ସାଦୃଶ୍ୟ ରହିଅଛି । ଏହି ସାଦୃଶ୍ୟ ଏତେ ଚମକପ୍ରଦ ଯେ, ସମସ୍ତ ସମୟରେ ମନେହୁଏ, ବିଭିନ୍ନ ଧର୍ମ ଅନେକ ନିର୍ଦ୍ଦିଷ୍ଟ ବିଷୟରେ ପରସ୍ପରକୁ ଅନୁସରଣ କରିଅଛନ୍ତି ।

ଅନୁକରଣ କରିବା ବିଭିନ୍ନ ଧର୍ମରେ ବିଦ୍ୟମାନ । କିନ୍ତୁ ଏହି ଦୋଷାରୋପ ଅସ୍ପଷ୍ଟ ଓ ଅବାସ୍ତବ, ଯାହାକି ନିମ୍ନଲିଖିତ ବିଷୟଗୁଡ଼ିକରୁ ପରିଷ୍କୃତ ହେବ ।

ଧର୍ମ ମନୁଷ୍ୟର ଅନ୍ତରର ଅପରିହାର୍ଯ୍ୟ ଅଙ୍ଗ ଏବଂ ଜୀବନ ମାତ୍ରେ ଅନ୍ତର୍ଜୀବନର ବିବର୍ତ୍ତନ । ଧର୍ମ ପ୍ରୟୋଜନବଶତଃ ବିଭିନ୍ନ ବ୍ୟକ୍ତି ଏବଂ ଜାତିକୁ ଅବଲମ୍ବନ କରି ପ୍ରକାଶିତ ହୋଇଥାଏ ।

ଆତ୍ମାର ଭାଷା ଏକ, କିନ୍ତୁ ବିଭିନ୍ନ ଜାତିର ଭାଷା ବିଭିନ୍ନ; ସେମାନଙ୍କର ରୀତିନୀତି ଏବଂ ଜୀବନଯାତ୍ରା ପଦ୍ଧତି ମଧ୍ୟରେ ପ୍ରଭେଦ ଅନେକ । ଧର୍ମ ଅନ୍ତରର ଅଭିବ୍ୟକ୍ତି ଏବଂ ଏହା ବିଭିନ୍ନ ଜାତି, ଭାଷା ଏବଂ ରୀତି-ନୀତିର ଭିତର ଦେଇ ପ୍ରକାଶମାନ । ସୁତରାଂ ଏହା ସ୍ପଷ୍ଟ ଯେ, ଜଗତରେ ବିଭିନ୍ନ ଧର୍ମ ମଧ୍ୟରେ ଯେଉଁ ପ୍ରଭେଦ ତାହା କେବଳ ପ୍ରକାଶଗତ, ଭାବଗତ ନୁହେଁ । ଯେପରି ଆତ୍ମାର ଭାଷା ବ୍ୟକ୍ତିଗତ ଏବଂ ପାରିପାର୍ଶ୍ୱିକ ବିଭେଦ ସତ୍ତ୍ୱେ ଏକ ହୋଇଥାଏ, ସେହିପରି ବିଭିନ୍ନ-ଧର୍ମ ମଧ୍ୟରେ ସାଦୃଶ୍ୟ ଏବଂ ଏକତ୍ୱ ଆତ୍ମାର ହିଁ ଅନ୍ତର୍ଗତ ଏବଂ ସହଜାତ । ବିଭିନ୍ନ ଯନ୍ତ୍ରରେ ଯେପରି ଐକ୍ୟତାନ ଅଛି, ସେହିପରି ଧର୍ମଗୁଡ଼ିକ ମଧ୍ୟରେ ସେହି ମିଳନର ସ୍ୱର ଧ୍ୱନିତ ହେଉଅଛି ।

ସବୁ ପ୍ରସିଦ୍ଧ ଧର୍ମ ମଧ୍ୟରେ ପ୍ରଥମ ସାଦୃଶ୍ୟ ହେଉଛି, ପ୍ରତ୍ୟେକ ଧର୍ମର ଅନ୍ତତଃ ଗୋଟିଏ ଲେଖାଏ ପ୍ରମାଣିକ ଶାସ୍ତ୍ରଗ୍ରନ୍ଥ ଅଛି ।

ଯେଉଁସବୁ ଧର୍ମର ଏପରି କୌଣସି ଗ୍ରନ୍ଥ ନାହିଁ, ସେଗୁଡ଼ିକ କାଳକ୍ରମେ ଲୋପ ପାଆନ୍ତି । ମିଶର ଦେଶୀୟ ଧର୍ମମତର ପରିଣାମ ଏହିପରି ହୋଇଥିଲା । ପ୍ରତ୍ୟେକ ବୃହତ୍ ଧର୍ମମତର ପ୍ରାମାଣିକ ଶାସ୍ତ୍ରଗ୍ରନ୍ଥ ଯେପରି କି ତାହାର ଭିତ୍ତିପ୍ରସ୍ତର, ଯାହାକୁ କେନ୍ଦ୍ର କରି ସେହି ମତାବଲମ୍ବୀମାନେ ସମବେତ ହୁଅନ୍ତି ଏବଂ ଯେଉଁଥିରୁ ଏହି ଧର୍ମର ଶକ୍ତି ଏବଂ ଜୀବନ ବିକୀର୍ଣ୍ଣ ହୁଏ ।

ପୁଣି ପ୍ରତ୍ୟେକ ଧର୍ମ ଦାବି କରେ ଯେ, ଏହାର ନିଜସ୍ୱ ଶାସ୍ତ୍ରଗ୍ରନ୍ଥ ହିଁ ଭଗବାନଙ୍କର ଏକମାତ୍ର ବାଣୀ ଏବଂ ଅନ୍ୟାନ୍ୟ ଶାସ୍ତ୍ର ମିଥ୍ୟା ଓ ମନୁଷ୍ୟର ସହଜ ବିଶ୍ୱାସ-ପ୍ରବଣତା ଉପରେ ପ୍ରଭାବ ପକାଇବା ଏବଂ ଅନ୍ୟ ଧର୍ମକୁ ଅନୁସରଣ କରିବା ମୂର୍ଖତା ଓ ଧର୍ମାନ୍ଧତା ।

ସକଳ ଧର୍ମର ରକ୍ଷଣଶୀଳ ଅଂଶର ବୈଶିଷ୍ଟ୍ୟ ଏହି ମତାନ୍ଧତା । ଉଦାହରଣସ୍ୱରୂପ, ବେଦର ଯେଉଁମାନେ ଅନ୍ଧ ସମର୍ଥକ, ସେମାନେ ଦାବି କରନ୍ତି ଯେ, ପୃଥିବୀରେ ବେଦ ହିଁ ଏକମାତ୍ର ପ୍ରାମାଣ୍ୟ ଦୈବବାଣୀ ଏବଂ ଈଶ୍ୱର ବେଦ ମାଧ୍ୟମରେ ଜଗତରେ ତାଙ୍କର ବାଣୀ ବ୍ୟକ୍ତ କରିଛନ୍ତି; କେବଳ ସେତିକି ନୁହେଁ, ବେଦ ହିଁ ଏହି ଜଗତର ଅସ୍ତିତ୍ୱ । ଜଗତ ସୃଷ୍ଟି ହେବାର ପୂର୍ବରୁ ବେଦ ଥିଲା, ଜଗତର ସବୁ କିଛିର ଅସ୍ତିତ୍ୱ ବେଦରେ ଉଲ୍ଲିଖିତ ହୋଇଅଛି । ବେଦରେ ଗୋରୁର ନାମ ଉଲ୍ଲିଖିତ ହୋଇଅଛି ବୋଲି ଗୋରୁର ଅସ୍ତିତ୍ୱ ସମ୍ଭବ ହୋଇଅଛି, ଅର୍ଥାତ୍ ଯେଉଁ ଜନ୍ତୁକୁ ଆମେ ଗୋରୁ ବୋଲି ଜାଣୁ ତାହା ବେଦରେ ଉଲ୍ଲିଖିତ ହୋଇଅଛି । ବେଦର ଭାଷା ହିଁ ଈଶ୍ୱରଙ୍କର ଆଦି ଭାଷା, ଅନ୍ୟାନ୍ୟ ସବୁ ଭାଷା ଆଞ୍ଚଳିକ କଥା ମାତ୍ର, ତାହା ଈଶ୍ୱରଙ୍କର ନୁହେଁ । ବେଦର ପ୍ରତ୍ୟେକ ଶବ୍ଦ ଓ ବାକ୍ୟାଂଶକୁ ଶୁଦ୍ଧ ଭାବେ ଉଚ୍ଚାରଣ କରିବାକୁ ହେବ । ପ୍ରତି ଉଚ୍ଚାରଣଧ୍ୱନି ଯଥାଯଥ ସ୍ପନ୍ଦିତ ହେବ ଏବଂ ଏହି କଠୋର ଯାଥାର୍ଥ୍ୟରୁ ସାମାନ୍ୟ ମାତ୍ର ବ୍ୟତିକ୍ରମ ମଧ୍ୟ ଘୋରତର ପାପ ଓ କ୍ଷମାର ଅଯୋଗ୍ୟ ।

ଠିକ୍ ଏହିପ୍ରକାର ମତାନ୍ଧତା ସବୁ ଧର୍ମର ରକ୍ଷଣଶୀଳ ଅଂଶରେ ହିଁ ବିଦ୍ୟମାନ । କିନ୍ତୁ ଆକ୍ଷରିକ ଅର୍ଥ ନେଇ ଏପରି ବିବାଦକୁ ଯେଉଁମାନେ ପ୍ରଶ୍ରୟ ଦିଅନ୍ତି, ସେମାନେ ମୂର୍ଖ ଏବଂ ଧର୍ମାନ୍ଧ । ଯେଉଁମାନେ ଯଥାର୍ଥ ଧର୍ମଭାବ ଲାଭ କରିଛନ୍ତି, ସେମାନେ ବିଭିନ୍ନ ଧର୍ମର ବହିଃପ୍ରକାଶକୁ ନେଇ କେବେହେଲେ ବିବାଦ କରନ୍ତି ନାହିଁ । ସେମାନେ ଜାଣନ୍ତି ସବୁ ଧର୍ମର ତାତ୍ପର୍ଯ୍ୟ ଏକ, ସୁତରାଂ ସମସ୍ତେ ଏକ ଭାଷାରେ କଥା ନ କହିଲେ ମଧ୍ୟ ସେମାନେ ପରସ୍ପର ବିବାଦ କରନ୍ତି ନାହିଁ ।

ବେଦ ବସ୍ତୁତଃ ପୃଥିବୀର ସର୍ବାପେକ୍ଷା ପୁରାତନ ପବିତ୍ର ଧର୍ମଗ୍ରନ୍ଥ । କେହି ଜାଣନ୍ତି ନାହିଁ, କେଉଁ କାଳରେ କାହାଦ୍ୱାରା ତାହା ଲିଖିତ ହୋଇଅଛି । ବେଦସମୂହ ବିଭିନ୍ନ ଖଣ୍ଡରେ ସଂରକ୍ଷିତ ଏବଂ ମୋର ସନ୍ଦେହ ହୁଏ, କେହି କେବେ ଏଗୁଡ଼ିକୁ ସମ୍ପୂର୍ଣ୍ଣରୂପେ ପାଠ କରିଛନ୍ତି କି ନାହିଁ ।

ବେଦର ଧର୍ମ ହିଁ ହିନ୍ଦୁମାନଙ୍କର ଧର୍ମ ଏବଂ ସବୁ ପ୍ରାଚ୍ୟଦେଶୀୟ ଧର୍ମର ଭିତ୍ତିଭୂମି । ଅର୍ଥାତ୍ ଅନ୍ୟାନ୍ୟ ପ୍ରାଚ୍ୟଧର୍ମଗୁଡ଼ିକ ବେଦର ହିଁ ଶାଖା-ପ୍ରଶାଖା । ପ୍ରାଚ୍ୟଦେଶର ସବୁ ଧର୍ମମତ ବେଦକୁ ପ୍ରାମାଣ୍ୟ ବୋଲି ଗ୍ରହଣ କରନ୍ତି ।

ଯୀଶୁଖ୍ରୀଷ୍ଟଙ୍କ ବାଣୀରେ ବିଶ୍ୱାସ ସ୍ଥାପନ କରିବା ଏବଂ ତାହା ସଙ୍ଗେ ସଙ୍ଗେ ତାଙ୍କର ଅଧିକାଂଶ ବାଣୀଗୁଡ଼ିକର କୌଣସି ପ୍ରୟୋଗ ବର୍ତ୍ତମାନ କାଳରେ ନାହିଁ—ଏପରି ମତ ପୋଷଣ କରିବା ଅଯୌକ୍ତିକ । ଖ୍ରୀଷ୍ଟ କହିଥିଲେ, ବିଶ୍ୱାସୀମାନଙ୍କର ଶକ୍ତିଲାଭ ହେବ । ତେବେ ଖ୍ରୀଷ୍ଟଙ୍କ ବାଣୀରେ ଯେଉଁମାନେ ବିଶ୍ୱାସବାନ୍, ସେମାନଙ୍କର କାହିଁକି ଶକ୍ତିଲାଭ ହୁଏ ନାହିଁ ? ତା'ର କାରଣ ବିଶ୍ୱାସ ଏବଂ ପବିତ୍ରତା ଯଥେଷ୍ଟ ପରିମାଣରେ ନାହିଁ । କିନ୍ତୁ ବର୍ତ୍ତମାନ ଯୁଗରେ ଏଗୁଡ଼ିକର କୌଣସି ପ୍ରୟୋଗ ନାହିଁ—ଏପରି କହିବା ହାସ୍ୟୋଦ୍ଦୀପକ ।

ମୁଁ କେବେ ଏପରି କୌଣସି ବ୍ୟକ୍ତିଙ୍କୁ ଦେଖି ନାହିଁ, ଯେ ମୋର ସମାନ ନୁହନ୍ତି । ମୁଁ ସମଗ୍ର ଜଗତ୍ ପରିଭ୍ରମଣ କରିଅଛି, ନିକୃଷ୍ଟ ଲୋକ—ନରମାଂସଭୋଜୀମାନଙ୍କ ସହିତ ମଧ୍ୟ ମିଶିଅଛି ଏବଂ ମୁଁ କେବେହେଲେ ଏପରି କାହାକୁ ଦେଖି ନାହିଁ ଯେ ମୋର ସମାନ ନୁହେଁ । ସେମାନେ ଯାହା କରନ୍ତି, ମୁଁ ଯେତେବେଳେ ନିର୍ବୋଧ ଥିଲି, ମୁଁ ମଧ୍ୟ ତାହା କରିଅଛି, ସେତେବେଳେ ମୁଁ ଏମାନଙ୍କଠାରୁ ଉନ୍ନତତର କିଛି ଜାଣି ନ ଥିଲି । ବର୍ତ୍ତମାନ ସେମାନେ ଏହା ଅପେକ୍ଷା ଉତ୍କୃଷ୍ଟ କିଛି ଜାଣନ୍ତି ନାହିଁ, କିନ୍ତୁ କାଳକ୍ରମେ ସେମାନେ ତାହା ଜାଣିପାରିବେ । ସମସ୍ତେ ନିଜ ପ୍ରକୃତି ଅନୁଯାୟୀ କାର୍ଯ୍ୟ କରନ୍ତି, ଆମେ ସମସ୍ତେ ଉନ୍ନତି-ପଥରେ ଗତି କରୁଛୁ । ଏହି ଦୃଷ୍ଟିଭଙ୍ଗୀର ପରିପ୍ରେକ୍ଷୀରେ ବିଚାର କଲେ ଦେଖାଯିବ, ଜଣେ ଅନ୍ୟ ବ୍ୟକ୍ତି ଅପେକ୍ଷା ଉନ୍ନତତର ନୁହେଁ ।

# ବେଦାନ୍ତ କଅଣ ଭବିଷ୍ୟତର ଧର୍ମ ?

[୧୯୦୦, ଏପ୍ରିଲ ୮ ତାରିଖ ସାନ୍‌ଫ୍ରାନ୍‌ସିସ୍‌କୋ ସହରରେ ପ୍ରଦତ୍ତ]

ଆପଣମାନଙ୍କ ମଧ୍ୟରୁ ଯେଉଁମାନେ ମାସେକାଳ ଧରି ମୋର ବକ୍ତୃତାବଳୀ ଶୁଣିଅଛନ୍ତି, ସେମାନେ ଅବଶ୍ୟ ବେଦାନ୍ତ-ଦର୍ଶନର ଭାବଗୁଡ଼ିକ ସହିତ ପରିଚିତ ହୋଇଅଛନ୍ତି ।

ବେଦାନ୍ତ ଭାରତର ପ୍ରାଚୀନତମ ଧର୍ମ, ତେବେ ଏହା କେବେହେଲେ ଲୋକପ୍ରିୟ ହୋଇଛି—ଏପରି କଥା କୁହାଯାଏ ନାହିଁ । ଅତଏବ ବେଦାନ୍ତ କଅଣ ଭବିଷ୍ୟତର ଧର୍ମ ହେବ ?—ଏ ପ୍ରଶ୍ନର ଉତ୍ତର ଦେବା କଠିନ ।

ପ୍ରାରମ୍ଭରେ ମୁଁ କହିବାକୁ ଚାହେଁ ଯେ, ବେଦାନ୍ତ ଅଧିକାଂଶଙ୍କର ଧର୍ମ ହେବ କି ନାହିଁ, ତାହା ମୁଁ କହିପାରିବି ନାହିଁ । ଆମେରିକା ଯୁକ୍ତରାଷ୍ଟ୍ରବାସୀମାନଙ୍କ ଭଳି ଗୋଟିଏ ଜାତିର ସମସ୍ତେ କଅଣ ଏହି ଧର୍ମକୁ ନିଜ ଆୟତ୍ତକୁ ଆଣିବା ପାଇଁ କେବେ ସକ୍ଷମ ହେବେ ? ସମ୍ଭବତଃ ଏହା ହୋଇପାରେ । ଯାହା ହେଉ, ଆଜି ଅପରାହ୍ଣରେ ଆମେ ଏହି ପ୍ରଶ୍ନ ନେଇ ଆଲୋଚନା କରିବାକୁ ଚାହୁଁ ।

ପ୍ରଥମେ କହିବି, ବେଦାନ୍ତ କ'ଣ ନୁହେଁ, ପରେ କହିବି ବେଦାନ୍ତ କ'ଣ । ନୈର୍ବ୍ୟକ୍ତିକ ଭାବ ଉପରେ ଜୋର୍ ଦେଲେ ମଧ୍ୟ ବେଦାନ୍ତ କୌଣସି ଭାବର ବିରୋଧୀ ନୁହେଁ—ଯଦିଓ ବେଦାନ୍ତ କାହାରି ସହିତ ଆପୋଷ ସନ୍ଧି କରେ ନାହିଁ ବା ତା'ର ନିଜସ୍ୱ ମୌଳିକ ସତ୍ୟ ତ୍ୟାଗ କରେ ନାହିଁ ।

ପ୍ରତ୍ୟେକ ଧର୍ମରେ କେତେଗୁଡ଼ିଏ ଉପାଦାନ ଏକାନ୍ତ ପ୍ରୟୋଜନୀୟ । ପ୍ରଥମେ ଖଣ୍ଡିଏ ଗ୍ରନ୍ଥ । ଅଦ୍ଭୁତ ତାହାର ଶକ୍ତି । ଗ୍ରନ୍ଥ ଖଣ୍ଡିକ ଯାହା ହେଉ ନା କାହିଁକି, ତାହାକୁ କେନ୍ଦ୍ର କରି ମନୁଷ୍ୟର ସହତି । ଗ୍ରନ୍ଥ ନାହିଁ—ଏପରି କୌଣସି ଧର୍ମ ତିଷ୍ଠିପାରି ନାହିଁ । ଯୁକ୍ତିବାଦର ବଡ଼ ବଡ଼ କଥା ସତ୍ତ୍ୱେ ମନୁଷ୍ୟ ଗ୍ରନ୍ଥକୁ ଆଶ୍ରୟ କରି ରହିଅଛି ।

ଆପଣମାନଙ୍କ ଦେଶରେ ଗ୍ରନ୍ଥବିହୀନ ଧର୍ମସଂସ୍ଥାପନର ପ୍ରତ୍ୟେକ ଚେଷ୍ଟା ଅକୃତକାର୍ଯ୍ୟ ହୋଇଅଛି । ଭାରତବର୍ଷରେ ସମ୍ପ୍ରଦାୟସକଳ ବହୁଳ ସାଫଲ୍ୟ ସହିତ ଗଢି ଉଠେ—କିନ୍ତୁ କେତେ ବର୍ଷ ମଧ୍ୟରେ ସେଗୁଡ଼ିକ ଲୋପ ପାଇଯାଏ; କାରଣ ସେମାନଙ୍କର କୌଣସି ଗ୍ରନ୍ଥ ନ ଥାଏ । ଅନ୍ୟାନ୍ୟ ଦେଶରେ ମଧ୍ୟ ତାହା ସତ୍ୟ ।

ଇଉନିଟାରିଆନ୍ ଧର୍ମାନ୍ଦୋଳନର ଉତ୍‌ଥାନ ଓ ପତନ ଆଲୋଚନା କରନ୍ତୁ । ଏହି ଧର୍ମ ଆପଣମାନଙ୍କ ଜାତିର ଶ୍ରେଷ୍ଠ ଚିନ୍ତାଗୁଡ଼ିକୁ ଉପସ୍ଥାପିତ କରିଅଛି । ମେଥଡ଼ିଷ୍ଟ, ବ୍ୟାପଟିଷ୍ଟ ଏବଂ ଅନ୍ୟାନ୍ୟ ଖ୍ରୀଷ୍ଟୀୟ ଧର୍ମସମ୍ପ୍ରଦାୟ ଭଳି ଏହି ସମ୍ପ୍ରଦାୟ କାହିଁକି ଏତେ ପ୍ରସ୍ତରିତ ହୋଇ ନାହିଁ ? କାରଣ ଏହାର କୌଣସି ଗ୍ରନ୍ଥ ନାହିଁ । ଅନ୍ୟ ପକ୍ଷରେ ଇହୁଦି-

ମାନଙ୍କ କଥା ଭାବନ୍ତୁ; ମୁଷ୍ଟିମେୟ ଲୋକସଂଖ୍ୟା—ଏକ ଦେଶରୁ ଅନ୍ୟ ଦେଶକୁ ବିତାଡ଼ିତ ହୋଇଛନ୍ତି—ତଥାପି ନିଜକୁ ସଂହତ କରି ରଖିଛନ୍ତି । କାରଣ ସେମାନଙ୍କର ଗ୍ରନ୍ଥ ଅଛି । ପାର୍ଶୀମାନଙ୍କ କଥା ଭାବନ୍ତୁ—ପୃଥିବୀରେ ସଂଖ୍ୟାରେ ସେମାନେ ମାତ୍ର ଏକଲକ୍ଷ । ଭାରତରେ ଜୈନମାନଙ୍କ ଭିତରୁ ଦଶ ଲକ୍ଷ ଅବଶିଷ୍ଟ ଅଛନ୍ତି । ଆପଣମାନେ ଜାଣନ୍ତି, ମୁଷ୍ଟିମେୟ ପାର୍ଶୀ ଓ ଜୈନଗଣ ବର୍ତ୍ତମାନ ମଧ୍ୟ ତିଷ୍ଠି ରହିଛନ୍ତି—କେବଳ ସେମାନଙ୍କ ଗ୍ରନ୍ଥର ପ୍ରଭାବରେ । ପ୍ରତ୍ୟେକ ପ୍ରଭାବଶାଳୀ ଧର୍ମର ଗ୍ରନ୍ଥ ଅଛି ।

ଧର୍ମର ଦ୍ୱିତୀୟ ପ୍ରୟୋଜନ—ଗୋଟିଏ ବ୍ୟକ୍ତି ପ୍ରତି ଗଭୀର ଶ୍ରଦ୍ଧା । ସେହି ବ୍ୟକ୍ତି ହିଁ ଏତ ଈଶ୍ୱରରୂପେ ବା ମହାନ୍ ଆଚାର୍ଯ୍ୟରୂପେ ଉପାସିତ ହୋଇଥାଆନ୍ତି । ମନୁଷ୍ୟ ଜଣେ ମନୁଷ୍ୟକୁ ପୂଜା କରିବ ହିଁ କରିବ । ତା'ର ପ୍ରୟୋଜନ—ଜଣେ ଅବତାର, ପ୍ରେରିତ ପୁରୁଷ ବା ମହାନ୍ ନେତା । ସକଳ ଧର୍ମରେ ଏହା ଲକ୍ଷଣୀୟ ।

ହିନ୍ଦୁ ଓ ଖ୍ରୀଷ୍ଟିଆନମାନଙ୍କର ଅବତାର ଅଛନ୍ତି । ବୌଦ୍ଧ, ମୁସଲମାନ ଓ ଇହୁଦୀ-ମାନଙ୍କର ପ୍ରେରିତ ପୁରୁଷ ଅଛନ୍ତି । କିନ୍ତୁ ସବୁ ଧର୍ମରେ ସେହି କଥା—ସେମାନଙ୍କର ଶ୍ରଦ୍ଧା ବ୍ୟକ୍ତି ବା ବ୍ୟକ୍ତିବର୍ଗଙ୍କୁ କେନ୍ଦ୍ର କରି ନିବଦ୍ଧ ।

ଧର୍ମର ତୃତୀୟ ପ୍ରୟୋଜନ—ନିଜକୁ ଦୃଢ଼ ଓ ନିରାପଦ କରିବା ପାଇଁ ଏପରି ଏକ ବିଶ୍ୱାସର ପ୍ରୟୋଜନ ଯେ, ସେହି ଧର୍ମ ହିଁ ଏକମାତ୍ର ସତ୍ୟ, ଯାହା ବ୍ୟତୀତ ଏହା ଜନ-ସମାଜରେ ପ୍ରଭାବ ବିସ୍ତାର କରିପାରିବ ନାହିଁ ।

ଉଦାରତା ଶୁଷ୍କ ବୋଲି ମନେହୁଏ; ଏହା ମନୁଷ୍ୟ ମନରେ ଧର୍ମୋନ୍ମତ୍ତତା ଜାଗ୍ରତ କରିପାରେ ନାହିଁ—ଅନ୍ୟ ପ୍ରତି ବିଦ୍ୱେଷ ସୃଷ୍ଟି କରିପାରେ ନାହିଁ । ସେଥିପାଇଁ ଉଦାର ଧର୍ମର ବାରମ୍ବାର ପତନ ଘଟିଅଛି; ମାତ୍ର ଅଳ୍ପ କେତେକଙ୍କ ଉପରେ ହିଁ ଏହାର ପ୍ରଭାବ । କାରଣ ନିର୍ଣ୍ଣୟ କରିବା ଖୁବ୍ କଠିନ ନୁହେଁ । ଉଦାରତା ମାନବକୁ ନିଃସ୍ୱାର୍ଥ ହେବାକୁ ଶିକ୍ଷା ଦିଏ । ଆମେ ସେଥିପାଇଁ ଉଦାରତା ଗ୍ରହଣ ନାହିଁ—କାରଣ ସେଥିରେ ପ୍ରତ୍ୟକ୍ଷଭାବରେ କୌଣସି ଲାଭ ନାହିଁ; ସ୍ୱାର୍ଥଦ୍ୱାରା ହିଁ ଆମର ବେଶୀ ଲାଭ ହୋଇଥାଏ । ଯେପର୍ଯ୍ୟନ୍ତ ଆମର କିଛି ନାହିଁ, ଆମେ ନିଃସ୍ୱ, ସେପର୍ଯ୍ୟନ୍ତ ଆମେ ଉଦାର । ଅର୍ଥ ଓ ଶକ୍ତି ସଞ୍ଚିତ ହେବାମାତ୍ରେ ଆମେ ରକ୍ଷଣଶୀଳ । ଦରିଦ୍ର ହିଁ ଗଣତାନ୍ତ୍ରିକ, ସେ ପୁଣି ଧନୀ ହେଲେ ତା'ର ଆଭିଜାତ୍ୟ ଆସେ । ଧର୍ମ-ଜଗତରେ ମଧ୍ୟ ମନୁଷ୍ୟ-ସ୍ୱଭାବ ସେହି ଭାବରେ କାର୍ଯ୍ୟ କରିଥାଏ ।

ନବୀ (ଈଶ୍ୱରଦୂତ) ଆସିଲେ—ଯେଉଁମାନେ ତାହାଙ୍କୁ ଅନୁସରଣ କଲେ, ସେମାନଙ୍କୁ ସେ ଫଳଲାଭର ପ୍ରତିଶ୍ରୁତି ଦେଲେ—ଏବଂ ଯେଉଁମାନେ ଅନୁସରଣ କଲେ ନାହିଁ, ସେମାନଙ୍କ ପାଇଁ ରହିଲା ଅନନ୍ତ ଦୁର୍ଗତି । ଏହିଭାବରେ ସେ ତାଙ୍କର ଭାବ ପ୍ରଚାର କରାଯାଇଛନ୍ତି । ପ୍ରଚାରଶୀଳ ଆଧୁନିକ ଧର୍ମଗୁଡ଼ିକ ଭୟଙ୍କର ଭାବରେ ମତାନ୍ଧ । ଯେଉଁ ସମ୍ପ୍ରଦାୟ ଯେତେ ବେଶୀ ଅନ୍ୟ ସମ୍ପ୍ରଦାୟକୁ ଘୃଣା କରେ, ତାହାର ସେହି ପରିମାଣରେ ସାଫଲ୍ୟ ଏବଂ ସେତେ ଅଧିକସଂଖ୍ୟକ ମନୁଷ୍ୟ ତାହାର ଅନ୍ତର୍ଭୁକ୍ତ ହୁଅନ୍ତି । ପୃଥିବୀର ଅଧିକାଂଶ

ସ୍ଥାନ ପରିଭ୍ରମଣ କରି ବହୁ ଜାତି ସହିତ ବସବାସ କରି ଏବଂ ବର୍ତ୍ତମାନ ପୃଥିବୀର ପରିସ୍ଥିତି ପର୍ଯ୍ୟାଲୋଚନା କରି ମୋର ସିଦ୍ଧାନ୍ତ ହେଲା ବିଶ୍ୱଭ୍ରାତୃତ୍ୱର ବହୁ ବାଗ୍‌ବିସ୍ତାର ସତ୍ତ୍ୱେ ପରିସ୍ଥିତିର କୌଣସି ପରିବର୍ତ୍ତନ ହେବ ନାହିଁ ।

ବେଦାନ୍ତ ଏପରି କୌଣସି ଶିକ୍ଷାରେ ବିଶ୍ୱାସ କରେ ନାହିଁ । ପ୍ରଥମତଃ ଏହା କୌଣସି ପୁସ୍ତକରେ ବିଶ୍ୱାସ କରେ ନାହିଁ । ଜଣେ ପ୍ରବର୍ତ୍ତକ ପକ୍ଷରେ ଏହା ଖୁବ୍ କଠିନ । କୌଣସି ଗ୍ରନ୍ଥ ଉପରେ ଅନ୍ୟ ଏକ ଗ୍ରନ୍ଥର ପ୍ରାମାଣ୍ୟ ବା କର୍ତ୍ତୃତ୍ୱ ବେଦାନ୍ତ ସ୍ୱୀକାର କରେ ନାହିଁ । ଈଶ୍ୱର, ଆତ୍ମା ଓ ଚରମତତ୍ତ୍ୱ ସମ୍ବନ୍ଧରେ ସବୁ ସତ୍ୟ ଗୋଟିଏ ମାତ୍ର ଗ୍ରନ୍ଥରେ ଅବଶ୍ୟ ରହିଥିବ—ବେଦାନ୍ତ ଏକଥା ଦୃଢ଼ କଣ୍ଠରେ ଅସ୍ୱୀକାର କରେ । ଯେଉଁମାନେ ଉପନିଷଦ୍ ପାଠ କରିଛନ୍ତି, ସେମାନେ ଜାଣନ୍ତି ଯେ, ଉପନିଷଦ୍ ବାରମ୍ବାର କହେ, କେବଳ ଅଧ୍ୟୟନ କରି କେହି ଆତ୍ମଜ୍ଞାନ ଲାଭ କରିପାରେ ନାହିଁ । ଦ୍ୱିତୀୟତଃ ଜଣେ ବିଶେଷ ବ୍ୟକ୍ତିଙ୍କୁ ଭକ୍ତି ଶ୍ରଦ୍ଧା ନିବେଦନ କରିବା—ବେଦାନ୍ତ ମତରେ ଆହୁରି କଠିନ । ବେଦାନ୍ତ କହିଲେ ଉପନିଷଦ୍‌କୁ ହିଁ ବୁଝାଏ । ପୃଥିବୀର ସବୁ ଧର୍ମଗ୍ରନ୍ଥ ଭିତରେ ଏକମାତ୍ର ଉପନିଷଦ୍ ହିଁ କୌଣସି ବ୍ୟକ୍ତିବିଶେଷଙ୍କ ଉପରେ ନିର୍ଭର କରେ ନାହିଁ ।

କୌଣସି ପୁରୁଷ ବା ନାରୀ କେବେହେଲେ ବେଦାନ୍ତବାଦୀଙ୍କ ନିକଟରେ ପୂଜାର୍ହ ହୋଇ ନାହାନ୍ତି, ହେବେ ନାହିଁ ମଧ୍ୟ । ଜଣେ ମନୁଷ୍ୟ ଗୋଟିଏ ପକ୍ଷୀ ବା କୀଟ ଅପେକ୍ଷା ଅଧିକ ପୂଜ୍ୟ ନୁହନ୍ତି । ଆମେ ସମସ୍ତେ ଭାଇ, ପାର୍ଥକ୍ୟ କେବଳ ମାତ୍ରାରେ । ମୁଁ ଯାହା, ନିମ୍ନତର କୀଟ ମଧ୍ୟ ତାହା । ବୁଝି ଦେଖନ୍ତୁ, କୌଣସି ମନୁଷ୍ୟ ଆମମାନଙ୍କ ଅପେକ୍ଷା ଅନେକ ଊର୍ଦ୍ଧ୍ୱକୁ ଯିବ, ଆଉ ଆମେ ଯାଇ ତାଙ୍କୁ ପୂଜା କରିବା—ସେ ଆମମାନଙ୍କୁ ଟାଣି ନେବେ ଏବଂ ଆମେମାନେ ତାଙ୍କର କୃପାରେ ଉଦ୍ଧାର ପାଇବା—ଏ ସକଳ ଭାବର ସ୍ଥାନ ବେଦାନ୍ତରେ ନାହିଁ । ବେଦାନ୍ତ କୌଣସି ଗ୍ରନ୍ଥ ବା କୌଣସି ମନୁଷ୍ୟଙ୍କୁ ପୂଜା କରିବାକୁ ଶିକ୍ଷା ଦିଏ ନାହିଁ ।

ଈଶ୍ୱର ବିଷୟକ ସମସ୍ୟାଟି ଆହୁରି ବେଶୀ ଜଟିଳ । ଆପଣମାନେ ଏ ଦେଶରେ ସାଧାରଣତନ୍ତ୍ର ଗୃହୀ ନ୍ତି । ବେଦାନ୍ତ ସାଧାରଣତନ୍ତ୍ରୀ ଈଶ୍ୱରଙ୍କୁ ପ୍ରଚାର କରେ ।

ଆପଣମାନଙ୍କ ଦେଶରେ ସରକାର ଅଛି—ସରକାର ଗୋଟିଏ ନୈର୍ବ୍ୟକ୍ତିକ ସତ୍ତା । ଆପଣମାନଙ୍କ ସରକାର ସ୍ୱେଚ୍ଛାଚାରତନ୍ତ୍ରୀ ନୁହେଁ, ତଥାପି ପୃଥିବୀର ଯେକୌଣସି ରାଜତନ୍ତ୍ର ଅପେକ୍ଷା ଅଧିକ ଶକ୍ତିଶାଳୀ । ମନେହୁଏ, କେହି ଏ କଥାଟି ବୁଝିପାରନ୍ତି ନାହିଁ ଯେ, ପ୍ରକୃତ ଶକ୍ତି, ପ୍ରକୃତ ଜୀବନ, ପ୍ରକୃତ କ୍ଷମତା ଅଦୃଶ୍ୟ, ନିରାକାର ଓ ନୈର୍ବ୍ୟକ୍ତିକ ସତ୍ତାରେ ନିହିତ । ବ୍ୟକ୍ତି ହିସାବରେ—ଅନ୍ୟସବୁ କିଛିରୁ ବିଚ୍ଛିନ୍ନ କରିନେଲେ ମନୁଷ୍ୟ ନଗଣ୍ୟ ମାତ୍ର; କିନ୍ତୁ ଯେଉଁ ଜାତି ନିଜେ ନିଜର ଶାସନ କରିଥାଏ, ତାହାର ଅନ୍ତର୍ଗତ ନୈର୍ବ୍ୟକ୍ତିକ ସତ୍ତା ତଥା ବିଶେଷରୂପେ ଆପଣଙ୍କର ଶକ୍ତି ଅସୀମ । ସରକାରର ଅଙ୍ଗରୂପେ ଆପଣମାନେ ଅଭିନ୍ନ —ଆପଣମାନଙ୍କର ଶକ୍ତି ପ୍ରବଳ, କିନ୍ତୁ ବସ୍ତୁତଃ ସେହି ଶକ୍ତି କେଉଁଠି ନିହିତ ? ପ୍ରତ୍ୟେକ

ମାନବ ହିଁ ସେହି ଶକ୍ତି । ଆମ୍ଭରେ କୌଣସି ରାଜା ନାହାନ୍ତି । ମୁଁ ସବୁ ମନୁଷ୍ୟଙ୍କୁ ସମଭାବରେ ଦେଖେ । ମୋତେ କାହା ସମ୍ମୁଖରେ ଟୋପି ଖୋଲିବା ପାଇଁ ବା ମୁଣ୍ଡ ନୁଆଇବା ପାଇଁ ହେବ ନାହିଁ । ତଥାପି ପ୍ରତ୍ୟେକ ମାନବ ମଧ୍ୟରେ ଏହି ଭୀଷଣ ଶକ୍ତି ରହିଛି; ବେଦାନ୍ତର ଶକ୍ତି ଠିକ୍ ଏହିପରି ।

ବେଦାନ୍ତର ଈଶ୍ୱର ସମ୍ପୂର୍ଣ୍ଣ ପୃଥକ୍, ଅନ୍ୟ ଏକ ଜଗତର ସିଂହାସନରେ ସମାସୀନ ସମ୍ରାଟ ନୁହନ୍ତି । ଅନେକେ ଅଛନ୍ତି, ଯାହାଙ୍କ ପାଇଁ ଏହିପରି ଜଣେ ଈଶ୍ୱର ଦରକାର—ଯାହାଙ୍କୁ ସେମାନେ ଭୟ କରିବେ, ଯାହାଙ୍କୁ ସେମାନେ ସନ୍ତୁଷ୍ଟ କରିବେ । ସେମାନେ ପ୍ରଦୀପ ଜଳାଇବେ ଏବଂ ତାଙ୍କ ସମ୍ମୁଖରେ ଧୂଳିରେ ପଡ଼ିବେ । ସେମାନଙ୍କ ଉପରେ ପ୍ରଭୁତ୍ୱ କରିବା ପାଇଁ ଜଣେ ରାଜା ନହାତ ଦରକାର, ସ୍ୱର୍ଗରେ ମଧ୍ୟ ସେମାନଙ୍କ ଉପରେ ଶାସନ କରିବା ପାଇଁ ରାଜା ଦରକାର । ଯାହାହେଉ ଅନ୍ତତଃପକ୍ଷେ ଏହି ଦେଶରୁ ରାଜା ବିଦାୟ ନେଇଛନ୍ତି । ସ୍ୱର୍ଗସ୍ଥ ରାଜା ଆଜ କେଉଁଠାରେ ? ମର୍ତ୍ତ୍ୟର ରାଜାମାନେ ଯେଉଁଠି ସେହିଠାରେ । ଗଣତାନ୍ତ୍ରିକ ଦେଶରେ ରାଜା ପ୍ରତ୍ୟେକ ପ୍ରଜାଙ୍କ ଅନ୍ତରରେ । ଏ ଦେଶରେ ଆପଣମାନେ ସମସ୍ତେ ରାଜା । ବେଦାନ୍ତ ଧର୍ମରେ ମଧ୍ୟ ସେଥିପାଇଁ ଈଶ୍ୱର ପ୍ରତ୍ୟେକଙ୍କ ଅନ୍ତରରେ । ବେଦାନ୍ତ କହେ, ଜୀବ ହିଁ ବ୍ରହ୍ମ । ଏଥିପାଇଁ ବେଦାନ୍ତ ଖୁବ୍ କଠିନ । ବେଦାନ୍ତ ଈଶ୍ୱରଙ୍କ ସମ୍ବନ୍ଧରେ ପୁରାତନ ଧାରଣା ଆଦୌ ଶିକ୍ଷା ଦିଏ ନାହିଁ । ମେଘ ସେପଟରେ ଅବସ୍ଥିତ ଜଣେ ସ୍ୱେଚ୍ଛାଚାରୀ, ଶୂନ୍ୟରୁ ଇଚ୍ଛା ଅନୁସାରେ ସୃଷ୍ଟିକାରୀ, ମନୁଷ୍ୟଙ୍କୁ ଦୁଃଖଯନ୍ତ୍ରଣା ପ୍ରଦାନକାରୀ ଏକ ଈଶ୍ୱରଙ୍କ ପରିବର୍ତ୍ତେ ବେଦାନ୍ତ ଶିକ୍ଷା ଦିଏ— ଈଶ୍ୱର ପ୍ରତ୍ୟେକଙ୍କ ଅନ୍ତରରେ ଅନ୍ତର୍ଯାମୀ; ଈଶ୍ୱର ସର୍ବରୂପରେ ସର୍ବଭୂତରେ ବିରାଜିତ । ଏହି ଦେଶରୁ ମହିମାନ୍ୱିତ ରାଜା ବିଦାୟ ନେଇଛନ୍ତି, ସ୍ୱର୍ଗସ୍ଥ ରାଜମୁକୁଟ ବେଦାନ୍ତରୁ ଶତ ଶତ ବର୍ଷ ପୂର୍ବେ ଲୋପ ପାଇଛି ।

ଭାରତରେ ଜଣେ ମହିମାନ୍ୱିତ ରାଜାଙ୍କର ପ୍ରୟୋଜନ ଅଛି, ଏହି ଭାବ ତ୍ୟାଗ କରିବା ଭାରତୀୟଙ୍କ ପକ୍ଷରେ ସହଜ ନୁହେଁ । ଏହି କାରଣରୁ ବେଦାନ୍ତ ଭାରତର ଧର୍ମ ହୋଇପାରେ ନାହିଁ । ବେଦାନ୍ତ ଆପଣମାନଙ୍କ ଦେଶର ଧର୍ମ ହୋଇପାରେ—ସେ ସମ୍ଭାବନା ଅଛି, କାରଣ ଏଠାରେ ସାଧାରଣତନ୍ତ୍ର ପ୍ରଚଳିତ । କିନ୍ତୁ ସେକଥା କେବଳ ସେତିକିବେଳେ ସମ୍ଭବ ହେବ, ଯେତେବେଳେ ଆପଣମାନେ ପରିଷ୍କାର ଭାବରେ ବେଦାନ୍ତକୁ ବୁଝିବେ । ଯଦି ଆପଣମାନେ ଯଥାର୍ଥ ନର-ନାରୀ ହୋଇପାରନ୍ତି—ଅର୍ଦ୍ଧଶିକ୍ଷିତ ଭାବଧାରା-ସମ୍ପନ୍ନ ଓ କୁସଂସ୍କାରପୂର୍ଣ୍ଣ ବୁଦ୍ଧିବିଶିଷ୍ଟ ମନୁଷ୍ୟ ନ ହୁଅନ୍ତି, ଯଦି ଆପଣମାନେ ପ୍ରକୃତ ଧାର୍ମିକ ହେବାକୁ ଇଚ୍ଛା କରନ୍ତି, ତେବେ ଏହା ସମ୍ଭବ, କାରଣ ବେଦାନ୍ତ କେବଳ ଆଧ୍ୟାତ୍ମିକ ଭାବ ସହିତ ସଶ୍ଳିଷ୍ଟ ।

ସ୍ୱର୍ଗସ୍ଥ ଈଶ୍ୱରଙ୍କ ଧାରଣା କିପରି ? ତାହା ସମ୍ପୂର୍ଣ୍ଣ ଜଡ଼ବାଦ । ଈଶ୍ୱର ନାମକ ଯେଉଁ ଅନନ୍ତ ତତ୍ତ୍ୱ ଆମ ଭିତରେ ରୂପାୟିତ ହୋଇଅଛନ୍ତି, ସେ ହିଁ ବେଦାନ୍ତର ପ୍ରତିପାଦ୍ୟ । ମେଘ ଉପରେ ଈଶ୍ୱର ବସିଅଛନ୍ତି—ଭାବନ୍ତୁ ଦେଖି, ଏହା କିପରି ଅଧର୍ମର

କଥା । ଏହା ହିଁ ଜଡ଼ବାଦ, ଜଘନ୍ୟ ଜଡ଼ବାଦ ! ଶିଶୁମାନେ ଯଦି ଏହିପରି ଭାବନ୍ତି, ତାହା ଠିକ୍ ହୋଇପାରେ; କିନ୍ତୁ ବୟସ୍କ ବ୍ୟକ୍ତିମାନେ ଯଦି ଏହି ପ୍ରକାର ଶିକ୍ଷା ଦିଅନ୍ତି, ତେବେ ଏହା ଘୃଣିତ ବିରକ୍ତିକର । ଏହି ଧାରଣା—ଜଡ଼ରୁ, ଦେହଭାବରୁ, ଇନ୍ଦ୍ରିୟଭାବରୁ ଉଦ୍‌ଭୂତ । ଏହା କଅଣ ଧର୍ମ ? ଏହା ଆଫ୍ରିକାର 'ମାମ୍ବୋ ଜାମ୍ବୋ' ଧର୍ମ ଅପେକ୍ଷା କୌଣସି ଅଂଶରେ ଉନ୍ନତ ନୁହେଁ । ଈଶ୍ୱର ଆତ୍ମା; ସେ ସତ୍ୟସ୍ୱରୂପରେ ଉପାସ୍ୟ । ଆତ୍ମା କ'ଣ କେବଳ ସ୍ୱର୍ଗରେ ଥାଏ ? ଆତ୍ମା କ'ଣ ? ଆମେମାନେ ହିଁ ଆତ୍ମା । ଆମେ ସେକଥା ଅନୁଭବ କରୁ ନାହୁଁ କାହିଁକି ? କିପରି ତୁମେ ଆତ୍ମାରୁ ଭିନ୍ନ ହେଲ ? ଦେହ ବ୍ୟତୀତ ଅନ୍ୟ କିଛି ଏହାର କାରଣ ନୁହେଁ । ଦେହ ଭାବ ଭୁଲିଗଲେ ଆତ୍ମଭାବ ସହଜ ଅନୁଭୂତ ହୁଏ ।

ବେଦାନ୍ତ ଏସବୁ ମତବାଦ ପ୍ରଶ୍ରୟ କରି ନାହିଁ, କୌଣସି ପୁସ୍ତକ ମଧ୍ୟ ନୁହେଁ, ବେଦାନ୍ତ ମନୁଷ୍ୟ ସମାଜ ଭିତରୁ କୌଣସି ବ୍ୟକ୍ତିବିଶେଷଙ୍କୁ ବିଶେଷ ଭାବରେ ବାଛି ନେବାକୁ ଶିକ୍ଷା ଦେଇ ନାହିଁ । ତୁମେମାନେ କୀଟ, ଆଉ ଆମେ ଈଶ୍ୱର, ପ୍ରଭୁ !—ନା, ଏପରି କିଛି ଏଥିରେ ନାହିଁ । ଯଦି ତୁମେ ଈଶ୍ୱର, ତେବେ ମୁଁ ମଧ୍ୟ ଈଶ୍ୱର । ସୁତରାଂ ବେଦାନ୍ତ ପାପ ସ୍ୱୀକାର କରେ ନାହିଁ । ଭ୍ରମ ଅଛି—ପାପ ନାହିଁ; କାଳକ୍ରମେ ସମସ୍ତେ ସତ୍ୟରେ ଉପନୀତ ହେବେ । କୌଣସି ସଇତାନ ନାହିଁ । ସେହିସବୁ କପୋଳକଳ୍ପିତ ଗଳ୍ପଗୁଡ଼ିକରୁ କୌଣସିଟିର ଅସ୍ତିତ୍ୱ ନାହିଁ । ବେଦାନ୍ତ କେବଳ ଗୋଟିଏ ପାପକୁ— ଜଗତ ମଧ୍ୟରେ କେବଳ ଗୋଟିଏକୁ ସ୍ୱୀକାର କରେ, ତାହା ଏହି : 'ଅନ୍ୟକୁ ବା ନିଜକୁ ପାପୀ ଭାବିବା ହିଁ ପାପ ।' ଏହି ଧାରଣାରୁ ଅନ୍ୟାନ୍ୟ ଭ୍ରମ-ପ୍ରମାଦ, ଯାହାକୁ ସାଧାରଣତଃ ପାପ କୁହାଯାଏ, ତାହା ଘଟିଥାଏ । ଆମମାନଙ୍କ ଜୀବନରେ ଅନେକ ତ୍ରୁଟି ଘଟିଅଛି, କିନ୍ତୁ ଆମେ ଅଗ୍ରସର ହେଉଅଛୁ । ଆମେ ଯେ ଭୁଲ କରିଅଛୁ, ସେଥିପାଇଁ ଆମର ଜୟ ହେଉ ! ଦୂରଦୃଷ୍ଟି ସାହାଯ୍ୟରେ ଅତୀତକୁ ଚାହିଁ ଦେଖନ୍ତୁ । ଯଦି ବର୍ତ୍ତମାନ ଅବସ୍ଥା ମଙ୍ଗଳଜନକ ହୋଇଥାଏ, ତେବେ ତାହା ଅତୀତର ସକଳ ବିଫଳତା ଓ ସାଫଲ୍ୟଦ୍ୱାରା ହିଁ ସଂଘଟିତ ହୋଇଅଛି ! ସାଫଲ୍ୟର ଜୟ ହେଉ ! ବ୍ୟର୍ଥତାର ମଧ୍ୟ ଜୟ ହେଉ ! ଯାହା ଘଟିଯାଇଛି, ତା' ଆଡ଼କୁ ଫେରି ଚାହଁ ନାହିଁ । ଅଗ୍ରସର ହୁଅ । ଦେଖାଯାଉଛି, ବେଦାନ୍ତ ପାପ ବା ପାପୀ କଳ୍ପନା କରେ ନାହିଁ । ଭୟ-ସୃଷ୍ଟିକାରୀ ଏପରି କୌଣସି ଈଶ୍ୱର ଏଠାରେ ନାହାନ୍ତି । ଈଶ୍ୱରଙ୍କୁ ଆମେ କେବେହେଲେ ଭୟ କରି ନ ପାରୁ, କାରଣ ସେ ଆମମାନଙ୍କର ଆତ୍ମାସ୍ୱରୂପ । ତା'ହେଲେ ଯାହାଙ୍କର ଈଶ୍ୱରଙ୍କଠାରେ ଭୟ ଅଛି, ସେ କଅଣ ସର୍ବାପେକ୍ଷା କୁସଂସ୍କାରାଚ୍ଛନ୍ନ ବ୍ୟକ୍ତି ନୁହନ୍ତି ? ଏପରି ଲୋକ ଥାଇପାରନ୍ତି, ଯିଏ ନିଜର ଛାୟା ଦେଖି ଭୟ କରନ୍ତି, କିନ୍ତୁ ସେପରି ବ୍ୟକ୍ତି ନିଜକୁ ମଧ୍ୟ କେବେ ଭୟ କରେ ନାହିଁ ।

ମନୁଷ୍ୟର ନିଜ ଆତ୍ମା ହିଁ ଭଗବାନ । ସେ ହିଁ ଏକମାତ୍ର ସତ୍ତା, ଯାହାଙ୍କୁ ସମ୍ଭବତଃ କେବେ ଭୟ କରାଯାଏ ନାହିଁ । ଏହା କିପରି ନିରର୍ଥକ କଥା ଯେ, ଈଶ୍ୱରଙ୍କର ଭୟ

ତା' ଭିତରେ ପ୍ରବେଶ କରି ତାହାକୁ ସୀତ କଲା, ଇତ୍ୟାଦି, ଇତ୍ୟାଦି—କିପରି ପାଗଳାମି ! ଭଗବାନ ଆମମାନଙ୍କୁ ଆଶୀର୍ବାଦ କରନ୍ତୁ, ପାଗଳ-ଗାରଦରେ ଯେପରି ଆମକୁ ବାସ କରିବାକୁ ନ ହୁଏ । କିନ୍ତୁ ଯଦି ଆମେମାନେ ଅଧିକାଂଶ ହିଁ ପାଗଳ ନ ହେଉ, ତେବେ 'ଭଗବାନଙ୍କୁ ଭସ୍ମ କରିବା' ଇତ୍ୟାଦି ମିଥ୍ୟା କଥା ସୃଷ୍ଟି କରୁ କିପରି ? ଭଗବାନ ବୁଦ୍ଧଦେବ କହିଥିଲେ ଯେ, ଊଣା ଅଧିକେ ସମଗ୍ର ମନୁଷ୍ୟଜାତି ହିଁ ପାଗଳ । ମନେ ହେଉଛି, କଥାଟି ସମ୍ପୂର୍ଣ୍ଣ ସତ୍ୟ ।

କୌଣସି ଗ୍ରନ୍ଥ ନୁହେଁ, ବ୍ୟକ୍ତି ନୁହେଁ, ସଗୁଣ ଈଶ୍ୱର ନୁହେଁ । ଏଗୁଡ଼ିକ ଦୂର କରିବାକୁ ହେବ । ଇନ୍ଦ୍ରିୟଚେତନା ମଧ୍ୟ ଦୂର ହେବ । ଆମେ ଇନ୍ଦ୍ରିୟରେ ଆବଦ୍ଧ ରହି ନ ପାରୁ । ହିମବାହରେ ମୃତ୍ୟୁନ-ସ୍ପର୍ଶ ମୁମୂର୍ଷୁ ବ୍ୟକ୍ତି ଭଳି ବର୍ତ୍ତମାନ ଆମେ ଆବଦ୍ଧ ହୋଇ ରହିଅଛୁ । ଶୀତରେ ଅବସନ୍ନ ପଥିକ ଶୋଇ ରହିବା ପାଇଁ ଏକ ପ୍ରବଳ ଆକାଙ୍କ୍ଷା ବୋଧ କରେ ଏବଂ ସେମାନଙ୍କର ବନ୍ଧୁଗଣ ଯେତେବେଳେ ତାହାକୁ ଜାଗ୍ରତ କରି ରଖିବାକୁ ଚେଷ୍ଟା କରନ୍ତି—ତାହାକୁ ମୃତ୍ୟୁ ସମ୍ପର୍କରେ ସଚେତନ କରିଦିଅନ୍ତି—ସେତେବେଳେ ସେ ଯେପରି କହିଥାଏ, 'ମୋତେ ମରିବାକୁ ଦିଅ, ମୁଁ ଶୋଇବି'—ସେହିପରି ଆମେ ସମସ୍ତେ କ୍ଷୁଦ୍ର ଇନ୍ଦ୍ରିୟବିଷୟକୁ ଜାବୁଡ଼ି ଧରିଅଛୁ, ଏପରିକି ଆମେ ଏଥିରେ ବିନଷ୍ଟ ହୋଇଗଲେ ମଧ୍ୟ ତାହାକୁ ଜାବୁଡ଼ି ଧରିଥିବୁ—ଆମେ ସେତେବେଳେ ଭୁଲିଯାଉ ଯେ, ଏହା ଅପେକ୍ଷା ମଧ୍ୟ ମହତ୍ତର ଭାବ ଅଛି ।

ହିନ୍ଦୁମାନଙ୍କର ପୌରାଣିକ କାହାଣୀରେ ବର୍ଣ୍ଣିତ ଅଛି, ଭଗବାନ ଏକଦା ମର୍ତ୍ତ୍ୟରେ ଶୂକରରୂପେ ଅବତୀର୍ଣ୍ଣ ହୋଇଥିଲେ । ଶୂକରୀ-ଗର୍ଭରେ କାଳକ୍ରମେ ତାଙ୍କର ଅନେକଗୁଡ଼ିଏ ଶ୍ରେଷ୍ଠ ଶ୍ରେଷ୍ଠ ଶାବକ ଜାତ ହୋଇଥିଲେ । ସେ ତାଙ୍କର ଏହି ଶାବକ-ବେଷ୍ଟିତ ପରିବାରଟିରେ ଖୁବ୍ ସୁଖୀ ହୋଇ ରହିଲେ । ତାଙ୍କର ସ୍ୱର୍ଗୀୟ ମହିମା ଓ ଈଶ୍ୱରତ୍ୱ ଭୁଲିଯାଇ ଏହି ପରିବାର ସହିତ କାଦୁଅରେ ମହାନନ୍ଦରେ ଘୋଳି ଘୋଳି କରି ବିଚରଣ କରିବାକୁ ଲାଗିଲେ । ଦେବଗଣ ଭାରି ଚିନ୍ତିତ ହେଲେ ଏବଂ ମର୍ତ୍ତ୍ୟରେ ତାଙ୍କ ନିକଟକୁ ଆସି ପ୍ରାର୍ଥନା କଲେ, ଯେପରି ସେ ଶୂକର-ଶରୀର ଛାଡ଼ି ସ୍ୱର୍ଗକୁ ଗମନ କରନ୍ତି । କିନ୍ତୁ ଭଗବାନ ତାହା କଲେ ନାହିଁ—ସେ ଦେବଗଣଙ୍କୁ ତଡ଼ିଦେଲେ । ସେ କହିଲେ, ସେ ଖୁବ୍ ସୁଖରେ ଅଛନ୍ତି ଏବଂ ଏଥିରେ ଯେପରି କୌଣସି ବାଧା ଉପସ୍ଥିତ ନ ହୁଏ । ଅନ୍ୟ କୌଣସି ଉପାୟ ନ ଦେଖି ଦେବଗଣ ଈଶ୍ୱରଙ୍କର ଶୂକର-ଶରୀରଟିକୁ ଧ୍ୱଂସ କରିଦେବା ମାତ୍ରେ ସେ ତାଙ୍କର ସ୍ୱର୍ଗୀୟ ମହିମା ଫେରି ପାଇଲେ ଏବଂ ଶୂକରଯୋନିରେ ସେ ଏତେ ଆନନ୍ଦ ପାଇପାରନ୍ତି—ଏହା ଭାବି ସେ ଅତିଶୟ ଆଶ୍ଚର୍ଯ୍ୟ ଓ କୌତୁକ ବୋଧ କଲେ ।

ଏହା ହିଁ ମନୁଷ୍ୟର ସ୍ୱଭାବ । ଯେତେବେଳେ ସେମାନେ ନୈର୍ବ୍ୟକ୍ତିକ ଈଶ୍ୱରଙ୍କ କଥା ଶୁଣନ୍ତି, ସେମାନେ ଭାବନ୍ତି, ଆମ ବ୍ୟକ୍ତିତ୍ୱର କଅଣ ହେବ ?—ମୋ ବ୍ୟକ୍ତିତ୍ୱଟି ଯେ ନଷ୍ଟ ହୋଇଯିବ ମନରେ ଏପରି ଚିନ୍ତା ଆସିଲେ ଶୂକରଟିର କଥା ସ୍ମରଣ କରନ୍ତୁ ଏବଂ ତା'ପରେ

ଭାବିବେ କିପରି ଅସୀମ ସୁଖର ଖଣି ଆପଣଙ୍କ ମଧ୍ୟରେ ରହିଛି, ପ୍ରତ୍ୟେକଙ୍କ ମଧ୍ୟରେ ରହିଅଛି ! ବର୍ତ୍ତମାନ ଅବସ୍ଥାରେ ଆପଣ କେତେ ସୁଖୀ ! କିନ୍ତୁ ଯେତେବେଳେ ମନୁଷ୍ୟ ସତ୍ୟସ୍ୱରୂପଙ୍କୁ ଜାଣିପାରେ, ସେତେବେଳେ ସେ ଏହା ଭାବି ଅବାକ୍ ହୁଏ ଯେ, ସେ ଏହି ଇନ୍ଦ୍ରିୟାସକ୍ତ ଜୀବନ ତ୍ୟାଗ କରିବା ପାଇଁ କେତେ ଅନିଚ୍ଛୁକ ଥିଲା ! ବ୍ୟକ୍ତିତ୍ୱରେ କଅଣ ଅଛି ? ଏହା କଅଣ ଶୂକର-ଜୀବନଠାରୁ ଭଲ ? ତେବେ ତାକୁ ଛାଡ଼ିବାକୁ ଚାହେଁ ନାହିଁ କାହିଁକି ? ଭଗବାନ ସମସ୍ତଙ୍କୁ ଆଶୀର୍ବାଦ କରନ୍ତୁ ।

ବେଦାନ୍ତ ଆମମାନଙ୍କୁ କ'ଣ ଶିକ୍ଷା ଦିଏ ? ପ୍ରଥମତଃ ବେଦାନ୍ତ ଶିଖାଏ ଯେ, ସତ୍ୟ ଜାଣିବାକୁ ହେଲେ ମନୁଷ୍ୟଙ୍କୁ ନିଜ ବାହାରକୁ ଯିବାର ପ୍ରୟୋଜନ ନାହିଁ । ଭୂତ, ଭବିଷ୍ୟତ —ସବୁ ବର୍ତ୍ତମାନରେ ହିଁ ନିହିତ । କୌଣସି ମନୁଷ୍ୟ କେବେହେଲେ ଅତୀତକୁ ଦେଖି ନାହିଁ । ଆପଣମାନଙ୍କ ମଧ୍ୟରୁ କେହି କଅଣ କେବେ ଅତୀତକୁ ଦେଖିଛନ୍ତି ? ଯେତେବେଳେ କେହି ଅତୀତକୁ ବୋଧ କରୁଛି ବୋଲି ଚିନ୍ତା କରେ, ସେତେବେଳେ ସେ ବର୍ତ୍ତମାନ ମୁହୂର୍ତ୍ତ ମଧ୍ୟରେ ଅତୀତର କଳ୍ପନା କରେ ମାତ୍ର । ଭବିଷ୍ୟତ ଦେଖିବାକୁ ଗଲେ ବର୍ତ୍ତମାନ ମଧ୍ୟରେ ତାହାକୁ ଜାଣିବାକୁ ହେବ, ବର୍ତ୍ତମାନ ହିଁ ଏକମାତ୍ର ସତ୍ୟ—ବାକିସବୁ କଳ୍ପନା । ଯାହା କିଛି ବର୍ତ୍ତମାନ ଅବସ୍ଥିତ ତାହା ହିଁ ସତ୍ୟ । ଅନନ୍ତକାଳ ମଧ୍ୟରେ ଗୋଟିଏ କ୍ଷଣ—ଅନ୍ୟାନ୍ୟ ପ୍ରତ୍ୟେକ କ୍ଷଣ ଭଳି ସମ୍ପୂର୍ଣ୍ଣ ଓ ସର୍ବଗ୍ରାହୀ । ଯାହା କିଛି ଅଛି, ଥିଲା ଓ ରହିବ—ତାହା ସମସ୍ତ ହିଁ ବର୍ତ୍ତମାନରେ ଅବସ୍ଥିତ । ଯଦି କେହି ଏହା ବାହାରେ କୌଣସି କିଛିର କଳ୍ପନା କରିବାକୁ ଚାହାଁନ୍ତି—କରନ୍ତୁ—କିନ୍ତୁ କେବେହେଲେ ସଫଳକାମ ହେବେ ନାହିଁ ।

ଏହି ପୃଥିବୀର ବାସ୍ତବତା ଛାଡ଼ି କେଉଁ ଧର୍ମ ସ୍ୱର୍ଗର ବର୍ଣ୍ଣନା ଦେଇପାରିଛି ? ବାକି ସବୁ ତ ଚିତ୍ର—କେବଳ ଏହି ଜଗତ-ଚିତ୍ରଟି ଆମ ନିକଟରେ କ୍ରମେ ପରିଚିତ ହୋଇଅଛି । ଆମେ ପଞ୍ଚେନ୍ଦ୍ରିୟଦ୍ୱାରା ଜଗତକୁ ସ୍ଥୂଳ ଏବଂ ବର୍ଣ୍ଣ-ଆକୃତି-ଶବ୍ଦାଦି-ସମ୍ପନ୍ନ ବୋଲି ଦେଖୁଛୁ । ମନେକରନ୍ତୁ, ମୋର ଗୋଟିଏ ବୈଦ୍ୟୁତିକ ଇନ୍ଦ୍ରିୟ ହେଲା —ସେତେବେଳେ ସବୁ ପରିବର୍ତ୍ତିତ ହୋଇଯିବ । ମନେ କରନ୍ତୁ, ମୋର ଇନ୍ଦ୍ରିୟଗୁଡ଼ିକ ସୂକ୍ଷ୍ମତର ହୋଇଗଲା—ସେତେବେଳେ ଆପଣମାନେ ସମସ୍ତେ ଅନ୍ୟରୂପେ ପ୍ରତିଭାତ ହେବେ । ଯଦି ମୁଁ ପରିବର୍ତ୍ତିତ ହୁଏ, ତେବେ ଆପଣମାନେ ପରିବର୍ତ୍ତିତ ହୋଇଯିବେ । ଯଦି ମୁଁ ଇନ୍ଦ୍ରିୟାନୁଭୂତିର ବାହାରକୁ ଚାଲିଯାଏ, ଆପଣମାନେ ଆତ୍ମାରୂପେ—ଈଶ୍ୱର-ରୂପେ ପ୍ରତିଭାତ ହେବେ । ବସ୍ତୁଗୁଡ଼ିକ ଯେପରି ଦେଖାଯାଉଛି, ସେଗୁଡ଼ିକ ଠିକ୍ ସେପରି ନୁହନ୍ତି ।

କ୍ରମେ କ୍ରମେ ଯେତେବେଳେ ଏଗୁଡ଼ିକ ଆମେମାନେ ବୁଝିବୁ, ସେତେବେଳେ ଧାରଣା ହେବ—ଏହିସବୁ ସ୍ୱର୍ଗାଦି ଲୋକ ଇତ୍ୟାଦି ସବୁ ଏହିଠାରେ, ଏହି ମୁହୂର୍ତ୍ତରେ ଅବସ୍ଥିତ; ଏଗୁଡ଼ିକ ଈଶ୍ୱରାସ୍ତିତ୍ୱ ଉପରେ ଆରୋପିତ ବା ଅଧ୍ୟସ୍ତ ସତ୍ତା ବ୍ୟତୀତ ଅନ୍ୟ କିଛି ନୁହେଁ । ଏହି ଅସ୍ତିତ୍ୱ ସ୍ୱର୍ଗ-ମର୍ତ୍ତ୍ୟାଦି ଅପେକ୍ଷାମହତ୍ତର । ମନୁଷ୍ୟ ଭାବେ, ମର୍ତ୍ତ୍ୟଲୋକ

ପାପମସ୍ତ ଏବଂ ସ୍ୱର୍ଗ ଅନ୍ୟ କେଉଁଠାରେ ଅବସ୍ଥିତ । ମର୍ତ୍ତ୍ୟଲୋକ ମନ୍ଦ ନୁହେଁ । ଜାଣିପାରିଲେ ଦେଖାଯିବ ଯେ, ଏହା ମଧ୍ୟ ସ୍ୱୟଂ ଭଗବାନ । ବିଶ୍ୱାସ କରିବା ଅପେକ୍ଷା ଏହି ତତ୍ତ୍ୱକୁ ବୁଝିବା ଅନେକ ବେଶୀ ଦୁରୁହ । ଆତତାୟୀ, ଯିଏ କିଛିଦିନ ପରେ ଫାଶୀରେ ଝୁଲିବ, ସେ ମଧ୍ୟ ଭଗବାନ—ସାକ୍ଷାତ୍ ଭଗବାନ । ନିଶ୍ଚିତଭାବେ ଏହି ତତ୍ତ୍ୱକୁ ଧାରଣା କରିବା ଖୁବ୍ କଠିନ, କିନ୍ତୁ ଏହା ମଧ୍ୟ ଉପଲବ୍ଧି କରିହୁଏ ।

ଏଥିପାଇଁ ବେଦାନ୍ତର ସିଦ୍ଧାନ୍ତ—ବିଶ୍ୱ-ଭ୍ରାତୃତ୍ୱ ନୁହେଁ, ବିଶ୍ୱାତ୍ମାର ଐକ୍ୟ । ମୁଁ ଅନ୍ୟାନ୍ୟ ମନୁଷ୍ୟ, ଜନ୍ତୁ—ଭଲ, ମନ୍ଦ—ଯେ କୌଣସି ଜିନିଷ ସହିତ ଅଭିନ୍ନ । ସବୁଏ ଏକ ଶରୀର, ଏକ ମନ ଓ ଗୋଟିଏ ଆତ୍ମା ବିରାଜିତ । ଆତ୍ମା କେବେ ମରେ ନାହିଁ । ଶରୀରର ମୃତ୍ୟୁ କିପରି ହୋଇପାରେ ? ଗୋଟିଏ ପତ୍ର ଝଡ଼ି ପଡ଼ିଲା—ଏଥିରେ କଅଣ ଗଛର ମୃତ୍ୟୁ ହୁଏ ? ଏହି ବିଶ୍ୱ ମୋର ଶରୀର । ଦେଖନ୍ତୁ କିପରି ଭାବରେ ଏହା ଅନନ୍ତ କାଳ ଧରି ରହିଅଛି । ସକଳ ମନ ମୋର ! ସକଳ ପାଦରେ ମୁଁ ପରିଭ୍ରମଣ କରେ—ସକଳ ମୁଖରେ ମୁଁ କଥା କହେ—ସବୁଶରୀରରେ ମୁଁ ଅଧିଷ୍ଠିତ ।

କାହିଁକି ମୁଁ ଏହା ଅନୁଭବ କରିପାରେ ନାହିଁ ? କାରଣ ମୋର ବ୍ୟକ୍ତିତ୍ୱ—ଏହି ଶୂକରତ୍ୱ । ମନୁଷ୍ୟ ନିଜକୁ ଏହି ମନ ସହିତ ବାନ୍ଧି ରଖିଛି, ଏଥିପାଇଁ କେବଳ ଏହିଠାରେ ରହିପାରେ—ଦୂରରେ ନୁହେଁ । ଅମରତ୍ୱ କ'ଣ ? ସାମାନ୍ୟ କେତେଜଣ ମାତ୍ର ଏହି ଭାବରେ ଉତ୍ତର ଦିଅନ୍ତି । ଏହା ଆମମାନଙ୍କର ହିଁ ଅସ୍ତିତ୍ୱ । ଅଧିକାଂଶ ଲୋକେ ଭାବନ୍ତି, ସବୁକିଛି ମରଣଶୀଳ ବା ମୃତ—ଭଗବାନ ଏଠାରେ ନାହାନ୍ତି, ସେମାନେ ମୃତ୍ୟୁପରେ ସ୍ୱର୍ଗକୁ ଯାଇ ଅମର ହେବେ । ସେମାନେ କଳ୍ପନା କରନ୍ତି ଯେ, ମୃତ୍ୟୁପରେ ସେମାନେ ଭଗବାନଙ୍କର ଦର୍ଶନ ପାଇବେ । କିନ୍ତୁ ଯଦି ସେମାନେ ତାହାଙ୍କୁ ଏହି ଲୋକରେ ଏହି ମୁହୂର୍ତ୍ତରେ ଦେଖିବାକୁ ନ ପାଆନ୍ତି, ତେବେ ମୃତ୍ୟୁ ପରେ ମଧ୍ୟ ତାଙ୍କୁ ଦେଖିପାରିବେ ନାହିଁ । ଯଦିଓ ସେମାନେ ସମସ୍ତେ ଅମରତ୍ୱରେ ବିଶ୍ୱାସୀ, ତଥାପି ସେମାନେ ଜାଣନ୍ତି ନାହିଁ—ମରିବା ପରେ ସ୍ୱର୍ଗକୁ ଯାଇ ଅମରତ୍ୱ ଲାଭ କରାଯାଏ ନାହିଁ, ବରଂ ଆମର ଶୂକର-ସୁଲଭ ବ୍ୟକ୍ତିତ୍ୱ ତ୍ୟାଗ କରି—ଗୋଟିଏ କ୍ଷୁଦ୍ର ଶରୀର ସହିତ ନିଜକୁ ଆବଦ୍ଧ ନ ରଖି ଆମେ ଅମରତ୍ୱ ଲାଭ କରିପାରୁ । ନିଜକୁ ସମସ୍ତଙ୍କ ସହିତ ଏକ ବୋଲି ଜାଣିବା—ସକଳ ଦେହରେ ଆପଣଙ୍କର ଅଧିଷ୍ଠାନ ଉପଲବ୍ଧି କରିବା—ସକଳ ମନ ମଧ୍ୟ ଦେଇ ଅନୁଭବ କରିବା ହିଁ ଅମରତ୍ୱ । ଆମେ ଏହି ଶରୀର ବ୍ୟତୀତ ଅନ୍ୟ ଶରୀର ମଧ୍ୟ ଦେଇ ଅନୁଭୂତି ଲାଭ କରିପାରୁ; ଆମମାନଙ୍କୁ ଅନ୍ୟ ଶରୀର ମଧ୍ୟ ଦେଇ ଅନୁଭୂତି ଲାଭ କରିବାକୁ ହିଁ ହେବ । ସମବେଦନାର ଅର୍ଥ କ'ଣ ? ଏହି ସମବେଦନାର—ଶରୀର ମଧ୍ୟରେ ଅନୁଭୂତିର—କ'ଣ କୌଣସି ସୀମା ଅଛି ? ଏହା ମଧ୍ୟ ସମ୍ପୂର୍ଣ୍ଣରୂପେ ସମ୍ଭବ ଯେ, ଏପରି ଏକ ସମୟ ଆସିବ, ଯେତେବେଳେ ସମଗ୍ର ବିଶ୍ୱ ମଧ୍ୟ ଦେଇ ମୁଁ ଅଭବ କରିବ ।

ଏଥିରେ ଲାଭ କ'ଣ ? ଏହି ଶୂକର-ଶରୀର ତ୍ୟାଗ କରିବା କଠିନ; ଆମେ ଆମର କ୍ଷୁଦ୍ର ଶୂକର-ଶରୀରର ଆନନ୍ଦ ତ୍ୟାଗ କରିବା ପାଇଁ ଦୁଃଖ ବୋଧ କରିଥାଉ । ବେଦାନ୍ତ

ଏହା ତ୍ୟାଗ କରିବାକୁ କହେ ନାହିଁ, ସେ କହେ—ଏହାର ଆରପାରିକୁ ଚାଲିଯାଅ । କୃଚ୍ଛ୍ର ସାଧନର ପ୍ରୟୋଜନ ନାହିଁ—ଦୁଇଟି ଶରୀରରେ ଅନୁଭୂତ ସୁଖ ଉନ୍ନତତର—ତିନୋଟିରେ ଆହୁରି ଅଧିକ । ଗୋଟିକ ବଦଳରେ ବହୁ ଶରୀରରେ ବାସ । ଯେତେବେଳେ ମୁଁ ବିଶ୍ୱ ମାଧ୍ୟମରେ ସୁଖଲାଭ କରିପାରିବି, ସେତେବେଳେ ସମସ୍ତ ବିଶ୍ୱ ହିଁ ମୋର ଶରୀର ହୋଇଯିବ ।

ଅନେକେ ଅଛନ୍ତି, ଯେଉଁମାନେ ଏହି ସକଳ ତତ୍ତ୍ୱ ଶୁଣି ଭୀତ ହୁଅନ୍ତି । ସେମାନେ ଯେ ପରପୀଡ଼ନକାରୀ କୌଣସି ଈଶ୍ୱରଙ୍କର ସୃଷ୍ଟ କ୍ଷୁଦ୍ର ଶୂକର-ଦେହମାତ୍ର ନୁହନ୍ତି—ଏ କଥା ଶୁଣିବାକୁ ସେମାନେ ରାଜି ନୁହନ୍ତି । ମୁଁ ସେମାନଙ୍କୁ କହେ, 'ଅଗ୍ରସର ହୁଅନ୍ତୁ ।' ସେମାନେ କହନ୍ତି—ସେମାନେ ପାପ-ପଙ୍କରେ ଜନ୍ମଗ୍ରହଣ କରିଅଛନ୍ତି ଏବଂ ତାହାଙ୍କ କୃପା ବ୍ୟତୀତ ସେମାନେ ଅଗ୍ରସର ହୋଇପାରିବେ ନାହିଁ । ମୁଁ କହେ, 'ତୁମେମାନେ ହିଁ ଈଶ୍ୱର ।' ସେମାନେ ଉତ୍ତରରେ କହନ୍ତି, 'ଆହେ ଈଶ୍ୱରଦ୍ୱେଷୀ । ତୁମେ କେଉଁ ସାହସରେ ଏ କଥା କୁହ ? କିପରି ଗୋଟିଏ ହୀନ ପ୍ରାଣୀ (ଜୀବ) ଈଶ୍ୱର ହୋଇପାରେ ? ଆମେମାନେ ପାପୀ !' ଆପଣମାନେ ଜାଣନ୍ତି, ସମୟ ସମୟରେ ମୁଁ ବଡ଼ ହତୋଦ୍ୟମ ହୋଇପଡ଼େ । ଶତ ଶତ ପୁରୁଷ ଓ ମହିଳା ମୋତେ କହିଛନ୍ତି, 'ଯଦି ନରକ ନାହିଁ, ତେବେ ଧର୍ମ କିପରି ରହିଅଛି ?' ଯଦି ଏହିସବୁ ମନୁଷ୍ୟ ସ୍ୱେଚ୍ଛାରେ ନରକକୁ ଯାଆନ୍ତି, ତେବେ କିଏ ସେମାନଙ୍କୁ ନିବୃତ୍ତ କରିପାରେ ?

ମନୁଷ୍ୟ ଯାହା ସ୍ୱପ୍ନ ଦେଖେ ବା ଭାବେ—ସବୁ ତାହାର ସୃଷ୍ଟି । ଯଦି ନରକ କଥା ଚିନ୍ତା କରି କରି ମରେ, ତେବେ ନରକ ହିଁ ଦେଖିବ । ଯଦି ମନ୍ଦ ଓ ସଇତାନ କଥା ଚିନ୍ତା କରେ, ତେବେ ସଇତାନ ହେବ—ଭୂତ କଥା ଭାବିଲେ ଭୂତ ହେବ । ଆପଣମାନେ ଯାହା ଭାବନା କରିବେ, ତାହା ହେବେ । ଏଥିପାଇଁ ସତ୍ ଓ ଅସତ୍ କଥା ଅବଶ୍ୟ ହିଁ ଭାବିବାକୁ ହେବ । ଅତଏବ ମନୁଷ୍ୟ ଗୋଟିଏ କ୍ଷୀଣ କ୍ଷୁଦ୍ର କୀଟମାତ୍ର । ଆମେମାନେ ଦୁର୍ବଳ—ଏହି କଥା ଉଚ୍ଚାରଣ କରି ଆମେ ଦୁର୍ବଳ ହୋଇପଡ଼ୁ, ଏହା ଅପେକ୍ଷା ଅଧିକ ଭଲ ହୋଇପାରୁ ନାହିଁ । ମନେକର, ଆମେ ନିଜେ ଆଲୁଅ ଲିଭାଇ, ଝରକା ବନ୍ଦ କରି ଚିତ୍କାର କରିବା—ଘରଟି ଅନ୍ଧକାର । ଏପରି ମୂର୍ଖମାନଙ୍କ କଥା ଭାବନ୍ତୁ । ମୁଁ ପାପୀ—ଏ କଥା କହିଲେ ମୋର କଅଣ ଉପକାର ହେବ ? ଯଦି ମୁଁ ଅନ୍ଧକାରରେ ରହେ, ତେବେ ମୋତେ ଗୋଟିଏ ପ୍ରଦୀପ ଜାଳିବାକୁ ଦିଅ; ତା'ହେଲେ ସକଳ ଅନ୍ଧକାର ଦୂର ହେବ । ମନୁଷ୍ୟର ସ୍ୱଭାବ କିପରି ଅଦ୍ଭୁତ ! ଯଦିଓ ସେମାନେ ସର୍ବଦା ସଚେତନ ଯେ, ସେମାନଙ୍କ ପଶ୍ଚାତ୍‌ରେ ବିଶ୍ୱାତ୍ମା ବିରାଜିତ, ତଥାପି ସେମାନେ ଅଧିକତର ସଇତାନ କଥା—ଅନ୍ଧକାର ଓ ମିଥ୍ୟା କଥା ଭାବିଥାଆନ୍ତି । ସେମାନଙ୍କୁ ସତ୍ୟସ୍ୱରୂପର କଥା କହନ୍ତୁ—ସେମାନେ ବୁଝିପାରିବେ ନାହିଁ; ସେମାନେ ଅନ୍ଧକାରକୁ ଅଧିକ ଭଲ ପାଆନ୍ତି ।

ଏହି ହେତୁ ବେଦାନ୍ତରେ ଗୋଟିଏ ମହତ୍ତ୍ୱ ପ୍ରଶ୍ନର ସୃଷ୍ଟି ହୋଇଅଛି : ଜୀବ ଏତେ ଭୀତ କାହିଁକି ? ଏହାର ଉତ୍ତର ଏହି ଯେ, ଜୀବଗଣ ନିଜକୁ ଅସହାୟ ଓ ଅନ୍ୟ ଉପରେ

ନିର୍ଭରଶୀଳ କରିଛନ୍ତି ବୋଲି । ଆମମାନଙ୍କର ଏତେ ଆଳସ୍ୟ ଯେ, ନିଜେ କିଛି କରିବାକୁ ଚାହୁଁ ନାହିଁ । ମୋର ଜଣେ ଇଷ୍ଟ, ଜଣେ ପରିତ୍ରାତା ଅଥବା ଜଣେ ପ୍ରେରିତ ପୁରୁଷ ଦରକାର, ଯିଏ ଆମ ପାଇଁ ସବୁ କିଛି କରିଦେବେ । ଅତିରିକ୍ତ ଧନୀ କେବେହେଲେ ଚାଲିବେ ନାହିଁ— ସର୍ବଦା ଗାଡ଼ିରେ ଯିବେ; ବହୁ ବର୍ଷ ପରେ ସେ ହଠାତ୍ ଦିନେ ଜାଗ୍ରତ ହେଲେ । କିନ୍ତୁ ସେତେବେଳକୁ ସେ ଅଥର୍ବ ହୋଇ ପଡ଼ିଛନ୍ତି । ସେତେବେଳେ ସେ ବୋଧ କରନ୍ତି, ଯେଉଁ ଭାବରେ ସେ ତାଙ୍କର ସମସ୍ତ ଜୀବନ କଟାଇଛନ୍ତି, ତାହା ଆଦୌ ଭଲ ନୁହେଁ, ଅନ୍ୟ କେହି ମୋ ପାଇଁ ଚାଲିପାରେ ନାହିଁ । ମୋ ପାଇଁ ଯଦି କେହି କିଛି କରେ, ତେବେ ସେ ମୋତେ ପଙ୍ଗୁ କରିଦେବ । ଯଦି କାହାରି ପାଇଁ ସବୁ କାମ ଅନ୍ୟମାନେ କରିଦିଅନ୍ତି, ତେବେ ସେ ଅଙ୍ଗ-ଚାଳନାର କ୍ଷମତା ହରାଇ ବସିବ । ଯାହା କିଛି ଆମେ ସ୍ୱୟଂ କରୁ, ତାହା ହିଁ ଏକମାତ୍ର ଆମମାନଙ୍କର ନିଜସ୍ୱ କାର୍ଯ୍ୟ । ଯାହା କିଛି ଆମ ପାଇଁ ଅନ୍ୟଦ୍ୱାରା କୃତ ହୁଏ, ତାହା କେବେହେଲେ ଆମର ହୁଏ ନାହିଁ । ତୁମେମାନେ ମୋ ବକ୍ତୃତା ଶୁଣି ଆଧ୍ୟାତ୍ମିକ ସତ୍ୟ ଲାଭ କରି ନ ପାର । ଯଦି ତୁମେ କିଛି ମାତ୍ର ଶିଖିଥାଅ, ତେବେ ମୁଁ କେବଳ ସ୍ଫୁଲିଙ୍ଗମାତ୍ର, ଯାହା ତୁମମାନଙ୍କ ଅନ୍ତରସ୍ଥ ଅଗ୍ନିକୁ ପ୍ରଜ୍ୱଳିତ କରିବାରେ ସାହାଯ୍ୟ କରିଅଛି । ଅବତାର-ପୁରୁଷ ବା ଗୁରୁ କେବଳ ଏତିକି କରିପାରନ୍ତି । ସାହାଯ୍ୟ ପାଇଁ ଦୌଡ଼ାଦୌଡ଼ି କରିବା ମୂର୍ଖତା ।

ଭାରତରେ ବଳଦ-ବାହିତ ଶକଟ କଥା ଆପଣମାନେ ଜାଣନ୍ତି । ସାଧାରଣତଃ ଦୁଇଟି ବଳଦକୁ ଗାଡ଼ିରେ ଯୋଚିବାକୁ ପଡ଼େ, ପୁଣି କେବେ କେବେ ବିଡ଼ାଏ ନଡ଼ା ବାଉଁଶର ଅଗ୍ରଭାଗରେ ବାନ୍ଧି ବଳଦ ଦୁଇଟିଙ୍କ ଆଗରେ ସେମାନଙ୍କ ମୁହଁଠାରୁ କିଛି ଦୂରରେ ଝୁଲାଇ ରଖାଯାଏ । ବଳଦ ଦୁଇଟି କ୍ରମାଗତ ନଡ଼ା ଖାଇବା ପାଇଁ ଚେଷ୍ଟା କରନ୍ତି, କିନ୍ତୁ କେବେହେଲେ କୃତକାର୍ଯ୍ୟ ହୋଇପାରନ୍ତି ନାହିଁ । ଠିକ୍ ଏହିପରି ଆମେ ସାହାଯ୍ୟ ଲାଭ କରୁ । ଆମେ ମନେକରୁ—ଆମର ନିରାପତ୍ତା, ଶକ୍ତି, ଜ୍ଞାନ, ଶାନ୍ତି ବାହାରୁ ପାଇବୁ । ଆମେ ସର୍ବଦା ଏହିପରି ଆଶା କରୁ, କିନ୍ତୁ କେବେହେଲେ ଆଶା ପୂର୍ଣ୍ଣ କରିପାରୁ ନାହିଁ । ବାହାରୁ କୌଣସି ସାହାଯ୍ୟ କେବେହେଲେ ଆସେ ନାହିଁ ।

ମନୁଷ୍ୟର କୌଣସି ସହାୟକ ନାହିଁ । କେହି କସ୍ମିନ୍ କାଳେ ନ ଥିଲା, ନାହିଁ ଏବଂ ରହିବ ମଧ୍ୟ ନାହିଁ । କାହିଁକି ବା ରହିବ ? ଆପଣମାନେ କ'ଣ ମାନବ ବା ମାନବୀ ନୁହନ୍ତି ? ଏହି ପୃଥିବୀର ପ୍ରଭୁଗଣ କଅଣ ଅନ୍ୟର ସାହାଯ୍ୟ ଉପରେ ନିର୍ଭରଶୀଳ ହେବେ ? ଏଥିପାଇଁ କଅଣ ଆପଣମାନେ ଲଜ୍ଜିତ ନୁହନ୍ତି ? ଯେତେବେଳେ ଆପଣମାନେ ଧୂଳିରେ ମିଶିଯିବେ, ସେତେବେଳେ ଅନ୍ୟର ସହାୟତା ଲାଭ କରିବେ । କିନ୍ତୁ ମନୁଷ୍ୟ ଆତ୍ମାସ୍ୱରୂପ । ସେ ନିଜକୁ ବିପଦଠାରୁ ଅଲଗା କରିନିଏ । 'ଉଦ୍ଧରେଦାତ୍ମନାତ୍ମାନମ୍ ।' ଏହା ବ୍ୟତୀତ ଅନ୍ୟ କୌଣସି ସାହାଯ୍ୟ ନାହିଁ—କସ୍ମିନ୍‌କାଳେ ନ ଥିଲା ମଧ୍ୟ । ମୋର କେହି ସହାୟକ ଅଛି, ଏପରି ଭାବନା ସୁମଧୁର ଭ୍ରାନ୍ତିମାତ୍ର । ଏହାଦ୍ୱାରା କୌଣସି ମଙ୍ଗଳ ହେବ ନାହିଁ । ଦିନେ ଜଣେ ଖ୍ରୀଷ୍ଟିଆନ୍ ମୋ ନିକଟକୁ ଆସି କହିଲା, 'ଆପଣ ଜଣେ ଭୟଙ୍କର ପାପୀ ।' ଉତ୍ତରରେ କହିଲି—'ହଁ ନିଶ୍ଚୟ, ତା'ପରେ ?' ସେ ଜଣେ ଧର୍ମପ୍ରଚାରକ । ଲୋକଟି ମୋତେ ଛାଡ଼ିବାକୁ ଆଦୌ ରାଜି

ନୁହେଁ । ତାଙ୍କୁ ଆସିବାର ଦେଖିଲେ ମୁଁ ପଳାୟନ କରେ । ସେ କହେ, 'ତୁମ ପାଇଁ ମୋ ପାଖରେ ଅନେକ ଭଲ ଭଲ ଜିନିଷ ଅଛି । ତୁମେ ଗୋଟିଏ ପାପୀ, ତୁମେ ନରକକୁ ଯିବ ।' ମୁଁ ଉତ୍ତରରେ କହିଲି, 'ଖୁବ୍ ଭଲ—ଆଉ କିଛି ?' ମୁଁ ପ୍ରଶ୍ନ କଲି, 'ଆପଣ କୁଆଡ଼େ ଯାଉଛନ୍ତି ?' ସେ ଉତ୍ତର ଦେଲା, 'ମୁଁ ସ୍ୱର୍ଗକୁ ଯାଉଛି ।' ମୁଁ କହିଲି, 'ମୁଁ ତା'ହେଲେ ନରକକୁ ଯାଏ ।' ସେହି ଦିନଠାରୁ ସେ ମୋତେ ନିଷ୍କୃତି ଦେଲା ।

ଏଠାକୁ କୌଣସି ଖ୍ରୀଷ୍ଟାନ ଆସିଲେ କହିବେ, 'ତୁମେ ସମସ୍ତେ ମରିବାକୁ ବସିଛ; କିନ୍ତୁ ଯଦି ତୁମେମାନେ ଆମ ମତବାଦକୁ ବିଶ୍ୱାସ କର, ତେବେ ଯୀଶୁଖ୍ରୀଷ୍ଟ ତୁମମାନଙ୍କୁ ମୁକ୍ତ କରିବେ ।' ଯଦି ଏହା ସତ୍ୟ ହୁଅନ୍ତା ! କିନ୍ତୁ ଏହା କୁସଂସ୍କାର ଭିନ୍ନ ଅନ୍ୟ କିଛି ନୁହେଁ—ତା' ହେଲେ ଖ୍ରୀଷ୍ଟାନ ଦେଶଗୁଡ଼ିକରେ କୌଣସି ଅନ୍ୟାୟ ନ ଥାନ୍ତା । ଆସନ୍ତୁ ଆମେ ଏଥିରେ ବିଶ୍ୱାସ ସ୍ଥାପନ କରିବା, ବିଶ୍ୱାସ କରିବା ପାଇଁ କୌଣସି ଖର୍ଚ୍ଚ ଲାଗେ ନାହିଁ । କିନ୍ତୁ କାହିଁକି ? ଏଥିରେ କୌଣସି ଲାଭ ମଧ୍ୟ ହୁଏ ନାହିଁ ! ଯଦି ମୁଁ ପଚାରେ, 'ଏଠାରେ ଏତେ ଅଧିକ ଲୋକ ଦୁଷ୍ଟ କାହିଁକି ?' ସେମାନେ କହନ୍ତି, 'ଆମମାନଙ୍କୁ ଆହୁରି ପରିଶ୍ରମ କରିବାକୁ ହେବ ।' ତା' ଅର୍ଥ, ଭଗବାନଙ୍କଠାରେ ବିଶ୍ୱାସ ରଖ, କିନ୍ତୁ ଗଣ୍ଡିଲ ଠିକ୍ ରଖ । ଭଗବାନଙ୍କ ପାଖରେ ପ୍ରାର୍ଥନା କର ଏବଂ ଭଗବାନ ଆସି ସାହାଯ୍ୟ କରନ୍ତୁ ! କିନ୍ତୁ ମୁଁ ସଂଗ୍ରାମ, ପ୍ରାର୍ଥନା ଏବଂ ପୂଜା କରେ; ମୁଁ ମୋର ସମସ୍ୟାସବୁ ସମାଧାନ କରିଥାଏ—ଆଉ ଭଗବାନ ନିଅନ୍ତି ତା'ର କୃତିତ୍ୱ । ଏହା ଭଲ ନୁହେଁ । ମୁଁ କେବେହେଲେ ତାହା କରେ ନାହିଁ ।

ଥରେ ମୁଁ ଗୋଟିଏ ଭୋଜିସଭାକୁ ନିମନ୍ତ୍ରିତ ହୋଇଥିଲି । ଗୃହକର୍ତ୍ତ୍ରୀ ମୋତେ ପ୍ରାର୍ଥନା କରିବାକୁ କହିଲେ । ମୁଁ କହିଲି, 'ମୁଁ ଅବଶ୍ୟ ଆପଣଙ୍କର କଲ୍ୟାଣ କାମନା କରିବ, ମହାଶୟା ! ଆପଣ ମୋର ଶୁଭେଚ୍ଛା ଓ ଧନ୍ୟବାଦ ଜାଣନ୍ତୁ ।' ମୁଁ ଯେତେବେଳେ କାମ କରେ, ମୁଁ ମୋ ପ୍ରତି କର୍ତ୍ତବ୍ୟ କରେ । ଯେହେତୁ ମୁଁ କଠୋର ପରିଶ୍ରମ କରିଅଛି ଏବଂ ବର୍ତ୍ତମାନ ଯାହା ମୋର ଅଛି ସେ ସମସ୍ତ ସ୍ୱୟଂ ଉପାର୍ଜ୍ଜନ କରିଅଛି—ସେଥିପାଇଁ ମୁଁ ଧନ୍ୟ ।

ତୁମେ ମଧ୍ୟ ସର୍ବଦା କଠୋର ପରିଶ୍ରମ କରୁଅଛ, ଅଥଚ ଧନ୍ୟବାଦ ଜଣାଉଛ ଅନ୍ୟଙ୍କୁ, କାରଣ ତୁମେ କୁସଂସ୍କାରାଚ୍ଛନ୍ନ । ତୁମେ ଗତ । ହଜାରେ ବର୍ଷର ପୁଞ୍ଜୀଭୂତ ଏହିସବୁ କୁସଂସ୍କାର ଚିରଦିନ ପାଇଁ ତ୍ୟାଗକର । ଧାର୍ମିକ ହେବା କଠୋର ସାଧନା-ସାପେକ୍ଷ । ସକଳ କୁସଂସ୍କାର ହିଁ ଜଡ଼ବାଦ-ପ୍ରସୂତ, କାରଣ ସେଗୁଡ଼ିକ କେବଳ ଦେହଜ୍ଞାନ ଉପରେ ପ୍ରତିଷ୍ଠିତ । ଆତ୍ମାର କୌଣସି କୁସଂସ୍କାର ନାହିଁ—ଏହା ଶରୀରର ବୃଥା ବାସନାଗୁଡ଼ିକଠାରୁ ବହୁ ଊର୍ଦ୍ଧ୍ୱରେ ।

କିନ୍ତୁ ଏହି ବୃଥା ବାସନାଗୁଡ଼ିକ ଚତୁର୍ଦ୍ଦିଗରେ ଏପରିକି ଅଧ୍ୟାତ୍ମ ରାଜ୍ୟରେ ମଧ୍ୟ ପ୍ରତିଫଳିତ । ମୁଁ କେତେଗୁଡ଼ିଏ ପ୍ରେତତତ୍ତ୍ୱ-ସଭାରେ ଯୋଗଦାନ କରିଅଛି । ଗୋଟିକରେ ଅବତୀର୍ଣ୍ଣ ହୋଇଥିଲେ ଜଣେ ମହିଳା । ସେ ମୋତେ କହିଲେ, 'ଆପଣଙ୍କ ମା ଓ ଜେଜେ-ବାପା ମୋ ନିକଟକୁ ଆସନ୍ତି ।' ସେ କହିଲେ, 'ସେମାନେ ତାଙ୍କୁ ନମସ୍କାର ଜଣାଇଛନ୍ତି ଓ ତାଙ୍କ ସହିତ କଥା କହୁଛନ୍ତି ।' କିନ୍ତୁ ମୋ ମା ବର୍ତ୍ତମାନ ଜୀବିତ । ମନୁଷ୍ୟ ଏହି କଥା

ଭାବିବାକୁ ଭଲପାଏ ଯେ, ମୃତ୍ୟୁ ପରେ ମଧ୍ୟ ସେମାନଙ୍କର ଆତ୍ମୀୟସ୍ୱଜନ ପୂର୍ବ ଆକୃତିରେ ବର୍ତ୍ତମାନ ଥାଆନ୍ତି । ପ୍ରେତତାତ୍ତ୍ୱିକଗଣ ସେମାନଙ୍କର କୁସଂସ୍କାରଗୁଡ଼ିକୁ ନେଇ ପ୍ରତାରଣା କରନ୍ତି । ଏକଥା ଜାଣିଲେ ମୁଁ ଦୁଃଖିତ ହେବି ଯେ, ମୋର ମୃତ ପିତା ବର୍ତ୍ତମାନ ପର୍ଯ୍ୟନ୍ତ ବି ତାଙ୍କର କ୍ଳେଦମୟ ଦେହଟି ପରିଧାନ କରି ରହିଅଛନ୍ତି । ପିତୃପୁରୁଷଗଣ ଅଦ୍ୟାବଧି ଜଡ଼ବସ୍ତୁରେ ଆବଦ୍ଧ ଅଛନ୍ତି, ଏ କଥା ଜାଣିପାରିଲେ ସାଧାରଣ ମନୁଷ୍ୟ ସାନ୍ତ୍ୱନା ପାଏ । ଅନ୍ୟ ଏକ ସ୍ଥାନରେ ଗୋଟିଏ ପ୍ରେତଚକ୍ରରେ ଯୀଶୁଙ୍କୁ ମୋ ସମ୍ମୁଖକୁ ଅଣା ହୋଇଥିଲା । ମୁଁ କହିଲି, 'ଭଗବାନ, ଆପଣଙ୍କର କୁଶଳ ତ ?' ଏହିସବୁ ବିଷୟରେ ମୁଁ ହତାଶ ବୋଧ କରେ । ଯଦି ସେହି ମହାନ୍ ଋଷିପୁରୁଷ ଅଦ୍ୟାପି ଏହି ଶରୀର ଧାରଣ କରି ରହିଥାଆନ୍ତି, ତେବେ ଆମମାନଙ୍କର—ହୀନ ପ୍ରାଣୀମାନଙ୍କର ଭାଗ୍ୟରେ କ'ଣ ଅଛି କିଏ ଜାଣେ ? ପ୍ରେତତାତ୍ତ୍ୱିକଗଣ ମୋତେ ଏହି ସକଳ ପୁରୁଷମାନଙ୍କ ମଧ୍ୟରୁ କାହାରିକୁ ସ୍ପର୍ଶ କରିବା ପାଇଁ ଅନୁମତି ଦେଲେ ନାହିଁ । ଯଦି ଏହା ସତ୍ୟ ମଧ୍ୟ ହୁଏ—ତଥାପି ମୁଁ ଏସବୁ ଚାହେଁ ନାହିଁ । ମୁଁ ଭାବେ ସାଧାରଣ ମନୁଷ୍ୟ ପ୍ରକୃତରେ ନାସ୍ତିକ !—କେବଳ ପଞ୍ଚ-ଇନ୍ଦ୍ରିୟର ଭୋଗସ୍ପୃହା ! ବର୍ତ୍ତମାନ ଯାହା ଅଛି ସେଥିରେ ତୃପ୍ତ ନ ହୋଇ ମୃତ୍ୟୁପରେ ମଧ୍ୟ ସେମାନେ ଏହି ଜିନିଷକୁ ହିଁ ଚାହାନ୍ତି !

ବେଦାନ୍ତର ଈଶ୍ୱର କଅଣ ? ସେ ତତ୍ତ୍ୱସ୍ୱରୂପ, ବ୍ୟକ୍ତି ନୁହନ୍ତି । ତୁମେ, ମୁଁ ଓ ସେମାନେ ସମସ୍ତେ ବ୍ୟଷ୍ଟି-ଈଶ୍ୱର । ଏହି ବିଶ୍ୱର ସୃଷ୍ଟି, ସ୍ଥିତି ଓ ପ୍ରଳୟର କର୍ତ୍ତା ଯେଉଁ ପରମେଶ୍ୱର, ସେ ଗୋଟିଏ ନୈର୍ବ୍ୟକ୍ତିକ ସତ୍ତା । ତୁମେ ଏବଂ ମୁଁ, ବିରାଡ଼ି, ମୂଷା, ସଇତାନ, ଭୂତ—ସବୁ ହିଁ ତାଙ୍କର ବ୍ୟଷ୍ଟି-ସତ୍ତା—ସମସ୍ତେ ବ୍ୟଷ୍ଟି-ଈଶ୍ୱର । ତୁମେ ବ୍ୟକ୍ତିଭାବାପନ୍ନ ଈଶ୍ୱରଙ୍କ ପୂଜା କରିବାକୁ ଇଚ୍ଛା କର; ତାହା କିନ୍ତୁ ତୁମର ସ୍ୱରୂପକୁ ହିଁ ପୂଜା କରିବା । ଯଦି ତୁମେମାନେ ମୋ ଉପଦେଶ ଗ୍ରହଣ କର, ତେବେ କେବେହେଲେ କୌଣସି ଗିର୍ଜାକୁ ଯାଅ ନାହିଁ । ବାହାରକୁ ଆସ, ଯାଅ ନିଜକୁ ଧୌତକର । ଯୁଗ ଯୁଗ ଧରି ଯେଉଁ କୁସଂସ୍କାର ତୁମକୁ ଜାବୁଡ଼ି ଧରିଛି, ଯେପର୍ଯ୍ୟନ୍ତ ତାହା ପରିଷ୍କୃତ ନ ହେଉଛି ସେପର୍ଯ୍ୟନ୍ତ ଥରକୁ ଥର ନିଜକୁ ଧୌତକର । ସମ୍ଭବତଃ, ତୁମେମାନେ ତାହା କରିବାକୁ ଇଚ୍ଛା କର ନାହିଁ—କାରଣ ଏ ଦେଶରେ ତୁମେମାନେ ବାରମ୍ବାର ସ୍ନାନ କର ନାହିଁ—ଏପରି କରିବା ଭାରତୀୟ ପ୍ରଥା, ଏହା ତୁମମାନଙ୍କ ସମାଜରେ ପ୍ରଚଳିତ ନୁହେଁ ।

ମୋତେ ବାରମ୍ବାର ବହୁଲୋକ ପ୍ରଶ୍ନ କରିଛନ୍ତି, 'ତୁମେ ଏତେ ହସ କାହିଁକି ଓ ଏତେ ଥଟ୍ଟା ବିଦ୍ରୂପ କର କାହିଁକି ?' କେବେ କେବେ ମଧ୍ୟ ମୁଁ ଖୁବ୍ ଗମ୍ଭୀର ହୋଇଯାଏ —ଯେତେବେଳେ ମୋର ଖୁବ୍ ପେଟର ଯନ୍ତ୍ରଣା ହୁଏ ! ଭଗବାନ ଆନନ୍ଦମୟ । ସେ ସକଳ ଅସ୍ତିତ୍ୱର ପଛରେ । ସେ ସକଳ ବସ୍ତୁର ମଙ୍ଗଳମୟ ସତ୍ତାସ୍ୱରୂପ । ତୁମେମାନେ ତାଙ୍କର ଅବତାର । ଏହା କିପରି ଗୌରବମୟ ! ଯେତେ ତୁମେ ତାଙ୍କର ସମୀପବର୍ତ୍ତୀ ହେବ, ତୁମର ଶୋକ ବା ଦୁଃଖଜନକ ଅବସ୍ଥା ସେତେ କମି ଆସିବ । ତାଙ୍କ ନିକଟରୁ ଯେତେ ଦୂରକୁ ଯିବ, ସେତେ ଦୁଃଖରେ ତୁମ ମୁଖ ଶୁଷ୍କ ହେବ । ତାଙ୍କୁ ଆମେ ଯେତେ ଅଧିକ ଜାଣିବା,

ସେତେ କ୍ଳେଶ ଅନ୍ତର୍ହିତ ହେବ । ଯଦି ଈଶ୍ୱରଙ୍କ ଇଚ୍ଛାରେ କେହି ଶୋକଗ୍ରସ୍ତ ହୁଏ, ତେବେ ଏପରି ଈଶ୍ୱରଙ୍କର ପ୍ରୟୋଜନ କ'ଣ ? ତାଙ୍କୁ ପ୍ରଶାନ୍ତ ମହାସାଗରବକ୍ଷକୁ ଫୋପାଡ଼ି ଦିଅ । ଆମେ ତାଙ୍କୁ ଚାହୁଁ ନା ।

କିନ୍ତୁ ଭଗବାନ ଅନାଦି ନିର୍ବିକାର ସତ୍ତା—ସେ ହିଁ ତ୍ରିକାଳରେ ଅବାଧିତ ସତ୍ୟ, ଅବ୍ୟୟ, ଶାଶ୍ୱତ ଓ ଅଭୟଦାତା ଏବଂ ତୁମେମାନେ ତାଙ୍କର ଅବତାର, ତାଙ୍କର ଅଭିବ୍ୟକ୍ତି । ଏହା ହିଁ ବେଦାନ୍ତର ଈଶ୍ୱର, ତାଙ୍କର ସ୍ୱର୍ଗ ସର୍ବତ୍ର ଅବସ୍ଥିତ । ଯେତେ ବ୍ୟଷ୍ଟି ଦେବତା ଅଛନ୍ତି, ସମସ୍ତେ ଏହି ସ୍ୱର୍ଗରେ ବାସ କରନ୍ତି । ତୁମେମାନେ ସମସ୍ତେ ତାହା । ମନ୍ଦିରରେ ପୁଷ୍ପାଞ୍ଜଳି ପ୍ରଦାନ ଓ ପ୍ରାର୍ଥନା ଦୂର ହେଉ ।

ତୁମେମାନେ କାହିଁକି ପ୍ରାର୍ଥନା କର ? ସ୍ୱର୍ଗକୁ ଯିବା ପାଇଁ, କୌଣସି ବସ୍ତୁର ଲାଭ ଆଶାରେ କିମ୍ବା ଅନ୍ୟ କେହି ବଞ୍ଚିତ ହେଉ—ଏଥିପାଇଁ ? 'ପ୍ରଭୁ, ମୁଁ ଆହୁରି ଖାଦ୍ୟ ଚାହେଁ ! ଅନ୍ୟମାନେ କ୍ଷୁଧାର୍ତ୍ତ ଥାଆନ୍ତୁ !' ଈଶ୍ୱର—ଯେ ସତ୍ୟସ୍ୱରୂପ, ଅନାଦି, ଅନନ୍ତ, ସଦା ଆନନ୍ଦମୟ ସତ୍ତା, ଯେଉଁଥିରେ କୌଣସି ଖଣ୍ଡ ନାହିଁ, ତ୍ରୁଟି ନାହିଁ, ଯେ ସଦାମୁକ୍ତ, ସଦାପୂତ, ସଦାପୂର୍ଣ୍ଣ—ତାଙ୍କ ସମ୍ବନ୍ଧରେ କିପରି ଧାରଣା ! ଆମେ ଆମର ଯେତେ ମାନବୀୟ ବୈଶିଷ୍ଟ୍ୟ, ବୃତ୍ତି ଓ ସଙ୍କୀର୍ଣ୍ଣତା ସବୁ ତାଙ୍କଠାରେ ଆରୋପିତ କରିଅଛୁ । ସେ ନିଶ୍ଚୟ ଆମମାନଙ୍କୁ ଖାଦ୍ୟ ଓ ବସନ ଯୋଗାଇବେ । କିନ୍ତୁ ବସ୍ତୁତଃ ଆମକୁ ହିଁ ଏସବୁ ଆମ ଲାଗି ଅର୍ଜନ କରିବାକୁ ହେବ । କେହି କେବେହେଲେ ଏଗୁଡ଼ିକ ଆମ ପାଇଁ କରିଦେବେ ନାହିଁ । ଏହା ହିଁ ଖାଣ୍ଟି ସତ୍ୟକଥା ।

କିନ୍ତୁ ତୁମେମାନେ ଏ ବିଷୟରେ ଖୁବ୍ କମ୍ ଭାବ । ତୁମେମାନେ ଭାବ, ଏପରି ଏକ ଭଗବାନ ଅଛନ୍ତି, ତୁମେମାନେ ଯାହାଙ୍କର ପ୍ରିୟପାତ୍ର, ଯିଏ ତୁମମାନଙ୍କର ପ୍ରାର୍ଥନାମାତ୍ରେ ହିଁ ତୁମମାନଙ୍କ ପାଇଁ କାମ କରିଦିଅନ୍ତି; ଅଥଚ ତୁମେମାନେ ତାଙ୍କ ନିକଟରେ ସକଳ ମନୁଷ୍ୟ, ସକଳ ପ୍ରାଣୀ ପାଇଁ କରୁଣା ପ୍ରାର୍ଥନା କର ନାହିଁ—ବରଂ କର କେବଳ ନିଜ ପାଇଁ, ତୁମର ନିଜସ୍ୱ ପରିବାର ପାଇଁ, ତୁମ ଜାତି ପାଇଁ । ଯେତେବେଳେ ହିନ୍ଦୁଗଣ ଖାଇବାକୁ ପାଆନ୍ତି ନାହିଁ—ସେତେବେଳେ ତୁମେମାନେ ତାଙ୍କ କଥା ଚିନ୍ତା କର ନାହିଁ, ସେତେବେଳେ ତୁମେମାନେ କଳ୍ପନା ମଧ୍ୟ କର ନାହିଁ ଯେ, ଖ୍ରୀଷ୍ଟାନମାନଙ୍କର ଯିଏ ଈଶ୍ୱର, ସେ ହିନ୍ଦୁମାନଙ୍କର ମଧ୍ୟ ଈଶ୍ୱର । ଆମମାନଙ୍କର ଈଶ୍ୱର ସମ୍ବନ୍ଧରେ ଧାରଣା, ଆମମାନଙ୍କର ପ୍ରାର୍ଥନା, ଆମର ପୂଜା ସବୁ କିଛି ଅବିଦ୍ୟା-ପ୍ରଭାବରେ ଆମର ନିଜ 'ଦେହ' ବିଷୟରେ ଭାବନା କରିବା ଭଳି ମୂର୍ଖତାଦ୍ୱାରା ବିଷାକ୍ତ ହୋଇଅଛି । ମୁଁ ଯାହା କହୁଛି, ତାହା ତୁମମାନଙ୍କୁ ଭଲ ନ ଲାଗି ପାରେ । ଆଜି ତୁମେମାନେ ମୋତେ ଅଭିଶାପ ଦେଇପାର । କିନ୍ତୁ କାଲି ତୁମେମାନେ ମୋତେ ଅଭିନନ୍ଦିତ କରିବ ନିଶ୍ଚୟ ।

ଆମେ ନିଶ୍ଚିତରୂପେ ଚିନ୍ତାଶୀଳ ହେବୁ । ଜନ୍ମମାତ୍ରେ ବେଦନାଦାୟକ । ଆମମାନଙ୍କୁ ଅବଶ୍ୟ ଜଡ଼ବାଦ ବାହାରକୁ ଆସିବାକୁ ପଡ଼ିବ । ଜଗନ୍ମାତା ହୁଏତ ଆମକୁ ତାଙ୍କର ରାଜ୍ୟ ବାହାରକୁ ଆସିବା ପାଇଁ ଦେବେ ନାହିଁ; ତାହା ହେଉ—କିନ୍ତୁ ଆମେ ନିଶ୍ଚୟ ଚେଷ୍ଟା

କରିଯିବ । ଏହି ସଂଗ୍ରାମ ହିଁ ତ ଈଶ୍ୱରଙ୍କର ପୂଜା, ଅବଶିଷ୍ଟ ଯାହା କିଛି ସବୁ ଗ୍ରାହ୍ୟାମାତ୍ର । ତୁମେ ହିଁ ବ୍ୟଷ୍ଟିଦେବତା । ବର୍ତ୍ତମାନ ମୁଁ ତୁମର ପୂଜା କରୁଅଛି । ଏହା ହିଁ ସର୍ବୋତ୍କୃଷ୍ଟ ପ୍ରାର୍ଥନା—ସମଗ୍ର ଜଗତର ପୂଜା କରିବା, ଅର୍ଥାତ୍ ଏହି ଭାବରେ ଜଗତର ସେବା କରିବା । ମୁଁ ଜାଣେ, ଏହା ଏକ ଉଚ୍ଚ ଭାବଭୂମିରେ ଅବସ୍ଥିତ; ଏହାକୁ ଉପାସନା କହିବା ସମୀଚୀନ ନୁହେଁ, କିନ୍ତୁ ଏହା ହିଁ ପୂଜା, ଏହା ହିଁ ସେବା ।

ଅସୀମ ଜ୍ଞାନ କର୍ମସାଧ୍ୟ ନୁହେଁ । ଜ୍ଞାନ ସର୍ବଦା ବିଦ୍ୟମାନ, ଅଜର ଓ ଅଜାତ । ସେ ଜଗଦୀଶ୍ୱର, ଜଗତର ପ୍ରଭୁ—ସମସ୍ତଙ୍କ ମଧ୍ୟରେ ବିରାଜିତ । ଏହି ଶରୀର ତାଙ୍କର ଏକମାତ୍ର ମନ୍ଦିର । ଏହି ମନ୍ଦିର ଚିରକାଳ ଥିଲା । ଏହି ଆୟତନରେ—ଶରୀରରେ ସେ ଅଧିଷ୍ଠିତ, ସେ ଆତ୍ମାର ଆତ୍ମା—ରାଜାଙ୍କର ରାଜା । ଆମେ ଏହା ନ ବୁଝି ତାଙ୍କର ପ୍ରସ୍ତର-ମୂର୍ତ୍ତି ବା ପ୍ରତିମା ଗଢ଼ୁ ଏବଂ ତା' ଉପରେ ମନ୍ଦିର ନିର୍ମାଣ କରୁ । ଭାରତରେ ଏହି ବେଦାନ୍ତତତ୍ତ୍ୱ ସବୁକାଳରେ ଅଛି; କିନ୍ତୁ ଭାରତ ଏହିସବୁ ମନ୍ଦିରରେ ପରିପୂର୍ଣ୍ଣ । ପୁଣି କେବଳ ମନ୍ଦିର ନୁହେଁ—ଅନେକ ଗୁହା ମଧ୍ୟ ଅଛି ଯେଉଁଠାରେ ବିଭିନ୍ନ ମୂର୍ତ୍ତି ରହିଅଛି । 'ମୂର୍ଖ ଗଙ୍ଗାତୀରରେ ବାସ କରି ଜଳ ନିମିତ୍ତ କୂପଖନନ କରେ !' ଆମେ ସବୁ ଏହିପରି ! ଈଶ୍ୱରଙ୍କ ମଧ୍ୟରେ ବାସକରି ମଧ୍ୟ ଆମେ ପ୍ରତିମା ଗଢ଼ୁ । ଆମେ ତାହାଙ୍କୁ ମୂର୍ତ୍ତିରେ ପ୍ରତିଫଳିତ ଦେଖିବାକୁ ଇଚ୍ଛା କରୁ—ଯଦିଓ ସର୍ବଦା ସେ ଆମର ଶରୀର-ମନ୍ଦିରରେ ବାସ କରୁଛନ୍ତି ! ଆମେ ସମସ୍ତେ ଉନ୍ମାଦ—ଏହା ହିଁ ବିରାଟ ଭ୍ରମ ।

ସବୁ ବସ୍ତୁକୁ ଭଗବାନ ବୋଲି ପୂଜାକର, ପ୍ରତ୍ୟେକ ଆକୃତି ହିଁ ତାଙ୍କର ମନ୍ଦିର । ଅବଶିଷ୍ଟ ସବୁ ପ୍ରତାରଣା, ଭ୍ରମ । ସର୍ବଦା ଅନ୍ତର୍ମୁଖୀ ହୁଅ, କେବେ ବହିର୍ମୁଖୀ ହୁଅ ନାହିଁ । ଏହିପରି ଈଶ୍ୱରଙ୍କ କଥା ହିଁ ବେଦାନ୍ତ ପ୍ରଚାର କରେ । ପ୍ରକୃତରେ ବେଦାନ୍ତରେ କୌଣସି ସମ୍ପ୍ରଦାୟ, ଧର୍ମ ବା ଜାତିବିଚାର ନାହିଁ । କିପରି ଏହି ଧର୍ମ ଭାରତର ଜାତୀୟ ଧର୍ମ ହୋଇପାରେ, ଯେଉଁଠାରେ ଶତ ଶତ ଜାତିବିଭାଗ ! ଯଦି କେହି ଅନ୍ୟର ଖାଦ୍ୟ ସ୍ପର୍ଶ କରେ, ତେବେ ସେ ଚିତ୍କାର କରି ଉଠିବ—'ପ୍ରଭୁ, ମୋତେ ରକ୍ଷାକର, ମୁଁ ଅପବିତ୍ର ହେଲି !' ପାଶ୍ଚାତ୍ୟ ଦେଶସମୂହ ପରିଦର୍ଶନ କରି ମୁଁ ଯେତେବେଳେ ଭାରତକୁ ଫେରିଗଲି, ସେତେବେଳେ ପାଶ୍ଚାତ୍ୟମାନଙ୍କ ସହିତ ମୋର ମିଳାମିଶା ଓ ମୁଁ ଯେହେତୁ ମତାନ୍ଧତାର ନିୟମାବଳୀ ଭଙ୍ଗ କରିଅଛି, ସେଥିପାଇଁ କେତେଜଣ ପ୍ରାଚୀନପନ୍ଥୀ ଖୁବ୍ ଆନ୍ଦୋଳନ କରିଥିଲେ । ପାଶ୍ଚାତ୍ୟରେ ମୋର ବେଦତତ୍ତ୍ୱ ପ୍ରଚାର କରିବାକୁ ସେମାନେ ସମର୍ଥନ କରିପାରି ନ ଥିଲେ ।

ଆମେ ଯଦି ସମସ୍ତେ ଆତ୍ମସ୍ୱରୂପ ଓ ଏକ, ତେବେ କିପରି ଧନୀ ଦରିଦ୍ର ପ୍ରତି, ବିଜ୍ଞ ଅଜ୍ଞପ୍ରତି ବିମୁଖ ହୋଇ ଚାଲିଯାଇପାରିବ ? ବେଦାନ୍ତର ଭାବକୁ ଗ୍ରହଣ ନ କଲେ ଧର୍ମ ଓ ସମାଜବ୍ୟବସ୍ଥା କିପରି ତିଷ୍ଠି ରହିପାରେ ? ଅଧିକସଂଖ୍ୟକ ଯଥାର୍ଥ ବିଜ୍ଞ ଲୋକ ପାଇବା ପାଇଁ ସହସ୍ର ସହସ୍ର ବର୍ଷ ଲାଗିବ । ମନୁଷ୍ୟଙ୍କୁ ନୂଆ ପଥ ଦେଖାଇବା—ମହତ୍ ଭାବ ଦେବା ଅତ୍ୟନ୍ତ କଠିନ କାର୍ଯ୍ୟ । ପୁରାତନ କୁସଂସ୍କାରଗୁଡ଼ିକୁ ଦୂର କରିବା ଆହୁରି କଠିନ । ସେଗୁଡ଼ିକ

ସହଜରେ ଲୋପ ହୁଏ ନାହିଁ । ଏତେ ଶିକ୍ଷା ସତ୍ତ୍ୱେ ପଣ୍ଡିତଗଣ ଅନ୍ଧକାରରେ ଭୟ ପାଆନ୍ତି—ଶୈଶବରେ ଶୁଣିଥିବା କାହାଣୀ ସେମାନଙ୍କ ମନକୁ ଆସେ ଏବଂ ସେମାନଙ୍କୁ ଭୟଗ୍ରସ୍ତ କରେ ।

'ବେଦ' ଶବ୍ଦର ଅର୍ଥ ଜ୍ଞାନ ଏବଂ ଏଥିରୁ 'ବେଦାନ୍ତ' ଶବ୍ଦଟି ଆସିଅଛି । ସବୁ ଜ୍ଞାନ ହିଁ ବେଦ, ଏହା ଅନନ୍ତ ଈଶ୍ୱରଙ୍କ ଭଳି ଅନନ୍ତ । ଜ୍ଞାନ କେହି ସୃଷ୍ଟି କରିପାରେ ନାହିଁ । ତୁମେମାନେ କ'ଣ କେବେ ଜ୍ଞାନ-ସୃଷ୍ଟି ହେବାର ଦେଖିଅଛ ? ଏହାକୁ ଆବିଷ୍କାର କରାଯାଏ—ଯାହା ଆବୃତ ଥିଲା, ତାହାକୁ ଅନାବୃତ କରାଯାଏ । ଜ୍ଞାନ ସର୍ବଦା ଅବସ୍ଥିତ, କାରଣ ଜ୍ଞାନ ହିଁ ସ୍ୱୟଂ ଈଶ୍ୱର । ଭୂତ, ଭବିଷ୍ୟତ ଓ ବର୍ତ୍ତମାନର ଜ୍ଞାନ—ସବୁ ଆମ ସମସ୍ତଙ୍କ ଭିତରେ ରହିଅଛି । ତାହାକୁ ଆମେ ଆବିଷ୍କାର କରୁ ଏହି ପର୍ଯ୍ୟନ୍ତ । ଜ୍ଞାନ ହିଁ ସାକ୍ଷାତ ଭଗବାନ । 'ବେଦ' ଏକ ମହଦାୟତନ ହସ୍ତଲିଖିତ ଗ୍ରନ୍ଥ । ଆମ ଦେଶରେ ଯିଏ ବେଦ ପାଠ କରନ୍ତି, ତାଙ୍କ ସମ୍ମୁଖରେ ଆମେ ନତଜାନୁ ହେଉ । ଅଥଚ ଯେଉଁ ବ୍ୟକ୍ତି ପଦାର୍ଥବିଦ୍ୟା ଅଧ୍ୟୟନ କରୁଅଛନ୍ତି ତାହାଙ୍କୁ ଆମେ ଗ୍ରାହ୍ୟ କରୁ ନାହିଁ । ଏହା କୁସଂସ୍କାର—ଆଦୌ ବେଦାନ୍ତର ମତ ନୁହେଁ—ଏହା ମଧ୍ୟ ଜଘନ୍ୟ ଜଡ଼ବାଦ । ଈଶ୍ୱରଙ୍କ ନିକଟରେ ସକଳ ଜ୍ଞାନ ହିଁ ପବିତ୍ର; ଜ୍ଞାନ ହିଁ ଈଶ୍ୱର । ଅନନ୍ତ ଜ୍ଞାନ ପରିପୂର୍ଣ୍ଣରୂପେ ସକଳ ମନୁଷ୍ୟଙ୍କ ମଧ୍ୟରେ ନିହିତ ଅଛି । ଯଦିଓ ତୁମେମାନେ ଅଜ୍ଞ ଭଳି ଦେଖାଯାଅ, କିନ୍ତୁ ତୁମେମାନେ ପ୍ରକୃତରେ ଅଜ୍ଞ ନୁହଁ । ତୁମେମାନେ ଭଗବାନଙ୍କ ଶରୀର—ତୁମେ ସମସ୍ତେ । ତୁମେମାନେ ସର୍ବଶକ୍ତିମାନ୍, ସର୍ବତ୍ର ଅବସ୍ଥିତ, ଦିବ୍ୟସତ୍ତାର ଅବତାର । ତୁମେମାନେ ମୋତେ ଉପହାସ କରିପାର, କିନ୍ତୁ ଦିନେ ସମୟ ଆସିବ, ଯେତେବେଳେ ତୁମେମାନେ ଏହା ବୁଝିପାରିବ, ଅବଶ୍ୟ ବୁଝିବ—କେହି ବାଦ୍ ଯିବେ ନାହିଁ ।

ଲକ୍ଷ୍ୟ କ'ଣ ? ଯାହା ମୁଁ କହୁଛି—ବେଦାନ୍ତ; ଏହା କୌଣସି ନୂତନ ଧର୍ମ ନୁହେଁ । ଖୁବ୍ ପୁରାତନ—ଈଶ୍ୱରଙ୍କ ଭଳି । ଏହି ଧର୍ମ ସ୍ଥାନ ବା କାଳଦ୍ୱାରା ସୀମିତ ନୁହେଁ—ଏହା ସର୍ବତ୍ର ବିରାଜିତ । ଏହି ସତ୍ୟ ସମସ୍ତେ ଜାଣନ୍ତି । ଆମେ ସମସ୍ତେ ଏହି ସତ୍ୟ ଅନ୍ୱେଷଣ କରୁଅଛୁ । ସମଗ୍ର ବିଶ୍ୱର ଏହି ଏକ ଗତି । ଏହା ବହିଃପ୍ରକୃତି କ୍ଷେତ୍ରରେ ମଧ୍ୟ ପ୍ରଯୋଜ୍ୟ । ପ୍ରତ୍ୟେକଟି ପରମାଣୁ ଏହି ଲକ୍ଷ୍ୟ ଦିଗରେ ପ୍ରବଳ ଗତିରେ ଧାବମାନ । ତୁମେ କଅଣ ମନେକର ଯେ, ଅନନ୍ତ ଶୁଦ୍ଧ ଏହି ଜୀବଗଣଙ୍କ ମଧ୍ୟରୁ କେହି ପରମ ସତ୍ୟ ଲାଭ ନ କରି ପଡ଼ି ରହିବ ? ସମସ୍ତେ ଲାଭ କରିବେ—ସମସ୍ତେ ଏକ ଲକ୍ଷ୍ୟ ଦିଗରେ, ଅନ୍ତର୍ନିହିତ ଦେବତ୍ୱର ଆବିଷ୍କାର କରିବା ପାଇଁ ଚାଲିଛନ୍ତି । ପାଗଳ, ଖୁଣୀ, କୁସଂସ୍କାରାଚ୍ଛନ୍ନ ମନୁଷ୍ୟ—ଯେଉଁ ମନୁଷ୍ୟ ବିଶ୍ୱରର ପ୍ରହସନରେ ଏ ଦେଶରେ ଶାସ୍ତି ପାଏ, ସମସ୍ତେ ଏକ ସତ୍ୟ ଦିଗକୁ ଅଗ୍ରସର ହେଉଛନ୍ତି । କେବଳ ମାତ୍ର ଯାହା ଆମେ ଅଜ୍ଞାନରେ କରୁଥିଲୁ, ତାହା ସଜ୍ଞାନରେ ଓ ଉତ୍ତମ ଭାବରେ କରିବା ଆମର କର୍ତ୍ତବ୍ୟ ।

ସକଳ ସତ୍ତାର ଐକ୍ୟବୋଧ ସମସ୍ତଙ୍କ ମଧ୍ୟରେ ପୂର୍ବରୁ ରହିଅଛି । ଏପର୍ଯ୍ୟନ୍ତ କେହି ତାହା ନ ନେଇ ଜନ୍ମି ନାହାନ୍ତି । ତୁମେମାନେ ଯେତେ ଅସ୍ୱୀକାର କର ନା କାହିଁକି, ଏହି

ବୋଧ କ୍ରମାଗତ ନିଜକୁ ପ୍ରକାଶ କରୁଛି । ମାନବୀୟ ପ୍ରେମ କ'ଣ ? ତାହା ଉଣା ଅଧିକେ ଏହି ଐକ୍ୟବୋଧର ସ୍ୱୀକୃତି । 'ମୁଁ ତୁମମାନଙ୍କ ସହିତ ଏକ—ମୋର ସ୍ତ୍ରୀ, ମୋର ପୁତ୍ର ଓ କନ୍ୟା, ମୋର ବନ୍ଧୁ ।' କେବଳ ତୁମେମାନେ ନ ଜାଣି ଏହି ଐକ୍ୟ ସମ୍ବନ୍ଧରେ ଦୃଢ଼ ଭାବରେ କହୁଅଛ । କେହି ପତି ପାଇଁ ପତିକୁ କେବେହେଲେ ଭଲ ପାଇ ନାହିଁ, କେବଳ ପତିର ଅନ୍ତରସ୍ଥ ଆତ୍ମା ପାଇଁ ପତିକୁ ଭଲପାଆନ୍ତି । ପତ୍ନୀ ଏହିଠାରେ ଐକ୍ୟର ସନ୍ଧାନ ପାଇଛି । ପତ୍ନୀ ମଧ୍ୟରେ ପତି ନିଜକୁ ଦେଖନ୍ତି—ସ୍ୱଭାବତଃ ଦେଖନ୍ତି, କିନ୍ତୁ ତାହା ସେ ଜ୍ଞାନତଃ, ସଚେତନ ଭାବରେ ଦେଖନ୍ତି ନାହିଁ ।

ସମଗ୍ର ବିଶ୍ୱ ଗୋଟିଏ ଅସ୍ତିତ୍ୱରେ ଗ୍ରଥିତ । ଏହା ବ୍ୟତୀତ ଅନ୍ୟ କିଛି ତିଷ୍ଠିପାରେ ନାହିଁ । ଅଭିନ୍ନତାରୁ ଆମେ ସମସ୍ତେ ବିଶ୍ୱାସ୍ତିତ୍ୱ ଦିଗକୁ ଗ୍ଭଲିଛୁ । ପରିବାରଗୁଡ଼ିକ ଗୋଷ୍ଠୀରେ, ଗୋଷ୍ଠୀଗୁଡ଼ିକ ଉପଜାତିରେ, ଉପଜାତିଗୁଡ଼ିକ ଜାତିରେ, ଜାତିଗୁଡ଼ିକ ମାନବତ୍ୱରେ ବିଭିନ୍ନ ମତ—ସମସ୍ତେ ଏକତ୍ୱ ଦିଗକୁ ଗ୍ଭଲିଛନ୍ତି । ଏହି ଏକତ୍ୱର ଅନୁଭୂତି ହିଁ ଜ୍ଞାନ-ବିଜ୍ଞାନ ।

ଐକ୍ୟ ହିଁ ଜ୍ଞାନ, ବିଭିନ୍ନତା ହିଁ ଅଜ୍ଞାନ । ଏହି ଜ୍ଞାନରେ ତୁମର ଜନ୍ମଗତ ଅଧିକାର । ତୁମମାନଙ୍କୁ ଏହି ତତ୍ତ୍ୱ ଶିଖାଇବାକୁ ହେବ ନାହିଁ । ବିଭିନ୍ନ ଧର୍ମ ଏ ଜଗତରେ କେବେ ନ ଥିଲ । ଆମେ ମୁକ୍ତି ଆକାଙ୍‌କ୍ଷା କରୁ ବା ନ କରୁ, ଆମେ ମୁକ୍ତି ନିଶ୍ଚୟ ଲାଭ କରିବୁ—ଏହା ଆମର ନିୟତି । ଯେହେତୁ ତୁମେମାନେ ମୁକ୍ତସ୍ୱଭାବ, ଏ ଅବସ୍ଥା ତୁମମାନଙ୍କୁ ଲାଭ କରିବାକୁ ହିଁ ହେବ । ଆମେ ମୁକ୍ତ, କେବଳ ଏହା ଆମକୁ ଜଣା ନାହିଁ । ଆମେ ବର୍ତ୍ତମାନ କ'ଣ କରୁଛୁ ତାହା ମଧ୍ୟ ଆମର ଜଣା ନାହିଁ । ସବୁ ଧର୍ମସମ୍ପ୍ରଦାୟ ଓ ଆଦର୍ଶରେ ଗୋଟିଏ ନୀତି ବିଦ୍ୟମାନ; କେବଳ ଗୋଟିଏ କଥା ହିଁ ପ୍ରଗ୍ଭରିତ ହୋଇଅଛି—'ନିଃସ୍ୱାର୍ଥ ହୁଅ, ଅନ୍ୟକୁ ଭଲପାଅ ।' କେହି କହୁଛନ୍ତି, 'କାରଣ, ଜିହୋଭା ଆଦେଶ କରିଛନ୍ତି ।' 'ଆଲ୍ଲାହ୍'—ମୁସଲିମ୍ କହିବେ । ଅନ୍ୟମାନେ କହିବେ—'ଯୀଶୁ' । ଯଦି ଏହା କେବଳ ଜିହୋଭାଙ୍କର ଆଦେଶ, ତେବେ ଯେଉଁମାନେ ଜିହୋଭାଙ୍କୁ ଜାଣନ୍ତି ନାହିଁ, ସେମାନଙ୍କ ନିକଟକୁ ଏହା କିପରି ଆସିଲ ? ଯଦି ଯୀଶୁ ହିଁ କେବଳ ଏହି ଆଦେଶ ଦେଇଥାଆନ୍ତି, ତା'ହେଲେ ଯେଉଁ ବ୍ୟକ୍ତି ଯୀଶୁଙ୍କୁ ଜାଣନ୍ତି ନାହିଁ, ସେ କିପରି ଏହା ପାଇଲେ ? ଯଦି ବିଷ୍ଣୁ ହିଁ କେବଳ ଏହି ଆଦେଶ ଦେଇଥାଆନ୍ତି, ତେବେ ଇହୁଦିଗଣ, ଯେଉଁମାନେ ତାଙ୍କ ସହିତ କେବେ ପରିଚିତ ନୁହନ୍ତି, କିପରି ତାହା ପାଇଲେ ? ଅତଏବ ଏହାଠାରୁ ମହତ୍ତର ଆଉ ଗୋଟିଏ ଉତ୍ସ ଅଛି । ତାହା କେଉଁଠି ? ତାହା ଭଗବାନଙ୍କର ସନାତନ ମନ୍ଦିରରେ—ନିମ୍ନତମରୁ ଆରମ୍ଭ କରି ଉଚ୍ଚତମ ସକଳ ପ୍ରାଣୀଙ୍କ ଅନ୍ତରାତ୍ମାରେ ଏହି ତତ୍ତ୍ୱ ନିହିତ । ସେହି ଅନନ୍ତ ନିଃସ୍ୱାର୍ଥତା, ସେହି ଅନନ୍ତ ଆତ୍ମୋତ୍ସର୍ଗ, ଐକ୍ୟ ଦିଗକୁ ଫେରିଯିବାର ସେହି ଅନନ୍ତ ପ୍ରେରଣା—ଏ ସମସ୍ତ ସେହିଠାରେ ରହିଅଛି ।

ଅବିଦ୍ୟା ଅଜ୍ଞାନ ହେତୁ ଆମେ ଖଣ୍ଡିତ, ସୀମିତ ବୋଲି ପ୍ରତୀୟମାନ ହେଉଛୁ ଏବଂ ଆମେ ସେଥିପାଇଁ କ୍ଷୁଦ୍ର କ୍ଷୁଦ୍ର ବ୍ୟକ୍ତିରେ ପରିଣତ ହୋଇଛୁ । କିନ୍ତୁ ସମଗ୍ର ପ୍ରକୃତି ପ୍ରତି-ମୁହୂର୍ତ୍ତରେ ଏହି ଭ୍ରମ—ଏହି ମିଥ୍ୟା ପ୍ରତୀତି ଜାତ କରୁଅଛି । ମୁଁ ସବୁକିଛିରୁ ବିଚ୍ଛିନ୍ନ ଜଣେ କ୍ଷୁଦ୍ର ପୁରୁଷ ବା କ୍ଷୁଦ୍ର ନାରୀ ନୁହେଁ, ମୁଁ ଏକ ବିଶ୍ୱବ୍ୟାପୀ ଅସ୍ତିତ୍ୱ । ଆତ୍ମା ପ୍ରତି ମୁହୂର୍ତ୍ତରେ

ସ୍ୱମହିମାରେ ଉନ୍ନୀତ ହେଉଅଛୁ ଏବଂ ଏହାର ଅନ୍ତର୍ନିହିତ ଦେବତ୍ୱ ଘୋଷଣା କରୁଅଛୁ ।

ବେଦାନ୍ତ ସମ୍ବନ୍ଧ ବିଦ୍ୟମାନ, କେବଳ ତୁମମାନଙ୍କୁ ସଚେତନ ହେବାକୁ ହେବ । ପୁଞ୍ଜୀକୃତ ଅନ୍ଧ ବିଶ୍ୱାସ ଏବଂ କୁସଂସ୍କାରଗୁଡ଼ିକ ଆମ ଅଗ୍ରଗତିର ବାଧାସ୍ୱରୂପ । ଯଦି ଆମେ ସକ୍ଷମ ହେଉ, ତେବେ ଆସ, ଆମେମାନେ ଏସବୁକୁ ଦୂର କରିଦେବା ଏବଂ ଧାରଣା କରିବାକୁ ଶିଖିବା ଯେ, ଈଶ୍ୱର ଚେତନାସ୍ୱରୂପ ଏବଂ ତାଙ୍କର ପୂଜା ଜ୍ଞାନ ଓ ସତ୍ୟ ମଧ୍ୟଦେଇ କରିବାକୁ ହୁଏ । ଜଡ଼ବାଦୀ ହେବା ପାଇଁ କେବେ ସଚେଷ୍ଟ ହୁଅ ନାହିଁ । ସବୁ ଜଡ଼କୁ ଫୋପାଡ଼ି ଦିଅ, ତେବେ ଈଶ୍ୱରଙ୍କ କଳ୍ପନା ଯଥାର୍ଥ ଆଧ୍ୟାତ୍ମିକ ହେବ । ଈଶ୍ୱରଙ୍କ ସମ୍ବନ୍ଧରେ ବିଭିନ୍ନ ଧାରଣା ଉଣା-ଅଧିକେ ଜଡ଼ବାଦଯୁକ୍ତ—ଏଗୁଡ଼ିକୁ ଦୂର କରିବାକୁ ହେବ । ମନୁଷ୍ୟ ଯେତେ ଅଧିକ ଆଧ୍ୟାତ୍ମିକ ହୁଏ, ସେତେ ଏହି ସକଳ ଭାବ ପରିତ୍ୟାଗ କରେ ଏବଂ ଏଗୁଡ଼ିକୁ ପଶ୍ଚାତ୍ତରେ ରଖି ଆଗେଇ ଯାଏ । ବସ୍ତୁତଃ ପ୍ରତ୍ୟେକ ଦେଶରେ ଏପରି କେତେଜଣ ଲୋକ ସର୍ବଦା ଆସିଛନ୍ତି, ଯେଉଁମାନେ ଏହିସବୁ ଜଡ଼ବାଦକୁ ତ୍ୟାଗ କରିବାର ଶକ୍ତି ରଖନ୍ତି ଏବଂ ପ୍ରଖର ଦିବାଲୋକରେ ଦଣ୍ଡାୟମାନ ହୋଇ ଜ୍ଞାନସ୍ୱରୂପଙ୍କୁ ଜ୍ଞାନଦ୍ୱାରା ହିଁ ଉପାସନା କରିଯାଇଛନ୍ତି ।

ସବୁ ହିଁ ଆତ୍ମା—ବେଦାନ୍ତର ଏହି ଜ୍ଞାନ ଯଦି ପ୍ରଚ୍ଚରିତ ହୁଏ, ତା'ହେଲେ ସମଗ୍ର ମନୁଷ୍ୟସମାଜ ଅଧ୍ୟାତ୍ମଭାବରେ ଭାବିତ ହେବ । କିନ୍ତୁ ତାହା କ'ଣ ସମ୍ଭବ ? ମୁଁ ଜାଣେ ନାହିଁ, ସହସ୍ର ବର୍ଷରେ ମଧ୍ୟ ତାହା ହେବ ନାହିଁ । ପୁରୁଣା ସଂସ୍କାରଗୁଡ଼ିକ ସବୁ ଦୂରୀଭୂତ ହେବ । କିନ୍ତୁ ତୁମେ ସମସ୍ତେ ପୁରୁଣା ସଂସ୍କାରଗୁଡ଼ିକୁ ସ୍ଥାୟୀ କରିବାରେ ବ୍ୟସ୍ତ । ପୁଣି ପାରିବାରିକ ଭ୍ରାତୃତ୍ୱ, ଗୋଷ୍ଠୀଗତ ଭ୍ରାତୃତ୍ୱ, ଜାତିଗତ ଭ୍ରାତୃତ୍ୱ—ଏହିସବୁ ଭାବ ମଧ୍ୟ ରହିଛି । ଏସବୁ ବେଦାନ୍ତ ଉପଲବ୍ଧିର ବାଧାସ୍ୱରୂପ । ଧର୍ମ ସାମାନ୍ୟ କେତେଜଣଙ୍କ ନିକଟରେ ସତ୍ୟ ।

ସମଗ୍ର ପୃଥିବୀରେ ଧର୍ମ ପାଇଁ ଯେଉଁମାନେ କର୍ମ କରିଛନ୍ତି, ସେମାନଙ୍କ ମଧ୍ୟରୁ ଅଧିକାଂଶ ପ୍ରକୃତରେ ରାଜନୈତିକ କର୍ମୀ । ଏହା ହିଁ ମନୁଷ୍ୟର ଇତିହାସ । ସେମାନେ କଦାଚିତ୍ ସତ୍ୟରେ ପ୍ରତିଷ୍ଠିତ ଜୀବନଧାରଣ ପାଇଁ ଚେଷ୍ଟା କରିଛନ୍ତି । ସେମାନେ ସର୍ବଦା ସମାଜ ନାମକ ଈଶ୍ୱରଙ୍କର ପୂଜକ, ସେମାନେ ଅଧିକାଂଶ କ୍ଷେତ୍ରରେ ଜନସାଧାରଣଙ୍କ ବିଶ୍ୱାସ—ସେମାନଙ୍କର କୁସଂସ୍କାର, ସେମାନଙ୍କର ଦୁର୍ବଳତାକୁ ଊର୍ଦ୍ଧ୍ୱରେ ରଖିବା ପାଇଁ ଆଗ୍ରହଶୀଳ ଥିଲେ । ସେମାନେ ପ୍ରକୃତରେ ଜୟ କରିବା ପାଇଁ ଚେଷ୍ଟା କରିନାହାନ୍ତି, ନିଜକୁ ପ୍ରକୃତିର ଅନୁକୂଳ କରିଛନ୍ତି—ଅଧିକ କିଛି ନୁହେଁ । ଭାରତକୁ ଯାଇ ନୂଆ ଧର୍ମମତ ପ୍ରଚ୍ଚାର କର—କେହି ତୁମ କଥା ଶୁଣିବେ ନାହିଁ । କିନ୍ତୁ ଯଦି କୁହ ଯେ, ବେଦରୁ ଏହି ମତ ପ୍ରାପ୍ତ ହୋଇଛି, ସେମାନେ କହିବେ—'ଭଲ କଥା' । ଏଠାରେ ମୁଁ ଏହି ମତବାଦ ପ୍ରଚ୍ଚାର କରିପାରେ । କିନ୍ତୁ ତୁମେମାନେ—ତୁମମାନଙ୍କ ମଧ୍ୟରୁ କେତେଜଣ ମୋ କଥା ଆନ୍ତରିକ ଭାବେ ଗ୍ରହଣ କରିବ ? କିନ୍ତୁ ଏହା ହିଁ ବାସ୍ତବିକ ସତ୍ୟ ଏବଂ ମୁଁ ତୁମମାନଙ୍କୁ ସତ କଥା ହିଁ କହିବି ।

ଏହି ପ୍ରଶ୍ନର ଅନ୍ୟ ଗୋଟିଏ ଦିଗ ମଧ୍ୟ ଅଛି । ସମସ୍ତେ କହନ୍ତି, ଚରମ ବିଶୁଦ୍ଧ ସତ୍ୟର ଉପଲବ୍ଧି ହଠାତ୍ ଆସିପାରେ ନାହିଁ ଏବଂ ପୂଜା ପ୍ରାର୍ଥନା ଓ ଅନ୍ୟାନ୍ୟ ପ୍ରାସଙ୍ଗିକ

ଧର୍ମୀୟ ସାଧନାର ପଥରେ ମନୁଷ୍ୟଙ୍କୁ ଧୀରେ ଧୀରେ ଆଗେଇ ଯିବାକୁ ହେବ । ଏହା ଠିକ୍ ପଥ କି ନୁହେଁ, ତାହା ମୁଁ ନିଶ୍ଚିତ୍ତ କହିପାରିବି ନାହିଁ । ଭାରତରେ ମୁଁ ଉଭୟ ପଥକୁ ଗ୍ରହଣ କରେ ।

କଲିକତାରେ ଆମର ଏହିସବୁ ପ୍ରତିମା ଓ ମନ୍ଦିର ରହିଛି—ଈଶ୍ୱର ଓ ବେଦର ନାମରେ, ବାଇବେଲ ଏବଂ ଯୀଶୁ ଓ ବୁଦ୍ଧଙ୍କ ନାମରେ । ଚେଷ୍ଟା ଚାଲୁ । କିନ୍ତୁ ହିମାଳୟରେ ମୋର ଗୋଟିଏ ସ୍ଥାନ ଅଛି, ଯେଉଁଠାରେ ବିଶୁଦ୍ଧ ସତ୍ୟ ବ୍ୟତୀତ ଅନ୍ୟ କିଛିର ପ୍ରବେଶାଧିକାର ରହିବ ନାହିଁ—ମୁଁ ଏହିପରି ମନସ୍ଥ କରିଅଛି । ସେହିଠାରେ ତୁମମାନଙ୍କୁ ମୁଁ ଆଜି ଯେଉଁ ଭାବର କଥା କହିଲି, ତାହା କାର୍ଯ୍ୟରେ ପରିଣତ କରିବାକୁ ଚାହେଁ । ଗୋଟିଏ ଇଂରେଜଦମ୍ପତି ଏହି ଦାୟିତ୍ୱରେ ରହିଛନ୍ତି । ଉଦ୍ଦେଶ୍ୟ—ସତ୍ୟାନୁସନ୍ଧିତ୍ସୁମାନଙ୍କୁ ଶିକ୍ଷିତ କରିବା ଏବଂ ବାଳକବାଳିକାଗଣଙ୍କୁ ଭୟହୀନ ଓ କୁସଂସ୍କାରହୀନ କରି ଗଢ଼ି ତୋଳିବା । ସେମାନେ ଯୀଶୁ, ବୁଦ୍ଧ, ଶିବ, ବିଷ୍ଣୁ ଇତ୍ୟାଦି କାହାରି କଥା ଶୁଣିବେ ନାହିଁ । ସେମାନେ ପ୍ରଥମରୁ ସ୍ୱାବଲମ୍ବୀ ହେବେ । ସେମାନେ ବାଲ୍ୟକାଳରୁ ଶିଖିବେ, ଈଶ୍ୱର ହିଁ ଚେତନସ୍ୱରୂପ ଏବଂ ତାଙ୍କର ପୂଜା ସତ୍ୟ ଓ ଜ୍ଞାନଦ୍ୱାରା କରିବାକୁ ହୁଏ । ସବୁକିଛିକୁ ଚେତନରୂପେ ଦେଖିବାକୁ ହେବ—ଏହା ହିଁ ଆଦର୍ଶ । ମୁଁ ଜାଣେ ନାହିଁ, ଏହାର କଅଣ ଫଳ ହେବ । ମୋର ମନେହେଉଛି, ସେହିପରି ପ୍ରଚାର କରୁଛି । ମୋର ମନେହେଉଛି, ଯେପରିକି ଦ୍ୱୈତ ସଂସ୍କାରମୁକ୍ତ ମୁଁ ସମ୍ପୂର୍ଣ୍ଣ ଏହି ଭାବରେ ହିଁ ଶିକ୍ଷିତ ହୋଇଥିଲି । ଦ୍ୱୈତବାଦକୁ ଆଶ୍ରୟ କରି କିଛି ଲାଭ ହୋଇପାରେ—ଏପରି କଥା ମୁଁ କେବେ କେବେ କହିଥାଏ । ତା'ର କାରଣ ଏହା ଦୁର୍ବଳ ବ୍ୟକ୍ତିକୁ ସାହାଯ୍ୟ କରେ । ଯଦି ତୁମକୁ କେହି ଧ୍ରୁବତାରା ଦେଖାଇବାକୁ କହେ, ତେବେ ପ୍ରଥମେ ତୁମେ ତାହାକୁ ଧ୍ରୁବତାରାର ନିକଟବର୍ତ୍ତୀ କୌଣସି ଉଜ୍ଜ୍ୱଳ ତାରକା ଦେଖାଇଥାଅ, ତା'ପରେ ଗୋଟିଏ ଅନତିଉଜ୍ଜ୍ୱଳ ତାରକା, ତା'ପରେ ଗୋଟିଏ କ୍ଷୀଣପ୍ରଭ ତାରକା ଏବଂ ପରିଶେଷରେ ଧ୍ରୁବତାରା । ଏହି ଭାବରେ ତା' ପକ୍ଷରେ ଧ୍ରୁବତାରା ଦେଖିବା ସହଜ ହୁଏ । ଏହିସବୁ ବିଭିନ୍ନ ଉପାସନା ଓ ସାଧନା, ବାଇବେଲଜାତୀୟ ଗ୍ରନ୍ଥ ଓ ଦେବତାମାନେ ଧର୍ମର ପ୍ରାଥମିକ ସୋପାନ—ଧର୍ମର କିଣ୍ଡରଗାର୍ଟେନ ମାତ୍ର ।

କିନ୍ତୁ ଏହାର ଅନ୍ୟ ଗୋଟିଏ ଦିଗ ମଧ୍ୟ ଅଛି । ଯଦି ଏହି ମନ୍ଥର ଓ କ୍ରମିକ ପଦ୍ଧତି ଅନୁସରଣ କର, ତେବେ ଜଗତରେ ଏହି ସତ୍ୟ ପହଞ୍ଚାଇବା ପାଇଁ କେତେଦିନ ଲାଗିବ ? ପୁଣି ଏହା ଯେ ଆଶାନୁରୂପ ସାଫଲ୍ୟ ଲାଭ କରିବ, ତା'ର ମଧ୍ୟ ନିଶ୍ଚୟତା କଅଣ ? ଏପର୍ଯ୍ୟନ୍ତ ତାହା ହୋଇ ନାହିଁ । ଦୁର୍ବଳମାନଙ୍କ ପକ୍ଷରେ କ୍ରମିକ ଅଥବା ଅକ୍ରମିକ, ସହଜ ଅଥବା କଠିନ, ଯାହା ହେଉନା କାହିଁକି—ଦ୍ୱୈତବାଦ-ସମ୍ମତ ସାଧନ କ'ଣ ମିଥ୍ୟାଭିତ୍ତିକ ନୁହେଁ ? ପ୍ରଚଳିତ ଧର୍ମୀୟ ସାଧନଗୁଡ଼ିକ ମନୁଷ୍ୟଙ୍କୁ ଦୁର୍ବଳ କରିଛି, ସୁତରାଂ ସେଗୁଡ଼ିକ କ'ଣ ଭୁଲ ନୁହେଁ ? ଏଗୁଡ଼ିକ ଭ୍ରାନ୍ତ ଧାରଣା ଉପରେ ପ୍ରତିଷ୍ଠିତ—ମନୁଷ୍ୟର ଭ୍ରାନ୍ତ ଦୃଷ୍ଟିଭଙ୍ଗୀ ଉପରେ । ଦୁଇଟି ଭ୍ରାନ୍ତି କ'ଣ ଗୋଟିଏ ସତ୍ୟ ସୃଷ୍ଟି କରିପାରେ ? ମିଥ୍ୟା କ'ଣ ସତ୍ୟ ହୁଏ ? ଅନ୍ଧକାର କ'ଣ ଆଲୋକରେ ପରିଣତ ହୁଏ ?

ମୁଁ ଜଣେ ମହାମାନବଙ୍କର କ୍ରୀତଦାସ—ସେ ଦେହତ୍ୟାଗ କରିଛନ୍ତି । ମୁଁ କେବଳ ତାଙ୍କର ବାର୍ତ୍ତାବହ; ମୁଁ ପରୀକ୍ଷା କରିବାକୁ ଚାହେଁ । ବେଦାନ୍ତର ଯେଉଁ ସତ୍ୟଗୁଡ଼ିକ ତୁମମାନଙ୍କୁ କହିଲି, ସେ ବିଷୟରେ ଇତିପୂର୍ବେ କେହି ଗବେଷଣା କରି ନାହିଁ । ଯଦିଓ ବେଦାନ୍ତ ପୃଥିବୀର ପ୍ରାଚୀନତମ ଦର୍ଶନ—ଏହା ସର୍ବଦା ହିଁ କୁସଂସ୍କାର ଓ ଅନ୍ୟାନ୍ୟ ଧାରଣା ସହିତ ମିଶ୍ରିତ ଥିଲା ।.

ଯୀଶୁ କହିଥିଲେ, 'ମୁଁ ଓ ମୋର ସ୍ୱର୍ଗସ୍ଥ ପିତା ଏକ' ଏବଂ ତୁମେମାନେ ତା'ର ପୁନରାବୃତ୍ତି କର । ତଥାପି ଏହା ମାନବସମାଜକୁ ସାହାଯ୍ୟ କରେ ନାହିଁ । ଊଣେଇଶ ଶହ ବର୍ଷ ଧରି ମନୁଷ୍ୟ ଏହି ବାଣୀ ବୁଝିପାରି ନାହିଁ । ସେମାନେ ଯୀଶୁଙ୍କୁ ମାନବର ପରିତ୍ରାତା ବୋଲି କହନ୍ତି । ସେ ଯଦି ଈଶ୍ୱର, ତେବେ ଆମେ କ'ଣ କୀଟ ? ଭାରତବର୍ଷରେ ଓ ପ୍ରତ୍ୟେକ ଦେଶରେ ଏହି ଧରଣର ବିଶ୍ୱାସ ହିଁ ସମ୍ପ୍ରଦାୟ ସୃଷ୍ଟି କରିଅଛି ।

ହଜାର ହଜାର ବର୍ଷ ଧରି ସମଗ୍ର ପୃଥିବୀରେ ଲକ୍ଷ ଲକ୍ଷ ମନୁଷ୍ୟଙ୍କୁ ଶିକ୍ଷା ଦିଆଯାଇଛି—ଜଗତ୍‌ପ୍ରଭୁ, ଅବତାର, ପରିତ୍ରାତା ଓ ପ୍ରେରିତ ପୁରୁଷଗଣଙ୍କୁ ପୂଜା କରିବାକୁ ହେବ; ତାଙ୍କୁ କୁହାଯାଇଛି—ସେମାନେ ଅସହାୟ, ହତଭାଗ୍ୟ ଜୀବ; ମୁକ୍ତି ପାଇଁ କୌଣସି ବ୍ୟକ୍ତି ବା ବ୍ୟକ୍ତିଗୋଷ୍ଠୀଙ୍କ ଦୟା ଉପରେ ନିର୍ଭର କରିବାକୁ ହେବ । ଏହିପରି ବିଶ୍ୱାସରେ ଅନେକ ଅଦ୍ଭୁତ ଘଟଣା ଘଟିପାରେ । ତଥାପି ସର୍ବୋତ୍କୃଷ୍ଟ ଅବସ୍ଥାର ତୁଳନାରେ ଏହି ପ୍ରକାର ବିଶ୍ୱାସ ଧର୍ମର କିଣ୍ଡରଗାର୍ଟେନ୍ । ଏଗୁଡ଼ିକ ମନୁଷ୍ୟକୁ ଅତି ଅଳ୍ପ ସାହାଯ୍ୟ କରିଥାଏ ବା କିଛି ନୁହେଁ । ମନୁଷ୍ୟ ବର୍ତ୍ତମାନ ମଧ୍ୟ ଅଧଃପତନର ଗହ୍ୱରରେ ମୋହାବିଷ୍ଟ ହୋଇ ପଡ଼ିରହିଛି । ଅବଶ୍ୟ କେତେଜଣ ଶକ୍ତିଶାଳୀ ମନୁଷ୍ୟ ଏହି ମାୟାର ଭ୍ରମ ଅତିକ୍ରମ କରିଯାଆନ୍ତି ।

ସମୟ ଆସୁଛି—ଯେତେବେଳେ ମହାମାନବଗଣ ଜାଗି ଉଠିବେ ଏବଂ ଧର୍ମର ଏହି ଶିଶୁଶିକ୍ଷାର ପଦ୍ଧତି ତ୍ୟାଗକରି ସେମାନେ ଆତ୍ମାଦ୍ୱାରା ଆତ୍ମାର ଉପାସନା-ରୂପକ ସତ୍ୟଧର୍ମକୁ ଜୀବନ୍ତ ଓ ଶକ୍ତିଶାଳୀ କରିତୋଳିବେ ।

# ମନୋବିଜ୍ଞାନର ଗୁରୁତ୍ୱ

ପାଶ୍ଚାତ୍ୟ ମନୋବିଜ୍ଞାନର ଧାରଣା ଅତି ନିମ୍ନସ୍ତରର । ଏହା ଗୋଟିଏ ଶ୍ରେଷ୍ଠ ବିଜ୍ଞାନ, କିନ୍ତୁ ପାଶ୍ଚାତ୍ୟ ଦେଶରେ ଏହାକୁ ଅନ୍ୟାନ୍ୟ ବିଜ୍ଞାନର ସମପର୍ଯ୍ୟାୟଭୁକ୍ତ କରା-ହୋଇଛି—ଅର୍ଥାତ୍ ଅନ୍ୟାନ୍ୟ ବିଜ୍ଞାନ ପରି ଏହାକୁ ମଧ୍ୟ ଉପଯୋଗିତାର ମାପକାଠିଦ୍ୱାରା ବିଚାର କରାଯାଏ । କାର୍ଯ୍ୟତଃ ମାନବସମାଜର ଉପକାର ଏହାଦ୍ୱାରା କେତେଦୂର ସାଧିତ ହେବ ? ଆମମାନଙ୍କର କ୍ରମବର୍ଦ୍ଧମାନ ସୁଖ ଏହାର ମାଧ୍ୟମରେ କେତେଦୂର ବର୍ଦ୍ଧିତ ହେବ ? ଯେଉଁସବୁ ଦୁଃଖ-ବେଦନାରେ ଆମେମାନେ ସର୍ବଦା ପୀଡ଼ିତ ହେଉଅଛୁ, ସେସବୁ ଏହାଦ୍ୱାରା କେତେ ମାତ୍ରାରେ ପ୍ରଶମିତ ହେବ ? ପାଶ୍ଚାତ୍ୟ ଦେଶରେ ସବୁ ଜିନିଷ ଏହି ମାପକାଠିଦ୍ୱାରା ବିଚାର କରାହୁଏ ।

ମନୁଷ୍ୟ ସମ୍ଭବତଃ ଭୁଲିଯାଏ ଯେ, ଆମମାନଙ୍କର ଜ୍ଞାନର ଶତକଡ଼ା ନବେ ଭାଗ ସ୍ୱଭାବତଃ ମନୁଷ୍ୟର ପାର୍ଥିବ ସୁଖଦୁଃଖର ହ୍ରାସବୃଦ୍ଧି ଉପରେ କୌଣସି ଉପଯୁକ୍ତ ପ୍ରଭାବ ବିସ୍ତାର କରିପାରେ ନାହିଁ । ଆମମାନଙ୍କର ବୈଜ୍ଞାନିକ ଜ୍ଞାନର ଅତି ସାମାନ୍ୟ ଅଂଶମାତ୍ର ଦୈନନ୍ଦିନ ଜୀବନରେ ପ୍ରଯୁକ୍ତ ହୁଏ । ଏହାର କାରଣ ହେଉଛି, ଆମମାନଙ୍କର ଚେତନ ମନର ଅତି ସାମାନ୍ୟ ଅଂଶ ଇନ୍ଦ୍ରିୟ-ଗ୍ରାହ୍ୟ ଜଗତରେ ବିଚରଣ କରେ ଏବଂ ସେହି ସାମାନ୍ୟ ଇନ୍ଦ୍ରିୟ-ସଂଭୂତ ଜ୍ଞାନକୁ ଜୀବନ ଓ ମନର ସବୁକିଛି ବୋଲି ଆମେମାନେ କଳ୍ପନା କରୁ, କିନ୍ତୁ ବାସ୍ତବରେ ଆମମାନଙ୍କର ଅବଚେତନ ମନର ବିଶାଳ ସମୁଦ୍ରରେ ତାହା ଗୋଟିଏ ସାମାନ୍ୟ ବିନ୍ଦୁମାତ୍ର । ଯଦି ଆମମାନଙ୍କର ଅସ୍ତିତ୍ୱ କେବଳ ଇନ୍ଦ୍ରିୟାନୁଭୂତି ମଧ୍ୟରେ ସୀମାବଦ୍ଧ ଥାଆନ୍ତା, ତେବେ ଆମେମାନେ ଯେଉଁସବୁ ଜ୍ଞାନ ଅର୍ଜନ କରୁ ସେହି ସବୁ ଇନ୍ଦ୍ରିୟ-ପରିତୃପ୍ତି ପାଇଁ ବ୍ୟବହୃତ ହୁଅନ୍ତା । କିନ୍ତୁ ସୌଭାଗ୍ୟର କଥା ଯେ, ବାସ୍ତବ କ୍ଷେତ୍ରରେ ତାହା ହୁଏ ନାହିଁ । ପଶୁସ୍ତରରୁ ଯେତେ ଆମେମାନେ ଉପରକୁ ଉଠୁ, ଆମମାନଙ୍କର ଇନ୍ଦ୍ରିୟ-ସୁଖ ପାଇଁ ବାସନା ସେତେ ହ୍ରାସ ପାଏ ଏବଂ ବୈଜ୍ଞାନିକ ଓ ମନସ୍ତାତ୍ତ୍ୱିକ ବୋଧ ସହିତ ଆମମାନଙ୍କର ଭୋଗାକାଙ୍କ୍ଷା ସୂକ୍ଷ୍ମତର ହୁଏ ଏବଂ ଜ୍ଞାନ ପାଇଁ ଅନୁଶୀଳନ—ଏହି ଭାବଟି ଇନ୍ଦ୍ରିୟ-ସୁଖ-ନିରପେକ୍ଷ ହୋଇ ମନର ପରମ ଆନନ୍ଦର ବିଷୟ ହୁଏ ।

ପାଶ୍ଚାତ୍ୟ ଦେଶରେ ପ୍ରଚଳିତ ପାର୍ଥିବଜଗତର ମାପକାଠିଦ୍ୱାରା ବିଚାର କଲେ ମଧ୍ୟ ଦେଖାଯିବ ଯେ ମନୋବିଜ୍ଞାନ ହିଁ ଶ୍ରେଷ୍ଠ ବିଜ୍ଞାନ । ଏହାର କାରଣ କଅଣ ? ଆମେମାନେ ସମସ୍ତେ ଇନ୍ଦ୍ରିୟର ଦାସ, ଆମମାନଙ୍କର ନିଜର ଚେତନ ଓ ଅବଚେତନ ମନର ଦାସ । କୌଣସି ଅପରାଧୀ ଯେ ସ୍ୱେଚ୍ଛାରେ କୌଣସି ଅପରାଧ କରେ—ତାହା ନୁହେଁ, କେବଳ ନିଜର ମନ ତାହାର ଆୟତ୍ତରେ ନ ରହିବାରୁ ସେ ଏପରି କରେ । ତେଣୁ ସେ ତାହାର ଚେତନ ଓ ଅବଚେତନ ମନର ଦାସ ହୁଏ । ସେ ନିଜ ମନର ପ୍ରବଳତମ ସଂସ୍କାରର ବଶ

ହୋଇ ଚାଳିତ ହୁଏ । ସେ ନିରୁପାୟ । ସେ ନିଜ ମନର ଇଚ୍ଛା ବିରୋଧରେ—ବିବେକର କଲ୍ୟାଣକର ନିର୍ଦ୍ଦେଶ ଏବଂ ନିଜର ସତ୍‌ସ୍ୱଭାବର ବିରୋଧରେ ଚାଲେ । ସେ ତାହାର ମନର ପ୍ରବଳ ନିର୍ଦ୍ଦେଶ ମାନି ଚଳିବାକୁ ବାଧ୍ୟ ହୁଏ । ବିଚରା ନିତାନ୍ତ ଅସହାୟ ।

ପ୍ରତିନିୟତ ଏହି ସତ୍ୟକୁ ଆମେମାନେ ଜୀବନରେ ପ୍ରତ୍ୟକ୍ଷ କରୁଅଛୁ । ଅନ୍ତରର ଶୁଭ ନିର୍ଦ୍ଦେଶକୁ ଆମେମାନେ ସର୍ବଦା ଅଗ୍ରାହ୍ୟ କରୁଅଛୁ ଏବଂ ପରେ ନିଜକୁ ଧିକ୍କାର ଦେଉଛୁ । ଆମେମାନେ ବିସ୍ମିତ ହେଉ—କିପରି ଏହି ଜଘନ୍ୟ ଚିନ୍ତା ଆମେମାନେ କରିଥିଲୁ ଏବଂ କିପରି ବା ଏହି ହୀନ କାର୍ଯ୍ୟ ଆମମାନଙ୍କଦ୍ୱାରା ସାଧିତ ହେଲା । ଅଥଚ ଆମେମାନେ ପୁନଃପୁନଃ ଏହା କରୁ ଓ ବାରମ୍ବାର ଏଥିପାଇଁ ଦୁଃଖ ଓ ଆତ୍ମଗ୍ଳାନି ଭୋଗକରୁ । ଆମମାନଙ୍କର ମନେ ହୁଏ ଯେ, ଏହି କର୍ମ କରିବାକୁ ଆମେମାନେ ଇଚ୍ଛୁକ ଥିଲୁ । କିନ୍ତୁ ବାସ୍ତବରେ ତାହା ନୁହେଁ । ଆମେମାନେ ଇଚ୍ଛା ବିରୋଧରେ ବାଧ୍ୟ ହୋଇ ଏହା କରିଥିଲୁ । ଅସଲ କଥା ହେଉଛି ଆମେମାନେ ନିରୁପାୟ । ଆମେମାନେ ସମସ୍ତେ ନିଜ ନିଜ ମନର କ୍ରୀତଦାସ ଏବଂ ଅନ୍ୟମାନଙ୍କର ମଧ୍ୟ । ଭଲମନ୍ଦର ପାର୍ଥକ୍ୟ ଏଠାରେ ଅର୍ଥହୀନ । ଅସହାୟ ହୋଇ ଆମେମାନେ ଇତସ୍ତତଃ ଚାଳିତ ହେଉଅଛୁ । ଆମେମାନେ ମୁହଁରେ କହୁଁ, ଆମେ ଏହା ନିଜେ କରୁଛୁ ଇତ୍ୟାଦି; କିନ୍ତୁ ପ୍ରକୃତରେ ତାହା ନୁହେଁ ।

ଚିନ୍ତା କରିବାକୁ ଓ କାର୍ଯ୍ୟ କରିବାକୁ ବାଧ୍ୟ ହେଉଁ ବୋଲି ଆମେମାନେ ଚିନ୍ତା ଓ କାର୍ଯ୍ୟ କରିଥାଉଁ । ଆମେମାନେ ନିଜର ଓ ଅନ୍ୟମାନଙ୍କର ଦାସ । ଆମମାନଙ୍କର ଅବଚେତନ ମନରେ—ମନର ଗଭୀରତମ ପ୍ରଦେଶରେ ଅତୀତର ଚିନ୍ତା ଓ କର୍ମର ଯାବତୀୟ ସଂସ୍କାର ପୁଞ୍ଜୀଭୂତ ହୋଇ ରହିଛି—କେବଳ ଏହି ଜୀବନର ନୁହେଁ, ପୂର୍ବ ପୂର୍ବ ଜୀବନର ମଧ୍ୟ । ଏହି ଅବଚେତନ ମନର ଅସୀମ ସମୁଦ୍ର ଅତୀତର ଚିନ୍ତା ଓ କର୍ମରାଶିରେ ପରିପୂର୍ଣ୍ଣ । ସେହି ସମସ୍ତ ଚିନ୍ତା ଓ କର୍ମ ସ୍ୱୀକୃତିଲାଭର ଚେଷ୍ଟା କରୁଅଛି । ନିଜକୁ ପ୍ରକାଶ କରିବାକୁ ଚାହୁଁଛି, ଗୋଟିଏ ଅନ୍ୟଟିକୁ ଅତିକ୍ରମ କରି ଚେତନମାନସରେ ରୂପ ପରିଗ୍ରହ କରିବାକୁ ପ୍ରୟାସ କରୁଛି—ତରଙ୍ଗ ପରେ ତରଙ୍ଗ ଆକାରରେ, ଉଚ୍ଛ୍ୱାସ ପରେ ଉଚ୍ଛ୍ୱାସ ମାଧ୍ୟମରେ ସେମାନେ ନିଜକୁ ପ୍ରକାଶ କରିବାକୁ ଚାହୁଁଛନ୍ତି । ଏହି ସମସ୍ତ ଚିନ୍ତା ଏବଂ ପୁଞ୍ଜୀଭୂତ ଶକ୍ତିକୁ ଆମେମାନେ ସ୍ୱାଭାବିକ ଆକାଙ୍‌କ୍ଷା, ପ୍ରତିଭା ପ୍ରଭୃତି ଶବ୍ଦଦ୍ୱାରା ଅଭିହିତ କରୁଁ, କାରଣ ସେମାନଙ୍କର ଯଥାର୍ଥ ଉତ୍ପତ୍ତିସ୍ଥଳ ଆମର ଜଣାନାହିଁ ।

ଅନ୍ଧଙ୍କ ପରି ବିନା ପ୍ରତିବାଦରେ ସେମାନଙ୍କ ନିର୍ଦ୍ଦେଶ ଆମେମାନେ ପାଳନ କରୁଁ । ଫଳରେ ଦାସତ୍ୱ—ଚରମ ଦାସତ୍ୱ ଆମମାନଙ୍କୁ ବାନ୍ଧି ରଖେ, ଅଥଚ ଆମେମାନେ ନିଜକୁ ମୁକ୍ତ ବୋଲି ଚିତ୍କାର କରୁ । ହାୟ ! ଆମେମାନେ ନିଜର ମନକୁ ମୁହୂର୍ତ୍ତେ ପାଇଁ ମଧ୍ୟ ସଂଯତ କରିପାରୁ ନାହିଁ, କୌଣସି ବସ୍ତୁ ବିଶେଷରେ ନିବଦ୍ଧ ରଖିପାରୁ ନାହିଁ । ଅନ୍ୟ ବିଷୟରୁ ପ୍ରତ୍ୟାହୃତ କରି ମୁହୂର୍ତ୍ତକ ପାଇଁ ଗୋଟିଏ ବିନ୍ଦୁରେ କେନ୍ଦ୍ରୀଭୂତ କରି ପାରୁନାହିଁ । ଯଦି କୌଣସି ଇନ୍ଦ୍ରିୟ-ବାସନା କେତେବେଳେ ମୁଣ୍ଡ ଟେକି ଛିଡ଼ା ହୁଏ, ତେବେ ଆମେମାନେ ତାହାର ଆଜ୍ଞାବହ ହେବାକୁ ବାଧ୍ୟ ହେଉଁ । ଏହି ଦୁର୍ବଳତା ପାଇଁ

ଆମେମାନେ ବିବେକଦଂଶନ ଭୋଗକରୁ, କିନ୍ତୁ ପୁନଃ ପୁନଃ ଆମେମାନେ ତାହା କରୁ । ଯେତେ ଚେଷ୍ଟା କଲେ ମଧ୍ୟ ଆମେମାନେ ଉଚ୍ଚତର ଜୀବନଯାପନ କରିପାରୁ ନାହିଁ । ଅତୀତ ଜୀବନର ଚିନ୍ତାଗୁଡ଼ିକ ଭୂତପରି ଆମମାନଙ୍କ ଉପରେ ସବାର ହୋଇଯାଏ । ଇନ୍ଦ୍ରିୟ-ଗୁଡ଼ିକର ଏହି ଦାସତ୍ୱ ଜଗତର ସକଳ ଦୁଃଖର ମୂଳ । ଜଡ଼ ଦେହକୁ ଅତିକ୍ରମ କରିବାର ଅସାମର୍ଥ୍ୟ—ପାର୍ଥିବ ସୁଖ ପାଇଁ ଚେଷ୍ଟା—ଆମର ସକଳ ଦୁର୍ଦ୍ଦଶା ଓ ଭୟାବହତାର ହେତୁ ।

ମନର ଏହି ଉଚ୍ଛୃଙ୍ଖଳ ନିମ୍ନଗତିକୁ କିପରି ଦମନ କରିବାକୁ ହେବ, କିପରି ତାହାକୁ ଇଚ୍ଛାଶକ୍ତିର ଆୟତ୍ତକୁ ଆଣିବାକୁ ହେବ ଏବଂ ତାହାର ଦୁର୍ଦ୍ଦଶା ଭୋଗରୁ ଆମେମାନେ କିପରି ମୁକ୍ତି ପାଇବା, ମନୋବିଜ୍ଞାନ ଏହିସବୁ ବିଷୟ ଶିକ୍ଷା ଦିଏ । ଅତଏବ ମନୋବିଜ୍ଞାନ ଶ୍ରେଷ୍ଠ ବିଜ୍ଞାନ । ଏହାକୁ ବାଦ୍ ଦେଲେ ଅନ୍ୟାନ୍ୟ ବିଜ୍ଞାନ ଓ ଜ୍ଞାନ ମୂଲ୍ୟହୀନ ।

ଅସଂଯତ ଓ ଉଚ୍ଛୃଙ୍ଖଳ ମନ ଆମମାନଙ୍କୁ ନିୟତ ନିମ୍ନରୁ ନିମ୍ନତର ସ୍ତରକୁ ନେଇଯିବ ଏବଂ ଶେଷରେ ଆମମାନଙ୍କୁ ବିଧ୍ୱସ୍ତ କରିବ । ଅନ୍ୟ ଦିଗରେ ସଂଯତ ଓ ସୁନିୟନ୍ତ୍ରିତ ମନ ଆମମାନଙ୍କୁ ରକ୍ଷା କରିବ ଓ ମୁକ୍ତିଦାନ କରିବ; ସୁତରାଂ ମନକୁ ଅବଶ୍ୟ ସଂଯତ କରିବାକୁ ହେବ । ତେଣୁ ମନୋବିଜ୍ଞାନ ଆମମାନଙ୍କୁ ମନଃସଂଯମର ପଦ୍ଧତି ଶିକ୍ଷା ଦିଏ ।

ଯେ କୌଣସି ଜଡ଼ବିଜ୍ଞାନକୁ ଅନୁଶୀଳନ ଓ ବିଶ୍ଳେଷଣ କରିବା ନିମନ୍ତେ ପ୍ରଚୁର ତଥ୍ୟ ଓ ଉପାଦାନ ମିଳିଥାଏ । ସେହିସବୁ ତଥ୍ୟ ଓ ଉପାଦାନର ବିଶ୍ଳେଷଣ ଓ ପରୀକ୍ଷା ଫଳରେ ସେହି ବିଜ୍ଞାନ ସମ୍ପର୍କରେ ଜ୍ଞାନଲାଭ ହୁଏ । କିନ୍ତୁ ମନର ଅନୁଶୀଳନ ଓ ବିଶ୍ଳେଷଣ ପାଇଁ ଏହିପରି କୌଣସି ତଥ୍ୟ ଏବଂ ବାହାରୁ ସଂଗୃହୀତ ଉପାଦାନ ମିଳେ ନାହିଁ; ମନ ନିଜଦ୍ୱାରା ହିଁ ବିଶ୍ଳେଷିତ ହୁଏ । ସୁତରାଂ ମନୋବିଜ୍ଞାନକୁ ଶ୍ରେଷ୍ଠ ବିଜ୍ଞାନ ବୋଲି ଧରାଯାଏ । ପାଶ୍ଚାତ୍ୟ ଦେଶରେ ମାନସିକ ଶକ୍ତିକୁ, ବିଶେଷତଃ ଅସାଧାରଣ ମାନସିକ ଶକ୍ତିକୁ କେତେକ ପରିମାଣରେ ଯାଦୁବିଦ୍ୟା ଓ ଗୂଢ଼ ଯୌଗିକ କ୍ରିୟାର ଅନୁଗତ ବୋଲି ଗଣ୍ୟ କରାଯାଏ । ବସ୍ତୁତଃ ସେହି ଦେଶରେ ତଥାକଥିତ ଅଲୌକିକ ଘଟନାବଳି ସହିତ ସାମଞ୍ଜସ୍ୟ କରିବା ଫଳରେ ମନୋବିଜ୍ଞାନ ସମ୍ପର୍କରେ ଉଚ୍ଚ ପର୍ଯ୍ୟାୟର ଅନୁଶୀଳନ ବ୍ୟାହତ ହୋଇଅଛି, ଯେପରି ହୋଇଛି ଗୁଣି-ଗାରେଡ଼ି ଦେଖାଉଥିବା ସାଧୁ-ଫକିରମାନଙ୍କର ଅଲୌକିକ ଘଟଣା ଦେଖାଇବାରେ ।

ପୃଥିବୀର ସର୍ବତ୍ର ପଦାର୍ଥବିତ୍‌ମାନେ ସମାନ ଫଳ ଲାଭ କରିଥାଆନ୍ତି । ସେମାନେ ସାଧାରଣ ସତ୍ୟଗୁଡ଼ିକ ଓ ସେଥିରୁ ପ୍ରାପ୍ତ ଫଳ ସମ୍ବନ୍ଧରେ ଏକ ପ୍ରକାର ମତ ପୋଷଣ କରନ୍ତି । ତାହାର କାରଣ ପଦାର୍ଥବିଜ୍ଞାନର ଉପାତ୍ତଗୁଡ଼ିକ (data) ସର୍ବଜନଲଭ୍ୟ ଓ ସର୍ବଜନଗ୍ରାହ୍ୟ ଏବଂ ସିଦ୍ଧାନ୍ତଗୁଡ଼ିକ ମଧ୍ୟ ନ୍ୟାୟଶାସ୍ତ୍ରର ସୂତ୍ରପରି ଯୁକ୍ତିସିଦ୍ଧ ବୋଲି ସର୍ବଜନଗ୍ରାହ୍ୟ । କିନ୍ତୁ ମନୋଜଗତରେ ଏହା ଅନ୍ୟ ପ୍ରକାର । ଏଠାରେ ଏପରି କୌଣସି ତଥ୍ୟ ନାହିଁ, ଯାହା ଉପରେ ନିର୍ଭର କରି ସିଦ୍ଧାନ୍ତ ନିଆଯାଇପାରେ, ଏବଂ ଇନ୍ଦ୍ରିୟଗ୍ରାହ୍ୟ କୌଣସି ତଥ୍ୟ ନାହିଁ, ଏପରି କୌଣସି ସର୍ବଜନଗ୍ରାହ୍ୟ ଉପାଦାନ ଏଠାରେ ନାହିଁ,

ଯହିଁରୁ ମନୋବଜ୍ଞାନୀମାନେ ଏକପ୍ରକାର ପ୍ରଣାଳୀରେ ପରୀକ୍ଷା କରି ଗୋଟିଏ ପଦ୍ଧତି ଗଢ଼ିପାରିବେ ।

ମନର ଅତି ଗଭୀର ପ୍ରଦେଶ ମଧ୍ୟରେ ବିରାଜ କରୁଛନ୍ତି ଆତ୍ମା, ମନୁଷ୍ୟର ପ୍ରକୃତ ସତ୍ତା । ମନକୁ ଅନ୍ତର୍ମୁଖୀ କର, ଆତ୍ମା ସହିତ ସଂଯୁକ୍ତ କର ଏବଂ ସ୍ଥିତାବସ୍ଥାର ସେହି ଦୃଷ୍ଟିକୋଣରୁ ମନର ଆବର୍ତ୍ତନଗୁଡ଼ିକୁ ଲକ୍ଷ୍ୟ କର, ସେଗୁଡ଼ିକ ପ୍ରାୟ ସବୁ ମନୁଷ୍ୟ ମଧ୍ୟରେ ଦେଖାଯାଏ । ସେହିସବୁ ତଥ୍ୟ ବା ଉପାତ୍ତ (data) ଓ ଘଟଣା କେବଳ ସେହି ଲୋକମାନଙ୍କର ଅନୁଭୂତିଗମ୍ୟ, ଯେଉଁମାନେ ଧ୍ୟାନର ଗଭୀରତମ ପ୍ରଦେଶରେ ପ୍ରବେଶ କରିପାରନ୍ତି । ଜଗତର ଅଧିକାଂଶ ତଥାକଥିତ ଅଧ୍ୟାତ୍ମବାଦୀମାନଙ୍କ ମଧ୍ୟରେ ମନର ଗତି, ପ୍ରକୃତି, ଶକ୍ତି ଇତ୍ୟାଦି ନେଇ ଅନେକ ମତଭେଦ ଦେଖାଯାଏ । ଏହାର କାରଣ ସେମାନେ ମନୋଜଗତର ଗଭୀରତମ ପ୍ରଦେଶରେ ପ୍ରବେଶ କରିପାରି ନାହାନ୍ତି । ସେମାନେ ନିଜର ଓ ଅନ୍ୟାନ୍ୟ ଲୋକଙ୍କର ମାନସିକ କ୍ରିୟା-ପ୍ରତିକ୍ରିୟାକୁ ଆଂଶିକ ଭାବରେ ଲକ୍ଷ୍ୟ କରିଛନ୍ତି । ସେହିସବୁ ଏକାନ୍ତ ବାହ୍ୟ ଅସ୍ପଷ୍ଟ ଅଭିବ୍ୟକ୍ତିର ଯଥାର୍ଥ ପ୍ରକୃତି ନ ଜାଣି ସେଗୁଡ଼ିକୁ ସର୍ବକ୍ଷେତ୍ରରେ ପ୍ରଯୋଜ୍ୟ ବୋଲି ଘୋଷଣା କରିଅଛନ୍ତି । ପ୍ରତ୍ୟେକ ଧର୍ମରେ ଉନ୍ମାଦଗ୍ରସ୍ତ ଏପରି ଦଳେ ଲୋକ ଅଛନ୍ତି ଯେଉଁମାନେ ସେହିସବୁ ଉପାଦାନ ତଥ୍ୟ ପ୍ରଭୃତିକୁ ମୌଳିକ ଗବେଷଣା ପାଇଁ ନିର୍ଭରଯୋଗ୍ୟ ବସ୍ତୁର ଜଣବାର ମାନ ବୋଲି ଦାବି କରନ୍ତି । କିନ୍ତୁ ସେଗୁଡ଼ିକ ସେମାନଙ୍କର ମସ୍ତିଷ୍କର ଉଦ୍ଭଟ ଖିଆଲ ଛଡ଼ା ଆଉ କିଛି ନୁହେଁ ।

ଯଦି ମନର ରହସ୍ୟ ଅବଗତ ହେବା ହିଁ ଅଭିପ୍ରେତ ହୁଏ, ତେବେ ତୁମକୁ ନିୟମାନୁଗାମୀ ଶିକ୍ଷା ଗ୍ରହଣ କରିବାକୁ ହେବ । ଯଦି ତୁମେ ଗୋଟିଏ ଚେତନ ସ୍ତରକୁ ଉଠିବାକୁ ଚାହଁ, ଯେଉଁଠାରୁ ମନକୁ ପର୍ଯ୍ୟବେକ୍ଷଣ କରିପାରିବ ଏବଂ ମନର ଉଚ୍ଛୃଙ୍ଖଳ ଆବର୍ତ୍ତନରେ ଟିକିଏ ହେଲେ ବିଚଳିତ ହେବ ନାହିଁ, ତେବେ ମନକୁ ସଂଯତ କରିବାକୁ ଅଭ୍ୟାସ କର । ନଚେତ୍ ତୁମର ପରିଦୃଷ୍ଟ ଘଟଣାଗୁଡ଼ିକ ନିର୍ଭରଯୋଗ୍ୟ ହେବ ନାହିଁ, ସର୍ବକ୍ଷେତ୍ରରେ ପ୍ରଯୋଜ୍ୟ ହେବ ନାହିଁ ଏବଂ ଆଦୌ ଯଥାର୍ଥ ଉପାଦାନ ଓ ତଥ୍ୟ ବୋଲି ସ୍ୱୀକୃତ ହେବ ନାହିଁ ।

ଯେଉଁସବୁ ଲୋକେ ମନର ପ୍ରକୃତି ବିଷୟରେ ଗଭୀର ଭାବରେ ଅନୁଶୀଳନ କରିଅଛନ୍ତି, ଦେଶ କିମ୍ବା ମତନିର୍ବିଶେଷରେ ସେମାନଙ୍କର ଉପଲବ୍ଧି ତତ୍ତ୍ୱ ପାଇଁ ଏକପ୍ରକାର ସିଦ୍ଧାନ୍ତରେ ଉପନୀତ ହୋଇଅଛି । ବସ୍ତୁତଃ ମନର ଗଭୀରତମ ପ୍ରଦେଶରେ ଯେଉଁମାନେ ପ୍ରବେଶ କରନ୍ତି, ସେମାନଙ୍କର ଉପଲବ୍ଧି କେବେ ହେଁ ଭିନ୍ନପ୍ରକାର ହୁଏ ନାହିଁ ।

ଅନୁଭୂତି ଓ ଆବେଗପ୍ରବଣତାରୁ ମନୁଷ୍ୟର ମନ କ୍ରିୟାଶୀଳ ହୁଏ । ଉଦାହରଣସ୍ୱରୂପ କୁହାଯାଇପାରେ, ଆଲୋକର ରଶ୍ମି ମୋର ଆଖିରେ ପ୍ରବେଶ କରୁଅଛି ଏବଂ ସ୍ନାୟୁଦ୍ୱାରା ମସ୍ତିଷ୍କକୁ ନୀତ ହେଉଅଛି । ତଥାପି ମୁଁ ଆଲୋକ ଦେଖିପାରୁ ନାହିଁ । ତା' ପରେ ମସ୍ତିଷ୍କ

ସେହି ଆବେଗକୁ ମନକୁ ବହନ କରି ନେଇଯାଏ । ତେବେ ସୁଦ୍ଧା ମୁଁ ଆଲୋକ ଦେଖିପାରେ ନାହିଁ । ମନରେ ଯେତେବେଳେ ପ୍ରତିକ୍ରିୟା ଜନ୍ମେ, ସେତେବେଳେ ମନ ମଧ୍ୟରେ ଆଲୋକର ଅନୁଭୂତି ହୁଏ । ମନର ପ୍ରତିକ୍ରିୟା ହିଁ ଅନୁପ୍ରେରଣା ଏବଂ ତାହାର ଫଳରେ ଚକ୍ଷୁ ପ୍ରତ୍ୟକ୍ଷ ଦର୍ଶନ କରେ ।

ମନକୁ ବଶୀଭୂତ କରିବାକୁ ହେଲେ ତାହାର ଅଚେତନ ସ୍ତରର ଗଭୀର ପ୍ରଦେଶରେ ପ୍ରବେଶ କରିବାକୁ ହେବ । ସେଠାରେ ଯେଉଁସବୁ ଚିନ୍ତା ଓ ସଂସ୍କାର ପୁଞ୍ଜୀଭୂତ ହୋଇ ରହିଅଛି, ସେଗୁଡ଼ିକୁ ସୁବିନ୍ୟସ୍ତ କରିବାକୁ ହେବ, ସଜାଇବାକୁ ହେବ ଓ ସଂଯତ କରିବାକୁ ହେବ । ଏହା ହିଁ ପ୍ରଥମ ସୋପାନ । ଅବଚେତନ ମନକୁ ସଂଯତ କରିପାରିଲେ ଚେତନ ମନ ବଶୀଭୂତ ହେବ ।

## ମନର ଶକ୍ତି

[ ଲସ୍‌ଆଞ୍ଜେଲସ, କାଲିଫର୍ଣ୍ଣିଆ, ୮ ଜାନୁଆରି, ୧୯୦୦ ଖ୍ରୀ: ]

ସବୁ ଯୁଗରେ ପୃଥିବୀର ସର୍ବତ୍ର ମନୁଷ୍ୟ ଅତିପ୍ରାକୃତିକ ଘଟଣାଗୁଡ଼ିକୁ ବିଶ୍ୱାସ କରିଆସୁଛି । ଅସାଧାରଣ ଘଟଣାର କଥା ଆମେମାନେ ସମସ୍ତେ ଶୁଣିଅଛୁ । ଏ ବିଷୟରେ ଆମମାନଙ୍କ ମଧ୍ୟରୁ ଅନେକଙ୍କର ନିଜସ୍ୱ କିଛି ଅଭିଜ୍ଞତା ମଧ୍ୟ ଅଛି । ବିଷୟଟିର ପ୍ରସ୍ତାବନା ରୂପରେ ମୁଁ ବରଂ ତୁମମାନଙ୍କ ନିକଟରେ ମୋର ନିଜର ଅଭିଜ୍ଞତାଲବ୍ଧ କେତୋଟି ଘଟଣାର ଉଲ୍ଲେଖ କରିବି । ଥରେ କୌଣସି ଗୋଟିଏ ଲୋକ ବିଷୟରେ ଶୁଣିଥିଲି । ମନରେ କୌଣସି ଗୋଟିଏ ପ୍ରଶ୍ନ ଭାବି ତାଙ୍କ ନିକଟରେ ପହଞ୍ଚିବା ମାତ୍ରେ ସେ ସେହି ପ୍ରଶ୍ନର ଉତ୍ତର ତତ୍କ୍ଷଣାତ ଦେଇ ଦିଅନ୍ତି । ଆଉ ମଧ୍ୟ ଶୁଣିଥିଲି, ସେ ଭବିଷ୍ୟତ୍‌ବାଣୀ ମଧ୍ୟ କରନ୍ତି । ମନରେ କୌତୂହଳ ହେଲା, ତେଣୁ କେତେଜଣ ବନ୍ଧୁଙ୍କୁ ସଙ୍ଗରେ ନେଇ ତାଙ୍କ ପାଖକୁ ଗଲି । ଆମେ ସମସ୍ତେ ମନରେ ଗୋଟିଏ ଗୋଟିଏ ପ୍ରଶ୍ନ ଠିକ୍ କରି ରଖିଲୁ ଏବଂ କାଳେ ଭୁଲ ହୋଇଯିବ ବୋଲି ସେହି ପ୍ରଶ୍ନଗୁଡ଼ିକୁ ଲେଖି ନିଜ ନିଜ ଜାମା ପକେଟରେ ରଖିଲୁ । ଆମମାନଙ୍କ ମଧ୍ୟରୁ ଯାହା ସହିତ ତାଙ୍କର ଦେଖା ହେଲା ସେ ତତ୍କ୍ଷଣାତ ସେହି ପ୍ରଶ୍ନର ପୁନରାବୃତ୍ତି କରି ଉତ୍ତର କହିବାକୁ ଲାଗିଲେ । ପରେ ଖଣ୍ଡେ କାଗଜରେ କ'ଣ ଲେଖି କାଗଜଟିକୁ ମୋଡ଼ି ମୋ ହାତରେ ଦେଲେ ଏବଂ ସେହି କାଗଜର ପଛପଟେ ମୋର ନାମ ଦସ୍ତଖତ କରିବାକୁ ଅନୁରୋଧ କରି ମୋତେ କହିଲେ, 'ଏହାକୁ ଦେଖିବେ ନାହିଁ । ପକେଟରେ ରଖିଦିଅନ୍ତୁ, ଯେତେବେଳେ ମୁଁ କହିବି ସେତେବେଳେ ବାହାର କରିବେ ।' ଆମମାନଙ୍କ ମଧ୍ୟରୁ ସମସ୍ତଙ୍କ ସହିତ ଏହିପରି କଲେ । ତା'ପରେ ଆମମାନଙ୍କର

ଭବିଷ୍ୟତ ଜୀବନରେ ଯାହା ଘଟିବ ଏପରି କେତୋଟି ଘଟଣା ମଧ୍ୟ କହିଲେ । ଅବଶେଷରେ କହିଲେ, 'ଆପଣମାନେ ଯେକୌଣସି ଭାଷାରେ ଗୋଟିଏ ଶବ୍ଦ ବା ବାକ୍ୟ ଚିନ୍ତା କରନ୍ତୁ ।' ମୁଁ ସଂସ୍କୃତ ଭାଷାରେ ଗୋଟିଏ ପ୍ରକାଣ୍ଡ ବାକ୍ୟ ମନେ ମନେ ଚିନ୍ତା କଲି । ସଂସ୍କୃତର ବିନ୍ଦୁ ବିସର୍ଗ ମଧ୍ୟ ତାଙ୍କୁ ଜଣା ନାହିଁ । ତା'ପରେ ସେ କହିଲେ, 'ପକେଟ ମଧ୍ୟରୁ କାଗଜ ଖଣ୍ଡିକ ବାହାର କରନ୍ତୁ ।' ମୁଁ କାଗଜଖଣ୍ଡିକ ବାହାର କରି ଦେଖେ ଯେ, ସେଥିରେ ସେହି ସଂସ୍କୃତ ବାକ୍ୟଟି ଲେଖା ହୋଇ ରହିଅଛି । ଘଣ୍ଟାକ ଆଗରୁ ସେ ତାହା ଲେଖିଥିଲେ ଆଉ କାଗଜଖଣ୍ଡିକ ତଳେ ମନ୍ତବ୍ୟ ଲେଖିଥିଲେ, 'ଯାହା ଲେଖି ରଖିଲି ପରେ ସେ ତାହା ଚିନ୍ତା କରିବେ'— ଠିକ୍ ତାହା ହିଁ ହେଲା । ଆମମାନଙ୍କ ମଧ୍ୟରୁ ଆଉ ଜଣେ ବନ୍ଧୁଙ୍କୁ ମଧ୍ୟ ସେହିପରି ଖଣ୍ଡେ କାଗଜ ଦେଇଥିଲେ ଏବଂ ସେ ମଧ୍ୟ ତାହା ସ୍ୱାକ୍ଷର କରି ପକେଟରେ ରଖିଥିଲେ । ତା'ପରେ ଲୋକଟି ତାଙ୍କୁ ଗୋଟିଏ ବାକ୍ୟ ଚିନ୍ତା କରିବାକୁ କହିବାରୁ ସେ କୋରାନରୁ ଆରବୀ ଭାଷାରେ ଗୋଟିଏ ବାକ୍ୟ ଭାବିଲେ । ସେହି ଲୋକଟିର ଆରବୀ ଭାଷା ଜାଣିବାର ସମ୍ଭାବନା ଆଦୌ ନାହିଁ । କିନ୍ତୁ ମୋ ବନ୍ଧୁ କାଗଜ ଖୋଲି ଦେଖିଲେ ଯେ ସେହି ବାକ୍ୟଟି କାଗଜରେ ଠିକ୍ ଲେଖା ହୋଇ ରହିଛି । ଆମମାନଙ୍କ ମଧ୍ୟରୁ ଜଣେ ଥିଲେ ଡାକ୍ତର । ସେ ଜର୍ମାନ ଭାଷାରେ ଲିଖିତ ଗୋଟିଏ ଡାକ୍ତରୀ ବହିରୁ ଗୋଟିଏ ବାକ୍ୟ ଭାବିଲେ ଓ ତାଙ୍କର କାଗଜରେ ମଧ୍ୟ ଠିକ୍ ତାହା ମିଳିଲା ।

ସେଦିନ ବୋଧହୁଏ କୌଣସି ପ୍ରକାରେ ପ୍ରତାରିତ ହୋଇଛି ବୋଲି ଭାବି କେତେକ ଦିନ ପରେ ମୁଁ ଆଉଥରେ ସେହି ବ୍ୟକ୍ତିଙ୍କ ନିକଟକୁ ଗଲି । ସେଦିନ ମୋ ସହିତ ଆଉ ଦଳେ ବନ୍ଧୁ ଥିଲେ । ସେଦିନ ମଧ୍ୟ ସେ ଅଦ୍ଭୁତ ସାଫଲ୍ୟର ପରିଚୟ ଦେଇଥିଲେ ।

ଆଉ ଥରେ ଭାରତର ହାଇଦ୍ରାବାଦ ସହରରେ ଥିବା ସମୟରେ ଶୁଣିବାକୁ ପାଇଲି ଯେ, ସେଠାରେ ଜଣେ ବ୍ରାହ୍ମଣ ଅଛନ୍ତି— ଯେ କି ନାନା ପ୍ରକାର ଜିନିଷ ଶୂନ୍ୟରୁ ବାହାର କରିପାରନ୍ତି । କେଉଁଠାରୁ ଯେ ସେହି ଜିନିଷଗୁଡ଼ିକ ଆସେ, କେହି ଜାଣନ୍ତି ନାହିଁ । ସେ ଜଣେ ସ୍ଥାନୀୟ ବ୍ୟବସାୟୀ ଓ ସମ୍ଭ୍ରାନ୍ତ ଭଦ୍ର ଲୋକ । ମୁଁ ତାହାଙ୍କର କୌଶଳ ଦେଖିବାକୁ ଇଚ୍ଛା କଲି । ଦୈବାତ୍ ତାଙ୍କର ଜ୍ୱର ହୋଇଥିଲା । ଭାରତରେ ଗୋଟିଏ ସାଧାରଣ ବିଶ୍ୱାସ ପ୍ରଚଳିତ ଅଛି ଯେ, କୌଣସି ସାଧୁ ସନ୍ନ୍ୟାସୀ ଯଦି ଅସୁସ୍ଥ ଲୋକର ମୁଣ୍ଡରେ ହାତ ବୁଲାଇ ଦିଅନ୍ତି, ତେବେ ତା'ର ରୋଗ ଭଲ ହୋଇଯାଏ । ବ୍ରାହ୍ମଣଟି ଆସି ମୋ ନିକଟରେ କହିଲେ, 'ମହାଶୟ, ଆପଣ ଟିକିଏ ମୋ ମୁଣ୍ଡରେ ହାତ ବୁଲାଇ ଦେଇ ଜ୍ୱର ଭଲ କରି ଦିଅନ୍ତୁ ।' ମୁଁ କହିଲି, 'ଆଚ୍ଛା ହେଉ, ମୋତେ କିନ୍ତୁ ଆପଣଙ୍କର କୌଶଳ ଦେଖାଇବାକୁ ହେବ ।' ସେ ରାଜି ହେଲେ । ମୁଁ ତାଙ୍କ ମୁଣ୍ଡରେ ହାତ ବୁଲାଇ ଦେଲି, ସେ ମଧ୍ୟ ତାଙ୍କର ପ୍ରତିଶ୍ରୁତି ପାଳନ କରିବା ନିମନ୍ତେ ପଦାକୁ ଆସିଲେ । ଖଣ୍ଡେ ଧୋତି ଛଡ଼ା ତାଙ୍କ ଦେହରୁ ସବୁ ପୋଷାକ ଆମେ ଖୋଲି ବାହାର କରିଦେଲୁ । ଭାରି ଶୀତ ପଡ଼ିଥାଏ । ତେଣୁ ମୁଁ ତାଙ୍କ ଦେହରେ ଖଣ୍ଡେ କମ୍ବଳ ଘୋଡ଼ାଇ ଦେଲି । ଘରର ଗୋଟିଏ କୋଣରେ ତାହାଙ୍କୁ ବସାଇ ଦିଆହେଲା । ଆଉ ଆମେ ପଚିଶ ଜଣ ଲୋକ ତାଙ୍କ ଆଡ଼କୁ

ଗୁହିଁ ରହିଲୁ । ସେ କହିଲେ, 'ଆପଣମାନେ ଯେ ଯାହା ଗୁହାଁନ୍ତି ତାହା କାଗଜରେ ଲେଖିକରି ରଖନ୍ତୁ ।' ଯେଉଁସବୁ ଫଳ ସେ ଅଞ୍ଚଳରେ ହୁଏ ନାହିଁ, ସେହିସବୁ ଫଳର ନାମ ଆମେମାନେ ଲେଖିଲୁଁ—ଅଙ୍ଗୁର, କମଳା ଇତ୍ୟାଦି । ଲେଖିସାରି କାଗଜଗୁଡ଼ିକ ତାଙ୍କ ହାତକୁ ବଢ଼ାଇ ଦେଲୁ । ତା'ପରେ କମ୍ବଳ ମଧ୍ୟରୁ ପେନ୍ଥା ପେନ୍ଥା ଅଙ୍ଗୁର ଓ କମଳାଲେମ୍ବୁ ବାହାରିଲା । ଫଳ ଏତେ କୁଡ଼େଇ ହେଲା ଯେ, ସେଗୁଡ଼ିକର ଓଜନ ବୋଧହୁଏ ତାଙ୍କ ଓଜନର ଦୁଇଗୁଣ ହେବ । ସେ ସେହିସବୁ ଫଳ ଆମମାନଙ୍କୁ ଖାଇବାକୁ କହିଲେ; ଆମମାନଙ୍କ ମଧ୍ୟରୁ କେହି କେହି ଆପତ୍ତି କଲେ; ସେମାନେ କହିଲେ ଯେ ଏଥିରେ କୌଣସି ସମ୍ମୋହନ ଶକ୍ତି ଅଛି । କିନ୍ତୁ ସେହି ଫଳଗୁଡ଼ିକୁ ବ୍ରାହ୍ମଣ ନିଜେ ଖାଇବାକୁ ଲାଗିଲେ, ତେଣୁ ଆମେମାନେ ମଧ୍ୟ ସେଗୁଡ଼ିକୁ ଖାଇଲୁ । ସେହିଗୁଡ଼ିକ ପ୍ରକୃତରେ ଫଳ ଥିଲା ।

ସବା ଶେଷରେ ଗୁଡ଼ାଏ ଗୋଲାପ ଫୁଲ ବାହାର କଲେ । ପ୍ରତ୍ୟେକଟି ଫୁଲ ନିଖୁଣ—ପ୍ରତ୍ୟେକ ଫୁଲର ପାଖୁଡ଼ା ଉପରେ ଶିଶିରବିନ୍ଦୁ ପଡ଼ିଥିବାର ଦେଖାଗଲା । କୌଣସି ଗୋଟିଏ ପାଖୁଡ଼ା ମଧ୍ୟ ନଷ୍ଟ ହୋଇଯାଇ ନାହିଁ । ପୁଣି ଗୋଟିଏ ଦୁଇଟି ନୁହେଁ—ଗଣିଗଣି ଫୁଲ । କିପରି ଏହା ସମ୍ଭବ ହେଲା, ଆମେମାନେ ଯେତେବେଳେ ଜାଣିବାକୁ ଗୁହିଁଲୁ, ସେ ଉତ୍ତର ଦେଲେ ଯେ, ଏହାସବୁ ହେଉଛି କେବଳ ହାତସଫାଇ ।

ତାହା ଯାହା ହେଉ ନା କାହିଁକି, ଆମେମାନେ ସ୍ପଷ୍ଟ ବୁଝିପାରିଲୁ ଯେ, କେବଳ ହାତସଫାଇଦ୍ୱାରା ଏହା ଘଟାଇବା ଅସମ୍ଭବ । ପ୍ରଚୁର ପରିମାଣରେ ଏତେ ଜିନିଷ ସେ ଆଣିଲେ କେଉଁଠୁ ?

ଯାହା ହେଉ, ଏପରି ଘଟଣା ମୁଁ ଦେଖିଅଛି । ଭାରତରେ ବୁଲି ଆସିଲେ ଏପରି ଶତ ଶତ ଘଟଣା ଆଖି ଆଗରେ ପଡ଼ିବ । ଅନ୍ୟାନ୍ୟ ଦେଶରେ ମଧ୍ୟ ଏପରି ଘଟଣା ଥିବାର ଜଣାଯାଏ । ଏପରିକି ଏ ଦେଶରେ ମଧ୍ୟ ଏପରି ଘଟଣା ଆଖିରେ ପଡ଼େ । ଏଥିରେ ଯେ ଭଣ୍ଡାମି ନାହିଁ ତାହା କୁହାଯାଇ ନ ପାରେ । କିନ୍ତୁ ଭଣ୍ଡାମି ଥିଲେ ମଧ୍ୟ କୁହାଯାଇପାରେ ଯେ, ତାହା କୌଣସି ସତ୍ୟ ଘଟଣାର ଅନୁକରଣ । କେଉଁଠି ହେଲେ ନିଶ୍ଚୟ ସତ୍ୟ ଘଟଣା ଅଛି ଏବଂ ଏହା ତାହାର ଅନୁକରଣ ମାତ୍ର । ଶୂନ୍ୟ ପଦାର୍ଥର ତ ଅନୁକରଣ ହୁଏ ନାହିଁ, ଅନୁକରଣ କରିବାକୁ ହେଲେ ଅନୁକରଣଯୋଗ୍ୟ ଗୋଟିଏ ସତ୍ୟ ବସ୍ତୁ ରହିବା ସୁନିଶ୍ଚିତ ।

ଅତି ପ୍ରାଚୀନ କାଳରେ, ହଜାର ହଜାର ବର୍ଷ ପୂର୍ବେ ଭାରତରେ ଏପରି ଅଲୌକିକ ଘଟଣା ଅନେକ ବେଶୀ ଘଟୁଥିଲା । ମୋ ମତରେ ଯେତେବେଳେ କୌଣସି ଦେଶରେ ଲୋକବସତି ଖୁବ୍ ବେଶୀ ହୁଏ, ଯେତେବେଳେ ମନୁଷ୍ୟର ଆଧ୍ୟାତ୍ମିକ ଶକ୍ତି ହ୍ରାସ ପାଏ ଏବଂ କୌଣସି ବିସ୍ତୃତ ଦେଶ ମଧ୍ୟରେ ଯଦି ଲୋକବସତି କମ୍ ହୋଇଯାଏ, ସେଠାରେ ବୋଧହୁଏ ଆଧ୍ୟାତ୍ମିକ ଶକ୍ତିର ଅଧିକତର ବିକାଶ ହୁଏ ।

ହିନ୍ଦୁମାନଙ୍କର ଚରିତ୍ର ବିଶେଷ ବିଗ୍ରରପ୍ରବଣ ବୋଲି ଏହିସବୁ ଘଟଣା ପ୍ରତି ସେମାନଙ୍କର ଦୃଷ୍ଟି ଆକୃଷ୍ଟ ହୋଇଥିଲା । ଏହି ବିଷୟ ଉପରେ ସେମାନେ ଗବେଷଣା କରିଥିଲେ ଏବଂ କେତେଗୁଡ଼ିଏ ବିଶେଷ ସିଦ୍ଧାନ୍ତରେ ପହଞ୍ଚିଥିଲେ । ଅର୍ଥାତ୍ ଏହାକୁ

ଗୋଟିଏ ବିଜ୍ଞାନରେ ପରିଣତ କରିଥିଲେ । ସେମାନେ ଲକ୍ଷ୍ୟ କରିଥିଲେ, ଏସବୁ ଘଟଣା ଅସାଧାରଣ ହେଲେ ମଧ୍ୟ ପ୍ରାକୃତିକ ନିୟମଦ୍ୱାରା ସଂଘଟିତ ହୁଏ । ଅତିପ୍ରାକୃତିକ ବୋଲି କିଛି ନାହିଁ ।

ଜଡ଼ଜଗତର ଯେକୌଣସି ଘଟଣା ଭଳି ଏଗୁଡ଼ିକ ମଧ୍ୟ ନିୟମାଧୀନ । କେହି ଏଭଳି ଶକ୍ତି ନେଇ ଜନ୍ମଗ୍ରହଣ କଲେ ତାହାକୁ ପ୍ରାକୃତିକ ନିୟମର ବ୍ୟତିକ୍ରମ ବୋଲି କହିବାର କୌଣସି କାରଣ ନାହିଁ । କାରଣ ଏହି ସିଦ୍ଧାନ୍ତଗୁଡ଼ିକ ନେଇ ଯଥାସ୍ଥିତ ଗବେଷଣା ଓ ସାଧନ କରାଯାଇପାରେ ଏବଂ ସେଗୁଡ଼ିକୁ ମଧ୍ୟ ଅର୍ଜନ କରାଯାଇପାରେ । ସେମାନେ ଏହି ବିଦ୍ୟାର ନାମ ଦେଇଥିଲେ, 'ରାଜଯୋଗ' । ଭାରତରେ ଅସଂଖ୍ୟ ଲୋକ ଏହି ବିଦ୍ୟାର ଚର୍ଚ୍ଚା କରନ୍ତି । ଏହା ଭାରତୀୟମାନଙ୍କର ନିତ୍ୟ ଉପାସନାର ଗୋଟିଏ ଅଙ୍ଗ ହୋଇଗଲାଣି ।

ହିନ୍ଦୁମାନେ ଏହି ସିଦ୍ଧାନ୍ତରେ ଆସି ପହଞ୍ଚିଛନ୍ତି ଯେ, ମନୁଷ୍ୟର ମନ ମଧ୍ୟରେ ଏହି ସବୁ ଅସାଧାରଣ ଶକ୍ତି ନିହିତ ଅଛି । ଆମମାନଙ୍କର ମନ ବିଶ୍ୱବ୍ୟାପୀ ବିରାଟ ମନର ଅଂଶ ମାତ୍ର । ପ୍ରତ୍ୟେକ ମନ ସହିତ ଅନ୍ୟ ମନଗୁଡ଼ିକର ସଂଯୋଗ ରହିଅଛି । ଆମେ ଯେଉଁଠାରେ ଥାଉ ନା କାହିଁକି ଆମ ମନର ସମଗ୍ର ବିଶ୍ୱ ସହିତ ବାସ୍ତବ ଯୋଗାଯୋଗ ରହିଅଛି ।

ଦୂର ଦେଶକୁ ଚିନ୍ତା ପ୍ରେରଣ କରିବା ଭଳି ଏକପ୍ରକାର ଘଟଣା ଅଛି—ଆପଣମାନେ ଲକ୍ଷ୍ୟ କରିଛନ୍ତି କି ? ଏଠାରେ କୌଣସି ଲୋକ କିଛି ଚିନ୍ତା କଲା, ସେହି ଚିନ୍ତାଟି ହଠାତ୍ ଅନ୍ୟ ସ୍ଥାନରେ ଅନ୍ୟ କାହାରି ମନରେ ସ୍ପଷ୍ଟ ଉଦ୍‌ଭବ ହେଲା । ଏହା ହଠାତ୍ ଯେ ଏପରି ହେଲା, ତାହା ନୁହେଁ । ଉପଯୁକ୍ତ ପ୍ରସ୍ତୁତି ପରେ କେହି ଯଦି ଦୂରସ୍ଥ କୌଣସି ବ୍ୟକ୍ତିର ମନରେ କୌଣସି ଚିନ୍ତା ପ୍ରେରଣ କରିବାକୁ ଇଚ୍ଛା କରେ ଏବଂ ଯାହାର ନିକଟକୁ ଏହା ପ୍ରେରିତ ହୁଏ ସେ ମଧ୍ୟ ବୁଝିପାରନ୍ତି ଯେ ଏହା ଆସୁଛି; ଏବଂ ଚିନ୍ତା ଯେଉଁ ଭାବରେ ପ୍ରେରଣ କରାହୋଇଛି ଠିକ୍ ସେହି ଭାବରେ ସେ ତାହା ଗ୍ରହଣ କରନ୍ତି—ଦୂରତା କୌଣସି ବାଧା ଦେଇପାରେ ନାହିଁ । ଚିନ୍ତାଟି ସେହି ବ୍ୟକ୍ତି ନିକଟରେ ଠିକ୍ ପହଞ୍ଚିବ ଏବଂ ସେ ତାହା ବୁଝିପାରିବେ । ତୁମର ମନ ଯଦି ସ୍ୱତନ୍ତ୍ର ଭାବରେ ଏଠାରେ ଥାଏ, ଆଉ ମୋର ମନ ମଧ୍ୟ ଅନ୍ୟ ଏକ ସ୍ୱତନ୍ତ୍ର ପଦାର୍ଥ ପରି ଅନ୍ୟତ୍ର ଥାଏ ଏବଂ ଏହି ଦୁଇଟି ମଧ୍ୟରେ ଯଦି କୌଣସି ଯୋଗାଯୋଗ ନ ଥାଏ, ତେବେ ମୋର ଚିନ୍ତା ତୁମ ନିକଟରେ ପହଞ୍ଚେ କିପରି ? ସାଧାରଣ କ୍ଷେତ୍ରରେ ମୋର ଚିନ୍ତାଗୁଡ଼ିକ ଯେ ତୁମ ନିକଟରେ ସିଧାସଳଖ ପହଞ୍ଚୁଛି ତାହା ନୁହେଁ । ମୋର ଚିନ୍ତାଗୁଡ଼ିକୁ 'ଇଥର'-ତରଙ୍ଗରେ ପରିଣତ କରିବାକୁ ହୁଏ, ସେହି 'ଇଥର'-ତରଙ୍ଗଗୁଡ଼ିକ ତୁମର ମସ୍ତିଷ୍କ ମଧ୍ୟରେ ପହଞ୍ଚିଲେ ସେଗୁଡ଼ିକୁ ପୁଣି ତୁମ ଚିନ୍ତାରେ ରୂପାନ୍ତରିତ କରିବାକୁ ହୁଏ । ଚିନ୍ତାକୁ ପ୍ରଥମେ ଇଥରରେ ରୂପାନ୍ତରିତ କରିବାକୁ ହେଉଛି ଓ ପୁଣି ସେଗୁଡ଼ିକୁ ସ୍ୱରୂପରେ ପ୍ରତିଷ୍ଠିତ କରାଯାଉଅଛି । ଏହି ପ୍ରକ୍ରିୟା ପରୋକ୍ଷରେ ଗୋଟିଏ ଜଟିଳ ପଥ ଅନୁସରଣ କରେ । କିନ୍ତୁ ଟେଲିପ୍ୟାଥିରେ ( ଇଚ୍ଛା ସାହାଯ୍ୟରେ ଦୂର ଦେଶକୁ ଚିନ୍ତା ପ୍ରେରଣ କରିବାର ବିଜ୍ଞାନ ) ଏହିପରି କରିହୁଏ ନାହିଁ—ଏହା ପ୍ରତ୍ୟକ୍ଷ ଭାବରେ

ଘଟିତ ହୁଏ ।

ତେଣୁ ଏଥିରୁ ବୁଝାଯାଏ, ଯୋଗୀମାନେ ଯାହା କହନ୍ତି—ମନ ନିରବଚ୍ଛିନ୍ନ, ମନ ବିଶ୍ୱବ୍ୟାପୀ—ତାହା ସତ୍ୟ । ତୁମର ମନ, ମୋର ମନ ଓ ସମସ୍ତଙ୍କର ଶ୍ରେଷ୍ଠ ଶ୍ରେଷ୍ଠ ମନଗୁଡ଼ିକ ସେହି ଏକ ବିରାଟ ମନର କ୍ଷୁଦ୍ର ଅଂଶ ମାତ୍ର, ଗୋଟିଏ ପୂର୍ଣ୍ଣ ମାନସ-ସମୁଦ୍ରର କ୍ଷୁଦ୍ର କ୍ଷୁଦ୍ର ତରଙ୍ଗ ମାତ୍ର । ତେଣୁ ମନର ଏହି ନିରବଚ୍ଛିନ୍ନତା ହେତୁ ଆମେମାନେ ଜଣେ ଆଉ ଜଣକ ପାଖକୁ ପ୍ରତ୍ୟକ୍ଷ ଭାବରେ ଚିନ୍ତା ପଠାଇପାରୁ ।

ଆମମାନଙ୍କ ଚତୁଃପାର୍ଶ୍ୱରେ କଅଣ ଘଟୁଛି—ଟିକିଏ ଦେଖିବା । ସାରା ଜଗତବ୍ୟାପୀ ଗୋଟାଏ ଯେପରି ପ୍ରଭାବ-ପ୍ରସାରର ଚେଷ୍ଟା ଚାଲିଛି । ନିଜର ଶରୀର ରକ୍ଷା କାର୍ଯ୍ୟରେ ଆମମାନଙ୍କ ଶକ୍ତିର ଗୋଟିଏ ଅଂଶ ବ୍ୟୟିତ ହେଉଛି । ଅବଶିଷ୍ଟ ଶକ୍ତି ସମ୍ପୂର୍ଣ୍ଣଭାବରେ ଅହର୍ନିଶି ଅନ୍ୟମାନଙ୍କୁ ପ୍ରଭାବିତ କରିବା କାର୍ଯ୍ୟରେ ବ୍ୟୟିତ ହୁଏ । ଆମମାନଙ୍କର ଶରୀର, ଆମମାନଙ୍କର ଗୁଣ, ଆମମାନଙ୍କର ବୁଦ୍ଧି ଓ ଆଧ୍ୟାତ୍ମିକତା—ଏହିସବୁ ସର୍ବଦା ଅନ୍ୟ ଉପରେ ପ୍ରଭାବ ବିସ୍ତାର କରି ଚାଲିଛି । ପୁଣି ଆମେମାନେ ମଧ୍ୟ ଠିକ୍ ସେହିପରି ଅନ୍ୟ ଲୋକମାନଙ୍କଦ୍ୱାରା ପ୍ରଭାବିତ ହେଉଅଛୁ । ଆମର ଚାରିଆଡ଼େ ଏହିପ୍ରକାର ଘଟଣା ନିରନ୍ତର ଘଟୁଛି । ଗୋଟିଏ ସ୍ଥୂଳ ଉଦାହରଣ ଦେଲେ ଆପଣମାନେ ବୁଝିପାରିବେ ।

କୌଣସି ବ୍ୟକ୍ତି ତୁମ ନିକଟକୁ ଆସିଲେ । ତାଙ୍କୁ ତୁମେ ଜାଣ ଯେ ସେ ସୁପଣ୍ଡିତ ଓ ତାଙ୍କ ଭାଷା ମଧ୍ୟ ମନୋରମ । ଘଣ୍ଟାଏ କାଳ ସେ ତୁମ ସହିତ କଥାବାର୍ତ୍ତା କଲେ । କିନ୍ତୁ ସେ ବ୍ୟକ୍ତି ତୁମ ମନ ଉପରେ କୌଣସି ରେଖାପାତ କରିପାରିଲେ ନାହିଁ । ଆଉ ଜଣେ ଆସି ତୁମ ସହିତ ଦୁଇ ଚାରିଟି କଥା କହିଲେ, ତାହା ମଧ୍ୟ ସୁସମ୍ବଦ୍ଧ ଭାଷାରେ ନୁହେଁ, ଭାଷାରେ ବ୍ୟାକରଣ ଭୁଲ ମଧ୍ୟ ଅଛି । କିନ୍ତୁ ତାହା ସତ୍ତ୍ୱେ ସେ ତୁମ ମନ ଉପରେ ଗଭୀର ରେଖାପାତ କଲେ । ତୁମମାନଙ୍କ ମଧ୍ୟରୁ ଅନେକେ ଏହା ଲକ୍ଷ୍ୟ କରିଥିବ । ତେଣୁ ବୁଝାଯାଉଛି ଯେ, କେବଳ କଥା ସବୁବେଳେ ମନ ଉପରେ ଛାପ ପକାଇପାରେ ନାହିଁ । ଅନ୍ୟର ମନ ଉପରେ ଭାଷା କିମ୍ବା ଚିନ୍ତା ତିନିଭାଗରୁ ଭାଗେ ମାତ୍ର ଛାପ ପକାଏ । ବାକି ଦୁଇଭାଗ ବ୍ୟକ୍ତିତ୍ୱର ପ୍ରଭାବ । ବ୍ୟକ୍ତିତ୍ୱର ଆକର୍ଷଣ କେବଳ ମାତ୍ର ତୁମକୁ ପ୍ରଭାବିତ କରିପାରେ ।

ପ୍ରତ୍ୟେକ ପରିବାରରେ ଜଣେ କର୍ତ୍ତା ଥାଆନ୍ତି । ସେମାନଙ୍କ ମଧ୍ୟରୁ କେହି କେହି ସଫଳକାମ ହୁଅନ୍ତି, ଆଉ କେତେକ ହୁଅନ୍ତି ନାହିଁ । ଏହାର କାରଣ କ'ଣ ? ଆମମାନଙ୍କର ଅସଫଳତା ପାଇଁ ଆମେମାନେ ପରିବାରର ଅନ୍ୟ ଲୋକ ଉପରେ ଦାୟିତ୍ୱ ଲଦି ଦେଉଁ । ଅକୃତକାର୍ଯ୍ୟ ହେଲେ କହୁ ଯେ, ଅମୁକ ଲୋକ ପାଇଁ ଆମେ ବିଫଳ ହେଲୁ । ଆମେମାନେ କାର୍ଯ୍ୟରେ ବିଫଳ ହେଲେ ନିଜର ଦୋଷ ବା ଦୁର୍ବଳତା କେହି ସ୍ୱୀକାର କରିବାକୁ ମାଗୁ ନାହିଁ । ପ୍ରାୟ ସମସ୍ତେ ନିଜକୁ ନିର୍ଦ୍ଦୋଷ ଦେଖାଇବାକୁ ଚାହୁଁ, ଆଉ ଦୋଷ ଲଦି ଦେଉଁ ଅନ୍ୟ କାହାରି ଉପରେ; ନଚେତ୍ ଅନ୍ୟ କୌଣସି ବସ୍ତୁ ଉପରେ, ନଚେତ୍ ଆମମାନଙ୍କର

ଦୁର୍ଭାଗ୍ୟ ଉପରେ । ଗୃହକର୍ତ୍ତାମାନେ ଯଦି ଅକୃତକାର୍ଯ୍ୟ ହୁଅନ୍ତି ତେବେ ସେମାନେ ନିଜ ନିଜକୁ ପ୍ରଶ୍ନ କରିବା ଉଚିତ ଯେ, ତାଙ୍କ ମଧ୍ୟରୁ କେହି କେହି ବେଶ୍ ଭଲ ଭାବରେ ସଂସାର ଚଳାଇପାରୁଛନ୍ତି, ଅଥଚ ସେମାନେ ପାରୁନାହାନ୍ତି କାହିଁକି ? ଦେଖାଯିବ ଯେ, ସବୁକିଛି ନିର୍ଭର କରୁଛି ସେହି ବ୍ୟକ୍ତିଙ୍କ ଉପରେ ଏବଂ ଯେଉଁ ପାର୍ଥକ୍ୟ ଆମେମାନେ ଦେଖୁ, ତାହା ସୃଷ୍ଟି କରୁଛି ସେହି ଲୋକଟି ନିଜେ ତାହାର ଉପସ୍ଥିତି ବା ତାହାର ବ୍ୟକ୍ତିତ୍ୱ ମାଧ୍ୟମରେ ।

ମାନବଜାତିର ବଡ଼ ବଡ଼ ନେତାମାନଙ୍କ କଥା ଦେଖିବାକୁ ଗଲେ ଆମେମାନେ ଦେଖିବା ଯେ, ସେମାନେ ନିଜ ବ୍ୟକ୍ତିତ୍ୱ ପାଇଁ ନେତା ହୋଇପାରିଛନ୍ତି । ଅତୀତର ମହାନ୍ ଗ୍ରନ୍ଥକାର କିମ୍ବା ଚିନ୍ତାଶୀଳ ବ୍ୟକ୍ତିମାନଙ୍କ କଥା ଧର । ପ୍ରକୃତ କଥା କହିବାକୁ ଗଲେ କେତେଦୂର ଚିନ୍ତା ବା ସେମାନେ କରିଛନ୍ତି ? ମାନବଜାତିର ପ୍ରାଚୀନ ନେତାମାନେ ଯାହା କିଛି ଲେଖି ରଖି ଯାଇଛନ୍ତି, ସେଗୁଡ଼ିକ ବିଷୟରେ ଚିନ୍ତା କର । ସେମାନଙ୍କର ପ୍ରତ୍ୟେକଟି ରଚନାକୁ ଗ୍ରହଣ କରି ତାହାର ମୂଲ୍ୟ ନିର୍ଦ୍ଧାରଣ କର । ଜଗତରେ ଆଜି ପର୍ଯ୍ୟନ୍ତ ଯେଉଁସବୁ ଯଥାର୍ଥ ଚିନ୍ତାର ଓ ମୌଳିକ ଚିନ୍ତାର ଉଦ୍ଭବ ହୋଇଛି, ତାହାର ପରିମାଣ ମୁଷ୍ଟିମେୟ । ଆମମାନଙ୍କ ପାଇଁ ଯେଉଁସବୁ ଚିନ୍ତା ସେମାନେ ଲିପିବଦ୍ଧ କରି ଯାଇଛନ୍ତି, ସେଗୁଡ଼ିକୁ ପାଠ କରି ଦେଖ । ସେଗୁଡ଼ିକୁ ପଢ଼ିଲେ ଗ୍ରନ୍ଥକାରଙ୍କର ମହତ୍ତ୍ୱ ବିଷୟରେ ସନ୍ଦେହ ହୁଏ, ଯଦିଓ ଜୀବଦ୍ଦଶାରେ ସେମାନେ ମହାମାନବ ବୋଲି ସୁବିଦିତ ଥିଲେ । ତେବେ ସେମାନେ ଏତେ ବଡ଼ ହେଲେ କିପରି ? କେବଳ ତାଙ୍କର ଚିନ୍ତା, ସେମାନଙ୍କର ଲେଖା ବା ଗ୍ରନ୍ଥ କିମ୍ବା ସେମାନଙ୍କର ବକ୍ତୃତା ପାଇଁ ସେମାନେ ଏତେ ମହାନ୍ ହୋଇ ନାହାନ୍ତି । ତେଣୁ ଏସବୁ ବ୍ୟତୀତ ଆଉ କିଛି ତାଙ୍କ ମଧ୍ୟରେ ଥିଲା, ଯାହା ଆମେ ବର୍ତ୍ତମାନ ଜାଣିପାରୁ ନାହୁଁ । ତାହା ହେଉଛି ତାଙ୍କର ବ୍ୟକ୍ତିତ୍ୱ । ମୁଁ ଆଗରୁ କହିଛି ଯେ, ଏହିସବୁ କ୍ଷେତ୍ରରେ ମନୁଷ୍ୟଟିର ବ୍ୟକ୍ତିତ୍ୱର ପ୍ରଭାବ ତିନିଭାଗରୁ ଦୁଇଭାଗ, ଆଉ ତାହାର ବୁଦ୍ଧିର ଓ ତାହାର ଭାଷାର ପ୍ରଭାବ ତିନିଭାଗରୁ ଭାଗେ । ପ୍ରତ୍ୟେକ ଲୋକ ମଧ୍ୟରେ ତାହାର ପ୍ରକୃତ ବ୍ୟକ୍ତିତ୍ୱଟି କାର୍ଯ୍ୟ କରେ । ଆମମାନଙ୍କର କ୍ରିୟାଗୁଡ଼ିକ ତାହାର ହିଁ ବହିଃପ୍ରକାଶ । ମଣିଷ ବଞ୍ଚିଥିଲେ ତାହାର ପ୍ରକାଶ ନିଶ୍ଚୟ ହେବ; କାରଣକୁ ଅନୁସରଣ କରିବାକୁ କାର୍ଯ୍ୟ ବାଧ୍ୟ ।

ସବୁବିଧ ଜ୍ଞାନଦାନର, ସବୁବିଧ ଶିକ୍ଷାର ଆଦର୍ଶ ଭିତରର ମନୁଷ୍ୟଟିକୁ ଗଢ଼ିବା । କିନ୍ତୁ ତା' ପରିବର୍ତ୍ତିରେ ଆମେମାନେ ସବୁବେଳେ ଅମର ବାହାରଟିକୁ ମାଜି, ଘଷି ଚକଚକ୍ୟମୟ କରିବାରେ ବ୍ୟସ୍ତ । ଭିତରେ ଯଦି କିଛି ନ ଥାଏ, ତେବେ କେବଳ ବାହାରର ଚକଚକ୍ୟ ବଢ଼େଇ ଲାଭ କ'ଣ ? ମନୁଷ୍ୟକୁ ଉନ୍ନତ କରିବା ସବୁବିଧ ଶିକ୍ଷାଦାନର ଉଦ୍ଦେଶ୍ୟ ଓ ଲକ୍ଷ୍ୟ । ଯେଉଁ ବ୍ୟକ୍ତି ଅନ୍ୟମାନଙ୍କ ଉପରେ ପ୍ରଭାବ ବିସ୍ତାର କରି ପାରନ୍ତି, ଯେ ସମଜାତୀୟ ବ୍ୟକ୍ତିମାନଙ୍କୁ ଅଲୌକିକ ଭାବରେ ବଶ କରିପାରନ୍ତି, ସେ ଯେପରିକି ପୁଞ୍ଜୀଭୂତ ଶକ୍ତିର ଗୋଟାଏ ଆଧାର ବିଶେଷ । ଏପରି ବ୍ୟକ୍ତି ଯାହା ଇଚ୍ଛା ତାହା କରିବାକୁ ସମର୍ଥ ହୁଅନ୍ତି; ଏପରି ବ୍ୟକ୍ତିତ୍ୱ ଯେକୌଣସି ବିଷୟରେ ନିୟୋଜିତ ହେଉ ନା କାହିଁକି, ତାହାକୁ

ସାଫଲ୍ୟମଣ୍ଡିତ କରିବ ।

ଏହା ସତ୍ୟ ହେଲେ ମଧ୍ୟ ଆମର ପରିଚିତ କୌଣସି ନିୟମ ସାହାଯ୍ୟରେ ଆମେ ଏହାର ବ୍ୟାଖ୍ୟା କରିପାରିବୁ ନାହିଁ । ରସାୟନ ବା ପଦାର୍ଥ-ବିଦ୍ୟାର ଜ୍ଞାନ ସାହାଯ୍ୟରେ ଏହାର ବ୍ୟାଖ୍ୟା ହେବ କିପରି ? କେତେ ପରିମାଣରେ 'ଅକ୍ସିଜେନ', କେତେ ପରିମାଣରେ 'ହାଇଡ୍ରୋଜେନ' ବା 'କାର୍ବନ' ଏଥିରେ ଅଛି, କେତେଗୁଡ଼ିଏ ଅଣୁ କିପରି ଭାବରେ ସଜ୍ଜିତ ହୋଇଅଛି, କେତେଗୁଡ଼ିଏ କୋଷ ନେଇ ଏହା ଗଠିତ ହୋଇଅଛି—ଇତ୍ୟାଦି ବିଷୟ ଅନୁସନ୍ଧାନ କରି ଏହି ରହସ୍ୟମୟ ବ୍ୟକ୍ତିତ୍ୱକୁ ଆମେ କିପରି ଭାବରେ ବିଶ୍ଳେଷଣ କରିବୁ ? ଯାହା ହେଉ ନା କାହିଁକି, ଏହି ବ୍ୟକ୍ତିତ୍ୱର ସତ୍ୟତା ଆମେ ଅସ୍ୱୀକାର କରିପାରିବୁ ନାହିଁ । କେବଳ ତାହା ନୁହେଁ, ଏହି ବ୍ୟକ୍ତିତ୍ୱଟି ହିଁ ହେଉଛି ଅସଲ ମନୁଷ୍ୟ । ଏହି ମନୁଷ୍ୟଟି ବଞ୍ଚିରହେ । ଯାଏ ଆସେ କାମ କରେ । ସେ ତା'ର ସାଥିମାନଙ୍କ ଉପରେ ପ୍ରଭାବ ବିସ୍ତାର କରେ, ସେମାନଙ୍କୁ ପରିଚାଳିତ କରେ, ଆଉ ଶେଷରେ ସଂସାରରୁ ବିଦାୟ ନିଏ । ତାହାର ବୁଦ୍ଧି, ତାହାର ଗ୍ରନ୍ଥ ଓ ତାହାର କାର୍ଯ୍ୟ ତାହାର ବ୍ୟକ୍ତିତ୍ୱର ନିଦର୍ଶନ ମାତ୍ର । ଏକଥା ଟିକିଏ ମନରେ ଚିନ୍ତା କରି ଦେଖ । ବଡ଼ ବଡ଼ ଧର୍ମଗୁରୁମାନଙ୍କ ସହିତ ବଡ଼ ବଡ଼ ଦାର୍ଶନିକମାନଙ୍କର ତୁଳନା କରି ଦେଖ । ଦାର୍ଶନିକମାନେ କ୍ୱଚିତ୍ କାହାରି ମଧ୍ୟରେ ଥିବା ଅସଲ ମଣିଷଟିକୁ ପ୍ରଭାବିତ କରନ୍ତି, ଅଥଚ ସେମାନେ ଲେଖି ଯାଇଅଛନ୍ତି ଅପୂର୍ବ ଗ୍ରନ୍ଥସମୂହ । ଅନ୍ୟପକ୍ଷରେ ଧର୍ମଗୁରୁମାନେ ନିଜ ଜୀବଦ୍ଦଶାରେ ହିଁ ଅସଂଖ୍ୟ ଲୋକଙ୍କ ମନରେ ଆଲୋଡ଼ନ ସୃଷ୍ଟି କରନ୍ତି । ବ୍ୟକ୍ତିତ୍ୱ ହିଁ ଏହି ପାର୍ଥକ୍ୟର କାରଣ । ଦାର୍ଶନିକମାନଙ୍କ ମଧ୍ୟରେ ପ୍ରଭାବ ବିସ୍ତାର କରିବା ପାଇଁ ଯେଉଁ ବ୍ୟକ୍ତିତ୍ୱ ଆବଶ୍ୟକ, ତାହା ଅତି କ୍ଷୀଣ ଅଥଚ ଈଶ୍ୱର-ପ୍ରେରିତ ବ୍ୟକ୍ତିମାନଙ୍କ ମଧ୍ୟରେ ତାହା ଅତି ପ୍ରବଳ । ଦାର୍ଶନିକମାନଙ୍କର ବ୍ୟକ୍ତିତ୍ୱ ବୁଦ୍ଧିବୃତ୍ତିକୁ ସ୍ପର୍ଶ କରେ, ଆଉ ଧର୍ମଗୁରୁମାନଙ୍କର ବ୍ୟକ୍ତିତ୍ୱ ସ୍ପର୍ଶ କରେ ମନୁଷ୍ୟର ଜୀବନକୁ । ଗୋଟିଏ ହେଉଛି କେବଳ ଏକ ରାସାୟନିକ ପଦ୍ଧତି ପରି—କେତେଗୁଡ଼ିଏ ରାସାୟନିକ ଉପାଦାନକୁ ଏକତ୍ର କରି ରଖା ହୋଇଛି, ଉପଯୁକ୍ତ ପରିବେଶରେ ସେଗୁଡ଼ିକ କ୍ରମେ ମିଶ୍ରିତ ହୋଇ ଗୋଟିଏ ଆଲୋକରଶ୍ମି ସୃଷ୍ଟି କରିପାରେ କିମ୍ବା ନ କରିପାରେ ମଧ୍ୟ । ଅନ୍ୟଟି ହେଉଛି ଗୋଟିଏ ଆଲୋକବର୍ତ୍ତିକା—କ୍ଷିପ୍ରବେଗରେ ଚତୁର୍ଦ୍ଦିଗ ବୁଲି ଅନ୍ୟ ଜୀବନ-ଦୀପଗୁଡ଼ିକୁ ଅଚିରେ ପ୍ରଜ୍ୱଳିତ କରେ ।

ଯୋଗବିଜ୍ଞାନ ଦାବି କରେ ଯେ, ଏହି ବ୍ୟକ୍ତିତ୍ୱକୁ କ୍ରମବର୍ଦ୍ଧିତ କରିବାର ପ୍ରକ୍ରିୟାକୁ ସେ ଆବିଷ୍କାର କରିଅଛି । ସେସବୁ ରୀତି ଓ ପ୍ରକ୍ରିୟା ଯଥାଯଥ ଭାବରେ ମାନି ଚାଲିଲେ ପ୍ରତ୍ୟେକ ବ୍ୟକ୍ତି ନିଜର ବ୍ୟକ୍ତିତ୍ୱକୁ ବଢ଼ାଇ ଅଧିକ ଶକ୍ତିଶାଳୀ କରିପାରେ । ଗୁରୁତ୍ୱପୂର୍ଣ୍ଣ ବ୍ୟାବହାରିକ ବିଷୟଗୁଡ଼ିକ ମଧ୍ୟରେ ଏହା ଅନ୍ୟତମ ଏବଂ ସର୍ବବିଧ ଶିକ୍ଷାର ରହସ୍ୟ ମଧ୍ୟ ଏହା ହିଁ । ସମସ୍ତଙ୍କ ପକ୍ଷରେ ଏହା ପ୍ରଯୁଜ୍ୟ । ଗୃହସ୍ଥର ଜୀବନରେ, ଧନୀ-ଦରିଦ୍ର, ବ୍ୟବସାୟୀର ଜୀବନରେ, ଆଧ୍ୟାତ୍ମିକ ଜୀବନରେ, ସମସ୍ତଙ୍କ ଜୀବନରେ, ଏହି ବ୍ୟକ୍ତିତ୍ୱକୁ ବଢ଼ାଇବାର ମୂଲ୍ୟ ଅତ୍ୟଧିକ । ପ୍ରାକୃତିକ ଯେଉଁସବୁ ନିୟମ ଆମମାନଙ୍କୁ ଜଣା ଅଛି,

ସେଗୁଡ଼ିକର ପଛରେ ଅତି ସୂକ୍ଷ୍ମ ନିୟମମାନ ରହିଅଛି । ଅର୍ଥାତ୍ ସ୍ଥୂଳ ଜଗତର ସତ୍ତା, ମନୋଜଗତର ସତ୍ତା, ଅଧ୍ୟାତ୍ମଜଗତର ସତ୍ତା ବୋଲି ଭିନ୍ନ ଭିନ୍ନ କୌଣସି ସତ୍ତା ନାହିଁ । ସତ୍ତା ବୋଲି ଯାହା ବୁଝାଏ ତାହା ଗୋଟିଏ ମାତ୍ର । କୁହାଯାଇପାରେ ଯେ, ଏହା ଯେପରି ଗୋଟିଏ କ୍ରମ-ସୂକ୍ଷ୍ମ ଅସ୍ତିତ୍ୱ । ଏହାର ସ୍ଥୂଳତମ ଅଂଶଟି ଏଠାରେ ରହିଛି । (ଏକବିନ୍ଦୁ ଅଭିମୁଖରେ) ଏହା ଯେତେ ସଙ୍କୀର୍ଣ୍ଣ ହୋଇଯାଇଛି, ସେତେ ସୂକ୍ଷ୍ମରୁ ସୂକ୍ଷ୍ମତର ହୋଇ ଚାଲିଛି । ଆମେମାନେ ଯାହାକୁ ଆତ୍ମା ବୋଲି କହୁ ତାହା ସୂକ୍ଷ୍ମତମ, ଆମ-ମାନଙ୍କର ଦେହ ସ୍ଥୂଳତମ । ଆଉ ମନୁଷ୍ୟରୂପ ଏହି କ୍ଷୁଦ୍ର ଜଗତ ମଧ୍ୟରେ ଯାହା ଅଛି, ବ୍ରହ୍ମାଣ୍ଡ ମଧ୍ୟରେ ଠିକ୍ ତାହା ହିଁ ଅଛି । ଆମମାନଙ୍କର ଏହି ବିଶ୍ୱଟି ମଧ୍ୟ ସେହିପରି; ଜଗତ୍ ତାହାର ସ୍ଥୂଳତମ ବାହ୍ୟ ପ୍ରକାଶ । ଆଉ, କ୍ରମଶଃ ଏକବିନ୍ଦୁ-ଅଭିମୁଖୀ ହୋଇ ତାହା ସୂକ୍ଷ୍ମରୁ ସୂକ୍ଷ୍ମତର ହୋଇ ଶେଷରେ ଈଶ୍ୱରରେ ପର୍ଯ୍ୟବସିତ ହୋଇଛି ।

ଆହୁରି ମଧ୍ୟ ଆମେମାନେ ଜାଣୁ ଯେ, ସୂକ୍ଷ୍ମ ମଧ୍ୟରେ ପ୍ରଚଣ୍ଡ ଶକ୍ତି ନିହିତ ଥାଏ, ସ୍ଥୂଳ ମଧ୍ୟରେ ନୁହେଁ । କୌଣସି ଲୋକକୁ ଆମେ ଯେତେବେଳେ ବିପୁଳ ଭାର ଉତ୍ତୋଳନ କରୁଥିବା ଅବସ୍ଥାରେ ଦେଖୁ, ସେତେବେଳେ ତାହାର ମାଂସପେଶୀଗୁଡ଼ିକ ଫୁଲି ଉଠେ, ତାହାର ସମସ୍ତ ଦେହରେ ଶ୍ରମର ଚିହ୍ନ ପରିସ୍ଫୁଟ ହୁଏ । ଏସବୁ ଦେଖି ଆମେମାନେ ଭାବୁ ମାଂସପେଶୀର କି ଶକ୍ତି ! କିନ୍ତୁ ମାଂସପେଶୀକୁ ଶକ୍ତି ଯୋଗାଉଅଛି ସୂତାପରି ସରୁ ସରୁ ସ୍ନାୟୁଗୁଡ଼ିକ, ମାଂସପେଶୀ ସହିତ ଗୋଟିଏ ମାତ୍ର ସ୍ନାୟୁର ସଂଯୋଗ ଛିନ୍ନ ହେବା ମାତ୍ରେ ମାଂସପେଶୀ କୌଣସି କାର୍ଯ୍ୟ କରିପାରେ ନାହିଁ ।

ଏହି କ୍ଷୁଦ୍ର ସ୍ନାୟୁଗୁଡ଼ିକ ପୁଣି ଶକ୍ତି ଆହରଣ କରେ ଆହୁରି ସୂକ୍ଷ୍ମ ବସ୍ତୁରୁ, ସେହି ସୂକ୍ଷ୍ମ ବସ୍ତୁଟି ପୁଣି ଶକ୍ତି ପାଇଥାଏ ଚିନ୍ତା ନାମକ ସୂକ୍ଷ୍ମତର ବସ୍ତୁରୁ । କ୍ରମେ ଆହୁରି ସୂକ୍ଷ୍ମ ତା'ଠାରୁ ଆହୁରି ସୂକ୍ଷ୍ମ ଆସିଯାଏ । ତେଣୁ ସୂକ୍ଷ୍ମ ହିଁ ଶକ୍ତିର ଯଥାର୍ଥ ଆଧାର । ଅବଶ୍ୟ ସ୍ଥୂଳବସ୍ତୁର ଗତିଗୁଡ଼ିକୁ ଆମେମାନେ ଦେଖିବାକୁ ପାଉଁ । କିନ୍ତୁ ସୂକ୍ଷ୍ମସ୍ତରରେ ଯେଉଁ ଗତି ହୁଏ, ତାହା ଆମେମାନେ ଦେଖିବାକୁ ପାଉ ନାହିଁ । ଯେତେବେଳେ କୌଣସି ସ୍ଥୂଳ ବସ୍ତୁ ହଲୁଥାଏ, ଆମେମାନେ ତାହା ବୁଝିପାରୁ । ତେଣୁ ଗତି ସହିତ ସ୍ଥୂଳର ସମ୍ବନ୍ଧ ଅବିଚ୍ଛେଦ୍ୟ ବୋଲି ମନେ କରୁ । କିନ୍ତୁ ସବୁ ଶକ୍ତିର ଯଥାର୍ଥ ଆଧାର ସୂକ୍ଷ୍ମ । ସୂକ୍ଷ୍ମର କୌଣସି ଗତି ଆମେମାନେ ଦେଖୁନାହିଁ । ସେ ଗତି ଅତି ତୀବ୍ର ବୋଲି ମନେହୁଏ, ତାହା ଆମେମାନେ ଅନୁଭବ କରିପାରୁ ନାହିଁ । କିନ୍ତୁ ଯଦି କୌଣସି ବିଜ୍ଞାନର ସାହାଯ୍ୟରେ ବା କୌଣସି ଗବେଷଣାର ସାହାଯ୍ୟରେ ବାହ୍ୟ ପ୍ରକାଶର କାରଣସ୍ୱରୂପ ଶକ୍ତିଗୁଡ଼ିକୁ ଆମେମାନେ ଧରିପାରୁ, ତେବେ ଶକ୍ତିର ପ୍ରକାଶଗୁଡ଼ିକ ମଧ୍ୟ ଆମମାନଙ୍କର ଆୟତ୍ତକୁ ଆସିବ । କୌଣସି ହ୍ରଦର ତଳଦେଶରୁ ଗୋଟିଏ ବୁଦ୍‌ବୁଦ ଉଠୁଛି, ଯେତେବେଳେ ହ୍ରଦର ଉପରକୁ ଉଠି ତାହା ଫାଟେ, ସେତେବେଳେ କେବଳ ଆମମାନଙ୍କର ନଜରରେ ପଡ଼େ । ତଳୁ ଉପରକୁ ଉଠି ଆସିବା ମଧ୍ୟରେ କେତେବେଳେ ହେଲେ ଆମେମାନେ ତାକୁ ଦେଖିବାକୁ ପାଉ ନାହିଁ । ଚିନ୍ତା-କ୍ଷେତ୍ରରେ ମଧ୍ୟ ଚିନ୍ତାଟି

ବିଶେଷ ପରିଣତି ଲାଭ କରିବା ପରେ ବା କାର୍ଯ୍ୟରେ ପରିଣତ ହେବା ପରେ, ତାହା ଆମମାନଙ୍କର ଅନୁଭବରେ ଆସେ । ଆମେମାନେ ଅଭିଯୋଗ କରୁ ଯେ, ଆମମାନଙ୍କର ଚିନ୍ତା, ଆମମାନଙ୍କର କର୍ମ ଆମମାନଙ୍କର ଆୟତ୍ତରେ ରହେ ନାହିଁ । କିନ୍ତୁ ରହିବ କିପରି ? ଯଦି ସୂକ୍ଷ୍ମଗତିଗୁଡ଼ିକୁ ଆମେମାନେ ନିୟନ୍ତ୍ରିତ କରିପାରୁ, ଚିନ୍ତାରୂପେ, କର୍ମରୂପେ ପରିଣତ ହେବା ପୂର୍ବରୁ ଯଦି ଚିନ୍ତାକୁ ଆହୁରି ସୂକ୍ଷ୍ମାବସ୍ଥାରେ କିମ୍ବା ସ୍ଥୂଳାବସ୍ଥାରେ ଧରିପାରୁ, ତାହାହେଲେ ଆମମାନଙ୍କ ପକ୍ଷରେ ସବୁ ନିୟନ୍ତ୍ରଣ କରିବା ସମ୍ଭବ । ତେଣୁ ଏପରି କୌଣସି ପ୍ରକ୍ରିୟା ଯଦି ଥାଏ, ଯାହାକୁ ଅବଲମ୍ବନ କଲେ ଏହିସବୁ ସୂକ୍ଷ୍ମଶକ୍ତି ଓ ସୂକ୍ଷ୍ମକାରଣଗୁଡ଼ିକୁ ବିଶ୍ଳେଷଣ କରିବା, ଅନୁସନ୍ଧାନ କରିବା, ଧାରଣା କରିବା, ଅବଶେଷରେ ତାକୁ ଆୟତ୍ତ କରିବା ସମ୍ଭବ ହେବ—କେବଳ ତାହାହେଲେ ଆମେମାନେ ନିଜକୁ ନିଜର ଆୟତ୍ତରେ ଆଣିବାକୁ ସକ୍ଷମ ହେବୁ । ଆଉ ଯିଏ ମନକୁ ନିଜ ବଶରେ ଆଣିବାକୁ ସକ୍ଷମ ହେବ, ସେ ମଧ୍ୟ ଅନ୍ୟର ମନକୁ ନିଶ୍ଚିତ ଭାବରେ ନିଜ ଆୟତ୍ତକୁ ଆଣିପାରିବ । ସେଥିପାଇଁ ପବିତ୍ରତା ଓ ନୀତିପରାୟଣତା ଧର୍ମର ଅଙ୍ଗରୂପରେ ଗୃହୀତ ହୋଇଅଛି । ପବିତ୍ର ଓ ନୀତିପରାୟଣ ବ୍ୟକ୍ତି ନିଜକୁ ନିଜର ବଶରେ ରଖିପାରେ । ସବୁ ମନ ଗୋଟିଏ ମନର ବିଭିନ୍ନ ଅଂଶ ମାତ୍ର । ଗୋଟିଏ ମାଟି ଢେଲାର ଜ୍ଞାନ ଯାହାର ହୋଇଛି, ବିଶ୍ୱର ସମସ୍ତ ମୃତ୍ତିକାର ଜ୍ଞାନ ମଧ୍ୟ ତାହାର ହୋଇଛି । ନିଜ ମନ ବିଷୟରେ ଯାହାର ଜ୍ଞାନ ହୋଇଛି, ନିଜର ମନକୁ ଯେ ଆୟତ୍ତରେ ଆଣିଛି, ସବୁ ମନର ରହସ୍ୟ ମଧ୍ୟ ତାକୁ ଜଣା ଅଛି, ସବୁ ମନ ଉପରେ ତାହାର ପ୍ରଭାବ ଅଛି ।

ତେଣୁ ସୂକ୍ଷ୍ମାଂଶଗୁଡ଼ିକୁ ନିୟନ୍ତ୍ରିତ କରିପାରିଲେ ଆମେମାନେ ବହୁ ଶାରୀରିକ ଦୁର୍ଭୋଗରୁ ରକ୍ଷା ପାଇପାରିବା; ସେହିପରି ସୂକ୍ଷ୍ମଗତିଗୁଡ଼ିକୁ ଆୟତ୍ତରେ ଆଣିପାରିଲେ, ଆମେମାନେ ବହୁ ଦୁର୍ଭାବନାର କବଳରୁ ନିଷ୍କୃତି ପାଇପାରିବା । ଏହିସବୁ ସୂକ୍ଷ୍ମ ଶକ୍ତି ନିୟନ୍ତ୍ରଣ କରିବାର କ୍ଷମତା ଲାଭ କରିପାରିଲେ ବହୁ ବିଫଳତାକୁ ଆମେ ବର୍ଜନ କରିପାରିବା । ଏପର୍ଯ୍ୟନ୍ତ ଯାହା କୁହାଗଲା, ତାହା ଏହାର ଉପଯୋଗିତା ବିଷୟରେ । ତା'ପରେ ଆହୁରି ଉଚ୍ଚତର କଥା ଅଛି ।

ବର୍ତ୍ତମାନ ଏପରି ଗୋଟିଏ ମତର କଥା ଉତ୍ଥାପନ କରିବି, ଯାହା ବିଷୟରେ ବର୍ତ୍ତମାନ କୌଣସି ବିଚାର କରିବି ନାହିଁ, କେବଳ ସିଦ୍ଧାନ୍ତଟି କହିବି । କୌଣସି ଜାତି ଯେଉଁସବୁ ଅବସ୍ଥା ମଧ୍ୟଦେଇ ବର୍ତ୍ତମାନ ଅବସ୍ଥାରେ ଆସି ପହଞ୍ଚିଛି, ସେହି ଜାତିର ପ୍ରତ୍ୟେକ ବ୍ୟକ୍ତିକୁ ଶୈଶବରେ ଦ୍ରୁତ ଏହିସବୁ ଅବସ୍ଥା ଅତିକ୍ରମ କରି ଆସିବାକୁ ହେଉଛି । ଯେଉଁସବୁ ଅବସ୍ଥା ଅତିକ୍ରମ କରିବା ପାଇଁ ଗୋଟିଏ ଜାତିକୁ ହଜାର ହଜାର ବର୍ଷ ଲାଗିଛି—ସେସମସ୍ତ ଅତିକ୍ରମ କରିବାକୁ ଶିଶୁଟିକୁ ଲାଗେ ମାତ୍ର କେତୋଟି ବର୍ଷ—ଏତିକି ମାତ୍ର ପ୍ରଭେଦ । ଶିଶୁଟି ମଧ୍ୟ ପ୍ରଥମ ଅବସ୍ଥାରେ ଆଦିମ ଅସଭ୍ୟ ମନୁଷ୍ୟ ପରି ଥାଏ—ସେ ଗୋଡ଼ତଳେ ପ୍ରଜାପତିକୁ ମାଡ଼ି ଚାଲିଯାଏ । ପ୍ରଥମାବସ୍ଥାରେ ଶିଶୁଟି ତାହାର ପୂର୍ବପୁରୁଷ ପରି । ସେ ଯେତେବେଳେ ବଡ଼ ହେଉଥାଏ, ବିଭିନ୍ନ ଅବସ୍ଥା ମଧ୍ୟ ଦେଇ ଚାଲୁ ଚାଲୁ

ଶେଷରେ ଜାତିର ପରିଣତ ଅବସ୍ଥାରେ ଆସି ପହଞ୍ଚେ । ତେବେ ସେ ଖୁବ୍ କ୍ଷିପ୍ର ବେଗରେ ଓ ଅଳ୍ପ ସମୟ ମଧ୍ୟରେ ସେହି ଅବସ୍ଥାରେ ପହଞ୍ଚେ । ବର୍ତ୍ତମାନ ସବୁ ମନୁଷ୍ୟଙ୍କୁ ଗୋଟିଏ ଜାତି ବୋଲି ଧର ଅଥବା ସମଗ୍ର ପ୍ରାଣିଜଗତକୁ ମନୁଷ୍ୟ ଓ ନିମ୍ନତର ପ୍ରାଣୀମାନଙ୍କ ଗୋଟିଏ ସମଗ୍ର ସତ୍ତା ବୋଲି ଭାବ । ଏପରି ଗୋଟିଏ ଲକ୍ଷ୍ୟ ଅଛି, ଯେଉଁ ଦିଗକୁ ଏହି ଜୀବସମଷ୍ଟି ଧୀରେ ଧୀରେ ଅଗ୍ରସର ହେଉଅଛି । ଏହି ଲକ୍ଷ୍ୟକୁ 'ପୂର୍ଣ୍ଣତା' ବୋଲି କୁହାଯାଇ । ଏପରି ଅନେକ ନରନାରୀ ଜନ୍ମଗ୍ରହଣ କରନ୍ତି, ଯେଉଁମାନଙ୍କର ଜୀବନରେ ମାନବଜାତିର ସମ୍ପୂର୍ଣ୍ଣ ଉନ୍ନତିର ପୂର୍ବାଭାସ ସୂଚିତ ହୁଏ । ସମଗ୍ର ମାନବଜାତି ଯେତେଦିନ ପର୍ଯ୍ୟନ୍ତ ପୂର୍ଣ୍ଣତା ଲାଭ ନ କରେ, ସେତେଦିନ ପର୍ଯ୍ୟନ୍ତ ଅପେକ୍ଷା ନ କରି, ଯୁଗ ଯୁଗ ଧରି ବାରମ୍ବାର ଜନ୍ମ ଓ ପୂର୍ବଜନ୍ମ ବରଣ ନ କରି ସେମାନେ ସେମାନଙ୍କ ଜୀବନର ସ୍ୱଳ୍ପ କେତେକ ବର୍ଷ ମଧ୍ୟରେ ଯେପରି କ୍ଷିପ୍ରଗତିରେ ସେହି ଦୀର୍ଘ ସମୟକୁ ଅତିକ୍ରମ କରିଯାଆନ୍ତି । ଆହୁରି ଏହା ମଧ୍ୟ ଆମେମାନେ ଜାଣୁ, ଆନ୍ତରିକତା ଥିଲେ ପ୍ରଗତିର ଏହି ପ୍ରଣାଳୀଗୁଡ଼ିକୁ ତ୍ୱରାନ୍ୱିତ କରିବା ସମ୍ଭବ । କେବଳ ଜୀବନଧାରଣର ଉପଯୁକ୍ତ ଖାଦ୍ୟ, ବସ୍ତ୍ର ଓ ଆଶ୍ରୟ ଦେଇ କେତେଗୁଡ଼ିଏ ଅସଭ୍ୟ ଲୋକଙ୍କୁ ଯଦି କୌଣସି ଦ୍ୱୀପରେ ବାସ କରିବା ପାଇଁ ଛାଡ଼ି ଦିଆଯାଏ, ତାହାହେଲେ ମଧ୍ୟ ସେମାନେ ଧୀରେ ଧୀରେ ଉଚ୍ଚରୁ ଉଚ୍ଚତର ସଭ୍ୟତା ଉଦ୍ଭାବନ କରିବେ । ଏହା ମଧ୍ୟ ଆମମାନଙ୍କର ଅଜଣା ନୁହେଁ ଯେ, ଟିକିଏ ଅତିରିକ୍ତ ସାହାଯ୍ୟ ପାଇଲେ ଏହି ଉନ୍ନତି ଆହୁରି ତ୍ୱରାନ୍ୱିତ ହୁଏ । ଆମେମାନେ ଗଛପତ୍ରର ବୃଦ୍ଧିକୁ ସାହାଯ୍ୟ କରୁ ନାହିଁ କି ? ପ୍ରକୃତିର ହାତରେ ଛାଡ଼ିଦେଲେ ବି ଗଛଗୁଡ଼ିକ ବଢ଼ିଯାଆନ୍ତା, ତେବେ ବିଳମ୍ବ ହୁଅନ୍ତା । ବିନା ସାହାଯ୍ୟରେ ବଢ଼ିବାକୁ ଯେତେ ଦିନ ଲାଗନ୍ତା, ତାହା ଅପେକ୍ଷା ଅଳ୍ପ ସମୟ ମଧ୍ୟରେ ଆହୁରି ବଢ଼ିବା ପାଇଁ ଆମେ ସେଗୁଡ଼ିକୁ ସାହାଯ୍ୟ କରୁ । ଏହି କାର୍ଯ୍ୟ ଆମେମାନେ ସର୍ବଦା ହିଁ କରୁଅଛୁ । ଆମେମାନେ କୃତ୍ରିମ ଉପାୟରେ ବସ୍ତୁର ବୃଦ୍ଧିର ଗତି ଦ୍ରୁତତର କରି ଦେଉଛୁ । ମନୁଷ୍ୟର ଉନ୍ନତି ମଧ୍ୟ ଦ୍ରୁତତର କରିପାରିବୁ ନାହିଁ କାହିଁକି ? ଜାତି ହିସାବରେ ଆମେମାନେ ତାହା କରିପାରୁ । ଅନ୍ୟ ଦେଶକୁ ପ୍ରଚାରକ ପଠାଯାଏ କାହିଁକି ? କାରଣ ଏହି ଉପାୟରେ ଅପର ଜାତିଗୁଡ଼ିକୁ ଶୀଘ୍ର ଶୀଘ୍ର ଉନ୍ନତ କରିହୁଏ ।

ତାହାହେଲେ ବ୍ୟକ୍ତିର ଉନ୍ନତିକୁ କଅଣ ଆମେ ଦ୍ରୁତତର କରିପାରିବୁ ନାହିଁ ? ନିଶ୍ଚୟ ପାରିବୁ । ଏହି ଉନ୍ନତିର କଅଣ କୌଣସି ସୀମା ନିର୍ଦ୍ଦେଶ କରାଯାଇପାରେ ? ଗୋଟିଏ ଜୀବନରେ ମଣିଷ କେତେଦୂର ଉନ୍ନତି କରିପାରିବ, ତାହା ନିର୍ଦ୍ଦିଷ୍ଟ କରିବା ସମ୍ଭବ ନୁହେଁ । ଜଣେ ମନୁଷ୍ୟ କେବଳ ଏତିକି ଉନ୍ନତି କରିପାରେ, ତାହାଠାରୁ ବେଶୀ ନୁହେଁ, ଏପରି କଥାରେ କୌଣସି ଯୁକ୍ତି ନାହିଁ । ଅଦ୍ଭୁତ ଉପାୟରେ ପରିବେଶ ଏହି ଉନ୍ନତିର ଗତିବେଗ ବଢ଼ାଇ ଦେଇପାରେ । ତେଣୁ ପୂର୍ଣ୍ଣତାଲାଭ ପର୍ଯ୍ୟନ୍ତ ଉନ୍ନତିର କୌଣସି ସୀମା ନିର୍ଦ୍ଦିଷ୍ଟ କରାଯାଏ ନାହିଁ । ଏଥିରୁ ଆମେ କଅଣ ବୁଝିଲୁ ? ଆମେ ବୁଝିଲୁ ଯେ, ଆଜିଠାରୁ ହୁଏତ ଲକ୍ଷ ଲକ୍ଷ ବର୍ଷ ପରେ ସମସ୍ତ ଜାତି ଯେଉଁ ଧରଣର ବ୍ୟକ୍ତିମାନଙ୍କଦ୍ୱାରା

ପୂର୍ଣ୍ଣ ହେବ, ସେହି ଧରଣର ଜଣେ ବ୍ୟକ୍ତି ଆଜି ମଧ୍ୟ ଅବତୀର୍ଣ୍ଣ ହୋଇପାରନ୍ତି । ଯୋଗୀମାନେ ଏହା ହିଁ କହନ୍ତି । ସେମାନେ କହନ୍ତି, ଯେ ଅବତାରପୁରୁଷ ଓ ଆଗୁର୍ଯ୍ୟମାନେ ଏହି ଶ୍ରେଣୀର ମନୁଷ୍ୟ, ସେମାନେ କେବଳ ଏହି ଗୋଟିଏ ଜୀବନରେ ହିଁ ପୂର୍ଣ୍ଣତା ଲାଭ କରିଛନ୍ତି । ପୃଥିବୀର ଇତିହାସରେ ସର୍ବଦା ଏପରି ପୂର୍ଣ୍ଣ ମନୁଷ୍ୟଙ୍କୁ ଆମେ ପାଉଛୁ । ବର୍ତ୍ତମାନ ଯୁଗରେ କେବଳ କେତୋଟି ଦିନ ପୂର୍ବେ ଏପରି ଜଣେ ମାନବ ଆସିଥିଲେ, ଯେ ଏହି ଜନ୍ମରେ ହିଁ ସମଗ୍ର ମାନବଜାତିର ସମଗ୍ର ପଥ ଅତିକ୍ରମ କରି ଚରମସୀମାରେ ପହଞ୍ଚିଥିଲେ । ଉନ୍ନତିର ଗତି ତ୍ୱରାନ୍ୱିତ କରିବାର ଏହି ପଦ୍ଧତିକୁ ସୁନିର୍ଦ୍ଦିଷ୍ଟ ନିୟମ ଅନୁସାରେ ପରିଚାଳିତ କରିବାକୁ ହେବ । ଏହି ନିୟମଗୁଡ଼ିକୁ ଆମେ ଉଦ୍ଭାବନ କରିପାରୁ, ଏଗୁଡ଼ିକର ରହସ୍ୟ ଉଦ୍‌ଘାଟନ କରିପାରୁ ଏବଂ ନିଜ ପ୍ରୟୋଜନ ଅନୁସାରେ ଏଗୁଡ଼ିକୁ କାମରେ ଲଗାଇପାରୁ । ଏପରି କରିବାରେ ହିଁ ଉନ୍ନତି ହେବ ।

ଏହି ଉନ୍ନତିର ବେଗ ଦ୍ରୁତତର କରି, କ୍ଷିପ୍ରଗତିରେ ନିଜକୁ ବିକଶିତ କରି ଏହି ଜୀବନରେ ଆମେମାନେ ପୂର୍ଣ୍ଣତା ଲାଭ କରିପାରୁ । ଏହା ହିଁ ହେଉଛି ଆମମାନଙ୍କ ଜୀବନର ଉଚ୍ଚତର ଦିଗ ଏବଂ ଯେଉଁ ବିଜ୍ଞାନ ସାହାଯ୍ୟରେ ମନ ଓ ତାହାର ଶକ୍ତିର ଅନୁଶୀଳନ କରାଯାଏ, ତାହାର ଯଥାର୍ଥ ଲକ୍ଷ୍ୟ ଏହି ପୂର୍ଣ୍ଣତାଲାଭ । ଅର୍ଥ ଓ ଅନ୍ୟାନ୍ୟ ଜାଗତିକ ବସ୍ତୁ ଦାନ କରି ଅପରକୁ ସାହାଯ୍ୟ କରିବା ବା ଦୈନନ୍ଦିନ ଜୀବନ କିପରି ନିର୍ବିଘ୍ନରେ କଟିଯିବ ତାହା ଶିକ୍ଷା ଦେବା—ଏସବୁ ନିତାନ୍ତ ତୁଚ୍ଛ ଆନୁଷଙ୍ଗିକ କାର୍ଯ୍ୟ ମାତ୍ର ।

ତରଙ୍ଗ ପରେ ତରଙ୍ଗର ଆଘାତଦ୍ୱାରା ସମୁଦ୍ରବକ୍ଷରେ ଇତସ୍ତତଃ ଭାସମାନ କାଷ୍ଠଖଣ୍ଡ ପରି ବାହ୍ୟ ପ୍ରକୃତିର କ୍ରୀଡ଼ାପୁତ୍ତଳିକା ସଦୃଶ ଯୁଗ ଯୁଗ ଧରି ମନୁଷ୍ୟକୁ ଅପେକ୍ଷା କରିବାକୁ ନ ଦେଇ ତାହାର ପୂର୍ଣ୍ଣତ୍ୱକୁ ପ୍ରକଟ କରିଦେବା ହେଉଛି ଏହି ବିଜ୍ଞାନର ଉପଯୋଗିତା । ଏହି ବିଜ୍ଞାନ କହେ, ତୁମେ ସକଳ ଦୁଃଖ ପ୍ରକୃତି ହାତରେ ଛାଡ଼ି ନ ଦେଇ ଦାୟିତ୍ୱ ତୁମେ ନିଜେ ଗ୍ରହଣ କର ଏବଂ ଏହି କ୍ଷୁଦ୍ର ଜୀବନର ଊର୍ଦ୍ଧ୍ୱକୁ ଚାଲିଯାଅ । ଏହା ହିଁ ତାହାର ମହାନ୍ ଉଦ୍ଦେଶ୍ୟ ।

ଜ୍ଞାନରେ, ଶକ୍ତିରେ, ସୁଖସମୃଦ୍ଧିରେ ମନୁଷ୍ୟ ଆଗେଇ ଚାଲିଛି । ଜାତି ହିସାବରେ ଆମେମାନେ କ୍ରମାଗତ ଉନ୍ନତ ହୋଇ ଚାଲିଛୁ । ଏହା ଯେ ସତ୍ୟ—ଧ୍ରୁବ ସତ୍ୟ, ତାହା ଆମେମାନେ ପ୍ରତ୍ୟକ୍ଷ ଦେଖୁଛୁ । ବ୍ୟକ୍ତିଗତ କ୍ଷେତ୍ରରେ ମଧ୍ୟ କଅଣ ତାହା ସତ୍ୟ ? ହଁ, କେତେକାଂଶରେ ନିଶ୍ଚୟ । ତାହାହେଲେ ମଧ୍ୟ ଗୋଟିଏ ପ୍ରଶ୍ନ ଉଠୁଛି—ଏହାର ସୀମା ନିର୍ଦ୍ଧାରଣ ହେବ କେଉଁଠି ? ମୋର ଦୃଷ୍ଟିଶକ୍ତି କେବଳ କିଛି ଦୂରକୁ ପ୍ରସାରିତ । କିନ୍ତୁ ଏପରି ଲୋକ ମୁଁ ଦେଖିଛି—ଯେ କି ପାଖ ଘରେ କ'ଣ ଘଟୁଛି ଆଖି ବନ୍ଦ କରି ମଧ୍ୟ ସେ ଦେଖିପାରନ୍ତି । ତୁମର ଯଦି ଏହା ବିଶ୍ୱାସ ନ ହୁଏ, ସେହି ଲୋକଟି ହୁଏତ ତିନି ସପ୍ତାହ ମଧ୍ୟରେ ତୁମକୁ ଶିଖାଇଦେବେ କିପରି ଭାବରେ ଏପରି ଦେଖାଯାଏ । ଯେକୌଣସି ଲୋକକୁ ଏହି ଶିକ୍ଷା ଦିଆଯାଇପାରେ । କେହି କେହି ପାଞ୍ଚମିନିଟ ଶିକ୍ଷା କଲେ ଅପରର ମନରେ କ'ଣ ଘଟୁଛି, ତାହା ଜାଣିବାର କ୍ଷମତା ଅର୍ଜନ କରିପାରନ୍ତି । ଏହାକୁ ପ୍ରତ୍ୟକ୍ଷ ପ୍ରମାଣିତ

କରିହେବ ।

ଏହା ଯଦି ସତ୍ୟ ହୁଏ, ତେବେ ଆମେମାନେ ସୀମାରେଖା ଟାଣିବୁ କେଉଁଠି ? ଏହି ଘରର ଗୋଟିଏ କୋଣରେ ବସି ଅନ୍ୟ ଲୋକ କଅଣ ଚିନ୍ତା କରୁଛି, ତାହା ଯଦି କେହି ଜାଣିପାରେ, ପାଖ ଘରର ଲୋକଟିର ମନର ଖବର ବା ସେ ପାଇବ ନାହିଁ କାହିଁକି ? ଯେକୌଣସି ସ୍ଥାନରେ ଥିବା ଲୋକର ଚିନ୍ତାକୁ ଜାଣିବ ନାହିଁ କାହିଁକି ? ନ ପାଇବାର କୌଣସି କାରଣ ମଧ୍ୟ ଆମେମାନେ ଦେଖାଇପାରିବୁ ନାହିଁ । ସାହସ କରି ମୁଁ କହିପାରିବି ନାହିଁ ଯେ, ଏହା ଅସମ୍ଭବ । ଆମେମାନେ କେବଳ କହିପାରୁ, କିପରି ଏହା ସମ୍ଭବ ହୁଏ—ତାହା ଆମକୁ ଜଣା ନାହିଁ । ଏପରି ଘଟିବା ଅସମ୍ଭବ—ଏକଥା କହିବାର କୌଣସି ଅଧିକାର ଜଡ଼ବିଜ୍ଞାନୀମାନଙ୍କର ନାହିଁ । ସେମାନେ କେବଳ ଏତିକିମାତ୍ର କହିପାରନ୍ତି, "ଆମେମାନେ ଜାଣୁ ନାହିଁ । ବିଜ୍ଞାନର କର୍ତ୍ତବ୍ୟ ହେଲା ତଥ୍ୟ ସଂଗ୍ରହ କରିବା, ସାମାନ୍ୟୀକରଣ କରିବା, କେତେଗୁଡ଼ିଏ ମୂଳତତ୍ତ୍ୱରେ ଉପନୀତ ହେବା ଏବଂ ସତ୍ୟପ୍ରକାଶ କରିବା"—ଏହି ପର୍ଯ୍ୟନ୍ତ । କିନ୍ତୁ ତଥ୍ୟକୁ ଅସ୍ୱୀକାର କଲେ ବିଜ୍ଞାନ ଗଢ଼ିଉଠିବ କିପରି ?

ଜଣେ ଲୋକ କେତେ ଶକ୍ତି ଅର୍ଜନ କରିପାରେ, ତାହାର କୌଣସି ସୀମା ନାହିଁ । ଭାରତୀୟ ମନର ଗୋଟିଏ ବୈଶିଷ୍ଟ୍ୟ ଏହି ଯେ, କୌଣସି ବିଷୟରେ ସେ ଅନୁରକ୍ତ ହେଲେ ଆଉସବୁ ଭୁଲି ସେଥିରେ ଏକାବେଳକେ ତନ୍ମୟ ହୋଇଯାଏ । ଭାରତ ଯେ ବହୁ ବିଜ୍ଞାନର ଜନ୍ମଭୂମି ତାହା ତୁମେମାନେ ଜାଣ । ଗଣିତର ଆରମ୍ଭ ସେଠାରେ । ଆଜି ପର୍ଯ୍ୟନ୍ତ ତୁମେମାନେ ସଂସ୍କୃତ ଗଣନା ଅନୁଯାୟୀ ୧, ୨, ୩ଠାରୁ ଶୂନ୍ୟ ପର୍ଯ୍ୟନ୍ତ ସଂଖ୍ୟା ଗଣନା କରୁଛ । ସମସ୍ତେ ଜାଣନ୍ତି ଭାରତରେ ହିଁ ବୀଜଗଣିତର ଉତ୍ପତ୍ତି । ଆଉ ନିଉଟନଙ୍କ ଜନ୍ମର ହଜାର ହଜାର ବର୍ଷ ପୂର୍ବେ ମଧ୍ୟ ଭାରତବାସୀମାନେ ମାଧ୍ୟାକର୍ଷଣ ବିଷୟରେ ଜାଣିଥିଲେ ।

ଏହି ବୈଶିଷ୍ଟ୍ୟ ଲକ୍ଷ୍ୟ କରିବାର କଥା । ଭାରତ ଇତିହାସରେ ଏପରି ଗୋଟିଏ ଯୁଗ ଥିଲା, ଯେତେବେଳେ କେବଳ ମନୁଷ୍ୟ ଓ ତାହାର ମନ—ଏହି ବିଷୟରେ ଭାରତର ସମଗ୍ର ମନୋଯୋଗ ଆକୃଷ୍ଟ ହୋଇଥିଲା, ସେଥିରେ ସେ ତନ୍ମୟ ହୋଇଯାଇଥିଲା । ଲକ୍ଷ୍ୟଲାଭର ସହଜତମ ଉପାୟ ମନେ ହେବାରୁ ଏ ବିଷୟଟି ସେମାନଙ୍କ ନିକଟରେ ଏତେ ଆକର୍ଷଣୀୟ ହୋଇଥିଲା । "ଯଥାଯଥ ନିୟମ ଅନୁସରଣ କଲେ ମନର ଅସାଧ୍ୟ କିଛି ନାହିଁ"—ଏ ବିଷୟରେ ଭାରତୀୟ ମନରେ ଏତେ ଦୃଢ଼ ବିଶ୍ୱାସ ଆସିଥିଲା ଯେ, ମନଶକ୍ତିର ଗବେଷଣା ହିଁ ତାହାର ମହାନ୍ ଲକ୍ଷ୍ୟ ହୋଇ ଉଠିଲା । ସେମାନଙ୍କ ନିକଟରେ ସମ୍ମୋହନ, ଯାଦୁବିଦ୍ୟା ଓ ଏହିପରି ଅନ୍ୟାନ୍ୟ ଶକ୍ତିଗୁଡ଼ିକ ଅଲୌକିକ ମନେ ହେଉ ନ ଥିଲା । ପୂର୍ବେ ଭାରତୀୟମାନେ ଯେପରି ଭାବରେ ଜଡ଼ବିଜ୍ଞାନର ଶିକ୍ଷା ଦେଉଥିଲେ, ଠିକ୍ ସେହି ଭାବରେ ଏହି ବିଜ୍ଞାନଟିକୁ ମଧ୍ୟ ଶିଖାଇବାକୁ ଲାଗିଲେ । ଏ ବିଷୟରେ ଜାତିର ଏତେ ବେଶୀ ଦୃଢ଼ ପ୍ରତ୍ୟୟ ଆସିଥିଲା ଯେ ତାହା ଫଳରେ ଜଡ଼ବିଜ୍ଞାନ ପ୍ରାୟ ଲୁପ୍ତ ହୋଇଗଲା । ସେମାନଙ୍କର ଦୃଷ୍ଟି ନିବଦ୍ଧ ରହିଲା ମାତ୍ର ଏହି ଗୋଟିଏ ଲକ୍ଷ୍ୟ ଉପରେ । ବିଭିନ୍ନ ସମ୍ପ୍ରଦାୟର ଯୋଗୀମାନେ ବିବିଧ

ପରୀକ୍ଷାରେ ଲାଗିପଡ଼ିଲେ । କେହି ପରୀକ୍ଷା କଲେ ଆଲୋକ ନେଇ, ବିଭିନ୍ନ ବର୍ଣ୍ଣର ଆଲୋକ କିପରି ଭାବରେ ଶରୀର ମଧ୍ୟରେ ପରିବର୍ତ୍ତନ ଆଣିପାରେ, ତାହା ଆବିଷ୍କାର କରିବାକୁ ଚେଷ୍ଟା କଲେ । ସେମାନେ ଗୋଟିଏ ବିଶେଷ ବର୍ଣ୍ଣର ବସ୍ତ୍ର ପରିଧାନ କରୁଥିଲେ । ଗୋଟିଏ ବିଶେଷ ବର୍ଣ୍ଣର ପରିବେଶ ମଧ୍ୟରେ ବାସ କରୁଥିଲେ ଏବଂ ବିଶେଷ ବର୍ଣ୍ଣର ଖାଦ୍ୟଦ୍ରବ୍ୟ ଗ୍ରହଣ କରୁଥିଲେ । ଏପରି କେତେ ପ୍ରକାରର ପରୀକ୍ଷା ଚାଲିଲା । ଅନ୍ୟ କେତେକ କାନ ଖୋଲି ରଖି ଓ ବନ୍ଦ କରି ଶବ୍ଦ ନେଇ ପରୀକ୍ଷା କରିବାକୁ ଲାଗିଲେ । ଏହାବ୍ୟତୀତ ଅନ୍ୟମାନେ ଗନ୍ଧ ଏବଂ ଅନ୍ୟାନ୍ୟ ବିଷୟ ନେଇ ପରୀକ୍ଷା ଚଳାଇଲେ ।

ଏହି ସମସ୍ତର ଲକ୍ଷ୍ୟ ଥିଲା ମୂଳରେ ପହଞ୍ଚିବା, ବିଷୟର ସୂକ୍ଷ୍ମାଂଶରେ ପହଞ୍ଚିବା । ସେମାନଙ୍କ ମଧ୍ୟରେ ଅନେକ ବ୍ୟକ୍ତି ଅତି ଅଦ୍ଭୁତ ଶକ୍ତିର ପରିଚୟ ମଧ୍ୟ ଦେଇଅଛନ୍ତି । ପବନ ଭିତରେ ଭାସି ରହିବା, ପବନ ମଧ୍ୟ ଦେଇ ଚାଲିବା ପାଇଁ ଅନେକ ଚେଷ୍ଟା କରୁଥିଲେ । ପାଶ୍ଚାତ୍ୟର ଜଣେ ବଡ଼ ପଣ୍ଡିତଙ୍କ ମୁହଁରୁ ଗୋଟିଏ ଗଳ୍ପ ଶୁଣିଥିଲି, ତାହା କହୁଛି । ସିଂହଳର ଗଭର୍ଣ୍ଣର ସ୍ୱଚକ୍ଷୁରେ ଘଟଣାଟି ଦେଖି ତାହାଙ୍କୁ କହିଥିଲେ । କେତେଗୁଡ଼ିଏ କାଠି ଆଡ଼ କରି ଗୋଟିଏ ଟୁଲ୍ ପରି ସଜାଇ ଦେଇ ଗୋଟିଏ ବାଳିକାକୁ ଆସନ କରି ବସାଇ ଦିଆଗଲା । ବାଳିକାଟି କିଛି ସମୟ ବସି ରହିବା ପରେ ଯେଉଁ ଲୋକଟି ଖେଳ ଦେଖାଉଥିଲା, ସେ ଗୋଟି ଗୋଟି କରି ସେହି କାଠିଗୁଡ଼ିକୁ ଘୁଞ୍ଚାଇବାକୁ ଲାଗିଲା । ସବୁ କାଠିତକ କାଢ଼ି ନେବାପରେ ବାଳିକାଟି ଶୂନ୍ୟରେ ଭାସିବାକୁ ଲାଗିଲା । କୌଣସି ଗୋଟିଏ ଗୁପ୍ତ କୌଶଳ ଏଥିରେ ଅଛି ବୋଲି ଭାବି ଗଭର୍ଣ୍ଣର ତାଙ୍କର ତରବାରି ବାହାର କରି ବାଳିକାଟିର ତଳେ ଶୂନ୍ୟ ମଧ୍ୟରେ ସଜୋରରେ ଚାଳନ କଲେ । ସେ ଦେଖିଲେ ସେ ସ୍ଥାନରେ କିଛି ନାହିଁ । ବର୍ତ୍ତମାନ ଏହାକୁ ଆପଣମାନେ କ'ଣ କହିବେ ? କୌଣସି ଯାଦୁ ବା ଅଲୌକିକତ୍ୱ ଏହା ମଧ୍ୟରେ ନ ଥିଲା । ଏହା ହିଁ ଆଶ୍ଚର୍ଯ୍ୟ ବ୍ୟାପାର । ଏପରି ଘଟଣା ଯେ ଅଳୀକ, ତାହା ଭାରତରେ କେହି କହିବେ ନାହିଁ । ହିନ୍ଦୁମାନଙ୍କ ନିକଟରେ ଏହା ସ୍ୱାଭାବିକ ଘଟଣା । ଶତ୍ରୁମାନଙ୍କ ସହିତ ଯୁଦ୍ଧ କରିବା ପୂର୍ବରୁ ହିନ୍ଦୁମାନେ ଏପରି କହିବାର ଶୁଣାଯାଏ, "ଆରେ କୌଣସି ଯୋଗୀ ଆସିଲେ, ସମସ୍ତଙ୍କୁ ହଟେଇ ଦେବେ ।" ଏହା ହିଁ ଜାତିର ଏକ ଚରମ ବିଶ୍ୱାସ । ବାହୁବଳ ବା ତରବାରିବଳ ଏହା ପାଖରେ କେତେ ତୁଚ୍ଛ ! ସମସ୍ତ ଶକ୍ତିର ଉତ୍ସ ଆତ୍ମା ।

ଏହା ସତ୍ୟ ହେଲେ ଏଥିରେ ମନର ସବୁ ଶକ୍ତି ନିୟୋଗ କରିବାର ପ୍ରଲୋଭନ ହେବ । ତେବେ ଅନ୍ୟାନ୍ୟ ବିଜ୍ଞାନ କ୍ଷେତ୍ରରେ ଗୋଟିଏ ବଡ଼ ଧରଣର ସାଫଲ୍ୟ ଅର୍ଜନ କରିବା ଯେପରି ଖୁବ୍ କଠିନ, ଏ କ୍ଷେତ୍ରରେ ମଧ୍ୟ ସେହିପରି । ବରଂ ଏହା ତା' ଅପେକ୍ଷା ଆହୁରି କଠିନ । ତେବେ ସୁଦ୍ଧା ଅଧିକାଂଶ ଲୋକଙ୍କର ଧାରଣା ଯେ, ଏସବୁ ଶକ୍ତି ଅତି ସହଜରେ ଅର୍ଜ୍ଜନ କରାଯାଏ । ବିପୁଳ ସମ୍ପଦର ଅଧିକାରୀ ହେବାକୁ ତୁମକୁ କେତେବର୍ଷ ଲାଗିଛି କହିଲ ଭଲା ? ସେ ବିଷୟଟିକୁ ଟିକିଏ ଭାବି ଦେଖ । ପ୍ରଥମେ ବୈଦ୍ୟୁତିକ ବିଜ୍ଞାନ ବା ଇଞ୍ଜିନିୟରିଂ ବିଦ୍ୟାରେ ପାରଦର୍ଶିତା ଲାଭ କରିବାରେ କେତେ ବର୍ଷ ବିତିଯାଇଛି । ତା'ପରେ ତୁମକୁ ତୁମର

ଜୀବନସାରା କେତେ ପରିଶ୍ରମ କରିବାକୁ ପଡ଼ୁଛି ।

ଆହୁରି ମଧ୍ୟ ଅନ୍ୟାନ୍ୟ ବିଜ୍ଞାନଗୁଡ଼ିକ ମଧ୍ୟରେ ଅଧିକାଂଶ ବିଷୟବସ୍ତୁ ଗତିହୀନ, ସ୍ଥିର । ଚେୟାରଟିକୁ ଆମେମାନେ ବିଶ୍ଳେଷଣ କରିପାରୁ । ଚେୟାରଖଣ୍ଡିକ ଆମମାନଙ୍କ ସମ୍ମୁଖରୁ ଘୁଞ୍ଚିଯିବ ନାହିଁ । କିନ୍ତୁ ଏହି ବିଜ୍ଞାନର ବିଷୟବସ୍ତୁ ମନ, ଯାହା ସର୍ବଦା ଚଞ୍ଚଳ । ଯେତେବେଳେ ଏହାକୁ ପର୍ଯ୍ୟବେକ୍ଷଣ କରିବାକୁ ଯିବ, ଦେଖିବ ତାହା ହାତଛଡ଼ା ହୋଇ-ଯାଇଛି । ମନ ବର୍ତ୍ତମାନ ଗୋଟିଏ ଭାବରେ ରହିଅଛି; ପରମୁହୂର୍ତ୍ତରେ ସେ ଭାବର ପରିବର୍ତ୍ତନ ହୋଇଗଲା । ଗୋଟିକ ପରେ ଗୋଟିଏ ଭାବର ଏହି ପରିବର୍ତ୍ତନ ସବୁ ସମୟରେ ଚାଲିଛି । ଏହିସବୁ ପରିବର୍ତ୍ତନ ମଧ୍ୟରେ ହିଁ ତାହାର ଅନୁଶୀଳନ କରିବାକୁ ହେବ, ତାହାକୁ ବୁଝିବାକୁ ହେବ, ଧରିବାକୁ ହେବ, ଏବଂ ଆମମାନଙ୍କର ଆୟତ୍ତରେ ଆଣିବାକୁ ହେବ । ତେଣୁ କେତେ ବେଶୀ କଠିନ ଏହି ମନୋବିଜ୍ଞାନ ! ଏହି ବିଷୟରେ କଠୋର ଶିକ୍ଷାର ପ୍ରୟୋଜନ । ଲୋକେ ମୋତେ ପଚାରନ୍ତି କୌଣସି କାର୍ଯ୍ୟକାରୀ ପ୍ରକ୍ରିୟା ସେମାନଙ୍କୁ ଶିଖାଇ ଦେଉନାହିଁ କାହିଁକି ? ଏହା ତ ଆଉ ଥଟ୍ଟାର କଥା ନୁହେଁ । ଏହି ମଞ୍ଚ ଉପରେ ଠିଆ ହୋଇ ତୁମମାନଙ୍କୁ ବକ୍ତୃତା ଦେଉଅଛି । ତୁମେମାନେ ଘରକୁ ଫେରି ଯାଇ ଦେଖିଲ ଏଥିରେ କିଛି ଲାଭ ହେଲା ନାହିଁ । ମୁଁ ମଧ୍ୟ କିଛି ଫଳ ପାଇଲି ନାହିଁ । ତା'ପରେ ତୁମେମାନେ କହିଲ, "ସବୁ ବାଜେ କଥା"—ଏପରି ଯେ ହୁଏ ତାହାର କାରଣ—ତୁମେମାନେ ଏହାକୁ ଗୋଟିଏ ବାଜେ ଜିନିଷ ବୋଲି ଭାବିନେଇଥିଲ । ଏହି ବିଜ୍ଞାନର ଅତି ଅଳ୍ପ ମୁଁ ଜାଣେ । କିନ୍ତୁ ଯେତିକି ମାତ୍ର ମୁଁ ଜାଣେ, ସେତିକି ଜାଣିବାକୁ ମୋତେ ତିରିଶବର୍ଷ ଖଟିବାକୁ ହୋଇଛି । ଆଉ ତାହାପରେ ଯେତିକି ଶିଖିଛି, ଛଅବର୍ଷ ହେଲା ଲୋକମାନଙ୍କୁ ତାହା କହୁଛି । ଏତିକି ମାତ୍ର ଶିଖିବାକୁ ମୋତେ ତିରିଶବର୍ଷ ଲାଗିଛି—କଠୋର ପରିଶ୍ରମ ସହକାରେ ତିରିଶ ବର୍ଷ ଗଣିବାକୁ ପଡ଼ିଛି । କେତେବେଳେ ହୁଏତ ଚବିଶ ଘଣ୍ଟା ମଧ୍ୟରୁ କୋଡ଼ିଏ ଘଣ୍ଟା ପରିଶ୍ରମ କରିଛି । କେତେବେଳେ ହୁଏତ ରାତିରେ ଘଣ୍ଟାଏ ଶୋଇଛି; କେତେବେଳେ ଅବା ରାତିତମାମ ପରିଶ୍ରମ କରିଛି । କେତେବେଳେ ଅବା ଏପରି ସ୍ଥାନରେ ବାସ କରିଛି, ଯାହାକୁ କି ଶବ୍ଦହୀନ, ବାୟୁହୀନ ସ୍ଥାନ ବୋଲି କୁହାଯାଇପାରେ । କେତେବେଳେ ହୁଏତ ଗୁହା ମଧ୍ୟରେ ବାସ କରିବାକୁ ପଡ଼ିଛି । ତାହାହେଲେ ଭାବି ଦେଖ, ଏସବୁ ସତ୍ତ୍ୱେ ମୁଁ ଏ ବିଷୟରେ ଅତି ଅଳ୍ପ ଜାଣେ କିମ୍ବା କିଛି ମଧ୍ୟ ଜାଣେ ନାହିଁ । ମୁଁ ଯେପରି ଏହି ବିଜ୍ଞାନର ବହିର୍ବାସର ପ୍ରାନ୍ତଟିକୁ ମାତ୍ର ସ୍ପର୍ଶ କରିଛି । କିନ୍ତୁ, ମୁଁ ଧାରଣା କରିପାରେ ଯେ, ଏହି ବିଜ୍ଞାନଟି ସତ୍ୟ, ସୁବିଶାଳ ଓ ଅତ୍ୟାଶ୍ଚର୍ଯ୍ୟ ।

ବର୍ତ୍ତମାନ ତୁମମାନଙ୍କ ମଧ୍ୟରୁ କେହି ଯଦି ସତକୁ ସତ ଏହି ବିଜ୍ଞାନର ଅନୁଶୀଳନ କରିବାକୁ ଚାହଁ, ତାହାହେଲେ ଜୀବନର ଯେକୌଣସି କାର୍ଯ୍ୟ ପାଇଁ ଯେତେ ପରିମାଣରେ ଦୃଢ଼ସଙ୍କଳ୍ପ ହୋଇ ସେଥିରେ ଲାଗିବା ପ୍ରୟୋଜନ ହୁଏ, ଠିକ୍ ସେହି ପରିମାଣରେ କିମ୍ବା ତଦପେକ୍ଷା ଅଧିକ ଦୃଢ଼ସଙ୍କଳ୍ପ ହୋଇ ଏହି ବିଷୟରେ ଅଗ୍ରସର ହେବାକୁ ପଡ଼ିବ ।

ବିଷୟକର୍ମ ପାଇଁ କେତେ ମନୋଯୋଗ ଦେବାକୁ ପଡ଼େ ! ଆହା କି କଠୋର

ଭାବରେ ଏହା ଆମମାନଙ୍କୁ ପରଗ୍ରସ୍ତ କରେ ! ମାତା, ପିତା, ସ୍ତ୍ରୀ ବା ସନ୍ତାନ ମରଗଲେ ମଧ୍ୟ ବିଷୟକର୍ମ ବନ୍ଦ କରନ୍ତୁଏ ନାହିଁ । ଛାତି ଫାଟିଗଲେ ମଧ୍ୟ କର୍ମକ୍ଷେତ୍ରକୁ ଆମକୁ ଯିବାକୁ ହେବ । ଅତଏବ ଯନ୍ତ୍ରଣାଦାୟକ ବୋଧ ହେଲେ ସୁଦ୍ଧା ଆମକୁ କାମ କରିବାକୁ ହେବ । ଏହାର ନାମ ବିଷୟକର୍ମ, ଆଉ ଆମମାନଙ୍କ ନିକଟରେ ଏହା ଯୁକ୍ତିସଙ୍ଗତ, ଏହା ନ୍ୟାୟସଙ୍ଗତ ବୋଲି ପ୍ରତୀୟମାନ ହୁଏ ।

ଯେକୌଣସି ବିଷୟକର୍ମଠାରୁ ଅନେକ ବେଶୀ ପରିଶ୍ରମ କରିବା ପ୍ରୟୋଜନ ହୁଏ ଏହି ବିଜ୍ଞାନ ପାଇଁ । ବିଷୟ-କର୍ମରେ ଅନେକେ ହୁଏତ ସଫଳତା ଲାଭ କରିପାରନ୍ତି । କିନ୍ତୁ ଏଥିରେ ସଫଳ ହୁଅନ୍ତି ଖୁବ୍ କମ୍ ଲୋକ । କାରଣ ଯେ ଏହାକୁ ଅନୁଶୀଳନ କରନ୍ତି, ତାଙ୍କ ଚରିତ୍ରର ବୈଶିଷ୍ଟ୍ୟ ଉପରେ ଏହା ବହୁତ ନିର୍ଭର କରେ । ବିଷୟକର୍ମ କରିବାରେ ଆମେମାନେ ଦେଖୁ—ସମସ୍ତେ ଯେପରି ପ୍ରଚୁର ସମୃଦ୍ଧି ଲାଭ ନ କଲେ ସୁଦ୍ଧା ପ୍ରତ୍ୟେକେ କିଛି ନା କିଛି ଲାଭ କରନ୍ତି । ଏହି ବିଜ୍ଞାନ ସମ୍ବନ୍ଧରେ ମଧ୍ୟ ସେହିପରି ପ୍ରତ୍ୟେକେ କିଛି ନା କିଛି ଆଭାସ ନିଶ୍ଚୟ ପାଆନ୍ତି, ଯାହା ଫଳରେ ଏହାର ସତ୍ୟତା ଉପରେ ଲୋକଙ୍କର ଆସ୍ଥା ଆସେ ଏବଂ ବିଶ୍ୱାସ ଆସେ ଯେ, ବହୁ ମନୁଷ୍ୟ ବାସ୍ତବିକ ଏହି ବିଜ୍ଞାନର ଅନ୍ତର୍ଗତ ସବୁକିଛି ପ୍ରତ୍ୟକ୍ଷ କରିଅଛନ୍ତି ।

ଏହା ହିଁ ହେଲା ବିଜ୍ଞାନର ସାରକଥା । ନିଜର ଶକ୍ତି ଓ ନିଜର ଆଲୋକ ଉପରେ ନିର୍ଭର କରି ଏହି ବିଜ୍ଞାନ ଅନ୍ୟ ଯେକୌଣସି ବିଜ୍ଞାନ ସହିତ ତାହାକୁ ତୁଳନା କରି ଦେଖିବା ପାଇଁ ଆମମାନଙ୍କୁ ଆହ୍ୱାନ କରେ । ପ୍ରବଞ୍ଚକ, ଯାଦୁକର, ଶଠ ଏସବୁ କ୍ଷେତ୍ରରେ ଅଛନ୍ତି । ଅନ୍ୟ କ୍ଷେତ୍ରରେ ଯେତିକ ଅଛନ୍ତି ତାହାଠାରୁ ବରଂ ବେଶୀ ଅଛନ୍ତି । କାହିଁକି ଅଛନ୍ତି ? କାରଣ ମଧ୍ୟ ଏକ—ଯେଉଁ କାର୍ଯ୍ୟରେ ଯେତେ ବେଶୀ ଲାଭ, ଠକପ୍ରବଞ୍ଚକମାନଙ୍କର ସଂଖ୍ୟା ମଧ୍ୟ ସେତେ ବେଶୀ । ତେଣୁ କାମ ଭଲ ନୁହେଁ ଏପରି କହିବା କଅଣ ଯୁକ୍ତିସଙ୍ଗତ ! ଆଉ ଗୋଟିଏ କଥା ଅଛି । ସମସ୍ତ ଯୁକ୍ତି-ବିଚାର ମନଦେଇ ଶୁଣିବା ବୁଦ୍ଧିବୃତ୍ତିର ଗୋଟିଏ ଭଲ ବ୍ୟାୟାମ ହୋଇପାରେ, ମନଯୋଗ ସହକାରେ କୌଣସି ଅଦ୍ଭୁତ ବିଷୟର କଥା ଶୁଣିଲେ ବୁଦ୍ଧିର ପରିତୃପ୍ତି ହୋଇପାରେ, କିନ୍ତୁ କେହି ଯଦି ତାହାଠାରୁ ବେଶୀ କିଛି ଜାଣିବାକୁ ଚାହାଁନ୍ତି, ତେବେ କେବଳ ବକ୍ତୃତା ଶୁଣିଲେ ଚଳିବ ନାହିଁ । ବକ୍ତୃତାଦ୍ୱାରା ଏହା ଶିଖାଇ ହେବ ନାହିଁ, କାରଣ ଏହା ଜୀବନ-ଗଠନ କଥା । ଆଉ କେବଳ ଜୀବନ ହିଁ ଅନ୍ୟ ମଧ୍ୟରେ ଜୀବନ ସଞ୍ଚାର କରିପାରେ । ତୁମମାନଙ୍କ ମଧ୍ୟରୁ କେହି ଯଦି ଏହା ଶିଖିବାକୁ ନିଶ୍ଚିତ ଭାବରେ ଇଚ୍ଛୁକ ହୁଅ, ତାହାହେଲେ ପରମ ଆନନ୍ଦର ସହିତ ମୁଁ ତାହାକୁ ସାହାଯ୍ୟ କରିପାରେ ।

# ଆତ୍ମାନୁସନ୍ଧାନ ଓ ଆଧ୍ୟାତ୍ମିକ ଗବେଷଣାର ଭିତ୍ତି

ପାଶ୍ଚାତ୍ୟ ଦେଶରେ ଅବସ୍ଥାନ କାଳରେ ସ୍ୱାମୀ ବିବେକାନନ୍ଦ କଦାଚିତ୍ ବିତର୍କ-ମୂଳକ ଆଲୋଚନାରେ ଅଂଶଗ୍ରହଣ କରୁଥିଲେ । ଲଣ୍ଡନରେ ଅବସ୍ଥାନ କାଳରେ ଥରେ ସେହିପରି ଏକ ଆଲୋଚନାରେ ତାଙ୍କୁ ଅଂଶଗ୍ରହଣ କରିବାକୁ ପଡ଼ିଥିଲା । ସେଥିରେ ବିଚାର୍ଯ୍ୟ ବିଷୟ ଥିଲା—"ଆତ୍ମବସ୍ତୁ କ'ଣ ବୈଜ୍ଞାନିକ ପ୍ରମାଣସାପେକ୍ଷ ?" ବିତର୍କ ପ୍ରସଙ୍ଗରେ ସେ ଏପରି ଗୋଟିଏ ମନ୍ତବ୍ୟ ଶୁଣିଲେ, ଯାହା ସେ ପାଶ୍ଚାତ୍ୟରେ ପୂର୍ବରୁ ମଧ୍ୟ ଶୁଣିଥିଲେ । ପ୍ରଥମରୁ ତାହାର ଉଲ୍ଲେଖ କରି ସେ କହିଲେ :

ଗୋଟିଏ ପ୍ରସଙ୍ଗ ଉପରେ ମୁଁ ମନ୍ତବ୍ୟ କରିବାକୁ ଇଚ୍ଛା କରୁଅଛି । ମୁସଲମାନ ଧର୍ମାବଲମ୍ବୀଗଣ ସ୍ତ୍ରୀଜାତିର କୌଣସି ଆତ୍ମା ଅଛି ବୋଲି ବିଶ୍ୱାସ କରନ୍ତି ନାହିଁ—ଏପରି ଯେଉଁ ଉକ୍ତି ଏଠାରେ ଆମମାନଙ୍କ ନିକଟରେ ଉପସ୍ଥାପିତ କରାହୋଇଛି, ତାହା ଭ୍ରାନ୍ତ । ମୁଁ ଦୁଃଖର ସହିତ କହୁଅଛି ଯେ, ଖ୍ରୀଷ୍ଟଧର୍ମାବଲମ୍ବୀମାନଙ୍କ ମଧ୍ୟରେ ଏହି ଭ୍ରାନ୍ତି ବହୁଦିନର ଏବଂ ସେମାନେ ଏହି ଭ୍ରମଟିକୁ ମନରେ ପୋଷଣ କରିବାକୁ ଭଲ ପାଆନ୍ତି ବୋଲି ମୋର ମନେହୁଏ । ମନୁଷ୍ୟ-ପ୍ରକୃତିର ଏହା ଗୋଟିଏ ଅଦ୍ଭୁତ ଧାରା ଯେ, ସେ ଯେଉଁମାନଙ୍କୁ ପସନ୍ଦ କରନ୍ତି ନାହିଁ, ସେମାନଙ୍କ ସମ୍ବନ୍ଧରେ ଏପରି କିଛି ପ୍ରଚାର କରିବାକୁ ଚାହାନ୍ତି, ଯାହା ନିନ୍ଦନୀୟ ! କଥା ପ୍ରସଙ୍ଗରେ ମୁଁ କହିରଖେ ଯେ, ମୁଁ ମୁସଲମାନ ନୁହେଁ, କିନ୍ତୁ ଉକ୍ତ ଧର୍ମ ସମ୍ବନ୍ଧରେ ଅନୁଶୀଳନ କରିବାର ସୁଯୋଗ ମୋର ହୋଇଥିଲା ଏବଂ ମୁଁ ଦେଖିଛି ଯେ କୋରାନ୍‌ରେ ଏପରି ଗୋଟିଏ ଉକ୍ତି ନାହିଁ ଯାହାର ଅର୍ଥ ହେବ ଯେ, ନାରୀର ଆତ୍ମା ନାହିଁ; ବସ୍ତୁତଃ କୋରାନ୍ କହେ ଯେ, ନାରୀର ଆତ୍ମା ଅଛି ।

ଆତ୍ମା ସମ୍ବନ୍ଧରେ ଯେଉଁସବୁ ବିଷୟ ଆଜି ଆଲୋଚିତ ହେଲା, ସେ ସମ୍ପର୍କରେ ମୋର ଏଠାରେ କହିବା ଭଳି ବିଶେଷ କିଛି ନାହିଁ । କାରଣ ପ୍ରଥମରୁ ପ୍ରଶ୍ନ ଉଠେ, ଆତ୍ମିକ ବିଷୟ-ଗୁଡ଼ିକର ବୈଜ୍ଞାନିକ ଉପାୟଦ୍ୱାରା ପ୍ରତ୍ୟକ୍ଷ ପ୍ରମାଣ ଦେବା ସମ୍ଭବ କି ନୁହେଁ ? ଆପଣମାନେ ପ୍ରତ୍ୟକ୍ଷ ପ୍ରମାଣ କହିଲେ କଅଣ ବୁଝନ୍ତି ? ପ୍ରଥମତଃ ପ୍ରତ୍ୟେକ ବିଷୟକୁ ଜ୍ଞାତା ଓ ଜ୍ଞେୟ ଏହି ଉଭୟ ଦିଗରୁ ଦେଖିବା ଆବଶ୍ୟକ । ଯେଉଁ ପଦାର୍ଥବିଦ୍ୟା ଓ ରସାୟନଶାସ୍ତ୍ର ସହିତ ଆମେମାନେ ଖୁବ୍ ପରିଚିତ, ସେଗୁଡ଼ିକର କଥା ହିଁ ଧରାଯାଉ । ଏହା କ'ଣ ସତ୍ୟ ଯେ, ଏହି ଦୁଇ ବିଦ୍ୟାର ଅତି ସାଧାରଣ ବିଷୟଗୁଡ଼ିକର ପରୀକ୍ଷଣ ଜଗତର ଯେକୌଣସି ସାଧାରଣ ବ୍ୟକ୍ତି ଅନୁଧାବନ କରିପାରିବ ? ଗୋଟିଏ ଅଶିକ୍ଷିତ ଚାଷୀକୁ ନେଇ ବୈଜ୍ଞାନିକ ପରୀକ୍ଷଣ ପ୍ରଦର୍ଶନ କରନ୍ତୁ; ସେ ତାହାର କଅଣ ବୁଝିବ ? କିଛି ବୁଝିପାରିବ ନାହିଁ । କୌଣସି ବୈଜ୍ଞାନିକ ପରୀକ୍ଷା ବୁଝିବା ଭଳି ଅବସ୍ଥାରେ ଉପନୀତ ହେବା ପାଇଁ ଅନେକ ଶିକ୍ଷାର ପ୍ରୟୋଜନ ହୁଏ, ତାହା ଆଗରୁ ସେ ଏସବୁ କିଛି ବୁଝିବାକୁ ସକ୍ଷମ ହୁଏ ନାହିଁ । ଏହା ଏହିସବୁ ବିଷୟରେ ଗୋଟିଏ ବଡ଼ ଅସୁବିଧା । ଯଦି ବୈଜ୍ଞାନିକ ପରୀକ୍ଷଣ ଅର୍ଥରେ ଏହା ବୁଝିବାକୁ ହେବ ଯେ, କେତେଗୁଡ଼ିଏ ତଥ୍ୟକୁ ଏପରି ସାଧାରଣ ସ୍ତରକୁ ଆଣିବାକୁ

ହେବ ଯେ, ସେଗୁଡ଼ିକ ସମସ୍ତଙ୍କ ପକ୍ଷରେ ସମଭାବରେ ଗ୍ରହଣୀୟ ହେବ ଏବଂ ସମସ୍ତଙ୍କ ଦ୍ୱାରା ସମାନ ଭାବରେ ଅନୁଭୂତ ହେବ, ତାହାହେଲେ ମୁଁ କହିବି ଯେ, ଏପରି କୌଣସି ବୈଜ୍ଞାନିକ ପରୀକ୍ଷଣ ସମ୍ଭବ ନୁହେଁ । ତାହା ଯଦି ସମ୍ଭବ ହୁଅନ୍ତା, ତାହାହେଲେ ଆମମାନଙ୍କର ଯେତେ ବିଶ୍ୱବିଦ୍ୟାଳୟ ଏବଂ ଯେତେ ଶିକ୍ଷା-ବ୍ୟବସ୍ଥା ଅଛି ବୃଥା ହୁଅନ୍ତା । ଯଦି କେବଳ ମନୁଷ୍ୟ-ଜନ୍ମଗ୍ରହଣ କରିଛି ବୋଲି ସବୁ ପ୍ରକାର ବୈଜ୍ଞାନିକ ତତ୍ତ୍ୱ ଆମେମାନେ ବୁଝିଯାଇପାରନ୍ତୁ, ତେବେ ଆମେମାନେ ଶିକ୍ଷା ଗ୍ରହଣ କରୁଛୁ କାହିଁକି ? ଏତେ ପ୍ରକାର ଅଧ୍ୟୟନ ଅନୁଶୀଳନ ବା କରୁଛୁ କାହିଁକି ? ଏସବୁ କରିବାର ତ କୌଣସି ମୂଲ୍ୟ ନାହିଁ । ସୁତରାଂ ଆମେମାନେ ବର୍ତ୍ତମାନ ଯେଉଁ ସ୍ତରରେ ଅଛୁ, ଜଟିଳ ବିଷୟଗୁଡ଼ିକୁ ସେହି ସ୍ତରକୁ ଆଣିବା ଯଦି ବିଜ୍ଞାନସମ୍ମତ ପ୍ରତ୍ୟକ୍ଷ ପ୍ରମାଣ ବୁଝାଯାଏ, ତେବେ ଏ କଥା ଶୁଣିବା ମାତ୍ରେ ନିର୍ବିଘ୍ନରେ କୁହାଯାଇପାରେ ଯେ, ତାହା ଅତି ଅସମ୍ଭବ କଥା । ତେଣୁ ଆମେମାନେ ଯେଉଁ ଅର୍ଥ ଧରୁଛୁ, ତାହା ନିର୍ଭୁଲ ହେବା ଉଚିତ । ତେବେ ଏହି କେତେଗୁଡ଼ିଏ ଜଟିଳ ତତ୍ତ୍ୱ ପ୍ରମାଣ ପାଇଁ ଆଉ କେତେଗୁଡ଼ିଏ ଜଟିଳ ତତ୍ତ୍ୱର ଅବତାରଣା ଆବଶ୍ୟକ । ଏ ଜଗତରେ କେତେଗୁଡ଼ିଏ ଅଧିକତର ଜଟିଳ ଦୁରୂହ ବିଷୟ ଅଛି, ଯେଉଁଗୁଡ଼ିକୁ ଆମେମାନେ ଅପେକ୍ଷାକୃତ ଅଳ୍ପ ଜଟିଳ ବିଷୟଦ୍ୱାରା ବ୍ୟାଖ୍ୟା କରିଥାଉଁ ଏବଂ ବୋଧହୁଏ ସେହି ଉପାୟରେ ଉକ୍ତ ବିଷୟଗୁଡ଼ିକର ନିକଟତର ଜ୍ଞାନ ଲାଭ କରୁଁ । ସେହିପରି ଭାବରେ ସେଗୁଡ଼ିକୁ ଆମମାନଙ୍କର ବର୍ତ୍ତମାନ ସାଧାରଣ ଜ୍ଞାନସ୍ତରକୁ ନେଇଆସୁ । କିନ୍ତୁ ଏହି ପଦ୍ଧତି ଅତ୍ୟନ୍ତ ଜଟିଳ ଓ ସମୟସାପେକ୍ଷ ଏବଂ ଏହା ପାଇଁ ମଧ୍ୟ ବିଶେଷ ଅନୁଶୀଳନ ପ୍ରୟୋଜନ, ପ୍ରଭୂତ ପରିମାଣର ଶିକ୍ଷାଦୀକ୍ଷାର ପ୍ରୟୋଜନ; ସୁତରାଂ ଏ ସମ୍ପର୍କରେ ମୁଁ ଏତିକିମାତ୍ର କହିବାକୁ ଚାହେଁ ଯେ, ଆଧ୍ୟାତ୍ମିକ ବିଷୟର ବୈଜ୍ଞାନିକ ପ୍ରମାଣ ପାଇବାକୁ ହେଲେ କେବଳ ଯେ ବିଷୟଆଡ଼ୁ ସମ୍ପୂର୍ଣ୍ଣ ତଥ୍ୟ ପ୍ରମାଣ ଆଦିର ପ୍ରୟୋଜନ ଅଛି, ତାହା ନୁହେଁ । ଯେଉଁମାନେ ଏହି ପ୍ରମାଣ ପ୍ରତ୍ୟକ୍ଷ କରିବାକୁ ଇଚ୍ଛୁକ, ସେମାନଙ୍କ ତରଫରୁ ଯଥେଷ୍ଟ ସାଧନାର ପ୍ରୟୋଜନ । ଏହିସବୁ ସର୍ତ୍ତ ପୂରଣ ହେଲେ ଯାଇ କୌଣସି ଘଟଣାବିଶେଷ ସମ୍ବନ୍ଧରେ ଆମମାନଙ୍କ ସମ୍ମୁଖରେ ଯେତେବେଳେ ପ୍ରମାଣ ବା ଅପ୍ରମାଣ ଉପସ୍ଥାପିତ ହେବ, ସେତେବେଳେ ଆମେମାନେ ହଁ ବା ନା କହିପାରିବା, କିନ୍ତୁ ତତ୍ପୂର୍ବରୁ ସର୍ବାପେକ୍ଷା ଉଲ୍ଲେଖଯୋଗ୍ୟ ଘଟଣାବଳି ଅଥବା ଯେଉଁ ସମସ୍ତ ଘଟଣାର ବିବରଣ ଇତିହାସରେ ପୁନଃ ପୁନଃ ଲିପିବଦ୍ଧ ହୋଇଅଛି, ତାହାକୁ ପ୍ରମାଣ କରିବା ଅତି ଦୁରୂହ ବୋଲି ମନେହୁଏ ।

ତେଣୁ ସ୍ୱପ୍ନରୁ ଧର୍ମର ଉଦ୍ଭବ ହୋଇଛି ଏହିପ୍ରକାର ଯେଉଁ ସମସ୍ତ ବ୍ୟାଖ୍ୟା ଅତି ଅଳ୍ପ ଚିନ୍ତା ଫଳରେ ପ୍ରସୂତ ହୋଇଅଛି, ସେଗୁଡ଼ିକ ପ୍ରସଙ୍ଗରେ କିଛି କିଛି କହିବାର ଅଛି । ଯେଉଁମାନେ ଏହିସବୁ ବ୍ୟାଖ୍ୟା ଅଭିନିବେଶ ସହିତ ବିଶ୍ଳେଷଣ ଓ ବିଚାର କରିଅଛନ୍ତି, ସେମାନେ ମନେକରିବେ—ଏହି ଧରଣର ଅଭିମତ କେବଳ ଅସାର କଳ୍ପନା ମାତ୍ର । ଧର୍ମ ସ୍ୱପ୍ନରୁ ଉଦ୍ଭୂତ ଏହି ମତ ଯଦିଓ ଅତି ସହଜ ଭାବରେ ବ୍ୟାଖ୍ୟା

କରାହୋଇଛି, ତଥାପି ଏପରି କଳ୍ପନା କରିବାର କୌଣସି କାରଣ ଅଛି ବୋଲି ମନେ ହୁଏ ନାହିଁ । ତାହାହେଲେ ଅତି ସହଜରେ ଅଜ୍ଞେୟବାଦୀଙ୍କ ମତ ଗ୍ରହଣ କରାହୁଅନ୍ତା । ଦୁର୍ଭାଗ୍ୟବଶତଃ ଏ ବିଷୟର ଏତେ ସହଜ ବ୍ୟାଖ୍ୟା ଅସମ୍ଭବ । ଏପରିକି ଆଧୁନିକ ଯୁଗରେ ମଧ୍ୟ ନିତ୍ୟ ନୂତନ ଅନେକ ଆଶ୍ଚର୍ଯ୍ୟ ଘଟଣା ଘଟୁଥିବାର ଦେଖାଯାଏ । ଏଗୁଡ଼ିକ ସମ୍ବନ୍ଧରେ ଅନୁସନ୍ଧାନ କରିବାକୁ ହେବ—କରିବାକୁ ହେବ କାହିଁକି, ଏପର୍ଯ୍ୟନ୍ତ ଅନେକ ଅନୁସନ୍ଧାନ ହୋଇ ଆସୁଅଛି । ଅନ୍ଧ କହେ—ସୂର୍ଯ୍ୟ ନାହିଁ । ସେଥିରୁ ପ୍ରମାଣ ହେବ ନାହିଁ ଯେ, ସୂର୍ଯ୍ୟ ପ୍ରକୃତରେ ନାହିଁ । ବହୁବର୍ଷ ପୂର୍ବରୁ ଏହିସବୁ ଘଟଣା ସମ୍ପର୍କରେ ଅନୁସନ୍ଧାନ ହୋଇ ଯାଇଅଛି । କୌଣସି କୌଣସି ଜାତି ସମୂହଭାବରେ ବହୁ ଶତାବ୍ଦୀ ଧରି ନିଜକୁ ସ୍ନାୟୁର ସୂକ୍ଷ୍ମାତିସୂକ୍ଷ୍ମ କାର୍ଯ୍ୟକଳାପ ଆବିଷ୍କାରର ଉପଯୁକ୍ତ ଯନ୍ତ୍ର କରିବାର ସାଧନାରେ ନିଯୁକ୍ତ ରଖିଛନ୍ତି, ସେମାନଙ୍କର ଆବିଷ୍କୃତ ତଥ୍ୟପ୍ରମାଣାଦି ବହୁ ଯୁଗ ପୂର୍ବରୁ ପ୍ରକାଶିତ ହୋଇଅଛି । ଏହିସବୁ ଶିକ୍ଷାଦୀକ୍ଷା ପାଇଁ କେତେ ମହାବିଦ୍ୟାଳୟ ସ୍ଥାପିତ ହୋଇଅଛି ଏବଂ ସେହିସବୁ ଦେଶରେ ଏପରି ଅନେକ ନରନାରୀ ଆଜି ମଧ୍ୟ ବିଦ୍ୟମାନ ଅଛନ୍ତି, ଯେଉଁମାନେ ଏହି ଘଟଣାବଳୀର ଜୀବନ୍ତ ପ୍ରମାଣ । ଅବଶ୍ୟ ମୁଁ ସ୍ୱୀକାର କରେ, ଏ କ୍ଷେତ୍ରରେ ଅନେକ ଭଣ୍ଡାମି ଅଛି ଏବଂ ସେଥିରେ ପ୍ରତାରଣା ଓ ମିଥ୍ୟା ମଧ୍ୟ ଅନେକ ପରିମାଣରେ ରହିଅଛି । କିନ୍ତୁ ଏସବୁ କେଉଁ କ୍ଷେତ୍ରରେ ନାହିଁ ? ଯେକୌଣସି ଗୋଟିଏ ସାଧାରଣ ବୈଜ୍ଞାନିକ ବିଷୟ ଧରନ୍ତୁ ନା କାହିଁକି; ସନ୍ଦେହାତୀତ ସତ୍ୟ ବୋଲି ଯାହା ବୈଜ୍ଞାନିକମାନେ କିମ୍ବା ସାଧାରଣ ଲୋକେ ବିଶ୍ୱାସ କରିପାରନ୍ତି—ସେହି ପ୍ରକାର ତତ୍ତ୍ୱ ମାତ୍ର ଦୁଇ ତିନୋଟି ଅଛି—ଅବଶିଷ୍ଟ ସବୁ ଶୂନ୍ୟଗର୍ଭ କଳ୍ପନା ମାତ୍ର । ଅଜ୍ଞେୟବାଦୀ ନିଜର ଅବିଶ୍ୱାସ୍ୟ ବିଷୟ କ୍ଷେତ୍ରରେ ଯେଉଁ ପରୀକ୍ଷା ପ୍ରୟୋଗ କରିବାକୁ ଚାହାଁନ୍ତି ନିଜ ବିଜ୍ଞାନ କ୍ଷେତ୍ରରେ ତାହା ପ୍ରୟୋଗ କରି ଦେଖନ୍ତୁ ନା ! ଦେଖିବେ ତାହା ମଧ୍ୟ ମୂଳଭିତ୍ତି ସହିତ ଭୂଷୁଡ଼ି ପଡ଼ିବ । ଆମେମାନେ ଅନୁମାନ ଓ କଳ୍ପନା ଉପରେ ନିର୍ଭର କରିବାକୁ ବାଧ୍ୟ । ଆମେମାନେ ଯେଉଁ ଅବସ୍ଥାରେ ଅଛୁ, ସେଥିରେ ସନ୍ତୁଷ୍ଟ ରହି ନ ପାରୁ; ମାନବାତ୍ମାର ଏହା ହିଁ ସ୍ୱାଭାବିକ ପ୍ରବୃତ୍ତି । ଏକ ଦିଗରେ ଅଜ୍ଞେୟବାଦୀ, ଅନ୍ୟ ଦିଗରେ କୌଣସି ବିଷୟରେ ଜିଜ୍ଞାସୁ ଅନୁସନ୍ଧାନୀ—ଏହି ଉଭୟବୃତ୍ତି-ସମ୍ପନ୍ନ ହେବା ଆମମାନଙ୍କ ପକ୍ଷରେ ସମ୍ଭବ ନୁହେଁ—ଏହି ଦୁଇଟି ମଧ୍ୟରୁ ଗୋଟିକୁ ନିର୍ବାଚନ କରିନେବାକୁ ହେବ । ତେଣୁ ଆମମାନଙ୍କର ନିଜ ସୀମାର ଊର୍ଦ୍ଧ୍ୱକୁ ଯିବା ଆବଶ୍ୟକ । ଯାହା ଅଜ୍ଞାତ ବୋଲି ପ୍ରତିଭାତ, ତାହା ଜାଣିବା ପାଇଁ କଠିନ ପ୍ରୟାସ କରିବାକୁ ହେବ ଏବଂ ଏହି ସଂଗ୍ରାମ ଅପ୍ରତିହତ ଭାବେ ଚଳାଇବାକୁ ହେବ ।

ଅତଏବ—ବକ୍ତା ଅପେକ୍ଷା ଆଉ ପାଦେ ଅଗ୍ରସର ହୋଇ ମୁଁ ଏହି ମତ ଉପସ୍ଥାପିତ କରୁଅଛି ଯେ, ପ୍ରେତାତ୍ମାମାନଙ୍କ ନିକଟରୁ ଶବ୍ଦ ଅବଲମ୍ବନଦ୍ୱାରା ଉତ୍ତର ପାଇବା କିମ୍ବା ଟେବୁଲ ବାଡ଼େଇ ଶବ୍ଦ ଶୁଣିବା ପ୍ରଭୃତି ଯେଉଁସବୁ ଘଟଣା ଶିଶୁଖେଳ ବୋଲି ଅଥବା ଅନ୍ୟ ଲୋକର ଚିନ୍ତା ଜାଣିବାକୁ ସମର୍ଥ ହେବା ପ୍ରଭୃତି ଯେଉଁସବୁ ଶକ୍ତି ମୁଁ ବାଳକମାନଙ୍କ ମଧ୍ୟରେ ଦେଖିଅଛି—କେବଳ ଏହିସବୁ ସାମାନ୍ୟ ସାମାନ୍ୟ ବ୍ୟାପାର ମଧ୍ୟରେ ନୁହେଁ,

ପରନ୍ତୁ ଯେଉଁସବୁ ଘଟଣାକୁ ପୂର୍ବବର୍ତ୍ତୀ ବକ୍ତା ଉଚ୍ଚତର ଅଲୌକିକ ଅନ୍ତର୍ଦୃଷ୍ଟି ବୋଲି ଅଭିହିତ କରିଅଛନ୍ତି—କିନ୍ତୁ ଯାହାକୁ ମୁଁ ମନର ଅତିଚେତନ ଅଭିଜ୍ଞତା ବୋଲି କହୁଛି— ସେହିସବୁର ଅଧିକାଂଶ ହେଉଛି ମନସ୍ତାତ୍ତ୍ୱିକ ଗବେଷଣାର ପ୍ରଥମ ସୋପାନ ମାତ୍ର । ପ୍ରଥମେ ଆମମାନଙ୍କର ବିଚାର କରି ଦେଖିବା ଉଚିତ, ମନ ପ୍ରକୃତରେ ସେହି ଭୂମିକୁ ଆରୋହଣ କରିପାରେ କି ନାହିଁ । ମୋର ବ୍ୟାଖ୍ୟା ଅବଶ୍ୟ ଉକ୍ତ ବକ୍ତାଙ୍କ ବ୍ୟାଖ୍ୟାଠାରୁ କିଞ୍ଚିତ୍ ଭିନ୍ନ ହେବ । ତଥାପି ଉଭୟଙ୍କର ବ୍ୟବହୃତ ଶବ୍ଦଗୁଡ଼ିକର ଅର୍ଥ ଠିକ୍ କରିହେଲେ ହୁଏତ ଆମେମାନେ ଉଭୟେ ଏକମତ ହୋଇପାରିବା । ଆମମାନଙ୍କ ସମ୍ମୁଖରେ ଯେଉଁ ବ୍ରହ୍ମାଣ୍ଡ ବିଦ୍ୟମାନ ତାହା ସମ୍ପୂର୍ଣ୍ଣରୂପରେ ମାନବାନୁଭୂତିର ଅନ୍ତର୍ଭୁକ୍ତ ନୁହେଁ । ଏପରି ଅବସ୍ଥାରେ ମୃତ୍ୟୁ ପରେ ମଧ୍ୟ ସମ୍ଭବତ ଯେଉଁ ପ୍ରକାର ଚେତନା ଅଛି, ତାହା ରହିବ କି ନାହିଁ ଏ ପ୍ରଶ୍ନ ଉପରେ ବିଶେଷ କିଛି ନିର୍ଭର କରେ ନାହିଁ । ଆମ ନିଜ ମନ ଓ ଶରୀର ସମ୍ପର୍କରେ ଏ କଥା ସ୍ୱୀକାର କରିବାକୁ ହେବ ଯେ, ତାହାର ଅତି ଅଳ୍ପ ଅଂଶ ସମ୍ବନ୍ଧରେ ଆମେମାନେ ସଚେତନ ଏବଂ ଅଧିକାଂଶ ସମ୍ପର୍କରେ ଆମେମାନେ ଅଚେତନ । ତେବେ ବି ଶରୀରର ଅସ୍ତିତ୍ୱ ଅଛି । ଦୃଷ୍ଟାନ୍ତସ୍ୱରୂପ କୁହାଯାଇପାରେ ଯେ, ନିଜ ମସ୍ତିଷ୍କ ସମ୍ବନ୍ଧରେ କେହି ସଚେତନ ନୁହନ୍ତି । ମୁଁ ମୋର ମସ୍ତିଷ୍କ କେବେହେଁ ଦେଖି ନାହିଁ ଏବଂ ଏହା ସମ୍ପର୍କରେ ମୁଁ ସଚେତନ ମଧ୍ୟ ନୁହେଁ । ତଥାପି ମୁଁ ଜାଣେ ମୋର ମସ୍ତିଷ୍କ ଅଛି । ଅତଏବ ଏପରି କଥା କହିବା ଠିକ୍ ନୁହେଁ ଯେ, ଆମେମାନେ ଅନୁଭୂତି ପାଇଁ ଲାଳାୟିତ, ବସ୍ତୁତଃ ଆମେମାନେ ଏପରି କିଛି ଅସ୍ତିତ୍ୱ ପାଇଁ ଆଗ୍ରହାନ୍ୱିତ, ଯାହା ଏହି ସ୍ଥୂଳ ଜଡ଼ବସ୍ତୁଠାରୁ ପୃଥକ୍ ଏବଂ ଏହା ଅତି ସତ୍ୟ ଯେ, ଏହି ଜ୍ଞାନ ଆମେମାନେ ଏହି ଜୀବନରେ ଲାଭ କରିପାରୁ ଏବଂ ଏହି ଜ୍ଞାନ ଇତି ପୂର୍ବରୁ ଅନେକେ ଲାଭ କରିଅଛନ୍ତି ଏବଂ ସେମାନେ ଏହି ସତ୍ୟତା ଠିକ୍ ସେହିପରି ଭାବରେ ପ୍ରତିପନ୍ନ କରିଅଛନ୍ତି, ଯେପରି ଭାବରେ କୌଣସି ବୈଜ୍ଞାନିକ ବିଷୟ ପ୍ରତିପାଦିତ ହୋଇଥାଏ ।

ଏହିସବୁ ବିଷୟ ଆମମାନଙ୍କୁ ଅନୁଧାବନ କରିବାକୁ ହେବ । ଉପସ୍ଥିତ ସମସ୍ତଙ୍କୁ ମୁଁ ଆଉ ଗୋଟିଏ ବିଷୟ ସ୍ମରଣ କରାଇଦେବାକୁ ଚାହେଁ । ଏହି କଥା ମନେ ରଖିବା ଭଲ ଯେ ଆମେମାନେ ପ୍ରାୟ ଏହିସବୁ ବ୍ୟାପାରରେ ପ୍ରତାରିତ ହୋଇଥାଉ । କୌଣସି ବ୍ୟକ୍ତି ହୁଏତ ଆମମାନଙ୍କ ସମ୍ମୁଖରେ ଏପରି ଗୋଟିଏ ବିଷୟର ପ୍ରମାଣ ଉପସ୍ଥିତ କଲେ, ଯାହା ଆଧ୍ୟାତ୍ମିକତା କ୍ଷେତ୍ରରେ ଅସାଧାରଣ, କିନ୍ତୁ ଆମେମାନେ ତାକୁ ଏହି ଯୁକ୍ତି ଅବଲମ୍ବନ କରି ଅସ୍ୱୀକାର କଲୁ ଯେ, ଆମେମାନେ ତାହା ସତ୍ୟ ବୋଲି ଅନୁଧାବନ କରିପାରୁ ନାହୁଁ । ଅନେକ କ୍ଷେତ୍ରରେ ଉପସ୍ଥାପିତ ବିଷୟ ସତ୍ୟ ନ ହୋଇ ବି ପାରେ, କିନ୍ତୁ ପୁଣି ଅନେକ କ୍ଷେତ୍ରରେ ଆମେମାନେ ସେହିସବୁ ପ୍ରମାଣ ଅନୁଧାବନ କରିବାକୁ ଉପଯୁକ୍ତ କି ନା ଏବଂ ଆମେମାନେ ଦେହ ଓ ମନକୁ ସେହି ସମସ୍ତ ଆଧ୍ୟାତ୍ମିକ ସତ୍ୟ ଆବିଷ୍କାରର ଉପଯୁକ୍ତ ଆଧାର ରୂପରେ ପ୍ରସ୍ତୁତ କରିଅଛୁ କି ନା, ତାହା ବିବେଚନା କରିବାକୁ ଭୁଲିଯାଉଁ ।

## ରାଜଯୋଗର ଲକ୍ଷ୍ୟ

ଧର୍ମଜୀବନରେ ଧ୍ୟାନ ଧାରଣା ହେଉଛି ଯୋଗର ଲକ୍ଷ୍ୟ, ନୈତିକତା ନୁହେଁ । କିନ୍ତୁ କାର୍ଯ୍ୟତଃ ବହୁ କ୍ଷେତ୍ରରେ ନୀତିବିଷୟକ ଆଲୋଚନା ଆସିଯାଏ । ଭଗବାନଙ୍କର ବାଣୀ ବୋଲି ଯାହା ପରିଚିତ, କେବଳ ସେତିକିରେ ପରିତୃପ୍ତ ନ ହୋଇ ଆମ ମନ ସତ୍ୟ ସମ୍ବନ୍ଧରେ ଆନ୍ତର ଅନୁସନ୍ଧାନ-ପରାୟଣ ହୁଏ । ଆମେ ନିଜେ କିଛି ସତ୍ୟ ଉପଲବ୍‌ଧି କରିବାକୁ ଚାହୁଁ । ଧର୍ମର ବାସ୍ତବତା ନିର୍ଭର କରେ ଏକମାତ୍ର ଉପଲବ୍‌ଧି ଉପରେ । ମନର ଅତିଚେତନ ଭୂମିରୁ ଅଧିକାଂଶ ଆଧ୍ୟାତ୍ମିକ ସତ୍ୟ ଆହରଣ କରିବାକୁ ପଡ଼େ । ବିଶେଷ ଅନୁଭୂତି ଲାଭ କରିଛନ୍ତି ବୋଲି ଯେଉଁମାନେ ଦାବୀ କରନ୍ତି, ସେମାନେ ଯେଉଁ ଭୂମିକୁ ଉଠିଛନ୍ତି ସେହି ଭୂମିକୁ ଆମମାନଙ୍କୁ ଉଠିବାକୁ ହେବ । ସେଠାକୁ ଉଠି ଆମେମାନେ ଯଦି ସେହି ଧରଣର ଅନୁଭୂତି ଲାଭ କରୁଁ, ତାହାହେଲେ ଆମମାନଙ୍କ ନିକଟରେ ତାହା ସତ୍ୟ ବୋଲି ପ୍ରତିପାଦିତ ହୋଇପାରେ । ଅନ୍ୟମାନେ ଯାହା କିଛି ପ୍ରତ୍ୟକ୍ଷ କରିଅଛନ୍ତି, ସେସବୁ ଆମେମାନେ ପ୍ରତ୍ୟକ୍ଷ କରିପାରୁ । ଯାହା ଥରେ ଘଟିଛି ତାହା ପୁନର୍ବାର ଘଟିପାରେ । କେବଳ ସେତିକି ନୁହେଁ, ଏକା ପରିବେଶରେ ତାହା ଘଟିବାକୁ ବାଧ୍ୟ । ଏହି ଅତିଚେତନ ଅବସ୍ଥାରେ କିପରି ପହଞ୍ଚିବାକୁ ହୁଏ, ତାହା ରାଜଯୋଗ ଶିକ୍ଷା ଦିଏ । ପ୍ରତ୍ୟେକ ପ୍ରଧାନ ଧର୍ମ ଏହି ଅତିଚେତନ ଅବସ୍ଥାକୁ କୌଣସି ନା କୌଣସି ପ୍ରକାରେ ସ୍ୱୀକାର କରିଥାନ୍ତି । ବିଶେଷକରି ଭାରତରେ ଏହି ଦିଗ ଉପରେ ଅଧିକ ମନୋଯୋଗ ଦିଆଯାଏ । ପ୍ରଥମାବସ୍ଥାରେ କେତେଗୁଡ଼ିଏ ବାହ୍ୟ ପ୍ରକ୍ରିୟା ଏହି ଅବସ୍ଥା ଲାଭ ପକ୍ଷରେ ସହାୟକ ହୋଇପାରେ; କିନ୍ତୁ କେବଳ ଏହି ଧରଣର ବାହ୍ୟପ୍ରକ୍ରିୟା ଅବଲମ୍ବନଦ୍ୱାରା କେବେହେଲେ ବେଶୀ ଦୂର ଅଗ୍ରଗତି କରିହୁଏ ନାହିଁ । ନିର୍ଦ୍ଦିଷ୍ଟ ଆସନ, ନିର୍ଦ୍ଦିଷ୍ଟ ପ୍ରଣାଳୀରେ ଶ୍ୱାସକ୍ରିୟା ଇତ୍ୟାଦି ସାହାଯ୍ୟରେ ମନ ଶାନ୍ତ ଓ ଏକାଗ୍ର ହୁଏ । କିନ୍ତୁ ଏହି ଅଭ୍ୟାସଗୁଡ଼ିକ ସଙ୍ଗେ ସଙ୍ଗେ ପବିତ୍ରତା ଓ ଭଗବାନ-ଲାଭ ବା ସତ୍ୟ ଉପଲବ୍‌ଧି ପାଇଁ ତୀବ୍ର ଆକାଙ୍‌କ୍ଷା ରହିବା ଆବଶ୍ୟକ । କିନ୍ତୁ ସ୍ଥିର ହୋଇ ବସି ଗୋଟିଏ ଭାବ ଉପରେ ମନ ନିବିଷ୍ଟ କରିବାରେ ଏ ମନକୁ ସେହିଠାରେ ଧରି ରଖିବାର ଚେଷ୍ଟା କରିବାକୁ ଆରମ୍ଭ କଲାମାତ୍ରେ, ଅଧିକାଂଶ ଲୋକ ଅନୁଭବ କରିବେ ଯେ, ସେଥିରେ ସଫଳ ହେବା ପାଇଁ ବାହାରର ସହାୟତାର ପ୍ରୟୋଜନ ଅଛି । ମନକୁ ଧୀରେ ଧୀରେ ଏବଂ ଯଥାନିୟମାନୁଯାୟୀ ନିଜ ବଶରେ ଆଣିବାକୁ ହୁଏ । ଧୀର, ନିରବଚ୍ଛିନ୍ନ ଏବଂ ଅଧ୍ୟବସାୟଯୁକ୍ତ ସାଧନ ମାଧ୍ୟମରେ ଇଚ୍ଛାଶକ୍ତିକୁ ପରିପୁଷ୍ଟ କରିବାକୁ ହୁଏ । ଏହା ପିଲାଖେଳ ନୁହେଁ । ଦିନେ ଚେଷ୍ଟାକରି ପରଦିନ ଛାଡ଼ିଦେବା ଭଳି ବିଷୟ ନୁହେଁ । ଏହା ସମସ୍ତ ଜୀବନର କାର୍ଯ୍ୟ ଆଉ ଯେଉଁ ଲକ୍ଷ୍ୟ-ଲାଭ ପାଇଁ ଏହି ପ୍ରଚେଷ୍ଟା, ତାହା ପାଇବା ପାଇଁ ଯେତେ ମୂଲ୍ୟ ଆମକୁ ଦେବାକୁ ପଡୁନା କାହିଁକି, ସେ ମୂଲ୍ୟ ତାହାର ସମ୍ପୂର୍ଣ୍ଣ ଉପଯୁକ୍ତ । କାରଣ ଆମର ଲକ୍ଷ୍ୟ ହେଲା ଭଗବତ୍‌-ସତ୍ତା ସହିତ ପୂର୍ଣ୍ଣ ଏକତ୍ୱାନୁଭୂତି । ଏହି ଲକ୍ଷ୍ୟ ଆଡ଼କୁ ଦୃଷ୍ଟି ରହିଲେ ଏବଂ ସେହି ଲକ୍ଷ୍ୟରେ ଯେ ଆମେମାନେ ନିଶ୍ଚୟ ପହଞ୍ଚିପାରିବା ଏହି ବୋଧ ରହିଲେ ତାହା ଲାଭ କରିବା ପାଇଁ କୌଣସି ମୂଲ୍ୟକୁ ଆଉ ଅତ୍ୟଧିକ ବୋଲି ମନେହୁଏ ନାହିଁ ।

# ଏକାଗ୍ରତା

[୧୯୦୦ ଖ୍ରୀ: ୧୬ ମାର୍ଚ୍ଚ ସାନ୍‌ଫ୍ରାନ୍‌ସିସ୍‌କୋ ସହରରେ ଓ୍ୱାଶିଂଟନ ସଭାଗୃହରେ ପ୍ରଦତ୍ତ । ସାଙ୍କେତିକ ଲିପିକାର ଓ ଅନୁଲେଖିକା ଆଇଡ଼ା ଆନ୍‌ସେଲ୍ ଯେଉଁଠାରେ ସ୍ୱାମୀଜୀଙ୍କ କଥା ବୁଝିପାରି ନାହାନ୍ତି, ସେଠାରେ କେତେଟି ବିନ୍ଦୁ ଚିହ୍ନ (...) ଦିଆହୋଇଅଛି । ପ୍ରଥମ ବନ୍ଧନୀ ଅନ୍ତର୍ଗତ ଶବ୍ଦଗୁଡ଼ିକ ବା ବାକ୍ୟଗୁଡ଼ିକ ସ୍ୱାମୀଜୀଙ୍କର ନିଜର ନୁହେଁ । ଭାବ ପରିସ୍ଫୁଟନ ପାଇଁ ଅନୁଲେଖିକା ଏହା ଯୋଡ଼ିଛନ୍ତି । ମୂଳ ଇଂରାଜୀ ବକ୍ତୃତାଟି ହଲିଉଡ଼ ବେଦାନ୍ତ କେନ୍ଦ୍ରର ମୁଖପତ୍ର 'Vedanta and the West' ପତ୍ରିକାର ୧୧୧ ତମ ସଂଖ୍ୟାରେ ପ୍ରକାଶିତ ହୋଇଥିଲା । ]

ବହିର୍ଜଗତର ଅଥବା ଅନ୍ତର୍ଜଗତର ଯାବତୀୟ ଜ୍ଞାନ ଆମେମାନେ ଗୋଟିଏ ମାତ୍ର ଉପାୟରେ ଲାଭ କରୁଁ—ତାହା ମନ-ସଂଯୋଗ । କୌଣସି ବୈଜ୍ଞାନିକ ତଥ୍ୟ ମଧ୍ୟ ଜାଣିବା ସମ୍ଭବପର ହେବ ନାହିଁ, ଯଦି ସେହି ବିଷୟରେ ଆମେମାନେ ମନକୁ ଏକାଗ୍ର କରିବାକୁ ସମର୍ଥ ନ ହେଉ । ଜ୍ୟୋତିର୍ବିଦ୍ ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ମନ-ସଂଯୋଗ କରନ୍ତି । ଏହିପରି ଅନ୍ୟାନ୍ୟ କ୍ଷେତ୍ରରେ ମଧ୍ୟ ତାହା । ମନର ରହସ୍ୟ ଜାଣିବାକୁ ହେଲେ ଏହି ଉପାୟ ଅବଲମ୍ବନ କରିବାକୁ ହେବ । ମନକୁ ଏକାଗ୍ର କରି ତାହାକୁ ନିଜ ଉପରେ କେନ୍ଦ୍ରୀଭୂତ କରିବାକୁ ହେବ । ଏହି ଜଗତରେ ଗୋଟିଏ ମନଠାରୁ ଅନ୍ୟ ମନର ପାର୍ଥକ୍ୟ କେବଳ ଏକାଗ୍ରତାର ତାରତମ୍ୟରେ । ଦୁଇଟି ଲୋକ ମଧ୍ୟରେ ଯାହାର ଏକାଗ୍ରତା ବେଶୀ, ସେ ହିଁ ଅଧିକ ଜ୍ଞାନ ଲାଭ କରିବାକୁ ସମର୍ଥ ହୁଏ ।

ଅତୀତ ଓ ବର୍ତ୍ତମାନର ସବୁ ମହାପୁରୁଷମାନଙ୍କ ଜୀବନରେ ମଧ୍ୟ ଏକାଗ୍ରତାର ବ୍ୟାପକ ପ୍ରଭାବ ଦେଖିବାକୁ ମିଳେ । ଏମାନଙ୍କୁ 'ପ୍ରତିଭାଶାଳୀ' ବୋଲି କୁହାଯାଇଥାଏ । ଯୋଗଶାସ୍ତ୍ର ମତରେ ଦୃଢ଼ ପ୍ରଚେଷ୍ଟା ରହିଲେ ଆମେମାନେ ସମସ୍ତେ ପ୍ରତିଭାବାନ୍ ହୋଇପାରିବା । କେହି କେହି ଅଧିକ ଯୋଗ୍ୟତାସମ୍ପନ୍ନ ହୋଇ ଏହି ପୃଥିବୀରେ ଜନ୍ମଗ୍ରହଣ କରନ୍ତି ଏବଂ ଜୀବନର କର୍ତ୍ତବ୍ୟଗୁଡ଼ିକ ଅପେକ୍ଷାକୃତ ଦ୍ରୁତଗତିରେ ସମ୍ପନ୍ନ କରନ୍ତି । ଏହା ଆମେମାନେ ମଧ୍ୟ ସମସ୍ତେ କରିପାରୁଁ । ଏହି ଶକ୍ତି ସମସ୍ତଙ୍କ ମଧ୍ୟରେ ରହିଛି । ମନକୁ ଜାଣିବା ପାଇଁ କି ଉପାୟରେ ଏକାଗ୍ର କରାଯାଏ, ତାହା ବର୍ତ୍ତମାନ ବକ୍ତୃତାର ବିଷୟବସ୍ତୁ । ଯୋଗୀମାନେ ମନ-ସଂଯମର ଯେଉଁ ନିୟମଗୁଡ଼ିକ ଲିପିବଦ୍ଧ କରିଅଛନ୍ତି, ଆଜି ରାତିରେ ସେଗୁଡ଼ିକ ମଧ୍ୟରୁ କେତେକ ଆଲୋଚନା କରିବି ।

ଅବଶ୍ୟ ମନର ଏକାଗ୍ରତା ନାନାଭାବରେ ଆସିଥାଏ । ଇନ୍ଦ୍ରିୟସମୂହ ମାଧ୍ୟମରେ ଏକାଗ୍ରତା ଆସିପାରେ । ମଧୁର ସଙ୍ଗୀତ ଶ୍ରବଣଦ୍ୱାରା କାହାରି କାହାରି ମନ ଶାନ୍ତ ହୋଇଯାଏ; କେହି କେହି ହୁଏତ ଏକାଗ୍ରତା ହୁଅନ୍ତି କୌଣସି ସୁନ୍ଦର ଦୃଶ୍ୟ ଦେଖି... । ଏପରି ଲୋକ ମଧ୍ୟ ଅଛନ୍ତି, ଯେ ଲୁହାକଣ୍ଟା ଆସନରେ ଶୋଇ ବା ଗୋଡ଼ ଉପରେ ବସି ମନକୁ ଏକାଗ୍ର କରିପାରନ୍ତି । ଏଗୁଡ଼ିକ ସାଧାରଣ ନିୟମ ନୁହେଁ, ଏହି ପ୍ରଣାଳୀ ଅତ୍ୟନ୍ତ ଅବୈଜ୍ଞାନିକ ।

ମନକୁ କ୍ରମଶଃ ନିୟନ୍ତ୍ରିତ କରିବା ହେଉଛି ବିଜ୍ଞାନସମ୍ମତ ଉପାୟ ।

କେହି ଊର୍ଦ୍ଧ୍ୱବାହୁ ହୋଇ ମନ ଏକାଗ୍ର କରନ୍ତି । ଶାରୀରିକ କ୍ଲେଶ ହିଁ ତାହାଙ୍କୁ ଈପ୍ସିତ ଏକାଗ୍ରତା ଲାଭ କରାଉଛି । କିନ୍ତୁ ଏ ସବୁ ଅସ୍ୱାଭାବିକ । ଭିନ୍ନ ଭିନ୍ନ ଦାର୍ଶନିକ ଏ ସମ୍ବନ୍ଧରେ କେତେଗୁଡ଼ିଏ ସାର୍ବଜନୀନ ଉପାୟ ବତାଇଅଛନ୍ତି । କେହି କେହି କହନ୍ତି ଯେ, ଶରୀର ଆମମାନଙ୍କ ପାଇଁ ଯେଉଁ ସୀମା ସୃଷ୍ଟି କରିଛି, ତାହା ଅତିକ୍ରମ କରି ମନର ଅତିଚେତନ ଅବସ୍ଥାରେ ପହଞ୍ଚିବା ହିଁ ଆମମାନଙ୍କର ଲକ୍ଷ୍ୟ । ଚିତ୍ତଶୁଦ୍ଧିର ସହାୟକ ବୋଲି ଯୋଗୀଙ୍କ ନିକଟରେ ନୀତିଶାସ୍ତ୍ରର ମୂଲ୍ୟ ରହିଛି । ମନ ଯେତେ ପବିତ୍ର ହେବ, ତାହାକୁ ସଂଯତ କରିବା ସେତେ ସହଜ ହେବ । ମନକୁ ଯେକୌଣସି ଚିନ୍ତା ଆସୁ ନା କାହିଁକି ମନ ତାହା ଧାରଣ ବା ଗ୍ରହଣ କରି ତାକୁ ବାହ୍ୟକର୍ମରେ ରୂପାୟିତ କରେ । ଯେଉଁ ମନ ଯେତେ ସ୍ଥୂଳ, ତାହାକୁ ବଶ କରିବା ସେତେ କଠିନ । କୌଣସି ବ୍ୟକ୍ତିର ନୈତିକ ଚରିତ୍ର କଳୁଷିତ ହେଲେ ତାହା ପକ୍ଷରେ ମନ ସ୍ଥିର କରି ମନୋବିଜ୍ଞାନର ଅନୁଶୀଳନ କରିବା କେବେହେଁ ସମ୍ଭବ ନୁହେଁ । ପ୍ରଥମେ ପ୍ରଥମେ ହୁଏତ ସେ ଆଂଶିକ ଭାବରେ ମନଃସଂଯମ କଲା, କିଛି ସଫଳତା ମଧ୍ୟ ଅର୍ଜନ କଲା, କିମ୍ବା ତା'ର ଦୂରଶ୍ରବଣଶକ୍ତି ଲାଭ ହେଲା...କିନ୍ତୁ ଏହି ଶକ୍ତିଗୁଡ଼ିକ ତାହା ନିକଟରୁ ଚାଲିଯିବ । ଅନେକ କ୍ଷେତ୍ରରେ ଯେଉଁସବୁ ଅସାଧାରଣ ଶକ୍ତି ତାହାର ଆୟତ୍ତରେ ଆସିଥିଲା, ଅନୁସନ୍ଧାନ କଲେ ଦେଖାଯିବ ସେଗୁଡ଼ିକ କୌଣସି ନିୟମିତ ବିଜ୍ଞାନସମ୍ମତ ଶିକ୍ଷାପ୍ରଣାଳୀ ମାଧ୍ୟମରେ ଅର୍ଜିତ ହୋଇ ନାହିଁ । ଯେଉଁମାନେ ଯାଦୁବଳଦ୍ୱାରା ସର୍ପ ବଶୀଭୂତ କରନ୍ତି, ସେମାନଙ୍କର ପ୍ରାଣ ଯାଏ ସର୍ପାଘାତଦ୍ୱାରା··· କେହି ଯଦି କୌଣସି ଅଲୌକିକ ଶକ୍ତି ଲାଭ କରେ, ତେବେ ପରିଣାମରେ ସେହି ଶକ୍ତିର କବଳରେ ସେ ବିନଷ୍ଟ ହେବ । ଭାରତବର୍ଷରେ ଲକ୍ଷ ଲକ୍ଷ ଲୋକ ନାନାବିଧ ଉପାୟରେ ଅଲୌକିକ ଶକ୍ତି ଲାଭ କରନ୍ତି । ସେମାନଙ୍କ ମଧ୍ୟରୁ ଅଧିକାଂଶ ଉନ୍ମାଦରୋଗଗ୍ରସ୍ତ ହୋଇ ମୃତ୍ୟୁମୁଖରେ ପଡ଼ନ୍ତି । ଅନେକେ ପୁଣି ଅପ୍ରକୃତିସ୍ଥ ହୋଇ ଆତ୍ମହତ୍ୟା କରନ୍ତି ।

ମନଃସଂଯମର ଅନୁଶୀଳନ—ବିଜ୍ଞାନସମ୍ମତ, ଧୀର, ଶାନ୍ତିପୂର୍ଣ୍ଣ ଓ ନିରାପଦ ଭାବରେ ଶିକ୍ଷା କରିବା ଉଚିତ । ପ୍ରଥମ ପ୍ରୟୋଜନ ନୀତିପରାୟଣ ହେବା । ଏହିପରି ଲୋକ ଦେବତାମାନଙ୍କୁ ନିଜ ସମ୍ମୁଖରେ ପ୍ରକଟିତ ଦେଖିବାକୁ ଚାହାଁନ୍ତି ଏବଂ ଦେବତାମାନେ ମଧ୍ୟ ସ୍ୱର୍ଗରୁ ଅବତରଣ କରି ସେମାନଙ୍କ ନିକଟରେ ନିଜର ସ୍ୱରୂପ ପ୍ରକାଶ କରନ୍ତି । ଆମମାନଙ୍କର ମନସ୍ତତ୍ତ୍ୱ ଓ ଦର୍ଶନର ସାରକଥା ହେଲା ସଂପୂର୍ଣ୍ଣ ଭାବରେ ସୁନୀତିପରାୟଣ ହେବା । ଟିକିଏ ଭାବି ଦେଖନ୍ତୁ ଏହାର ଅର୍ଥ କ'ଣ ? କାହାରି କୌଣସି ଅନିଷ୍ଟ ନ କରିବା, ପୂର୍ଣ୍ଣ ପବିତ୍ରତା ଓ କଠୋରତା—ଏଗୁଡ଼ିକ ଏକାନ୍ତ ଆବଶ୍ୟକ । ଥରେ ଭାବି ଦେଖନ୍ତୁ କାହାରି ଭିତରେ ଯଦି ଏହିସବୁ ଗୁଣର ପୂର୍ଣ୍ଣ ସମାବେଶ ହୁଏ, ତେବେ ତାହା ଅପେକ୍ଷା ଆଉ ଅଧିକ କଅଣ ପ୍ରୟୋଜନ କହନ୍ତୁ ତ ? ଯଦି କେହି କୌଣସି ଜୀବପ୍ରତି ସଂପୂର୍ଣ୍ଣ ବୈରଭାବଶୂନ୍ୟ ହୁଏ ··· (ତାହା ସମ୍ମୁଖରେ) ପ୍ରାଣୀମାନେ ମଧ୍ୟ ହିଂସା ତ୍ୟାଗ କରିବେ । ଯୋଗମାର୍ଗର ଆଚାର୍ଯ୍ୟମାନେ ସୁକଠିନ ନିୟମାବଳୀ ପ୍ରଣୟନ କରିଅଛନ୍ତି ।··· (ସେଗୁଡ଼ିକୁ ପାଳନ ନ କଲେ କେହି

ଯୋଗୀ ହୋଇପାରିବେ ନାହିଁ) ଯେପରି ଦାନଶୀଳ ନ ହେଲେ କେହି 'ଦାତା' ଆଖ୍ୟା ଲାଭ କରିପାରନ୍ତି ନାହିଁ । ··

ତୁମେମାନେ ବିଶ୍ୱାସ କରିବ କି - ମୁଁ ଏପରି ଜଣେ ଯୋଗୀପୁରୁଷ[୧] ଦେଖିଅଛି, ଯେ ଥିଲେ ଗୁହାବାସୀ ଏବଂ ସେହି ଗୁହା ମଧ୍ୟରେ ବିଷଧର ସର୍ପ ଓ ବେଙ୍ଗ ତାଙ୍କ ସହିତ ଏକତ୍ର ବାସ କରୁଥିଲେ । ସେ କେବେ କେବେ ମାସମାସ ଧରି ଉପବାସରେ କଟାଇ ବାହାରକୁ ଆସୁଥିଲେ । ସବୁବେଳେ ଚୁପଚାପ୍ ରହୁଥିଲେ । ଦିନେ ଗୋଟିଏ ଚୋର ଆସିଲା ।··· ସେ ଚୋରି କରିବାକୁ ଆସିଥିଲା । ସାଧୁଙ୍କୁ ଦେଖି ଭୀତ ହୋଇ ସେ ଚୋରି କରିଥିବା ଜିନିଷ ପକାଇଦେଇ ପଳାଇଲା । ସାଧୁ ପୁଟୁଳିଟି ଉଠାଇ ନେଇ ତାହା ପଛେ ପଛେ ଦୌଡ଼ି ଦୌଡ଼ି ତା' ପାଖରେ ପହଞ୍ଚିଲେ । ଶେଷରେ ତା'ର ପାଦତଳେ ପୁଟୁଳିଟି ଥୋଇଦେଇ କରଯୋଡ଼ି ଅଶ୍ରୁପୂର୍ଣ୍ଣ ଲୋଚନରେ ତାଙ୍କର ଅନିଚ୍ଛାକୃତ ବ୍ୟାଘାତ ପାଇଁ କ୍ଷମା ପ୍ରାର୍ଥନା କଲେ ଓ ଅତି କାତର ଭାବରେ ଜିନିଷଗୁଡ଼ିକ ନେବା ପାଇଁ ବାଧ୍ୟ କଲେ । ସେ କହିଲେ, "ଏଗୁଡ଼ିକ ମୋର ନୁହେଁ, ତୁମର ।"

ମୋର ବୃଦ୍ଧ ଆଚାର୍ଯ୍ୟଦେବ କହୁଥିଲେ, "ଫୁଲ ଫୁଟିଲେ ମହୁମାଛି ଆପେ ଆପେ ଆସିବେ ।" ଏପରି ଲୋକ ଏବେ ମଧ୍ୟ ଅଛନ୍ତି । ସେମାନଙ୍କର କଥା କହିବାର ପ୍ରୟୋଜନ ହୁଏ ନାହିଁ । ଯେତେବେଳେ ମନୁଷ୍ୟର ଅନ୍ତରର ଅନ୍ତଃସ୍ଥଳ ପବିତ୍ର ହୁଏ, ହୃଦୟରେ ବିନ୍ଦୁମାତ୍ର ଘୃଣାଭାବ ନ ଥାଏ, ସେତେବେଳେ ସବୁ ପ୍ରାଣୀ ( ତାଙ୍କର ସମ୍ମୁଖରେ ) ହିଂସାଦ୍ୱେଷ ପରିତ୍ୟାଗ କରନ୍ତି । ପବିତ୍ରତା କ୍ଷେତ୍ରରେ ସେହି କଥା । ମନୁଷ୍ୟ ସହିତ ଆଚରଣ ପାଇଁ ଏଗୁଡ଼ିକ ପ୍ରୟୋଜନ ।··ସମସ୍ତଙ୍କୁ ଭଲ ପାଇବାକୁ ହେବ ।··· ଅନ୍ୟର ଦୋଷତ୍ରୁଟି ଦେଖିବା ତ ଆମମାନଙ୍କର କାର୍ଯ୍ୟ ନୁହେଁ । ସେଥିରେ କୌଣସି ଉପକାର ହୁଏ ନାହିଁ । ସେଗୁଡ଼ିକ ସମ୍ବନ୍ଧରେ ଆମେମାନେ ଚିନ୍ତା ମଧ୍ୟ ଯେପରି ନ କରୁ । ସଦ୍‌ଚିନ୍ତା କରିବା ହିଁ ଆମମାନଙ୍କର ଉଚିତ । ଦୋଷର ବିଚାର କରିବା ପାଇଁ ଆମେମାନେ ପୃଥିବୀକୁ ଆସିନାହୁଁ । ସତ୍ ହେବା ହିଁ ଆମମାନଙ୍କର କର୍ତ୍ତବ୍ୟ । ମନେ କରନ୍ତୁ, ମିସ୍ ଅମୁକ ଆସି ଏଠାରେ ହାଜର ହେଲେ । କହିଲେ, "ମୁଁ ଯୋଗସାଧନା କରିବି ।" କୋଡ଼ିଏଥର ନିଜର ଅଭିପ୍ରାୟ ଅନ୍ୟ ଲୋକଙ୍କ ନିକଟରେ କହି ବୁଲିଲେ । ହୁଏତ ପଚିଶ ଦିନ ଧ୍ୟାନ ଅଭ୍ୟାସ କଲେ । ପରେ କହିଲେ, "ଏହି ଧର୍ମରେ କିଛି ନାହିଁ । ମୁଁ ସାଧନା କରି ଦେଖିଲି, କିଛି ତ ପାଇଲି ନାହିଁ ।" ( ଧର୍ମଜୀବନର ) ଭିତ୍ତି ମଧ୍ୟ ସେଠାରେ ନାହିଁ । ଧାର୍ମିକ ହେବାକୁ ହେଲେ ନୈତିକତାର ମୂଳଦୁଆ (ଏକାନ୍ତ ଆବଶ୍ୟକ) । ଏ ତ କଠିନ କଥା । ··

ଆମ ଦେଶରେ ନିରାମିଷଭୋଜୀ ସମ୍ପ୍ରଦାୟସମୂହ ଅଛନ୍ତି, ଯେଉଁମାନେ କି ଭୋର-ବେଳେ ପିମ୍ପୁଡ଼ିମାନଙ୍କ ପାଇଁ ସେର ସେର ଚିନି ମାଟିରେ ବିଞ୍ଚୁଡ଼ି ଦିଅନ୍ତି । ଏପରି ଗୋଟିଏ ଗଳ୍ପ ଅଛି—ଥରେ ଏହି ସମ୍ପ୍ରଦାୟର ଜଣେ ଲୋକ ପିମ୍ପୁଡ଼ିମାନଙ୍କୁ ଚିନି ଦେଉଥିଲା ।

---

[୧] ଗାଜୀପୁରର ପାଓହାରୀବାବା ।

ଏପରି ସମୟରେ ଆଉ ଜଣେ ଆସି ପିମ୍ପୁଡ଼ିଗୁଡ଼ିକୁ ମାଡ଼ି ପକାଇଲା । "ହତଭାଗା, ତୁ ପ୍ରାଣୀହତ୍ୟା କଲୁ ?" ଏହା କହି ପ୍ରଥମ ବ୍ୟକ୍ତି ଦ୍ୱିତୀୟ ବ୍ୟକ୍ତିକୁ ଏପରି ଗୋଟିଏ ମୁଥ ମାରିଲା ଯେ, ଲୋକଟି ତତ୍‌କ୍ଷଣାତ୍ ପଞ୍ଚତ୍ୱପ୍ରାପ୍ତ ହେଲା ।

ବାହ୍ୟପବିତ୍ରତା ଅତ୍ୟନ୍ତ ସହଜସାଧ୍ୟ ଏବଂ ସମସ୍ତ ପୃଥିବୀ (ସେଆଡ଼କୁ) ଧାଉଁଛି । କୌଣସି ବିଶେଷ ପୋଷାକ ଯଦି ନୈତିକତାର ପରିମାପକ ହୁଅନ୍ତା, ତେବେ ଯେ କୌଣସି ମୂର୍ଖ ତାହା ପିନ୍ଧିପାରନ୍ତା । କିନ୍ତୁ ମନ ସହିତ ଯେତେବେଳେ ସଂଗ୍ରାମ, ସେତେବେଳେ ତାହା କଠିନ ବିଷୟ । କେବଳ ବାହାରର କୃତ୍ରିମ ଜିନିଷ ନେଇ ଯେଉଁମାନେ ଥାଆନ୍ତି, ସେମାନେ ନିଜେ ନିଜେ ବଡ଼ ଧାର୍ମିକ ହୋଇପଡ଼ନ୍ତି ! ମୋର ମନେପଡ଼ୁଛି—ପିଲାଦିନେ ଯୀଶୁଖ୍ରୀଷ୍ଟଙ୍କ ପ୍ରତି ମୋର ଖୁବ୍ ଭକ୍ତି ଥିଲା । (ଥରେ ବାଇ-ବେଲରେ ବିବାହ-ଭୋଜି ବିଷୟଟି ପଢ଼ିଲି) । ତତ୍‌କ୍ଷଣାତ୍ ବହି ବନ୍ଦ କରି କହିଲି, 'ଆରେ ସେ ତ ମଦ ଓ ମାଂସ ଖାଇଥିଲେ ! ତେବେ ସେ କେବେହେଲେ ସାଧୁପୁରୁଷ ହୋଇ ନ ପାରନ୍ତି ।'

ପ୍ରତ୍ୟେକ ବିଷୟର ପ୍ରକୃତ ତାତ୍ପର୍ଯ୍ୟ ଆମର ଦୃଷ୍ଟି ଆକର୍ଷଣ କରେ ନାହିଁ । ସାମାନ୍ୟ ବେଶଭୂଷା ଓ ଖାଇବା ପିଇବା ! ମୂର୍ଖମାନେ ମଧ୍ୟ ତାହା ଦେଖିପାରିବେ । କିନ୍ତୁ ଖାଦ୍ୟ-ପରିଧାନ ଇତ୍ୟାଦିର ବାହାରେ ଦୃଷ୍ଟି ପଡ଼େ କେତେଜଣଙ୍କର ? ହୃଦୟର ଶିକ୍ଷା ହିଁ ଆମମାନଙ୍କର କାମ୍ୟ । ଭାରତରେ ଗୋଟିଏ ଶ୍ରେଣୀର ଲୋକଙ୍କୁ ଦେଖାଯାଏ, ଦିନକୁ କୋଡ଼ିଏ ଥର ଗାଧୋଉଛନ୍ତି । ସେମାନେ ନିଜକୁ ଖୁବ୍ ପବିତ୍ର ମନେକରନ୍ତି । କାହାକୁ ଛୁଇଁବାକୁ ମଧ୍ୟ ସେମାନେ କୁଣ୍ଠିତ ହୁଅନ୍ତି ।··· ସ୍ଥୂଳ ବ୍ୟାପାର, ବାହ୍ୟ ଆଚାର ମାତ୍ର । (କେବଳ ଗାଧୋଇବାଦ୍ୱାରା ଯଦି ଜଣେ ପବିତ୍ର ହୋଇପାରନ୍ତା) ତେବେ ମାଛଗୁଡ଼ିକ ସର୍ବାପେକ୍ଷା ପବିତ୍ର ପ୍ରାଣୀ ।

ସ୍ନାନ, ପୋଷାକ ଓ ଖାଦ୍ୟ ବିଚାରର ପ୍ରକୃତ ମୂଲ୍ୟ କେବଳ ସେତିକିବେଳେ, ଯେତେବେଳେ ଏହା ଆଧ୍ୟାତ୍ମିକ ଉନ୍ନତିର ପରିପୂରକ ହେବ । ଆଧ୍ୟାତ୍ମିକତାର ସ୍ଥାନ ପ୍ରଥମେ, ଏଗୁଡ଼ିକ ତା'ର ସହାୟକ ମାତ୍ର । କିନ୍ତୁ ଆଧ୍ୟାତ୍ମିକତା ଯଦି ନ ଥାଏ, ତେବେ ଯେତେ ଘାସପତ୍ର ଖାଇଲେ ସୁଦ୍ଧା କୌଣସି କଲ୍ୟାଣ ହେବ ନାହିଁ । ସଠିକ ଭାବରେ ବୁଝିଲେ, ଏହା ଜୀବନର ଅଗ୍ରଗତି-ପଥର ସହାୟକ ହୁଏ, ନଚେତ୍ ଉନ୍ନତିର ପରିପନ୍ଥୀ ହେବ ।

ଏହି ବିଷୟଟି ଆଉ ଟିକିଏ ଭଲ ଭାବରେ ବୁଝାଇଦିଏ । ପ୍ରଥମତଃ ସବୁ ଧର୍ମରେ ଦେଖାଯାଏ ଅଜ୍ଞ ଲୋକମାନଙ୍କ ହାତରେ ପଡ଼ି ସବୁ ବିଷୟ ଅବନତିପ୍ରାପ୍ତ ହୁଏ । ଶିଶିରେ କର୍ପୂର ଥିଲା, ସବୁ ଉଡ଼ିଗଲା—ବର୍ତ୍ତମାନ ଶୂନ୍ୟ ଶିଶିଟି ନେଇ ଛଡ଼ାଛଡ଼ି ଲାଗିଛି ।

ଆଉ ଗୋଟିଏ କଥା ।··· (ଆଧ୍ୟାତ୍ମିକତାର) ଲେଶମାତ୍ର ମଧ୍ୟ ରହେ ନାହିଁ—ଯେତେବେଳେ ଲୋକେ କହିବାକୁ ଆରମ୍ଭ କରନ୍ତି, "ମୋର ସବୁ ଭଲ, ତୁମର ସବୁ ମନ୍ଦ ।" ସର୍ବଦା ମତାବାଦ ଓ ବାହାରର ଅନୁଷ୍ଠାନଗୁଡ଼ିକୁ ନେଇ ବିବାଦ ଚାଲିଥାଏ । ଆମ୍ଭାରେ

ବା ଶାଶ୍ୱତ ସତ୍ୟରେ କେତେବେଳେ ବିରୋଧ ନାହିଁ । ବୌଦ୍ଧମାନେ ବର୍ଷ ବର୍ଷ ଧରି ଗୌରବମୟ ଧର୍ମପ୍ରଚାର ଚଳାଇଥିଲେ; କିନ୍ତୁ ଧୀରେ ଧୀରେ ସେହି ଆଧ୍ୟାତ୍ମିକତା କୁଆଡ଼େ ହଜିଗଲା ।... (ଖ୍ରୀଷ୍ଟଧର୍ମ ମଧ୍ୟ ସେହିପରି) ତା'ପରେ ଯେତେବେଳେ କେହି ସ୍ୱୟଂ ଈଶ୍ୱରଙ୍କ ନିକଟକୁ ଯିବାକୁ ଏବଂ ତାଙ୍କର ସ୍ୱରୂପ ଜାଣିବାକୁ ଚାହାଁନ୍ତି ନାହିଁ, ସେତେବେଳେ କଳହର ସୂତ୍ରପାତ ହୁଏ—ଏକ ଈଶ୍ୱରଙ୍କଠାରେ ତିନୋଟି ଭାବ ନା ତ୍ରିତ୍ୱଭାବରେ ଏକ ଈଶ୍ୱର । ସ୍ୱୟଂ ଭଗବାନଙ୍କ ନିକଟରେ ପହଞ୍ଚି ଆମମାନଙ୍କୁ ଜାଣିବାକୁ ହେବ—ସେ 'ଏକରେ ତିନି, ନା ତିନିରେ ଏକ' ।

ଏହି ପ୍ରସଙ୍ଗ ପରେ ବର୍ତ୍ତମାନ ଆସନ ବିଷୟରେ ଆଲୋଚନା କରିବା । ମନଃସଂଯୋଗ ପାଇଁ କୌଣସି ଗୋଟିଏ ଆସନର ପ୍ରୟୋଜନ । ଯେ ଯେଉଁ ପ୍ରକାର ସହଜରେ ବସିପାରେ, ତାହା ପକ୍ଷରେ ତାହା ହିଁ ଉପଯୁକ୍ତ ଆସନ । ମେରୁଦଣ୍ଡ ସରଳ ଓ ସହଜ ଭାବରେ ରଖିବା ହିଁ ନିୟମ । ମେରୁଦଣ୍ଡ ଦେହର ଭାର ବୋହିବା ପାଇଁ ନୁହେଁ । ···ଆସନ ସମ୍ବନ୍ଧରେ ଏହି କଥାଟି ମନେରଖିବା ଉଚିତ, ଯେଉଁ ଆସନଦ୍ୱାରା ମେରୁଦଣ୍ଡକୁ ଶରୀରଭାରମୁକ୍ତ କରି ସହଜରେ ଓ ସରଳ ଭାବରେ ରଖାଯାଇପାରିବ, ସେ ଆସନରେ ବସିବ ।

ଏହାପରେ (ପ୍ରାଣାୟାମ) ଶ୍ୱାସପ୍ରଶ୍ୱାସର ବ୍ୟାୟାମ । ଏହା ଉପରେ ଖୁବ୍ ଜୋର୍ ଦିଆହୋଇଅଛି ।··· ଯାହା କହୁଛି ତାହା ଭାରତର କୌଣସି ସମ୍ପ୍ରଦାୟ ବିଶେଷଠାରୁ ସଂଗୃହୀତ ଶିକ୍ଷା ନୁହେଁ । ଏହା ସାର୍ବଜନୀନ ସତ୍ୟ । ଯେପରି ଏହି ଦେଶରେ ତୁମେମାନେ ପିଲମାନଙ୍କୁ କେତେଗୁଡ଼ିଏ ନିର୍ଦ୍ଦିଷ୍ଟ ପ୍ରାର୍ଥନା ଶିକ୍ଷା ଦିଅ, ଭାରତବର୍ଷରେ ବାଳକବାଳିକାମାନଙ୍କ ସମ୍ମୁଖରେ କେତେଗୁଡ଼ିଏ ବାସ୍ତବ ତଥ୍ୟ ରଖିଦିଆଯାଏ ... ।

ଗୋଟିଏ ଯୋଡ଼ିଏ ପ୍ରାର୍ଥନା ଛଡ଼ା ଧର୍ମର କୌଣସି ମତବାଦ ଭାରତର ଶିଶୁମାନଙ୍କ ଉପରେ ଲଦି ଦିଆଯାଏ ନାହିଁ । ପରେ ସେମାନେ ନିଜେ ତତ୍ତ୍ୱ-ଜିଜ୍ଞାସୁ ହୋଇ ଏପରି କାହାକୁ ଅନ୍ୱେଷଣ କରନ୍ତି—ଯାହାଙ୍କ ସହିତ ଆଧ୍ୟାତ୍ମିକ ସଂଯୋଗ ସ୍ଥାପନ କରାଯାଇପାରିବ । ଅନେକ ଲୋକଙ୍କଠାରୁ ବୁଝି ବୁଝି ଅବଶେଷରେ ଜଣେ ଉପଯୁକ୍ତ ପଥପ୍ରଦର୍ଶକଙ୍କ ସନ୍ଧାନ ପାଇ ସେ କହେ, "ଏ ମୋର ଗୁରୁ ।" ସେତେବେଳେ ତାହାଙ୍କଠାରୁ ଦୀକ୍ଷା ଗ୍ରହଣ କରେ । ମୁଁ ଯଦି ବିବାହିତ ହୋଇଥାଏ, ମୋର ସ୍ତ୍ରୀ ଅନ୍ୟ ଜଣଙ୍କୁ ଗୁରୁରୂପେ ବରଣ କରିପାରିବେ । ମୋର ପୁତ୍ର ମଧ୍ୟ ଅନ୍ୟ କାହାକୁ ଗୁରୁ କରିପାରିବ । ଦୀକ୍ଷାର କଥା କେବଳ ମୁଁ ଓ ମୋର ଗୁରୁଙ୍କ ମଧ୍ୟରେ ଗୁପ୍ତ ରହିବ । ସ୍ତ୍ରୀର ସାଧନ-ପ୍ରଣାଳୀ ସ୍ୱାମୀ ଜାଣିବାର ଆବଶ୍ୟକତା ନାହିଁ । ସ୍ୱାମୀ ତାଙ୍କ ସ୍ତ୍ରୀଙ୍କର ସାଧନ ସମ୍ବନ୍ଧରେ ପଚାରିବାକୁ ସାହସ କରନ୍ତି ନାହିଁ । କାରଣ ଏହା ସମସ୍ତଙ୍କୁ ଜଣା ଯେ, ନିଜର ସାଧନପ୍ରଣାଳୀ କେହି କେବେହେଲେ କହିବେ ନାହିଁ । ଏହା ଯେକୌଣସି ଗୁରୁ ଓ ଶିଷ୍ୟଙ୍କୁ ଜଣାଅଛି ..। ଅନେକ ସମୟରେ ଦେଖାଯାଏ, ଯାହା ଜଣଙ୍କ ନିକଟରେ ହାସ୍ୟାସ୍ପଦ, ତାହା ହୁଏତ ଅନ୍ୟ ନିକଟରେ ଶିକ୍ଷାପ୍ରଦ ।··· ପ୍ରତ୍ୟେକେ ନିଜ ନିଜର ବୋଝ ବୋହୁଅଛନ୍ତି; ଯାହାର ମନ ଯେପରି ଭାବରେ ଗଠିତ ତାକୁ ସେହିପରି ଭାବରେ ସାହାଯ୍ୟ କରିବାକୁ ହେବ । ସାଧକ,

ଗୁରୁ ଏବଂ ଇଷ୍ଟର ସମ୍ବନ୍ଧ ବ୍ୟକ୍ତିଗତ । କିନ୍ତୁ ଏପରି କେତେଗୁଡ଼ିଏ ସାଧାରଣ ନିୟମ ଅଛି, ସେଗୁଡ଼ିକୁ ସବୁ ଆଚାର୍ଯ୍ୟ ଉପଦେଶ ଦେଇଥାଆନ୍ତି । ପ୍ରାଣାୟାମ ଓ ଧ୍ୟାନ ସାର୍ବଜନୀନ, ଏହା ହିଁ ହେଉଛି ଭାରତୀୟ ଉପାସନା-ପ୍ରଣାଳୀ ।

ଗଙ୍ଗାନଦୀତୀରରେ ଆମେମାନେ ଦେଖିବାକୁ ପାଇବା—କେତେ ନରନାରୀ ଓ ବାଳକବାଳିକା ପ୍ରାଣାୟାମ ଓ ପରେ ଧ୍ୟାନ (ଅଭ୍ୟାସ) କରୁଛନ୍ତି । ଅବଶ୍ୟ ଏହାଛଡ଼ା ସେମାନଙ୍କର ସାଂସାରିକ ଆହୁରି ଅନେକ ଜିନିଷ କରିବାର ଅଛି । ତେଣୁ ସେମାନେ ବେଶୀ ସମୟ ପ୍ରାଣାୟାମାଦି କାର୍ଯ୍ୟରେ ଦେଇପାରନ୍ତି ନାହିଁ । କିନ୍ତୁ ଯେଉଁମାନେ ଏହାକୁ ଜୀବନର ପ୍ରଧାନ ଅନୁଶୀଳନ ରୂପରେ ଗ୍ରହଣ କରିଛନ୍ତି, ସେମାନେ ନାନା ପ୍ରଣାଳୀ ଅଭ୍ୟାସ କରନ୍ତି । ଚଉରାଅଶି ପ୍ରକାର ପୃଥକ୍ ପୃଥକ୍ ଆସନ ଅଛି । ଯେଉଁମାନେ କୌଣସି ଅଭିଜ୍ଞ ଗୁରୁର ନିର୍ଦ୍ଦେଶ ଅନୁଯାୟୀ ଚଳନ୍ତି, ସେମାନେ ଶରୀରର ବିଭିନ୍ନ ଅଂଶରେ ପ୍ରାଣର ସ୍ପନ୍ଦନ ଅନୁଭବ କରନ୍ତି ।

ଏହାପରେ 'ଧାରଣା' (ଏକାଗ୍ରତା) । ମନକୁ ଦେହର କେତେଗୁଡ଼ିଏ ସ୍ଥାନ ବିଶେଷରେ ଧରି ରଖିବାର ନାମ ଧାରଣା ।

ହିନ୍ଦୁ ବାଳକବାଳିକା ଦୀକ୍ଷା ଗ୍ରହଣ କଲେ ସେ ଗୁରୁଙ୍କ ନିକଟରୁ ଗୋଟିଏ ମନ୍ତ୍ର ପାଆନ୍ତି । ଏହାକୁ ବୀଜମନ୍ତ୍ର କୁହାଯାଏ । ଗୁରୁ ଏହି ମନ୍ତ୍ର ଲାଭ କରିଥିଲେ ତାଙ୍କର ନିଜ ଗୁରୁଙ୍କ ନିକଟରୁ । ଏହି ଭାବରେ ମନ୍ତ୍ରଗୁଡ଼ିକ ଗୁରୁ-ପରମ୍ପରାରେ ଶିଷ୍ୟ ନିକଟକୁ ଆସିଛି । 'ଓଁ' ଗୋଟିଏ ବୀଜମନ୍ତ୍ର । ପ୍ରତ୍ୟେକ ବୀଜର ଗୋଟିଏ ଗଭୀର ଅର୍ଥ ଅଛି । ଏହି ଅର୍ଥ ଗୋପନୀୟ ରଖାଯାଏ, ଲେଖିକରି କେହି କେବେ ତାହା ପ୍ରକାଶ କରନ୍ତି ନାହିଁ । ଗୁରୁଙ୍କ ନିକଟରୁ କାନରେ ଶୁଣି ମନ୍ତ୍ର ନେବାର ରୀତି; ଲିଖିତ ଭାବରେ ନୁହେଁ । ମନ୍ତ୍ର ଲାଭ କରି ଶିଷ୍ୟ ତାହାଙ୍କୁ ଈଶ୍ୱରସ୍ୱରୂପ ଜ୍ଞାନ କରେ ଏବଂ ତାହାଙ୍କୁ ଧ୍ୟାନ କରେ ।

ମୋ ଜୀବନରେ ଏକ ସମୟରେ ମୁଁ ମଧ୍ୟ ସେହି ଭାବରେ ଉପାସନା କରିଅଛି । ବର୍ଷାକାଳରେ କ୍ରମାଗତ ଚାରିମାସଯାକ ପ୍ରତ୍ୟୁଷରୁ ବିଛଣାରୁ ଉଠି ଗଙ୍ଗାସ୍ନାନ କରି ଓଦା ଲୁଗାରେ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ଜପ କରୁଥିଲି । ତା'ପରେ କିଛି ଖାଉଥିଲି—ସାମାନ୍ୟ ଭାତ ବା ଅନ୍ୟ କିଛି । ବର୍ଷାକାଳରେ ଏହିପରି ଚାତୁର୍ମାସ୍ୟ ବ୍ରତ ପାଳନ କରୁଥିଲି ।

ମନୁଷ୍ୟର ସାମର୍ଥ୍ୟରେ ଜଗତରେ ଅପ୍ରାପ୍ୟ ବୋଲି କିଛି ନାହିଁ— ଭାରତୀୟ ମନର ଏହା ହିଁ ବିଶ୍ୱାସ । ଏହି ଦେଶରେ କାହାରି ଯଦି ଧନାକାଙ୍କ୍ଷା ଥାଏ, ତେବେ ତାହାକୁ କର୍ମ କରି ଅର୍ଥୋପାର୍ଜନ କରିବାର ଦେଖାଯାଏ । ଭାରତରେ କିନ୍ତୁ ଏପରି ଲୋକ ଅଛନ୍ତି, ଯାହାଙ୍କର ବିଶ୍ୱାସ ହେଲା—ଯେ ମନ୍ତ୍ରଶକ୍ତିଦ୍ୱାରା ଅର୍ଥଲାଭ ସମ୍ଭବ । ତେଣୁ ସେଠାରେ ଦେଖିବାକୁ ମିଳିବ ଯେ, ଧନାକାଙ୍କ୍ଷୀ ହୁଏତ ବୃକ୍ଷତଳେ ବସି ମନ୍ତ୍ରର ମାଧ୍ୟମରେ ଧନ କାମନା କରୁଅଛି । (ଚିନ୍ତା) ଶକ୍ତିଦ୍ୱାରା ସବୁକିଛି ତାହା ନିକଟକୁ ଆସିବାକୁ ବାଧ୍ୟ । ଏଠାରେ ତୁମେମାନେ ଯେଉଁ ଧନ ଉପାର୍ଜନ କର, ଏହାର ମଧ୍ୟ ପ୍ରଣାଳୀ ଏକା ପ୍ରକାର । ତୁମେମାନେ ଧନ ଉପାର୍ଜନ ପାଇଁ ସମଗ୍ର ଶକ୍ତି ନିୟୋଗ କରୁଛ ।

କେତେଗୁଡ଼ିଏ ସଂପ୍ରଦାୟ ଅଛନ୍ତି, ସେମାନଙ୍କୁ ବୋଲଯାଏ 'ହଠଯୋଗୀ' ।... ସେମାନେ କହନ୍ତି, ମୃତ୍ୟୁର ହାତରୁ ଶରୀରକୁ ରକ୍ଷା କରିବା ହିଁ ଶ୍ରେଷ୍ଠ କଲ୍ୟାଣ...ସେମାନଙ୍କର ସମସ୍ତ ସାଧନା ଶରୀର-ସମ୍ବନ୍ଧୀୟ । ଦ୍ୱାଦଶବର୍ଷର ସାଧନା । ତେଣୁ ଅଳ୍ପ ବୟସରୁ ଆରମ୍ଭ ନ କଲେ ଏହାକୁ ଆୟତ୍ତ କରିବା କାହାରି ପକ୍ଷରେ ସମ୍ଭବ ନୁହେଁ ।—ହଠଯୋଗୀ-ମାନଙ୍କ ମଧ୍ୟରେ ଗୋଟିଏ ଅଦ୍ଭୁତ ପ୍ରଥାର ପ୍ରଚଳନ ଅଛି । ହଠଯୋଗୀ ଯେତେବେଳେ ପ୍ରଥମେ ଶିଷ୍ୟତ୍ୱ ଗ୍ରହଣ କରେ, ସେତେବେଳେ ତାହାକୁ ନିର୍ଜନ ଅରଣ୍ୟ ମଧ୍ୟରେ ଏକାକୀ ଠିକ୍ ଗ୍ୱାଳିଶଦିନ ପର୍ଯ୍ୟନ୍ତ ଆସି ଗୁରୁନିର୍ଦ୍ଦେଶିତ କ୍ରିୟାଗୁଡ଼ିକ ଗୋଟି ଗୋଟି ଯଥାରୀତି ଅଭ୍ୟାସ କରିବାକୁ ହୁଏ, ଶିକ୍ଷଣୀୟ ସବୁ ବିଷୟ ଏହି ସମୟ ମଧ୍ୟରେ ଶିଖିବାକୁ ହୁଏ ।

କଲିକତାରେ ଜଣେ ଲୋକ ୫୦୦ ବର୍ଷ ବଞ୍ଚିଛି ବୋଲି ଦାବି କରେ । ସମସ୍ତେ ମୋତେ କହୁଛନ୍ତି ଯେ, ସେମାନଙ୍କର ପିତାମହମାନେ ମଧ୍ୟ ଏହି ଲୋକଟିକୁ ଦେଖିଥିଲେ । —ସେ ସ୍ୱାସ୍ଥ୍ୟରକ୍ଷା ପାଇଁ ପ୍ରତ୍ୟେକ ଦିନ ୨୦ ମାଇଲ ବୁଲନ୍ତି । ଏହାକୁ ଭ୍ରମଣ ନ କହି ଧାଇଁବା କହିବା ଉଚିତ । ତା'ପରେ କୌଣସି ପୋଖରୀରେ ଯାଇ ଆପାଦମସ୍ତକ କାଦୁଅ ଲେପି ହୁଅନ୍ତି । କିଛିକ୍ଷଣ ପରେ ପାଣିରେ ବୁଡ଼ନ୍ତି । କାଦୁଅ ବୋଳି ହୁଅନ୍ତି ।—ଏହିସବୁ କରିବା ମଧ୍ୟରେ କୌଣସି କଲ୍ୟାଣ ଅଛି ବୋଲି ମୋର ମନେହୁଏ ନାହିଁ । ଲୋକେ କହନ୍ତି ସାପ ମଧ୍ୟ ଦୁଇଶହ ବର୍ଷ ଜୀବିତ ଥାଏ । ସମ୍ଭବତଃ ଲୋକଟି ଅତିଶୟ ବୃଦ୍ଧ । କାରଣ ମୁଁ ଚଉଦବର୍ଷ କାଳ ଭାରତରେ ଭ୍ରମଣ କରିଅଛି ଏବଂ ଯେଉଁଠାକୁ ଯାଇଛି, ସେଠାରେ ମଧ୍ୟ ଶୁଣିଛି—ପ୍ରତ୍ୟେକେ ସେହି ବୃଦ୍ଧର କଥା ଜାଣନ୍ତି । ଲୋକଟି ଜୀବନ ତମାମ ଭ୍ରମଣ କରି କଟାଉଛି ।— (ହଠଯୋଗୀ) ୮୦ ଇଞ୍ଚ ଲମ୍ବ ରବର ଗିଳି ପକାଇ ପୁଣି ମୁହଁ ଦେଇ ବାହାର କରିପାରେ । ହଠଯୋଗୀକୁ ଦୈନିକ ଗ୍ୱରିଥର ଶରୀର ଭିତର ଓ ବାହାରର ପ୍ରତିଟି ଅଙ୍ଗ ଧୋଇବାକୁ ହୁଏ । ପ୍ରାଚୀରଗୁଡ଼ିକ ତ ସହସ୍ର ସହସ୍ର ବର୍ଷ ନ ଭାଙ୍ଗି ରହିପାରେ ।— ସେଥିରେ କି ଲାଭ ? ଏତେ ଦୀର୍ଘାୟୁ ହେବାର କାମନା ମୋର ନାହିଁ । "ଦିନକର ବିପର୍ଯ୍ୟୟରାଶି ମନୁଷ୍ୟକୁ କି ବ୍ୟସ୍ତ ନ କରେ ?" ସର୍ବପ୍ରକାର ଭ୍ରାନ୍ତି ଓ ଦୋଷତ୍ରୁଟିରେ ପୂର୍ଣ୍ଣ ଗୋଟିଏ କ୍ଷୁଦ୍ର ଶରୀର ଯଥେଷ୍ଟ ।

ଅନ୍ୟାନ୍ୟ ସଂପ୍ରଦାୟ ଅଛନ୍ତି ।— ସେମାନେ ତୁମମାନଙ୍କୁ ସଞ୍ଜୀବନୀ ସୁରା ପାନେ ଦିଅନ୍ତି ଏବଂ ତୁମମାନଙ୍କର ଯୌବନ ଅକ୍ଷୁଣ୍ଣ ରହେ । କେତେ ଯେ ବିଭିନ୍ନ ସଂପ୍ରଦାୟ ଅଛନ୍ତି—ସେମାନଙ୍କ ବିଷୟରେ କହିବାକୁ ଗଲେ ମାସ ମାସ ଲାଗିଯିବ । ସେମାନଙ୍କର କ୍ରିୟାକଳାପ ସବୁ (ଜଡ଼ ଜଗତ ମଧ୍ୟରେ) ଆବଦ୍ଧ । ପ୍ରତିଦିନ ଗୋଟିଏ ଗୋଟିଏ ନୂତନ ସଂପ୍ରଦାୟର ସୃଷ୍ଟି ।—

ସେହିସବୁ ସଂପ୍ରଦାୟର ଶକ୍ତିର ଉତ୍ସ ମନ । ମନକୁ ବଶୀଭୂତ କରିବା ହିଁ ସେମାନଙ୍କର ଉଦ୍ଦେଶ୍ୟ । ମନକୁ ଏକାଗ୍ର କରି ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ ନିବଦ୍ଧ କରିବାକୁ ହେବ । ସେମାନେ କୁହନ୍ତି, ଦେହ ମଧ୍ୟରେ ମେରୁଦଣ୍ଡର କେତେକ ସ୍ଥାନରେ ବା ସ୍ନାୟୁକେନ୍ଦ୍ର-ଗୁଡ଼ିକରେ ମନ ସ୍ଥିର ରଖିପାରିଲେ ଯୋଗୀ ଦେହ ଉପରେ ଆଧିପତ୍ୟ ଲାଭ କରିପାରେ ।

ଯୋଗୀ ପକ୍ଷରେ ଶାନ୍ତିଲାଭର ପ୍ରଧାନ ବିଘ୍ନ ଓ ଉଚ୍ଚତମ ଆଦର୍ଶର ପରିପନ୍ଥୀ ହେଲା, ଏହି ଦେହ । ତେଣୁ ସେ ଚାହାଁନ୍ତି ଦେହକୁ ବଶୀଭୂତ କରିବାକୁ ଓ ଉପଯୁକ୍ତ କାମରେ ଲଗାଇବାକୁ ।

ବର୍ତ୍ତମାନ ଧ୍ୟାନର କଥା । ଧ୍ୟାନ ହିଁ ସର୍ବୋଚ୍ଚ ଅବସ୍ଥା ।··· ଯେତେବେଳେ ମନ ମଧ୍ୟରେ ସଂଶୟ ଆସେ, ସେତେବେଳେ ତାହାର ଅବସ୍ଥା ଉନ୍ନତ ନୁହେଁ । ଧ୍ୟାନ ହିଁ ମନର ଉଚ୍ଚ ଅବସ୍ଥା । ଉନ୍ନତ ମନ ବିଷୟଗୁଡ଼ିକୁ ଦେଖେ ସତ, କିନ୍ତୁ କୌଣସି ବିଷୟ ସହିତ ନିଜକୁ ଆବଦ୍ଧ କରେ ନାହିଁ । ଯେତେବେଳ ପର୍ଯ୍ୟନ୍ତ ମୋର ଦୁଃଖର ଅନୁଭୂତି ଅଛି, ସେତେବେଳ ପର୍ଯ୍ୟନ୍ତ ମୁଁ ଶରୀର ସହିତ ତାଦାତ୍ମ୍ୟ ବୋଧ କରି ରହିଛି । ଯେତେବେଳେ ସୁଖ ବା ଆନନ୍ଦ ବୋଧ କରେ, ସେତେବେଳେ ଦେହ ସହିତ ମୁଁ ମିଶି ରହିଛି । କିନ୍ତୁ ଯେତେବେଳେ ସୁଖଦୁଃଖ ଦୁଇଟିକୁ ସମଭାବେ ଦେଖିବାର କ୍ଷମତା ଜନ୍ମେ, ସେତେବେଳେ ଉଚ୍ଚ ଅବସ୍ଥା ଆସିଯାଏ ।···ଧ୍ୟାନମାନେ ହିଁ ସାକ୍ଷାତ୍ ଅତିଚେତନବୋଧ । ପୂର୍ଣ୍ଣ ମନଃସଂଯମଦ୍ୱାରା ଜୀବାତ୍ମା ସ୍ଥୂଳଶରୀର-ବନ୍ଧନରୁ ଯଥାର୍ଥ ମୁକ୍ତ ହୋଇ ନିଜ ସ୍ୱରୂପର ଜ୍ଞାନ ଲାଭ କରେ । ସେତେବେଳେ ଜୀବାତ୍ମା ଯାହା ଚାହେଁ ତାହା ପାଏ । ଜ୍ଞାନ ଓ ଶକ୍ତି ସେଠାରେ ପୂର୍ବରୁ ବିଦ୍ୟମାନ ଅଛି । ଜୀବାତ୍ମା ଶକ୍ତିହୀନ ଜଡ଼ ସହିତ ନିଜକୁ ମିଶାଇ କାନ୍ଦି କାନ୍ଦି ମରେ, ହାଇ ହାଇ କରେ । ନଶ୍ୱର ବସ୍ତୁଗୁଡ଼ିକ ସହିତ ଜୀବାତ୍ମା ନିଜକୁ ମିଶାଇଦିଏ ।··· କିନ୍ତୁ ଯଦି ସେହି ମୁକ୍ତ ଆତ୍ମା କୌଣସି ଶକ୍ତି ପ୍ରୟୋଗ କରିବାକୁ ଚାହାଁନ୍ତି, ତେବେ ସେ ତାହା ପାଇବେ । ଅନ୍ୟଥା ଯଦି ଶକ୍ତି ପ୍ରୟୋଗ କରିବାକୁ ନ ଚାହାଁନ୍ତି, ତାହାହେଲେ ସେ ତାହା ପାଇବେ ନାହିଁ । ଯେ ଈଶ୍ୱରଙ୍କୁ ଜାଣିଛନ୍ତି, ସେ ଈଶ୍ୱର ହୋଇଯାଆନ୍ତି । ଏହିପରି ମୁକ୍ତ ପୁରୁଷ ନିକଟରେ କିଛି ଅସମ୍ଭବ ନୁହେଁ । ତାଙ୍କର ଆଉ ଜନ୍ମ-ମୃତ୍ୟୁ ନାହିଁ । ସେ ଚିରମୁକ୍ତ ।

## ଏକାଗ୍ରତା ଓ ଶ୍ୱାସପ୍ରକ୍ରିୟା

ମନକୁ ଏକାଗ୍ର କରିବାର କ୍ଷମତାର ତାରତମ୍ୟ କେବଳ ମନୁଷ୍ୟ ଓ ପଶୁ ମଧ୍ୟରେ ପ୍ରଧାନ ପାର୍ଥକ୍ୟ । ଯେକୌଣସି କାର୍ଯ୍ୟରେ ସଫଳତା ହାସଲ କରିବାର ମୂଳରେ ଏକାଗ୍ରତା । ଏକାଗ୍ରତା ସମ୍ବନ୍ଧରେ ଆମେମାନେ ସମସ୍ତେ ଅଳ୍ପ ବହୁତ ଜାଣୁ । ଏହାର ଫଳ ପ୍ରତ୍ୟେକ ଦିନ ଆମ ଆଖିରେ ପଡ଼େ । ସଙ୍ଗୀତ, କଳାବିଦ୍ୟା ପ୍ରଭୃତିରେ ଆମମାନଙ୍କର ଯେଉଁ ଉଚ୍ଚାଙ୍ଗ କୃତିତ୍ୱ, ତାହା ଏହି ଏକାଗ୍ରତା-ପ୍ରସୂତ । ଏକାଗ୍ରତାର କ୍ଷମତା ପଶୁମାନଙ୍କର ବିଲ୍‌କୁଲ୍ ନାହିଁ । ଯେଉଁମାନେ ପଶୁମାନଙ୍କୁ ଶିକ୍ଷା ଦିଅନ୍ତି ସେମାନଙ୍କୁ ସେଥିଯୋଗୁଁ ବହୁ କଷ୍ଟ କରିବାକୁ ପଡ଼େ । ପଶୁକୁ ଯାହା ଶିଖେଇବ, ତାହା ସେ କ୍ରମାଗତ ଭୁଲିଯିବ । କୌଣସି ବିଷୟରେ ଅଧିକ କାଳ ମନୋନିବେଶ କରିବାର କ୍ଷମତା ତାହାର ନାହିଁ । ପଶୁ ସହିତ ମନୁଷ୍ୟର ପାର୍ଥକ୍ୟ ଏହି ବିଷୟରେ—ମନକୁ ଏକାଗ୍ର କରିବାର କ୍ଷମତା ପଶୁଠାରୁ ମନୁଷ୍ୟର ଅନେକ

ବେଶୀ । ମନୁଷ୍ୟ ମନୁଷ୍ୟ ମଧ୍ୟରେ ପାର୍ଥକ୍ୟର କାରଣ ମଧ୍ୟ ଏହି ଏକାଗ୍ରତାର ତାରତମ୍ୟ । ସର୍ବନିମ୍ନ ସ୍ତରର ମନୁଷ୍ୟ ସହ ସର୍ବୋଚ୍ଚ ସ୍ତରର ମନୁଷ୍ୟକୁ ତୁଳନା କରି ଦେଖ, ତୁମେ ବୁଝିପାରିବ ଏକାଗ୍ରତାର ମାତ୍ରା କମ୍ ବେଶୀ ଯୋଗୁ ଏପରି ପାର୍ଥକ୍ୟର ସୃଷ୍ଟି ହୋଇଛି । ପାର୍ଥକ୍ୟ କେବଳ ଏହି ସ୍ଥଳରେ ।

ସମସ୍ତଙ୍କର ମନ ବେଳେବେଳେ ଏକାଗ୍ର ହୁଏ । ଯାହା ଆମମାନଙ୍କର ପ୍ରିୟ ତାହା ଉପରେ ଆମେମାନେ ସମସ୍ତେ ମନୋନିବେଶ କରୁ । ପୁଣି ଯେଉଁ ବିଷୟରେ ମନୋନିବେଶ କରୁ ତାହା ପ୍ରିୟ ହୋଇଯାଏ । ଏପରି ମା' କିଏ ଅଛି, ଯେ କି ନିଜର ପୁଅର ଅତି ସାଧାରଣ ମୁହଁଟିକୁ ଭଲ ନ ପାଏ ? ମା' ନିକଟରେ ସେହି ମୁହଁଟି ଜଗତର ସୁନ୍ଦରତମ ମୁହଁ । ମନ ସେଠାରେ ନିବିଷ୍ଟ କରିଛନ୍ତି ବୋଲି ମୁହଁଟି ତାଙ୍କର ପ୍ରିୟ ହୋଇଛି । ସମସ୍ତେ ଯଦି ସେହି ମୁହଁଟି ଉପରେ ମନ ଲଗାଇପାରନ୍ତେ, ତେବେ ତାହା ଉପରେ ସମସ୍ତଙ୍କର ପ୍ରୀତି ଜନ୍ମନ୍ତା । ସମସ୍ତେ ଭାବନ୍ତେ ଏପରି ସୁନ୍ଦର ମୁହଁ ଆଉ ନାହିଁ । ଯାହା ଆମେମାନେ ଭଲପାଉଁ, ତାହା ଉପରେ ଆମେମାନେ ମନୋନିବେଶ କରୁଁ । ସୁମଧୁର ସଙ୍ଗୀତ ଶୁଣିବାବେଳେ ଆମମାନଙ୍କର ମନ ସେହି ସଙ୍ଗୀତରେ ଆବଦ୍ଧ ହୋଇ ରହେ । ସେଥିରୁ ମନ ଟାଣି ଆଣିପାରୁ ନାହିଁ । ଉଚ୍ଚାଙ୍ଗ ସଙ୍ଗୀତ ବୋଲି ଯାହା ପରିଚିତ, ସେଥିରେ ଯେଉଁମାନଙ୍କର ମନ ଏକାଗ୍ର ହୁଏ, ସାଧାରଣ ପର୍ଯ୍ୟାୟର ସଙ୍ଗୀତ ସେମାନଙ୍କୁ ଭଲ ଲାଗେ ନାହିଁ । ଏହାର ବିପରୀତଟି ମଧ୍ୟ ସତ୍ୟ । ଦ୍ରୁତ ଲୟର ସଙ୍ଗୀତ ଶ୍ରବଣ ମାତ୍ରେ ମନ ସେଥିରେ ଆକୃଷ୍ଟ ହୁଏ । ପିଲାମାନେ ହାଲୁକା ସଙ୍ଗୀତ ପସନ୍ଦ କରନ୍ତି, କାରଣ ଲୟର ଦ୍ରୁତତା ମନକୁ ଅନ୍ୟ ବିଷୟକୁ ଟାଣିନେବାର କୌଣସି ଅବକାଶ ଦିଏ ନାହିଁ । ଉଚ୍ଚାଙ୍ଗ ସଙ୍ଗୀତ ଜଟିଳତର ଏବଂ ତାହା ଅନୁଧାବନ କରିବାକୁ ହେଲେ ଅଧିକତର ମାନସିକ ଏକାଗ୍ରତାର ପ୍ରୟୋଜନ, ତେଣୁ ସାଧାରଣ ସଙ୍ଗୀତ ଯେଉଁମାନେ ଭଲ ପାଆନ୍ତି, ଉଚ୍ଚାଙ୍ଗ ସଙ୍ଗୀତ ସେମାନଙ୍କୁ ଭଲ ଲାଗିବ ନାହିଁ ।

ଏହି ପ୍ରକାର ଏକାଗ୍ରତାର ସବୁଠାରୁ ବଡ଼ ଦୋଷ ହେଉଛି ଯେ, ମନ ଆମମାନଙ୍କର ଆୟତ୍ତରେ ରହେ ନାହିଁ, ବରଂ ମନ ଆମମାନଙ୍କୁ ଚାଳିତ କରେ, ଯେପରିକି ସମ୍ପୂର୍ଣ୍ଣ ବାହାରର କୌଣସି ବସ୍ତୁ ଆମମାନଙ୍କର ମନଟିକୁ ଟାଣିନେଇ ନିଜ ପାଖରେ ଧରି ରଖେ । ସୁମଧୁର ସଙ୍ଗୀତ ଶୁଣିଲାବେଳେ କିମ୍ବା ମନୋରମ ଚିତ୍ର ଦେଖିଲାବେଳେ ଆମମାନଙ୍କର ମନ ଦୃଢ଼ଭାବରେ ସେଥିରେ ଲଗ୍ନ ହୋଇଯାଏ । ମନକୁ ଆମେମାନେ ସେଠାରୁ ଟାଣି ଆଣିପାରୁ ନାହିଁ ।

ମୁଁ ଯେତେବେଳେ ତୁମମାନଙ୍କର ମନମୁତାବକ କୌଣସି ବିଷୟରେ ଭଲ ବକ୍ତୃତା ଦିଏ, ସେତେବେଳେ ମୋର କଥାରେ ତୁମମାନଙ୍କର ମନ ଏକାଗ୍ର ହୁଏ । ତୁମମାନଙ୍କ ନିକଟରୁ ତୁମମାନଙ୍କର ମନକୁ କାଢ଼ିଆଣି ମୁଁ ତୁମମାନଙ୍କ ଇଚ୍ଛା ବିରୋଧରେ ମଧ୍ୟ ତାହାକୁ ସେହି ପ୍ରସଙ୍ଗ ମଧ୍ୟରେ ଧରିରଖେ । ଏହିପରି ଭାବରେ ଆମମାନଙ୍କର ଅନିଚ୍ଛା ସତ୍ତ୍ୱେ ବହୁ ବିଷୟରେ ମନ ଆକୃଷ୍ଟ ହୋଇ ଏକାଗ୍ର ହୁଏ । ଆମେମାନେ ସେଥିରେ ବାଧା

ଦେଇପାରୁ ନାହିଁ ।

ବର୍ତ୍ତମାନ ପ୍ରଶ୍ନ ହେଉଛି ଚେଷ୍ଟା କରି ଏହି ଏକାଗ୍ରତା ବଢ଼ାଇବା ଓ ଇଚ୍ଛା ଅନୁସାରେ ତାହାକୁ ନିୟନ୍ତ୍ରଣ କରିବା ସମ୍ଭବ କି ନୁହେଁ । ଯୋଗୀମାନେ କହନ୍ତି ହଁ, ତାହା ମଧ୍ୟ ସମ୍ଭବ । ସେମାନେ କହନ୍ତି ଆମେମାନେ ମନକୁ ସମ୍ପୂର୍ଣ୍ଣ ବଶରେ ଆଣିପାରିବା । ନୈତିକ ଦିଗରୁ ଏକାଗ୍ରତାର କ୍ଷମତା ବଢ଼ାଇବାରେ ବିପଦ ଅଛି । କୌଣସି ବିଷୟରେ ମନକୁ ଏକାଗ୍ର କରିବାପରେ ଇଚ୍ଛାନୁସାରେ ସେଠାରୁ କାଢ଼ିଆଣି ନ ପାରିଲେ ବିପଦ ଅଛି । ଏପରି ପରିସ୍ଥିତି ବଡ଼ ଯନ୍ତ୍ରଣାଦାୟକ । ମନକୁ କାଢ଼ି ଆଣିବାର ଅକ୍ଷମତା ହିଁ ସକଳ ଦୁଃଖର କାରଣ । ତେଣୁ ଏକାଗ୍ରତାର ଶକ୍ତି ବଢ଼ାଇବା ସଙ୍ଗେ ସଙ୍ଗେ ମନକୁ କାଢ଼ି ଆଣିବାର ଶକ୍ତି ମଧ୍ୟ ବଢ଼ାଇବାକୁ ହେବ । ବସ୍ତୁ ବିଶେଷରେ ମନୋନିବେଶ କରିବାକୁ ଶିଖିଲେ ଚାଲିବ ନାହିଁ । ପ୍ରୟୋଜନ ହେଲେ ମୁହୂର୍ତ୍ତ ମଧ୍ୟରେ ସେଠାରୁ ମନକୁ ଟାଣିଆଣି ଅନ୍ୟ ବିଷୟରେ ନିବିଷ୍ଟ କରିବାକୁ ହେବ । ଏହି ଉଭୟ କ୍ଷମତା ସମଭାବରେ ଅର୍ଜନ କରି ଚାଲିଲେ ବିପଦର କୌଣସି ସମ୍ଭାବନା ରହିବ ନାହିଁ ।

ଏହା ହିଁ ମନର ପ୍ରଣାଳୀବଦ୍ଧ ବିମୋନ୍ନତି । ମୋ ମତରେ ମନର ଏକାଗ୍ରତା ସାଧନ କରିବା ହିଁ ଶିକ୍ଷାର ମୂଳ କଥା, ତଥ୍ୟସଂଗ୍ରହ କରିବା ନୁହେଁ । ଆଉ ଥରେ ଯଦି ମୋତେ ନୂଆକରି ଶିକ୍ଷାଲାଭ କରିବାକୁ ହୁଅନ୍ତା ଏବଂ ନିଜର ଇଚ୍ଛାନୁସାରେ ମୁଁ ଯଦି ତାହା କରିପାରନ୍ତି, ତାହା ହେଲେ ମୁଁ ଶିକ୍ଷଣୀୟ ବିଷୟବସ୍ତୁ କଥା ଆଦୌ ଭାବନ୍ତି ନାହିଁ । ମୁଁ ମୋର ମନର ଏକାଗ୍ରତା ଓ ନିର୍ଲିପ୍ତତାର କ୍ଷମତାକୁ କ୍ରମେ କ୍ରମେ ବଢ଼ାଇବାକୁ ଚେଷ୍ଟା କରନ୍ତି । ତା'ପରେ ଏହିପରି ଭାବରେ ଗଠିତ ନିଖୁଣ ଯନ୍ତ୍ର ସାହାଯ୍ୟରେ ଇଚ୍ଛା ମୁତାବକ ତଥ୍ୟ ସଂଗ୍ରହ କରିପାରନ୍ତି । ମନକୁ ଏକାଗ୍ର ଓ ନିର୍ଲିପ୍ତ କରିବାର କ୍ଷମତାବର୍ଦ୍ଧନର ଶିକ୍ଷା ଶିଶୁମାନଙ୍କୁ ଏକା ସାଙ୍ଗରେ ଦେବା ଉଚିତ ।

ମୋର ସାଧନା ବରାବର ଏକମୁଖୀ ଥିଲା । ଇଚ୍ଛା ମୁତାବକ ମନକୁ ଟାଣି ଆଣିବାର କ୍ଷମତା ଅର୍ଜନ ନ କରି ମୁଁ ଏକାଗ୍ରତାର ଶକ୍ତି ବଢ଼ାଇବାକୁ ଲାଗିଲି । ଏହା ହିଁ ହୋଇଛି ମୋର ଜୀବନରେ ଗଭୀରତମ ଦୁଃଖଭୋଗର କାରଣ । ବର୍ତ୍ତମାନ ମୁଁ ଇଚ୍ଛାନୁଯାୟୀ ମନକୁ ଟାଣି ଆଣିପାରେ । ତେବେ ଏହା ଶିଖିବାକୁ ହୋଇଛି ଅନେକ ପରେ ।

କୌଣସି ବିଷୟରେ ଇଚ୍ଛାନୁଯାୟୀ ଆମେମାନେ ନିଜେ ନିଜେ ଯେପରି ମନୋନିବେଶ କରିପାରିବା, ବିଷୟ ଯେପରି ଆମର ମନକୁ ଟାଣି ନ ନେଇପାରେ । ସାଧାରଣତଃ ବାଧ୍ୟ ହୋଇ ଆମେମାନେ ମନୋନିବେଶ କରୁଁ । ବିଭିନ୍ନ ବିଷୟର ଆକର୍ଷଣର ପ୍ରଭାବରେ ଆମମାନଙ୍କର ମନ ଯେଉଁଠାରେ ସଂଲଗ୍ନ ହୋଇ ରହିବାକୁ ବାଧ୍ୟ ହୁଏ, ଆମେମାନେ ତାହାକୁ ବାଧା ଦେଇପାରୁ ନାହିଁ । ମନକୁ ସଂଯତ କରିବାକୁ ହେଲେ – ଯେଉଁଠାରେ ଆମର ଇଚ୍ଛା ସେଠାରେ ନିବିଷ୍ଟ କରିବା ପାଇଁ ବିଶେଷ ଶିକ୍ଷାର ପ୍ରୟୋଜନ । ଅନ୍ୟ କୌଣସି ଉପାୟଦ୍ୱାରା ତାହା ହେବାର ନୁହେଁ । ଧର୍ମର ଅନୁଶୀଳନଦ୍ୱାରା ମନଃସଂଯମ ଏକାନ୍ତ ପ୍ରୟୋଜନ । ଏହି ଅନୁଶୀଳନଦ୍ୱାରା ମନକୁ ଟାଣି ଆଣି ସେହି ମନ ଉପରେ ନିବିଷ୍ଟ କରିବାକୁ ହେବ ।

ମନର ନିୟନ୍ତ୍ରଣ ଆରମ୍ଭ କରିବାକୁ ହେବ ପ୍ରାଣାୟାମ ମାଧ୍ୟମରେ । ନିୟମିତ ଶ୍ୱାସକ୍ରିୟା ଫଳରେ ଦେହରେ ସମତା ଆସିବ । ସେତେବେଳେ ମନକୁ ଧରି ରଖିବା ସହଜ । ପ୍ରାଣାୟାମ ଅଭ୍ୟାସ କରିବାକୁ ହେଲେ ପ୍ରଥମେ ଆସନ ବା ଦେହସଂସ୍ଥାନର କଥା ଭାବିବାକୁ ହୁଏ । ଯେକୌଣସି ଭଙ୍ଗୀରେ ଅନାୟାସରେ ବସି ରହିପାରିଲେ ତାହା ହିଁ ଉପଯୁକ୍ତ ଆସନ । ମେରୁଦଣ୍ଡ ଯେପରି ଭାରମୁକ୍ତ ରହେ । ଦେହର ଭାର ଯେପରି ବକ୍ଷ ପଞ୍ଜରା ଉପରେ ରଖାଯାଇପାରେ । କୌଣସି ନିଜର କପୋଳକଳ୍ପିତ କୌଶଳ ଅବଲମ୍ବନ ଦ୍ୱାରା ମନନିୟନ୍ତ୍ରଣର ଚେଷ୍ଟା କରିବ ନାହିଁ । ଏକମାତ୍ର ସହଜ, ସରଳ ଶ୍ୱାସ-ପ୍ରଶ୍ୱାସକ୍ରିୟା ହିଁ ଏଥିପାଇଁ ଯଥେଷ୍ଟ । ବିବିଧ କଠୋର ସାଧନଦ୍ୱାରା ମନକୁ ଏକାଗ୍ର କରିବାକୁ ଚେଷ୍ଟା କଲେ ଭୁଲ୍ ହେବ । ସେସବୁ କରିବ ନାହିଁ ।

ମନ ଶରୀର ଉପରେ କାର୍ଯ୍ୟ କରେ, ପୁଣି ଶରୀର ମଧ୍ୟ ମନ ଉପରେ କାର୍ଯ୍ୟ କରେ । ଉଭୟ ମଧ୍ୟ ପରସ୍ପର ଉପରେ କ୍ରିୟା ଓ ପ୍ରତିକ୍ରିୟା କରନ୍ତି । ପ୍ରତ୍ୟେକ ମାନସିକ ଅବସ୍ଥାର ଅନୁରୂପ ଅବସ୍ଥା ଶରୀରରେ ଫୁଟିଉଠେ, ପୁଣି ଶରୀରର ପ୍ରତ୍ୟେକ କ୍ରିୟାର ଅନୁରୂପ ଫଳ ପ୍ରକଟିତ ହୁଏ ମନର କ୍ଷେତ୍ରରେ । ଶରୀର ଓ ମନକୁ ଦୁଇଟି ଅଲଗା ବସ୍ତୁ ବୋଲି ଭାବିଲେ ମଧ୍ୟ କୌଣସି କ୍ଷତି ନାହିଁ, ପୁଣି ଦୁଇଟିଯାକ ମିଳିତ ହୋଇ ଗୋଟିଏ ଶରୀର—ସ୍ଥୂଳ ଦେହ, ତାହାର ସ୍ଥୂଳ ଅଂଶ, ଆଉ ମନ ତାହାର ସୂକ୍ଷ୍ମ ଅଂଶ—ଏପରି ଭାବିଲେ ମଧ୍ୟ କିଛି ଯାଏଆସେ ନାହିଁ । ଏମାନେ ପରସ୍ପର ପରସ୍ପର ଉପରେ କ୍ରିୟା-ପ୍ରତିକ୍ରିୟାଶୀଳ । ମନ ପ୍ରତିନିୟତ ଶରୀରରେ ରୂପାୟିତ ହେଉଅଛି । ମନକୁ ସଂଯତ କରିବାକୁ ହେଲେ ପ୍ରଥମେ ଶରୀର ଦିଗରୁ ଆରମ୍ଭ କରିବା ବେଶୀ ସହଜ । ମନ ଅପେକ୍ଷା ଶରୀର ସହିତ ସଂଗ୍ରାମ କରିବା ଅତି ସହଜ କାର୍ଯ୍ୟ ।

ଯେଉଁ ଯନ୍ତ୍ର ଯେତେ ବେଶୀ ସୂକ୍ଷ୍ମ, ତାହାର ଶକ୍ତି ମଧ୍ୟ ସେତେ ବେଶୀ । ମନ ଶରୀରଠାରୁ ଅନେକ ବେଶୀ ସୂକ୍ଷ୍ମ ଏବଂ ଅଧିକତର ଶକ୍ତିଶାଳୀ । ତେଣୁ ଶରୀରଠାରୁ ଆରମ୍ଭ କଲେ କାମ ସହଜ ହେବ ।

ପ୍ରାଣାୟାମ ହେଉଛି ଏପରି ଗୋଟିଏ ବିଜ୍ଞାନ ଯାହାର ସାହାଯ୍ୟରେ ଶରୀର ଅବଲମ୍ବନଦ୍ୱାରା ଅଗ୍ରସର ହୋଇ ମନ ପାଖରେ ପହଞ୍ଚିପାରିବା । ଏହିପରି ଧୀରେ ଧୀରେ ଶରୀର ଉପରେ ଆଧିପତ୍ୟ ଆସେ । ତାପରେ ଶରୀରର ସୂକ୍ଷ୍ମ କ୍ରିୟାଗୁଡ଼ିକୁ ଆମେମାନେ ଅନୁଭବ କରିବାକୁ ଆରମ୍ଭ କରୁଁ । କ୍ରମେ ସୂକ୍ଷ୍ମତର ଓ ଗଭୀରତର ପ୍ରଦେଶରେ ପ୍ରବେଶ କରି ଅବଶେଷରେ ମନ ନିକଟରେ ପହଞ୍ଚିଯାଉଁ । ଶରୀରର ସୂକ୍ଷ୍ମକ୍ରିୟାଗୁଡ଼ିକ ଅନୁଭୂତିରେ ଆସିବା ମାତ୍ରେ ସେଗୁଡ଼ିକ ଆୟତ୍ତରେ ଆସେ । କିଛି ସମୟ ପରେ ଶରୀର ଉପରେ ମନର କାର୍ଯ୍ୟଗୁଡ଼ିକ ମଧ୍ୟ ଅନୁଭବ କରିବାକୁ ପଡ଼ିବ । ମନର ଏକାଂଶ ଯେ ଅପରାଂଶ ଉପରେ କାମ କରୁଛି ତାହା ମଧ୍ୟ ବୁଝିପାରିବ ଏବଂ ମନ ଯେ ସ୍ନାୟୁକେନ୍ଦ୍ର ଗୁଡ଼ିକୁ କାମରେ ଲଗାଉଅଛି, ତାହା ମଧ୍ୟ ଅନୁଭବ କରିବ; କାରଣ ମନ ହେଉଛି ସ୍ନାୟୁଗୁଡ଼ିକର ନିୟନ୍ତ୍ରା ଓ ଅଧୀଶ୍ୱର । ବିଭିନ୍ନ ସ୍ନାୟୁସ୍ପନ୍ଦନ ଅବଲମ୍ବନରେ ମନ ହିଁ କ୍ରିୟା କରୁଛି, ଏହା ମଧ୍ୟ ତୁମେମାନେ

ଜାଣିପାରିବ ।

ନିୟମିତ ପ୍ରାଣାୟାମ ଫଳରେ—ପ୍ରଥମେ ସ୍ଥୂଳ ଶରୀର ଉପରେ ଓ ପରେ ସୂକ୍ଷ୍ମ ଶରୀର ଉପରେ ଆଧିପତ୍ୟ ବିସ୍ତାର କରିବାଦ୍ୱାରା ମନକୁ ଅୟତ୍ତ କରାଯାଇପାରେ ।

ପ୍ରାଣାୟାମର ପ୍ରଥମ କ୍ରିୟାଟି ସମ୍ପୂର୍ଣ୍ଣ ନିରାପଦ ଓ ଖୁବ୍ ସ୍ୱାସ୍ଥ୍ୟକର । ଏହାର ଅଭ୍ୟାସରେ ଆଉ କିଛି ନ ହେଉ ସ୍ୱାସ୍ଥ୍ୟଲାଭ ଓ ଶରୀରର ସାଧାରଣ ଅବସ୍ଥାର ଉନ୍ନତି ନିଶ୍ଚୟ ହେବ । ବାକି ପ୍ରକ୍ରିୟାଗୁଡ଼ିକ ଧୀରେ ଧୀରେ ସାବଧାନରେ କରିବାକୁ ହେବ ।

## ପ୍ରାଣାୟାମ

ପ୍ରାଣାୟାମ କହିଲେ କଅଣ ବୁଝାଏ ? ପ୍ରଥମେ ଆମେମାନେ ତାହା ବୁଝିବାକୁ ଚେଷ୍ଟା କରିବା । ବିଶ୍ୱର ଯେତେ ଶକ୍ତି ଅଛି, ଆଧ୍ୟାତ୍ମିକ ବିଜ୍ଞାନରେ ତାହାର ସମଷ୍ଟିକୁ ପ୍ରାଣ ବୋଲାଯାଏ । ଦାର୍ଶନିକମାନଙ୍କ ମତରେ ଏହି ସୃଷ୍ଟି ତରଙ୍ଗ ଆକାରରେ ଚାଲେ । ତରଙ୍ଗ ଉଠିଲା, ପୁଣି ପଡ଼ି ମିଳେଇଗଲା, ଯେପରି କି ସମ୍ପୂର୍ଣ୍ଣ ବିଲୀନ ହୋଇଗଲା । ପୁଣି ସମସ୍ତ ବୈଚିତ୍ର୍ୟ ନେଇ ଉଠିଲା ଏବଂ ଧୀରେ ଧୀରେ ପୁଣି ଚାଲିଗଲା । ଏହିପରି ଭାବରେ ବାରମ୍ବାର ଉଠିବା ପଡ଼ିବା ଚାଲିଛି । ଜଡ଼ ପଦାର୍ଥ ଓ ଶକ୍ତିର ମିଳନଦ୍ୱାରା ଏହି ବିଶ୍ୱବ୍ରହ୍ମାଣ୍ଡ ରଚିତ ହୋଇଅଛି । ସଂସ୍କୃତ ଶାସ୍ତ୍ରଜ୍ଞ ଦାର୍ଶନିକମାନେ କହନ୍ତି, କଠିନ ତରଳ ପ୍ରଭୃତି ଯେଉଁସବୁ ବସ୍ତୁକୁ ଆମେମାନେ ଜଡ଼ପଦାର୍ଥ ବୋଲୁଁ, ସେସମସ୍ତ ଗୋଟିଏ ମୂଳ ଜଡ଼ପଦାର୍ଥରୁ ଉତ୍ପନ୍ନ ହୋଇଅଛି । ସେମାନେ ଏହି ମୂଳ ପଦାର୍ଥର ନାମ ଦେଇଅଛନ୍ତି 'ଆକାଶ' (ଇଥର) । ଆଉ ପ୍ରକୃତିର ଯେଉଁ ସମସ୍ତ ଶକ୍ତି ଆମେମାନେ ଦେଖିବାକୁ ପାଉ, ସେଗୁଡ଼ିକ ମଧ୍ୟ ଯେଉଁ ମୂଳଶକ୍ତିର ଅଭିବ୍ୟକ୍ତି ତାହାର ନାମ ଦେଇଛନ୍ତି 'ପ୍ରାଣ' । ଆକାଶ ଉପରେ ଏହି ପ୍ରାଣର କାର୍ଯ୍ୟ ଫଳରେ ବିଶ୍ୱର ସୃଷ୍ଟି ହୁଏ ଏବଂ ଗୋଟିଏ ସୁନିର୍ଦ୍ଦିଷ୍ଟ କାଳର ଶେଷରେ ଅର୍ଥାତ୍ କଳ୍ପାନ୍ତରରେ—ଗୋଟିଏ ସୃଷ୍ଟିର ବିରତି ସମୟ ଆସେ । ଗୋଟିଏ ସୃଷ୍ଟି-ପ୍ରବାହ ପରେ କିଛିକ୍ଷଣ ପାଇଁ ବିରତି ଆସେ—ସବୁ କାର୍ଯ୍ୟରେ ଏହି ନିୟମ । ଯେତେବେଳେ ପ୍ରଳୟକାଳ ଆସେ, ସେତେବେଳେ ପୃଥିବୀ, ଚନ୍ଦ୍ର, ସୂର୍ଯ୍ୟ, ତାରକାଦି ସହିତ ଏହି ପରିଦୃଶ୍ୟମାନ ବିଶ୍ୱବ୍ରହ୍ମାଣ୍ଡ ବିଲୀନ ହୋଇ ପୁଣି ଆକାଶରେ ପରିଣତ ହୁଏ । ସବୁ ଖଣ୍ଡବିଖଣ୍ଡ ହୋଇ ଆକାଶରେ ଲୀନ ହୁଏ । ମାଧ୍ୟାକର୍ଷଣ, ଆକର୍ଷଣ, ଗତି, ଚିନ୍ତା ପ୍ରଭୃତି ଶରୀରର ଓ ମନର ଯାବତୀୟ ଶକ୍ତି ମଧ୍ୟ ବିକୀର୍ଣ୍ଣ ହୋଇ ପୁଣି ମୂଳ ପ୍ରାଣରେ ଲୀନ ହୁଏ । ଏଥିରୁ ଆମେମାନେ ପ୍ରାଣାୟାମର ଗୁରୁତ୍ୱ ହୃଦୟଙ୍ଗମ କରିପାରୁ । ଏହି ଆକାଶ ଯେପରି ସବୁଦିନେ ଆମମାନଙ୍କୁ ଘେରି ରହିଛି ଏବଂ ଆମେମାନେ ସେଥିରେ ଓତଃପ୍ରୋତ ହୋଇ ରହିଅଛୁ, ସେହିପରି ଏହି ପରିଦୃଶ୍ୟମାନ ସମସ୍ତ ପଦାର୍ଥ ଆକାଶରୁ ସୃଷ୍ଟି ହୋଇଛି । ହ୍ରଦର ପାଣିରେ ଭାସମାନ ବରଫଖଣ୍ଡ ଭଳି ଆମେମାନେ ଇଥରରେ ଭାସୁଅଛୁ ।

ବରଫର ଖଣ୍ଡଗୁଡ଼ିକ ଯେପରି ପାଣିଦ୍ୱାରା ଗଠିତ, ପୁଣି ସେଗୁଡ଼ିକ ସେହି ପାଣି ମଧ୍ୟରେ ଭାସୁଥାଆନ୍ତି । ବିଶ୍ୱର ସମୁଦାୟ ପଦାର୍ଥ ମଧ୍ୟ ସେହିପରି 'ଆକାଶ' ଦ୍ୱାରା ଗଠିତ ଏବଂ 'ଆକାଶ'-ରୂପକ ସମୁଦ୍ର ମଧ୍ୟରେ ଭାସୁଅଛନ୍ତି । ପ୍ରାଣର ଅର୍ଥାତ୍ ବଳ ଓ ଶକ୍ତିର ବିଶାଳ ସମୁଦ୍ର ମଧ୍ୟ ଠିକ୍ ସେହିପରି ଆମମାନଙ୍କୁ ଘେରି ରହିଛି । ଏହି ପ୍ରାଣ ସାହାଯ୍ୟରେ ଆମମାନଙ୍କର ଶ୍ୱାସକ୍ରିୟା ଚଳେ ଓ ଦେହରେ ରକ୍ତ-ଚଳାଚଳ ହୁଏ । ଏହି ପ୍ରାଣ ସ୍ନାୟୁ ଓ ମାଂସପେଶୀର ଶକ୍ତିରୂପେ ଏବଂ ମସ୍ତିଷ୍କର ଚିନ୍ତାରୂପେ ମଧ୍ୟ ପ୍ରକାଶ ପାଏ । ସମସ୍ତ ଶକ୍ତି ଯେପରି ଗୋଟିଏ ପ୍ରାଣର ବିଭିନ୍ନ ବିକାଶ ମାତ୍ର । ସେହିପରି ସବୁ ପଦାର୍ଥ ଏକ ଆକାଶର ବିଭିନ୍ନ ଅଭିବ୍ୟକ୍ତି । ସ୍ଥୂଳର କାରଣ ସବୁ ସମୟରେ ସୂକ୍ଷ୍ମ ମଧ୍ୟରେ ଖୋଜି ପାଉଁ । କୌଣସି ରସାୟନବିତ୍ ଯେତେବେଳେ ଖଣ୍ଡେ ସ୍ଥୂଳ ମିଶ୍ର ପଦାର୍ଥ ନେଇ ତାହାର ବିଶ୍ଳେଷଣ କରନ୍ତି, ସେତେବେଳେ ସେ ବସ୍ତୁତଃ ଏହି ସ୍ଥୂଳ ପଦାର୍ଥର ଉପାଦାନ ସୂକ୍ଷ୍ମ ପଦାର୍ଥର ଅନୁସନ୍ଧାନରେ ବ୍ୟାପୃତ ହୁଅନ୍ତି । ଆମମାନଙ୍କର ଚିନ୍ତା ଓ ଜ୍ଞାନ ସମ୍ବନ୍ଧରେ ମଧ୍ୟ ଠିକ୍ ଏକା କଥା । ସ୍ଥୂଳର ବ୍ୟାଖ୍ୟା ସୂକ୍ଷ୍ମ ମଧ୍ୟରେ ପାଉଁ । ସୂକ୍ଷ୍ମ କାରଣ, ସ୍ଥୂଳ ତାହାର କାର୍ଯ୍ୟ । ଯେଉଁ ସ୍ଥୂଳ ବିଶ୍ୱକୁ ଆମେମାନେ ଦେଖୁ, ଅନୁଭବ କରୁ, ସ୍ପର୍ଶ କରୁ, ତାହାର କାରଣ ଓ ବ୍ୟାଖ୍ୟା ମିଳେ ତାହାର ପଶ୍ଚାତ୍‌ରେ ଚିନ୍ତା ମଧ୍ୟରେ । ଚିନ୍ତାର କାରଣ ଓ ବ୍ୟାଖ୍ୟା ମିଳେ ଆହୁରି ପଶ୍ଚାତ୍‌ରେ । ଆମମାନଙ୍କର ମନୁଷ୍ୟ ଦେହରେ ହାତ ହଲେଇବା, କଥା କହିବା ପ୍ରଭୃତି ସ୍ଥୂଳ କାର୍ଯ୍ୟଗୁଡ଼ିକ ଆଗେ ଆମମାନଙ୍କର ନଜରରେ ପଡ଼େ । କିନ୍ତୁ ଏହି କାର୍ଯ୍ୟଗୁଡ଼ିକର କାରଣ କେଉଁଠି ? ଦେହ ଅପେକ୍ଷା ସୂକ୍ଷ୍ମତର ସ୍ନାୟୁଗୁଡ଼ିକ ତାହାର କାରଣ । ସେହି ସ୍ନାୟୁର କ୍ରିୟା ଆଦୌ ଆମମାନଙ୍କର ଅନୁଭବରେ ଆସେ ନାହିଁ । ତାହା ଏପରି ସୂକ୍ଷ୍ମ ଯେ ଆମେମାନେ ତାହା ଦେଖିବାକୁ ପାଉ ନାହିଁ, ସ୍ପର୍ଶ କରିପାରୁ ନାହିଁ । ତାହା ଇନ୍ଦ୍ରିୟର ଅନୁଭୂତିର ଏକାବେଳକେ ବାହାରେ । ତଥାପି ଆମେମାନେ ଜାଣୁ ଯେ, ଦେହର ଏହି ସ୍ଥୂଳ କାର୍ଯ୍ୟଗୁଡ଼ିକର କାରଣ ଏହି ସ୍ନାୟୁର କ୍ରିୟା । ସ୍ନାୟୁର ଗତିବିଧି ପୁଣି ସେହି ସୂକ୍ଷ୍ମତର ସ୍ପନ୍ଦନର କାର୍ଯ୍ୟ, ଯାହାକୁ ଆମେମାନେ ଚିନ୍ତା ବୋଲି କହୁଥାଉଁ । ଚିନ୍ତାର କାରଣ ପୁଣି ତଦପେକ୍ଷା ସୂକ୍ଷ୍ମତର ବସ୍ତୁ, ଯାହାକୁ ଆତ୍ମା—ମନୁଷ୍ୟର ଚରମ ସତ୍ତା ଅଥବା ଜୀବାତ୍ମା ବୋଲାଯାଏ । ନିଜକୁ ଠିକ୍ ଭାବରେ ଜାଣିବାକୁ ହେଲେ ଆଗେ ସ୍ୱୀୟ ଅନୁଭବ ଶକ୍ତିକୁ ସୂକ୍ଷ୍ମ କରିବାକୁ ହେବ । ଏପରି କୌଣସି ଅଣୁବୀକ୍ଷଣଯନ୍ତ୍ର ବା ସେହି ଜାତୀୟ କୌଣସି ଯନ୍ତ୍ର ଏପର୍ଯ୍ୟନ୍ତ ଆବିଷ୍କୃତ ହୋଇ ନାହିଁ, ଯାହାଦ୍ୱାରା ଆମମାନଙ୍କ ଅନ୍ତରର ସୂକ୍ଷ୍ମ କ୍ରିୟାଗୁଡ଼ିକୁ ଦେଖିପାରିବା । ଏହି ପ୍ରକାର ଉପାୟ ଅବଲମ୍ବନଦ୍ୱାରା କେବେବେଳେ ହେଲେ ସେଗୁଡ଼ିକୁ ଦେଖିବା ସମ୍ଭବ ନୁହେଁ । ତେଣୁ ଯୋଗୀ ଏପରି ଗୋଟିଏ ବିଜ୍ଞାନ ଆୟତ୍ତ କରିଛନ୍ତି, ଯାହା ତାଙ୍କୁ ନିଜର ମନ ପର୍ଯ୍ୟବେକ୍ଷଣ କରିବାର ଉପଯୋଗୀ ଯନ୍ତ୍ର ଗଠନ କରିଦିଏ; ସେହି ଯନ୍ତ୍ରଟି ମନ ମଧ୍ୟରେ ରହିଅଛି । ସୂକ୍ଷ୍ମ ପଦାର୍ଥ ଧରିବା ଭଳି ଏପରି ଶକ୍ତି ମନ ଲାଭ କରେ, ଯାହା କୌଣସି ଯନ୍ତ୍ରଦ୍ୱାରା କସ୍ମିନ୍‌କାଳେ ପାଇବା ସମ୍ଭବ ନୁହେଁ ।

ଏହି ସୂକ୍ଷ୍ମାତିସୂକ୍ଷ୍ମ ଅନୁଭବଶକ୍ତି ଲାଭ କରିବାକୁ ହେଲେ ଆମମାନଙ୍କୁ ସ୍ଥୂଳଠାରୁ

ଆରମ୍ଭ କରିବାକୁ ହେବ । ଶକ୍ତି ଯେତେ ସୂକ୍ଷ୍ମ ଓ ସୂକ୍ଷ୍ମତର ହେଉଥିବ, ସେତେ ଆମେମାନେ ନିଜ ପ୍ରକୃତିର ଗଭୀରତର—ଗଭୀରତମ ପ୍ରଦେଶରେ ପ୍ରବେଶ କରିବା । ପ୍ରଥମେ ଆମେମାନେ ସମସ୍ତ ସ୍ଥୂଳ କ୍ରିୟାଗୁଡ଼ିକୁ ଧରିପାରିବା, ତାହାପରେ ଚିନ୍ତାର ସୂକ୍ଷ୍ମ ଗତିବିଧିଗୁଡ଼ିକ । ଚିନ୍ତା ଉଦିତ ହେବା ପୂର୍ବରୁ ତାହାର ସନ୍ଧାନ ପାଇବା, ତାହାର ଗତି କେଉଁଆଡ଼କୁ ଓ ତାହାର ଶେଷ ପର୍ଯ୍ୟନ୍ତ ସବୁ ବିଷୟ ଧରିପାରିବା । ଯେପରି ଧର, ସାଧାରଣ ମନ ମଧ୍ୟରେ ଗୋଟିଏ ଚିନ୍ତା ଉଦିତ ହେଲା । ମନ ଜାଣିଲା ନାହିଁ ଚିନ୍ତାଟି ଉତ୍ପନ୍ନ ହେଲା କିପରି ଓ କେଉଁଠି । ମନ ଯେପରି ସମୁଦ୍ର ପରି ଏକ ତରଙ୍ଗର ଉତ୍ସ । ତରଙ୍ଗଟିକୁ ଦେଖିଲେ ମଧ୍ୟ ମଣିଷ ବୁଝିପାରେ ନାହିଁ—କିପରି ତାହା ହଠାତ୍ ସମ୍ମୁଖରେ ଉପସ୍ଥିତ ହେଲା । କେଉଁଠି ତାହାର ଜନ୍ମ ଓ କେଉଁଠି ତାହାର ବିଲୟ । ତରଙ୍ଗଟିକୁ ଦେଖିବା ଛଡ଼ା ଆଉ ବେଶୀ କିଛି ସନ୍ଧାନ ସେ ଜାଣେ ନାହିଁ । କିନ୍ତୁ ଅନୁଭବଶକ୍ତି ଯେତେବେଳେ ସୂକ୍ଷ୍ମ ହୋଇଯାଏ, ସେତେବେଳେ ଉପର ସ୍ତରକୁ ଉଠି ଆସିବାର ବହୁ ପୂର୍ବରୁ ତରଙ୍ଗ ବିଷୟରେ ଆମେମାନେ ସଚେତନ ହୋଇପାରୁ; ପୁଣି ତରଙ୍ଗଟି ଅଦୃଶ୍ୟ ହେବା ପରେ ମଧ୍ୟ ବହୁଦୂର ପର୍ଯ୍ୟନ୍ତ ତାହାର ଗତିପଥ ଅନୁସରଣ କରିପାରୁ । ସେତେବେଳେ କେବଳ ଯଥାର୍ଥ ମନସ୍ତତ୍ତ୍ୱ ବୋଲି ଯାହା ବୁଝାଏ, ତାହା ବୋଧଗମ୍ୟ ହୁଏ । ଲୋକେ ଆଜିକାଲି ନାନା ବିଷୟରେ ମୁଣ୍ଡ ଖଟାଇ ଅନେକ ଗ୍ରନ୍ଥ ରଚନା କରୁଅଛନ୍ତି । କିନ୍ତୁ ଏହି ଗ୍ରନ୍ଥଗୁଡ଼ିକ ମନୁଷ୍ୟକୁ କେବଳ ଭୁଲ ବାଟରେ ପରିଚାଳିତ କରେ । କାରଣ ନିଜ ମନକୁ ବିଶ୍ଳେଷଣ କରିବାର କ୍ଷମତା ନ ଥିବାରୁ ଗ୍ରନ୍ଥକାରମାନେ ଯେଉଁସବୁ ବିଷୟରେ କେବେହେଲେ ସ୍ୱୟଂ ଜ୍ଞାନଲାଭ କରିନାହାନ୍ତି, କେବଳ ଅନୁମାନ ସାହାଯ୍ୟରେ ସେହିସବୁ ବିଷୟରେ ଆଲୋଚନାରେ ପ୍ରବୃତ୍ତ ହୁଅନ୍ତି । ବିଜ୍ଞାନକୁ ତଥ୍ୟ ଉପରେ ପ୍ରତିଷ୍ଠିତ ହେବାକୁ ହେବ ଏବଂ ସେହିସବୁ ତଥ୍ୟଗୁଡ଼ିକର ମଧ୍ୟ ପର୍ଯ୍ୟବେକ୍ଷଣ ଓ ସାମାନ୍ୟୀକରଣ ଅବଶ୍ୟ ପ୍ରୟୋଜନ । ସାମାନ୍ୟୀକରଣ କରିବା ପାଇଁ କେତେଗୁଡ଼ିଏ ବିଶେଷ ତଥ୍ୟ ଯେତେବେଳ ପର୍ଯ୍ୟନ୍ତ ନ ମିଳୁଛି, ସେତେବେଳ ପର୍ଯ୍ୟନ୍ତ କରିବାର ଆଉ ଅଛି ବା କଅଣ ? ତେଣୁ ସାଧାରଣ ତତ୍ତ୍ୱରେ ପହଞ୍ଚିବା ପାଇଁ ସବୁ ଚେଷ୍ଟା ନିର୍ଭର କରୁଛି—ଯେଉଁ ବିଷୟଗୁଡ଼ିକ ଆମେମାନେ ସାମାନ୍ୟୀକରଣ କରିବାକୁ ଚାହୁଁ, ସେଗୁଡ଼ିକ ସମ୍ବନ୍ଧରେ ଜ୍ଞାନ ଆହରଣ କରିବା ଆଗ ଦରକାର । ଜଣେ ଗୋଟିଏ କଳ୍ପିତ ମତ ସୃଷ୍ଟି କଲା, ତା'ପରେ ସେହି ମତକୁ ଭିତ୍ତି କରି ଅନୁମାନ ପରେ ଅନୁମାନ କରିବାକୁ ଲାଗିଲା । ଶେଷରେ ସମସ୍ତ ଗ୍ରନ୍ଥଟି କେବଳ ଅନୁମାନରେ ପୂର୍ଣ୍ଣ ହେଲା, ଯାହାର କୌଣସିଟିର କିଛି ଅର୍ଥ ହୁଏ ନାହିଁ । ରାଜଯୋଗ ବିଜ୍ଞାନ କହେ, ସର୍ବପ୍ରଥମେ ନିଜର ମନ ସମ୍ବନ୍ଧରେ କେତେଗୁଡ଼ିଏ ତଥ୍ୟ ତୁମକୁ ସଂଗ୍ରହ କରିବାକୁ ହେବ । ନିଜର ମନକୁ ବିଶ୍ଳେଷଣ କରି, ମନର ସୂକ୍ଷ୍ମ ଅନୁଭବଶକ୍ତିକୁ ବଢ଼ାଇ ମନ ମଧ୍ୟରେ କଅଣ ଘଟୁଛି, ନିଜେ ତାହା ଦେଖି ଏ କାର୍ଯ୍ୟ କରିବାକୁ ହୁଏ । ତଥ୍ୟଗୁଡ଼ିକ ସଂଗୃହୀତ ହେବାପରେ ସେଗୁଡ଼ିକୁ ସାମାନ୍ୟୀକରଣ କର । ତାହାହେଲେ ଯାଇ ଯଥାର୍ଥ ମନସ୍ତତ୍ତ୍ୱ-ବିଜ୍ଞାନ ଆୟତ୍ତ ହେବ । ଆଗରୁ କହିଛି କୌଣସି ସୂକ୍ଷ୍ମ ପ୍ରତ୍ୟକ୍ଷରେ ପହଞ୍ଚିବାକୁ ହେଲେ ପ୍ରଥମେ ତାହାର ସ୍ଥୂଳ

ଅଂଶର ସାହାଯ୍ୟ ନେବାକୁ ହେବ । ବାହାରେ ଯାହା କର୍ମ-ପ୍ରବାହ ଆକାରରେ ପ୍ରକାଶ ପାଏ, ତାହା ହିଁ ସେହି ସ୍ଥୂଳତର ଅଂଶ । ତାକୁ ଧରି ଯଦି ଆମେମାନେ କ୍ରମେ ଆହୁରି ଅଗ୍ରସର ହେଉ, ତାହାହେଲେ କ୍ରମେ ସୂକ୍ଷ୍ମତରରୁ ଅବଶେଷରେ ତାହା ସୂକ୍ଷ୍ମତମ ହୋଇଯିବ । ଏପରି ସ୍ଥିର ହୁଏ ଯେ, ଆମମାନଙ୍କର ଶରୀର ବା ତାହା ଭିତରେ ଯାହା କିଛି ଅଛି, ସେଗୁଡ଼ିକ ସ୍ଵତନ୍ତ୍ର ବସ୍ତୁ ନୁହେଁ; ବସ୍ତୁତଃ ସେଗୁଡ଼ିକ ସୂକ୍ଷ୍ମରୁ ସ୍ଥୂଳ ପର୍ଯ୍ୟନ୍ତ ବିସ୍ତୃତ ଏକ-ପ୍ରକାର ଶୃଙ୍ଖଳର ପରସ୍ପର-ସଂଲଗ୍ନ ବିଭିନ୍ନ ଗଣ୍ଠି ବ୍ୟତୀତ ଆଉ କିଛି ନୁହେଁ । ସବୁଗୁଡ଼ିକୁ ନେଇ ତୁମେ ଗୋଟିଏ ପୂର୍ଣ୍ଣ ସମଷ୍ଟି । ଏହି ଦେହଟି ଅନ୍ତରର ଗୋଟିଏ ବାହ୍ୟ ଅଭିବ୍ୟକ୍ତି ବା ଗୋଟିଏ କଠିନ ଆବରଣ; ବହିର୍ଭାଗଟି ସ୍ଥୂଳତର, ଅନ୍ତର୍ଭାଗଟି ସୂକ୍ଷ୍ମତର । ଏହିପରି ଭାବରେ ସୂକ୍ଷ୍ମରୁ ସୂକ୍ଷ୍ମତର ଆଡ଼କୁ ଚାଲୁ ଚାଲୁ ଅବଶେଷରେ ଆତ୍ମା ନିକଟରେ ଯାଇ ପହଞ୍ଚିବା । ଏପରି ଭାବରେ ଆତ୍ମାର ସନ୍ଧାନ ପାଇଲେ ସେତେବେଳେ ବୁଝିହେବ ଯେ, ଆତ୍ମା ହିଁ ସମସ୍ତ ଅଭିବ୍ୟକ୍ତ କରୁଛନ୍ତି । ଏହି ଆତ୍ମା ହିଁ ମନ ହୋଇଛନ୍ତି, ଶରୀର ହୋଇ-ଅଛନ୍ତି । ଆତ୍ମା ଛଡ଼ା ଅନ୍ୟ କିଛିର ଅସ୍ତିତ୍ୱ ନାହିଁ । ବାକି ଯାହା ଦେଖାଯାଏ, ତାହା ବିଭିନ୍ନ ସ୍ତରରେ ଆତ୍ମାର କ୍ରମବର୍ଦ୍ଧମାନ ସ୍ଥୂଳାକାରରେ ଅଭିବ୍ୟକ୍ତି ମାତ୍ର । ଏହି ଦୃଷ୍ଟାନ୍ତକୁ ଅନୁସରଣ କଲେ ବୁଝିହେବ—ଏହି ବିଶ୍ୱକୁ ବ୍ୟାପ୍ତ ହୋଇ ଗୋଟିଏ ସ୍ଥୂଳ ଅଭିବ୍ୟକ୍ତି ରହିଛି, ଆଉ ତା'ର ପଛରେ ରହିଛି ସୂକ୍ଷ୍ମ ସ୍ପନ୍ଦନ, ଯାହାକୁ 'ଈଶ୍ୱରେଚ୍ଛା' କୁହାଯାଏ । ତାହାର ପଛରେ ଆମେମାନେ ଏକ ଅଖଣ୍ଡ ପରମାତ୍ମାର ସନ୍ଧାନ ପାଉ ଏବଂ ସେତେବେଳେ କେବଳ ବୁଝିପାରୁ ସେହି ପରମାତ୍ମା ହିଁ ଈଶ୍ୱର ଓ ଜଗତ୍‌ରୂପରେ ପ୍ରକାଶିତ ହୋଇଅଛନ୍ତି ଏବଂ ଏହା ମଧ୍ୟ ଅନୁଭୂତ ହୁଏ ଯେ, ଜଗତ୍, ଈଶ୍ୱର ଏବଂ ପରମାତ୍ମା ପରସ୍ପର ଅତ୍ୟନ୍ତ ଭିନ୍ନ ନୁହନ୍ତି । ଫଳତଃ ସେମାନେ ଗୋଟିଏ ମୌଳିକ ସତ୍ତାର ବିଭିନ୍ନ ଅଭିବ୍ୟକ୍ତ ଅବସ୍ଥା । ପ୍ରଣାୟାମ ଫଳରେ ଏହିସବୁ ତଥ୍ୟ ଉଦ୍‌ଘାଟିତ ହୁଏ । ଶରୀରର ଅଭ୍ୟନ୍ତରରେ ଏହିପରି ଯେ ସମସ୍ତ ସୂକ୍ଷ୍ମ ସ୍ପନ୍ଦନ ଚାଲୁଅଛି, ସେଗୁଡ଼ିକ ଶ୍ୱାସକ୍ରିୟା ସହିତ ଜଡ଼ିତ । ଏହି ଶ୍ୱାସକ୍ରିୟାକୁ ଯଦି ଆମେମାନେ ଆୟତ୍ତ କରିପାରୁ ଏବଂ ତାହାକୁ ଇଚ୍ଛାନୁଯାୟୀ ପରିଚାଳିତ ଓ ନିୟମିତ କରିପାରୁ, ତାହାହେଲେ ଧୀରେ ଧୀରେ ସୂକ୍ଷ୍ମରୁ ସୂକ୍ଷ୍ମତର ଗତିଗୁଡ଼ିକୁ ଧରିପାରିବା ଏବଂ ଏହି ଶ୍ୱାସକ୍ରିୟାକୁ ଧରି ମନୋରାଜ୍ୟ ମଧ୍ୟରେ ପ୍ରବେଶ କରିବା ।

ପୂର୍ବ ଅଧ୍ୟାୟରେ ତୁମମାନଙ୍କୁ ଯେଉଁ ପ୍ରାଥମିକ ଶ୍ୱାସକ୍ରିୟା ଶିଖାଇଥିଲି, ତାହା ଗୋଟିଏ ସାମୟିକ ଅଭ୍ୟାସ ମାତ୍ର । ଏହି ଶ୍ୱାସକ୍ରିୟା ନିୟନ୍ତ୍ରଣର ଉପାୟଗୁଡ଼ିକ ମଧ୍ୟରେ କେତୋଟି ପୁଣି ଅତ୍ୟନ୍ତ କଠିନ । ମୁଁ ଅବଶ୍ୟ କଠିନ ଉପାୟଗୁଡ଼ିକୁ ବାଦ ଦେଇ କହିବାକୁ ଚେଷ୍ଟା କରିବି, କାରଣ କଠିନତର ସାଧନାଗୁଡ଼ିକ ପାଇଁ ଆହାର ଓ ଅନ୍ୟାନ୍ୟ ବିଷୟରେ ବହୁତ ସଂଯମର ପ୍ରୟୋଜନ ଏବଂ ତୁମମାନଙ୍କ ମଧ୍ୟରେ ଅଧିକାଂଶଙ୍କ ପକ୍ଷରେ ତାହା ସମ୍ଭବ ନୁହେଁ । କାର୍ଯ୍ୟତଃ ସହଜ ଓ ମଙ୍ଗଳତର ସାଧନଗୁଡ଼ିକ ସମ୍ବନ୍ଧରେ ଆମେମାନେ ଆଲୋଚନା କରିବା । ଏହି ଶ୍ୱାସକ୍ରିୟାର ତିନୋଟି ଅଙ୍ଗ ଅଛି । ପ୍ରଥମ ଅଙ୍ଗ ହେଉଛି ନିଃଶ୍ୱାସ ଟାଣିନେବା, ଯାହାର ସଂସ୍କୃତ ନାମ 'ପୂରକ' ବା ପୂର୍ଣ୍ଣକରଣ ।

ଦ୍ୱିତୀୟ ଅଙ୍ଗର ନାମ 'କୁମ୍ଭକ' ବା ଧାରଣ, ଅର୍ଥାତ୍ ଶ୍ୱାସଯନ୍ତ୍ରକୁ ବାୟୁ-ପୂର୍ଣ୍ଣ କରି ସେହି ବାୟୁକୁ ବାହାରକୁ ନ ଛାଡ଼ିବା । ତୃତୀୟ ଅଙ୍ଗର ନାମ 'ରେଚକ' ଅର୍ଥାତ୍ ଶ୍ୱାସତ୍ୟାଗ । ଯେଉଁ ପ୍ରଥମ ସାଧନଟିକୁ ଆଜି ମୁଁ ତୁମମାନଙ୍କୁ ଶିଖାଇବାକୁ ଚାହେଁ, ତାହା ହେଉଛି ସହଜ ଭାବରେ ଶ୍ୱାସ ଟାଣି ନେଇ କିଛିକ୍ଷଣ ଦମ୍ ବନ୍ଦକରି କରି ପରେ ଧୀରେ ଧୀରେ ଶ୍ୱାସ ତ୍ୟାଗ କରିବା । ଏହାଛଡ଼ା ପ୍ରାଣାୟାମର ଆଉ ଗୋଟିଏ ଉଚ୍ଚତର ସ୍ତର ଅଛି । କିନ୍ତୁ ଆଜି ସେ ବିଷୟରେ କିଛି କହିବି ନାହିଁ; କାରଣ ସେସବୁ ବିଷୟ ତୁମେମାନେ ମନେ-ରଖିପାରିବ ନାହିଁ । ତାହା ବଡ଼ ଜଟିଳ । ଶ୍ୱାସକ୍ରିୟାର ଏହି ତିନୋଟି ଅଙ୍ଗ ମିଶି ଗୋଟିଏ ପ୍ରାଣାୟାମ ହୁଏ । ଏହି ଶ୍ୱାସକ୍ରିୟାର ନିୟନ୍ତ୍ରଣ ପ୍ରୟୋଜନ । କାରଣ ନିୟନ୍ତ୍ରିତ ନ ହେଲେ ତାହା ଅଭ୍ୟାସ କଲେ ବିପଦ ଅଛି । ତେଣୁ ସଂଖ୍ୟା ସାହାଯ୍ୟରେ ତାହାକୁ ନିୟନ୍ତ୍ରଣ କରିବାକୁ ହୁଏ । ତୁମକୁ ସର୍ବନିମ୍ନ ସଂଖ୍ୟା ନେଇ ଆରମ୍ଭ କରିବାକୁ ହେବ । ଚାରି ସେକେଣ୍ଡ ପର୍ଯ୍ୟନ୍ତ ଶ୍ୱାସ ଗ୍ରହଣ କର, ତାର ପର ଆଠ ସେକେଣ୍ଡ ପର୍ଯ୍ୟନ୍ତ ଶ୍ୱାସବନ୍ଦ କରି ରଖ, ପରେ ପୁଣି ଚାରି ସେକେଣ୍ଡ ପର୍ଯ୍ୟନ୍ତ ଧୀରେ ଧୀରେ ତାହା ପରିତ୍ୟାଗ କର । ସଂଖ୍ୟା ଯେତେବେଳେ ଦୁଇ ଆଠ ଚାରି ହୁଏ, ସେତେବେଳେ ସେ ପ୍ରକ୍ରିୟାଟି କଠିନତର ହୋଇଉଠେ । ଗୁରୁଙ୍କ ଉପଦେଶ ନେଇ ଏଗୁଡ଼ିକୁ ଅଭ୍ୟାସ କରିବ । ପୁଣି ପ୍ରଥମରୁ ଆରମ୍ଭ କର । ଏହିପରି ଭାବରେ ସକାଳେ ଚାରିଥର, ସନ୍ଧ୍ୟାରେ ଚାରିଥର କରି ଅଭ୍ୟାସ କରିବ । ଆଉ ଗୋଟିଏ କଥା ଅଛି । ଏକ-ଦୁଇ-ତିନି ବା ଏହି ଧରଣର ଅର୍ଥହୀନ ସଂଖ୍ୟା ଗଣନା ଅପେକ୍ଷା ଯେକୌଣସି ପବିତ୍ର ଶବ୍ଦ ଜପକରି ଶ୍ୱାସ ନିୟନ୍ତ୍ରଣ କରିବା ଭଲ । ଯେପରି ଆମମାନଙ୍କ ଦେଶରେ 'ଓଁ' ନାମକ ଗୋଟିଏ ସାଙ୍କେତିକ ଶବ୍ଦ ଅଛି । 'ଓ' ଈଶ୍ୱରଙ୍କର ପ୍ରତୀକ । ଏକ-ଦୁଇ-ତିନି-ଚାରି—ଏସବୁ ସଂଖ୍ୟା ପରିବର୍ତ୍ତେ 'ଓଁ' ଜପ କଲେ ଉଦ୍ଦେଶ୍ୟ ଭଲ ଭାବରେ ସିଦ୍ଧ ହୁଏ । ଆଉ ଗୋଟିଏ କଥା, ପ୍ରଥମେ ବାମ ନାକ ଦେଇ ନିଃଶ୍ୱାସ ଟାଣି ଡାହାଣ ନାକ ଦେଇ ତାହା ଛାଡ଼ିବାକୁ ହେବ । ପରେ ଡାହାଣ ନାକ ଦେଇ ଟାଣି ପୁଣି ବାମ ନାକ ଦେଇ ଛାଡ଼ିବାକୁ ହେବ । ଏହାପରେ ପୂର୍ବର ପଦ୍ଧତି ଅନୁସରଣ କର । ଏହିପରି ଭାବରେ କରିଯାଅ । ପ୍ରଥମେ ଚେଷ୍ଟା କରିବାକୁ ହେବ, ଯେପରିକି ଖୁସିରେ କେବଳ ଇଚ୍ଛାଶକ୍ତି ସାହାଯ୍ୟରେ ଯେ କୌଣସି ନାକ ଦେଇ ଶ୍ୱାସକ୍ରିୟା କରିବାର ଶକ୍ତିର ଅଧିକାରୀ ହୋଇ-ପାରିବ । କିଛିଦିନ ପରେ ଏହା ସହଜ ହୋଇଯିବ । କିନ୍ତୁ ମୁସ୍‌କିଲ ହେଉଛି ଏଇୟା ଯେ, ବର୍ତ୍ତମାନ ତୁମମାନଙ୍କର ସେ ଶକ୍ତି ନାହିଁ । ତେଣୁ ଗୋଟିଏ ନାକଦେଇ ଶ୍ୱାସ ଗ୍ରହଣ କରିବା ସମୟରେ ଅନ୍ୟ ନାକଟିକୁ ଅଙ୍ଗୁଳି ଦେଇ ବନ୍ଦ କରି ରଖିବ, ଏବଂ କୁମ୍ଭକ ସମୟରେ ଏପରି ଭାବରେ ଉଭୟ ନାସାରନ୍ଧ୍ରକୁ ବନ୍ଦ କରି ରଖିବ ।

ପୂର୍ବେ ଯେଉଁ ଦୁଇଟି ବିଷୟ ଶିଖାଇଛି, ତାହା ମଧ୍ୟ ଭୁଲିଲେ ଚଳିବ ନାହିଁ । ପ୍ରଥମ କଥା, ଦେହ ସିଧା ରଖିବ । ଦ୍ୱିତୀୟ କଥା ଭାବିବ ଯେ, ତୁମର ଶରୀର ଦୃଢ଼ ଓ ଶକ୍ତ—ସୁସ୍ଥ ଓ ସବଳ । ତା'ପରେ ଚତୁର୍ଦିଗରେ ପ୍ରେମର ପ୍ରବାହ ବୁହାଇ ଦେବ, ଭାବିବ ଯେ, ସମସ୍ତ ଜଗତ୍ ଆନନ୍ଦରେ ପରିପୂର୍ଣ୍ଣ । ପରେ ଯଦି ଈଶ୍ୱରଙ୍କ ଉପରେ ବିଶ୍ୱାସ

ଥାଏ, ତେବେ ପ୍ରାର୍ଥନା କରିବ । ତା'ପରେ ପ୍ରାଣାୟାମ ଆରମ୍ଭ କରିବା । ତୁମମାନଙ୍କ ମଧ୍ୟରେ ଅନେକଙ୍କର ସର୍ବାଙ୍ଗରେ କମ୍ପନ, କିମ୍ବା ଭୟଜନିତ ସ୍ନାୟବିକ ଅସ୍ଥିରତା ପ୍ରଭୃତି ଶାରୀରିକ ବିକାର ଉପସ୍ଥିତ ହେବ । କାହାର ମଧ୍ୟ କାନ୍ଦଣା ଭାବ ଆସିପାରେ—କେତେ କେତେବେଳେ ହୁଏତ ମାନସିକ ଆବେଗୋଚ୍ଛ୍ୱାସ ହେବ । କିନ୍ତୁ ଭୟ ପାଇବ ନାହିଁ । ସାଧନ ଅବସ୍ଥାରେ ଏହିସବୁ ହୋଇଥାଏ । କାରଣ ସମସ୍ତ ଶରୀରଟାକୁ ଯେପରି ନୂଆ କରି ସଜାଇବାକୁ ହେବ । ଚିନ୍ତାର ପ୍ରବାହ ପାଇଁ ମସ୍ତିଷ୍କରେ ନୂଆ ନୂଆ ପ୍ରଣାଳୀ ନିର୍ମିତ ହେବ, ଯେଉଁସବୁ ସ୍ନାୟୁ ଜୀବନ ତମାମ କୌଣସି କାର୍ଯ୍ୟରେ ଲାଗି ନାହିଁ, ସେଗୁଡ଼ିକ ସକ୍ରିୟ ହୋଇଯିବେ ଏବଂ ଶରୀର ମଧ୍ୟରେ ନୂଆ ଧରଣର ବହୁ ପରିବର୍ତ୍ତନ ଉପସ୍ଥିତ ହେବ ।

# ଧ୍ୟାନ

[ ସ୍ୱାମୀଜୀଙ୍କର ଏହି ବକ୍ତୃତାଟି ୧୯୦୦ ଖ୍ରୀଷ୍ଟାବ୍ଦ ୩ ଅପ୍ରେଲରେ ଆମେରିକାର ସାନ୍‌ଫ୍ରାନ୍‌ସିସ୍‌କୋ ସହରର ୱାଶିଂଟନ ହଲରେ ପ୍ରଦତ୍ତ । ସାଙ୍କେତିକ ଲିପିକାର ଓ ଅନୁଲେଖିକା—ଆଇଡ଼ା ଆନସେଲ୍ । ଯେଉଁଠାରେ ଲିପିକାର ସ୍ୱାମୀଜୀଙ୍କର କୌଣସି କଥା ବୁଝିପାରି ନାହାନ୍ତି ସେସବୁ ସ୍ଥଳେ କେତୋଟି ବିନ୍ଦୁ ଚିହ୍ନ (···) ଦିଆଯାଇଛି । ପ୍ରଥମ ବନ୍ଧନୀ ( ) ଭିତରେ ଥିବା ଶବ୍ଦ ବା ବାକ୍ୟ ସ୍ୱାମୀଜୀଙ୍କର ନିଜର ନୁହେଁ । ଭାବ ପରିସ୍ଫୁଟନ ପାଇଁ ଏହା ନିବଦ୍ଧ କରାଯାଇଛି । ମୂଳ ଇଂରାଜୀ ବକ୍ତୃତା ହଲିଉଡ଼ ବେଦାନ୍ତ କେନ୍ଦ୍ରର ମୁଖପତ୍ର—Vedanta and the West ପତ୍ରିକାର ୧୧୨ ତମ ସଂଖ୍ୟାରେ (ମାର୍ଚ୍ଚ-ଅପ୍ରେଲ୍ ୧୯୫୫) ମୁଦ୍ରିତ ହୋଇଥିଲା । ]

ପ୍ରତ୍ୟେକ ଧର୍ମ 'ଧ୍ୟାନ' ଉପରେ ବିଶେଷ ଗୁରୁତ୍ୱ ଦେଇଛନ୍ତି । ଯୋଗୀମାନେ କହନ୍ତି ଧ୍ୟାନମଗ୍ନ ଅବସ୍ଥା ମନର ଉଚ୍ଚତମ ଅବସ୍ଥା । ମନ ଯେତେବେଳେ ବାହାରର ବସ୍ତୁ ଅନୁଶୀଳନରେ ରତ ଥାଏ, ସେତେବେଳେ ଏହା ସେହି ବସ୍ତୁ ସହିତ ଏକୀଭୂତ ହୁଏ ଏବଂ ନିଜକୁ ଭୁଲିଯାଏ । ପ୍ରାଚୀନ ଭାରତୀୟ ଦାର୍ଶନିକଙ୍କ ଉପମାରେ କହିବାକୁ ଗଲେ, ମନୁଷ୍ୟର ମନ ଯେପରି ଖଣ୍ଡେ ସ୍ଫଟିକ ପରି—ନିକଟରେ ଯାହା ଥିବ, ତାହା ସେହି ରଙ୍ଗ ଧାରଣ କରିବ । ଅନ୍ତଃକରଣକୁ ଯାହା ସ୍ପର୍ଶ କରେ··· ସେହି ରଙ୍ଗରେ ତାହା ରଞ୍ଜିତ ହୋଇଥାଏ । ସମସ୍ୟା ଏତିକି । ଏହାର ନାମ ବନ୍ଧନ । ଏହି ରଙ୍ଗ ଏତେ ତୀବ୍ର ଯେ ସ୍ଫଟିକ ନିଜର ସତ୍ତା ହରାଇ ବାହାରର ରଙ୍ଗ ସହିତ ଏକୀଭୂତ ହୁଏ । ମନେକର—ଗୋଟିଏ ସ୍ଫଟିକ ନିକଟରେ ଗୋଟିଏ ନାଲି ଫୁଲ ରହିଛି । ସ୍ଫଟିକ ତାହାର ରଙ୍ଗ ଗ୍ରହଣ କଲା ଏବଂ ନିଜର ସ୍ୱଚ୍ଛ ସ୍ୱରୂପକୁ ଭୁଲି ନିଜକୁ ନାଲି ରଙ୍ଗର ବୋଲି ଭାବିବାକୁ ଲାଗିଲା । ଆମମାନଙ୍କର ଅବସ୍ଥା ମଧ୍ୟ ସେହିପରି । ଆମେମାନେ ମଧ୍ୟ ଶରୀର-ରଙ୍ଗରେ

ରଞ୍ଜିତ ହୋଇ ଆମମାନଙ୍କର ଯଥାର୍ଥ ସ୍ୱରୂପ ଭୁଲିଯାଇଛୁ । (ଏହି ଭ୍ରାନ୍ତିର) ଅନୁଗାମୀ ସମସ୍ତ ଦୁଃଖ ହିଁ ଏକ ଅଚେତନ ଶରୀରରୁ ଉଦ୍‌ଭୂତ । ଆମମାନଙ୍କର ଭୟ, ଦୁଶ୍ଚିନ୍ତା, ଉତ୍କଣ୍ଠା, ବିପଦ, ଭୁଲ, ଦୁର୍ବଳତା, ପାପ—ସବୁ ସେହି ଏକମାତ୍ର ମହାଭ୍ରାନ୍ତି 'ଆମେମାନେ ଶରୀର'—ଏହି ଭାବରୁ ଜାତ । ଏହା ହିଁ ହେଲା ସାଧାରଣ ମନୁଷ୍ୟର ଚିତ୍ର । ସନ୍ନିହିତ ପୁଷ୍ପର ବର୍ଣ୍ଣାନୁରଞ୍ଜିତ ସ୍ଫଟିକ ପରି ଏହି ଜୀବ । କିନ୍ତୁ ସ୍ଫଟିକ ଯେପରି ନାଲି ଫୁଲ ନୁହେଁ, ଆମେମାନେ ମଧ୍ୟ ସେପରି ଶରୀର ନୋହୁ ।

ଧ୍ୟାନାଭ୍ୟାସ କରୁ କରୁ ସ୍ଫଟିକ ନିଜର ସ୍ୱରୂପ ଜାଣିପାରେ ଏବଂ ନିଜ ରଙ୍ଗରେ ରଞ୍ଜିତ ହୁଏ । ଅନ୍ୟ ଯେକୌଣସି ପ୍ରଣାଳୀ ଅପେକ୍ଷା କେବଳ ଧ୍ୟାନ ହିଁ ଆମମାନଙ୍କୁ ସତ୍ୟର ଅଧିକତର ନିକଟକୁ ନେଇଯାଏ । ..

ଭାରତରେ ଦୁଇ ବ୍ୟକ୍ତିଙ୍କ ମଧ୍ୟରେ ସାକ୍ଷାତ୍ ହେଲେ (ଆଜିକାଲି) ସେମାନେ ଇଂରାଜିରେ କହନ୍ତି, 'କିପରି ଅଛନ୍ତି ?' କିନ୍ତୁ ଭାରତୀୟ ଅଭିବାଦନ ହେଲା, 'ଆପଣ କ'ଣ ସୁସ୍ଥ ?' ଯେଉଁ ମୁହୂର୍ତ୍ତରେ ଆତ୍ମା ବ୍ୟତୀତ ଅନ୍ୟ କୌଣସି ବିଷୟ ଉପରେ ନିର୍ଭର କରିବ, ତୁମର ଦୁଃଖ ପାଇବାର ଆଶଙ୍କା ରହିବ । ଧ୍ୟାନ କହିଲେ ମୁଁ ଏହା ହିଁ ବୁଝେ—ଆତ୍ମା ଉପରେ ନିର୍ଭର କରିବାର ଚେଷ୍ଟା । ଆତ୍ମା ଯେତେବେଳେ ନିଜର ଅନୁଧ୍ୟାନରେ ବ୍ୟାକୁଳ ଓ ସ୍ୱମହିମାରେ ପ୍ରତିଷ୍ଠିତ, ତାହାର ସେତେବେଳକାର ଅବସ୍ଥାଟି ହିଁ ନିଶ୍ଚିତ ରୂପରେ ସୁସ୍ଥତମ ଅବସ୍ଥା । ଭାବୋନ୍ମାଦନା ପ୍ରାର୍ଥନା ପ୍ରଭୃତି ଅନ୍ୟାନ୍ୟ ଯେଉଁସବୁ ପ୍ରଣାଳୀ ଆମର ଅଛି, ସେଗୁଡ଼ିକର ମଧ୍ୟ ଚରମ ଲକ୍ଷ୍ୟ ତାହା ହିଁ । ଗଭୀର ଆବେଗ ସମୟରେ ମଧ୍ୟ ଆତ୍ମା ସ୍ୱରୂପରେ ପ୍ରତିଷ୍ଠିତ ହେବାକୁ ଚେଷ୍ଟା କରେ, ଯଦିଓ ସେହି ଆବେଗଟି କୌଣସି ବହିର୍ବସ୍ତୁକୁ ଅବଲମ୍ବନ କରି ସୃଷ୍ଟ ହୋଇଛି, ମନ ସେଥିରେ ଧ୍ୟାନସ୍ଥ ହୋଇ ରହିଛି ।

ଧ୍ୟାନର ତିନୋଟି ସ୍ତର ଅଛି । ପ୍ରଥମଟି ହେଉଛି (ଧାରଣା)—ଗୋଟିଏ ବସ୍ତୁ ଉପରେ ଏକାଗ୍ରତା ଅଭ୍ୟାସ । ଏହି ଗ୍ଲାସ ଉପରେ ମୁଁ ମନକୁ ଏକାଗ୍ର କରିବାକୁ ଚେଷ୍ଟା କରୁଅଛି । ଏହି ଗ୍ଲାସ ବ୍ୟତୀତ ଅନ୍ୟାନ୍ୟ ସବୁ ବିଷୟ ମନରୁ ତଡ଼ିଦେଇ କେବଳ ତାହା ଉପରେ ମନଃସଂଯୋଗ କରିବାକୁ ହେବ । କିନ୍ତୁ ମନ ଚଞ୍ଚଳ···ମନ ଯେତେବେଳେ ଦୃଢ଼ ହୁଏ, ସେତେ ଚଞ୍ଚଳ ନ ଥାଏ, ସେହି ଅବସ୍ଥାକୁ ଧ୍ୟାନ କୁହାଯାଏ । ପୁଣି ଏହା ଅପେକ୍ଷା ମଧ୍ୟ ଉଚ୍ଚତର ଅବସ୍ଥା ଅଛି, ଯେତେବେଳେ ଗ୍ଲାସ ଓ ମୋ ମଧ୍ୟରେ ପାର୍ଥକ୍ୟ ସମ୍ପୂର୍ଣ୍ଣ ରୂପରେ ବିଲୁପ୍ତ ହେବ (ସମାଧି ବା ପରିପୂର୍ଣ୍ଣ ତନ୍ମୟତା) ସେତେବେଳେ ମନ ଓ ଗ୍ଲାସ ଅଭିନ୍ନ ହୋଇଯାଏ । ଉଭୟ ମଧ୍ୟରେ କୌଣସି ପାର୍ଥକ୍ୟ ଦେଖାଯାଏ ନାହିଁ, ସେତେବେଳେ ସମସ୍ତ ଇନ୍ଦ୍ରିୟ କର୍ମବିରତ ହୁଏ ଏବଂ ଯେଉଁସବୁ ଶକ୍ତି ବିଭିନ୍ନ ଇନ୍ଦ୍ରିୟ ମାଧ୍ୟମରେ କ୍ରିୟା କରେ, ସେଗୁଡ଼ିକ ମନ ମଧ୍ୟରେ କେନ୍ଦ୍ରୀଭୂତ ହୁଏ । ସେତେବେଳେ ଗ୍ଲାସ ସମ୍ପୂର୍ଣ୍ଣ ଭାବରେ ମନଃଶକ୍ତିର ଅଧୀନ ହୋଇଯାଏ । ଏହା ଉପଲବ୍ଧି କରିବାକୁ ହେବ । ଯୋଗୀମାନଙ୍କ ଦ୍ୱାରା ଅନୁଷ୍ଠିତ ଏହା ଏକ ପ୍ରଚଣ୍ଡ ଶକ୍ତିର ଖେଳ ।···ଧରନ୍ତୁ—ବାହାରର କୌଣସି ବସ୍ତୁ ରହିଛି । ସେ କ୍ଷେତ୍ରରେ ଯାହା ବାସ୍ତବିକ ଆମମାନଙ୍କର ବାହାରେ ଅଛି, ତାହା ଆମେମାନେ କେବଳ ଯାହା

ଦେଖୁଛୁ, ତାହା ନୁହେଁ । ଯେଉଁ ଗ୍ଲାସଟି ଆମମାନଙ୍କର ଦୃଷ୍ଟିକୁ ଆସୁଛି, ତାହା ମୂଳ ବହିର୍ବସ୍ତୁ ନୁହେଁ । ଗ୍ଲାସ ନାମରେ ଅଭିହିତ ବାହାରର ମୂଳ ବସ୍ତୁଟି ମୁଁ ଜାଣେ ନାହିଁ ଏବଂ କେବେହେଲେ ଜାଣିପାରିବି ନାହିଁ ।

କୌଣସି ପଦାର୍ଥ ମୋ ଉପରେ ଦାଗ ରଖିଗଲା, ତତ୍କ୍ଷଣାତ୍ ମୁଁ ମୋର ପ୍ରତିକ୍ରିୟା ତାହାର ଆଡ଼କୁ ପଠାଇଲି ଏବଂ ଉଭୟର ସଂଯୋଗରୁ ଫଳ ହେଲା 'ଗ୍ଲାସ' । ବାହାର ଆଡ଼ୁ ଉତ୍ପନ୍ନ ପ୍ରକ୍ରିୟା—'କ' ଏବଂ ଭିତରଆଡ଼ୁ ଉତ୍ଥିତ ପ୍ରକ୍ରିୟା—'ଖ', ଗ୍ଲାସଟି ହେଲା 'କ+ଖ' । ଯେତେବେଳେ କ ଆଡ଼କୁ ଅନାଇବ, ସେତେବେଳେ ତାହାକୁ କହିପାର ବହିର୍ଜଗତ, ଆଉ ଯେତେବେଳେ 'ଖ' ଆଡ଼କୁ ଦୃଷ୍ଟି ଦେବ, ସେତେବେଳେ ତାହାକୁ କହିପାର 'ଅନ୍ତର୍ଜଗତ'···କେଉଁଟି ତୁମର ମନ ଆଉ କେଉଁଟି ବାହାରର ଜଗତ—ଏହି ପାର୍ଥକ୍ୟ ଉପଲବ୍ଧି କରିବାକୁ ଚେଷ୍ଟା କଲେ ଦେଖିବ ଏପରି କୌଣସି ପ୍ରଭେଦ ନାହିଁ । ଜଗତ୍ ହେଉଛି ତୁମେ ଏବଂ ଆଉ ଅଧିକ କିଛିର ସମବାୟ ।

ଅନ୍ୟ ଗୋଟିଏ ଦୃଷ୍ଟାନ୍ତ ଦେଖାଯାଉ । ତୁମେ ଗୋଟିଏ ହ୍ରଦର ଶାନ୍ତ ପାଣିରେ କେତେଖଣ୍ଡି ଢେଲା ଫୋପାଡ଼ିଲ । ପ୍ରତି ଢେଲା ଫୋପାଡ଼ିବା ପରେ ଦେଖାଯାଏ ଗୋଟିଏ ପ୍ରତିକ୍ରିୟା । ଢେଲା ଖଣ୍ଡିକୁ ବେଢ଼ି ଚାରିଆଡ଼େ ସରୋବରରେ କେତେଗୁଡ଼ିଏ ଛୋଟ ଛୋଟ ଢେଉ ଉଠୁଛି । ସେହିପରି ବହିର୍ଜଗତର ସମସ୍ତ ପଦାର୍ଥ ମନରୂପକ ସରୋବରରେ ପଥରଗୁଡ଼ିକ ପରି ନିକ୍ଷିପ୍ତ ହେଉଛନ୍ତି । ଅତଏବ ଆମେମାନେ ପ୍ରକୃତରେ ବାହାରର ବସ୍ତୁ ଦେଖୁ ନା ··କେବଳ ଦେଖୁ ତରଙ୍ଗ ।

ମନ ମଧ୍ୟରେ ଉତ୍ଥିତ ତରଙ୍ଗଗୁଡ଼ିକ ବାହାରେ ଅନେକ କିଛି ସୃଷ୍ଟି କରେ । ଆମେମାନେ ଆଦର୍ଶବାଦ ଓ ବାସ୍ତବବାଦ (idealism ଓ realism) ଗୁଣଗୁଡ଼ିକ ଆଲୋଚନା କରୁ ନାହୁଁ । ଧରିନେଉଛୁଁ—ବାହାରର ବସ୍ତୁ ରହିଛି, କିନ୍ତୁ ଯାହା ଆମେମାନେ ଦେଖୁ, ତାହା ବାହାରେ ଅବସ୍ଥିତ ବସ୍ତୁଠାରୁ ଭିନ୍ନ, କାରଣ ଆମେମାନେ ଯାହା ପ୍ରତ୍ୟକ୍ଷ କରୁଁ, ତାହା ବହିଃସ୍ଥ ବସ୍ତୁ ଓ ଆମମାନଙ୍କର ନିଜ ମଧ୍ୟରେ ଥିବା ସତ୍ତ୍ୱର ଗୋଟିଏ ସମନ୍ୱୟ ।

ମନେକର—ମୋର ପ୍ରଦତ୍ତ ଯାହା କିଛି ତାହା 'ଗ୍ଲାସ'ରୁ ଉଠେଇନେଲି । ଅବଶିଷ୍ଟ କଅଣ ରହିଲା ? ପ୍ରାୟ କିଛି ନୁହେଁ । ଗ୍ଲାସଟି ଅଦୃଶ୍ୟ ହେବ । ଯଦି ମୋର ପ୍ରଦତ୍ତ ଯାହା କିଛି ତାହା ଏହି ଟେବୁଲରୁ ଅଲଗା କରିନିଏ, ଟେବୁଲର ଆଉ ରହିବ କ'ଣ ? ନିଶ୍ଚୟ ଏହି ଟେବୁଲଟି ରହିବ ନାହିଁ । କାରଣ ଏହା ଉତ୍ପନ୍ନ ହୋଇଥିଲା ବହିର୍ବସ୍ତୁ ଓ ମୋ ଭିତରୁ ପ୍ରଦତ୍ତ କିଛି ନେଇକରି । ପଥର ଖଣ୍ଡିକ ଯେତେବେଳେ ନିକ୍ଷିପ୍ତ ହେଉ ନା କାହିଁକି, ହ୍ରଦ ମଧ୍ୟରେ ଚାରିଆଡ଼େ ନିଶ୍ଚୟ ତରଙ୍ଗ ଉଠିବ । ଯେକୌଣସି ଉତ୍ତେଜନା ପାଇଁ ମନକୁ ତରଙ୍ଗ ସୃଷ୍ଟି କରିବାକୁ ହେବ । ମନେକର—ଆମେମାନେ ଯଦି ମନକୁ ବଶୀଭୂତ କଲୁ, ତତ୍କ୍ଷଣାତ୍ ଆମେମାନେ ମନର ପ୍ରଭୁ ହେଲୁ । ଆମେମାନେ ବାହାର ଘଟଣାଗୁଡ଼ିକୁ

ଆମମାନଙ୍କର ଯାହା କିଛୁ ଦେୟ ତାହା ଦେବାକୁ ଅସ୍ୱୀକାର କଲୁ । ମୁଁ ଯଦି ମୋର ଅଂଶ ନ ଦିଏ, ବାହାରର ଘଟଣା ଅଟକି ଯିବାକୁ ବାଧ୍ୟ ।

ଅନବରତ ତୁମେ ଏହି ବନ୍ଧନ ସୃଷ୍ଟି କରୁଅଛ । କିପରି ? ତୁମର ନିଜର ଅଂଶ ଦେଇ । ଆମେମାନେ ସମସ୍ତେ ନିଜର ଶୃଙ୍ଖଳ ଗଢ଼ି ବନ୍ଧନ ରଚନା କରୁଅଛୁ···ଯେତେବେଳେ ବହିର୍ବସ୍ତୁ ଓ ମୋ॰ ମଧ୍ୟରେ ଅଭିନ୍ନ ବୋଧ କରିବାର ଭାବ ଲୋପ ପାଇବ, ସେତେବେଳେ ମୋର ଦେୟ ଅଂଶ ଉଠାଇ ନେଇପାରିବ ଏବଂ ବସ୍ତୁ ମଧ୍ୟ ବିଲୁପ୍ତ ହେବ । ସେତେବେଳେ ମୁଁ କହିବି 'ଏଠାରେ ଏହି ଗ୍ଲାସଟି ରହିଅଛି' ଏବଂ ମୁଁ ମୋର ମନଟିକୁ ସେଥିରୁ ଟାଣିନେବି ଓ ସଙ୍ଗେ ସଙ୍ଗେ ଗ୍ଲାସଟି ମଧ୍ୟ ଅଦୃଶ୍ୟ ହେବ । ଯଦି ତୁମେ ତୁମର ଦେୟ ଅଂଶ କାଢ଼ିନେବାକୁ ସମର୍ଥ ହୁଅ, ତେବେ ପାଣି ଉପରେ ମଧ୍ୟ ତୁମେ ଚାଲିପାରିବ । ପାଣି ଆଉ ତୁମକୁ ବୁଡ଼େଇଦେବ କାହିଁକି ? ବିଷ ମଧ୍ୟ ତୁମର କଅଣ କରିବ ? ଆଉ କୌଣସି କଷ୍ଟ ମଧ୍ୟ ରହିବ ନାହିଁ । ପ୍ରକୃତିର ଦୃଶ୍ୟମାନ ବସ୍ତୁ ମଧ୍ୟରେ ତୁମର ଦାନ ଅଧେ ଓ ପ୍ରକୃତିର ଦାନ ଅଧେ । ଯଦି ତୁମର ଅର୍ଦ୍ଧଭାଗ ନେଇଯାଅ ତାହା ହେଲେ ଦୃଶ୍ୟମାନ ବସ୍ତୁର ବିଲୁପ୍ତି ଘଟିବ ।

...ପ୍ରତ୍ୟେକ କାର୍ଯ୍ୟର ମଧ୍ୟ ସମ ପରିମାଣରେ ପ୍ରତିକ୍ରିୟା ଅଛି ।···ଯଦି କୌଣସି ଲୋକ ମୋତେ ଆଘାତ କରେ ଓ କଷ୍ଟ ଦିଏ—ତାହା ସେହି ଲୋକଟିର କାର୍ଯ୍ୟ ଏବଂ ବେଦନା ମୋର ଶରୀରର ପ୍ରତିକ୍ରିୟା···। ମନେକରନ୍ତୁ, ମୋର ଶରୀର ଉପରେ ମୋର ଏପରି କ୍ଷମତା ଅଛି ଯେ, ମୁଁ ସେହି ସ୍ୱୟଂଚାଳିତ ପ୍ରତିକ୍ରିୟାକୁ ପ୍ରତିରୋଧ କରିବାକୁ ସମର୍ଥ । ସେପରି ଶକ୍ତି କ'ଣ ଅର୍ଜନ କରିହୁଏ ? ଧର୍ମଶାସ୍ତ୍ର (ଯୋଗଶାସ୍ତ୍ର) କହେ ଯେ, ସେପରି ଶକ୍ତି ଅର୍ଜନ କରିହୁଏ । ଯଦି ତୁମେ ଅଜ୍ଞାତସାରରେ ହଠାତ୍ ଏହା ଲାଭ କର, ସେତେବେଳେ ତୁମେ କହ—'ଅଲୌକିକ' ଘଟଣା । ଆଉ ଯଦି ବୈଜ୍ଞାନିକ ପ୍ରଣାଳୀଦ୍ୱାରା ଶିକ୍ଷା କର, ସେତେବେଳେ ତାହାର ନାମ 'ଯୋଗ' ।

ମାନସିକ ଶକ୍ତି ଦ୍ୱାରା ଲୋକଙ୍କ ମଧ୍ୟରେ ରୋଗ ଭଲ କରିଦେବା ମୁଁ ଦେଖିଛି । ତାହା 'ଅଲୌକିକ କର୍ମୀ'ର କାମ । ସେତେବେଳେ ଆମେମାନେ କହୁ, ସେ ପ୍ରାର୍ଥନା କରି ଲୋକଙ୍କୁ ନିରୋଗ କରନ୍ତି । କିନ୍ତୁ କେହି କେହି କହିବେ, ନା, ମୋଟେ ନୁହେଁ । ଏହା କେବଳ ତାଙ୍କର ମନର ଶକ୍ତିର ଫଳ । ଲୋକଟି ବୈଜ୍ଞାନିକ । ସେ ଜାଣନ୍ତି, ସେ କଅଣ କରୁଛନ୍ତି ।

ଧ୍ୟାନର ଶକ୍ତି ଆମମାନଙ୍କୁ ସବୁକିଛି ଦେଇପାରେ । ଯଦି ତୁମେ ପ୍ରକୃତି ଉପରେ ଆଧିପତ୍ୟ ଚାହଁ (ତାହା ଧ୍ୟାନର ଅନୁଶୀଳନଦ୍ୱାରା ସମ୍ଭବ ହେବ) । ଆଜିକାଲି ବିଜ୍ଞାନର ସମସ୍ତ ଆବିଷ୍କାର ମଧ୍ୟ ଧ୍ୟାନଦ୍ୱାରା ହେଉଅଛି । ସେହି ବୈଜ୍ଞାନିକମାନେ ବିଷୟବସ୍ତୁକୁ ତନ୍ମୟ ଭାବରେ ଅନୁଧ୍ୟାନ କରନ୍ତି ଏବଂ ଅନ୍ୟସବୁ ବିଷୟ ଭୁଲିଯାଆନ୍ତି—ଏପରିକି ନିଜର ସତ୍ତା ପର୍ଯ୍ୟନ୍ତ; ଆଉ ସେତେବେଳେ ମହାନ୍ ସତ୍ୟଟି ବିଦ୍ୟୁତ୍‌ପ୍ରବାହ ପରି ଆବିର୍ଭୂତ ହୁଏ । କେହି କେହି ଏହାକୁ 'ଅନୁପ୍ରେରଣା' ବୋଲି ଭାବନ୍ତି । କିନ୍ତୁ ନିଃଶ୍ୱାସତ୍ୟାଗ ଯେପରି ଆଗନ୍ତୁକ

ନୁହେଁ, (ନିଃଶ୍ୱାସ ଗ୍ରହଣ କଲେ ତାହା ତ୍ୟାଗ କରିବା ସମ୍ଭବ) ସେହିପରି ଅନୁପ୍ରେରଣା ଅକାରଣ ନୁହେଁ । କୌଣସି ବସ୍ତୁ ବୃଥାରେ ମିଳେ ନାହିଁ ।

ଯୀଶୁଖ୍ରୀଷ୍ଟଙ୍କ କାର୍ଯ୍ୟ ମଧ୍ୟରେ ଆମେମାନେ ତଥାକଥିତ ଶ୍ରେଷ୍ଠ 'ଅନୁପ୍ରେରଣା' ଦେଖିବାକୁ ପାଉ । ସେ ପୂର୍ବ ଜନ୍ମରେ ଯୁଗ ଯୁଗ ଧରି କଠୋର କର୍ମ କରିଥିଲେ । ତାଙ୍କର 'ଅନୁପ୍ରେରଣା' ତାଙ୍କର ପ୍ରାକ୍ତନ କର୍ମର—କଠିନ ଶ୍ରମର ଫଳ… । 'ଅନୁପ୍ରେରଣା'କୁ ନେଇ ଅତିରଞ୍ଜିତ କରି କହିବା ଅନର୍ଥକ ବାକ୍ୟବ୍ୟୟ । ଯଦି ତାହା ହୁଅନ୍ତା, ତେବେ ତାହା ବର୍ଷାଧାରି ପରି ପତିତ ହୁଅନ୍ତା । ଯେକୌଣସି ଚିନ୍ତାଧାରାରେ ପ୍ରତ୍ୟାଦିଷ୍ଟ ବ୍ୟକ୍ତିଗଣ ସାଧାରଣ ଶିକ୍ଷିତ (ଓ କୃଷ୍ଟିସମ୍ପନ୍ନ) ଜାତିସମୂହ ମଧ୍ୟରେ ଆବିର୍ଭୂତ ହୁଅନ୍ତି । ପ୍ରତ୍ୟାଦେଶ ବୋଲି କିଛି ନାହିଁ ।… ଅନୁପ୍ରେରଣା ବୋଲି ଯାହା କଥିତ ଅଛି ତାହା ଆଉ କିଛି ନୁହେଁ—ଯେଉଁ ସଂସ୍କାରଗୁଡ଼ିକ ପୂର୍ବରୁ ମନ ମଧ୍ୟରେ ସ୍ଥାୟୀ ହୋଇ ରହିଛି, ସେହିଗୁଡ଼ିକର କାର୍ଯ୍ୟରେ ପରିଣତ ରୂପ ହେଉଛି 'ଫଳ' । ଦିନେ ହଠାତ୍ ଏହି ଫଳ ମିଳିଯାଏ । ସେମାନଙ୍କର ଅତୀତ କର୍ମଗୁଡ଼ିକ ଏହାର କାରଣ ।

ସେଠାରେ ମଧ୍ୟ ଆପଣମାନେ ଦେଖିବେ ଧ୍ୟାନର ଶକ୍ତି—ଚିନ୍ତାର ଗଭୀରତା । ସେଗୁଡ଼ିକ ନିଜ ନିଜର ଆତ୍ମାକୁ ମନ୍ଥନ କରନ୍ତି । ମହାନ୍ ସତ୍ୟଗୁଡ଼ିକ ଉପରିଭାଗରେ ଆସି ପ୍ରତିଭାତ ହୁଅନ୍ତି । ଅତଏବ ଧ୍ୟାନାଭ୍ୟାସ ହିଁ ଜ୍ଞାନଲାଭର ବିଜ୍ଞାନସମ୍ମତ ପନ୍ଥା । ଧ୍ୟାନଶକ୍ତି ବ୍ୟତୀତ ଜ୍ଞାନ ହୁଏ ନାହିଁ । ଧ୍ୟାନଶକ୍ତି ପ୍ରୟୋଗଦ୍ୱାରା ଅଜ୍ଞାନ, କୁସଂସ୍କାର ଇତ୍ୟାଦିରୁ ଆମେମାନେ ସାମୟିକ ଭାବରେ ମୁକ୍ତ ହୋଇପାରୁ । ତାହା ଅପେକ୍ଷା ଆଉ ବେଶୀ କିଛି ନୁହେଁ । ମନେକର, ଜଣେ ଲୋକ ମୋତେ କହିଲା, ଏହି ବିଷ ପାନକଲେ ମୃତ୍ୟୁ ହେବ, ଆଉ ଜଣେ ରାତିରେ ଆସି କହିଲା, ଯାଅ ବିଷ ପାନକର ଏବଂ ବିଷ ପାନ କରି ମଧ୍ୟ ମୋର ମୃତ୍ୟୁ ହେଲା ନାହିଁ । (ଯାହା ଘଟିଲା ତାହା ଏହିପରି) : ଧ୍ୟାନର ଫଳରେ ବିଷ ଓ ମୋ ନିଜ ମଧ୍ୟରେ ଏକତ୍ୱବୋଧରୁ ସାମୟିକ ଭାବରେ ମୋର ମନ ବିଚ୍ଛିନ୍ନ ହୋଇଥିଲା । ଅନ୍ୟ ପକ୍ଷରେ ସାଧାରଣ ଭାବରେ ବିଷପାନ କରିବାକୁ ଗଲେ ମୃତ୍ୟୁ ଅବଶ୍ୟମ୍ଭାବୀ ଥିଲା ।

ଯଦି ମୁଁ କାରଣ ଜାଣେ ଏବଂ ବୈଜ୍ଞାନିକ ଉପାୟଦ୍ୱାରା ମୁଁ ନିଜକୁ ଧ୍ୟାନର ଅବସ୍ଥାକୁ ଉନ୍ନୀତ କରେ, ତେବେ ଯେକୌଣସି ଲୋକକୁ ବଞ୍ଚାଇ ଦେଇପାରିବି । ଏହି କଥା ଯୋଗଗ୍ରନ୍ଥରେ ଲେଖାଅଛି; କିନ୍ତୁ ଏହା କେତେ ପରିମାଣରେ ନିର୍ଭୁଲ, ତାହାର ବିଚାର ତୁମେମାନେ କରିବ ।

ଲୋକେ ମୋତେ ପଚାରନ୍ତି—ତୁମେ ଭାରତବାସୀମାନେ ଏସବୁ ଜୟ କରିନାହଁ କାହିଁକି ? ଅନ୍ୟାନ୍ୟ ଜାତିମାନଙ୍କଠାରୁ ତୁମେମାନେ ଶ୍ରେଷ୍ଠ ବୋଲି ଦାବି କର । ତୁମେମାନେ ଯୋଗାଭ୍ୟାସ କର ଏବଂ ଅନ୍ୟ କାହାରି ଅପେକ୍ଷା ଦ୍ରୁତ ଅଭ୍ୟାସ କର । ତୁମେମାନେ ଯୋଗ୍ୟତର । ଏହାକୁ କାର୍ଯ୍ୟରେ ପରିଣତ କର । ତୁମେମାନେ ଯଦି ମହାନ୍ ଜାତି ହୋଇଥାଅ, ତୁମମାନଙ୍କର ଯୋଗପଦ୍ଧତି ମଧ୍ୟ ମହାନ୍ ହେବା ଉଚିତ । ସବୁ ଦେବତାଙ୍କୁ

ବିଦାୟ ଦେବାକୁ ହେବ । ବଡ଼ ବଡ଼ ଦାର୍ଶନିକମାନଙ୍କର ଚିନ୍ତାଧାରା ଗ୍ରହଣ କରିବା ସଙ୍ଗେ ସଙ୍ଗେ ଦେବତାମାନଙ୍କୁ ବିଶ୍ରାମ କରିବାକୁ ଦିଅ । ତୁମେମାନେ ମଧ୍ୟ ବିଶ୍ୱର ଅନ୍ୟାନ୍ୟମାନଙ୍କ ପରି କୁସଂସ୍କାରାଚ୍ଛନ୍ନ ଶିଶୁମାତ୍ର । ତୁମମାନଙ୍କର ସବୁ ଦାବିଗୁଡ଼ିକ ନିଷ୍ଫଳ । ତୁମମାନଙ୍କର ଯଦି ସତ୍ୟ ଦାବି ଥାଏ, ତେବେ ସାହସର ସହିତ ଛିଡ଼ାହୁଅ । ଏବଂ ସ୍ୱର୍ଗ ବୋଲି ଯାହା ଖୋଜୁଛ—ସବୁ ତୁମମାନଙ୍କର ଆୟତ୍ତରେ ଆସିବ । କସ୍ତୁରୀ ମୃଗ ତାହାର ଅନ୍ତର୍ନିହିତ ସୌରଭ ଧରି ରଖିଛି ଏବଂ ସେ ଜାଣେ ନାହିଁ କେଉଁଠାରୁ ତାର ସୁଗନ୍ଧ ଆସୁଛି । ବହୁଦିନ ପରେ ସେ ସେହି ସୌରଭ ନିଜ ଭିତରେ ଖୋଜିକରି ପାଏ । ଯେଉଁସବୁ ଦେବତା ଓ ଅସୁର ଭାବୁଛ ତାହା ମନୁଷ୍ୟ ମଧ୍ୟରେ ରହିଅଛି । ଯୁକ୍ତି, ଶିକ୍ଷା ଓ ସଂସ୍କୃତିର ଶକ୍ତିଦ୍ୱାରା ତୁମେମାନେ ଜାଣିପାରିବ ତୁମ ଭିତରେ ସବୁ ଅଛି । ଦେବତା ଓ କୁସଂସ୍କାରର ଆଉ ପ୍ରୟୋଜନ ନାହିଁ । କାରଣ ତୁମେମାନେ ଯୁକ୍ତିବାଦୀ, ଯୋଗୀ ଓ ଯଥାର୍ଥ ଆଧ୍ୟାତ୍ମିକତା-ସମ୍ପନ୍ନ ହେବାକୁ ଚାହଁ ।

ମୋର ଉତ୍ତର ହେଉଛି—ତୁମମାନଙ୍କ ନିକଟରେ ସବୁକିଛି ଜଡ଼ । ସିଂହାସନରେ ସମାସୀନ ଈଶ୍ୱର ଅପେକ୍ଷା ବେଶୀ ଜଡ଼ ଆଉ କଅଣ ହୋଇପାରେ ? ମୂର୍ତ୍ତିପୂଜକ ଗରିବ ବିଚରାକୁ ତୁମେ ଘୃଣା କରୁଛ । ସେମାନଙ୍କଠାରୁ ତୁମେମାନେ ବଡ଼ ନୁହଁ । ଆଉ ଧନର ପୂଜାରୀ ହୋଇ ଅଧିକ କଅଣ ହୋଇଛ ? ମୂର୍ତ୍ତି-ପୂଜକ ତାହାର ଦୃଷ୍ଟିର ଗୋଚରୀଭୂତ କୌଣସି ବିଶେଷ କିଛି ମନ ମଧ୍ୟରେ ରଖି ଦେବତା-ଜ୍ଞାନରେ ତାହାକୁ ପୂଜା କରେ; କିନ୍ତୁ ତୁମେମାନେ ତ ତାହା ବି କର ନାହିଁ । ଆତ୍ମାର କିମ୍ବା ବୁଦ୍ଧିଗ୍ରାହ୍ୟ କୌଣସି ବସ୍ତୁର ଉପାସନା ତୁମେମାନେ କର ନାହିଁ । ତୁମମାନଙ୍କର ଖାଲି ବାକ୍ୟାଡ଼ମ୍ବର । 'ଈଶ୍ୱର ଚୈତନ୍ୟସ୍ୱରୂପ !' ଈଶ୍ୱର ତ ନିଶ୍ଚୟ ଚୈତନ୍ୟସ୍ୱରୂପ । ପ୍ରକୃତ ଭାବ ଓ ବିଶ୍ୱାସ ନେଇ ଈଶ୍ୱରଙ୍କ ଉପାସନା କରିବାକୁ ହେବ । ଚୈତନ୍ୟଙ୍କ ସ୍ଥାନ କେଉଁଠି ? କ'ଣ ଗଛରେ ଥାଆନ୍ତି ନା ମେଘ ଉପରେ ଥାଆନ୍ତି ? 'ଆମମାନଙ୍କର ଈଶ୍ୱର'—ଏହି ଉକ୍ତିଟିର ଅର୍ଥ କ'ଣ ? ତୁମେ ନିଜେ ତ 'ଚୈତନ୍ୟ' । ଏହି ମୌଳିକ ବିଶ୍ୱାସଟିକୁ କେବେହେଁ ମନ ମଧ୍ୟରୁ ଦୂର କର ନାହିଁ । 'ମୁଁ ନିଜେ ଚୈତନ୍ୟସ୍ୱରୂପ'; ତେଣୁ ଯୋଗର ସମସ୍ତ କୌଶଳ ଓ ଧ୍ୟାନପ୍ରଣାଳୀ ଆତ୍ମା ମଧ୍ୟରେ ଈଶ୍ୱରଙ୍କୁ ଉପଲବ୍ଧି କରିବା ପାଇଁ ହୋଇଛି ।

ବର୍ତ୍ତମାନ ମୁଁ କାହିଁକି ଏସବୁ କଥା କହୁଛି ? ଯେପର୍ଯ୍ୟନ୍ତ ତୁମେ ଈଶ୍ୱରଙ୍କ ସ୍ଥାନ ନିର୍ଦ୍ଦେଶ କରିପାରି ନାହଁ, ସେପର୍ଯ୍ୟନ୍ତ ଏ ସମ୍ବନ୍ଧରେ କିଛି କହିପାରିବ ନାହିଁ । ତାଙ୍କର ପ୍ରକୃତ ସ୍ଥାନ ବ୍ୟତୀତ ସ୍ୱର୍ଗ ଓ ମର୍ତ୍ତ୍ୟ ମଧ୍ୟରେ ସର୍ବତ୍ର ତାଙ୍କର ଅବସ୍ଥିତି ନିର୍ଣ୍ଣୟ କରୁଛ । ମୁଁ ଚେତନ ପ୍ରାଣୀ; ତେଣୁ ସମସ୍ତ ଚେତନାର ସାରଭୂତ ଚେତନା ନିଶ୍ଚିତ ଭାବରେ ମୋର ଆତ୍ମା ମଧ୍ୟରେ ରହିବ । ଯେଉଁମାନେ ଭାବନ୍ତି, ସେହି ଚେତନା ଅନ୍ୟ କୌଣସି ସ୍ଥାନରେ ଅଛି, ସେମାନେ ମୂର୍ଖ । ତେବେ ମୋର ଚେତନାକୁ ଏହି ଆତ୍ମାରୂପକ ସ୍ୱର୍ଗରେ ଖୋଜିବାକୁ ହେବ । ଅନାଦି କାଳରୁ ଯେଉଁଠି ଯେତେ ସ୍ୱର୍ଗ ଅଛି—ସେସମସ୍ତ ମୋ ମଧ୍ୟରେ ବିଦ୍ୟମାନ । ଏପରି ଅନେକ ଯୋଗୀ ଋଷି ଅଛନ୍ତି, ଯେଉଁମାନେ ଏହି ତତ୍ତ୍ୱ ଜାଣି 'ଆବୃତଚକ୍ଷୁ' ହୁଅନ୍ତି ଓ ନିଜର ଆତ୍ମାରେ

ବିଦ୍ୟମାନ ସମସ୍ତ ଚେତନା ମଧ୍ୟରେ 'ଚେତନା'କୁ ଦର୍ଶନ କରନ୍ତୁ । ଏହା ହେଉଛି ଧ୍ୟାନର ପରିଧି । ଈଶ୍ୱର ଓ ତୁମ ନିଜର ଆତ୍ମା ସମ୍ବନ୍ଧରେ ପ୍ରକୃତ ସତ୍ୟ ଆବିଷ୍କାର କର ଓ ଏହିପରି ଭାବରେ ନିଜେ ମୁକ୍ତ ହୁଅ ।

ସମସ୍ତେ ଜୀବନ ପଛରେ ଧାଉଁଛି । ଏହା ମୂର୍ଖତା ମାତ୍ର । ଶେଷରେ ଦେଖ— ପାଞ୍ଚଭୌତିକ ଏହି ଜୀବନ ନିକୃଷ୍ଟତର । ଏବଂବିଧ ଜୀବନ ଅପେକ୍ଷା ଆହୁରି ମହତ୍ତର କିଛି ଅଛି । କାହିଁକି ମୁଁ ଏହି ଜୀବନଟାକୁ ବଞ୍ଚାଇବା ପାଇଁ ଏତେ ଦଉଡ଼ ଧାପଡ଼ କରିବି ? ଜୀବନ ଅପେକ୍ଷା ମୋର ସ୍ଥାନ ଯେ ଅନେକ ଉଚ୍ଚରେ । ବଞ୍ଚି ରହିବାରେ ସର୍ବଦା ଦାସତ୍ୱ । ଆମେମାନେ ସର୍ବଦା (ଅଜ୍ଞାନ ସହିତ ନିଜକୁ) ମିଶାଇ ଦେଉଛୁ ... । ସବୁ କେବଳ ଦାସତ୍ୱର ଅବିଚ୍ଛିନ୍ନ ଶୃଙ୍ଖଳ ।

ତୁମେ ଯାହା କିଛି ଲାଭ କର, କେବଳ ନିଜଦ୍ୱାରା ହିଁ । କେହି ଅପରକୁ ଶିଖାଇ ପାରିବ ନାହିଁ । ଅଭିଜ୍ଞତା ମଧ୍ୟ ଦେଇ ଆମେମାନେ ଶିକ୍ଷା କରୁ । ଏହି ଯେ ଯୁବକଟିକୁ ଦେଖୁଛ—ତାହାକୁ କେବେ ହେଁ ବିଶ୍ୱାସ କରାଇ ପାରିବ ନାହିଁ ଯେ, ଜୀବନରେ ବିପଦ ଆପଦ ଅଛି । ପୁଣି ବୃଦ୍ଧକୁ ବୁଝାଇପାରିବ ନାହିଁ ଯେ ଜୀବନ ବିପତ୍ତିହୀନ, ମସୃଣ । ବୃଦ୍ଧ ଅନେକ ଦୁଃଖକଷ୍ଟର ଅଭିଜ୍ଞତା ଲାଭ କରିଅଛନ୍ତି । ଏହା ହିଁ ପ୍ରଭେଦ ।

ଧ୍ୟାନର ଶକ୍ତିଦ୍ୱାରା ଏହିସବୁକୁ କ୍ରମେ କ୍ରମେ ଆମମାନଙ୍କର ବଶରେ ଆଣିବାକୁ ହେବ । ଆମେମାନେ ଦାର୍ଶନିକ ଦୃଷ୍ଟିରେ ଦେଖୁଅଛୁ ଯେ, ଆତ୍ମା—ମନ, ଭୂତ (ଜଡ଼ ପଦାର୍ଥ) ପ୍ରଭୃତି ନାନା ବୈଚିତ୍ର୍ୟର (ବାସ୍ତବ ସତ୍ତା କିଛି ନାହିଁ)...ଯାହା ଅଛି, ତାହା 'ଏକମେବାଦ୍ୱିତୀୟମ୍' । ବହୁ କିଛି ରହିପାରେ ନାହିଁ । ଜ୍ଞାନ ଓ ବିଜ୍ଞାନର ଅର୍ଥ ହେଉଛି ଏହା । ଅଜ୍ଞାନତାବଶତଃ ଆମେମାନେ ବହୁ ଦେଖୁ । ଜ୍ଞାନରେ ଏକତ୍ୱର ଉପଲବ୍ଧି । ବହୁକୁ ଏକରେ ପରିଣତ କରିବା ହିଁ ବିଜ୍ଞାନ··· । ସମଗ୍ର ବିଶ୍ୱର ଏକତ୍ୱ ପ୍ରମାଣିତ ହୋଇଅଛି । ଏହି ବିଜ୍ଞାନର ନାମ ବେଦାନ୍ତ ବିଦ୍ୟା । ସମଗ୍ର ଜଗତ ଏକ । ଆପାତପ୍ରତୀୟମାନ ବୈଚିତ୍ର୍ୟର ମଧ୍ୟରେ ସେହି 'ଏକ' ଅନୁସ୍ୟୂତ ହୋଇ ରହିଅଛି ।

ଆମମାନଙ୍କ ପକ୍ଷରେ ବର୍ତ୍ତମାନ ଏହିସବୁ ବୈଚିତ୍ର୍ୟ ରହିଅଛି, ଆମେମାନେ ଏଗୁଡ଼ିକୁ ଦେଖୁଛୁ । ଅର୍ଥାତ୍ ଏଗୁଡ଼ିକୁ ଆମେମାନେ କହୁ ପଞ୍ଚଭୂତ—କ୍ଷିତି, ଅପ୍, ତେଜ, ମରୁତ୍, ବ୍ୟୋମ (ପାଞ୍ଚୋଟି ମୌଳିକ ପଦାର୍ଥ) । ଏହାପରେ ରହିଛି ମନୋମୟ ସତ୍ତା, ଆଉ ତାହା ଉପରେ ଆଧ୍ୟାତ୍ମିକ ସତ୍ତା । ଆତ୍ମା ଏକ, ମନ ଅନ୍ୟ, ଆକାଶ ଅନ୍ୟ ଆଉ କିଛି ଇତ୍ୟାଦି— ଏପରି ଆଦୌ ନୁହେଁ । ଏହିସବୁ ବୈଚିତ୍ର୍ୟ ମଧ୍ୟରେ ଗୋଟିଏ ସତ୍ତା ପ୍ରତୀୟମାନ ହେଉଅଛି । ଫେରିଗଲେ କଠିନ ନିଶ୍ଚୟ ତରଳରେ ପରିଣତ ହେବ । ଯେପରି ଭାବରେ ମୌଳିକ ପଦାର୍ଥଗୁଡ଼ିକର କ୍ରମବିକାଶ ହୋଇଥିଲା, ସେହିପରି ଭାବରେ ପୁଣି ସେମାନଙ୍କର କ୍ରମସଙ୍କୋଚ ହେବ । କଠିନ ପଦାର୍ଥଗୁଡ଼ିକ ତରଳ ଆକାର ଧାରଣ କରିବ । ତରଳ କ୍ରମେ କ୍ରମେ ଆକାଶରେ ପରିଣତ ହେବ । ନିଖିଳ ଜଗତର ଏହା ହିଁ କଳ୍ପନା—ଏବଂ ଏହା ସାର୍ବଜନୀନ । ବାହାରର ଏହି ଜଗତ୍ ଏବଂ ସାର୍ବଜନୀନ ଆତ୍ମା, ମନ, ଆକାଶ, ମରୁତ୍, ତେଜ, ଅପ୍ ଓ କ୍ଷିତି

ଅଛି । ମନ ସମ୍ବନ୍ଧରେ ମଧ୍ୟ ସେହି ଏକା କଥା । କ୍ଷୁଦ୍ର ଜଗତରେ ବା ଅନ୍ତର୍ଜଗତରେ ମୁଁ ସେହି ଏକ । ମୁଁ ଆତ୍ମା, ମୁଁ ମଧ୍ୟ ମନ । ମୁଁ ଆକାଶ, ବାୟୁ, ତରଳ ଓ କଠିନ ପଦାର୍ଥ ମୋର ଲକ୍ଷ୍ୟ ମୋର ଆତ୍ମାଙ୍କ ସନ୍ନିଧିର ପ୍ରତ୍ୟାବର୍ତ୍ତନ । ଗୋଟିଏ କ୍ଷୁଦ୍ର ଜୀବନରେ ମନୁଷ୍ୟଙ୍କୁ ସମଗ୍ର ବିଶ୍ୱର ଜୀବନ ଯାପନ କରିବାକୁ ହେବ । ଏହିପରି ଭାବରେ ମନୁଷ୍ୟ ଏହି ଜନ୍ମରେ ମୁକ୍ତ ହୋଇପାରେ । ତାହାର ସଂକ୍ଷିପ୍ତ ଜୀବନକାଳରେ ସେ ବିଶ୍ୱଜୀବନ ଅତିବାହିତ କରିବାର କ୍ଷମତା ଲାଭ କରିବ ।

ଆମେମାନେ ସମସ୍ତେ ସଂଗ୍ରାମ କରୁ ।...ଯଦି ଆମେମାନେ ପରମ ସତ୍ୟରେ ପହଞ୍ଚି ନ ପାରୁ ତେବେ ଅନ୍ତତଃ ଏପରି ସ୍ଥାନରେ ଉପନୀତ ହେବୁ ଯେଉଁଠାରେ କି ଏଠା ଅପେକ୍ଷା ଉନ୍ନତତର ଅବସ୍ଥାରେ ରହିବୁ । ଏହି ଅଭ୍ୟାସର ନାମ ଧ୍ୟାନ । (ସମସ୍ତ ବିଷୟକୁ ସେହି ଚରମ ସତ୍ୟ—ଆତ୍ମାରେ ପର୍ଯ୍ୟବସିତ କରିବା ।) କଠିନ ଦ୍ରବୀଭୂତ ହୋଇ ତରଳରେ, ତରଳ ବାଷ୍ପରେ, ବାଷ୍ପ ଆକାଶରେ, ଆଉ ଆକାଶ ମନରେ ରୂପାନ୍ତରିତ ହୁଏ । ତା'ପରେ ମନ ମଧ୍ୟ ବିଲୋପ ପାଇ ଆତ୍ମାରେ ପରିଣତ ହେବ । କେବଳ ରହିବ ଆତ୍ମା—ସବୁ କେବଳ ଆତ୍ମା ।

ଯୋଗୀମାନଙ୍କ ମଧ୍ୟରେ କେହି କେହି ଦାବି କରନ୍ତି ଯେ, ଏହି ଶରୀର ତରଳ ବାଷ୍ପ ଇତ୍ୟାଦିରେ ପରିଣତ ହେବ । ତୁମେ ଶରୀରଦ୍ୱାରା ଯାହା କିଛି କରିପାରିବ—ଏହାକୁ ଛୋଟ କରିପାର, ଏପରିକି ବାଷ୍ପରେ ପରିଣତ କରିପାର । ଏହି କାନ୍ଥ ମଧ୍ୟଦେଇ ଯାତାୟାତ କରିବା ସମ୍ଭବ ହୋଇପାରେ—ଏପରି ଭାବରେ ସେମାନେ ଦାବି କରନ୍ତି । ମୁଁ ଅବଶ୍ୟ ତାହା ଜାଣେ ନାହିଁ । ମୁଁ କେବେହେଲେ କାହାକୁ ଏପରି କରିବାର ଦେଖି ନାହିଁ; କିନ୍ତୁ ଯୋଗଶାସ୍ତ୍ରରେ ଏସବୁ କଥା ଅଛି । ଯୋଗଶାସ୍ତ୍ରଗୁଡ଼ିକୁ ଅବିଶ୍ୱାସ କରିବାର କୌଣସି କାରଣ ନାହିଁ । ହୁଏତ ଆମମାନଙ୍କ ମଧ୍ୟରେ କେହି କେହି ଏହି ଜୀବନରେ ଏହା ସାଧନ କରିବାକୁ ସମର୍ଥ ହେବେ । ଆମମାନଙ୍କର ପୂର୍ବକୃତ କର୍ମର ଫଳରୁ ବିଦ୍ୟୁତ୍‌ପ୍ରଭା ସଦୃଶ ଏହା ପ୍ରତିଭାତ ହୁଏ । କିଏ ଜାଣେ ଏଠାରେ ମଧ୍ୟ କେହି ପ୍ରାଚୀନ ଯୋଗୀ ରହିଅଛନ୍ତି, ଯାହାଙ୍କ ମଧ୍ୟରେ ସାଧନା ସମ୍ପୂର୍ଣ୍ଣ କରିବାର ସାମାନ୍ୟ କିଛି ବାକି ଅଛି । ଅଭ୍ୟାସ ।

ଗୋଟିଏ ଚକ୍ରାଧାରର ମାଧ୍ୟମରେ ଧ୍ୟାନରେ ପହଞ୍ଚିବାକୁ ହୁଏ । ଭୂତପଞ୍ଚକର ଶୁଦ୍ଧୀକରଣ ପ୍ରକ୍ରିୟାର ମଧ୍ୟ ଦେଇ ଯିବାକୁ ହୁଏ—ଗୋଟିକୁ ଅପରଟିର ମଧ୍ୟରେ ଦ୍ରବୀଭୂତ କରି ସ୍ଥୂଳରୁ ପରବର୍ତ୍ତୀ ସୂକ୍ଷ୍ମରେ, ସୂକ୍ଷ୍ମତରରେ, ତାହା ପୁଣି ମନ ମଧ୍ୟରେ, ମନକୁ ଅବଶେଷରେ ଆତ୍ମାରେ ମିଶାଇ ଦେବାକୁ ହୁଏ । ସେତେବେଳେ ତୁମେ ଆତ୍ମସ୍ୱରୂପ ।[୧]

---

[୧] ମୌଳିକ ପଦାର୍ଥଗୁଡ଼ିକର ଶୁଦ୍ଧୀକରଣ 'ଭୂତଶୁଦ୍ଧି' ନାମରେ ପରିଚିତ; ଏହା କ୍ରିୟାମୂଳକ ଉପାସନାର ଅଙ୍ଗବିଶେଷ । ଉପାସକ ଅନୁଭବ କରିବାକୁ ଚେଷ୍ଟା କରେ ଯେ, ସେ କ୍ଷିତି, ଅପ୍, ତେଜ, ମରୁତ୍, ବ୍ୟୋମ—ଏହି ପଞ୍ଚମହାଭୂତକୁ ସେଗୁଡ଼ିକର ତନ୍ମାତ୍ରାପଞ୍ଚକ ଏବଂ ଜ୍ଞାନେନ୍ଦ୍ରିୟଗୁଡ଼ିକ ସହିତ ସେଗୁଡ଼ିକୁ ମନ ଭିତରେ ମିଶାଇ ଦିଏ । ମନ, ବୁଦ୍ଧି ଓ ବ୍ୟଷ୍ଟି ଅହଙ୍କାରକୁ ଲୀନ କରିଦେବାକୁ ହୁଏ ମହତ୍ ଅର୍ଥାତ୍ ବିରାଟ ଅହଂରେ । ପ୍ରକୃତି ଅର୍ଥାତ୍

ଜୀବାତ୍ମା ସଦାମୁକ୍ତ, ସର୍ବଶକ୍ତିମାନ୍, ସର୍ବଜ୍ଞ । ଅବଶ୍ୟ ଜୀବାତ୍ମା ଈଶ୍ୱରାଧୀନ । ଈଶ୍ୱର ଅନେକ ହୋଇପାରନ୍ତି ନାହିଁ । ଏହି ମୁକ୍ତାତ୍ମାଗଣ ବିପୁଳ ଶକ୍ତିର ଆଧାର, ପ୍ରାୟ ସର୍ବଶକ୍ତିମାନ, (କିନ୍ତୁ) କେହି ଈଶ୍ୱରତୁଲ୍ୟ ଶକ୍ତିମାନ୍ ହୋଇପାରନ୍ତି ନାହିଁ । ଯଦି କୌଣସି ମୁକ୍ତ ପୁରୁଷ କହନ୍ତି, "ମୁଁ ଏହି ଗ୍ରହଟିକୁ କକ୍ଷଚ୍ୟୁତ କରି ଏହାକୁ ଏହି ପଥ ଦେଇ ପରିଭ୍ରମଣ କରିବାକୁ ବାଧ୍ୟ କରିବି" ଏବଂ ଆଉ ଜଣେ ମୁକ୍ତାତ୍ମା ଯଦି କହନ୍ତି, "ମୁଁ ଏହି ଗ୍ରହଟିକୁ ଏ ବାଟରେ ନ ନେଇ ଅନ୍ୟ ବାଟରେ ଚଳାଇବି (ତେବେ ବିଶୃଙ୍ଖଳାର ସୃଷ୍ଟି ହେବ) ।"

ତୁମେମାନେ ଯେପରି ଏପରି ଭୁଲ କରିବ ନାହିଁ । ମୁଁ ଯେ ଇଂରେଜୀରେ କହୁଛି 'ମୁଁ ଈଶ୍ୱର' (God), ତାହାର କାରଣ ଏହା ଅପେକ୍ଷା ଆଉ କୌଣସି ଯୋଗ୍ୟତର ଶବ୍ଦ ନାହିଁ । ସଂସ୍କୃତରେ 'ଈଶ୍ୱର' ଅର୍ଥ ସଚ୍ଚିଦାନନ୍ଦ, ଜ୍ଞାନ—ସ୍ୱୟଂପ୍ରକାଶ ଅନନ୍ତ ଚୈତନ୍ୟ । ଈଶ୍ୱର ଅର୍ଥ କୌଣସି ପରିଚ୍ଛିନ୍ନ ବ୍ୟକ୍ତିବିଶେଷ ନୁହନ୍ତି । ସେ ହେଉଛନ୍ତି ନୈର୍ବ୍ୟକ୍ତିକ ଭୂମା ।...

ମୁଁ କେବେହେଁ ରାମ ନୁହେଁ, ଈଶ୍ୱରଙ୍କ (ଈଶ୍ୱରଙ୍କର ସାକାର ଭାବ) ସହିତ କେତେବେଳେ ହେଲେ ଏକ ନୁହେଁ । କିନ୍ତୁ ମୁଁ ବ୍ରହ୍ମ ସହିତ, ନୈର୍ବ୍ୟକ୍ତିକ ସର୍ବସ୍ୱ ବିରାଜମାନ ସତ୍ତା ସହିତ ଏକ । ଏଠାରେ ମୁଠାଏ କାଦୁଅ ରହିଛି । ଏହି କାଦୁଅ ନେଇ ମୁଁ ଗୋଟିଏ ମୂଷା ତିଆରି କଲି । ଆଉ ତୁମେ ଗୋଟିଏ ଛୋଟିଆ ହାତୀ ତିଆରି କଲ । ଦୁଇଟି ବସ୍ତୁ କାଦୁଅରେ ତିଆରି ହେଲା । ଦୁଇଟିଯାକ ଭାଙ୍ଗିଦିଅ । ସେଗୁଡ଼ିକ ମୂଳତଃ ଏକ—ଉଭୟ ଏକ ମୃତ୍ତିକାରେ ପରିଣତ ହେଲା । 'ମୁଁ ଏବଂ ମୋର ପିତା ଏକ ।' (କିନ୍ତୁ ମାଟିର ମୂଷା ଆଉ ମାଟିର ହାତୀ କେବେହେଁ ଏକ ହୋଇପାରେ ନାହିଁ ।)

କୌଣସି ସ୍ଥାନରେ ଅଟକିଯିବାକୁ ହୁଏ, ମୋର ଜ୍ଞାନ ଅଳ୍ପ । ତୁମେ ହୁଏତ ମୋଠାରୁ ବେଶୀ ଜ୍ଞାନୀ, ତୁମେ ମଧ୍ୟ ଏକ ସ୍ଥାନରେ ଅଟକିଯିବ । ଆଉ ଏକ ଆତ୍ମା ଅଛନ୍ତି ଯେ ସର୍ବଶ୍ରେଷ୍ଠ । ସେ ହିଁ ଈଶ୍ୱର, ଯୋଗାଧୀଶ (ସ୍ରଷ୍ଟା ରୂପରେ ସଗୁଣ ଈଶ୍ୱର) । ସେତେବେଳେ ସେ ସର୍ବଶକ୍ତିମାନ 'ବ୍ୟକ୍ତି' । ସମସ୍ତ ଜୀବଙ୍କ ହୃଦୟରେ ସେ ବାସ କରୁଛନ୍ତି । ତାଙ୍କର ଶରୀର ନାହିଁ—ଶରୀରର ପ୍ରୟୋଜନ ହୁଏ ନାହିଁ । ଧ୍ୟାନର ଅଭ୍ୟାସ ପ୍ରଭୃତିଦ୍ୱାରା ଯାହା କିଛି ଆୟତ୍ତ କରିପାର, ଯୋଗୀନ୍ଦ୍ର ଈଶ୍ୱରଙ୍କୁ ଧ୍ୟାନ କରି ତାହା ଲାଭ କରାଯାଏ । ସେହି ଏକ ବସ୍ତୁ କୌଣସି ମହାପୁରୁଷଙ୍କ କିମ୍ବା ଜୀବନର ଐକ୍ୟତାନକୁ ଧ୍ୟାନ କରି ମଧ୍ୟ ଲାଭ କରାଯାଏ । ଏଗୁଡ଼ିକୁ ବିଷୟଗତ ଧ୍ୟାନ କୁହାଯାଏ । ସୁତରାଂ ଏଥିରେ କେତୋଟି ବାହ୍ୟ ବା ବିଷୟଗତ ବସ୍ତୁ ନେଇ ଧ୍ୟାନ ଆରମ୍ଭ କରିବାକୁ ହୁଏ । ବସ୍ତୁଗୁଡ଼ିକ ବାହାରେ ବି ହୋଇପାରେ, ଭିତରେ ମଧ୍ୟ ହୋଇପାରେ । ଯଦି ତୁମେ ଗୋଟିଏ ଦୀର୍ଘ ବାକ୍ୟ ଗ୍ରହଣ କର,

---

ବ୍ରହ୍ମଶକ୍ତିରେ ମହତ୍ ଲୀନ ହୁଏ ଏବଂ ପ୍ରକୃତି ଲୀନ ହୁଏ ବ୍ରହ୍ମ ବା ଚରମ ସତ୍ୟରେ । ମେରୁମଜ୍ଜାର ନିମ୍ନଦେଶରେ ମୂଳାଧାରରେ ଅବସ୍ଥିତ କୁଣ୍ଡଳିନୀଶକ୍ତି ଉପାସକର ତନ୍ତ୍ରାଧାରର ମଧ୍ୟ ଦେଇ ଉଚ୍ଚତମ ଜ୍ଞାନକେନ୍ଦ୍ର ମସ୍ତିଷ୍କସ୍ଥ ସହସ୍ରାରକୁ ନୀତ ହୁଏ । ଏହି ଉଚ୍ଚତମ କେନ୍ଦ୍ରରେ ଉପାସକ ପରମାତ୍ମାଙ୍କ ସହିତ ଏକାତ୍ମଭାବ ଧ୍ୟାନରେ ନିରତ ରହନ୍ତି । —ଅନୁଲେଖକ

ତେବେ ତାହାକୁ ମୋଟେ ଧ୍ୟାନ କରିପାରିବ ନାହିଁ । ଧ୍ୟାନର ଅର୍ଥ ପୁନଃ ପୁନଃ ଚେଷ୍ଟା କରି ମନକୁ ଧ୍ୟେୟ ବସ୍ତୁରେ ନିବଦ୍ଧ କରିବାର ଚେଷ୍ଟା । ମନ ସକଳ ଚିନ୍ତାତରଙ୍ଗକୁ ବାଦ୍ କରିଦିଏ ଏବଂ ଜଗତର ଅସ୍ତିତ୍ୱ ମଧ୍ୟ ଲୁପ୍ତ ହୁଏ । ଜ୍ଞାନର ପରିଧି ବିସ୍ତୃତ ହୁଏ । ପ୍ରତ୍ୟେକ ଥର ଧ୍ୟାନଦ୍ୱାରା ତୁମର ଶକ୍ତି ବୃଦ୍ଧି ହେବ । ... ଆଉ ଟିକିଏ ବେଶୀ କଠୋର ପରିଶ୍ରମ କର— ଧ୍ୟାନ ଗଭୀରତର ହେବ । ସେତେବେଳେ ତୁମର ଶରୀରର ବା ଅନ୍ୟ କୌଣସି ବିଷୟର ବୋଧ ରହିବ ନାହିଁ ।

ଏହିପରି ଭାବରେ ଘଣ୍ଟାଏ ଧ୍ୟାନମଗ୍ନ ରହିବା ପରେ ବାହ୍ୟ ଅବସ୍ଥାକୁ ଫେରି ଆସିଲେ ତୁମର ମନେ ହେବ ଯେ, ସେହି ସମୟଟିକ ପାଇଁ ତୁମେ ଜୀବନର ସର୍ବାପେକ୍ଷା ସୁନ୍ଦର ଶାନ୍ତି ଉପଭୋଗ କରିଅଛ । ଧ୍ୟାନ ହେଉଛି ତୁମର ଶରୀର-ଯନ୍ତ୍ରଟିକୁ ବିଶ୍ରାମ ଦେବାର ଏକମାତ୍ର ଉପାୟ । ଗଭୀରତମ ନିଦ୍ରାରେ ମଧ୍ୟ ସେପରି ବିଶ୍ରାମ ପାଇପାରିବ ନାହିଁ । ଗଭୀରତମ ନିଦ୍ରାରେ ମଧ୍ୟ ମନ ଡେଉଁଥାଏ । କିନ୍ତୁ ଧ୍ୟାନରେ ସେହି କେତୋଟି ମୁହୂର୍ତ୍ତ ମଧ୍ୟରେ ମସ୍ତିଷ୍କର କ୍ରିୟା ପ୍ରାୟ ସ୍ତବ୍ଧ ହୋଇଯାଏ । କେବଳ ପ୍ରାଣଶକ୍ତି ମାତ୍ର ରହିଥାଏ । ଶରୀରର ଜ୍ଞାନ ରହେ ନାହିଁ । ତୁମକୁ କାଟି ଖଣ୍ଡ ଖଣ୍ଡ କରିଦେଲେ ମଧ୍ୟ ତୁମେ ବୁଝିପାରିବ ନାହିଁ । ଧ୍ୟାନରେ ଏତେ ଆନନ୍ଦ ପାଇବ ଯେ, ତୁମେ ଖୁବ୍ ହାଲୁକା ବୋଧ କରିବ । ଧ୍ୟାନରେ ଆମେମାନେ ଏପରି ଭାବରେ ପୂର୍ଣ୍ଣ ବିଶ୍ରାମ ଲାଭ କରିଥାଉଁ ।

ତା'ପରେ ବିଭିନ୍ନ ବସ୍ତୁ ଉପରେ ଧ୍ୟାନ । ମେରୁମଜ୍ଜାର ବିଭିନ୍ନ କେନ୍ଦ୍ରରେ ଧ୍ୟାନର ପ୍ରଣାଳୀ ଅଛି । (ଯୋଗୀମାନଙ୍କ ମତରେ ମେରୁଦଣ୍ଡ ମଧ୍ୟରେ ଇଡ଼ା ଓ ପିଙ୍ଗଳା ନାମକ ଦୁଇଟି ସ୍ନାୟବୀୟ ଶକ୍ତିପ୍ରବାହ ବିଦ୍ୟମାନ । ଅନ୍ତର୍ମୁଖୀ ଓ ବହିର୍ମୁଖୀ ଶକ୍ତିପ୍ରବାହ ଏହି ଦୁଇ ପ୍ରଧାନ ପଥଦେଇ ଗମନାଗମନ କରେ ।) ଶୂନ୍ୟନାଳୀ (ଯାହାକୁ ସୁଷୁମ୍ନା ବୋଲି କୁହାଯାଏ) ମେରୁଦଣ୍ଡ ଭିତର ଦେଇ ଯାଇଛି । ଯୋଗୀମାନେ କହନ୍ତି ଏହି ସୁଷୁମ୍ନା-ପଥ ସାଧାରଣତଃ ବନ୍ଦ ଥାଏ; କିନ୍ତୁ ଧ୍ୟାନାଭ୍ୟାସ ପରେ ତାହା ଉନ୍ମୁକ୍ତ ହୁଏ । (ସ୍ନାୟବୀୟ) ପ୍ରାଣଶକ୍ତିପ୍ରବାହକୁ (ମେରୁଦଣ୍ଡ ତଳେ) ସଂକ୍ରମିତ କରିପାରିଲେ କୁଣ୍ଡଳିନୀ ଜାଗ୍ରତ ହୁଏ । ଜଗତ ସେତେବେଳେ ଭିନ୍ନ ରୂପ ଧାରଣ କରେ ।...(ଏହିପରି ଅଲୌକିକ ଜ୍ଞାନ, ଅତୀନ୍ଦ୍ରିୟ ଅନୁଭୂତି ଓ ଆତ୍ମଜ୍ଞାନ ଲାଭ କରିବାର ଏକମାତ୍ର ଉପାୟ ହେଉଛି କୁଣ୍ଡଳିନୀର ଜାଗରଣ ।)

ସହସ୍ର ସହସ୍ର ଦେବତା ତୁମ ଚାରିପଟେ ଛିଡ଼ା ହୋଇଅଛନ୍ତି । ତୁମେ ସେମାନଙ୍କୁ ଦେଖିପାରୁନାହିଁ, କାରଣ ତୁମର ଜଗତ ଇନ୍ଦ୍ରିୟଗ୍ରାହ୍ୟ । ଆମେମାନେ କେବଳ ଏହି ବାହାରଟାକୁ ଦେଖିବାକୁ ପାଉଁ । ଏହାକୁ କୁହାଯାଏ 'କ' । ଆମମାନଙ୍କର ମାନସିକ ଅବସ୍ଥା ଅନୁଯାୟୀ ଆମେମାନେ ସେହି 'କ'କୁ ଦେଖୁଁ ବା ଉପଲବ୍ଧି କରୁଁ । ବାହାରେ ରହିଥିବା ଏହି ଗଛଟିକୁ ଧରିଯାଉ । ଜଣେ ଚୋର ଆସିଲା, ସେ ସେହି ଲମ୍ବା ଗଛଟିକୁ କ'ଣ ଭାବିବ ? ସେ ଦେଖିବ—ଜଣେ ପହରାବାଲା ଜଗୁଆଳୀ ଛିଡ଼ା ହୋଇଛି । ଶିଶୁ ତାହାକୁ ମନେ କରିବ—ଗୋଟିଏ ପ୍ରକାଣ୍ଡ ଭୂତ । ଜଣେ ଯୁବକ ତାହାର ପ୍ରେମିକା ପାଇଁ ଅପେକ୍ଷା କରୁଥିଲା । ସେ କ'ଣ ଦେଖିଲା ? ନିଶ୍ଚୟ ତାହାର ପ୍ରେମିକାକୁ । କିନ୍ତୁ

ସେହି ସ୍ଥାଣୁ ବା ଲମ୍ବା ଗଛଟିର ତ କୌଣସି ପରିବର୍ତ୍ତନ ହୋଇ ନାହିଁ । ତାହା ଯେପରି ଥିଲା, ଠିକ୍ ସେହିପରି ରହିଛି । ସ୍ୱୟଂ ଈଶ୍ୱର କେବଳ ଅଛନ୍ତି, ଆମେମାନେ ଆମମାନଙ୍କର ନିଜ ଇଚ୍ଛା ଯୋଗୁଁ ତାହାଙ୍କୁ ମନୁଷ୍ୟ, ଧୂଳି, ମୂକ, ଦୁଃଖୀ ଇତ୍ୟାଦି ରୂପରେ ଦେଖୁଁ ।

ଯେଉଁମାନେ ଗୋଟିଏ ପ୍ରକାରରେ ଗଠିତ, ସେମାନେ ସ୍ୱଭାବତଃ ଏକ ଶ୍ରେଣୀଭୁକ୍ତ ହୁଅନ୍ତି ଓ ଏକ ଜଗତରେ ବାସ କରନ୍ତି । ଅନ୍ୟ ଭାବରେ କହିଲେ - ତୁମେମାନେ ସମସ୍ତେ ଏକ ସ୍ଥାନରେ ବାସ କରୁଛ । ସମସ୍ତ ସ୍ୱର୍ଗ ଏବଂ ସମସ୍ତ ନରକ ଏହି ସ୍ଥାନରେ । ଉଦାହରଣସ୍ୱରୂପ କୁହାଯାଇପାରେ –କେତେଗୁଡ଼ିଏ ବଡ଼ ବୃତ୍ତର ଆକାରରେ ସମତଳ କ୍ଷେତ୍ରସମୂହ ଯେପରି ପରସ୍ପରକୁ କେତୋଟି ବିନ୍ଦୁରେ ଛେଦ କରୁଛି । ଏହି ସମତଳ ଭୂମିର ଗୋଟିଏ ବୃତ୍ତରେ ଅବସ୍ଥିତ ଆମେମାନେ ଆଉ ଗୋଟିଏ ସମତଳର (ବୃତ୍ତକୁ) କୌଣସି ଗୋଟିଏ ବିନ୍ଦୁରେ ସ୍ପର୍ଶ କରିପାରୁ । ମନ ଯଦି କେନ୍ଦ୍ରରେ ପହଞ୍ଚିବ, ତେବେ ସମସ୍ତ ସ୍ତରର ଜ୍ଞାନ ତୁମର ହେଉଥିବ । ଧ୍ୟାନ ସମୟରେ କେତେବେଳେ ଯଦି ତୁମେ ଅନ୍ୟ ଭୂମି ସ୍ପର୍ଶ କର, ସେତେବେଳେ ଅନ୍ୟ ଜଗତର ପ୍ରାଣୀ, ଅଶରୀରୀ ଆତ୍ମା ଏବଂ ଆହୁରି କେତେ ବିଷୟର ସଂସ୍ପର୍ଶରେ ଆସିପାରିବ ।

ଧ୍ୟାନର ଶକ୍ତିଦ୍ୱାରା ଏହିସବୁ ଲୋକକୁ ଯାଇପାରିବ । ଏହି ଶକ୍ତି ଆମମାନଙ୍କର ଇନ୍ଦ୍ରିୟଗୁଡ଼ିକୁ ପରିବର୍ଦ୍ଧିତ ଓ ପରିମାର୍ଜିତ କରେ । ଯଦି ତୁମେ ପାଞ୍ଚଦିନ ଠିକ୍ ଭାବରେ ଧ୍ୟାନ ଅଭ୍ୟାସ କରିବ, ଏହି (ଜ୍ଞାନ-କେନ୍ଦ୍ରଗୁଡ଼ିକ ମଧ୍ୟରୁ ଏକପ୍ରକାର 'ସଂବେଦନା' ଅନୁଭବ କରିବ—ତୁମର ଶ୍ରବଣଶକ୍ତି ସୂକ୍ଷ୍ମତର ହେଉଛି ।··· ଜ୍ଞାନେନ୍ଦ୍ରିୟଗୁଡ଼ିକ ଯେତେ ମାର୍ଜିତ ହେବ, ଅନୁଭୂତି ମଧ୍ୟ ସେତେ ସୂକ୍ଷ୍ମ ହେବ । ସେତେବେଳେ ଅଧ୍ୟାତ୍ମଜଗତ୍ ଉନ୍ମୁକ୍ତ ହୋଇଯିବ ) । ଏହି କାରଣରୁ ଭାରତୀୟ ଦେବତାମାନଙ୍କର ତନୋଟି ଚକ୍ଷୁର କଳ୍ପନା କରାଯାଇଛି । ତୃତୀୟ ବା ଜ୍ଞାନଚକ୍ଷୁ ଉନ୍ମୀଳିତ ହେଲେ ବିବିଧ ଆଧ୍ୟାତ୍ମିକ ଦର୍ଶନ ଉପସ୍ଥିତ ହୁଏ ।

କୁଣ୍ଡଳିନୀଶକ୍ତି ମେରୁମଜ୍ଜାର ମଧ୍ୟସ୍ଥିତ ଏକ କେନ୍ଦ୍ରରୁ କେନ୍ଦ୍ରାନ୍ତରକୁ ଯେତେ ଉଠୁଥାଏ, ସେତେ ଇନ୍ଦ୍ରିୟଗୁଡ଼ିକର ପରିବର୍ତ୍ତନ ସାଧିତ ହୁଏ ଏବଂ ଜଗତ୍ ଭିନ୍ନ ରୂପରେ ପ୍ରତୀତ ହେବାକୁ ଆରମ୍ଭ କରେ । ପୃଥିବୀ ସେତେବେଳେ ସ୍ୱର୍ଗରେ ପରିଣତ ହୁଏ । ତୁମର କଥା କହିବାର ଶକ୍ତି ବନ୍ଦ ହୋଇଯାଏ । ତା'ପରେ କୁଣ୍ଡଳିନୀ ଅଧସ୍ତନ କେନ୍ଦ୍ରଗୁଡ଼ିକୁ ଓହ୍ଲାଇଲେ ତୁମେ ପୁଣି ମାନବୀୟ ଭୂମିରେ ପଦାର୍ପଣ କରିବ । ସମସ୍ତ କେନ୍ଦ୍ର ଅତିକ୍ରମ କରି କୁଣ୍ଡଳିନୀ ଯେତେବେଳେ ମସ୍ତିଷ୍କରେ ସହସ୍ରାର ମଧ୍ୟରେ ପହଞ୍ଚିବ, ସେତେବେଳେ ସମସ୍ତ ଦୃଶ୍ୟ ଜଗତ୍ (ତୁମର ଅନୁଭୂତିରେ ) ବିଲୀନ ହେବ ଏବଂ ଏକ ସତ୍ତା ବ୍ୟତୀତ ଆଉ କିଛି ଅନୁଭବ କରିବ ନାହିଁ । ସେତେବେଳେ ତୁମେ ହିଁ ପରମାତ୍ମା । ସମୁଦାୟ ସ୍ୱର୍ଗ ତାହାଙ୍କଠାରୁ ସୃଷ୍ଟି କରୁଥିବ । ସମସ୍ତ ଜଗତ୍ ତାହାଙ୍କଠାରୁ ରଚନା କରୁଥିବ । ସେ ହିଁ ଏକମାତ୍ର ସତ୍ତା । ତାଙ୍କ ଛଡ଼ା ଆଉ କିଛି ନାହିଁ ।

# ସାଧନ ସମ୍ବନ୍ଧରେ କେତୋଟି କଥା

[ କାଲିଫର୍ଣ୍ଣିଆର ଲସ୍‌ଏଞ୍ଜେଲସ୍‌ର 'ହୋମ ଅଫ୍ ଟ୍ରୁଥ୍'ରେ ପ୍ରଦତ୍ତ ବକ୍ତୃତା ]

ଆଜି ପ୍ରାଣାୟାମ ଓ ଅନ୍ୟାନ୍ୟ ସାଧନାଦି ସମ୍ବନ୍ଧରେ କିଛି ଆଲୋଚନା କରିବି । ତତ୍ତ୍ୱ ଆଲୋଚନା ଅନେକ ହୋଇସାଇଛି, ବର୍ତ୍ତମାନ ତାହାର ସାଧନ ସମ୍ବନ୍ଧରେ କିଛି କହିଲେ ମନ୍ଦ ହେବ ନାହିଁ । ଏହି ବିଷୟଟି ଉପରେ ଭାରତରେ ବହୁ ଗ୍ରନ୍ଥ ଲିଖିତ ହୋଇ-ଅଛି । ଏ ଦେଶର ଲୋକେ ଯେପରି ଜାଗତିକ ବିଷୟରେ କାର୍ଯ୍ୟକୁଶଳୀ, ଆମମାନଙ୍କ ଦେଶର ଲୋକେ ସେହିପରି ଏ ବିଷୟରେ ଦକ୍ଷ ବୋଲି ମନେହୁଏ । ଏ ଦେଶର ପାଞ୍ଚଜଣ ଲୋକ ଏକସାଙ୍ଗରେ ଭାବି ଚିନ୍ତି ଠିକ୍ କରନ୍ତି, 'ଆମେମାନେ ଗୋଟିଏ ଯୌଥ କାରବାର ବା ପ୍ରତିଷ୍ଠାନ ଆରମ୍ଭ କରିବା' ଏବଂ ପାଞ୍ଚଘଣ୍ଟା ମଧ୍ୟରେ ତାହା ମଧ୍ୟ କରି ପକାନ୍ତି । ଭାରତର ଲୋକେ ଏସବୁ ବିଷୟରେ ଏତେ ଅପଟୁ ଯେ, ସେମାନଙ୍କର ପଚିଶବର୍ଷ ଧରି ଚେଷ୍ଟା କଲେ ବି ଏ କାର୍ଯ୍ୟ ସେମାନେ ବୋଧହୁଏ କରିପାରିବେ ନାହିଁ । କିନ୍ତୁ ଗୋଟିଏ ଜିନିଷ ଲକ୍ଷ୍ୟ କରିବାର କଥା । ସେଠାରେ ଯଦି କେହି ଦାର୍ଶନିକ ମତ ପ୍ରଚାର କରିବାକୁ ଚାହାନ୍ତି, ତାହାହେଲେ ସେ ମତବାଦ ଯେତେ ଉଦ୍ଭଟ ହେଉ ନା କାହିଁକି ତାକୁ ଗ୍ରହଣ କରିବା ପାଇଁ ଲୋକଙ୍କ ଅଭାବ ହେବ ନାହିଁ । ଯେପରି ଧରନ୍ତୁ, ଗୋଟିଏ ସମ୍ପ୍ରଦାୟ ଗଠିତ ହୋଇ ପ୍ରଚାର କରିବାକୁ ଲାଗିଲେ ଯେ, ବାର ବର୍ଷ ଦିନରାତି ଗୋଟିଏ ଗୋଡ଼ରେ ଭରି ଦେଇ ଛିଡ଼ା ହୋଇପାରିଲେ ମୁକ୍ତିଲାଭ ହେବ; ସଙ୍ଗେ ସଙ୍ଗେ ଗୋଟିଏ ଗୋଡ଼ରେ ଠିଆ ହେବା ପାଇଁ ଶତ ଶତ ଲୋକ ଧାଇଁଯିବେ । ସେମାନେ ନୀରବରେ ସବୁ କଷ୍ଟ ସହ୍ୟ କରିବେ । ଏପରି ବହୁତ ଲୋକ ଅଛନ୍ତି, ଯେଉଁମାନେ ଊର୍ଦ୍ଧ୍ୱବାହୁ ହୋଇ ରହିଅଛନ୍ତି । ମୁଁ ସ୍ୱଚକ୍ଷୁରେ ଏପରି ଶହ ଶହ ଲୋକ ଦେଖିଛି । କିନ୍ତୁ ଆପଣ ଭାବିବେ ନାହିଁ, ସେମାନେ ନିତାନ୍ତ ନିର୍ବୋଧ । ବସ୍ତୁତଃ ସେମାନଙ୍କର ଜ୍ଞାନର ଗଭୀରତା ଓ ବିସ୍ତାର ଦେଖିଲେ ବିସ୍ମିତ ହୋଇଯିବେ । ତେଣୁ ଏଥିରୁ ପ୍ରତୀୟମାନ ହେଉଛି ଯେ କର୍ମଦକ୍ଷତା ଶବ୍ଦଟିର ଅର୍ଥ ଆପେକ୍ଷିକ ।

ପରର ଦୋଷଗୁଣ ବିଚାର କରିବାବେଳେ ଆମେମାନେ ଏହି ଗୋଟିଏ ଭୁଲ କରିଥାଉଁ । ମନୋରାଜ୍ୟରେ ଆମେମାନେ ଯେଉଁ ବିଶ୍ୱରଚନା କରୁଅଛୁ, ତାହାର ବାହାରେ ଯେ ଆଉ କିଛି ଅଛି—ଏ କଥା ଆମେମାନେ କେବେହେଲେ ଭାବୁନାହିଁ । ଆମେ ଭାବୁ, ଆମମାନଙ୍କର ନିଜର ନୀତିବୋଧ, ଔଚିତ୍ୟବୋଧ, କର୍ତ୍ତବ୍ୟବୋଧ ଓ ପ୍ରୟୋଜନବୋଧ ଛଡ଼ା ସେସବୁ କ୍ଷେତ୍ରରେ ଅନ୍ୟ ସମସ୍ତ ଧାରଣା କେବଳ ମୂଲ୍ୟହୀନ । ସେଦିନ ଇଉରୋପ ଯାତ୍ରା ସାର ମାର୍ଶାଇ ସହର ଦେଇ ଯାଉଥିଲି । ସେତେବେଳେ ସେଠାରେ ଷଣ୍ଢଲଢ଼େଇ ଚାଲିଥିଲା । ତାହା ଦେଖି ଜାହାଜରେ ଯାଉଥିବା ଇଂରେଜ ଯାତ୍ରୀ-ସମସ୍ତେ ଭୀଷଣ ଉତ୍ତେଜିତ ହୋଇ ପଡ଼ିଲେ ଏବଂ ସମଗ୍ର ଘଟଣାଟିକୁ ଅତି ନୃଶଂସ ବୋଲି ସମାଲୋଚନା ଓ ନିନ୍ଦା କରିବାକୁ ଲାଗିଲେ । ଇଂଲଣ୍ଡରେ ପଇସା ଶୁଣିଲି ବାଜି ରଖି ଲଢ଼େଇ

କରିବା ପାଇଁ ଦଳେ ଲୋକ ପ୍ୟାରିସ୍ ସହରକୁ ଯାଇଥିଲେ, କିନ୍ତୁ ଫରାସୀ ଲୋକମାନେ ସଙ୍ଗେ ସଙ୍ଗେ ସେମାନଙ୍କୁ ଫେରାଇଦେଲେ ।

ଫରାସୀମାନଙ୍କ ମତରେ ଏହି କାର୍ଯ୍ୟଟି ପାଶବିକ । ବିଭିନ୍ନ ଦେଶରେ ଏହି ଜାତୀୟ ମତାମତ ଶୁଣି ଶୁଣି ମୁଁ ଯୀଶୁଖ୍ରୀଷ୍ଟଙ୍କର ସେହି ଅତୁଳନୀୟ ବାଣୀର ମର୍ମ ହୃଦୟଙ୍ଗମ କରିବାକୁ ଆରମ୍ଭ କରିଛି—'ଅନ୍ୟ ଲୋକର ବିଚାର କର ନାହିଁ, ତେବେ ଯାଇ ନିଜେ ଅନ୍ୟର ବିଚାରରୁ ନିଷ୍କୃତି ପାଇବ ।' ଯେତେ ଆମେ ଶିକ୍ଷା କରୁଁ ସେତେ ଆମମାନଙ୍କର ଅଜ୍ଞତା ଧରାପଡ଼େ, ସେତେ ଆମେମାନେ ବୁଝିପାରୁ ଯେ, ମଣିଷର ଏହି ମନ ନାମକ ବସ୍ତୁଟି କେତେ ବିଚିତ୍ର ଓ କେତେ ବହୁମୁଖୀ ! ଯେତେବେଳେ ମୁଁ ପିଲା ଥିଲି, ସ୍ୱଦେଶବାସୀମାନଙ୍କର ତପସ୍ୱୀସୁଲଭ କୃଚ୍ଛ୍ର ସାଧନକୁ ସମାଲୋଚନା କରିବା ମୋର ଅଭ୍ୟାସ ଥିଲା । ଆମ ଦେଶର ବଡ଼ ବଡ଼ ଆଚାର୍ଯ୍ୟମାନେ ମଧ୍ୟ ଏହାର ସମାଲୋଚନା କରିଅଛନ୍ତି । ବୁଦ୍ଧଦେବଙ୍କ ପରି କ୍ଷଣଜନ୍ମା ମହାମାନବ ମଧ୍ୟ ସେହିପରି କରିଅଛନ୍ତି । ତଥାପି ବୟସ ଯେତେ ବଢ଼ୁଛି ସେତେ ମୁଁ ବୁଝିପାରୁଛି ଯେ, ବିଚାର କରିବାର ଅଧିକାର ମୋର ନାହିଁ । ବେଳେ ବେଳେ ମୋର ମନେହୁଏ ବହୁ ଅସଙ୍ଗତି ଥିବା ସତ୍ତ୍ୱେ ଏହିସବୁ ତପସ୍ୱୀମାନଙ୍କର ସାଧନଶକ୍ତି ଓ କଷ୍ଟ-ସହିଷ୍ଣୁତାର ଏକାଂଶ ଯଦି ମୋର ଥାଆନ୍ତା ! ପ୍ରାୟ ମୋର ମନେହୁଏ, ଏ ବିଷୟରେ ମୁଁ ଯେତେ ଅଭିମତ ଦିଏ ଓ ସମାଲୋଚନା କରେ, ତାହାର କାରଣ ଏହା ନୁହେଁ ଯେ, ମୁଁ ଦେହ-ନିର୍ଯ୍ୟାତନ ପସନ୍ଦ କରେ ନାହିଁ; କେବଳ ଭୀରୁତା ହିଁ ଏହାର କାରଣ; କୃଚ୍ଛ୍ର ସାଧନାର ଶକ୍ତି ଓ ସାହସର ଅଭାବ ହିଁ ଏହାର କାରଣ ।

ତାହାହେଲେ ତୁମେ ଦେଖୁଛ ଯେ ଶକ୍ତି, ବୀର୍ଯ୍ୟ ଓ ସାହସ—ଏହିଗୁଡ଼ିକ ଅତି ଅଦ୍ଭୁତ ଜିନିଷ । 'ସାହସୀ ଲୋକ', 'ବୀର ପୁରୁଷ', 'ନିର୍ଭୀକ ବ୍ୟକ୍ତି' ପ୍ରଭୃତି କଥା ସାଧାରଣତଃ ଆମେମାନେ ବ୍ୟବହାର କରିଥାଉଁ; କିନ୍ତୁ ଆମମାନଙ୍କର ଏକଥା ମନେ ରଖିବା ଉଚିତ ଯେ, ଏହି ସାହସିକତା ବା ବୀରତ୍ୱ ବା ଅନ୍ୟ ଯେକୌଣସି ଗୁଣ ହେଉନା କାହିଁକି, ତାହା ସେହି ଲୋକଟିର ଚରିତ୍ରର ଚିରସାଥୀ ନୁହେଁ । ଯେଉଁ ଲୋକ କମାଣ ମୁହଁକୁ ଧାଇଁ ଯାଇପାରେ, ସେ ମଧ୍ୟ ଡାକ୍ତର ହାତରେ ଛୁରି ଦେଖି ଭୟ କରେ । ପୁଣି ଅନ୍ୟ କେହି ହୁଏତ କୌଣସି ସମୟରେ କମାଣ ମୁହଁରେ ଛିଡ଼ା ହେବାକୁ ସାହସ କରେ ନାହିଁ, କିନ୍ତୁ ପ୍ରୟୋଜନ ହେଲେ ସ୍ଥିର ଭାବରେ ଅସ୍ତ୍ରୋପଚାର ସହ୍ୟ କରିପାରେ । ତେଣୁ ଅନ୍ୟର ବିଚାର କରିବା ବେଳେ ସାହସିକତା, ମହତ୍ତ୍ୱ ଇତ୍ୟାଦି ଯେଉଁସବୁ ଶବ୍ଦ ବ୍ୟବହାର କରାହୁଏ, ତାହାର ଅର୍ଥ ସ୍ପଷ୍ଟ ଖୋଲିକରି କହିବା ପ୍ରୟୋଜନ । 'ଭଲ ନୁହେଁ' ବୋଲି ଯେଉଁ ଲୋକଟିକୁ ମୁଁ ସମାଲୋଚନା କଲି, ଏପରି ହୋଇପାରେ ଯେ, ସେହି ବ୍ୟକ୍ତିଟି ମୋର ଯେଉଁ ବିଷୟଗୁଡ଼ିକରେ ଅଭାବ ଅଛି, ସେଥିରେ ଆଶ୍ଚର୍ଯ୍ୟଜନକ ଭାବରେ ଭଲ ।

ଆଉ ଗୋଟିଏ ଉଦାହରଣ ଦେଖନ୍ତୁ । ପ୍ରାୟ ଦେଖାଯାଏ, ପୁରୁଷ ଓ ସ୍ତ୍ରୀଲୋକ-ମାନଙ୍କର କାର୍ଯ୍ୟଦକ୍ଷତା ନେଇ ଆଲୋଚନାବେଳେ ଆମେମାନେ ସର୍ବଦା ଏହି ଭୁଲ କରିଥାଉଁ । ଧରନ୍ତୁ—ପୁରୁଷମାନେ ଯୁଦ୍ଧ କରିପାରନ୍ତି ଏବଂ ପ୍ରଚଣ୍ଡ ଶାରୀରିକ କ୍ଳେଶ ସହ୍ୟ

କରିପାରନ୍ତି ବୋଲି ଲୋକେ ମନେ କରନ୍ତି ଯେ, ଏହି ଦିଗରେ ପୁରୁଷର ଶ୍ରେଷ୍ଠତ୍ୱ ହିଁ ପ୍ରମାଣିତ । ଆଉ ସ୍ତ୍ରୀଲୋକମାନଙ୍କର ଶାରୀରିକ ଦୁର୍ବଳତା ଓ ଯୁଦ୍ଧରେ ଅପାରଗତା ସହିତ ପୁରୁଷର ଏହି ଗୁଣଟିର ତୁଳନା କଲେ ଚଳିବ । କିନ୍ତୁ ଏହା ଅନ୍ୟାୟ । ସ୍ତ୍ରୀଲୋକମାନେ ମଧ୍ୟ ପୁରୁଷଙ୍କ ପରି ସମାନ ସାହସୀ । ନିଜ ଦୃଷ୍ଟିଭଙ୍ଗୀରୁ ବିଚାର କଲେ ପ୍ରତ୍ୟେକେ ଶ୍ରେଷ୍ଠ । ନାରୀ ଯେଉଁ ଧୈର୍ଯ୍ୟ, ସହିଷ୍ଣୁତା ଓ ସ୍ନେହ ନେଇ ସନ୍ତାନ ପାଳନ କରେ, କେଉଁ ପୁରୁଷ ସେପରି ଭାବରେ କରିପାରେ ? ଜଣେ କର୍ମଶକ୍ତିକୁ ବୃଦ୍ଧି କରିଛି, ଅନ୍ୟ ଜଣେ ବଢ଼େଇଛି ସହନଶକ୍ତି । ଯଦି ଆପଣମାନେ କହନ୍ତି ଯେ, ନାରୀ ତ ଶାରୀରିକ ଶ୍ରମ କରିପାରେ ନାହିଁ, ତେବେ ମୁଁ କହିବି ପୁରୁଷମାନେ ମଧ୍ୟ ସହ୍ୟ କରିପାରନ୍ତି ନାହିଁ । ସମଗ୍ର ଜଗତଟି ଗୋଟିଏ ନିଖୁଣ ଭାରସାମ୍ୟର ବିଷୟ । ବର୍ତ୍ତମାନ ମୋର ଜଣା ନାହିଁ; ତେବେ ଦିନେ ହୁଏତ ଆମେମାନେ ଜାଣିପାରିବା ଯେ, ନଗଣ୍ୟ କୀଟ ମଧ୍ୟରେ ବି ଏପରି କିଛି ଅଛି, ଯାହା ଆମମାନଙ୍କର ମାନବିକତା ସହିତ ପ୍ରତିଯୋଗିତା କରିପାରେ । ଅତି ଦୁଷ୍ଟ ପ୍ରକୃତିର ଲୋକ ମଧ୍ୟରେ ବି ଏପରି କିଛି ସଦ୍‌ଗୁଣ ଥାଇପାରେ, ଯାହା ମୋ ମଧ୍ୟରେ ଆଦୌ ନାହିଁ, ନିଜ ଜୀବନରେ ମୁଁ ପ୍ରତ୍ୟେକ ଦିନ ଏହା ଲକ୍ଷ୍ୟ କରୁଅଛି । ଅସଭ୍ୟ ଜାତିର ଜଣେ ଲୋକକୁ ଦେଖନା । ମୋ ଶରୀରଟି ଯଦି ତା'ର ଶରୀର ପରି ହୃଷ୍ଟପୁଷ୍ଟ ହୋଇଥାନ୍ତା ! ସେ ପେଟପୂରା ଖାଇପିଇ ଆନନ୍ଦରେ ରହିଛି, ରୋଗବା ଅସୁସ୍ଥତା ବୋଲି ସେ କିଛି ଜାଣେ ନାହିଁ; ଆଉ ଅନ୍ୟ ଦିଗରେ ଦେଖ ମୋର ଅସୁସ୍ଥତା ଲାଗି ରହିଛି । ତାହାର ଦେହ ସହିତ ମୋର ମସ୍ତିଷ୍କ ବଦଳାଇ ଦେଇପାରିଲେ ମୋର କେତେ ଯେ ସୁଖ ହୁଅନ୍ତା, ତାହା କୁହାଯାଇପାରିବ ନାହିଁ । ତରଙ୍ଗର ଉତ୍‌ଥାନ ଓ ପତନ ନେଇ ସମସ୍ତ ଜଗତ୍ ଗଢ଼ା ହୋଇଛି; କୌଣସି ସ୍ଥାନରେ ଖାଲ ନ ହେଲେ ଅନ୍ୟ ଗୋଟିଏ ସ୍ଥାନ ଉଚ୍ଚ ହୋଇ ତରଙ୍ଗାକାର ଧାରଣ କରନ୍ତା ନାହିଁ । ସର୍ବତ୍ର ହିଁ ଏହି ଭାରସାମ୍ୟ ବିଦ୍ୟମାନ । କୌଣସି ବିଷୟରେ ତୁମେ ମହତ୍, ତୁମର ପ୍ରତିବେଶୀର ମହତ୍ତ୍ୱ ଅନ୍ୟ ବିଷୟରେ । ସ୍ତ୍ରୀ ପୁରୁଷଙ୍କର ବିଚାର କଲାବେଳେ ସେମାନଙ୍କର ନିଜ ନିଜ ମହତ୍ତ୍ୱର ମାନ ଧରି ବିଚାରକର । ଜଣକର ଗୋଡ଼ର ଯୋତା ଆଉ ଜଣକର ଗୋଡ଼ରେ ପିନ୍ଧେଇଲେ କିପରି ହେବ ? ଜଣକୁ ଖରାପ କହିବାର ଅଧିକାର ଅନ୍ୟର ନାହିଁ । ଏହିପରି ସମାଲୋଚନା ଦେଖିଲେ ସେହି ପ୍ରାଚୀନ କୁସଂସ୍କାର କଥାଗୁଡ଼ିକ ମନକୁ ଆସେ—'ଏପରି କଲେ ଜଗତ ଉଚ୍ଛନ୍ନ ହୋଇଯିବ'— କିନ୍ତୁ ସେପରି କରିବା ସତ୍ତ୍ୱେ ତ ଜଗତ ଅଦ୍ୟାବଧି ଧ୍ୱଂସ ପାଇଯାଇ ନାହିଁ । ଏ ଦେଶରେ ଆଗରୁ କୁହାଯାଉଥିଲା ଯେ, ନିଗ୍ରୋମାନଙ୍କୁ ସ୍ୱାଧୀନତା ଦେଲେ ଦେଶର ସର୍ବନାଶ ହେବ; କିନ୍ତୁ ବାସ୍ତବିକ ସର୍ବନାଶ ହୋଇଛି କି ? ଆହୁରି ମଧ୍ୟ କୁହାଯାଉଥିଲା ଯେ, ଗଣଶିକ୍ଷାର ପ୍ରସାର ହେଲେ ଜଗତର ସର୍ବନାଶ ହେବ; କିନ୍ତୁ ତାହାଦ୍ୱାରା ପ୍ରକୃତରେ ଜଗତର ଉନ୍ନତି ହୋଇଛି ।

କେତେକ ବର୍ଷ ତଳେ ଏପରି ଖଣ୍ଡେ ବହି ପ୍ରକାଶିତ ହୋଇଥିଲା ଯେଉଁଥିରେ କି ଇଂଲଣ୍ଡର ସବୁଠାରୁ ଖରାପ ଅବସ୍ଥାର ସମ୍ଭାବନାର ବର୍ଣ୍ଣନା ଲିପିବଦ୍ଧ ହୋଇଥିଲା ।

ଲେଖକ ଦେଖାଇଥିଲେ ଯେ, ଶ୍ରମିକମାନଙ୍କର ମଜୁରି ବଢ଼ାଇବା ସଙ୍ଗେ ସଙ୍ଗେ ବ୍ୟବସାୟର ଅବନତି ଘଟୁଅଛି । ଗୋଟାଏ ଜନରବ ଉଠିଥିଲା ଯେ, ଇଂଲଣ୍ଡର ଶ୍ରମିକମାନଙ୍କର ଦାବି ଅତ୍ୟଧିକ—ଅଥଚ ଜର୍ମାନ୍‌ମାନେ କେତେ କମ୍ ଦରମାରେ କାମ କରୁଅଛନ୍ତି । ଏହି ବିଷୟ ତଦନ୍ତ କରିବା ପାଇଁ ଜର୍ମାନ୍ ଦେଶକୁ ଗୋଟିଏ କମିଶନ ପଠାଗଲା । କମିଶନ ଫେରି ଆସି ଖବର ଦେଲେ ଯେ, ଜର୍ମାନ୍ ଶ୍ରମିକମାନେ ଉଚ୍ଚତର ହାରରେ ମଜୁରି ପାଆନ୍ତି । ଏହା କିପରି ସମ୍ଭବ ହେଲା ? ଏହାର କାରଣ ଏକମାତ୍ର ଜନଶିକ୍ଷା । ତେଣୁ 'ଜନଶିକ୍ଷା ଫଳରେ ଯେ ଜଗତ ଉଚ୍ଛନ୍ନ ହୋଇଯିବ' ଏହି ଉକ୍ତିଟିର ଗତି କ'ଣ ହେବ ? ବିଶେଷତଃ ଭାରତବର୍ଷରେ ପ୍ରାଚୀନପନ୍ଥୀମାନଙ୍କର ଆଧିପତ୍ୟ ସବୁଆଡ଼େ । ସେମାନେ ଲୋକମାନଙ୍କ ନିକଟରୁ ସବୁ ବିଷୟ ଲୁଚାଇ ରଖିବାକୁ ଚାହାଁନ୍ତି । ଆମେମାନେ କେବଳ ଜଗତର ମଥାମଣି—ଏହି ଆତ୍ମପ୍ରସାଦକର ଧାରଣା ନେଇ ସେମାନେ ବସିଛନ୍ତି । ସେମାନଙ୍କର ବିଶ୍ୱାସ—ଏହିସବୁ ଭୟଙ୍କର ପରୀକ୍ଷାମୂଳକ ପ୍ରଚେଷ୍ଟାଗୁଡ଼ିକରେ ସେମାନଙ୍କର କୌଣସି କ୍ଷତି ହୋଇପାରିବ ନାହିଁ, ସେଥିରେ କେବଳ ସାଧାରଣ ଲୋକମାନେ କ୍ଷତିଗ୍ରସ୍ତ ହେବେ ।

ବର୍ତ୍ତମାନ କର୍ମକୁଶଳତା ବିଷୟକୁ ଫେରିଆସିବା । ଭାରତରେ ବହୁ ପ୍ରାଚୀନ କାଳରୁ ମନସ୍ତତ୍ତ୍ୱର ବ୍ୟାବହାରିକ ପ୍ରୟୋଗର କାର୍ଯ୍ୟ ଆରମ୍ଭ ହୋଇଛି । ଖ୍ରୀଷ୍ଟଜନ୍ମର ପ୍ରାୟ ଚଉଦଶତ ବର୍ଷ ପୂର୍ବେ ଭାରତରେ ଜଣେ ବଡ଼ ଦାର୍ଶନିକ ଜନ୍ମିଥିଲେ । ତାଙ୍କର ନାମ ପତଞ୍ଜଳି । ମନସ୍ତତ୍ତ୍ୱ ବିଷୟରେ ସମସ୍ତ ତଥ୍ୟ, ପ୍ରମାଣ ଓ ଗବେଷଣା ସେ ସଂଗ୍ରହ କରିଥିଲେ । ଅତୀତର ଭଣ୍ଡାରରେ ସଞ୍ଚିତ ସମସ୍ତ ଅଭିଜ୍ଞତାର ସୁଯୋଗଟିକକ ମଧ୍ୟ ଗ୍ରହଣ କରିଥିଲେ । ମନେ ରଖନ୍ତୁ, ଜଗତ୍ ଅତି ପ୍ରାଚୀନ; ମାତ୍ର ଦୁଇ ବା ତିନି ହଜାର ବର୍ଷ ପୂର୍ବେ ଏହାର ଜନ୍ମ ହୋଇ ନାହିଁ । ଏଠାରେ, ଆପଣମାନଙ୍କର ପାଶ୍ଚାତ୍ୟ ଦେଶରେ ଶିଖାହୁଏ ଯେ, 'ନିଉ ଟେଷ୍ଟାମେଣ୍ଟ' ରଚିତ ହେବା ବେଳେ ଅଠରଶହ ବର୍ଷ ପୂର୍ବେ ସମାଜର ଜନ୍ମ ହୋଇଥିଲା । ତାହା ପୂର୍ବରୁ ସମାଜ ବୋଲି କୌଣସି କିଛି ନ ଥିଲା । ପାଶ୍ଚାତ୍ୟ-ଜଗତ ସମ୍ବନ୍ଧରେ ଏହି କଥା ସତ୍ୟ ହୋଇପାରେ, କିନ୍ତୁ ସମଗ୍ର ଜଗତ୍ ସମ୍ବନ୍ଧରେ ଏହା କୁହାଯାଇ ନ ପାରେ । ଲଣ୍ଡନରେ ଯେତେବେଳେ ବକ୍ତୃତା ଦେଲି, ସେତେବେଳେ ମୋର ଜଣେ ସୁପଣ୍ଡିତ ମେଧାବୀ ବନ୍ଧୁ ପ୍ରାୟ ମୋ ସହିତ ତର୍କ କରୁଥିଲେ । ତାଙ୍କର ତୂଣୀରରେ ଯେତେ ଶର ଥିଲା, ସେ ସବୁଗୁଡ଼ିକୁ ମୋ ଉପରେ ନିକ୍ଷେପ କରିବା ପରେ ହଠାତ୍ ଉଚ୍ଚସ୍ୱରରେ କହିଲେ, 'ତାହାହେଲେ ଆପଣମାନଙ୍କର ଋଷିମାନେ ଆମମାନଙ୍କୁ ଶିକ୍ଷା ଦେବାକୁ ଇଂଲଣ୍ଡକୁ ଆସିଲେ ନାହିଁ କାହିଁକି ?' ଉତ୍ତରରେ ମୁଁ କହିଥିଲି, 'କାରଣ ଇଂଲଣ୍ଡ ବୋଲି ସେତେବେଳେ କିଛି ନ ଥିଲା ଯେ ସେମାନେ ଏଠାକୁ ଆସିପାରିଥାଆନ୍ତେ । ସେମାନେ କ'ଣ ବଣଜଙ୍ଗଲର ଗଛ-ପତ୍ରଗୁଡ଼ିକ ନିକଟରେ ପ୍ରଚାର କରିଥାନ୍ତେ ?'

ଇଙ୍ଗରସୋଲ୍ ମୋତେ କହିଥିଲେ, 'ପଚାଶ ବର୍ଷ ପୂର୍ବେ ଏ ଦେଶରେ ପ୍ରଚାର କରିବାକୁ ଆସିଥିଲେ ଆପଣଙ୍କୁ ଏଠାରେ ଫାଶୀ ଦିଆହୋଇଥାନ୍ତା, ଆପଣଙ୍କୁ ଜୀବନ୍ତ ଦଗ୍ଧ କରାହୋଇଥାନ୍ତା କିମ୍ବା ଢେଲା ଫୋପାଡ଼ି ଗ୍ରାମରୁ ତଡ଼ି ଦିଆଯାଇଥାନ୍ତା ।'

ତେଣୁ ଖ୍ରୀଷ୍ଟଜନ୍ମର ଚଉଦଶହ ବର୍ଷ ପୂର୍ବରୁ ମଧ୍ୟ ସଭ୍ୟତାର ଅସ୍ତିତ୍ୱ ଥିଲା, ଏହା ମନେ କରିବା ଆଦୌ ଅଯୌକ୍ତିକ ନୁହେଁ । ସଭ୍ୟତା ସବୁବେଳେ ନିମ୍ନତର ଅବସ୍ଥାରୁ ଉଚ୍ଚତର ଅବସ୍ଥାକୁ ଆସିଛି କି ନା—ଏ କଥାର ମୀମାଂସା ଏପର୍ଯ୍ୟନ୍ତ ହୋଇନାହିଁ । ଏହି ଧାରଣାଟିକୁ ପ୍ରମାଣ କରିବା ପାଇଁ ଯେଉଁ ସମସ୍ତ ଯୁକ୍ତି-ପ୍ରମାଣ ଦେଖା ହୋଇଅଛି, ଠିକ୍ ସେହିସବୁ ଯୁକ୍ତି-ପ୍ରମାଣ ଦେଇ ଏହା ମଧ୍ୟ ପ୍ରତିପାଦନ କରାଯାଏ ଯେ, ସଭ୍ୟ ମନୁଷ୍ୟ ମଧ୍ୟ କ୍ରମେ ଅସଭ୍ୟ ବର୍ବର ମନୁଷ୍ୟରେ ପରିଣତ ହୋଇଅଛି; ଦୃଷ୍ଟାନ୍ତସ୍ୱରୂପ କୁହାଯାଏ, ଚୀନ ଦେଶର ଲୋକମାନେ କେବେହେଲେ ବିଶ୍ୱାସ କରିପାରନ୍ତି ନାହିଁ ଯେ, ଆଦିମ ବର୍ବର ଅବସ୍ଥାରୁ ସଭ୍ୟତାର ଉତ୍ପତ୍ତି ହୋଇଛି; କାରଣ ସେମାନଙ୍କର ଅଭିଜ୍ଞତା ଏହାର ବିପରୀତ ସତ୍ୟର ସାକ୍ଷ୍ୟ ଦିଏ । କିନ୍ତୁ ତୁମେମାନେ ଯେତେବେଳେ ଆମେରିକାର ସଭ୍ୟତାର ଉଲ୍ଲେଖ କର, ସେତେବେଳେ ତୁମେମାନେ କହିବାକୁ ଚାହଁ ଯେ, ତୁମମାନଙ୍କର ଜାତି ଚିରକାଳ ରହିବେ ଏବଂ ଉନ୍ନତିର ପଥରେ ଅଗ୍ରସର ହେବେ । ଯେଉଁ ହିନ୍ଦୁମାନେ ସାତଶହ ବର୍ଷ ଧରି ଅବନତି-ପଥରେ ଚାଲିଛନ୍ତି—ସେମାନେ ପ୍ରାଚୀନ କାଳରେ ସଭ୍ୟତାର ଶୀର୍ଷସ୍ଥାନରେ ଥିଲେ—ଏ କଥା ବିଶ୍ୱାସ କରିବା ଖୁବ୍ ସହଜ । ଏହା ଯେ ସତ୍ୟ ନୁହେଁ—ଏକଥା ପ୍ରମାଣ କରାଯାଇପାରିବ ନାହିଁ ।

କୌଣସି ସଭ୍ୟତା ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ଭାବରେ ଗଢ଼ିଉଠିଛି, ଏପରି ଦୃଷ୍ଟାନ୍ତ ଗୋଟିଏ ସୁଦ୍ଧା ମିଳେ ନାହିଁ । ଅନ୍ୟ ଗୋଟିଏ ସୁସଭ୍ୟ ଜାତି ଆସି କୌଣସି ଜାତି ସହିତ ମିଶିମିଶି ବ୍ୟତିରେକେ ସେ ଜାତି ଯେ ସଭ୍ୟ ହୋଇ ଉଠିଛି—ଏପରି କୌଣସି ଗୋଟିଏ ହେଲେ ଜାତି ଜଗତରେ ନାହିଁ । ଗୋଟିଏ ଦିଗରୁ ବିଚାର କଲେ ଦେଖାଯିବ ଯେ, ମୂଳ ସଭ୍ୟତାର ଅଧିକାଂଶ ଜାତି ଗୋଟିଏ କିମ୍ବା ଦୁଇଟି ଥିଲା; ସେମାନେ ବାହାରକୁ ଯାଇ ନିଜର ଭାବ ପ୍ରଚାର କରିଛନ୍ତି ଓ ଅନ୍ୟାନ୍ୟ ଜାତି ସହିତ ମିଶି ଯାଇଛନ୍ତି । ଏହିପରି ଭାବରେ ସଭ୍ୟତାର ବିସ୍ତାର ଘଟିଛି ।

ବାସ୍ତବ ଜୀବନରେ ଆଧୁନିକ ବିଜ୍ଞାନର ଭାଷାରେ କଥା କହିବା ବରଂ ଭଲ । କିନ୍ତୁ ଗୋଟିଏ କଥା ତୁମକୁ ସ୍ମରଣ ରଖିବାକୁ ହେବ । ଧର୍ମ ବିଷୟରେ କୁସଂସ୍କାର ଯେପରି ଅଛି, ବିଜ୍ଞାନ କ୍ଷେତ୍ରରେ ମଧ୍ୟ ସେହିପରି କୁସଂସ୍କାର ଅଛି । ଏପରି ଅନେକ ପୁରୋହିତ ଅଛନ୍ତି, ଯେଉଁମାନେ ଧର୍ମାନୁଷ୍ଠାନକୁ ନିଜ ଜୀବନର ବୈଶିଷ୍ଟ୍ୟ ବୋଲି ଗ୍ରହଣ କରନ୍ତି । ସେହିପରି ଭାବରେ ବୈଜ୍ଞାନିକ ନାମଧେୟ ଏପରି ଅନେକ ଲୋକ ଅଛନ୍ତି, ଯେଉଁମାନେ ପ୍ରାକୃତିକ ନିୟମର ପୂଜାରି । ଡାରଉଇନ୍ ବା ହକ୍ସଲେଙ୍କ ପରି ବଡ଼ ବଡ଼ ବୈଜ୍ଞାନିକମାନଙ୍କର ନାମ ନେଲେ ଆମେମାନେ ଅନ୍ଧଭାବରେ ସେମାନଙ୍କର ଅନୁସରଣ କରୁଁ । ଏହା ଆଜିକାଲିକାର ଚଳିତ ପ୍ରଥା । ଯାହାକୁ ଆମେମାନେ ବିଜ୍ଞାନସମ୍ମତ ଜ୍ଞାନ ବୋଲି କହୁ, ତାହା ଭିତରେ ଶତକଡ଼ା ଅନେଶତ ଭାଗ ହେଉଛି ଖାଣ୍ଟି ମତବାଦ । ଏଗୁଡ଼ିକ ମଧ୍ୟରୁ ଅନେକଗୁଡ଼ିଏ ପ୍ରାଚୀନ କାଳର ବହୁ-ମସ୍ତକ ଓ ବହୁ-ହସ୍ତ-ବିଶିଷ୍ଟ ଭୂତରେ ଅନ୍ଧ ବିଶ୍ୱାସ କରିବା ଅପେକ୍ଷା କୌଣସି ଅଂଶରେ ଉତ୍କୃଷ୍ଟ ନୁହେଁ । ତେବେ ପାର୍ଥକ୍ୟ ଏତିକି ମାତ୍ର ଯେ,

କୁସଂସ୍କାର ହେଲେ ମଧ୍ୟ ସେଥିରେ ସେ ମନୁଷ୍ୟକୁ ଗଛ, ପଥର ପ୍ରଭୃତି ଅଚେତନ ପଦାର୍ଥରୁ ଅନ୍ତତଃ କେତେକ ପରିମାଣରେ ଅଲଗା ବୋଲି ବିଚାର କରୁଥିଲା । ଯଥାର୍ଥ ବିଜ୍ଞାନ ଆମମାନଙ୍କୁ ସାବଧାନରେ ଚଳିବାକୁ କହେ । ପୁରୋହିତମାନଙ୍କ ସହିତ ଯେପରି ସତର୍କ ହୋଇ ଚଳିବାକୁ ହୁଏ, ବିଜ୍ଞାନମାନଙ୍କ ବିଷୟରେ ମଧ୍ୟ ସେହିପରି ସତର୍କତା ଆବଶ୍ୟକ । ଅବିଶ୍ୱାସ ନେଇ ଆରମ୍ଭ କର । ବିଶ୍ଳେଷଣ କର, ପରୀକ୍ଷା କର, ସବୁ ପ୍ରମାଣ ପାଇ ତେବେ ବିଶ୍ୱାସ କର । ଆଧୁନିକ ବିଜ୍ଞାନର କେତୋଟି ଅତିପ୍ରଚଳିତ ବିଶ୍ୱାସ ଏପର୍ଯ୍ୟନ୍ତ ପ୍ରମାଣଦ୍ୱାରା ଉତ୍ତୀର୍ଣ୍ଣ ହୋଇନାହିଁ । ଅଙ୍କଶାସ୍ତ୍ର ପରି ବିଜ୍ଞାନ ମଧ୍ୟରେ ଅନେକଗୁଡ଼ିଏ ମତବାଦ କେବଳ କାମ ଚଳାଇବା ପାଇଁ ଉପଯୁକ୍ତ ସାମୟିକ ସିଦ୍ଧାନ୍ତ ହିସାବରେ ଗୃହୀତ ହୋଇଅଛି । ଉଚ୍ଚତର ଜ୍ଞାନର ଉନ୍ମେଷ ସଙ୍ଗେ ସଙ୍ଗେ ସେଗୁଡ଼ିକ ଅଗ୍ରାହ୍ୟ ହୋଇଯିବ ।

ଖ୍ରୀଷ୍ଟଜନ୍ମର ଚଉଦଶହ ବର୍ଷ ପୂର୍ବେ ଜଣେ ବଡ଼ ଋଷି କେତେଗୁଡ଼ିଏ ମନସ୍ତାତ୍ତ୍ୱିକ ତଥ୍ୟର ସୁବିନ୍ୟାସ ବିଶ୍ଳେଷଣ ଏବଂ ସାମାନ୍ୟୀକରଣର ଚେଷ୍ଟା କରିଥିଲେ । ତାହାଙ୍କୁ ଅନୁସରଣ କରି ଆହୁରି ଅନେକେ ତାଙ୍କର ଆବିଷ୍କୃତ ଜ୍ଞାନର ଅଂଶବିଶେଷକୁ ନେଇ ତାହାର ବିଶେଷ ଚର୍ଚ୍ଚା କରିଅଛନ୍ତି । ପ୍ରାଚୀନ ଜାତିମାନଙ୍କ ମଧ୍ୟରେ କେବଳ ହିନ୍ଦୁମାନେ ହିଁ ଜ୍ଞାନର ଏହି ବିଶେଷ ଶାଖାଟିର ଚର୍ଚ୍ଚାରେ ବିଶେଷ ଆନ୍ତରିକତାର ସହିତ ବ୍ରତୀ ହୋଇଥିଲେ । ମୁଁ ବର୍ତ୍ତମାନ ବିଷୟଟିକୁ ଶିଖାଉଅଛି—କିନ୍ତୁ ତୁମେମାନେ କେତେଜଣ ବା ଏହା ଅଭ୍ୟାସ କରିବ ? ଅଭ୍ୟାସ ଛାଡ଼ିବାକୁ କେତେ ଦିନ ବା କେତେ ମାସ ଲାଗିବ ତୁମମାନଙ୍କର ? ଏ ବିଷୟରେ ଉପଯୁକ୍ତ ଉଦ୍ୟମ ତୁମମାନଙ୍କର ନାହିଁ । ଭାରତବାସୀମାନେ କିନ୍ତୁ ଯୁଗ ପରେ ଯୁଗ ଏହାର ଅନୁଶୀଳନ କରୁଥିବେ । ଆପଣମାନେ ଶୁଣି ଆଶ୍ଚର୍ଯ୍ୟ ହେବେ, ଭାରତବାସୀମାନଙ୍କର କୌଣସି ସାଧାରଣ ପ୍ରାର୍ଥନା-ଗ୍ରନ୍ଥ, କୌଣସି ସାଧାରଣ ପ୍ରାର୍ଥନା-ମନ୍ତ୍ର କିମ୍ବା ଏହିପରି କିଛି ନାହିଁ । ତାହା ସତ୍ତ୍ୱେ ସେମାନେ ପ୍ରତିଦିନ ଶ୍ୱାସ-ନିୟନ୍ତ୍ରଣ ଅଭ୍ୟାସ କରନ୍ତି, ମନକୁ ଏକାଗ୍ର କରିବାକୁ ଚେଷ୍ଟା କରନ୍ତି—ଏହା ହେଉଛି ସେମାନଙ୍କର ଉପାସନାର ପ୍ରଧାନ ଅଙ୍ଗ । ଏହିଗୁଡ଼ିକ ହେଉଛି ମୂଳ କଥା । ପ୍ରତ୍ୟେକ ହିନ୍ଦୁଙ୍କୁ ଏହା କରିବାକୁ ପଡ଼େ । ଏହା ହିଁ ସେ ଦେଶର ଧର୍ମ । ତେବେ ସମସ୍ତେ ଗୋଟିଏ ପଦ୍ଧତି ଅବଲମ୍ବନ କରିପାରନ୍ତି, ନ କରିପାରନ୍ତି । ଶ୍ୱାସ-ନିୟନ୍ତ୍ରଣ, ମନଃସଂଯମ ପ୍ରଭୃତି ଅଭ୍ୟାସ କରିବା ପାଇଁ ପ୍ରତ୍ୟେକର ସ୍ୱତନ୍ତ୍ର ପଦ୍ଧତି ଥାଇପାରେ । କିନ୍ତୁ ଜଣଙ୍କର ପଦ୍ଧତି ଅନ୍ୟ ଜଣକର ଜାଣିବାର ପ୍ରୟୋଜନ ହୁଏ ନାହିଁ । ଏପରିକି ତାହାର ସ୍ତ୍ରୀ ମଧ୍ୟ ଜାଣିପାରେ ନାହିଁ । ପିତା ମଧ୍ୟ ଜାଣିପାରେ ନାହିଁ ପୁଅ କି ପଦ୍ଧତି ଅବଲମ୍ବନ କରି ଚାଲିଛି । କିନ୍ତୁ ସମସ୍ତେ ଏସବୁ ଅଭ୍ୟାସ କରନ୍ତି । ଆଉ ଏଥିରେ କୌଣସି ଗୋପନ ରହସ୍ୟ ନାହିଁ । ଗୋପନ ରହସ୍ୟର କୌଣସି ଭାବ ମଧ୍ୟ ଏଥିରେ ନାହିଁ । ହଜାର ହଜାର ଲୋକ ପ୍ରତିଦିନ ଗଙ୍ଗାତୀରରେ ବସି ଆଖି ବୁଜି ପ୍ରାଣାୟାମ ଓ ମନର ଏକାଗ୍ରତା-ସାଧନର ଅଭ୍ୟାସ କରୁଛନ୍ତି—ଏ ଦୃଶ୍ୟ ନିତ୍ୟ ଆଖିରେ ପଡ଼େ । ମାନବ-ସାଧାରଣଙ୍କ ପକ୍ଷରେ କେତେଗୁଡ଼ିଏ ଅଭ୍ୟାସ-ସାଧନାର ପଥରେ ବ୍ୟାବହାରିକ କ୍ଷେତ୍ରରେ ଦୁଇଟି ଅନ୍ତରାୟ ଥାଇପାରେ । ପ୍ରଥମତଃ ଧର୍ମାଚାର୍ଯ୍ୟମାନେ ମନେ କରନ୍ତି ଯେ, ସାଧାରଣ ଲୋକ

ଏସମସ୍ତ ସାଧନାର ଯୋଗ୍ୟ ନୁହନ୍ତି । ଏହି ଧାରଣାରେ ହୁଏତ କିଞ୍ଚିତ ସତ୍ୟ ଥାଇପାରେ; କିନ୍ତୁ ଗଙ୍କର ସ୍ୱଭାବ ହିଁ ଏଥି ନିମନ୍ତେ ବେଶୀ ଦାୟୀ । ଦ୍ୱିତୀୟ ଅନ୍ତରାୟ ନିର୍ଯ୍ୟାତନର ଭୟ । ଯେପରି ଏ ଦେଶରେ ହାସ୍ୟାସ୍ପଦ ହେବା ଭୟରେ ପ୍ରକାଶ୍ୟ ସ୍ଥାନରେ କେହି ପ୍ରାଣାୟାମ ଅଭ୍ୟାସ କରିବାକୁ ମଙ୍ଗିବେ ନାହିଁ । ଏଠାରେ ଏସବୁର ପ୍ରଚଳନ ନାହିଁ । ପୁଣି ଭାରତରେ କେହି ଯଦି 'ଭଗବାନ ! ଆଜି ମୋତେ ଦିନର ଅନ୍ନ ଯୋଗାଡ଼ କରି ଦିଅ' ବୋଲି ପ୍ରାର୍ଥନା କରେ, ତେବେ ଲୋକେ ତାକୁ ଉପହାସ କରିବେ । ହିନ୍ଦୁମାନଙ୍କ ଦୃଷ୍ଟିରେ, 'ହେ ମୋର ସ୍ୱର୍ଗବାସୀ ପିତା' ଇତ୍ୟାଦି କହିବା ଅପେକ୍ଷା ନିର୍ବୋଧତା ଆଉ କିଛି ନାହିଁ । ଉପାସନା ସମ୍ବନ୍ଧରେ ହିନ୍ଦୁ ଏହା କେବଳ ଭାବେ ଯେ, ଭଗବାନ ତାହାର ଅନ୍ତର ମଧ୍ୟରେ ହିଁ ରହିଅଛନ୍ତି ।

ଯୋଗୀମାନେ କହନ୍ତି, ଆମମାନଙ୍କ ଦେହ ମଧ୍ୟରେ ତିନୋଟି ପ୍ରଧାନ ସ୍ନାୟୁପ୍ରବାହ ରହିଅଛି । ଗୋଟିକୁ ସେମାନେ 'ଇଡ଼ା' ବୋଲି କହନ୍ତି, ଅପରଟିକୁ 'ପିଙ୍ଗଳା' ଏବଂ ଏହି ଦୁଇଟିର ମଧ୍ୟବର୍ତ୍ତୀକୁ କହନ୍ତି 'ସୁଷୁମ୍ନା' । ଏହିଗୁଡ଼ିକ ସମସ୍ତ ମେରୁଦଣ୍ଡ ମଧ୍ୟରେ ଅବସ୍ଥିତ । ବାମ ଦିଗରେ 'ଇଡ଼ା' ଓ ଦକ୍ଷିଣରେ 'ପିଙ୍ଗଳା'—ଏହି ଦୁଇଟିର ପ୍ରତ୍ୟେକଟି ହେଉଛି ସ୍ନାୟୁଗୁଚ୍ଛ; ଆଉ ମଧ୍ୟବର୍ତ୍ତୀ ସ୍ନାୟୁଟି ଗୋଟିଏ ଶୂନ୍ୟ ନାଳୀ, ସ୍ନାୟୁଗୁଚ୍ଛ ନୁହେଁ । ଏହି ସୁଷୁମ୍ନାପଥ ରୁଦ୍ଧାବସ୍ଥାରେ ଥାଏ । ସାଧାରଣ ଲୋକ କେବଳ ଇଡ଼ା ଓ ପିଙ୍ଗଳା ସାହାଯ୍ୟରେ କାମ କରିଯାଏ ବୋଲି ଏହି ପଥଟି ତାହାର କୌଣସି ପ୍ରୟୋଜନରେ ଲାଗେ ନାହିଁ । ବିଭିନ୍ନ ଅଙ୍ଗପ୍ରତ୍ୟଙ୍ଗ-ସମ୍ବନ୍ଧୀୟ ଅନ୍ୟାନ୍ୟ ସ୍ନାୟୁଗୁଡ଼ିକଦ୍ୱାରା ଶରୀରର ସର୍ବତ୍ର ମସ୍ତିଷ୍କର ଆଦେଶ ପହଞ୍ଚାଇବା ପାଇଁ ଇଡ଼ା ଓ ପିଙ୍ଗଳା ନାଡ଼ୀର ଭିତର ଦେଇ ସ୍ନାୟୁପ୍ରବାହ ସବୁବେଳେ ଚଳାଚଳ କରୁଥାଏ ।

ଇଡ଼ା ଓ ପିଙ୍ଗଳାକୁ ନିୟନ୍ତ୍ରିତ ଓ ଛନ୍ଦୋବଦ୍ଧ କରିବା ହିଁ ପ୍ରାଣାୟାମର ମହାନ୍ ଉଦ୍ଦେଶ୍ୟ । କିନ୍ତୁ କେବଳ ଶ୍ୱାସକ୍ରିୟାରେ କିଛି ନାହିଁ, ଏହା ଫୁସ୍‌ଫୁସ୍ ଭିତରେ କିଛି ପବନ ଭରିଦେବା ଛଡ଼ା ତ ଆଉ କିଛି ନୁହେଁ । ରକ୍ତଶୋଧନ ଛଡ଼ା ତାହାର ଆଉ କୌଣସି ପ୍ରୟୋଜନ ନାହିଁ । ବାହାରୁ ଆମେମାନେ ଯେଉଁ ବାୟୁକୁ ନିଃଶ୍ୱାସଦ୍ୱାରା ଟାଣି ନେଉଁ ଏବଂ ତାହାକୁ ରକ୍ତଶୋଧନ କାର୍ଯ୍ୟରେ ନିୟୋଗ କରୁଁ, ସେହି ବାୟୁ ମଧ୍ୟରେ କୌଣସି ଗୋପନ ରହସ୍ୟ ନାହିଁ । ଏହି କ୍ରିୟାଟି ତ କେବଳ ସ୍ପନ୍ଦନ ଛଡ଼ା ଆଉ କିଛି ନୁହେଁ । ଏହି ଗତିଟିକୁ ପ୍ରାଣ ନାମକ ଗୋଟିଏ ମାତ୍ର ସ୍ପନ୍ଦନରେ ପରିଣତ କରାଯାଏ । ଆଉ ସବୁ ଜାଗାର ସବୁ ଗତି ହିଁ ଏହି ପ୍ରାଣର କେବଳ ବିଭିନ୍ନ ବିକାଶ ମାତ୍ର । ଏହି ପ୍ରାଣ ହିଁ ବିଦ୍ୟୁତ୍, ଏହି ପ୍ରାଣ ହିଁ ଚୁମ୍ବକ-ଶକ୍ତି । ମସ୍ତିଷ୍କ ଏହି ପ୍ରାଣକୁ ହିଁ ଚିନ୍ତାରୂପରେ ବିକୀର୍ଣ୍ଣ କରେ । ସବୁ ହିଁ ପ୍ରାଣ; ପ୍ରାଣ ହିଁ ଚନ୍ଦ୍ର ସୂର୍ଯ୍ୟ ଓ ନକ୍ଷତ୍ରଗୁଡ଼ିକୁ ଚାଳିତ କରୁଅଛି ।

ଆମେମାନେ କହୁଁ— ବିଶ୍ୱ ମଧ୍ୟରେ ଯାହା କିଛି ଅଛି, ତାହା ସବୁ ଏହି ପ୍ରାଣର ସ୍ପନ୍ଦନ ଫଳରେ ବିକାଶଲାଭ କରିଅଛି । ସ୍ପନ୍ଦନର ସର୍ବୋଚ୍ଚ ଫଳ ଚିନ୍ତା । ଏହା ଅପେକ୍ଷା ବଡ଼ ଯଦି କିଛି ଥାଏ, ତାହା ଧାରଣା କରିବାର କ୍ଷମତା ଆମମାନଙ୍କର ନାହିଁ । ଇଡ଼ା ଓ ପିଙ୍ଗଳା

ନାମକ ନାଡ଼ୀ ଦୁଇଟି ପ୍ରାଣ ସାହାଯ୍ୟରେ କାମ କରେ । ପ୍ରାଣ ହିଁ ବିଭିନ୍ନ ଶକ୍ତିରୂପରେ ପରିଣତ ହୋଇ ଶରୀରର ପ୍ରତି ଅଙ୍ଗକୁ ପରିଚାଳିତ କରେ । ଭଗବାନ ଜଗତ୍‌ରୂପ କାର୍ଯ୍ୟର ସ୍ରଷ୍ଟା ଏବଂ ସିଂହାସନ ଉପରେ ବସି ନ୍ୟାୟବିଚାର କରୁଅଛନ୍ତି—ଭଗବାନଙ୍କ ସମ୍ବନ୍ଧରେ ଏହି ପ୍ରାଚୀନ ଧାରଣା ପରିତ୍ୟାଗ କର । କାମ କରୁ କରୁ ଆମେମାନେ କ୍ଳାନ୍ତ ହୋଇପଡ଼ୁ, କାରଣ ସେହି କାର୍ଯ୍ୟରେ ଆମମାନଙ୍କର କେତେକ ପରିମାଣରେ ପ୍ରାଣଶକ୍ତି ବ୍ୟୟିତ ହୋଇଯାଏ । ନିୟମିତ ପ୍ରାଣାୟାମ ଫଳରେ ଶ୍ୱାସକ୍ରିୟା ନିୟନ୍ତ୍ରିତ ହୁଏ, ପ୍ରାଣର କ୍ରିୟା ଛନ୍ଦୋବଦ୍ଧ ହୁଏ । ପ୍ରାଣ ଯେତେବେଳେ ନିୟମିତ ଛନ୍ଦରେ ଚାଲେ, ଦେହର ସବୁକିଛି ଠିକ୍ ଭାବରେ କାର୍ଯ୍ୟ କରେ । ଯୋଗୀମାନଙ୍କର ଯେତେବେଳେ ନିଜ ଶରୀର ଉପରେ ଆଧିପତ୍ୟ ଆସେ, ସେତେବେଳେ ଶରୀରର କୌଣସି ଅଂଶ ଅସୁସ୍ଥ ହେଲେ ତାହା ସେମାନେ ଜାଣିପାରନ୍ତି ଯେ, ପ୍ରାଣ ଠିକ୍ ଭାବରେ ଛନ୍ଦରେ ଚାଲୁ ନାହିଁ ଏବଂ ଯେତେବେଳ ପର୍ଯ୍ୟନ୍ତ ସହଜ ଛନ୍ଦ ଫେରି ନ ଆସେ, ସେତେବେଳ ଯାଏ ସେମାନେ ପ୍ରାଣକୁ ସେହି ଆଡ଼କୁ ସଞ୍ଚାଳିତ କରନ୍ତି ।

ତୁମ ନିଜର ପ୍ରାଣକୁ ଯେପରି ତୁମେ ନିୟନ୍ତ୍ରିତ କରିପାର, ସେହିପରି ଯଥେଷ୍ଟ ଶକ୍ତିମାନ୍ ହେଲେ ଏଠାରେ ବସି ମଧ୍ୟ ଭାରତରେ ଅବସ୍ଥିତ ଆଉ ଜଣକର ପ୍ରାଣକୁ ତୁମେ ନିୟନ୍ତ୍ରିତ କରିପାରିବ । ସବୁ ପ୍ରାଣ ହିଁ ଏକ, ମଝିରେ କୌଣସି ଛେଦ ନାହିଁ । ଏକତ୍ୱ ହିଁ ସର୍ବତ୍ର ବିଦ୍ୟମାନ । ଦୈହିକ ଦିଗରୁ, ଆତ୍ମିକ ମାନସିକ ଓ ନୈତିକ ଦିଗରୁ, ଆଧ୍ୟାତ୍ମିକ ଦିଗରୁ ସମସ୍ତ ହିଁ ଏକ । ଜୀବନ ଗୋଟିଏ ସ୍ପନ୍ଦନ ମାତ୍ର । ଯାହା ଏହି (ବିଶ୍ୱବ୍ୟାପୀ ଜଡ଼) 'ଆକାଶ'-ସମୁଦ୍ରକୁ ସ୍ପନ୍ଦିତ କରୁଅଛି, ତାହା ତୁମ ଭିତରେ ମଧ୍ୟ ସ୍ପନ୍ଦନ, ଜାଗ୍ରତ କରୁଅଛି । କୌଣସି ହ୍ରଦରେ ଯେପରି କାଠିନ୍ୟ ମାତ୍ରାର ତାରତମ୍ୟବିଶିଷ୍ଟ ଅନେକଗୁଡ଼ିଏ ବରଫର ସ୍ତର ଗଢ଼ି ଉଠେ, ଅଥବା କୌଣସି ବାଷ୍ପର ସାଗରରେ ବାଷ୍ପସ୍ତରର ବିଭିନ୍ନ ଘନତ୍ୱ ଥାଏ, ଏହି ବିଶ୍ୱଟି ମଧ୍ୟ ସେହିପରି ଜଡ଼ ପଦାର୍ଥର ଗୋଟିଏ ସମୁଦ୍ର । ଏହା ଗୋଟିଏ 'ଆକାଶ'ର ସମୁଦ୍ର; ଏହା ଭିତରେ ଘନତ୍ୱର ତାରତମ୍ୟ ଅନୁସାରେ ଆମେମାନେ ଚନ୍ଦ୍ର, ସୂର୍ଯ୍ୟ, ତାରା ଓ ଆମମାନଙ୍କର ନିଜର ଅସ୍ତିତ୍ୱ ଦେଖୁଅଛୁ; କିନ୍ତୁ ସର୍ବକ୍ଷେତ୍ରରେ ମଧ୍ୟ ନିରବଚ୍ଛିନ୍ନତା ଅବ୍ୟାହତ ରହିଅଛି, ସର୍ବତ୍ର ସେହି ଏକ ପଦାର୍ଥ ବ୍ୟାପି ରହିଛି ।

ଅଧ୍ୟାତ୍ମବିଜ୍ଞାନର ଚର୍ଚ୍ଚା କଲେ ଆମେମାନେ ବୁଝିପାରୁ ଯେ, ଜଗତ୍ ବସ୍ତୁତଃ ଏକ । ଅଧ୍ୟାତ୍ମଜଗତ୍, ଜଡ଼ଜଗତ୍, ମନୋଜଗତ୍ ଏବଂ ପ୍ରାଣଜଗତ୍—ଏପରି କୌଣସି ଭେଦ ନାହିଁ । ସମସ୍ତ ହିଁ ଏକ ପଦାର୍ଥ, ଯାହାକୁ ଅନୁଭୂତିର ବିଭିନ୍ନ ସ୍ତରରୁ ଆମେମାନେ ଦେଖୁଛୁ । ଯେତେବେଳେ ତୁମେ ନିଜକୁ ଦେହ ବୋଲି ଭାବ, ସେତେବେଳେ ତୁମେ ଯେ ମନ, ସେ କଥା ଭୁଲିଯାଅ । ପୁଣି ନିଜକୁ ଯେତେବେଳେ ମନ ବୋଲି ଭାବ, ସେତେବେଳେ ଶରୀର କଥା ଭୁଲିଯାଅ । 'ତୁମେ'—ନାମଧେୟ ଗୋଟିଏ ମାତ୍ର ସତ୍ତା କେବଳ ଅଛି, ସେ ବସ୍ତୁଟିକୁ ତୁମେ ଜଡ଼ ପଦାର୍ଥ ବା ଶରୀର ବୋଲି ମନେ କରିପାର, ଅଥବା ସେହିଟିକୁ ମନ ବା ଆତ୍ମାରୂପରେ ଦେଖିପାର । ଜନ୍ମ, ଜୀବନ ଓ ମୃତ୍ୟୁ—ଏ ସମସ୍ତ ପ୍ରାଚୀନ କୁସଂସ୍କାର ମାତ୍ର । କେହି କେବେହେଲେ ଜନ୍ମି ନାହିଁ, କେହି କେବେହେଲେ ମରିବ ନାହିଁ ମଧ୍ୟ; ଆମେମାନେ

କେବଳ ସ୍ଥାନପରିବର୍ତ୍ତନ କରୁ—ଏହାଛଡ଼ା ଆଉ ବେଶୀ କିଛି ନୁହେଁ । ପାଶ୍ଚାତ୍ୟ ଲୋକମାନେ ଯେ ମୃତ୍ୟୁକୁ ଏତେ ଗୁରୁତ୍ୱ ଦେଇ ଭାବନ୍ତି, ସେଥିରେ ମୁଁ ଦୁଃଖିତ । ସବୁବେଳେ ସେମାନେ ଟିକିଏ ଆୟୁଲାଭ କରିବା ପାଇଁ ଲାଳାୟିତ । 'ମୃତ୍ୟୁର ପରେ ଯେପରି ଆମେମାନେ ବଞ୍ଚିରହୁଁ, ଆମମାନଙ୍କୁ ବଞ୍ଚି ରହିବାକୁ ଦିଅ !' ଯଦି କେହି ସେମାନଙ୍କୁ ଶୁଣାନ୍ତି ଯେ ମୃତ୍ୟୁ ପରେ ମଧ୍ୟ ସେମାନେ ବଞ୍ଚି ରହିବେ, ତାହାହେଲେ ସେମାନେ କେତେ ଖୁସି ନ ହେବେ ? ଏ ବିଷୟରେ ଆମମାନଙ୍କର ସନ୍ଦେହ ହୁଏ କିପରି ? କାହିଁକି ଆମେମାନେ କଳ୍ପନା କରୁ ଯେ, ଆମେମାନେ ମରିଯାଇଛୁ ! ନିଜକୁ ମୃତ ବୋଲି ଭାବିବାକୁ ଚେଷ୍ଟା କର, ତୁମେ ଦେଖିବ ତୁମର ମୃତ ଦେହ ଦେଖିବା ପାଇଁ ତୁମେ ବଞ୍ଚି ରହିଛ । ବଞ୍ଚି ରହିବା ଏପରି ଗୋଟିଏ ଅଦ୍ଭୁତ ସତ୍ୟ ଯେ, ମୁହୂର୍ତ୍ତିକ ପାଇଁ ତୁମେ ତାହା ଭୁଲିପାର ନାହିଁ । ତୁମର ଅସ୍ତିତ୍ୱ ସମ୍ବନ୍ଧରେ ଯେପରି ତୁମର ସନ୍ଦେହ ହୋଇପାରେ ନାହିଁ, ବଞ୍ଚି ରହିବା ସମ୍ବନ୍ଧରେ ମଧ୍ୟ ଠିକ୍ ସେହିପରି । ଚେତନାର ପ୍ରଥମ ପ୍ରମାଣ ହେଲା—'ମୁଁ ଅଛି' । ଯେଉଁ ଅବସ୍ଥା କୌଣସି ସମୟରେ ନ ଥିଲା, ତାହାର କଳ୍ପନା କରିବା ସମ୍ଭବ କି ? ସବୁ ସତ୍ୟ ମଧ୍ୟରେ ଏହା ସବୁଠାରୁ ବେଶୀ ସ୍ୱତଃସିଦ୍ଧ । ତେଣୁ ଅମରତ୍ୱର ଭାବ ମନୁଷ୍ୟର ମଜ୍ଜାଗତ । ଯାହା କଳ୍ପନା କରିଯାଏ ନାହିଁ, ତାକୁ ନେଇ କୌଣସି ଆଲୋଚନା ହେବ କି ? ଯାହା ସ୍ୱତଃସିଦ୍ଧ, ତାହାର ସତ୍ୟାସତ୍ୟ ନେଇ ଆମେମାନେ ଆଲୋଚନା କରିବାକୁ ଚାହିଁବୁ କାହିଁକି ?

ତେଣୁ ଯେଉଁ ଦିଗରୁ ଆମେମାନେ ଦେଖୁ ନା କାହିଁକି ଏହି ସମସ୍ତ ବିଶ୍ୱଟି ଗୋଟିଏ ଅଖଣ୍ଡ ସତ୍ତା । ଏହି ମୁହୂର୍ତ୍ତରେ ବିଶ୍ୱଟିକୁ ପ୍ରାଣ ଓ ଆକାଶର, ଶକ୍ତି ଓ ଜଡ଼ପଦାର୍ଥର ଗୋଟିଏ ଅଖଣ୍ଡ ସତ୍ତା ବୋଲି ଆମେମାନେ ଭାବୁଥାଉଁ । ଯେପରି ମନେ ରହେ, ଅନ୍ୟାନ୍ୟ ମୂଳତତ୍ତ୍ୱଗୁଡ଼ିକ ପରି ଏ ତତ୍ତ୍ୱଟି ସ୍ୱ-ବିରୋଧୀ । କାରଣ ଶକ୍ତି ମାନେ କଅଣ ? ଯାହା ଜଡ଼ ପଦାର୍ଥ ମଧ୍ୟରେ ଗତିର ସଞ୍ଚାର କରେ, ତାହା ହେଉଛି ଶକ୍ତି । ଆଉ ଜଡ଼-ପଦାର୍ଥ କଅଣ ? —ଯାହା ଶକ୍ତିଦ୍ୱାରା ଚାଳିତ ହୁଏ, ତାହା ହିଁ ଜଡ଼ପଦାର୍ଥ । ଏପରି ସଂଜ୍ଞା ଅନ୍ୟୋନ୍ୟାଶ୍ରୟ-ଦୋଷରେ ଦୁଷ୍ଟ । ଜ୍ଞାନବିଜ୍ଞାନ ସମ୍ବନ୍ଧରେ ଆମମାନଙ୍କର ଏତେ ଗର୍ବ ସତ୍ତ୍ୱେ ଆମମାନଙ୍କ ଯୁକ୍ତିର କେତେଗୁଡ଼ିଏ ମୂଳ ଉପାଦାନ ଅତି ଅଦ୍ଭୁତ ଧରଣର । ଯାହାକୁ ଆମେ କହୁଁ—'ମୁଣ୍ଡ ନାହିଁ ତ, ମୁଣ୍ଡବ୍ୟଥା !'—ଏହି ଜାତୀୟ ପରିସ୍ଥିତିକୁ 'ମାୟା' କୁହାଯାଏ । ଏହାର ଅସ୍ତିତ୍ୱ ନାହିଁ, ନାସ୍ତିତ୍ୱ ମଧ୍ୟ ନାହିଁ । ଏହାକୁ 'ସତ୍' କହିପାରିବ ନାହିଁ, କାରଣ ଯାହା ଦେଶ-କାଳର ଅତୀତ, ଯାହା ସ୍ୱତଃସିଦ୍ଧ, ତାହା ହିଁ କେବଳ ସତ୍ । ତେବେ ମଧ୍ୟ ଅସ୍ତିତ୍ୱ ସମ୍ବନ୍ଧରେ ଆମମାନଙ୍କର ଧାରଣା ସହିତ ଏହି ଜଗତର ଅନେକ ସାମଞ୍ଜସ୍ୟ ଅଛି । ଏହାର ବ୍ୟାବହାରିକ ସତ୍ତା ସ୍ୱୀକୃତ ହୁଏ ।

କିନ୍ତୁ ଯାହା ଅସଲ 'ସତ୍' ବସ୍ତୁ ପାରମାର୍ଥିକ ସତ୍ତା, ତାହା ସବୁ ଜିନିଷର ଭିତରେ ଓ ବାହାରେ ବ୍ୟାପ୍ତ ହୋଇ ରହିଅଛି । ସେହି ସତ୍ତା ହିଁ ଧରା ପଡ଼ୁଛି ଦେଶ-କାଳ-ନିମିତ୍ତର ଜାଲରେ । ସେହି ଅସୀମ, ଅନାଦି, ଅନନ୍ତ, ଚିରଆନନ୍ଦମୟ, ଚିରମୁକ୍ତ ସଦ୍-ବସ୍ତୁଟି ହିଁ ଆମମାନଙ୍କର ସ୍ୱରୂପ, ପ୍ରକୃତ ମନୁଷ୍ୟ । ଏହି ବାସ୍ତବ ମନୁଷ୍ୟଟି ଗୁଡ଼େଇ ହୋଇ

ରହିଅଛି ଦେଶ-କାଳ-ନିମିତ୍ତ-ଜାଲରେ । ଜଗତର ସମସ୍ତ ଜିନିଷର ମଧ୍ୟ ଏହି ଏକ ଅବସ୍ଥା । ସବୁକିଛିର ସତ୍ୟସ୍ୱରୂପ ହେଉଛି ଏହି ସୀମା-ହୀନ ଅନ୍ତ ତ୍ତ୍ୱ । (ବସ୍ତୁଶୂନ୍ୟ) ବିଜ୍ଞାନବାଦର କଥା ନୁହେଁ ଏସବୁ । ଏ କଥାର ଅର୍ଥ ଏହା ନୁହେଁ ଯେ, ଜଗତର କୌଣସି ଅସ୍ତିତ୍ୱ ନାହିଁ । ସବୁ ପ୍ରକାର ସାଂସାରିକ ବ୍ୟବହାରସିଦ୍ଧି ପାଇଁ ଏହାର ଗୋଟିଏ ଆପେକ୍ଷିକ ସତ୍ତା ଅଛି; କିନ୍ତୁ ଏହାର ଅନ୍ୟନିରପେକ୍ଷ ଅସ୍ତିତ୍ୱ ନାହିଁ । ଦେଶ-କାଳ- ନିମିତ୍ତର ଅତୀତ ପାରମାର୍ଥିକ ସତ୍ତାକୁ ଅବଲମ୍ବନ କରି କେବଳ ଜଗତ୍ ତିଷ୍ଠି ରହିଛି ।

ବିଷୟବସ୍ତୁ ଛାଡ଼ି ମୁଁ ବହୁତ ଦୂରକୁ ଚାଲି ଆସିଲି । ବର୍ତ୍ତମାନ ମୂଳ ବକ୍ତବ୍ୟକୁ ଫେରି ଆସେଁ ।

ଆମମାନଙ୍କର ଜ୍ଞାତସାରରେ ବା ଅଜ୍ଞାତସାରରେ (ଦେହ ମଧ୍ୟରେ) ଯାହା କିଛି ଘଟୁଛି, ସେସବୁ ସ୍ନାୟୁର ମାଧ୍ୟମରେ ପ୍ରାଣଦ୍ୱାରା ସଂଘଟିତ ହେଉଛି । ଆମମାନଙ୍କର ଅଜ୍ଞାତ-ସାରରେ ଯେଉଁସବୁ କାର୍ଯ୍ୟ ଚାଲିଛି, ସେଗୁଡ଼ିକୁ ନିଜର ଆୟତ୍ତରେ ଆଣିପାରିଲେ କେତେ ଭଲ ହେବ କହିଲ !

ଈଶ୍ୱର କାହାକୁ କହନ୍ତି, ମନୁଷ୍ୟ କାହାକୁ କହନ୍ତି, ପୂର୍ବେ ତାହା ତୁମମାନଙ୍କୁ କହିଅଛି । ମନୁଷ୍ୟ ଯେପରି ଗୋଟିଏ ଅସୀମ ବୃତ୍ତ, ଯାହାର ପରିଧିର କୌଣସି ସୀମା ନାହିଁ, କିନ୍ତୁ ଯାହାର କେନ୍ଦ୍ର ଗୋଟିଏ ବିଶେଷ ସ୍ଥାନରେ ନିବଦ୍ଧ । ଆଉ ଈଶ୍ୱର ଯେପରି ଗୋଟିଏ ଅସୀମ ବୃତ୍ତ, ଯାହାର ପରିଧିର କୌଣସି ସୀମା ନାହିଁ, କିନ୍ତୁ ଯାହାର କେନ୍ଦ୍ର ସର୍ବତ୍ର ବିଦ୍ୟମାନ । ଈଶ୍ୱର ସମସ୍ତଙ୍କ ହାତ ମଧ୍ୟ ଦେଇ କାର୍ଯ୍ୟ କରନ୍ତି, ସମସ୍ତଙ୍କ ଆଖି ମଧ୍ୟ ଦେଇ ଦେଖନ୍ତି, ସମସ୍ତଙ୍କ ପାଦ ମଧ୍ୟ ଦେଇ ଚାଲନ୍ତି । ସମସ୍ତଙ୍କ ଶରୀର ଅବଲମ୍ବନ କରି ଶ୍ୱାସ ଗ୍ରହଣ କରନ୍ତି । ସମସ୍ତ ଜୀବନ ଅବଲମ୍ବନ କରି ଜୀବନଧାରଣ କରନ୍ତି । ପ୍ରତ୍ୟେକଙ୍କ ମୁଖ ଦେଇ କଥା କହନ୍ତି ଓ ପ୍ରତ୍ୟେକଙ୍କ ମସ୍ତିଷ୍କର ଭିତର ଦେଇ ଚିନ୍ତା କରନ୍ତି । ମନୁଷ୍ୟ ଯଦି ତାହାର ଆତ୍ମଚେତନାର କେନ୍ଦ୍ର ଅନନ୍ତଗୁଣରେ ବଢ଼ାଇ ଦିଏ, ତେବେ ସେ ଈଶ୍ୱରଙ୍କ ପରି ହୋଇପାରେ । ସମସ୍ତ ବିଶ୍ୱ ଉପରେ ଆଧିପତ୍ୟ ଅର୍ଜନ କରିପାରେ ।

ତେଣୁ ଆମମାନଙ୍କର ଅନୁଧ୍ୟାନର ପ୍ରଧାନ ବିଷୟ ହେଲା—ଚେତନା । ଧରିନିଅ, ଯେପରି ଅନ୍ଧକାର ମଧ୍ୟରେ ଗୋଟିଏ ଆଦିଅନ୍ତହୀନ ରେଖା ରହିଅଛି, ରେଖାଟିକୁ ଆମେମାନେ ଦେଖିପାରୁ ନାହିଁ । କିନ୍ତୁ ତାହା ଉପର ଦେଇ ଗୋଟିଏ ଜ୍ୟୋତିର୍ବିନ୍ଦୁ ସଞ୍ଚରଣ କରୁଅଛି । ରେଖାଟିର ଉପର ଦେଇ ଚାଲିବାବେଳେ ଜ୍ୟୋତିବିନ୍ଦୁଟି ରେଖାର ବିଭିନ୍ନ ଅଂଶଗୁଡ଼ିକୁ ପରେ ପରେ ଆଲୋକିତ କରୁଅଛି, ଆଉ ଯେଉଁ ଅଂଶ ପଛରେ ପଡ଼ିଯାଉଛି, ତାହା ପୁଣି ଅନ୍ଧକାରରେ ମିଶିଯାଉଛି । ଆମମାନଙ୍କର ଚେତନାକୁ ଜ୍ୟୋତିର୍ବିନ୍ଦୁ ସହିତ ତୁଳନା କରାଯାଉ । ବର୍ତ୍ତମାନର ଅନୁଭୂତି ଆସି ଅତୀତର ଅନୁଭୂତିଗୁଡ଼ିକୁ ଘୁଞ୍ଚାଇ ଦେଉଅଛି, ଅଥବା ଅତୀତର ଅନୁଭୂତିଗୁଡ଼ିକ ଅବଚେତନ ଅବସ୍ଥା ପ୍ରାପ୍ତ ହେଉଅଛି । ଆମେମାନେ ଜାଣିପାରୁନାହିଁ ଯେ, ସେଗୁଡ଼ିକ ଆମ ମଧ୍ୟରେ ରହିଅଛି । ସେଗୁଡ଼ିକ ରହିଅଛନ୍ତି ଏବଂ ଅଜ୍ଞାତସାରରେ ଆମମାନଙ୍କ ଦେହମନ ଉପରେ ପ୍ରଭାବ ବିସ୍ତାର କରୁଅଛନ୍ତି ।

ଚେତନାର ସାହାଯ୍ୟ ବ୍ୟତୀତ ଆମମାନଙ୍କ ଅଭ୍ୟନ୍ତରରେ ଯେଉଁସବୁ କାର୍ଯ୍ୟ ବର୍ତ୍ତମାନ ଚାଲୁଅଛି, ସେଗୁଡ଼ିକ ଦିନେ ଆମମାନଙ୍କର ସଜ୍ଞାନରେ ସାଧିତ ହୋଇଥିଲା । ବର୍ତ୍ତମାନ ସ୍ୱୟଂକ୍ରିୟ ହୋଇ ଚାଲିବା ପରେ ଯଥେଷ୍ଟ ପ୍ରେରଣାଶକ୍ତି ସେମାନଙ୍କ ମଧ୍ୟରେ ସଞ୍ଚାରିତ ହୋଇଅଛି ।

ସବୁ ନୀତିଶାସ୍ତ୍ରରେ ମଧ୍ୟ ଏହି ଗୋଟାଏ ବଡ଼ ଧରଣର ଭ୍ରମ ଧରାପଡ଼େ ଯେ, କି ଉପାୟରେ ମନୁଷ୍ୟ ଖରାପ କାର୍ଯ୍ୟ କରିବାରୁ ବିରତ ହେବ, ସେ ଶିକ୍ଷା ନୀତିଶାସ୍ତ୍ରଗୁଡ଼ିକ ମଧ୍ୟରେ ନାହିଁ । ସବୁ ନୀତିଶାସ୍ତ୍ର ଶିକ୍ଷା ଦିଏ, 'ଚୋରି କର ନାହିଁ'—ଅତି ଭଲ କଥା । କିନ୍ତୁ ମଣିଷ ଚୋରି କରେ କାହିଁକି ? ଏହାର କାରଣ ହେଉଛି ସର୍ବକ୍ଷେତ୍ରରେ ଚୋରି ଡକାୟତି ପ୍ରଭୃତି ଖରାପ କାର୍ଯ୍ୟଗୁଡ଼ିକ ସବୁ ଆପେ ଆପେ ଘଟିଥାଏ । ଦାଗୀ, ଚୋର, ଡକାୟତମାନେ, ମିଥ୍ୟାବାଦୀମାନେ, ଅନ୍ୟାୟକାରୀ ନରନାରୀ—ସମସ୍ତେ ହିଁ ନିଜ ନିଜ ଅନିଚ୍ଛାସତ୍ତ୍ୱେ ସେପରି ହୋଇଯାଆନ୍ତି । ଏହା ବାସ୍ତବିକ ମନସ୍ତତ୍ତ୍ୱର ଗୋଟିଏ ବଡ଼ ସମସ୍ୟା । ମନୁଷ୍ୟର ବିଚାର ଆମମାନଙ୍କୁ ଅତି ଉଦାର ସହୃଦୟ ଦୃଷ୍ଟି ଦେଇ କରିବାକୁ ହେବ ।

ଭଲ ହେବା ଏତେ ସହଜ ନୁହେଁ । ମୁକ୍ତିଲାଭର ପୂର୍ବପର୍ଯ୍ୟନ୍ତ ତୁମେ ତ ଗୋଟାଏ ଯନ୍ତ୍ର ମାତ୍ର, ତାହା ଅପେକ୍ଷା ଆଉ ବେଶୀ କ'ଣ ? ନିଜେ ଭଲ ବୋଲି ତୁମର କଅଣ ଗର୍ବ କରିବା ଉଚିତ ? ନିଶ୍ଚୟ ନୁହେଁ । ତୁମେ ଭଲ, କାରଣ ତାହା ନ ହୋଇ ତୁମର ଉପାୟ ନାହିଁ । ଆଉ ଜଣେ ମନ୍ଦ, କାରଣ ମନ୍ଦ ନ ହୋଇ ସେ ମଧ୍ୟ ପାରେ ନାହିଁ । ତାହାର ଅବସ୍ଥାରେ ପଡ଼ିଲେ ତୁମେ ଯେ କଅଣ ହୁଅନ୍ତି, କିଏ ଜାଣେ ? ଦୁଶ୍ଚରିତ୍ରା ନାରୀ ବା ଜେଲଖାନାର ଚୋର ତୁମମାନଙ୍କର ହିତ ପାଇଁ ଯୀଶୁଖ୍ରୀଷ୍ଟଙ୍କ ପରି ବଳିପ୍ରଦତ୍ତ ହେଉଛନ୍ତି, ଯହିଁରେ ତୁମେମାନେ ଭଲ ହେବ । ସାମାଜିକ ଭାରସାମ୍ୟ ରକ୍ଷାର ଧାରା ହେଉଛି ଏହିପରି । ଯେତେ ଚୋର ଓ ଖୁନୀ ଅଛନ୍ତି, ଯେତେ ବିଚାରବୁଦ୍ଧିହୀନ, ଯେତେ ଦୁର୍ବଳତମ ବ୍ୟକ୍ତି, ଯେତେ ପାପିଷ୍ଠ, ଯେତେ ଦାନବପ୍ରକୃତିର ଲୋକ ଅଛନ୍ତି, ମୋର ଦୃଷ୍ଟିରେ ସେମାନେ ସମସ୍ତେ ଜଣେ ଜଣେ ଯୀଶୁ । ଦେବରୂପୀ ଖ୍ରୀଷ୍ଟ ଓ ମାନବରୂପୀ ଖ୍ରୀଷ୍ଟ ଉଭୟ ହିଁ ମୋର ପୂଜ୍ୟ । ଏହା ହିଁ ମୋର ମତ । ଏହାଛଡ଼ା ଅନ୍ୟ ଧାରଣା ମୋ ପକ୍ଷରେ ଅସମ୍ଭବ । ସନ୍ତର ଚରଣରେ, ସାଧୁର ପାଦପଦ୍ମରେ, ଦୁଷ୍ଟର ଚରଣରେ, ଦାନବର ପାଦରେ ମୋର ନମସ୍କାର । ସେମାନେ ସମସ୍ତେ ମୋର ଶିକ୍ଷକ, ମୋର ଧର୍ମଗୁରୁ, ସମସ୍ତେ ମୋର ତ୍ରାଣକର୍ତ୍ତା । କାହାକୁ ହୁଏତ ମୁଁ ଅଭିଶାପ ଦିଏଁ, ତେବେ ମଧ୍ୟ ତାହାର ପତନର ଫଳରେ ଉପକୃତ ହୁଏ । ପୁଣି—ଅନ୍ୟକୁ ହୁଏତ ଆଶୀର୍ବାଦ କରେ, ଆଉ ତାହାର ସତ୍‌କାର୍ଯ୍ୟ ଫଳରେ ଉପକୃତ ହୁଏ । ମୋର ଏଠାରେ ଉପସ୍ଥିତି ଯେତେ ପରିମାଣରେ ସତ୍ୟ, ମୁଁ ଯାହା କହିଲି ତାହା ମଧ୍ୟ ସେତିକି ପରିମାଣରେ ସତ୍ୟ । ପତିତା ନାରୀକୁ ଦେଖି ମୋତେ ନାସିକା କୁଞ୍ଚିତ କରିବାକୁ ହୁଏ, କାରଣ ସମାଜ ତାହା ଚାହେଁ, ଯଦିଓ ସେ ମୋର ତ୍ରାଣକର୍ତ୍ତ୍ରୀ, ଯଦିଓ ତାହାର ପତିତାବୃତ୍ତି ଫଳରେ ଅପର ସ୍ତ୍ରୀଲୋକର ସତୀତ୍ୱ ରକ୍ଷା ହେଉଅଛି । କଥାଟି ଗଭୀର ଭାବରେ ଭାବି ଦେଖ । ସ୍ତ୍ରୀ, ପୁରୁଷ ସମସ୍ତେ ମନେ ମନେ କଥାଟି ଭଲ

ଭାବରେ ବିଚାର କରି ଦେଖ । କଥାଟି ସତ୍ୟ—ନିରାବରଣ, ନିର୍ଭୀକ ସତ୍ୟ । ମୁଁ ଯେତେ ବେଶୀ ଜଗତକୁ ଦେଖୁଅଛି, ଯେତେ ବେଶୀ ନରନାରୀ ସମ୍ପର୍କରେ ଆସୁଅଛି, ମୋର ଏହି ବିଶ୍ୱାସ ସେତେ ଦୃଢ଼ତର ହେଉଅଛି । କାହାକୁ ଦୋଷ ଦେବ ? କାହାକୁ ଅବା ପ୍ରଶଂସା କରିବ ? ସବୁ ବିଷୟର ଦୁଇଟି ଦିଗ ଦେଖିବାକୁ ହେବ ।

ସମ୍ମୁଖରେ ଯେଉଁ କାର୍ଯ୍ୟ ରହିଛି ତାହା ବିପୁଳ । ଆମମାନଙ୍କର ଅବଚେତନ ସ୍ତରରେ ଯେଉଁସବୁ ଅସଂଖ୍ୟ ଚିନ୍ତା ଜୁଡ଼ି ରହିଛି, ଆମମାନଙ୍କର ଜ୍ଞାନନିରପେକ୍ଷ ହୋଇ ସେଗୁଡ଼ିକ ନିଜେ ନିଜେ କାମ କରି ଚାଲିଛନ୍ତି । ସେଗୁଡ଼ିକୁ ସ୍ୱବଶରେ ଆଣିବା ହେଲା ଆମମାନଙ୍କର ସର୍ବପ୍ରଥମ କାର୍ଯ୍ୟ । ଖରାପ କାମଟି ଅବଶ୍ୟ ଚେତନ ସ୍ତରରେ ଘଟେ, କିନ୍ତୁ ଯେଉଁ କାରଣରୁ ଉକ୍ତ କାର୍ଯ୍ୟଟି ଘଟିଲା, ତାହା ଥିଲା ଆମମାନଙ୍କର ଅଗୋଚରରେ, ବହୁ ଦୂରରେ—ଅବଚେତନାର ରାଜ୍ୟରେ । ସେଥିପାଇଁ ତାହାର ଶକ୍ତି ମଧ୍ୟ ଅତି ବେଶୀ ।

ଫଳିତ ମନସ୍ତତ୍ତ୍ୱ ପ୍ରଥମତଃ ଅବଚେତନକୁ ନିୟନ୍ତ୍ରଣାଧୀନ କରିବା କାର୍ଯ୍ୟରେ ସର୍ବଶକ୍ତି ନିୟୋଗ କରେ । ଆଉ ଏହା ଜଣାଶୁଣା କଥା ଯେ, ଆମେମାନେ ତାହାକୁ ଆୟତ୍ତରେ ଆଣିପାରୁ । କାରଣ ଆମେମାନେ ଜାଣୁ ଯେ, ଚେତନା ହିଁ ଅବଚେତନର କାରଣ । ଆମମାନଙ୍କର ଅତୀତର ଯେଉଁ ଲକ୍ଷ ଲକ୍ଷ ଚେତନ ଚିନ୍ତାଗୁଡ଼ିକ ମନ ମଧ୍ୟରେ ଜୁଡ଼ି ରହିଅଛନ୍ତି, ସେହିଗୁଡ଼ିକ ଅବଚେତନ ଚିନ୍ତା । ଅତୀତର ସଜ୍ଞାନ କ୍ରିୟାଗୁଡ଼ିକ ହିଁ ନିଷ୍କ୍ରିୟ ଓ ଅବଚେତନ ରୂପରେ ଥାଏ । ଆମେମାନେ ସେଗୁଡ଼ିକ ଆଡ଼କୁ ଫେରିକରି ଅନାଉଁ ନାହିଁ । ସେଗୁଡ଼ିକୁ ଆମେମାନେ ଚିହ୍ନୁ ନାହିଁ, ସେଗୁଡ଼ିକର କଥା ଆମେମାନେ ଭୁଲିଯାଇଛୁ । କିନ୍ତୁ ମନେରଖ, ଅବଚେତନ ସ୍ତରରେ ଯେପରି ପାପର ଶକ୍ତି ନିହିତ ଅଛି, ସେହିପରି ପୁଣ୍ୟର ଶକ୍ତି ମଧ୍ୟ ନିହିତ ଅଛି । ଆମମାନଙ୍କର ଅନ୍ତରରେ ଅନେକ କିଛି ସଞ୍ଚିତ ଅଛି, ସତେ ଯେପରି ଗୋଟିଏ ଥଳି ମଧ୍ୟରେ ସବୁ ଭର୍ତ୍ତିକରି ରଖା ହୋଇଅଛି । ସେଗୁଡ଼ିକ ବିଷୟରେ (ଆମେମାନେ କେବେହେଁ ଭାବୁ ନାହିଁ) । ଆଉ ତାହା ଭିତରେ ଅନେକ ଚିନ୍ତା ଯାହା ପଚିଯାଇଛି, ପଚ ନିଶ୍ଚିତ ଭାବରେ ବିପଦର କାରଣ ହେଉଛି । ଏହିସବୁ ଅବଚେତନ କାରଣ ହିଁ ସଦାକୁ ଆସି ମାନବସମାଜକୁ ଧ୍ୱଂସ କରେ । ତେଣୁ ଯଥାର୍ଥ ମନସ୍ତତ୍ତ୍ୱର କର୍ତ୍ତବ୍ୟ ହେଲା—ସେଗୁଡ଼ିକୁ ଚେତନାର ଆୟତ୍ତରେ ଆଣିବାକୁ ଚେଷ୍ଟା କରିବା । ଆମ ସମ୍ମୁଖରେ ରହିଅଛି ପୂରା ମଣିଷଟିକୁ ଯେପରି ଜାଗ୍ରତ କରିବାର ବିଶାଳ କର୍ତ୍ତବ୍ୟ, ଯାହାଦ୍ୱାରା ସେ ନିଜର ସର୍ବମୟ କର୍ତ୍ତା ହୋଇପାରେ । ଶରୀର ମଧ୍ୟରେ ଯେଉଁସବୁ ଯନ୍ତ୍ରର କାର୍ଯ୍ୟକୁ ଆମେମାନେ ସ୍ୱୟଂକ୍ରିୟ କହିଥାଉଁ, ଯେପରି ଯକୃତର କ୍ରିୟା, ସେଗୁଡ଼ିକୁ ମଧ୍ୟ ଆମର ଇଚ୍ଛାଧୀନ କରାଯାଇପାରେ ।

ଏ ବିଷୟରେ ତର୍କର ପ୍ରଥମ ଅଂଶ ହେଲା ଅବଚେତନକୁ ନିୟନ୍ତ୍ରଣ କରିବା । ପରବର୍ତ୍ତୀ ଅଂଶ ହେଲା ଚେତନାର ଅନ୍ୟ ପାଖକୁ ମଧ୍ୟ ଚାଲିଯିବା । ଅବଚେତନର କାର୍ଯ୍ୟ ଯେପରି ଚେତନାର ନିମ୍ନସ୍ତରରେ ହୁଏ, ସେହିପରି ଆଉ ଏକପ୍ରକାର କାର୍ଯ୍ୟ ହୁଏ ଚେତନାର

ଊର୍ଦ୍ଧ୍ୱରେ, ଅତିଚେତନ ସ୍ତରରେ। ଏହି ଅତିଚେତନ ଅବସ୍ଥାରେ ପହଞ୍ଚିଲେ ମନୁଷ୍ୟ ମୁକ୍ତ ହୁଏ ଓ ଦେବତ୍ୱ ଲାଭ କରେ। ମୃତ୍ୟୁ ଅମରତ୍ୱରେ ରୂପାନ୍ତରିତ ହୁଏ, ଦୁର୍ବଳତା ଅନନ୍ତଶକ୍ତିର ରୂପ ନିଏ ଏବଂ ଲୌହଶୃଙ୍ଖଳ ପର୍ଯ୍ୟବସିତ ହୁଏ ମୁକ୍ତିରେ। ଅତିଚେତନର ଏହି ସୀମାହୀନ ରାଜ୍ୟ ହିଁ ଆମମାନଙ୍କର ଲକ୍ଷ୍ୟ। ଚେଷ୍ଟା ପରିଷ୍କାର ବୁଝାଯାଉଅଛି ଯେ, କାମଟିକୁ ଦୁଇ ଭାଗରେ ବିଭକ୍ତ କରିବାକୁ ହେବ। ପ୍ରଥମତଃ ଇଡ଼ା ଓ ପିଙ୍ଗଳା ନାମକ ଯେଉଁ ଦୁଇଟି ସାଧାରଣ ସ୍ନାୟବିକ ପ୍ରବାହ ଅଛି, ସେଗୁଡ଼ିକୁ ଠିକ୍ ଭାବରେ ଚଳାଇ ଅବଚେତନ କ୍ରିୟାଗୁଡ଼ିକୁ ଆୟତ୍ତରେ ଆଣିବାକୁ ହେବ, ଦ୍ୱିତୀୟତଃ ଚେତନାକୁ ମଧ୍ୟ ଊର୍ଦ୍ଧ୍ୱକୁ ଉଠାଇବାକୁ ହେବ।

ଶାସ୍ତ୍ରରେ ଅଛି, ଆତ୍ମସମାହିତ ହେବା ପାଇଁ ସୁଦୀର୍ଘ ପ୍ରଚେଷ୍ଟାର ଫଳରେ ଯେ ଏହି ସତ୍ୟରେ ପହଞ୍ଚିଅଛନ୍ତି, ସେ ହିଁ ଯୋଗୀ। ଏହି ଅବସ୍ଥାରେ ସୁଷୁମ୍ନା-ଦ୍ୱାର ଖୋଲିଯାଏ। ସୁଷୁମ୍ନା ମଧ୍ୟରେ ସେତେବେଳେ ଗୋଟିଏ ପ୍ରବାହ ପ୍ରବେଶ କରେ। ଇତି ପୂର୍ବରୁ ଏହି ନୂତନ ପଥରେ କୌଣସି ପ୍ରବାହ ପ୍ରବେଶ କରି ନାହିଁ। ପ୍ରବାହଟି କ୍ରମଶଃ ଉପର ଆଡ଼କୁ ଉଠୁଥାଏ ଏବଂ ବିଭିନ୍ନ ପଦ୍ମଗୁଡ଼ିକ (ମେରୁଦଣ୍ଡର ଅଭ୍ୟନ୍ତରରେ ସୁଷୁମ୍ନାର କେନ୍ଦ୍ରଗୁଡ଼ିକୁ ଯୋଗଶାସ୍ତ୍ରର ଭାଷାରେ ପଦ୍ମ ବୋଲି କୁହାଯାଏ) ଅତିକ୍ରମ କରି ଅବଶେଷରେ ମସ୍ତିଷ୍କରେ ଆସି ପହଞ୍ଚେ। ଯୋଗୀ ସେତେବେଳେ ନିଜର ଯଥାର୍ଥ ସ୍ୱରୂପ—ଭଗବତ ସତ୍ତା ଉପଲବ୍ଧି କରନ୍ତି।

ନିର୍ବିଶେଷ ଭାବରେ ଆମେମାନେ ସମସ୍ତେ ଯୋଗର ଏହି ଚରମ ଅବସ୍ଥା ଲାଭ କରିପାରୁ। ଯଦି କେହି ଏହି ସତ୍ୟ ଲାଭ କରିବାକୁ ଇଚ୍ଛୁକ, ତାହାହେଲେ କେବଳ ବକ୍ତୃତା ଶୁଣିଲେ କିମ୍ବା କିଛିଟା ପ୍ରାଣାୟାମ ଅଭ୍ୟାସ କଲେ ଚଳିବ ନାହିଁ। ପ୍ରସ୍ତୁତି ଉପରେ କେବଳ ସବୁକିଛି ନିର୍ଭର କରେ। ଟିକିଏ ଆଲୁଅ ଜାଳିବାକୁ କେତେ ସମୟ ଲାଗେ ? ମାତ୍ର ଏକ ସେକେଣ୍ଡ। କିନ୍ତୁ ବତୀଟିକୁ ପ୍ରସ୍ତୁତ କରିବାକୁ କେତେ ସମୟ ଯାଏ ? ଦିନରେ ପ୍ରଧାନ ଭୋଜନଟି କରିବାକୁ ଅବା କେତେ ସମୟ ଲାଗେ ? ବୋଧହୁଏ ଅଧଘଣ୍ଟାରୁ ବେଶୀ ଦରକାର ହୁଏ ନାହିଁ। କିନ୍ତୁ ଖାଦ୍ୟସାମଗ୍ରୀ ପ୍ରସ୍ତୁତ କରିବା ପାଇଁ କେତେକ ଘଣ୍ଟା ସମୟର ପ୍ରୟୋଜନ ? ଏକ ସେକେଣ୍ଡ ମଧ୍ୟରେ ଆଲୁଅ ଜାଳିବାକୁ ଆମେମାନେ ଚାହୁଁ; କିନ୍ତୁ ଆମେମାନେ ଭୁଲିଯାଉଁ ଯେ ବତୀଟି ପ୍ରସ୍ତୁତ କରିବା ହେଲ ପ୍ରଧାନ କାର୍ଯ୍ୟ।

ଲକ୍ଷ୍ୟଲାଭ ଏତେ କଠିନ ହେଲେ ମଧ୍ୟ ତାହା ପାଇଁ ଆମର କ୍ଷୁଦ୍ରତମ ପ୍ରଚେଷ୍ଟା ମଧ୍ୟ ବୃଥା ହୁଏ ନାହିଁ। ଆମେମାନେ ଜାଣୁ, କିଛି ଲୁପ୍ତ ହୁଏ ନାହିଁ। ଗୀତାରେ ଅର୍ଜୁନ ଶ୍ରୀକୃଷ୍ଣଙ୍କୁ ପ୍ରଶ୍ନ କଲେ, "ଏ ଜନ୍ମରେ ଯେଉଁମାନେ ଯୋଗସାଧନାରେ ସିଦ୍ଧିଲାଭ କରି ନ ପାରିଲେ, ସେମାନେ କଅଣ ଛିନ୍ନ ମେଘ ପରି ବିନଷ୍ଟ ହୋଇଯାଆନ୍ତି ?" ଶ୍ରୀକୃଷ୍ଣ ଉତ୍ତର ଦେଲେ, "ସଖା, ଏ ଜଗତରେ କିଛି ଲୁପ୍ତ ହୁଏ ନାହିଁ। ମଣିଷ ଯାହା କିଛି କରେ, ତାହା ତାହାର ହିଁ ରହିଯାଏ। ଏ ଜନ୍ମରେ ଯୋଗର ଫଳ ଲାଭ କରି ନ ପାରିଲେ ବି ପରଜନ୍ମରେ ସେ ସେହି ଭାବରେ ଚାଲିବାକୁ ଆରମ୍ଭ କରେ।" ଏକଥା ଯଦି ଆମେମାନେ ନ ମାନିବା, ବୁଦ୍ଧ, ଶଙ୍କର

ପ୍ରଭୃତିଙ୍କର ବାଲ୍ୟାବସ୍ଥାର ବ୍ୟାଖ୍ୟା କରିବା କିପରି ?

ପ୍ରାଣାୟାମ, ଆସନ—ଏଗୁଡ଼ିକ ଯୋଗର ସହାୟକ, ଏହା ନିଃସନ୍ଦେହ; କିନ୍ତୁ ଏଗୁଡ଼ିକ ହେଲା ଦୈହିକ । ବଡ଼ ପ୍ରସ୍ତୁତି ହେଉଛି ମନର କ୍ଷେତ୍ରରେ । ତାହା ପାଇଁ ଆବଶ୍ୟକ ହେଉଛି ପ୍ରଥମେ ଶାନ୍ତ ସମାହିତ ଜୀବନ ।

ଯୋଗୀ ହେବାର ଇଚ୍ଛା ଥିଲେ ସ୍ୱାଧୀନ ହେବାକୁ ହେବ ଏବଂ ଏପରି ଏକ ପରିବେଶ ମଧ୍ୟରେ ନିଜକୁ ରଖିବାକୁ ହେବ, ଯେଉଁଠାରେ ତୁମେ ଏକାକୀ ଓ ସର୍ବବିଧ ଉଦ୍‌ବେଗରୁ ମୁକ୍ତ । ଯେ ଆରାମପ୍ରଦ ସୁଖର ଜୀବନ ଚାହେଁ, ପୁଣି ତାହାସାଙ୍ଗକୁ ଆତ୍ମଜ୍ଞାନ ଲାଭ କରିବାକୁ ଚାହେଁ, ତାହାର ଅବସ୍ଥା ସେହି ମୂର୍ଖପରି, ଯିଏ କାଠଖଣ୍ଡ ବୋଲି ଭ୍ରମରେ ମନେ କରି ଗୋଟିଏ କୁମ୍ଭୀରକୁ କୁଣ୍ଢାଇ ଧରି ନଦୀ ପାରହେବାକୁ ଚାହେଁ । 'ପ୍ରଥମେ ଈଶ୍ବରଙ୍କ ରାଜ୍ୟର ଅନୁସନ୍ଧାନ କର, ତାହାହେଲେ ସବୁକିଛି ତୁମ ପାଖକୁ ଆସିଯିବ ।' ଏହା ହିଁ ସର୍ବୋତ୍ତମ କର୍ତ୍ତବ୍ୟ, ଏହା ହିଁ ବୈରାଗ୍ୟ । ଗୋଟିଏ ଆଦର୍ଶ ପାଇଁ ଜୀବନ ଉତ୍ସର୍ଗ କର । ଆଉ ଅନ୍ୟ କିଛି ଯେପରି ମନରେ ସ୍ଥାନ ନ ପାଏ । ଯାହାର କୌଣସି କାଳରେ ବିନାଶ ନାହିଁ, ତାହାକୁ ଅର୍ଥାତ୍ ଆମମାନଙ୍କର ଆଧ୍ୟାତ୍ମିକ ପରିପୂର୍ଣ୍ଣତାକୁ ପାଇବା ପାଇଁ ଯେପରି ଆମେମାନେ ସର୍ବପ୍ରକାର ଶକ୍ତି ନିୟୋଗ କରୁଁ । ଅନୁଭୂତି-ଲାଭ ପାଇଁ ଆନ୍ତରିକ ଆକାଙ୍‌କ୍ଷା ଥିଲେ ଆମମାନଙ୍କୁ ଲଢ଼ିବାକୁ ହେବ, ସେହି ଚେଷ୍ଟାଦ୍ୱାରା ଆମେମାନେ ଉନ୍ନତ ହେବା । ଅନେକ ଭୁଲଭ୍ରାନ୍ତି ହେବ, କିନ୍ତୁ ସେହିଗୁଡ଼ିକ ହୁଏତ ଭୁଲର ଛଦ୍ମବେଶରେ ଆମମାନଙ୍କର କଲ୍ୟାଣ-ସାଧନର ଦେବଦୂତରୂପେ କାର୍ଯ୍ୟ କରିବେ ।

ଧ୍ୟାନ ହିଁ ଆଧ୍ୟାତ୍ମିକ ଜୀବନର ସର୍ବାପେକ୍ଷା ଅଧିକ ସହାୟକ । ଧ୍ୟାନ ସମୟରେ ଆମେମାନେ ସର୍ବବିଧ ଜାଗତିକ ବନ୍ଧନରୁ ମୁକ୍ତ ହୋଇ ଏବଂ ନିଜର ଭାଗବତ ସ୍ୱରୂପ ଉପଲବ୍‌ଧିକରୁ । ଧ୍ୟାନ ବେଳେ ଆମେମାନେ କୌଣସି ବାହ୍ୟ ସହାୟତା ଉପରେ ନିର୍ଭର କରୁ ନାହିଁ । ଆତ୍ମାର ସ୍ପର୍ଶରେ ମଳିନତମ ସ୍ଥାନଗୁଡ଼ିକ ମଧ୍ୟ ଉଜ୍ଜ୍ୱଳତମ ବର୍ଣ୍ଣର ଆଭାରେ ଉଦ୍‌ଭାସିତ ହୋଇପାରେ, ଜଘନ୍ୟତମ ବସ୍ତୁ ମଧ୍ୟ ସୁରଭିମଣ୍ଡିତ ହୋଇପାରେ, ପିଶାଚ ମଧ୍ୟ ଦେବତାରେ ପରିଣତ ହୋଇପାରେ । ସେତେବେଳେ ସବୁ ଶତ୍ରୁଭାବ, ସବୁ ସ୍ୱାର୍ଥ ଶୂନ୍ୟରେ ଲୀନ ହୋଇଯାଏ । ଦେହବୋଧ ଯେତେ କମ୍ ଆସେ ସେତେ ଭଲ । କାରଣ ଦେହ ହିଁ ଆମମାନଙ୍କୁ ତଳକୁ ଟାଣିଆଣେ । ଦେହ ପ୍ରତି ଆସକ୍ତି ପାଇଁ, ଦେହାତ୍ମବୋଧ ପାଇଁ ଆମମାନଙ୍କର ଜୀବନ ଦୁର୍ବିସହ ହୋଇଯାଏ । ଏହା ହିଁ ହେଉଛି ରହସ୍ୟ—ଚିନ୍ତା କରିବାକୁ ହେବ —ମୁଁ ଦେହ ନୁହେଁ, ମୁଁ ଆତ୍ମା; ଭାବିବାକୁ ହେବ—ସମଗ୍ର ବିଶ୍ୱ ଏବଂ ତତ୍‌ସଂଶ୍ଳିଷ୍ଟ ଯାହା କିଛି ସବୁ, ତାହାର ଭଲମନ୍ଦ ସବୁ ହେଉଛି ତା'ପରକୁ ତା'ପରକୁ ସଜା ହୋଇଥିବା କେତେଗୁଡ଼ିଏ ଛବିପରି, ପଟରେ ଅଙ୍କିତ ଦୃଶ୍ୟଗୁଡ଼ିକ ପରି, ମୁଁ ତାହାର ସାକ୍ଷୀସ୍ୱରୂପ ଦ୍ରଷ୍ଟା ।

# ରାଜଯୋଗ ପ୍ରସଙ୍ଗରେ

ଯୋଗର ପ୍ରଥମ ସୋପାନ ଯମ ।

ଯମ ଆୟତ୍ତ କରିବାକୁ ପାଞ୍ଚୋଟି ବିଷୟର ପ୍ରୟୋଜନ—

୧ । କାୟମନୋବାକ୍ୟରେ କାହାରିକୁ ହିଂସା ନ କରିବା ।

୨ । କାୟମନୋବାକ୍ୟରେ ସତ୍ୟ କଥା କହିବା ।

୩ । କାୟମନୋବାକ୍ୟରେ ଲୋଭ ନ କରିବା ।

୪ । କାୟମନୋବାକ୍ୟରେ ପରମ ପବିତ୍ରତା ରକ୍ଷା କରିବା ।

୫ । କାୟମନୋବାକ୍ୟରେ ଅପାପବିଦ୍ଧତା ।

ପବିତ୍ରତା ଶ୍ରେଷ୍ଠ ଶକ୍ତି । ଏହା ନିକଟରେ ସବୁକିଛି ନିସ୍ତେଜ । ତା'ପରେ 'ଆସନ' ବା ସାଧକର ବସିବାର ଭଙ୍ଗୀ । ଆସନ ଦୃଢ଼ ହେବା ଦରକାର ଏବଂ ମୁଣ୍ଡ ଓ ପଞ୍ଜର ଏବଂ ଦେହ ଋଜୁ ଓ ସରଳରେଖାରେ ଅବସ୍ଥିତ ହେବ । ମନେ ମନେ ଚିନ୍ତା କର, ତୁମର ଆସନ ଦୃଢ଼, କୌଣସି ବିଷୟ ତୁମକୁ ଟଳାଇପାରିବ ନାହିଁ । ଅତଃପର ଚିନ୍ତା କର, ମୁଣ୍ଡରୁ ପାଦ ପର୍ଯ୍ୟନ୍ତ ଟିକିଏ ଟିକିଏ କରି ତୁମର ସମଗ୍ର ଦେହ ବିଶୁଦ୍ଧ ହେଉଅଛି । ଚିନ୍ତା କର—ଶରୀର ସ୍ଫଟିକ ପରି ସ୍ୱଚ୍ଛ, ଜୀବନସମୁଦ୍ର ପାରି ହେବା ପାଇଁ ଏହା ଗୋଟିଏ ନିଖୁଣ ଶକ୍ତ ଭେଳା ।

ଈଶ୍ୱରଙ୍କ ପାଖରେ, ଜଗତର ସମସ୍ତ ମହାପୁରୁଷ, ତ୍ରାଣକର୍ତ୍ତା ଏବଂ ପବିତ୍ରାତ୍ମାମାନଙ୍କ ନିକଟରେ ପ୍ରାର୍ଥନା କର, ସେମାନେ ଯେପରି ତୁମକୁ ସାହାଯ୍ୟ କରନ୍ତି । ତା'ପରେ ଅଧଘଣ୍ଟା ଯାଏଁ ପ୍ରାଣାୟାମ ଅର୍ଥାତ୍ ପୂରକ, କୁମ୍ଭକ ଓ ରେଚକ ଅଭ୍ୟାସ କର ଏବଂ ଶ୍ୱାସ-ପ୍ରଶ୍ୱାସ ସହିତ ମନେ ମନେ ଓଁ ଶବ୍ଦ ଉଚ୍ଚାରଣ କର । ଏହି ଆଧ୍ୟାତ୍ମିକ ଶବ୍ଦର ଅଦ୍ଭୁତ ଶକ୍ତି ଅଛି ।

ଯୋଗର ଅନ୍ୟାନ୍ୟ ସ୍ତର (୧) ପ୍ରତ୍ୟାହାର ଅର୍ଥାତ୍ ସମସ୍ତ ବାହ୍ୟ ବିଷୟରୁ ଇନ୍ଦ୍ରିୟଗୁଡ଼ିକୁ ସଂଯତ କରି ସମ୍ପୂର୍ଣ୍ଣରୂପରେ ମାନସିକ ଧାରଣା ଦିଗରେ ପରିଚାଳିତ କରିବା । (୨) ଧାରଣା ଅର୍ଥାତ୍ ଅବିଚଳିତ ଏକାଗ୍ରତା, (୩) ଧ୍ୟାନ ଅର୍ଥାତ୍ ପ୍ରଗାଢ଼ ଚିନ୍ତା (୪) ସମାଧି ଅର୍ଥାତ୍ ( ଶୁଦ୍ଧ ଧ୍ୟାନ ) ରୂପବର୍ଜିତ ଧ୍ୟାନ । ଏହା ଯୋଗର ସର୍ବୋଚ୍ଚ ଓ ଶେଷ ସ୍ତର । ପରମାତ୍ମାଙ୍କ ନିକଟରେ ସମସ୍ତ ଚିନ୍ତା-ଭାବନାର ନିରୋଧର ନାମ 'ସମାଧି'— ଯେଉଁ ଅବସ୍ଥାରେ ଉପଲବ୍ଧି ହୁଏ, 'ମୁଁ ଓ ମୋର ପିତା ଏକ' । ଥରେ ଗୋଟିଏ କାମ କରିବ, ଏବଂ ତାହା କରିବା ବେଳେ ଅନ୍ୟ ସବୁ କାର୍ଯ୍ୟ ପରିତ୍ୟାଗ କରି ସେଥିରେ ସମଗ୍ର ମନକୁ ଅର୍ପଣ କରିବ ।

# ରାଜଯୋଗ ଶିକ୍ଷା

( ଇଂଲଣ୍ଡର ଶିକ୍ଷାର୍ଥୀମାନଙ୍କ ନିକଟରେ ପ୍ରଦତ୍ତ ବକ୍ତୃତାରୁ ସଂଗୃହୀତ )

## ପ୍ରାଣ

ପଦାର୍ଥ (ଜଡ଼ ପ୍ରକୃତି) ପାଞ୍ଚ ପ୍ରକାର ଅବସ୍ଥାର ଅଧୀନ । ଆକାଶ, ଆଲୋକ, ବାଷ୍ପୀୟ, ତରଳ ଓ କଠିନ—କ୍ଷିତି, ଅପ୍, ତେଜ, ମରୁତ୍, ବ୍ୟୋମ—ଏହା ହିଁ ସୃଷ୍ଟିତତ୍ତ୍ୱ । ଅତି ସୂକ୍ଷ୍ମ ବାୟୁ ପରି ଆଦି ପଦାର୍ଥରୁ ଏମାନଙ୍କର ଉଦ୍‌ଭବ ।

ବିଶ୍ୱର ଅନ୍ତର୍ଗତ ତେଜ (ବା ଶକ୍ତି) 'ପ୍ରାଣ' ନାମରେ ଅଭିହିତ—ତାହା ହିଁ ଏହି ଉପାଦାନଗୁଡ଼ିକ (ପଞ୍ଚଭୂତ) ମଧ୍ୟରେ ଶକ୍ତିରୂପରେ ବିଦ୍ୟମାନ । ପ୍ରାଣଶକ୍ତିର ବ୍ୟବହାର ନିମନ୍ତେ ମନ ହେଲା ମହାଯନ୍ତ୍ର-ସ୍ୱରୂପ । ମନ ଜଡ଼ାତ୍ମକ । ମନର ପଶ୍ଚାତ୍‌ରେ ଅବସ୍ଥିତ ଆତ୍ମା ହିଁ ପ୍ରାଣ ଉପରେ ଆଧିପତ୍ୟ ବିସ୍ତାର କରେ । ପ୍ରାଣ ଜଗତର ପରିଚାଳକ ଶକ୍ତି, ଜୀବନର ପ୍ରତ୍ୟେକଟି ବିକାଶ ମଧ୍ୟରେ ପ୍ରାଣଶକ୍ତି ଦୃଷ୍ଟ ହୁଏ । ଦେହ ନଶ୍ୱର, ମନ ମଧ୍ୟ ନଶ୍ୱର; ଉଭୟ ଯୌଗିକ ପଦାର୍ଥ ହୋଇଥିବାରୁ ବିନାଶପ୍ରାପ୍ତ ନିଶ୍ଚୟ ହେବ । ଏସମସ୍ତ ପଛରେ ଅଛି ଅବିନାଶୀ ଆତ୍ମା । ଶୁଦ୍ଧବୋଧସ୍ୱରୂପ ଆତ୍ମା ପ୍ରାଣର ନିୟାମକ ଓ ପରିଚାଳକ । କିନ୍ତୁ ଯେଉଁ ବୁଦ୍ଧି ଆମମାନଙ୍କ ଚତୁର୍ଦ୍ଦିଗରେ ଆମେ ଦେଖୁଁ ତାହା ସର୍ବଦା ଅପୂର୍ଣ୍ଣ । ଏହି ବୋଧ ପୂର୍ଣ୍ଣତା ଲାଭ କଲେ ଯୀଶୁଖ୍ରୀଷ୍ଟାଦି ଅବତାରମାନଙ୍କର ଆବିର୍ଭାବ ହୁଏ । ବୁଦ୍ଧି ସର୍ବଦା ନିଜକୁ ପ୍ରକାଶ କରିବା ପାଇଁ ଚେଷ୍ଟା କରୁଅଛି ଏବଂ ତାହା ପାଇଁ ଉନ୍ନତର ବିଭିନ୍ନ ସ୍ତରର ମନ ଓ ଦେହ ସୃଷ୍ଟି କରୁଅଛି । ସବୁ ବସ୍ତୁର ପଶ୍ଚାତ୍‌ରେ—ଯଥାର୍ଥ ସତ୍ତାରେ ସବୁ ପ୍ରାଣୀ ହିଁ ସମାନ । ମନ ଅତି ସୂକ୍ଷ୍ମ ପଦାର୍ଥ, ତାହା ପ୍ରାଣଶକ୍ତି-ପ୍ରକାଶର ଯନ୍ତ୍ରସ୍ୱରୂପ । ଶକ୍ତିର ବହିଃପ୍ରକାଶ ପାଇଁ ପଦାର୍ଥର ପ୍ରୟୋଜନ ।

ପରବର୍ତ୍ତୀ ପ୍ରଶ୍ନ ହେଲା—ପ୍ରାଣକୁ କିପରି ବ୍ୟବହାର କରିବାକୁ ହେବ । ଆମେମାନେ ସମସ୍ତେ ପ୍ରାଣକୁ ବ୍ୟବହାର କରିଥାଉଁ; କିନ୍ତୁ କି ଶୋଚନୀୟ ଭାବରେ ତାହାର ଅପଚୟ ଘଟେ ? ପ୍ରସ୍ତୁତିର ସ୍ତରରେ ପ୍ରଥମ ନୀତି ହେଲା ସମୁଦାୟ ଜ୍ଞାନ ହିଁ ଅଭିଜ୍ଞତା-ପ୍ରସୂତ । ପଞ୍ଚେନ୍ଦ୍ରିୟ ବାହାରେ ଯାହା କିଛି ବିଦ୍ୟମାନ, ଆମମାନଙ୍କ ନିକଟରେ ସତ୍ୟ ବୋଲି ପ୍ରତିପନ୍ନ ହେବା ପାଇଁ ତାହାକୁ ଉପଲବ୍ଧି କରିବାକୁ ହେବ ।

ଅବଚେତନ, ଚେତନ ଓ ଅତିଚେତନ—ଏହି ତିନୋଟି ସ୍ତରରେ ଆମମାନଙ୍କ ମନ କ୍ରିୟା କରେ । ଯୋଗୀ ହିଁ କେବଳ ଅତିଚେତନ ମନର ଅଧିକାରୀ । ଯୋଗର ମୂଳତତ୍ତ୍ୱ ହେଲା, ମନର ଊର୍ଦ୍ଧ୍ୱକୁ ଗମନ କରିବା । ଆଲୋକ କିମ୍ବା ଶବ୍ଦର ସ୍ପନ୍ଦନମାତ୍ରା ଅନୁଯାୟୀ ଏହି ତିନୋଟି ସ୍ତରର ବିଷୟ ଆମେ ଅବଗତ ହେଉ । ଆଲୋକର ଢେଉଗୁଡ଼ିଏ ସ୍ପନ୍ଦନ ଏତେ ମନ୍ଥର ଯେ, ସହଜରେ ତାହା ଦୃଷ୍ଟିଗୋଚର ହୁଏ ନାହିଁ । ସ୍ପନ୍ଦନ-ମାତ୍ରା

ଦ୍ରୁତ ହୋଇ ଆମମାନଙ୍କ ନିକଟରେ ଆଲୋକରୂପରେ ପ୍ରତିଭାତ ହୁଏ । ତା'ପରେ ସ୍ପନ୍ଦନର ବେଗ ଏତେ ଦ୍ରୁତ ହୁଏ ଯେ, ତାହା ଆଉ ଆମମାନଙ୍କର ଦୃଷ୍ଟିଗୋଚର ହୁଏ ନାହିଁ । ଶବ୍ଦ ସମ୍ବନ୍ଧରେ ମଧ୍ୟ ସେହିପରି ଘଟିଥାଏ ।

ସ୍ୱାସ୍ଥ୍ୟର କୌଣସି କ୍ଷତି ନ କରି କିପରି ଇନ୍ଦ୍ରିୟାତୀତ ହୋଇପାରିବା, ତାହା ଆମମାନଙ୍କୁ ଶିଖିବାକୁ ହେବ । କେତେଗୁଡ଼ିଏ ଯୌଗିକ କ୍ଷମତା ଆୟତ୍ତ କରିବାକୁ ଯାଇ ପାଶ୍ଚାତ୍ୟ ମନ ବାଧାପ୍ରାପ୍ତ ହୋଇଛି । ଫଳରେ ସେହି ଶକ୍ତିଗୁଡ଼ିକ ସେମାନଙ୍କ ମଧ୍ୟରେ ଅସ୍ୱାଭାବିକ ରୂପରେ ପ୍ରକାଶ ପାଏ ଏବଂ ପ୍ରାୟ ବ୍ୟାଧିର ଆକାର ଧାରଣ କରେ । ହିନ୍ଦୁମାନେ ବିଜ୍ଞାନର ଏହି ବିଷୟଟିକୁ ଅନୁଶୀଳନପୂର୍ବକ ନିର୍ଦ୍ଦୋଷ କରିଅଛନ୍ତି । ବର୍ତ୍ତମାନ ସମୟରେ କୌଣସି ଭୟ ବା ବିପଦର ଆଶଙ୍କା ନ କରି ତାହା ଚର୍ଚ୍ଚା କରିପାର ।

ଅତିଚେତନ ଅବସ୍ଥାର ଗୋଟିଏ ସୁନ୍ଦର ପ୍ରମାଣ ହେଲା ମନରେ ଆରୋଗ୍ୟ-ବିଧାନ । କାରଣ—ଯେଉଁ ଚିନ୍ତା ଆରୋଗ୍ୟ ସମ୍ପାଦନ କରେ, ତାହା ପ୍ରାଣର ଏକପ୍ରକାର ସ୍ପନ୍ଦନ ଏବଂ ତାହାକୁ ଠିକ୍ ଚିନ୍ତା କୁହାଯାଇପାରିବ ନାହିଁ, କିନ୍ତୁ ଚିନ୍ତା ଅପେକ୍ଷା ଉଚ୍ଚସ୍ତରର ଏପରି କିଛି—ଯାହାର ନାମ ଆମମାନଙ୍କୁ ଜଣା ନାହିଁ ।

ପ୍ରତ୍ୟେକ ଚିନ୍ତାର ତିନୋଟି ଅବସ୍ଥା ଅଛି । ପ୍ରଥମତଃ ଚିନ୍ତାର ଉଦୟ ଅଥବା ଆରମ୍ଭ—ଯାହା ସମ୍ବନ୍ଧରେ ଆମେମାନେ ସଚେତନ ନୋହୁଁ । ଦ୍ୱିତୀୟତଃ ଚିନ୍ତା ଯେତେବେଳେ ମନର ଉପରିଭାଗକୁ ଆସେ, ତୃତୀୟତଃ ଯେତେବେଳେ ଚିନ୍ତା ଆମମାନଙ୍କ ପାଖରୁ ସଞ୍ଚାରିତ ହୁଏ । ଚିନ୍ତା ପାଣିର ଉପରିଭାଗରେ ଅବସ୍ଥିତ ବୁଦ୍‌ବୁଦ ପରି । ଚିନ୍ତା ଇଚ୍ଛା ସହିତ ଯୁକ୍ତ ହେଲେ ତାହାକୁ ଆମେମାନେ 'ଶକ୍ତି' ବୋଲି କହୁ । ଯେଉଁ ସ୍ପନ୍ଦନଦ୍ୱାରା ତୁମେ ପୀଡ଼ିତ ବ୍ୟକ୍ତିକୁ ନିରୋଗ କରିବାକୁ ଚାହଁ, ତାହା ଚିନ୍ତା ନୁହେଁ—'ଶକ୍ତି' । ଯେଉଁ ମାନବାତ୍ମା ସମସ୍ତଙ୍କ ମଧ୍ୟରେ ଅନୁସ୍ୟୂତ, ସଂସ୍କୃତରେ ତାହାଙ୍କୁ 'ସୂତ୍ରାତ୍ମା' ବୋଲି ନିର୍ଦ୍ଦେଶ କରାହୁଏ ।

ପ୍ରାଣର ଶେଷ ଓ ସର୍ବୋତ୍ତମ ପ୍ରକାଶ ହେଲା 'ପ୍ରେମ' । ଯେଉଁ ମୁହୂର୍ତ୍ତରେ ତୁମେ ପ୍ରାଣରୁ ପ୍ରେମ ଉତ୍ପନ୍ନ କରିବାକୁ ସମର୍ଥ ହେବ, ସେତେବେଳେ କେବଳ ତୁମେ ମୁକ୍ତ । ଏହି ପ୍ରେମ ଲାଭ କରିବା ହିଁ ସର୍ବାପେକ୍ଷା କଠିନ ଓ ମହତ୍ କାର୍ଯ୍ୟ । ଅପରର ଦୋଷ ଦେଖ ନାହିଁ, ନିଜକୁ ହିଁ ସମାଲୋଚନା କରିବା ଉଚିତ । ମାତାଲକୁ ଦେଖି ନିନ୍ଦା କର ନାହିଁ । ମନେରଖ ମାତାଲ ତୁମର ଆଉ ଗୋଟିଏ ରୂପ । ଯାହାର ନିଜ ମଧ୍ୟରେ ମଳିନତା ନାହିଁ, ସେ ଅପର ମଧ୍ୟରେ ମଳିନତା ଦେଖେ ନାହିଁ । ତୁମ ନିଜ ଭିତରେ ଯାହା ଅଛି, ତାହା ହିଁ ତୁମେ ଅପର ମଧ୍ୟରେ ଦେଖିଥାଅ । ସଂସ୍କାର-ସାଧନାର ଏହା ହିଁ ସୁନିଶ୍ଚିତ ପନ୍ଥା । ଯେଉଁସବୁ ସଂସ୍କାରକମାନେ ଅନ୍ୟର ଦୋଷ ଦର୍ଶନ କରନ୍ତି, ସେମାନେ ନିଜେ ଯଦି ଦୋଷାବହ କାର୍ଯ୍ୟ ବନ୍ଦ କରନ୍ତି, ତେବେ ଜଗତ ଆହୁରି ଭଲ ହୋଇଯିବ । ନିଜ ମଧ୍ୟରେ ଏହି ଭାବ ପୁନଃ ପୁନଃ ଧାରଣା କରିବାକୁ ଚେଷ୍ଟା କର ।

## ଯୋଗ-ସାଧନା

ଶରୀରର ଯଥାଶକ୍ତି ଯତ୍ନ ନେବା କର୍ତ୍ତବ୍ୟ । ଆସୁରିକ-ଭାବାପନ୍ନ ବ୍ୟକ୍ତିମାନେ ଦେହର ପୀଡ଼ନ କରନ୍ତି । ମନକୁ ସର୍ବଦା ପ୍ରଫୁଲ୍ଲ ରଖିବ । ବିଷଣ୍ଣଭାବ ଆସିଲେ ପଦାଘାତ କରି ତାହାକୁ ଦୂର କରିଦିଅ । ଯୋଗୀ ଅତ୍ୟଧିକ ଆହାର କରିବେ ନାହିଁ, ପୁଣି ଉପବାସ ମଧ୍ୟ କରିବେ ନାହିଁ । ଯୋଗୀ ବେଶୀ ନିଦ୍ରା ଯିବେ ନାହିଁ, ଅନ୍ତର ମଧ୍ୟ ସେ ବିନିଦ୍ର ହେବେ ନାହିଁ । ସବୁ ବିଷୟରେ ଯେ ମଧ୍ୟପନ୍ଥା ଅବଲମ୍ବନ କରନ୍ତି, ସେହି କେବଳ ଯୋଗୀ ହୋଇପାରନ୍ତି ।

କେଉଁ ସମୟ ଯୋଗାଭ୍ୟାସ ପାଇଁ ଶ୍ରେଷ୍ଠ । ଉଷା ଓ ସାୟଂକାଳର ସନ୍ଧିକ୍ଷଣରେ ଯେତେବେଳେ ସମଗ୍ର ପ୍ରକୃତି ଶାନ୍ତ ଥାଏ, ସେତେବେଳେ ଯୋଗର ସମୟ । ପ୍ରକୃତିର ସାହାଯ୍ୟ ଗ୍ରହଣ କର । ସ୍ୱଚ୍ଛନ୍ଦଭାବରେ ଆସନରେ ବସିବ । ମେରୁଦଣ୍ଡ ଋଜୁ ରଖି, ସମ୍ମୁଖକୁ ବା ପଶ୍ଚାତ୍‌କୁ ଝୁଙ୍କି ନ ପଡ଼ି ଶରୀରର ତିନୋଟି ଅଂଶ—ଶିର, ଗ୍ରୀବା ଓ ପଞ୍ଜର ସରଳ ରଖିବ । ତା'ପରେ ଦେହର ଗୋଟିଏ ଗୋଟିଏ ଅଂଶରୁ ଆରମ୍ଭ କରି ଚିନ୍ତା କର—ସମଗ୍ର ଦେହଟି ସମ୍ପୂର୍ଣ୍ଣ ବା ନିର୍ଦ୍ଦୋଷ । ତା'ପରେ ସମଗ୍ର ବିଶ୍ୱ ମଧ୍ୟରେ ଗୋଟିଏ ପ୍ରେମର ପ୍ରବାହ ପ୍ରେରଣ କର ଏବଂ ଜ୍ଞାନାଲୋକ ପାଇଁ ପ୍ରାର୍ଥନା କର । ସର୍ବଶେଷରେ ନିଃଶ୍ୱାସ-ପ୍ରଶ୍ୱାସ ସହିତ ମନକୁ ଯୁକ୍ତ କରି କ୍ରମେ କ୍ରମେ ମନର ଗତିବିଧି ଉପରେ ଏକାଗ୍ରତା-ସାଧନର କ୍ଷମତା ଅର୍ଜନ କର ।

## ଓଜଃଶକ୍ତି

ଯାହାଦ୍ୱାରା ମଣିଷ ସହିତ ମଣିଷର (ଜଣକ ସହିତ ଅପରର) ପାର୍ଥକ୍ୟ ନିର୍ଦ୍ଧାରିତ ହୁଏ, ତାହା ହିଁ ଓଜଃ । ଯାହାଙ୍କ ମଧ୍ୟରେ ଓଜଃଶକ୍ତିର ପ୍ରାଧାନ୍ୟ ସେ କେବଳ ନେତା । ଏହାର ପ୍ରଚଣ୍ଡ ଆକର୍ଷଣୀ ଶକ୍ତି ଅଛି । ସ୍ନାୟୁପ୍ରବାହରୁ ଓଜଃଶକ୍ତିର ସୃଷ୍ଟି । ଏହାର ବିଶେଷତ୍ୱ ହେଉଛି ସାଧାରଣତଃ ଯୌନଶକ୍ତିରୂପରେ ଯାହା ପ୍ରକାଶିତ ହୁଏ, ତାହାକୁ ଅତି ସହଜରେ ଓଜଃଶକ୍ତିରେ ପରିଣତ କରାଯାଇପାରେ । ଯୌନକେନ୍ଦ୍ରରେ ଅବସ୍ଥିତ ଶକ୍ତିର କ୍ଷୟ ଏବଂ ଅପଚୟ ନ ହେଲେ ତାହା ହିଁ ଓଜଃଶକ୍ତିରେ ପରିଣତ ହୋଇପାରେ । ଶରୀରର ଦୁଇଟି ପ୍ରଧାନ ସ୍ନାୟୁପ୍ରବାହ ମସ୍ତିଷ୍କରୁ ନିର୍ଗତ ହୋଇ ମେରୁଦଣ୍ଡର ଦୁଇପାଖ ଦେଇ ନିମ୍ନକୁ ଚାଲିଯାଇଛି । କିନ୍ତୁ ମୁଣ୍ଡର ପଶ୍ଚାତ୍‌ଭାଗରେ ସ୍ନାୟୁପ୍ରବାହଦୁଇଟି ୪ ସଂଖ୍ୟା ପରି ଆଡ଼ରେ ଅବସ୍ଥିତ । ଏହିପରି ଶରୀରର ବାମ ଅଂଶ ମସ୍ତିଷ୍କର ଦକ୍ଷିଣ ଅଂଶଦ୍ୱାରା ନିୟନ୍ତ୍ରିତ ହୁଏ । ଏହି ସ୍ନାୟୁଚକ୍ରର ସର୍ବନିମ୍ନ ପ୍ରାନ୍ତରେ ଯୌନକେନ୍ଦ୍ର— ମୂଳାଧାର ( Sacral Plexus ) ଅବସ୍ଥିତ । ଏହି ଦୁଇ ସ୍ନାୟୁପ୍ରବାହଦ୍ୱାରା ସଞ୍ଚାଳିତ ଶକ୍ତିର ଗତି ନିମ୍ନାଭିମୁଖୀ ଏବଂ ଏହାର ଅଧିକାଂଶ ମୂଳାଧାରରେ କ୍ରମାଗତ ସଞ୍ଚିତ ହୁଏ । ମେରୁଦଣ୍ଡର ଶେଷ ଅସ୍ଥିଖଣ୍ଡ ଏହି ମୂଳାଧାରରେ ଅବସ୍ଥିତ ଏବଂ ସାଙ୍କେତିକ ଭାଷାରେ ତାହାକୁ 'ତ୍ରିକୋଣ' କୁହାଯାଏ । ସମସ୍ତ ଶକ୍ତି ତାହାର ପାର୍ଶ୍ୱରେ ସଞ୍ଚିତ ହୁଏ ବୋଲି

ସେହି ଶକ୍ତି ସର୍ପରୂପ ପ୍ରତୀକଦ୍ୱାରା ପ୍ରକାଶିତ ହୁଏ । ଚେତନ ଓ ଅବଚେତନ—ଏହି ଦୁଇଟି ସ୍ନାୟୁପ୍ରବାହ ମଧ୍ୟ ଦେଇ କ୍ରିୟା କରେ । କିନ୍ତୁ ଅବଚେତନ ଯେତେବେଳେ ଏହି ଚକ୍ରର ନିମ୍ନସ୍ଥରେ ଉପନୀତ ହୁଏ, ସେତେବେଳେ ସ୍ନାୟୁପ୍ରବାହର କ୍ରିୟା ବନ୍ଦ ହୁଏ, ଏବଂ ଊର୍ଦ୍ଧ୍ୱଗାମୀ ହୋଇ ଚକ୍ରାକାର ସମ୍ପୂର୍ଣ୍ଣ କରିବା ପରିବର୍ତ୍ତେ ସ୍ନାୟୁକେନ୍ଦ୍ରର ଗତି ରୁଦ୍ଧ ହୋଇ ଓଜଃଶକ୍ତିରୂପରେ ମୂଳାଧାରରୁ ମେରୁଦଣ୍ଡ ଭିତର ଦେଇ ଊର୍ଦ୍ଧ୍ୱମୁଖକୁ ପ୍ରବାହିତ ହୁଏ ।

ସାଧାରଣତଃ ମେରୁଦଣ୍ଡର ସେହି କ୍ରିୟା (ସୁଷୁମ୍ନା ନାଡ଼ୀ) ବନ୍ଦ ଥାଏ, କିନ୍ତୁ ଓଜଃଶକ୍ତିର ଗମନାଗମନ ପାଇଁ ତାହା ଉନ୍ମୁକ୍ତ ହୋଇପାରେ । ଏହି ଓଜଃପ୍ରବାହ ମେରୁଦଣ୍ଡର ଗୋଟିଏ ଚକ୍ରରୁ ଅପର ଚକ୍ରକୁ ଧାବିତ ହେବା ସଙ୍ଗେ ସଙ୍ଗେ ତୁମେ (ଯୋଗୀ) ଜୀବନର ଏକ ସ୍ତରରୁ ଅନ୍ୟ ସ୍ତରକୁ ଉପନୀତ ହୋଇପାର । ମନୁଷ୍ୟ-ଦେହଧାରୀ ଆତ୍ମା ପକ୍ଷରେ ସର୍ବପ୍ରକାର ସ୍ତରରେ ଉପନୀତ ହେବା ଓ ସମସ୍ତ ପ୍ରକାର ଅଭିଜ୍ଞତା ଲାଭ କରିବା ସମ୍ଭବ ବୋଲି ସେ ଅନ୍ୟାନ୍ୟ ପ୍ରାଣୀ ଅପେକ୍ଷା ଶ୍ରେଷ୍ଠ । ମନୁଷ୍ୟ ପକ୍ଷରେ ଅନ୍ୟ ଧରଣର ଦେହ ଆଉ ପ୍ରୟୋଜନ ହୁଏ ନାହିଁ । କାରଣ ସେ ଇଚ୍ଛା କଲେ ଏହି ଦେହରେ ମଧ୍ୟ ତାହାର ପରୀକ୍ଷା-ନିରୀକ୍ଷା ସମ୍ପୂର୍ଣ୍ଣ କରି ବିଶୁଦ୍ଧାତ୍ମା ହୋଇପାରେ । ଓଜଃଶକ୍ତି ଯେତେବେଳେ ଏକ ସ୍ତରରୁ ଅନ୍ୟ ସ୍ତରକୁ ଧାବିତ ହୋଇ ଅବଶେଷରେ ସହସ୍ରାରରେ pineal glandରେ (ମସ୍ତିଷ୍କର ଯେଉଁ ଅଂଶର କୌଣସି କ୍ରିୟା ଅଛି କି ନାହିଁ ଶାରୀରବିଜ୍ଞାନ କହିପାରିବ ନାହିଁ) ଆସି ଉପନୀତ ହୁଏ, ସେତେବେଳେ ମନୁଷ୍ୟ ଦେହ ବି ନୁହେଁ କି ମନ ବି ନୁହେଁ; ସେତେବେଳେ ସେ ସର୍ବପ୍ରକାର ବନ୍ଧନରୁ ମୁକ୍ତ ।

ଯୌଗିକ ଶକ୍ତିର ମହାବିପଦ ହେଉଛି ଯେ, ସେହି ଶକ୍ତି ପ୍ରୟୋଗ କରିବାକୁ ଯାଇ ମନୁଷ୍ୟ ପଡ଼ିଯାଏ ଏବଂ ତାହାର ଯଥାର୍ଥ ପ୍ରୟୋଗ ଜାଣେ ନାହିଁ । ଯେଉଁ କ୍ଷମତା ସେ ଲାଭ କରିଛି, ସେ ବିଷୟରେ ତାହାର କୌଣସି ଶିକ୍ଷା ଏବଂ ଜ୍ଞାନ ନାହିଁ । ବିପଦ ହେଉଛି ଯେ, ସେହି ସମସ୍ତ ଯୌଗିକ ଶକ୍ତିର ପ୍ରୟୋଗ ଫଳରେ ଯୌନାନୁଭୂତି ଅସ୍ୱାଭାବିକରୂପରେ ଜାଗ୍ରତ ହୁଏ, କାରଣ ବାସ୍ତବିକ ପକ୍ଷରେ ଯୌନକେନ୍ଦ୍ରରୁ ଏହିସବୁ ଶକ୍ତିର ଉଦ୍‌ଭବ । ଯୌଗିକ ଶକ୍ତିର ବହିଃପ୍ରକାଶ ନ କରିବା ସର୍ବାପେକ୍ଷା ନିରାପଦ ଓ ଉତ୍ତମ ପନ୍ଥା; କାରଣ ଅଜ୍ଞ ଅଶିକ୍ଷିତ ଅଧିକାଂଶ ଉପରେ ସେହି ଶକ୍ତିଗୁଡ଼ିକ ଅତି ମାରାତ୍ମକ ଭାବରେ କ୍ରିୟା କରେ ।

ପ୍ରତୀକ ପ୍ରସଙ୍ଗରେ କହୁଛି । ମେରୁଦଣ୍ଡର ଊର୍ଦ୍ଧ୍ୱରେ ଏହି ଓଜଃଶକ୍ତିର ଗତି ମୋଡ଼ମୋଡ଼ିକା ସ୍କ୍ରୁ ପରି ଅନୁଭୂତ ହୁଏ ବୋଲି ତାହାକୁ 'ସର୍ପ' କୁହାଯାଏ । ଏହି ସର୍ପର ଅବସ୍ଥାନ ତ୍ରିକୋଣ ଉପରେ । ଯେତେବେଳେ ସେହି ଶକ୍ତି ଜାଗ୍ରତ ହୁଏ, ସେତେବେଳେ ମେରୁଦଣ୍ଡର ଭିତରଦେଇ ଯାଏ ଏବଂ ଗୋଟିଏ ଚକ୍ରରୁ ଅନ୍ୟ ଚକ୍ରକୁ ବିଚରଣ କଲାବେଳେ ଆମମାନଙ୍କ ଅନ୍ତରରେ ଗୋଟାଏ ନୂତନ ଜଗତ୍ ଉଦ୍‌ଘାଟିତ ହୁଏ—ଅର୍ଥାତ୍ କୁଣ୍ଡଳିନୀ ଜାଗ୍ରତା ହୁଅନ୍ତି ।

## ପ୍ରାଣାୟାମ

ପ୍ରାଣାୟାମ ଅଭ୍ୟାସ ହେଉଛି ଅଚେତନ ମନର ଶିକ୍ଷା । ଶରୀରଦ୍ୱାରା ଯେଉଁ ଅଭ୍ୟାସ କରିବାକୁ ହୁଏ (ଶାରୀରିକ ପ୍ରକ୍ରିୟା) ତାହା ତିନି ଅଂଶରେ ବିଭକ୍ତ ଏବଂ ତାହାର କାର୍ଯ୍ୟ ପ୍ରାଣବାୟୁକୁ ନେଇ—ଅର୍ଥାତ୍ ନିଃଶ୍ୱାସ ଗ୍ରହଣ, ଧାରଣ ଓ ତ୍ୟାଗ (ପୂରକ, କୁମ୍ଭକ ଓ ରେଚକ) : ଚାରି ଘଣ୍ଟା ଗଣନା କରୁ କରୁ ଗୋଟିଏ ନାସାରନ୍ଧ୍ର ଦ୍ୱାରା ବାୟୁଗ୍ରହଣ କରିବାକୁ ହେବ, ଷୋଳଘଣ୍ଟା ଗଣନା କରୁ କରୁ ତାହା ଧାରଣ କରିବ ଏବଂ ଆଠ ଘଣ୍ଟା ଗଣନା କରୁ କରୁ ଅନ୍ୟ ନାସାରନ୍ଧ୍ର ସାହାଯ୍ୟରେ ବାୟୁ (ନିଃଶ୍ୱାସ) ତ୍ୟାଗ କରିବାକୁ ହେବ । ତା'ପରେ ନିଃଶ୍ୱାସ ଗ୍ରହଣ କରିବା ସମୟରେ ଅନ୍ୟ ନାସାରନ୍ଧ୍ର ବନ୍ଦ କରି ବିପରୀତ ଭାବରେ ତାହା ଅଭ୍ୟାସ କରିବାକୁ ହେବ ।

ବୁଢ଼ା ଆଙ୍ଗୁଳି ଦେଇ ଗୋଟିଏ ନାସାରନ୍ଧ୍ର ବନ୍ଦ ରଖି ଏହି ପ୍ରକ୍ରିୟା ଆରମ୍ଭ କରିବାକୁ ହୁଏ । କିଛି ଯଥା ସମୟରେ ପ୍ରାଣବାୟୁ ତୁମର ବଶରେ (ଆୟତ୍ତରେ) ଆସିବ । ସକାଳ, ସନ୍ଧ୍ୟାରେ ଚାରିଥର ଏହିପରି ପ୍ରାଣାୟାମ କରିବ ।

## ଇନ୍ଦ୍ରିୟ-ଗ୍ରାହ୍ୟ ଜ୍ଞାନର ଊର୍ଦ୍ଧ୍ୱରେ

'ଅନୁତାପ କର, କାରଣ ସ୍ୱର୍ଗରାଜ୍ୟ ତୁମ ନିକଟରେ ।' ଅନୁତାପ ଶବ୍ଦଟି ଗ୍ରୀକ୍ ଭାଷାରେ Metanotic (Meta ଶବ୍ଦର ଅର୍ଥ—ଊର୍ଦ୍ଧ୍ୱରେ, ଅତୀତ) ଏବଂ ଏହାର ଆକ୍ଷରିକ ଅର୍ଥ ଜ୍ଞାନର ଆରପାରିକୁ ଚାଲିଯାଅ—ପଞ୍ଚେନ୍ଦ୍ରିୟଗ୍ରାହ୍ୟ ଜ୍ଞାନର ଅପର ପାରିକୁ— 'ଏବଂ ସ୍ୱୀୟ ଅନ୍ତରକୁ ଦୃଷ୍ଟିନିକ୍ଷେପ କର, ଯେଉଁଠାରେ ସ୍ୱର୍ଗରାଜ୍ୟ ଦେଖିବାକୁ ପାଇବ ।'

ସାର୍ ହାମିଲଟନ୍ କୌଣସି ଦାର୍ଶନିକ ଆଲୋଚନାର ଶେଷରେ କହିଛନ୍ତି, 'ଏଠାରେ ଦର୍ଶନର ଅବସାନ (ସମାପ୍ତି), ଏଠାରେ ହିଁ ଧର୍ମର ଆରମ୍ଭ ।' ବୁଦ୍ଧିର କ୍ଷେତ୍ରରେ ଧର୍ମର ସ୍ଥାନ ନାହିଁ ଓ କେବେହେଁ ରହିପାରେ ନାହିଁ । ବୁଦ୍ଧିପ୍ରସୂତ ବିଚାର ଇନ୍ଦ୍ରିୟଗ୍ରାହ୍ୟ ତତ୍ତ୍ୱ ଉପରେ ପ୍ରତିଷ୍ଠିତ । ଇନ୍ଦ୍ରିୟ ସହିତ ଧର୍ମର କୌଣସି ସମ୍ପର୍କ ନାହିଁ । ଅଜ୍ଞେୟବାଦୀମାନେ କହନ୍ତି ଯେ, ସେମାନେ ଈଶ୍ୱରଙ୍କୁ ଜାଣିବାକୁ ସମର୍ଥ ନୁହନ୍ତି ଏବଂ ସେମାନେ ତାହା ପ୍ରକୃତରେ ଠିକ୍ କହିଥାନ୍ତି । କାରଣ ଇନ୍ଦ୍ରିୟଦ୍ୱାରା ଲବ୍ଧ ଜ୍ଞାନ ସେମାନେ ନିଃଶେଷ କରିଅଛନ୍ତି । ତଥାପି ଈଶ୍ୱର-ଜ୍ଞାନ ସମ୍ବନ୍ଧରେ ଆଉ ଅଗ୍ରସର ହୋଇପାରନ୍ତି ନାହିଁ । ଅତଏବ ଧର୍ମକୁ ପ୍ରମାଣ କରିବା ପାଇଁ, ଅର୍ଥାତ୍ ଈଶ୍ୱରଙ୍କ ଅସ୍ତିତ୍ୱ, ଅମରତ୍ୱ ଇତ୍ୟାଦି ବିଷୟରେ ଜ୍ଞାନ-ଲାଭ ନିମନ୍ତେ ଆମମାନଙ୍କୁ ଇନ୍ଦ୍ରିୟ-ଜ୍ଞାନର ଊର୍ଦ୍ଧ୍ୱକୁ ଉଠିବାକୁ ହେବ । ଶ୍ରେଷ୍ଠ ମହାପୁରୁଷମାନେ ଓ ତତ୍ତ୍ୱଦର୍ଶୀଗଣ 'ଈଶ୍ୱରଙ୍କୁ ଦର୍ଶନ କରିଛନ୍ତି' ବୋଲି ଦାବି କରନ୍ତି, ଅର୍ଥାତ୍ ସେମାନେ ଈଶ୍ୱରଙ୍କର ପ୍ରତ୍ୟକ୍ଷ ଅନୁଭୂତି ଲାଭ କରିଅଛନ୍ତି । ଅଭିଜ୍ଞତା ବା ଅନୁଭୂତି ବ୍ୟତୀତ ଜ୍ଞାନଲାଭ ହୁଏ ନାହିଁ ଏବଂ ସ୍ୱୀୟ ଅନ୍ତର ମଧ୍ୟରେ ଈଶ୍ୱର-ଦର୍ଶନ କରିବାକୁ ହେବ । ମନୁଷ୍ୟ ଯେତେବେଳେ ଏହି ବିଶ୍ୱର ଅନ୍ତର୍ଗତ ସେହି ପରମ ସତ୍ୟ ଦର୍ଶନ କରେ, କେବଳ ସେତିକିବେଳେ ହିଁ ତାହାର ସମସ୍ତ

ସନ୍ଦେହର ନିରସନ ହୁଏ ଏବଂ ହୃଦୟ-ଗ୍ରନ୍ଥି ଛିନ୍ନଭିନ୍ନ ହୋଇଯାଏ । ଏହା ହିଁ 'ଈଶ୍ୱର ଦର୍ଶନ' । ଆମମାନଙ୍କର କାର୍ଯ୍ୟ ହେଲା—ସତ୍ୟକୁ ନିରୂପଣ କରିବା, କେବଳ ମତାମତ ଗଳାଧଃକରଣ କଲେ ହେବ ନାହିଁ । ଅନ୍ୟାନ୍ୟ ବିଜ୍ଞାନ ପରି ଧର୍ମଜଗତରେ ମଧ୍ୟ ସାକ୍ଷାତ୍ ଭାବରେ ଜାଣିବା ପାଇଁ ତଥ୍ୟ-ସଂଗ୍ରହର ପ୍ରୟୋଜନ ଏବଂ ପଞ୍ଚେନ୍ଦ୍ରିୟ ସୀମା ମଧ୍ୟରେ ଯେଉଁ ଜ୍ଞାନ ଅଛି, ତାହାର ବାହାରକୁ ଯିବା ମାତ୍ରେ ତାହା ସମ୍ଭବ ହୁଏ । ପ୍ରତ୍ୟେକ ବ୍ୟକ୍ତି ଧର୍ମ-ଜଗତର ସତ୍ୟସମୂହ ପରୀକ୍ଷା କରିନେବା ଆବଶ୍ୟକ । ଈଶ୍ୱରଦର୍ଶନ ହିଁ ଏକମାତ୍ର ଲକ୍ଷ୍ୟ, ଶକ୍ତିଲାଭ ନୁହେଁ । କେବଳ ସତ୍, ଚିତ୍ ଓ ପ୍ରେମ ହିଁ ଜୀବନର ଲକ୍ଷ୍ୟ ଏବଂ ପ୍ରେମ ହିଁ ଈଶ୍ୱରସ୍ୱରୂପ ।

## ଚିନ୍ତା, କଳ୍ପନା ଓ ଧ୍ୟାନ

ସ୍ୱପ୍ନରେ ଓ ଚିନ୍ତାରେ ଆମେମାନେ ଯେଉଁ ବୃତ୍ତି ଅର୍ଥାତ୍ କଳ୍ପନା ପ୍ରୟୋଗ କରୁଁ ତାହା କେବଳ ସତ୍ୟରେ ଉପନୀତ ହେବାର ଉପାୟ ହେବ । କଳ୍ପନା-ଶକ୍ତି ଅଧିକ ପ୍ରବଳ ହେଲେ ବିଷୟବସ୍ତୁ ଦୃଷ୍ଟ ହୁଏ । ଅତଏବ କଳ୍ପନା ସାହାଯ୍ୟରେ ଆମେମାନେ ଶରୀରକୁ ସୁସ୍ଥ ଅଥବା ପୀଡ଼ିତ ଅବସ୍ଥାକୁ ଆଣିପାରୁଁ । ଯେତେବେଳେ କୌଣସି ବସ୍ତୁ ଆମମାନଙ୍କର ଦୃଷ୍ଟିଗୋଚର ହୁଏ, ସେତେବେଳେ ମସ୍ତିଷ୍କର ଅଣୁପରମାଣୁଗୁଡ଼ିକର ଅବସ୍ଥାନ ନଳ ଭିତର ଦେଇ ନାନା ପ୍ରକାର ରଙ୍ଗର କାଚଖଣ୍ଡ ପ୍ରତିଫଳନଦ୍ୱାରା ଦୃଷ୍ଟ କାରୁକାର୍ଯ୍ୟ ପରି ହୋଇଥାଏ (Kaleidoscopic) । ମସ୍ତିଷ୍କର ଅଣୁପରମାଣୁଗୁଡ଼ିକର ସେହିପରି ସଂସ୍ଥାପନ ଓ ସଂଯୋଗର ପୁନଃପ୍ରାପ୍ତି 'ସ୍ମୃତି' ବୋଲି ଅଭିହିତ ହୁଏ । ଇଚ୍ଛାଶକ୍ତି ଯେତେ ପ୍ରବଳ ହେବ, ମସ୍ତିଷ୍କର ପରମାଣୁଗୁଡ଼ିକର ପୁନର୍ବିନ୍ୟାସର ସଫଳତା ସେତେ ଅଧିକ ହେଉଥିବ । ଦେହକୁ ଆରୋଗ୍ୟ କରିବାର ଗୋଟିଏ ମାତ୍ର ଶକ୍ତି ଅଛି ଏବଂ ସେହି ଶକ୍ତି ପ୍ରତ୍ୟେକ ଲୋକଙ୍କ ମଧ୍ୟରେ ବିଦ୍ୟମାନ । ଔଷଧ ସେହି ଶକ୍ତିକୁ ଉଦ୍ଦୀପିତ କରେ ମାତ୍ର । ଦେହ ମଧ୍ୟରେ ଯେଉଁସବୁ ବିଷ ପ୍ରବେଶ କରିଛି, ସେହି ଶକ୍ତିଦ୍ୱାରା ତାହା ବିତାଡ଼ିତ ହୁଏ ଏବଂ ଦେହର ରୋଗ ସେହି ସଂଗ୍ରାମର ବହିଃପ୍ରକାଶ । ଯଦିଓ ଔଷଧଦ୍ୱାରା ଦେହପ୍ରବିଷ୍ଟ ବିଷ ଦୂରୀକୃତ କରିବାର ଶକ୍ତି ଉଦ୍ଦୀପିତ ହୋଇଥାଏ, ଚିନ୍ତାଶକ୍ତିଦ୍ୱାରା ହିଁ ତାହା ଅଧିକତର ସ୍ଥାୟୀ ଭାବରେ ଉଦ୍ଦୀପିତ ହୁଏ । ପୀଡ଼ା ସମୟରେ ଯାହାଦ୍ୱାରା ଆଦର୍ଶ ସ୍ୱାସ୍ଥ୍ୟର ସ୍ମୃତି ଜାଗରିତ ହୁଏ ଏବଂ ସୁସ୍ଥ ଥିବାବେଳେ ମସ୍ତିଷ୍କର ପରମାଣୁଗୁଡ଼ିକ ଯେଉଁ ଅବସ୍ଥାରେ ଥିଲା, ପୁନର୍ବିନ୍ୟାସବେଳେ ପୁଣି ସେପରି ଅବସ୍ଥା ଲାଭ କରିପାରେ । ତେଣୁ ସ୍ୱାସ୍ଥ୍ୟ ଓ ଶକ୍ତି ସମ୍ବନ୍ଧୀୟ ଚିନ୍ତା କରିବାରେ କଳ୍ପନାର ଅଧିପତ୍ୟ ପ୍ରୟୋଜନ । ସେହି ଅବସ୍ଥାରେ ଶରୀର ମସ୍ତିଷ୍କର ଅନୁସରଣ କରିବା ପାଇଁ ପ୍ରବଣତା ଲାଭ କରେ ।

ପରବର୍ତ୍ତୀ କ୍ରମ ହେଲା ଆମମାନଙ୍କ ଉପରେ ଅପରର ମନର କ୍ରିୟାଦ୍ୱାରା ଉକ୍ତ ପ୍ରଣାଳୀରେ ଉପନୀତ ହେବା । ଏହାର ବହୁ ଦୃଷ୍ଟାନ୍ତ ପ୍ରତ୍ୟହ ଦେଖାଯାଏ । ଯେଉଁ ଉପାୟରେ ଗୋଟିଏ ମନ ଅନ୍ୟ ଉପରେ କ୍ରିୟା କରେ, ତାହା ଶିକ୍ଷା । ସତ୍ ଓ

ଅସତ୍ ଚିନ୍ତାଗୁଡ଼ିକର ପ୍ରତ୍ୟେକଟି ପ୍ରଭାବସମ୍ପନ୍ନ ଶକ୍ତି ଏବଂ ଏହି ବିଶ୍ୱ ଏହିପରି ଚିନ୍ତାଦ୍ୱାରା ପରିପୂର୍ଣ୍ଣ । ଅନୁଭୂତ ନ ହେଲେ ସୁଦ୍ଧା କମ୍ପନ ଯେପରି ଚାଲୁଥାଏ, ସେହିପରି କାର୍ଯ୍ୟରେ ରୂପାୟିତ ନ ହେବା ପର୍ଯ୍ୟନ୍ତ ଚିନ୍ତା ଚିନ୍ତାରୂପରେ ବିଦ୍ୟମାନ ଥାଏ । ଉଦାହରଣସ୍ୱରୂପ କୁହାଯାଇପାରେ, ବାଧା ନ ମାରିବା ପର୍ଯ୍ୟନ୍ତ ହାତ ଭିତରେ ତାହାର ଶକ୍ତି ସୁପ୍ତ ଅବସ୍ଥାରେ ଥାଏ, ଅବଶେଷରେ ତାହା କାର୍ଯ୍ୟରେ ରୂପାନ୍ତରିତ ହୋଇ ବାଧାରେ ପରିଣତ ହୁଏ । ଆମେମାନେ ସତ୍ ଓ ଅସତ୍ ଉଭୟବିଧ ଚିନ୍ତାର ଉତ୍ତରାଧିକାରୀ । ଯଦି ଆମେମାନେ ନିଜ ନିଜକୁ ପବିତ୍ର ଓ ସତ୍‌ଚିନ୍ତାର ଯନ୍ତ୍ରରୂପ କରୁଁ, ତେବେ ସତ୍‌ଚିନ୍ତାଗୁଡ଼ିକ ଆମମାନଙ୍କ ମଧ୍ୟରେ ପ୍ରବେଶ କରିବ । ଶୁଦ୍ଧାତ୍ମା କେବେହେଁ ଅସତ୍ ଚିନ୍ତା ଗ୍ରହଣ କରିବ ନାହିଁ । ଅସତ୍ ଲୋକର ମନ ହିଁ ଅସତ୍ ଚିନ୍ତାଗୁଡ଼ିକର ଉପଯୁକ୍ତ କ୍ଷେତ୍ର । ଏଗୁଡ଼ିକ ଠିକ୍ ଜୀବାଣୁ ପରି ଉପଯୁକ୍ତ କ୍ଷେତ୍ର ପାଇଲେ କ୍ରମାଗତ ବୃଦ୍ଧି ପାଏ । ଚିନ୍ତାଗୁଡ଼ିକ କ୍ଷୁଦ୍ର କ୍ଷୁଦ୍ର ତରଙ୍ଗପରି । ନୂଆ ନୂଆ ଆବେଗ ସେଗୁଡ଼ିକରେ କମ୍ପନ ସୃଷ୍ଟି କରି ଚିନ୍ତାରାଜ୍ୟରେ ଉଦିତ ହୁଅନ୍ତି । ଅବଶେଷରେ ଗୋଟିଏ ବୃହତ୍ ତରଙ୍ଗ ଉତ୍‌ଥିତ ହୋଇ ଅନ୍ୟଗୁଡ଼ିକୁ ଆତ୍ମସାତ୍ କରେ । ପ୍ରତି ପାଞ୍ଚ ଶହ ବର୍ଷ ପରେ ଏହି ବିଶ୍ୱଜନୀନ ଚିନ୍ତାପ୍ରବାହର ପୁନରୁତ୍ଥାନ ଘଟେ, ସେତେବେଳେ ଏହି ବୃହତ୍ ତରଙ୍ଗଟି ଅନ୍ୟାନ୍ୟ କ୍ଷୁଦ୍ର ତରଙ୍ଗଗୁଡ଼ିକୁ ନିଃଶେଷ କରିବାଦ୍ୱାରା ଆତ୍ମସାତ୍ କରି ଶୀର୍ଷସ୍ଥାନ ଅଧିକାର କରେ । ଏହିପରି ଭାବରେ ଜଣେ ପ୍ରତ୍ୟାଦିଷ୍ଟ ବ୍ୟକ୍ତିଙ୍କର ଆବିର୍ଭାବ ଘଟେ । ସେ ଯେଉଁ ଯୁଗରେ ବାସ କରନ୍ତି, ସେ ଯୁଗର ଚିନ୍ତାସମୂହ ସେ ନିଜ ମନରେ ଧାରଣ କରନ୍ତି ଏବଂ ସେହିଗୁଡ଼ିକୁ ବାସ୍ତବ ରୂପ ଦେଇ ମାନବଜାତି ସମ୍ମୁଖରେ ଅର୍ପଣ କରନ୍ତି । କୃଷ୍ଣ, ବୁଦ୍ଧ, ଯୀଶୁଖ୍ରୀଷ୍ଟ, ମହମ୍ମଦ, ଲୁଥାର ପ୍ରଭୃତି ମହାପୁରୁଷମାନେ ବୃହଦାକାର ତରଙ୍ଗର ଦୃଷ୍ଟାନ୍ତସ୍ୱରୂପ; ସେମାନେ ସେମାନଙ୍କର ସମସାମୟିକ ମନୁଷ୍ୟଠାରୁ ଊର୍ଦ୍ଧ୍ୱକୁ ଉଠିଥିଲେ । ସେମାନଙ୍କର ପାରସ୍ପରିକ ବ୍ୟବଧାନ ପ୍ରାୟ ପାଞ୍ଚଶହ ବର୍ଷ ହେବ । ସେ ତରଙ୍ଗର ପଶ୍ଚାତ୍‌ରେ ସର୍ବଦା ଅତ୍ୟୁଜ୍ଜ୍ୱଳ ପବିତ୍ରତା ଓ ମହତ୍ତମ ଚରିତ୍ର ବିରାଜ କରେ । ସେମାନେ କେବଳ ପୃଥିବୀରେ ସମାଜସଂସ୍କାର ଆନ୍ଦୋଳନ ପରି ଆତ୍ମପ୍ରକାଶ କରନ୍ତି । ଆଉ ଥରେ ଆମମାନଙ୍କ ଯୁଗରେ ଚିନ୍ତାତରଙ୍ଗର ସ୍ପନ୍ଦନ ବିସ୍ତାରଲାଭ କରିଅଛି ଏବଂ ଈଶ୍ୱରଙ୍କ ସର୍ବବ୍ୟାପିତ୍ୱ ଏହାର ଅନ୍ତର୍ନିହିତ ଭାବ ଏବଂ ନାନା ଆକାରରେ ଓ ନାନା ସମ୍ପ୍ରଦାୟରେ ତାହା ଆବିର୍ଭୂତ ହେଉଅଛି ।

ଏହିସବୁ ତରଙ୍ଗର ଉଦ୍ଭବ ଓ ବିଳୟ ପର୍ଯ୍ୟାୟକ୍ରମେ ହେଲେ ମଧ୍ୟ ଗଠନମୂଳକ ଭାବରେ ସର୍ବଦା ଧ୍ୱଂସର ଅବସାନ ଘଟାଏ । ସେତେବେଳେ ମନୁଷ୍ୟ ନିଜ ଆଧ୍ୟାତ୍ମିକ ସ୍ୱରୂପ ଲାଭ ପାଇଁ ଗମ୍ଭୀରତା ମଧ୍ୟରେ ବୁଡ଼ିଯାଏ, ସେ ନିଜକୁ କେତେବେଳେ ହେଲେ କୁସଂସ୍କାରଦ୍ୱାରା ଆବଦ୍ଧ ବୋଲି ଅନୁଭବ କରେ ନାହିଁ । ଅଧିକାଂଶ ସମ୍ପ୍ରଦାୟର ଅସ୍ତିତ୍ୱ କ୍ଷଣସ୍ଥାୟୀ ଏବଂ ସେମାନେ ବୁଦ୍‌ବୁଦ ପରି ଉଠନ୍ତି ଓ ପଡ଼ନ୍ତି । କାରଣ ସେହିସବୁ ସମ୍ପ୍ରଦାୟର ନେତୃବର୍ଗଙ୍କର ସାଧାରଣତଃ ଚରିତ୍ରବଳ ନ ଥାଏ । ପୂର୍ଣ୍ଣ ପ୍ରେମ ଓ ପ୍ରତିଦ୍ୱନ୍ଦ୍ୱିତାହୀନ ହୃଦୟଦ୍ୱାରା ହିଁ ଚରିତ୍ର ଗଠିତ ହୁଏ । ନେତା ଚରିତ୍ରହୀନ ହେଲେ

ତାହାଙ୍କ ପ୍ରତି ଆନୁଗତ୍ୟ ସମ୍ଭବ ନୁହେଁ । ପୂର୍ଣ୍ଣ ପବିତ୍ରତାଦ୍ୱାରା ହିଁ ସ୍ଥାୟୀ ଆନୁଗତ୍ୟ ଓ ବିଶ୍ୱାସ ନିଶ୍ଚିତରୂପେ ଲାଭ କରାଯାଏ ।

କୌଣସି ଗୋଟିଏ ଭାବକୁ ଆଶ୍ରୟ କର, ତାହା ପାଇଁ ଜୀବନ ଉତ୍ସର୍ଗ କର ଏବଂ ଧୈର୍ଯ୍ୟସହ ସଂଗ୍ରାମ କରିଯାଅ; ତୁମର ଜୀବନରେ ସୂର୍ଯ୍ୟୋଦୟ ନିଶ୍ଚୟ ହେବ ।

କଳ୍ପନା ବିଷୟକୁ ପୁଣି ଆଉ ଥରେ ଫେରିଆସି କହୁଛୁ ।

କୁଣ୍ଡଳିନୀକୁ ଏପରି ଭାବରେ କଳ୍ପନା କରିବାକୁ ହେବ, ଯେପରି ତାହା ବାସ୍ତବ । ତ୍ରିକୋଣ-ଅସ୍ଥିଖଣ୍ଡ ମଧ୍ୟରେ କୁଣ୍ଡଳୀ ଆକାରରେ ସର୍ପଟି ଅବସ୍ଥାନ କରୁଛି । ଏହା ହେଲା ପ୍ରତୀକ ।

ତା'ପରେ ପୂର୍ବେ ଯେପରି ବର୍ଣ୍ଣିତ ହୋଇଛି, ସେହିପରି ଭାବରେ ପ୍ରାଣାୟାମ ଅଭ୍ୟାସ କର ଏବଂ ନିଃଶ୍ୱାସ ଧାରଣ କରି ବା ଶ୍ୱାସବନ୍ଧ କରି ତାହାକୁ ୪ ସଂଖ୍ୟା ଆକୃତିର ନିମ୍ନକୁ ପ୍ରବହମାନ ସ୍ରୋତପରି କଳ୍ପନା କର । ସ୍ରୋତ ଯେତେବେଳେ ନିମ୍ନତମ ଅଂଶରେ ଉପନୀତ ହୁଏ, ସେତେବେଳେ ତାହା ତ୍ରିକୋଣାବସ୍ଥିତ ସର୍ପଟିକୁ ଆଘାତ କରେ ଏବଂ ଫଳରେ ସର୍ପଟି ମେରୁଦଣ୍ଡ ମଧ୍ୟଦେଇ ଊର୍ଦ୍ଧ୍ୱକୁ ଉଠିବାକୁ ଲାଗେ—ଏହିପରି ଚିନ୍ତାକର । ଚିନ୍ତାଦ୍ୱାରା ପ୍ରାଣ-ପ୍ରବାହକୁ ତ୍ରିକୋଣାଭିମୁଖରେ ପରିଚାଳନା କର ।

ଦୈହିକ ପ୍ରଣାଳୀ ବର୍ତ୍ତମାନ ଶେଷ ହେଲା ଏବଂ ଏହି ଅଂଶରୁ ମାନସିକ ପ୍ରଣାଳୀର ଆରମ୍ଭ ।

ପ୍ରଥମ ପ୍ରକ୍ରିୟାର ନାମ ହେଲା 'ପ୍ରତ୍ୟାହାର' । ମନକୁ ବାହାର ବିଷୟରୁ ଗୋଟେଇ ଆଣି ଅନ୍ତର୍ମୁଖୀ କରିବାକୁ ହେବ ।

ଦୈହିକ ପ୍ରଣାଳୀ ଶେଷ ହେଲେ ମନକୁ ଇଚ୍ଛାନୁଯାୟୀ ଦୌଡ଼ିବାକୁ ଦିଅ, ବାଧା ଦିଅ ନାହିଁ । କିନ୍ତୁ ସାକ୍ଷୀପରି ତାହାର ଗତିବିଧି ଉପରେ ଦୃଷ୍ଟି ରଖ । ଏହିପରି ଭାବରେ ଏହି ମନ ସେତେବେଳେ ଦୁଇଅଂଶରେ ବିଭକ୍ତ ହେବ—ଅଭିନେତା ଓ ଦ୍ରଷ୍ଟା । ତା'ପରେ ମନର ଯେଉଁ ଅଂଶ ଦ୍ରଷ୍ଟା ବା ସାକ୍ଷୀ ତାହାକୁ ଶକ୍ତିଶାଳୀ କର ଏବଂ ମନର ଗତିବିଧିକୁ ଦମନ କରିବାକୁ ଚେଷ୍ଟା କରିବାରେ ସମୟ ନଷ୍ଟ କର ନାହିଁ । ମନ ତ ନିଶ୍ଚୟ ଚିନ୍ତା କରିବ, କିନ୍ତୁ ଧୀରେ ଧୀରେ ଏବଂ କ୍ରମଶଃ ସାକ୍ଷୀ ଯେତେବେଳେ ତାହାର କାର୍ଯ୍ୟ କରୁଥିବ, ଅଭିନେତା-ମନ ଅଧିକତର ଆୟତ୍ତ ହେବ, ଯେତେବେଳ ପର୍ଯ୍ୟନ୍ତ ତୁମର ଅଭିନୟ ବନ୍ଦ ନ ହୁଏ ।

ଦ୍ୱିତୀୟ ପ୍ରକ୍ରିୟା : ଧ୍ୟାନ । ଏହାକୁ ଦୁଇଭାଗରେ ବିଭକ୍ତ କରାଯାଏ । ଆମେମାନେ ସ୍ଥୂଳଦେହଧାରୀ, ତେଣୁ ଆମମାନଙ୍କ ମନ ମଧ୍ୟ ରୂପ-ଚିନ୍ତା କରିବାକୁ ବାଧ୍ୟ । ଧର୍ମ ସେହି ପ୍ରୟୋଜନୀୟତା ସ୍ୱୀକାର କରେ ଏବଂ ବାହ୍ୟରୂପର ଅନୁଧ୍ୟାନକୁ ସାହାଯ୍ୟ କରେ । କୌଣସି ରୂପ ବ୍ୟତୀତ ତୁମେ ଈଶ୍ୱରଙ୍କ ଚିନ୍ତା (ଧ୍ୟାନ) କରିପାର ନାହିଁ । ଚିନ୍ତା କରିବାକୁ ଗଲେ ମନ ମଧ୍ୟରେ କୌଣସି ରୂପର ଆବିର୍ଭାବ ନିଶ୍ଚୟ ହେବ, କାରଣ ଚିନ୍ତା ଓ ପ୍ରତୀକ ଅବିଚ୍ଛେଦ୍ୟ । ସେହି ରୂପ ଉପରେ ମନକୁ ସ୍ଥିର କରିବାକୁ ଚେଷ୍ଟା କର ।

ଉତ୍ତୀର୍ଣ୍ଣ ପ୍ରକ୍ରିୟା : ଧ୍ୟାନ ଅଭ୍ୟାସଦ୍ୱାରା ଏହି ଅବସ୍ଥା ଲାଭ କରାଯାଏ ଏବଂ ଏହା ଯଥାର୍ଥ 'ଏକାଗ୍ରତା' (ଏକମୁଖୀନତା) । ମନ ସାଧାରଣତଃ ବୃତ୍ତାକାରରେ 'କ୍ରିୟା' କରେ, କୌଣସି ଗୋଟିଏ ବିନ୍ଦୁରେ ନିଜକୁ ନିବଦ୍ଧ କରିବା ପାଇଁ ଚେଷ୍ଟା କରେ ।

ଅବଶେଷରେ ଫଳଲାଭ । ମନ ଏହି ଅବସ୍ଥାରେ ଉପନୀତ ହେଲେ ଆରୋଗ୍ୟକରଣ, ଜ୍ୟୋତିଦର୍ଶନ ଓ ସର୍ବପ୍ରକାର ଯୌଗିକ ଶକ୍ତି ଲାଭ ହୁଏ । ମୁହୂର୍ତ୍ତକ ମଧ୍ୟରେ ତୁମେ ସେହି ଚିନ୍ତାପ୍ରବାହ କାହାରି ପ୍ରତି ପ୍ରୟୋଗ କରିପାର, ଯେପରି ଯୀଶୁଖ୍ରୀଷ୍ଟ କରିଥିଲେ ଏବଂ ସଙ୍ଗେ ସଙ୍ଗେ ଫଳ ଲାଭ କରିବ ।

ପୂର୍ବେ ଯଥାବିଧି ଶିକ୍ଷା ନ ଥିବାରୁ ଏହିସବୁ ଶକ୍ତିଦ୍ୱାରା ଅନେକଙ୍କର ପତନ ଘଟିଛି । କିନ୍ତୁ ତୁମମାନଙ୍କୁ ଧୈର୍ଯ୍ୟ ସହିତ ଯୋଗର ଏହି ସ୍ତରଗୁଡ଼ିକ ଖୁବ୍ ଧୀରେ ଧୀରେ ଅଭ୍ୟାସ କରିବାକୁ ହେବ । ତା'ପରେ ସମସ୍ତ ହିଁ ତୁମମାନଙ୍କର ଅଧିକାରକୁ ଆସିଯିବ । ପ୍ରେମ ଯଦି ଉଦ୍ଦେଶ୍ୟ ହୁଏ, ତେବେ କିଛିପରିମାଣରେ ଆରୋଗ୍ୟକରଣ ଅଭ୍ୟାସ କରିପାର, କାରଣ ପ୍ରେମ କୌଣସି ଅନିଷ୍ଟସାଧନ କରେ ନାହିଁ ।

ମନୁଷ୍ୟ ମାନେ ଅଳ୍ପବୁଦ୍ଧିସମ୍ପନ୍ନ ଓ ଧୈର୍ଯ୍ୟହୀନ । ସମସ୍ତେ ମଧ୍ୟ ଶକ୍ତିଲାଭ ଆକାଙ୍କ୍ଷା କରନ୍ତି । କିନ୍ତୁ ସେହି ଶକ୍ତି ଅର୍ଜନ କରିବା ପାଇଁ ଅଳ୍ପ ଲୋକ କେବଳ ଧୈର୍ଯ୍ୟ ଧାରଣ କରନ୍ତି । ସେ ବିତରଣ କରିବାକୁ ଉତ୍ସୁକ, କିଛି ସଞ୍ଚୟ କରିବ ନାହିଁ । ଅର୍ଜନ କରିବାକୁ ଦୀର୍ଘ ସମୟର ପ୍ରୟୋଜନ, କିନ୍ତୁ ଖର୍ଚ୍ଚ କରିବା ପାଇଁ ଅଳ୍ପ ସମୟ ଲାଗେ । ସୁତରାଂ ଶକ୍ତି ଅର୍ଜନ କରିବା ସଙ୍ଗେ ସଙ୍ଗେ ତାହା ଅପଚୟ ନ କରି ସଞ୍ଚୟ କର ।

ରିପୁର ପ୍ରତ୍ୟେକଟି ତରଙ୍ଗ ଦମନ କଲେ ତାହା ତୁମର ଅନୁକୂଳ ସମତା ରକ୍ଷା କରିବ । ଅତଏବ କ୍ରୋଧ ପରିବର୍ତ୍ତିରେ କ୍ରୋଧ ପ୍ରଦର୍ଶନ ନ କରିବାଟା ଉତ୍ତମ କୌଶଳ । ସବୁ ନୈତିକ ବିଷୟରେ ଏହି ନିୟମ ପ୍ରଯୋଜ୍ୟ । ଯୀଶୁଖ୍ରୀଷ୍ଟ ମଧ୍ୟ କହିଅଛନ୍ତି, 'ଅନ୍ୟାୟର ପ୍ରତିରୋଧ କର ନାହିଁ ।' ଏହି ଉପଦେଶ ଯେ କେବଳ ନୀତିସଙ୍ଗତ, ତାହା ନୁହେଁ, ବାସ୍ତବିକ ଏହା ଗୋଟିଏ ଉତ୍ତମ କଥା । ଏହା ଆବିଷ୍କାର ନ କରିବା ଯାଏଁ ଆମେମାନେ ତାହାର ମର୍ମ ହୃଦୟଙ୍ଗମ କରୁନାହିଁ, କାରଣ ଯେଉଁ ବ୍ୟକ୍ତି କ୍ରୋଧ ପ୍ରଦର୍ଶନ କରେ, ସେ ଶକ୍ତିର ଅପଚୟ କରେ । ମସ୍ତିଷ୍କରେ ଏହିସବୁ କ୍ରୋଧ ଓ ଘୃଣାର ସମାବେଶ ହୋଇପାରେ, ଏପରି ସୁଯୋଗ ମନକୁ ଦେବା ଉଚିତ ନୁହେଁ ।

ରସାୟନବିଜ୍ଞାନରେ ମୌଳିକ ଉପାଦାନ ଆବିଷ୍କୃତ ହେବା ସଙ୍ଗେ ସଙ୍ଗେ ରାସାୟନିକର କାର୍ଯ୍ୟ ସମାପ୍ତ ହୁଏ । ଏକତ୍ୱ ଆବିଷ୍କାର କରିବା ସଙ୍ଗେ ସଙ୍ଗେ ଧର୍ମବିଜ୍ଞାନ ପୂର୍ଣ୍ଣତ୍ୱ ଲାଭ କରେ ଏବଂ ବହୁ ସହସ୍ର ବର୍ଷ ପୂର୍ବେ ଏହି ଏକତ୍ୱ-ଲାଭ ହୋଇଅଛି । ମନୁଷ୍ୟ ଯେତେବେଳେ ପୂର୍ଣ୍ଣ ଐକ୍ୟରେ ଉପନୀତ ହୁଏ, ସେତେବେଳେ ସେ କୁହେ, 'ମୁଁ ଓ ମୋର ପିତା ଏକ ।'

# ତଥ୍ୟପଞ୍ଜୀ

ପୃଷ୍ଠା ପଙ୍‌କ୍ତି

୨ ୨୩ ସକ୍ରେଟିସ୍ : (ଆନୁମାନିକ ଖ୍ରୀ.ପୂ. ୪୬୯–୩୯୯) ପ୍ରାଚୀନ ଗ୍ରୀସ୍‌ର ସର୍ବାପେକ୍ଷା ବିଜ୍ଞ ଦାର୍ଶନିକ । ଏଥେନ୍ସର ଉପକଣ୍ଠରେ ଜନ୍ମ, ପୃଥିବୀର ଜଣେ ଶ୍ରେଷ୍ଠ ନୀତି-ପ୍ରଚାରକରୂପେ ପରିଗଣିତ । ଜେନୋଫୋନ୍ ଓ ପ୍ଲେଟୋ ତାଙ୍କର ଶିଷ୍ୟ । ଏଥେନ୍ସର ସମ୍ଭ୍ରାନ୍ତ ସମ୍ପ୍ରଦାୟ ତାଙ୍କୁ ହେମ୍‌ଲକ୍ ବିଷ ପାନକରି ମୃତ୍ୟୁ ବରଣ କରିବାକୁ ବାଧ୍ୟ କରିଥିଲେ ।

୫ ୪୫ 'ଈଶ୍ୱରଙ୍କଠାରୁ···ପ୍ରତ୍ୟାବର୍ତ୍ତନ କରିବାକୁ ହେବ' : ଆଇନ୍‌ଷ୍ଟାଇନ୍ ଆବିଷ୍କୃତ ମତବାଦ ବର୍ତ୍ତମାନ ପ୍ରମାଣ କରୁଛି—ଯେଉଁଠାରେ ଆଦି, ସେହିଠାରେ ହିଁ ଅନ୍ତ ।

୯ ୧୯ ଇଥର୍ : ଆଧୁନିକ ବିଜ୍ଞାନ ବିଶ୍ୱାସ କରେ ଯେ, ଇଥର୍ ସର୍ବତ୍ର ବିଦ୍ୟମାନ ଏବଂ ଇଥର୍-ତରଙ୍ଗରେ ହିଁ ଶକ୍ତିର ଅଭିବ୍ୟକ୍ତି ।

୧୦ ୭ 'ଆକର୍ଷଣ—ବିକର୍ଷଣ-ଶକ୍ତି···ଗଠିତ ହୁଏ' : ପରମାଣୁ ଗଠନତତ୍ତ୍ୱର ଆଧୁନିକ ବୈଜ୍ଞାନିକ ବ୍ୟାଖ୍ୟା (Electron Theory) ।

୨୧ ୧୭ ପିଥାଗୋରସ୍ : (ଖ୍ରୀ. ପୂ. ୫୪୦) ଶାମ୍‌ସ ଦ୍ୱୀପରେ ଜନ୍ମ । ଜଣେ ବଡ଼ ଦାର୍ଶନିକ ଓ ଗଣିତଶାସ୍ତ୍ର-ବିଶାରଦ ।

୨୨ ୧୭ ଶୋପେନ୍ ହାଓ୍ୱାର : (୧୭୮୮–୧୮୬୦) ଜର୍ମାନ୍ ଦାର୍ଶନିକ । ତାହାଙ୍କୁ ନୈରାଶ୍ୟବାଦୀ ଦାର୍ଶନିକ କୁହାଯାଏ ।

୨୪ ୧୭ ସ୍ପେନସର୍ (ହାର୍ବାର୍ଟ୍) : (୧୮୨୦–୧୯୦୩) ଇଂରେଜୀ ଦାର୍ଶନିକ । ଅଜ୍ଞେୟବାଦରେ ବିଶ୍ୱାସୀ ।

୩୫ ୧୧ ତରଙ୍ଗ ନିକ୍ଷେପ କରୁଛି : ଆଧୁନିକ ବିଜ୍ଞାନର Wave Theory ସହିତ ତୁଳନୀୟ ।

୪୦ ୯ 'ଅନନ୍ତକୁ କୌଣସି···ପାରେ ନାହିଁ' : ବିଜ୍ଞାନ-ସମର୍ଥିତ ବର୍ତ୍ତମାନ ମତବାଦ ।

୫୫ ୨୯ 'ଚଲ, ଶାଗୁଣା . ମଢ଼ ପଡ଼ିଆରେ' : କଥାମୃତ ଦ୍ରଷ୍ଟବ୍ୟ ।

୫୯ ୩ ସାର୍ ହାମ୍ଫ୍ରି ଡେଭି : (୧୭୭୮–୧୮୨୯) ଇଂଲଣ୍ଡର ବିଖ୍ୟାତ ବୈଜ୍ଞାନିକ । ସେ ଖଣିରେ ଆଲୁଅ ବ୍ୟବହାର କରିବାର ବିପଦରୁ ଉଦ୍ଧାର ପାଇବା ପାଇଁ ନିରାପଦ ବତୀ (safety lamp) ଆବିଷ୍କାର କରିଥିଲେ । ହାସ୍ୟଜନକ ଗ୍ୟାସ୍ ମଧ୍ୟ ତାଙ୍କର ଆବିଷ୍କାର ।

୪ ହାସ୍ୟଜନକ ଗ୍ୟାସ୍ : (laughing gas) ଏହାର ରାସାୟନିକ ନାମ ନାଇଟ୍ରସ୍ ଅକ୍‌ସାଇଡ୍ । ମନୁଷ୍ୟର ନାସାରନ୍ଧ୍ରରେ ପ୍ରବିଷ୍ଟ

ପୃଷ୍ଠା ପଙ୍କ୍ତି

ହେଲେ ଏହି ଗ୍ୟାସ୍ ହାସ୍ୟ ଉଦ୍ରେକ କରେ । ଏକ ସମୟରେ ଏହି ଗ୍ୟାସ୍ ଅସ୍ତ୍ରୋପଚାରର ସମୟରେ ବେଦନାବୋଧ ନିରସନ ପାଇଁ ବ୍ୟବହୃତ ହେଉଥିଲା ।

୬୦ ୨୬ ଏଲିସଙ୍କର ଅଦ୍ଭୁତ ଦେଶ ଦର୍ଶନ : Alice in Wonder Land । ଏହି ପୁସ୍ତକଟି ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟର ଗଣିତ ଅଧ୍ୟାପକ ଚାର୍ଲସ୍ ଲଟୱିଜ୍ ଡଜ୍‌ସନ (୧୮୩୨—୧୮୯୮) 'ଲୁଇ କାରଲ' ଏହି ଛଦ୍ମ ନାମରେ ଲେଖିଥିଲେ । ୧୮୬୫ ଖ୍ରୀ.ରେ ଶିଶୁମାନଙ୍କର ଅତି ପ୍ରିୟ ଗଳ୍ପଟି ପ୍ରକାଶିତ ହେଲା ।

୬୬ ୧୮ ଯାଜ୍ଞବଲ୍କ୍ୟ : ବୈଦିକ ଯୁଗର ବ୍ରହ୍ମଜ୍ଞ ଋଷି । ବୃହଦାରଣ୍ୟକ ଉପନିଷଦ୍‌ରେ ଏହାଙ୍କ ବିଷୟରେ ବହୁ ଆଲୋଚନା ହୋଇଛି ।

୨୧ ମୈତ୍ରେୟୀ : ଯାଜ୍ଞ୍ୟବଲ୍କ୍ୟ ଋଷିଙ୍କର ବ୍ରହ୍ମଜିଜ୍ଞାସୁ ପତ୍ନୀ ।

୭୮ ୩୨ ଦାନ୍ତେ : (Alighieri Dante, ୧୨୬୫-୧୩୨୧) ଇଟାଲୀର ବିଶ୍ୱବିଖ୍ୟାତ କବି ।

୩୨ 'ଡିଭାଇନ୍ କମେଡ଼ି' (Divine Comedy) : ଲାଟିନ୍ ଭାଷାରେ ଦାନ୍ତେଙ୍କ ଲିଖିତ ମହାକାବ୍ୟ, ବହୁ ଭାଷାରେ ଅନୂଦିତ ।

୯୫ ୧୧ ସେଣ୍ଟ ପଲ୍ : (୩ ?—୬୭ ଖ୍ରୀ.) ପୂର୍ବ ନାମ ସଲ୍ । ପ୍ରଥମ ଜୀବନରେ ଖ୍ରୀଷ୍ଟବିଦ୍ୱେଷୀ ଥିଲେ । ଖ୍ରୀଷ୍ଟାନ୍ ଜଗତରେ 'ପଲ୍' ନାମରେ ପରିଚିତ । ଏହାଙ୍କର ଚେଷ୍ଟାରେ ଖ୍ରୀଷ୍ଟଧର୍ମର ବହୁଳ ପ୍ରଚାର ହୋଇଥିଲା ।

୯୯ ୧୭ ପିରାମିଡ଼ : ପ୍ରାଚୀନ ମିଶରରେ ମୃତ ଦେହ ରକ୍ଷା କରିବାର ପ୍ରଥା ଥିଲା । ରାଜା ବା ଧନୀ ବ୍ୟକ୍ତିଙ୍କର ମୃତ ଦେହକୁ ଔଷଧରେ ଲିପ୍ତ କରି ଭୂଗର୍ଭସ୍ଥିତ ପ୍ରକୋଷ୍ଠରେ ରକ୍ଷା କରିବା ପାଇଁ ପିରାମିଡ଼ ନିର୍ମାଣ କରା ହେଉଥିଲା । ଏହିଗୁଡ଼ିକ ପୃଥିବୀର ଆଶ୍ଚର୍ଯ୍ୟ ସ୍ଥାପତ୍ୟ-ଶିଳ୍ପର ଓ ମିଶରୀୟ ପ୍ରାଚୀନ ସଭ୍ୟତାର ଉଚ୍ଚମାନର ନିଦର୍ଶନ ।

୧୦୨ ୧୧-୧୨ ଏସିଆର ଆଲୋକ : (The Light of Asia) ଏଡ଼ୱିନ୍ ଆର୍ଣ୍ଣୋଲ୍ଡ଼ (୧୮୩୨-୧୯୦୪) ରଚିତ ବୁଦ୍ଧଦେବଙ୍କ ଜୀବନୀ ଅବଲମ୍ବନରେ କାବ୍ୟ (୧୮୭୯) ।

୧୦୫ ୨୦ କନଫୁସିୟସ୍ : (ଖ୍ରୀ. ପୂ. ୫୫୦-୪୭୮) ଚୀନ ଦେଶୀୟ ଦାର୍ଶନିକ । ଚୀନ ଦେଶର ତତ୍କାଳୀନ ଶାସକବର୍ଗଙ୍କ, ଦୋଷତ୍ରୁଟି ସଂଶୋଧନ ପାଇଁ ନୈତିକ ଉପଦେଶ ଦାନ କରନ୍ତି । ତାଙ୍କର ମୃତ୍ୟୁ ପରେ ତାଙ୍କୁ ଦେବତାଜ୍ଞାନରେ ପୂଜା କରାଯାଉଛି ଏବଂ ତାଙ୍କର ବାଣୀ ଏକ ନୂତନ ମତବାଦ ସୃଷ୍ଟି କରିଛି ।

| ପୃଷ୍ଠା | ପଙ୍କ୍ତି | |
|---|---|---|
| ୧୧୦ | ୨୧ | 'ମନୁଷ୍ୟର ଇତିହାସ···କରୁନାହିଁ' : ମନୁଷ୍ୟ ଚିରକାଳ ସ୍ୱେଚ୍ଛାଚାରର ଶାସନ ବିରୋଧରେ ଦଣ୍ଡାୟମାନ । ଯେତେବେଳେ ମନୁଷ୍ୟ ଉପରେ କୌଣସି ଅଯୌକ୍ତିକ ବ୍ୟବସ୍ଥା ଲଦି ଦିଆଯାଏ, ସେତେବେଳେ ସେ ଏହାକୁ ମାନିବାକୁ ଅସ୍ୱୀକାର କରେ । ଉଦାହରଣ ସ୍ୱରୂପ, ଯେତେବେଳେ ପୁରୋହିତତନ୍ତ୍ରର ଅଯୌକ୍ତିକ, ନୀତିବିଗର୍ହିତ ପାପର ଶାସନ, ଆଚାର-ଅନୁଷ୍ଠାନରେ ପର୍ଯ୍ୟବସିତ ହୋଇଥିଲା, ସେତେବେଳେ ମନୁଷ୍ୟ ମୁକ୍ତିସିଦ୍ଧ ପ୍ରୋଟେଷ୍ଟାଣ୍ଟ ଧର୍ମମତ ଦଳଦଳ ହୋଇ ଗ୍ରହଣ କରିବାକୁ ବାଧ୍ୟ ହୋଇଥିଲେ । ରାଜଶକ୍ତି ଓ ପୁରୋହିତଶକ୍ତି—ଉଭୟଙ୍କ ସମୟରେ ଏହିପରି ଘଟିଅଛି । ଏହାର ପ୍ରମାଣ ଇତିହାସ ଦିଏ । |
| ୧୧୦ | ୨୧ | ଫରାସୀ ବିପ୍ଳବ : ୧୭୮୯ ଖ୍ରୀ. ୧୪ ଜୁଲାଇରେ କ୍ଷୁବ୍ଧ ଜନତା ବାସ୍ତିଲ ଦୁର୍ଗ ଧ୍ୱଂସ କରିବା ସମୟରୁ ଏହି ବିପ୍ଳବର ସୂତ୍ରପାତ ହୋଇଥିଲା । ୧୭୯୨ ଖ୍ରୀ. ୨୧ ସେପ୍ଟେମ୍ବରରେ ଫରାସୀ ଦେଶର ରାଜତନ୍ତ୍ରର ଅବସାନ ଘୋଷିତ ହେଲା । ଚାରିମାସ ପରେ ଷୋଡ଼ଶ ଲୁଇ ଓ ତାଙ୍କର ରାଣୀ ମେରି ଆନ୍ତୋନେଟଙ୍କର ଶିରଚ୍ଛେଦ ହେଲା । ଏହାପରେ ଦେଶରେ ଅରାଜକତା ଓ ରକ୍ତଲୋଲୁପ ଶାସନ ଚାଲିଥିଲା । ୧୭୯୯ ଖ୍ରୀ.ରେ ନେପୋଲିଅନ ବୋନାପାର୍ଟ ଦେଶରେ ଶାନ୍ତି ଆଣିଲେ । |
| ୧୧୩ | ୨୧-୨୨ | 'ଗୋଟିଏ ଆତ···ଖେଳଯାଇଥିଲା ।' : ଏହି ଘଟଣା ନିତ୍ୟ ଘଟୁଅଛି । କିନ୍ତୁ ନିଉଟନ୍‌ଙ୍କ ମନରେ ଏହି ଘଟଣା ଏକ ଆଲୋଡ଼ନ ସୃଷ୍ଟି କରିଥିଲା । ସେ ଏହାର କାରଣ ଅନୁସନ୍ଧାନରେ ପ୍ରବୃତ୍ତ ହେଲେ ଏବଂ ଯେତେଦିନ ପର୍ଯ୍ୟନ୍ତ ମାଧ୍ୟାକର୍ଷଣ ଶକ୍ତି ଆବିଷ୍କାର କରି ଏହି ପ୍ରାକୃତିକ ଘଟଣାର କାରଣ ବାହାର କରି ନ ଥିଲେ, ସେତେଦିନ ପର୍ଯ୍ୟନ୍ତ ସେ ସ୍ଥିର ରହିପାରି ନ ଥିଲେ । ପ୍ରତ୍ୟେକ ଆବିଷ୍କାରର ପଶ୍ଚାତ୍ତରେ ଏହିପରି ନିୟମ ବିଦ୍ୟମାନ ଏବଂ ଏହି ଭାବରେ ମାନବୀୟ ଜ୍ଞାନର ପରିଧି ବୃଦ୍ଧିପ୍ରାପ୍ତ ହୁଏ । ଫଳରେ ଏହାକୁ ଜ୍ଞାନର ଗୋଟିଏ ନିୟମ ବୋଲି ନିର୍ଦ୍ଦେଶ କରାହୋଇଛି । |
| ୧୨୫ | ୪-୫ | 'ଯେଉଁ ଶକ୍ତି ବଳରେ···ଆଶୀର୍ବାଦ କରିଅଛନ୍ତି' : ଯୀଶୁଖ୍ରୀଷ୍ଟଙ୍କର ଶିଷ୍ୟମାନଙ୍କ ମଧ୍ୟରେ ଜୁଡ଼ାସ୍ ଇସ୍କାରିୟଟ୍ ଅର୍ଥଲୋଭରେ ବିଶ୍ୱାସ-ଘାତକତା କରି ତାହାଙ୍କୁ ଧରାଇଦେଲେ । ପୂର୍ବାବଧି ଯୀଶୁ ଜାଣିଥିଲେ ଯେ, ଜୁଡ଼ାସ୍ ବିଶ୍ୱାସଘାତକତା କରିବେ । ତଥାପି ସେ ତାହାଙ୍କୁ ତ୍ୟାଗ କରି ନ ଥିଲେ ବା ଭର୍ତ୍ସନା ପର୍ଯ୍ୟନ୍ତ କରି ନ ଥିଲେ । ଯୀଶୁ କ୍ରୁଶ ଦ୍ୱାରା ବିଦ୍ଧ ହୋଇ ମଧ୍ୟ କହିଥିଲେ, 'ହେ ପରମ ପିତା, |

ପୃଷ୍ଠା ପଙ୍କ୍ତି

ଏମାନଙ୍କୁ କ୍ଷମା କରନ୍ତୁ । ଏମାନେ ଜାଣନ୍ତି ନାହିଁ ଯେ, ଏମାନେ କଅଣ କରୁଛନ୍ତି ।'

୧୨୭ ୭-୮ 'ଧର୍ମପ୍ରେରଣାରେ...କରିଅଛ' : ଇହୁଦି ଓ ରୋମକଗଣଙ୍କର ଖ୍ରୀଷ୍ଟାନ-ମାନଙ୍କ ଉପରେ ନୃଶଂସ ଅତ୍ୟାଚାର । ଖ୍ରୀଷ୍ଟାନମାନଙ୍କର ଅଦ୍ୟାବଧି ଇହୁଦି-ନିଧନ ଓ ରୋମାନ କ୍ୟାଥୋଲିକ୍ ଓ ପ୍ରୋଟେଷ୍ଟାଣ୍ଟମାନଙ୍କର ବହୁବର୍ଷବ୍ୟାପୀ ନୃଶଂସତା, କଳୁଷିତ ଅନ୍ତର୍ଦ୍ୱନ୍ଦ୍ୱ ଓ ଯୁଦ୍ଧ, ବହୁ ଶତାବ୍ଦୀ ବ୍ୟାପୀ କ୍ରୁସେଡ୍ ଏବଂ ମୁସଲମାନମାନଙ୍କ କର୍ତ୍ତୃକ ଅଣମୁସଲମାନମାନଙ୍କୁ ହତ୍ୟା ଇତ୍ୟାଦି ଲୋମହର୍ଷଣ କାହାଣୀର ବିଷୟ ଉଲ୍ଲେଖ କରାହୋଇଛି ।

୧୩୦ ୩୦ ସାର୍ ଜନ୍ ଲବକ୍ : (୧୮୩୪-୧୯୧୨) ବିଖ୍ୟାତ ବ୍ୟାଙ୍କ-ମାଲିକ, ଅବସର ସମୟରେ ବିଜ୍ଞାନ ଚର୍ଚ୍ଚା କରୁଥିଲେ । ସେ ପ୍ରକୃତିର ଉପାସକ ଥିଲେ । ସେ ଲର୍ଡ଼ ଆଭେବରି (Lord Avebury) ଉପାଧି ଲାଭ କରିଥିଲେ । ପାର୍ଲାମେଣ୍ଟର ସଦସ୍ୟ ଥିଲେ ଏବଂ ବ୍ୟାଙ୍କ-ସଂକ୍ରାନ୍ତ କେତେଗୁଡ଼ିଏ ସଂସ୍କାର ପ୍ରବର୍ତ୍ତନ କରିଥିଲେ । ସେ ଅବସର ସମୟରେ ବିଜ୍ଞାନ ଚର୍ଚ୍ଚା ନିମିତ୍ତ ଯେଉଁ ସକଳ ପୁସ୍ତକ ରଚନା କରିଥିଲେ, ତନ୍ମଧ୍ୟରେ 'British Wild Flowers' (୧୮୭୫), 'Ants, Bees and Wasps' (୧୮୮୨) ପ୍ରଭୃତି ଉଲ୍ଲେଖଯୋଗ୍ୟ । କିନ୍ତୁ ୧୮୬୫ ଖ୍ରୀଷ୍ଟାବ୍ଦରେ ପ୍ରକାଶିତ 'Prehistoric Times' ପୁସ୍ତକ ବିଶେଷ ଖ୍ୟାତି ଲାଭ କରିଥିଲା । ସେ Palaeolithic ଓ Neolithic ନାମ ଦୁଇଟିର ସୂଚନା ଦେଇଥିଲେ ।

୧୩୭ ୭ 'ସମସ୍ତ ରାସ୍ତା ହିଁ ରୋମ୍‌ରେ ପହଞ୍ଚିଛି'—ରୋମକ ସାମ୍ରାଜ୍ୟର ଗୌରବ-ମୟ ଅତୀତରେ ୟୁରୋପ ଯେତେବେଳେ ଗଭୀର ତମସାରେ ନିମଜ୍ଜିତ ଥିଲା, ସେତେବେଳେ ରୋମକଗଣ ସେମାନଙ୍କର ବହୁ ବିସ୍ତୃତ ସାମ୍ରାଜ୍ୟର ସର୍ବତ୍ର ଅବାଧ ସୈନ୍ୟ-ଚଳନାର ସୁବିଧା ପାଇଁ ସୁପରିକଳ୍ପିତ ରାସ୍ତା ପ୍ରସ୍ତୁତ କରି ରାଜଧାନୀ ରୋମ ନଗରୀକୁ ରାଜ୍ୟର ବିଭିନ୍ନ ଅଂଶ ସହିତ ସଂଯୁକ୍ତ କରିଥିଲେ । ଫଳରେ ଏହି ପ୍ରବାଦର ସୃଷ୍ଟି ।

୧୪୧ ୨୨ ଜରଥୁଷ୍ଟ୍ର : ଯୀଶୁଖ୍ରୀଷ୍ଟଙ୍କର ଆନୁମାନିକ ୧୦୦୦ ବର୍ଷ ପୂର୍ବେ ଏହି ପାରସିକ ଜ୍ଞାନୀ ବ୍ୟକ୍ତି ଏକ ଧର୍ମ ପ୍ରଚାର କରିଥିଲେ । ଏହି ଧର୍ମରେ ସୂର୍ଯ୍ୟ ଉପାସନା ପ୍ରଧାନ । ଅଗ୍ନିକୁ ବିଶେଷ ପବିତ୍ର ବୋଲି ଜ୍ଞାନ କରୁଥିଲେ । ଏହି ଧର୍ମାବଲମ୍ବୀମାନଙ୍କର ବିଶ୍ୱାସ ପୃଥିବୀରେ ଦୁଇଟି

ପୃଷ୍ଠା ପଙ୍କ୍ତି

ଶକ୍ତି କ୍ରିୟା କରେ—ଗୋଟିଏ ମନ୍ଦଶକ୍ତି, ନାମ ଅହ୍ରିମାନ, ଅନ୍ୟଟି ଭଲ ଶକ୍ତି, ନାମ ଅହୁରମାଜ୍‌ଦା । ଏମାନଙ୍କର ଧର୍ମ-ପୁସ୍ତକର ନାମ 'ଜେନ୍ଦ-ଆବେସ୍ତା' । ଏହି ଧର୍ମାବଲମ୍ବୀ ଅନେକେ ମୁସଲମାନମାନଙ୍କର ଅତ୍ୟାଚାରରେ ପାରସ୍ୟ ଦେଶ ତ୍ୟାଗ କରିବାକୁ ବାଧ୍ୟ ହୋଇଥିଲେ ଏବଂ ଭାରତବର୍ଷରେ ଆସି ବସବାସ କରିଥିଲେ । ଏମାନଙ୍କର ସଂଖ୍ୟା ବର୍ତ୍ତମାନ ଆନୁମାନିକ ଲକ୍ଷାଧିକ ମାତ୍ର ହେବ ।

୧୫୯ ୩ ମର୍ମନ (Mormon) : ଆମେରିକାର ଗୋଟିଏ ଧର୍ମ-ସମ୍ପ୍ରଦାୟ । ଏହାର ନାମ Church of Jesus Christ of Later Day Saints । ମାତ୍ର ଛଅ ଜଣ ସଭ୍ୟଙ୍କୁ ନେଇ ଜୋସେଫ୍ ସ୍ମିଥ୍ (୧୮୦୫-୧୮୪୪) ଏହି ସମ୍ପ୍ରଦାୟ ପ୍ରତିଷ୍ଠା କରିଥିଲେ । ଅନ୍ୟ ଧର୍ମାବଲମ୍ବୀମାନଙ୍କର ବିରୋଧିତାରେ ଉତ୍ତ୍ୟକ୍ତ ହୋଇ ବ୍ରିଂହାମ୍ ଇୟଂ ମର୍ମନମାନଙ୍କୁ ସଲ୍‌ଟଲେକ୍ ସିଟିକୁ ନେଇଯାଇଥିଲେ । ଏମାନଙ୍କ ମଧ୍ୟରେ ଶତକଡ଼ା ଚାରିଜଣ ଲୋକ ବହୁ-ବିବାହର ଅନୁମତି ପାଇଥିଲେ । ସଲ୍‌ଟଲେକର ଅଭିଯାନ ଗୋଟିଏ ଐତିହାସିକ ଘଟଣା । ଏହି ଅଭିଯାନ ୧୮୪୭ ଖ୍ରୀଃରେ ସମାପ୍ତ ହୋଇଥିଲା । ୧୪୩ ଜଣ ପୁରୁଷ, ୩ ଜଣ ସ୍ତ୍ରୀ ଓ ୨ଟି ଶିଶୁ ଏହି ଅଭିଯାନରେ ଯୋଗଦାନ କରିଥିଲେ । ବର୍ତ୍ତମାନ ଇଂଲଣ୍ଡ ପ୍ରଭୃତି ବହୁ ଦେଶରେ ମର୍ମନ ଧର୍ମଯାଜକଗଣ ପ୍ରଚାର-କାର୍ଯ୍ୟରେ ବ୍ରତୀ ଅଛନ୍ତି । ୧୮୯୦ ଖ୍ରୀ.ରୁ ମର୍ମନ ଗୀର୍ଜା ଓ ବହୁବିବାହ-ପ୍ରଥାର ବିରୋଧରେ ପ୍ରଚାର ଆରମ୍ଭ କରିଥିଲେ; କିନ୍ତୁ ଅଧୁନା ସମଗ୍ର ଖ୍ରୀଷ୍ଟାନ୍-ଜଗତ ଏମାନଙ୍କୁ ନାରୀ ଅପହରଣ କରି ବହୁ ବିବାହ କରନ୍ତି ବୋଲି ଘୃଣା କରନ୍ତି ।

୧୬୫ ୫ ପିଉରିଟାନ୍ : ରାଜା ପ୍ରଥମ ଜେମ୍‌ସଙ୍କର ରାଜତ୍ୱକାଳରେ ଇଂଲଣ୍ଡର ଚର୍ଚ୍ଚରେ ଯେଉଁମାନେ ରୋମାନ୍ କ୍ୟାଥୋଲିକ୍ ଅନୁଷ୍ଠାନାଦି ବନ୍ଦ କରିବା ପାଇଁ ଆନ୍ଦୋଳନ କରିଥିଲେ, ସେମାନେ ଏହି ନାମରେ ପରିଚିତ । ଏମାନେ ସରଳ ଓ ଅନାଡ଼ମ୍ବର ଜୀବନ ଯାପନର ପକ୍ଷପାତୀ ଥିଲେ । ପ୍ରଥମ ଚାର୍ଲସ୍‌ଙ୍କର ଶିରଚ୍ଛେଦନ ପରେ କ୍ରମଓ୍ୱେଲ୍‌ଙ୍କର ପିଉରିଟାନ୍ ପ୍ରଭାବ ସମଗ୍ର ଇଂଲଣ୍ଡରେ ବିଶେଷ ପ୍ରତିଷ୍ଠା ଲାଭ କରିଥିଲା ।

୧୮୨ ୨୫ ମ୍ୟାକ୍‌ସମୁଲର (୧୮୨୩-୧୯୦୦) : ଭାରତପ୍ରେମିକ ପ୍ରାଚ୍ୟତତ୍ତ୍ୱବିଦ୍ ବିଖ୍ୟାତ ଜର୍ମାନ୍ ପଣ୍ଡିତ । ଅକ୍‌ସଫୋର୍ଡ଼ ବିଶ୍ୱବିଦ୍ୟାଳୟର ଅଧ୍ୟାପକ । ଋକ୍‌ବେଦର ଇଂରାଜୀ ଅନୁବାଦ କରି ଖ୍ୟାତିଲାଭ କରିଥିଲେ ।

ପୃଷ୍ଠା ପଙ୍କ୍ତି

୧୯୫ ୧ ସ୍ୟାଲେଭେସନ୍ ଅର୍ମି : ଉଇଲିୟମ୍ ବୁଥ୍ କର୍ତ୍ତୃକ ଇଂଲଣ୍ଡରେ ଏହି ସମିତି ୧୮୬୫ ଖ୍ରୀ:ରେ ପ୍ରତିଷ୍ଠିତ ହୁଏ । ଏହାର ଉଦ୍ଦେଶ୍ୟ ମାନବ-କଲ୍ୟାଣ । ଯୁଦ୍ଧକ୍ଷେତ୍ରରେ ମଧ୍ୟ ଏହି ପ୍ରତିଷ୍ଠାନର କାର୍ଯ୍ୟ ଅବ୍ୟାହତ ରହେ । ବର୍ତ୍ତମାନ ଏହି ପ୍ରତିଷ୍ଠାନ ପୃଥିବୀବ୍ୟାପୀ କାର୍ଯ୍ୟ କରୁଅଛି ।

୧୮୭ ୨୩ ମିଲ୍‌ଟନ୍, ଜନ୍ (୧୬୦୮–୧୬୭୪) : ଇଂରେଜ କବି । Paradise Lost ନାମକ ମହାକାବ୍ୟର ରଚୟିତା ।

୨୪ କାଳିଦାସ : ସଂସ୍କୃତ ଭାଷାର ମହାକବି । କଥିତ ଅଛି—ସେ ବିକ୍ରମାଦିତ୍ୟଙ୍କର ରାଜସଭାର ନବରତ୍ନର ଶ୍ରେଷ୍ଠରତ୍ନ । ତାଙ୍କର କାବ୍ୟସମୂହ ବର୍ତ୍ତମାନ ମଧ୍ୟ ସଂସ୍କୃତଜ୍ଞ ପଣ୍ଡିତମାନଙ୍କ ନିକଟରେ ପୃଥିବୀର ସର୍ବତ୍ର ବିଶେଷ ଆଦୃତ ।

୧୯୨ ୨୮ କାଣ୍ଟ ଇମାନୁୟେଲ୍ (୧୭୨୪–୧୮୦୪) : ବିଖ୍ୟାତ ଜର୍ମାନ୍ ଦାର୍ଶନିକ । ସର୍ବସ୍ୱରବାଦ ପ୍ରବର୍ତ୍ତନ କରନ୍ତି । ପୂର୍ବ ପ୍ରୁସିଆ କଏନିଗସବର୍ଗ ସହରରେ ଏପ୍ରିଲ ୨୨ ତାରିଖରେ ଜନ୍ମ । ସହରର ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ ଥିଲେ । ତାଙ୍କର ବହୁ ଲେଖାଗୁଡ଼ିକ ମଧ୍ୟରେ 'Dreams of a Visionary' (୧୭୬୬), 'Critique of Pure Reason' (୧୭୮୧), 'Prolegomena' (୧୭୮୩), 'Critique of Practical Reason' (୧୭୮୮) ଏବଂ 'Critique of Judgement' (୧୭୯୦) ବିଖ୍ୟାତ ।

୧୯୨ ୨୮ ହେଗେଲ୍ (୧୭୭୦–୧୮୩୧) : ଜର୍ମାନ୍ ଦାର୍ଶନିକ ।

୨୪୩ ୨୩ 'ଧର୍ମର କିଣ୍ଡରଗାର୍ଟନ୍' : ଫେଡ୍‌ରିକ ଫ୍ରବେଲ ନାମକ ଜନୈକ ଶିକ୍ଷାବିତ୍ ଶିଶୁମାନଙ୍କର ଶିକ୍ଷାଦାନର ଏକ ନୂତନ ସରଳ ଓ ସ୍ୱାଭାବିକ ପଦ୍ଧତି ୧୯୦୦ ଶତାବ୍ଦୀର ମଧ୍ୟଭାଗରେ ଆବିଷ୍କାର କରିଥିଲେ । ଏହାର ନାମ ଦିଆଗଲା 'କିଣ୍ଡରଗାର୍ଟନ୍' ବା ଶିଶୁମାନଙ୍କର ବଗିଚା । ଧର୍ମପଥରେ ଯେଉଁମାନେ ପ୍ରାଥମିକ ଅନୁଷ୍ଠାନଗୁଡ଼ିକୁ ଧରିରଖନ୍ତି, ଏଠାରେ ସେହିମାନଙ୍କୁ ହିଁ ଇଙ୍ଗିତ କରାଯାଇଅଛି ।

୨୪୭ ୨ ଗାଲିଲିଓ (୧୫୬୪-୧୬୪୨) : ଇଟାଲୀର ପିସା ସହରରେ ଫେବୃଆରି ୧୫ ତାରିଖରେ ଜନ୍ମ ଏବଂ ଜାନୁଆରି ୮ ତାରିଖରେ ମୃତ୍ୟୁ । ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଗଣିତ, ଜ୍ୟୋତିଷ ଗବେଷଣା କରନ୍ତି । ଆଧୁନିକ ପଦାର୍ଥବିଜ୍ଞାନର ଜନକ । ପିସା ଓ ପାଡ଼ୁଆ ବିଶ୍ୱବିଦ୍ୟାଳୟର ଗଣିତ ଅଧ୍ୟାପକ ଥିଲେ । ୧୬୧୦ ଖ୍ରୀ:ରୁ ଫ୍ଲୋରେନ୍ସରେ ବାସ କଲେ ।

ପୃଷ୍ଠା ପଙ୍କ୍ତି

ତଦାମଗ୍ନନ ଚର୍ଚ୍ଚର କୋପଦୃଷ୍ଟିରେ ପଡ଼ନ୍ତି । ସ୍ୱକୀୟ ଆବିଷ୍କାରକୁ ମିଥ୍ୟା ସ୍ୱୀକାର କରି ପ୍ରାଣରକ୍ଷା କରିଥିଲେ ।

୨୭୦ ୧୦ ତାଓ : ଚୀନ ଦେଶର ଗୋଟିଏ ଦାର୍ଶନିକ ମତବାଦ । ଲାଓ-ସେ (Lao Tsze) କର୍ତ୍ତୃକ ଏହି ମତବାଦ ଖ୍ରୀ:ପୂ: ୬୦୦ ଶତାବ୍ଦୀରୁ ପ୍ରଚଳିତ । ପରେ ଚୀନ ଦେଶର ନାନା ମତବାଦ ବୌଦ୍ଧଧର୍ମ ସହିତ ମିଶ୍ରିତ ହୋଇଯାଇଅଛି । କଥିତ ଅଛି—ଲାଓ-ସେ ଖ୍ରୀ.ପୂ: ୬୦୪ରେ ହୋନାନ୍ ପ୍ରଦେଶରେ ଜନ୍ମଗ୍ରହଣ କରିଥିଲେ ।

୩୦୪ ୩ ଅହୁରମାଜ୍‌ଦା : ପ୍ରାଚୀନ ପାରସିକ ଧର୍ମଗ୍ରନ୍ଥ । ଜେନ୍ଦାବେସ୍ତାର ମତରେ ଜଗତରେ ଦୁଇଟି ଶକ୍ତି ପରସ୍ପରର ବିରୋଧୀ ଭାବରେ କାର୍ଯ୍ୟ କରେ—ଭଲ ଓ ମନ୍ଦ । ଭଲଟିର ନାମ ଅହୁରମାଜ୍‌ଦା । ଏହା ବହୁତ ଅଂଶରେ ବାଇବେଲର God ବା ବ୍ୟକ୍ତି-ଈଶ୍ୱରଙ୍କ ପରି ଧାରଣା ।

ଅହ୍ରିମାନ : ଏହି ଦୁଇ ଶକ୍ତି ମଧ୍ୟରେ ମନ୍ଦଟିର ନାମ । ବହୁଳ ଅଂଶରେ ଏହା ବାଇବେଲର ସଇତାନ-କଳ୍ପନା ପରି ।

୩୪୯ ୫-୬ 'କିନ୍ତୁ ହିମାଳୟର···ଦାୟିତ୍ୱରେ ରହିଅଛନ୍ତି' : ଆଲମୋଡ଼ାଠାରୁ ଅନତିଦୂରରେ ମାୟାବତୀରେ ଗୋଟିଏ ଆଶ୍ରମ ସ୍ଥାପନ ନିମିତ୍ତ ମିଷ୍ଟର୍ ଓ ମିସେସ୍ ସେଭିୟାର୍ ଖଣ୍ଡିଏ ଜମି କ୍ରୟ କରି ସେଠାରେ ବସବାସ କଲେ ଏବଂ ଅଦ୍ୱୈତ ଆଶ୍ରମ ନାମରେ ବେଦାନ୍ତ ଚର୍ଚ୍ଚା ଓ ପ୍ରଚାରର ଗୋଟିଏ କେନ୍ଦ୍ର ପ୍ରତିଷ୍ଠା କଲେ । ପରେ ଏହି ସ୍ଥାନରୁ ଇଂରାଜୀ ମାସିକ ପତ୍ରିକା 'ପ୍ରବୁଦ୍ଧ ଭାରତ' ପ୍ରକାଶିତ ହେଲା ।

୪୦୬ ୩୦ ଇଙ୍ଗାରସୋଲ୍, ରବର୍ଟ (୧୮୩୩-୯୯) : ଆମେରିକାର ଅଜ୍ଞେୟବାଦୀ ଲେଖକ ଓ ବକ୍ତା ।

ଡାରଉଇନ୍, ଚାର୍ଲସ୍ ରବର୍ଟ (୧୮୦୯-୮୨) : ଡାରଉଇନ୍ ବିବର୍ତ୍ତନ-ବାଦକୁ ବୈଜ୍ଞାନିକ ଭିତ୍ତିରେ ପ୍ରତିଷ୍ଠା କରିଥିଲେ । ହକ୍‌ସଲି ଡାରଉଇନ୍‌ଙ୍କୁ ସମର୍ଥନ କରନ୍ତି । ଏହି ମତବାଦ ଖ୍ରୀଷ୍ଟିଆନ ଜଗତରେ ଗୋଟିଏ ବିଷମ ପ୍ରତିକ୍ରିୟା ସୃଷ୍ଟି କରିଥିଲା । ତାଙ୍କର ଦୁଇଟି ବିଖ୍ୟାତ ଗ୍ରନ୍ଥ 'The Origin of Species' ଏବଂ 'The Descent of Man'।

ହକ୍‌ସଲି, ଟମାସ ହେନେରି (୧୮୨୫-୯୫) : ଏମାନଙ୍କୁ ଡାରଉଇନ୍‌ଙ୍କର 'ବୁଲ୍‌ଡଗ୍' କୁହାଯାଏ । ପ୍ରାଣୀତତ୍ତ୍ୱବିତ୍, ଏବଂ ଡାରଉଇନ୍‌ଙ୍କର ମତବାଦ ଯେତେବେଳେ ଖ୍ରୀଷ୍ଟିଆନ ଜଗତରେ ଆଲୋଡ଼ନ ସୃଷ୍ଟି

ପୃଷ୍ଠା ପଙ୍‌କ୍ତି

କରୁଥିଲା, ସେତେବେଳେ ସେ ବକ୍ତୃତା ଓ ଲେଖମାର ସାହାଯ୍ୟରେ ଜନସାଧାରଣଙ୍କ ମଧ୍ୟରେ ଏହି ମତବାଦକୁ ପ୍ରାଞ୍ଜଳ ଭାବରେ ପ୍ରଚାର କଲେ । ତାଙ୍କର ଲିଖିତ 'Man's Place in Nature', 'Science and Hebrew Tradition' ପ୍ରଭୃତି ପୁସ୍ତକ ବିଖ୍ୟାତ ।

୪୨୩ ୧୬ ସାର୍ ହାମିଲ୍‌ଟନ୍ ଉଇଲିୟମ୍ (୧୭୮୮-୧୮୫୬) : ବିଖ୍ୟାତ ସ୍କଚ୍ ଦାର୍ଶନିକ । ଜନ୍ମ Glasgowରେ ଏବଂ ମୃତ୍ୟୁ Edinburgh ସହରରେ । ୧୮୧୭ ଖ୍ରୀ:ରେ ଏବଂ ୧୮୨୦ ଖ୍ରୀ:ରେ ଦୁଇଥର ଜର୍ମାନ୍‌କୁ ଯାଇଥିଲେ ଏବଂ ଜର୍ମାନ୍ ଦାର୍ଶନିକ ମତବାଦ ସହିତ ପରିଚିତ ହେଲେ । ୧୮୩୬ ଖ୍ରୀ:ରେ ଏଡ଼ିନ୍‌ବର୍ଗ ବିଶ୍ୱବିଦ୍ୟାଳୟରେ ତର୍କବିଜ୍ଞାନ ଓ ତତ୍ତ୍ୱବିଦ୍ୟାର (Metaphysics) ଅଧ୍ୟାପକ ରୂପେ ନିଯୁକ୍ତ ହେଲେ । ତର୍କ-ବିଜ୍ଞାନ-ଚର୍ଚ୍ଚାରେ ହିଁ ବିଶେଷ ଖ୍ୟାତି ଥିଲା । ତାଙ୍କର ବିଖ୍ୟାତ ଗ୍ରନ୍ଥ 'Lectures in Logic' ଏବଂ 'Discussions in Philosophy' ।

ଜନ୍ ଷ୍ଟୁଆର୍ଟ ମିଲ୍ : ୧୮୬୫ ଖ୍ରୀ:ରେ 'Examination of Hamilton's Philosophy' ପ୍ରକାଶ କରିଥିଲେ ।

# ନିର୍ଦ୍ଦେଶିକା

---